# ଶ୍ରୀମଦ୍ଭାଗବତ

## ସଚିତ୍ର

## ଚତୁର୍ଥ ସ୍କନ୍ଧ

ସଂସ୍କୃତଶ୍ଳୋକ, ଗଦ୍ୟାନୁବାଦ

ଭକ୍ତକବି ଜଗନ୍ନାଥ ଦାସଙ୍କ ପଦ୍ୟାନୁବାଦ

ଟୀକା ସମ୍ବଳିତ

ସମ୍ପାଦକ—

ରାୟବାହାଦୁର ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ ଏମ୍. ଏ. ବି, ଏଲ୍.

ପ୍ରଥମ ସଂସ୍କରଣ

ପ୍ରକାଶକ—

ଅ ରୁ ଣୋ ଦ [illegible], କଟକ

୧୯[illegible]

ମୂଲ୍ୟ ଟ ୪୫

# ସୂଚୀପତ୍ର

# ଚତୁର୍ଥ ସ୍କନ୍ଧ

**ସଂକ୍ଷିପ୍ତ ବିବରଣ.—**

ଶ୍ରୀମଦ୍ଭାଗବତର ଚତୁର୍ଥସ୍କନ୍ଧ ଏକତ୍ରିଂଶ ଅଧ୍ୟାୟରେ ସମାପ୍ତ ହୋଇଅଛି । ସମସ୍ତ ଚତୁର୍ଥସ୍କନ୍ଧରେ ବର୍ଣ୍ଣିତ ବିଷୟ ଗୁଡ଼ିକୁ ପ୍ରଧାନତଃ ପାଞ୍ଚୋଟି ବିଭାଗରେ ବିଭକ୍ତ କରାଯାଇପାରେ ।

( ୧ ) ପ୍ରଥମ ସାତ ଅଧ୍ୟାୟରେ ସ୍ଥୂଳତଃ ଦକ୍ଷଯଜ୍ଞ ଓ ସତୀଦାହ ପ୍ରସଙ୍ଗ ବର୍ଣ୍ଣିତ । ପ୍ରଥମ ଅଧ୍ୟାୟରେ ମୈତ୍ରେୟମୁନି ମନୁଙ୍କ ଔରସରେ ଶତରୂପା ପତ୍ନୀଙ୍କ ଗର୍ଭରେ ପ୍ରିୟବ୍ରତ ଓ ଉତ୍ତାନପାଦ ପୁତ୍ରଦ୍ୱୟଙ୍କ ଜନ୍ମ ପ୍ରସଙ୍ଗ ବର୍ଣ୍ଣନା କରିଥିଲେ । ଆକୂତି, ଦେବହୂତି ଏବଂ ପ୍ରସୂତିନାମ୍ନୀ ତିନିକନ୍ୟା ମଧ୍ୟ ଶତରୂପାଙ୍କ ଗର୍ଭରେ ଜାତ ହୋଇଥିଲେ । ପୁତ୍ରିକାଧର୍ମାନୁସାରେ ରୁଚିଙ୍କ ସହିତ ଆକୂତିଙ୍କର ବିବାହ ହୋଇଥିଲା, ଆକୂତିଙ୍କ ଗର୍ଭରେ ଯଜ୍ଞ ଓ ଦକ୍ଷିଣା ଜନ୍ମିଥିଲେ, ଯଜ୍ଞଙ୍କ ସହିତ ଦକ୍ଷିଣାଙ୍କର ବିବାହ ହୋଇଥିଲା, ଦକ୍ଷିଣାଙ୍କଠାରୁ ତୋଷ ପ୍ରତୋଷ ପ୍ରଭୃତି ଦ୍ୱାଦଶପୁତ୍ର ଜନ୍ମିଥିଲେ । କର୍ଦ୍ଦମକନ୍ୟା ମରୀଚିପତ୍ନୀ କଳାଙ୍କ ଗର୍ଭରେ କଶ୍ୟପ ଓ ପୂର୍ଣ୍ଣିମା ଜାତ ହୋଇଥିଲେ । ପୂର୍ଣ୍ଣିମାଙ୍କଠାରୁ ବିରଜ ଓ ବିଶ୍ୱଗ୍ ନାମକ ପୁତ୍ରଦ୍ୱୟ ଏବଂ ଦେବକୁଲ୍ୟା ନାମ୍ନୀକନ୍ୟା ଜନ୍ମିଥିଲେ । ଏହି ଦେବକୁଲ୍ୟା ଜନ୍ମାନ୍ତରରେ ଗଙ୍ଗା ବୋଲି ପରିଚିତା ହୋଇଥିଲେ । ତଦନନ୍ତର ଅତ୍ରି ମୁନିଙ୍କର ବଂଶ ବିସ୍ତାର ବର୍ଣ୍ଣିତ ହୋଇଅଛି । ବ୍ରହ୍ମା ବିଷ୍ଣୁ ଓ ମହେଶ୍ୱର ଅତ୍ରିଙ୍କ ପୁତ୍ରରୂପେ ଜାତ; ବ୍ରହ୍ମା ବିଷ୍ଣୁ ଓ ମହେଶ୍ୱରଙ୍କୁ ଋକ୍ଷ ପର୍ବତରେ ତପସ୍ୟା କରି ସେମାନଙ୍କଠାରୁ ବରଲାଭ କରି ଅତ୍ରି ସେମାନଙ୍କୁ ପୁତ୍ରରୂପେ ଲାଭ କରିଥିଲେ । ତଦନନ୍ତର ଅଙ୍ଗିରାଙ୍କ ବଂଶବିସ୍ତାର ବର୍ଣ୍ଣିତ ହୋଇଅଛି । ଏହି ପ୍ରସଙ୍ଗରେ ବାରଣାଦି ଉତ୍ପତ୍ତି ମଧ୍ୟ ବର୍ଣ୍ଣିତ ହୋଇଅଛି । ତଦନ୍ତେ ଭୃଗୁବଂଶ ଓ ଶୁକ୍ରାଚାର୍ଯ୍ୟାଦିଙ୍କ ଜନ୍ମ ପ୍ରସଙ୍ଗ ବର୍ଣ୍ଣିତ । ଦକ୍ଷବଂଶ ବର୍ଣ୍ଣନ, ନର ନାରାୟଣଙ୍କ ଉତ୍ପତ୍ତି ଓ ଦେବଗଣଙ୍କର ନରନାରାୟଣଙ୍କୁ ସ୍ତୁତି ଓ ଅଣଚାଶ ଅଗ୍ନିଙ୍କ ଜନ୍ମ ଓ ଦକ୍ଷକନ୍ୟା ସତୀଙ୍କ ଦେହତ୍ୟାଗ ପ୍ରସଙ୍ଗ ଉତ୍ଥାପିତ ହୋଇଅଛି, ଏହି ନର ନାରାୟଣ ପରେ ଶ୍ରୀକୃଷ୍ଣାର୍ଜ୍ଜୁନରୂପେ ଅବତୀର୍ଣ୍ଣ ହୋଇଥିବାର ମଧ୍ୟ ସୂଚିତ ହୋଇଅଛି ।

ଦକ୍ଷ ମହାଦେବଙ୍କ ସହିତ ସ୍ୱୀୟକନ୍ୟା ସତୀଙ୍କର ବିବାହ କରାଇଥିଲେ ମଧ୍ୟ ସତୀଙ୍କ ପ୍ରତି ଦକ୍ଷ ସ୍ନେହପ୍ରବଣ ନ ଥିଲେ ଏବଂ ତାଙ୍କୁ ଅନ୍ୟ କନ୍ୟାମାନଙ୍କ ତୁଲ୍ୟ ଆଦର କରୁ ନ ଥିଲେ । ଦକ୍ଷ ଦୁଇଟି ଯଜ୍ଞ କରିଥିଲେ । ପ୍ରଥମଟି ବାଜପେୟ ଓ ଦ୍ୱିତୀୟଟି ବୃହସ୍ପତିସବ; ଯଜ୍ଞାନୁଷ୍ଠାନପୂର୍ବରୁ ଥରେ ବ୍ରହ୍ମା ଓ ଶିବ ଦକ୍ଷଙ୍କ ସଭାରେ ଉପସ୍ଥିତ ଥିଲେ, ସେଠାରେ ଦକ୍ଷଙ୍କର ଅନ୍ୟ ଜାମାତାମାନେ ମଧ୍ୟ ଉପବେଶନ କରିଥିଲେ, ଦକ୍ଷ ସଭାରେ ଉପସ୍ଥିତ ହୁଅନ୍ତେ ବ୍ରହ୍ମା ଓ ମହାଦେବଙ୍କ ବ୍ୟତୀତ ଅନ୍ୟାନ୍ୟ ସମସ୍ତ ସଭାସ୍ଥ ବ୍ୟକ୍ତିମାନେ ଦକ୍ଷଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ଗାତ୍ରୋତ୍ଥାନ କରି ଦଣ୍ଡାୟମାନହେଲେ । ବ୍ରହ୍ମା ପିତା, ପୁତ୍ର ପ୍ରତି ସମ୍ମାନ ଦେଖାଇ ପୁତ୍ରଙ୍କ ଦଣ୍ଡାୟମାନ ହେବା ବିହିତ ନୁହେଁ, ତେଣୁ ତହିଁରେ ଦକ୍ଷଙ୍କର କୌଣସି ଅପମାନଘଟି ନ ଥିଲା, ମାତ୍ର ଶିବ ଜାମାତା ହୋଇ ଶ୍ୱଶୁରଙ୍କ ପ୍ରତି ଅବମାନନା କରିବାରୁ ଦକ୍ଷ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଶିବଙ୍କୁ ସଭାସ୍ଥଳରେ ତିରସ୍କାର କରିଥିଲେ ଏବଂ ଅବଶେଷରେ ଅଭିଶାପ ଦେବାକୁ ମଧ୍ୟ ଉଦ୍ୟତ ହୋଇଥିଲେ । ଉପସ୍ଥିତ ଅନ୍ୟାନ୍ୟ ସଭାସଦଗଣଙ୍କ ବିରୋଧ ସତ୍ତ୍ୱେ ଦକ୍ଷ ମହାଦେବଙ୍କ ପ୍ରତି ଅଭିଶାପ ଦେଲେ ଯେ ଇନ୍ଦ୍ରାଦି ଦେବଗଣଙ୍କ ତୁଲ୍ୟ ସେ କୌଣସି ଯଜ୍ଞଭାଗ ପାଇ ପାରିବେ ନାହିଁ । ମହାଦେବ କ୍ରୁଦ୍ଧହୋଇ ଦକ୍ଷ ସଭା ତ୍ୟାଗକରି କୈଳାସକୁ ଗମନ କରିଥିଲେ ।

ଏହି ଘଟଣା ପରେ ଉଲ୍ଲିଖିତ ଯଜ୍ଞାନୁଷ୍ଠାନ ହୋଇଥିଲେ । ଦକ୍ଷ ସେହି ଯଜ୍ଞ ସ୍ଥଳକୁ ସମସ୍ତ ଦେବତା, ଋଷି, ଗନ୍ଧର୍ବଙ୍କୁ ନିମନ୍ତ୍ରଣ କରିଥିଲେ ମଧ୍ୟ ଶିବ ଏବଂ ସତୀଙ୍କୁ ନିମନ୍ତ୍ରଣ କଲେ ନାହିଁ । ଦକ୍ଷ ଯଜ୍ଞାନୁଷ୍ଠାନ ପ୍ରସଙ୍ଗ ଲୋକ ମୁଖରେ ସର୍ବତ୍ର ପ୍ରଚାରିତ ହେଲା, ଦେବତା ଗନ୍ଧର୍ବ, ଋଷି ଓ ଋଷିପତ୍ନୀଗଣ ଦଳଦଳ ହୋଇ ଦକ୍ଷ ଯଜ୍ଞସ୍ଥଳକୁ ଯାଉଥିବାର ଦେଖି ସତୀଙ୍କର ମନେହେଲା ପିତ୍ରାଳୟକୁ ଯାଇ ଯଜ୍ଞ ଦେଖିବେ ଏବଂ ଉକ୍ତର ଉଗ୍ରଣୀ ଓ ଆତ୍ମୀୟ ସ୍ୱଜନଙ୍କ ସହିତ ଭେଟିବେ, ସେ ମହାଦେବଙ୍କ ଅନୁମତି ପ୍ରାର୍ଥନା କରିବାରୁ ମହାଦେବ ନାନାଉପଦେଶ ଦ୍ୱାରା ତାଙ୍କୁ ସେ ସଂକଳ୍ପରୁ ନିବୃତ୍ତ କରିବାକୁ ଚେଷ୍ଟା କଲେ । ମହାଦେବ କହିଲେ—ଏହି ସୁନ୍ଦର । ସ୍ୱଜନଙ୍କ ଗୃହକୁ ବିନା ନିମନ୍ତ୍ରଣରେ ଯିବାରେ କୌଣସି ଆପତ୍ତି ନାହିଁ । କିନ୍ତୁ ଯେଉଁ ସ୍ୱଜନଗଣ ଅଭିମାନ ମୁଗ୍ଧ, କେବଳ ଦୋଷଦର୍ଶୀ ସେମାନଙ୍କ ସହିତ ଆତ୍ମୀୟତା ଉଚିତ ନୁହେଁ । ତୁମ୍ଭର ପିତା ଦକ୍ଷ ଏହି ପ୍ରକୃତିର ଲୋକ, ଯେ ଅଭିମାନ ଓ ଗର୍ବରେ ବୁଡ଼ି ରହିଛନ୍ତି, ସେ ଆତ୍ମୀୟ ସ୍ୱଜନଙ୍କୁ ଅପମାନିତ କରିବାରେ ପଶ୍ଚାତପଦ ନୁହନ୍ତି । ତୁମ୍ଭ ପ୍ରତି ସେ ସ୍ନେହ ପ୍ରବଣ ହୋଇ ଆଦର ଅଭ୍ୟର୍ଥନା କରିବେ ବୋଲି ତୁମ୍ଭେ ଭାବିଥିବ, ତାହା ନୁହେଁ, କାରଣ ସେ ମୋ ପ୍ରତି ବିଦ୍ୱେଷ ଯୁକ୍ତ । ସେ ଅହଂକାର ପ୍ରବଳତା ହେତୁରୁ ଶିଷ୍ଟାଚାର ବିରହିତ । ଅକାରଣରେ ସେ ମୋ ପ୍ରତି ତିରସ୍କାର କରିଅଛନ୍ତି, ସୁତରାଂ ସେ ତୁମ୍ଭର ଜନ୍ମଦାତା ହେଲେ ମଧ୍ୟ ତାହାଙ୍କର ବା ତତ୍ ପକ୍ଷପାତୀ ବ୍ୟକ୍ତିମାନଙ୍କ ମୁଖାବଲୋକନ କରିବା ଉଚିତ ନୁହେଁ, ସ୍ତ୍ରୀଲୋକର ପିତା ଗୁରୁ ହେଲେ ମଧ୍ୟ ସ୍ୱାମୀ ମହାଗୁରୁ । ତୁମ୍ଭେ ମୋର ଏ ଉପଦେଶ ଲଙ୍ଘନ କରି ସେହି ଯଜ୍ଞସ୍ଥଳକୁ ଗଲେ ତୁମ୍ଭର ମଙ୍ଗଳ ହେବ ନାହିଁ ।”

ମହାଦେବଙ୍କ ଉପଦେଶ ବାକ୍ୟ ସତ୍ତ୍ୱେ ସତୀ ପିତ୍ରାଳୟକୁ ଯିବାକୁ ଆଗ୍ରହ ପ୍ରକାଶ କରିବାରୁ ଶିବ ଆଉ ବାଧା ଦେଲେ ନାହିଁ । ସେ ଭାବିଲେ ମୁଁ ଅଧିକ ବାଧା ଦେଲେ, ଏ ଅଭିମାନରେ ମନୋବେଦନାରେ ଦେହ ତ୍ୟାଗ କରିପାରନ୍ତି । ମହାଦେବଙ୍କ ଉପଦେଶ ବାକ୍ୟ ସତୀଙ୍କର ପିତ୍ରାଳୟ ଗମନେଚ୍ଛାରୂପ ପ୍ରବଳ ଆବେଗ ସ୍ରୋତରେ ତୃଣ ତୁଲ୍ୟ ଭାସିଗଲା ।

ଶଙ୍କର ସ୍ୱୀୟ ଅନୁଚରଗଣଙ୍କ ସହିତ ବୃଷଭରାଜରେ ସତୀଙ୍କୁ ବସାଇ ପିତ୍ରାଳୟକୁ ପଠାଇଦେଲେ; ଯଜ୍ଞସ୍ଥଳରେ ସତୀ ଉପସ୍ଥିତ ହୁଅନ୍ତେ ସ୍ୱୟଂ ଦକ୍ଷ ବା ପରିଜନବର୍ଗ କେହି ତାହାଙ୍କ ପ୍ରତି କୌଣସି ପ୍ରକାର ଆଦର ଅଭ୍ୟର୍ଥନା କଲେ ନାହିଁ । ସତୀଙ୍କ ମାତା ଓ ଭଗିନୀଗଣ ତାହାଙ୍କୁ ଆଲିଙ୍ଗନ କରି ଆସନାଦି ପ୍ରଦାନ କଲେ ମଧ୍ୟ ଅପମାନିତା ସତୀ ତାହା ଗ୍ରହଣ କଲେ ନାହିଁ, ପ୍ରଥମତଃ ଯଜ୍ଞୋତ୍ସବ ଉପଲକ୍ଷେ ତାଙ୍କୁ ବା ତାଙ୍କର ପତି ଶିବଙ୍କୁ ନିମନ୍ତ୍ରଣ କରାଗଲା ନାହିଁ, ଦ୍ୱିତୀୟତଃ ଅନିମନ୍ତ୍ରିତ ହୋଇ ଆସିଲେ ମଧ୍ୟ ତାଙ୍କପ୍ରତି ପିତା ଭ୍ରୂକ୍ଷେପ ସୁଦ୍ଧା କଲେ ନାହିଁ, ଏହାଠାରୁ ବଳି ଅପମାନ କଅଣ ହୋଇପାରେ ? ଅନ୍ୟାନ୍ୟ ଦେବତା ଓ ଋଷିମାନଙ୍କ ଉଦ୍ଦେଶ୍ୟରେ ଯଜ୍ଞଭାଗ ଅର୍ପିତ ହେଲେ ମଧ୍ୟ ଶିବଙ୍କୁ ଯଜ୍ଞଭାଗରୁ ବଞ୍ଚିତ କରାଯାଇ ଅଛି । ଏହା ଦେଖି ଆହୁରି କ୍ରୋଧରେ ପ୍ରଜ୍ୱଳିତ ହେଲେ । ସ୍ୱୀୟ ମନୋଭାବ ପିତାଙ୍କୁ ଜଣାଇଲେ । ପିତା ସତୀଙ୍କୁ ସାନ୍ତ୍ୱନାବାକ୍ୟ ଶୁଣାଇବା ଦୂରେ ଥାଉ, ଆହୁରି ଶିବନିନ୍ଦା କରିବାକୁ ଲାଗିଲେ । ସତୀ ସ୍ୱାମୀଙ୍କଠାରୁ ପିତାଙ୍କ ଅଶିଷ୍ଟାଚାର ବିଷୟ ଶୁଣିଥିଲେ, ବର୍ତ୍ତମାନ ସ୍ୱଚକ୍ଷୁରେ ତାହା ପ୍ରତ୍ୟକ୍ଷକଲେ । ସତୀ ପିତାଙ୍କୁ ଭର୍ତ୍ସନା କରି କହିଲେ “ପିତଃ, ବ୍ରହ୍ମାଦିଦେବଗଣ ଯାହାଙ୍କ ଚରଣ ନିଃସୃତ ଉତ୍ସାହ ସାଦରରେ ମସ୍ତକରେ ଗ୍ରହଣ କରନ୍ତି, ତାହାଙ୍କୁ ଆପଣ ‘ଶ୍ମଶାନବାସୀ’ “ଭସ୍ମଧାରୀ” ଇତ୍ୟାଦି ବାକ୍ୟଦ୍ୱାରା ତିରସ୍କାର କରୁଛନ୍ତି ? ଏହା ଆପଣଙ୍କର ଅଜ୍ଞତାର ନିଦର୍ଶନ । ବେଦରେ ପ୍ରବୃତ୍ତିମାର୍ଗ ଓ ନିବୃତ୍ତିମାର୍ଗ ନିର୍ଦ୍ଦେଶ କରାଯାଇଅଛି । କାମନା ପରାୟଣ ବ୍ୟକ୍ତିମାନଙ୍କପାଇଁ ଯାଗଯଜ୍ଞାଦି କାମ୍ୟକର୍ମ ନିର୍ଦ୍ଦିଷ୍ଟ ହୋଇଅଛି, ଏହା ପ୍ରବୃତ୍ତି ମାର୍ଗ, ବୈରାଗ୍ୟ ସମ୍ପନ୍ନ ବ୍ୟକ୍ତିମାନଙ୍କପାଇଁ ଶମଦମାଦି ଯେଉଁ ପଥ ନିର୍ଦ୍ଦିଷ୍ଟ ହୋଇଅଛି, ତାହା ନିବୃତ୍ତିମାର୍ଗ । ଯେଉଁମାନେ

ବଧି ନିଷେଧ ଇତ୍ୟାଦି ବିରହିତ, ସେ ନିସ୍ତ୍ରୈଗୁଣ୍ୟ ବା ତ୍ରିଗୁଣାତୀତ ଅବସ୍ଥାରେ ଉପସ୍ଥିତ ହୋଇଅଛନ୍ତି । ଆପଣ ଯେଉଁ ଐଶ୍ୱର୍ଯ୍ୟ ହେତୁରୁ ଶିବଙ୍କ ନିନ୍ଦାକରୁଛନ୍ତି, ତାହାଙ୍କ ନିକଟରେ ତାହା ଅତି ତୁଚ୍ଛ । ଆପଣ କର୍ମପଥର ଜୀବ ମୋହରେ ମୁଗ୍ଧ, ଅଣିମା, ଲଘିମା ପ୍ରଭୃତି ଅଷ୍ଟୈଶ୍ୱର୍ଯ୍ୟ ତାଙ୍କ ପଦତଳରେ ଅତ୍ୟନ୍ତ ତୁଚ୍ଛ । ମୁଁ ଆପଣଙ୍କଠାରୁ ଜାତ ହୋଇ ଏ ଜୀବନକୁ ହୀନ ମନେକରୁ ଅଛି । ସୁତରାଂ ମୁଁ ଏ ଜୀବନ ଆଉ ରଖିବନାହିଁ । ଏ ଦେହ ବିସର୍ଜନ କରିବ

ତେଜଃ ଶାଳିନୀ ମହାଶକ୍ତି ସ୍ୱରୂପା ସତୀ ପିତାଙ୍କ ସମକ୍ଷରେ ଉତ୍ତରମୁଖୀ ହୋଇ ଉପବେଶନକରି ସର୍ବାଙ୍ଗ ପୀତବସନରେ ଆବୃତ କଲେ । ଆଚମନକରି ପ୍ରାଣାୟାମାଦି ଯୋଗାଙ୍ଗ ଅନୁଷ୍ଠାନକଲେ । ଦେହ ମଧ୍ୟସ୍ଥ ବାୟୁକୁ ପରିଚାଳନା କରାଇ ଚକ୍ଷୁକୁ ଆଣିଲେ, ଏବଂ ସ୍ୱୀୟ ମନଃ ପ୍ରାଣ ଶିବଙ୍କ ପାଦପଦ୍ମରେ ଅର୍ପଣ କଲେ । ତତ୍‌କ୍ଷଣାତ୍ ସତୀଙ୍କ ସର୍ବାଙ୍ଗ ଅଗ୍ନି ପ୍ରଜ୍ୱଳିତ ହେଲା ଏବଂ ସତୀ ଦାହରେ ଦକ୍ଷ ଯଜ୍ଞର ପୂର୍ଣ୍ଣାହୁତି ହେଲା । ଚତୁର୍ଦ୍ଦିଗରୁ ଦେବତା ମାନବ ସମସ୍ତେ ହାହାକାର ଧ୍ୱନି କଲେ ଏବଂ ସମସ୍ତେ ଏକସ୍ୱରରେ କହିଲେ "ତୁମ୍ଭର ଏକୁଆଡ଼ି ଚିରକାଳ ଜନସମାଜରେ ତୁମ୍ଭର ନିନ୍ଦା ରଟନା କରିବ" । ଇତି ମଧ୍ୟରେ ଶିବାନୁଚରଗଣ ଅସ୍ତ୍ରୋତ୍ତୋଳନ କରି ଦକ୍ଷଙ୍କୁ ବିନାଶ କରିବାକୁ ଉଦ୍ୟତ ହେଲେ, ଏହା ଦେଖି ମହର୍ଷି ଭୃଗୁ ଯଜ୍ଞ ବିଘ୍ନ ନିବାରକ ମନ୍ତ୍ର ଓ ଆହୁତି ଦ୍ୱାରା ଋଭୁନାମକ ତେଜଶାଳୀ ଦେବତା ଉତ୍ପାଦନ କରିଥିଲେ ବ୍ରହ୍ମତେଜରେ ବଳୀୟାନ୍ ଏହି ଦେବଗଣ ସତୀଙ୍କ ଅନୁଚରଗଣଙ୍କୁ ବିତାଡ଼ନ କରିଥିଲେ ।

ନାରଦଙ୍କ ଠାରୁ ଶିବ ସତୀଙ୍କ ଦେହତ୍ୟାଗ ଓ ଶିବାନୁଚରବର୍ଗଙ୍କ ଅପମାନ ବିଷୟ ଶ୍ରବଣକରି କ୍ରୋଧରେ ପ୍ରଜ୍ୱଳିତ ହେଲେ । ସେ ନିଜର ମସ୍ତକରୁ ଗୋଟିଏ ଜଟା ଉତ୍ପାଟନ କରି ଭୂମିରେ ନିକ୍ଷେପ କଲେ । ତହିଁରୁ ବୀରଭଦ୍ର ଶିବାଂଶରେ ଉତ୍ପନ୍ନ ହେଲେ । ଶିବାଦେଶରେ ସେ ଦକ୍ଷଯଜ୍ଞସ୍ଥଳରେ ଉପସ୍ଥିତ ହୋଇ ଭୃଗୁଙ୍କ ଶ୍ମଶ୍ରୁ ଉତ୍ପାଟନ କରିଥିଲେ, କାରଣ ପୂର୍ବେ ସେ ଶ୍ମଶ୍ରୁ ଦେଖାଇ ଶିବଙ୍କୁ ଅପମାନିତ କରିଥିଲେ । ଭଗଦେବଙ୍କର ଦୁଇଚକ୍ଷୁ ଓ ସୂର୍ଯ୍ୟ ଦେବଙ୍କର ଦନ୍ତ ଉତ୍ପାଟନ କରି ଦକ୍ଷଙ୍କୁ ଆକ୍ରମଣ କଲେ । ଦକ୍ଷ ବିପୁଳପରାକ୍ରମଶାଳୀ ଥିଲେ ମଧ୍ୟ ଯଜ୍ଞୀୟ ପଶୁବଧ କାଷ୍ଠ ଦ୍ୱାରା ତାଙ୍କର ଶିରଚ୍ଛେଦନ କରି ହୋମକୁଣ୍ଡରେ ତାହା ନିକ୍ଷେପ କରିଥିଲେ । ଯଜ୍ଞଗୃହ ମଧ୍ୟ ଭସ୍ମୀଭୂତ ହେଲା ।

ଦେବଗଣ ବ୍ରହ୍ମା ଓ ବିଷ୍ଣୁଙ୍କ ନିକଟରେ ସମସ୍ତ ବିଷୟ ନିବେଦନ କରିବା ପୂର୍ବରୁ ସେମାନେ ତାହା ଅବଗତ ଥିଲେ ।

ବ୍ରହ୍ମା ଦକ୍ଷଙ୍କ ପିତା ହେଲେ ମଧ୍ୟ ଦକ୍ଷଙ୍କର ରଜଃ ଓ ତମୋଗୁଣକୁ ସମର୍ଥନ କରି ନ ଥିଲେ । ବ୍ରହ୍ମା ଓ ବିଷ୍ଣୁ ଆଗନ୍ତୁକ ଦକ୍ଷ ପକ୍ଷୀୟ ଦେବତା ଓ ବ୍ରାହ୍ମଣାଦିଙ୍କୁ ଉପଦେଶ ଦେଲେ—ତୁମ୍ଭେମାନେ ଶୀଘ୍ର ଯାଇଁ ଶିବଙ୍କ ନିକଟରେ କ୍ଷମା ପ୍ରାର୍ଥନା କର । ପରେ ବ୍ରହ୍ମା ଓ ବିଷ୍ଣୁ କୈଳାସ ପର୍ବତରେ ଉପସ୍ଥିତହୋଇ ଶିବଙ୍କର ସନ୍ତୋଷ ବିଧାନ କରିଥିଲେ । ସେମାନେ କହିଲେ "ହେ ମଙ୍ଗଳମୟ ! ଆପଣଙ୍କ ଇଚ୍ଛାନୁସାରେ ବେଦୋକ୍ତ କର୍ମାଦି ସାଧିତ ହୋଇଥାଏ, ଆପଣ ବେଦୋକ୍ତ କର୍ମାଦିର ରକ୍ଷାକର୍ତ୍ତା । ଆପଣ ମାୟାତୀତ, ମାୟାମୁଗ୍ଧ ଜୀବ ଦକ୍ଷଙ୍କର ଅପରାଧ ମାର୍ଜନା କରନ୍ତୁ । ଦୁର୍ଦ୍ଦାନ୍ତ ଯାଜ୍ଞିକମାନେ ଆପଣଙ୍କର ଯଜ୍ଞଭାଗ ପ୍ରଦାନ କରି ନାହାନ୍ତି, ତେଣୁ ଯଜ୍ଞକର୍ମ ଭ୍ରଷ୍ଟ ହୋଇଅଛି । ଆପଣ ଆଶୀର୍ବାଦ କରନ୍ତୁ, ଯଜ୍ଞକର୍ମ ସମ୍ପାଦିତ ହେଉ, ଦକ୍ଷ ପୁନର୍ଜନ୍ମ ଲାଭକରନ୍ତୁ, ଏହାହିଁ ଆମ୍ଭମାନଙ୍କର ପ୍ରାର୍ଥନା । ଦକ୍ଷ ପୁନର୍ଜୀବନ ଲାଭକଲେ ସତ୍ୟ ମାତ୍ର ତାଙ୍କର ମୁଣ୍ଡ ଭସ୍ମୀଭୂତ ହୋଇଥିବାରୁ ଗୋଟିଏ ଛାଗମୁଣ୍ଡ ତାଙ୍କ ଦେହରେ ସଂଯୁକ୍ତ ହେଲା । ଭୃଗୁ ଓ ସୂର୍ଯ୍ୟ ପ୍ରଭୃତି ଦନ୍ତ, ଚକ୍ଷୁ ପ୍ରଭୃତିଲାଭ କଲେ ମଧ୍ୟ ସେ ଗୁଡ଼ିକ ସ୍ୱାଭାବିକ କାର୍ଯ୍ୟକାରୀ ହେଲା ନାହିଁ । ଯଜ୍ଞେଶ୍ୱର ବିଷ୍ଣୁଙ୍କ ସମସ୍ତେ ସ୍ତୁତିକରିଥିଲେ । ଯଜ୍ଞକାର୍ଯ୍ୟ ସୁସମ୍ପାଦିତ ହେଲା ।

## (୨) ଧ୍ରୁବ ତପସ୍ୟା :—

ମୈତ୍ରେୟ ମନୁବଂଶ ବର୍ଣ୍ଣନା ପ୍ରସଙ୍ଗରେ ମନୁଙ୍କର କନ୍ୟାମାନଙ୍କ ବଂଶ ବର୍ଣ୍ଣନା କଲେ । ଏହି ପ୍ରସଙ୍ଗରେ ବ୍ରହ୍ମାଙ୍କ ପୁତ୍ର ମରୀଚି ପ୍ରଭୃତିଙ୍କ ବଂଶ ମଧ୍ୟ ବର୍ଣ୍ଣନା କଲେ । ସନକ, ସନନ୍ଦ, ସନାତନ ଓ ସନତ୍କୁମାର ଚତୁଷ୍ଟୟ ଓ ଋଭୁ, ହଂସ, ଅରୁଣି, ଯତି ଓ ନାରଦ ପ୍ରଭୃତି ଊର୍ଦ୍ଧ୍ୱରେତା ଓ ନୈଷ୍ଠିକ ବ୍ରହ୍ମଚାରୀ ଥିଲେ । ଏମାନଙ୍କର ବଂଶ ବୃଦ୍ଧି ହୋଇନାହିଁ, ଅଧର୍ମ ମଧ୍ୟ ବ୍ରହ୍ମାଙ୍କର ପୁତ୍ର । ଅଧର୍ମଙ୍କଠାରୁ ମିଥ୍ୟା, ଦମ୍ଭ, କପଟତା, ଲୋଭ, ଶଠତା, କ୍ରୋଧ, ହିଂସା କଳହ ପ୍ରଭୃତି ଉତ୍ପନ୍ନ ।

ବର୍ତ୍ତମାନ ମନୁପୁତ୍ର ଉତ୍ତାନପାଦଙ୍କ ପ୍ରସଙ୍ଗ ଆଲୋଚନାକରି ମୈତ୍ରେୟ ବିଦୁରଙ୍କୁ ଶୁଣାଉଥିଲେ । ଉତ୍ତାନପାଦଙ୍କର ଦୁଇ ସ୍ତ୍ରୀ—ସୁରୁଚି ଓ ସୁନୀତି । ସୁରୁଚିଙ୍କ ଗର୍ଭରେ ଉତ୍ତମ ଓ ସୁନୀତିଙ୍କ ଗର୍ଭରେ ଧ୍ରୁବ ଜାତ ହୋଇଥିଲେ । ରାଜାଉତ୍ତାନପାଦ ସୁରୁଚିଙ୍କ ପ୍ରତି ଅଧିକ ଅନୁରକ୍ତ । ଦିନେ ଉତ୍ତମ ରାଜାଙ୍କ କ୍ରୋଡ଼ରେ ବସିଥିଲେ, ରାଜା ତାହାଙ୍କୁ ଆଦର କରୁଥିଲେ, ଏମନ୍ତ ସମୟରେ ଧ୍ରୁବ ସେଠାକୁଆସି ପିତାଙ୍କ କ୍ରୋଡ଼ରେ ବସିବାକୁ ଗଲେ । ରାଜାପୁତ୍ରଙ୍କୁ ସ୍ନେହ କରିବା ଦୂରେ ଥାଉ, ତାହା ଆଡ଼କୁ ଟିକିଏ ଚାହିଁଲେ ନାହିଁ । ସୁରୁଚି ଆସି ତାଙ୍କୁ ତିରସ୍କାରକରି ରାଜାଙ୍କନିକଟରୁ ବିତାଡ଼ିତ କରିଦେଲେ । ସୁରୁଚି କହିଲେ "ଆରେ ଅଜ୍ଞାନବାଳକ ! ତୁମୋଗର୍ଭରେ ଜନ୍ମିଥିଲେ ରାଜାସନରେବସିବାକୁ ସାହସକରନ୍ତୁ । ତୁ ତପସ୍ୟାକରି ଯଦି ମୋଗର୍ଭରେ ଅନ୍ୟ ଜନ୍ମଲାଭ କରିପାରୁ ତାହା ହେଲେ ଏପରିସାହସ କରିପାରୁ ।" ବିମାତାର ବାକ୍ୟରେ ଧ୍ରୁବ କାନ୍ଦିକାନ୍ଦି ନିଜ ମା ପାଖକୁ ଗଲେ । ମା ସବୁକଥା ଶୁଣି କହିଲେ "ବାବା ଧ୍ରୁବ ! ଏ ଦୋଷ ମୋର ଅନ୍ୟ କାହାର ଦୋଷ ନାହିଁ । ମୁଁ ପୂର୍ବରେ ହୁଏତ କାହାର ପ୍ରାଣରେ କୌଣସି କଷ୍ଟ ଦେଇଛି, ତାହାରଫଳ ଆଜି ମୋତେ ଭୋଗିବାକୁ ପଡୁଛି । ଭଗବାନଙ୍କୁ ଆରାଧନା କରିବା କଥା ଯାହା ତୋର ବିମାତା କହିଛନ୍ତି, ତାହା ସତ, ତାଙ୍କ କରୁଣା ବିନା କାହାର କୌଣସି ଅଭୀଷ୍ଟ ସିଦ୍ଧି ହୋଇ ନ ପାରେ । ଜଗତରେ ସର୍ବଭୂତ-ବିଧାତା ସେହି । ତୁ ତାଙ୍କର ଶ୍ରୀଚରଣକମଳ ଆରାଧନା କର, ସର୍ବଦୁଃଖ ଦୂରୀଭୂତ ହେବ ।"

ଶିଶୁ ଧ୍ରୁବ ବିମାତାର ତୀବ୍ର ବାକ୍ୟରେ ବ୍ୟଥିତ । ଏଣେ ମାତାଙ୍କ ଠାରୁ ଭଗବତ୍ ଚରଣରେ ଆତ୍ମ ସମର୍ପଣ କରିବାକୁ ଉପଦେଶ ବାଣୀକୁ ଗୁରୁମନ୍ତ୍ର ମଣି ଶ୍ରୀବିଷ୍ଣୁ ଚରଣାରବିନ୍ଦରେ ଆତ୍ମ ସମର୍ପଣ କରିବାକୁ ବାହାରି ପଡ଼ିଲେ, ମାତା ପିତା ସଂସାର ସମସ୍ତ ତାଙ୍କ ନିକଟରେ ସେତେବେଳେ ତୁଚ୍ଛ, ଶିଶୁ ହେଲେ ମଧ୍ୟ ଜୀବନର ମାୟା ତ୍ୟାଗ କରିଥିବାରୁ ଘୋର ଅରଣ୍ୟରେ ତାଙ୍କ ହୃଦୟରେ କୌଣସି ପ୍ରକାର ଭୀତି ଜନ୍ମି ନ ଥିଲା । ଶ୍ରୀକୃଷ୍ଣ ଚରଣାରବିନ୍ଦ ପ୍ରାପ୍ତି ତାଙ୍କର ଏକମାତ୍ର ଲକ୍ଷ୍ୟ ।

ଭକ୍ତ ଶ୍ରେଷ୍ଠ ଦେବର୍ଷି ନାରଦ ଧ୍ରୁବଙ୍କୁ ଭେଟିଲେ । ନାରଦଙ୍କୁ ଆମ୍ଭେମାନେ ପ୍ରତି କ୍ଷେତ୍ରରେ ଜଟିଳତା ଦେବର୍ଷି ସମାଧାନ ସ୍ଥଳରେ ଉପସ୍ଥିତ ହେବାର ଦେଖୁଁ । କେହି କେହି ନାରଦଙ୍କ ଚରିତ୍ରର ମହତ୍ତ୍ୱ ହୃଦୟଙ୍ଗମ କରି ନ ପାରି, ତାହାଙ୍କୁ 'କଳିଆ' ବା କଳହି ପ୍ରିୟ ବୋଲି ବିଦ୍ରୂପ କରିଥାନ୍ତି ।

କିନ୍ତୁ ପ୍ରଥମ ସ୍କନ୍ଧରେ ନାରଦଙ୍କ ବୃତ୍ତାନ୍ତ ଓ ଜନ୍ମ ପ୍ରସଙ୍ଗ ଓ ଭକ୍ତିସୂତ୍ର ଇତ୍ୟାଦି ଉଲ୍ଲେଖ କରା ଯାଇଅଛି । ନାରଦ ଋଷି ହେଉନ୍ତୁ, ଦେବର୍ଷି ହେଉନ୍ତୁ, ଯାହା ହେଉନ୍ତୁ ପଛକେ, ସବୁ ଯୁଗରେ, ସବୁ ଶ୍ରେଣୀର ମାନବ, ସୁର, ଅସୁର ସମସ୍ତଙ୍କ ନିକଟରେ ସେ ଉପଦେଷ୍ଟା ରୂପେ ଉପସ୍ଥିତ ଥିବାର ପୁରାଣ ମାନଙ୍କରୁ ଦେଖାଯାଏ । ବୈକୁଣ୍ଠବାସୀ ବିଷ୍ଣୁଙ୍କ ନିକଟକୁ ତାଙ୍କର ପ୍ରବେଶ ପାଇଁ ଅନୁମତିର ଆବଶ୍ୟକତା ନ ଥିଲା । ରାବଣ ସହିତ ଶ୍ରୀରାମଚନ୍ଦ୍ରଙ୍କ ଯୁଦ୍ଧବେଳେ ରାବଣ ନିକଟରେ ନାରଦ ଉପଦେଷ୍ଟାରୂପେ ଉପସ୍ଥିତ, କଂସ ମଲ୍ଲସଭା ଆୟୋଜନ କରି ଶ୍ରୀକୃଷ୍ଣ ଓ ବଳରାମଙ୍କୁ ବଧ କରିବାର ଆୟୋଜନ କଲାବେଳେ, ରାତ୍ରି ଅଧରେ ନାରଦ କଂସ ନିକଟରେ ଉପସ୍ଥିତ । ତାହାହେଲେ ମହର୍ଷି ନାରଦ କଣ ଅମର, ତେଣେ ନାରଦ କଣ ସବୁ ଯୁଗରେ, ସବୁ ସ୍ଥାନରେ, ସବୁ ଶ୍ରେଣୀର ଲୋକଙ୍କ ନିକଟରେ ଉପସ୍ଥିତ ହୋଇ ଉପଦେଶ ଦେଉଥିଲେ ? 'ନାରଦ' ଯେ ହେଉନ୍ତୁ ପଛକେ, ସେ ମାନବ, ଦେବତା, ଋଷି ସମସ୍ତଙ୍କର ଉପଦେଷ୍ଟା ।

ମନୁଷ୍ୟର ହୃଦୟ ମଧ୍ୟରେ ସତ୍ ଅସତ୍, ପାପ ପୁଣ୍ୟ, ଚେତନ ଅଚେତନ, ଉଚ୍ଚ ନୀଚ ଭାବ ମଧ୍ୟରେ ସର୍ବଦା ବିରୋଧ ଲାଗିଅଛି । ନରହନ୍ତା ନରହତ୍ୟା କରିବାକୁ ଉଦ୍ୟତ ହେଲାବେଳେ ମଧ୍ୟ ତାହାର ମନରେ ଦ୍ୱିଧା ଭାବ ଆସୁଛି । ତାହାର ନୀଚ ପ୍ରବୃତ୍ତି ଓ ଉଚ୍ଚ ପ୍ରବୃତ୍ତିର ଦ୍ୱନ୍ଦ୍ୱରେ ନୀଚ ପ୍ରବୃତ୍ତି ଯେତେବେଳେ ଜୟୀ ହେଉଅଛି, ସେତେବେଳେ ସେ ନରହତ୍ୟା କରୁଅଛି । ମୋ ମତରେ ମନୁଷ୍ୟର ହୃଦୟ ମଧ୍ୟସ୍ଥ ଏହି ଦ୍ୱନ୍ଦ୍ୱ ପ୍ରବୃତ୍ତିକୁ ନାରଦଙ୍କର କଳହ ପ୍ରକୃତି ରୂପେ ଚିତ୍ର କରି ଯାଇଅଛି । ନାରଦ ବିବେକ ରୂପୀ, ମନୁଷ୍ୟର ବିବେକ ତାହାର ପାପ ପୁଣ୍ୟ କର୍ମ ସାଧନ ବେଳେ ନାରଦ ରୂପେ ଉପଦେଷ୍ଟା ହୋଇ ଉପସ୍ଥିତ ହୁଏ । ଏହି ବିବେକ ଶକ୍ତି ମାନବକୁ ସତ୍ ମାର୍ଗରେ ପରିଚାଳନା କରେ, ବିବେକହୀନତା ହେତୁରୁ ସେ ଅସତ୍‌ମାର୍ଗ ଅବଲମ୍ବନ କରେ, ଏହାହିଁ ନାରଦଙ୍କର ଯଥାର୍ଥ ଚିତ୍ର ।

ସେ ହେଉ ନାରଦ ଧ୍ରୁବ ନିକଟରେ ଉପସ୍ଥିତ ହୋଇ ସାଧନା ମାର୍ଗର କଠୋରତା ନିର୍ଦ୍ଦେଶ କରିଥିଲେ । ଧ୍ରୁବ ସାଧନାର କଠୋରତା ହେତୁରୁ ଯାହେ ସଙ୍କଳ୍ପରୁ ବିରତହେବ, ତେଣୁ ନାରଦ ତାହାର ହୃଦୟରେ ଦୃଢ଼ତା ସଞ୍ଚାର କରାଇବାକୁ ଉପସ୍ଥିତ ହୋଇଥିଲେ । ସାଧାରଣ ମନୁଷ୍ୟ ଦୁଃଖ ବା ଅଭିମାନ ବଶତଃ ଯେଉଁ ମାର୍ଗ ଅବଲମ୍ବନ କରେ, ସେ ଦୁଃଖ ବା ଅଭିମାନ ଭୁଲିଗଲେ ସେ ସଙ୍କଳ୍ପରୁ ବିରତ ହୁଏ, ଧ୍ରୁବ ସେପରି ଶିଶୁ ନୁହେଁ, ଏହା ନାରଦ ଜାଣୁଥିଲେ, ତଥାପି ତାହାର ହୃଦୟରେ ସଙ୍କଳ୍ପ ସିଦ୍ଧିପାଇଁ ଦୃଢ଼ତା ଉତ୍ପାଦନ ପାଇଁ ନାରଦ ଉପସ୍ଥିତ ହେଲେ । ନାରଦ କହିଲେ 'ବତ୍ସ ଧ୍ରୁବ ! ତୁ ଶିଶୁ, ତୋର ବର୍ତ୍ତମାନ ଖେଳିବାର ସମୟ, ତୋ ପକ୍ଷରେ ଭଗବତ୍ ସାଧନ କଠୋର କର୍ମ, ଏହା ଦୁର୍ଗମ ପଥ—

"ଦୁର୍ଗମ ପଥ ଏ ଭଜନ, ଭୟେ ଛାଡ଼ନ୍ତି ମୁନିଜନ"

ଭଗବତ୍ ପ୍ରାପ୍ତି ମାର୍ଗ ଦୁର୍ଗମ, ମୁନିମାନେ ସୁଦ୍ଧା ସେ ପଥକୁ ଦୁର୍ଗମ ଜାଣିକରି ଭୟରେ ସେ ପଥ ପରିତ୍ୟାଗ କରନ୍ତି । ତୁ କି ସାହସରେ ଏ ପଥର ପଥିକ ହେବାକୁ ବସିଅଛୁ ? ବର୍ତ୍ତମାନ ଏଥିରୁ କ୍ଷାନ୍ତ ହୁଅ । ପରିଣତ ବୟସରେ ଭଗବତ୍ ଆରାଧନା କରିବୁ' ଦେବର୍ଷି ନାରଦ ଧ୍ରୁବର ମାନସିକ ଦୃଢ଼ତା ପରୀକ୍ଷା ନିମନ୍ତେ ନାନା ଯୁକ୍ତି କଲେ, ଧ୍ରୁବ ନିଜର ଲକ୍ଷ୍ୟରୁ ଅଟଳ ଥିଲେ, ଧ୍ରୁବର ଧ୍ରୁବବାକ୍ୟ ଶୁଣି ନାରଦ କହିଲେ 'ମା ତୋତେ ଯେ ଭଗବାନଙ୍କ ଆରାଧନା କରିବାକୁ ଉପଦେଶ ଦେଇଅଛନ୍ତି ତାହା ଯଥାର୍ଥ । ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବର୍ଗ ମଧ୍ୟରୁ ଯେ ଯାହା କାମନା କରୁ ପଛକେ ସେହି ଶ୍ରୀ ହରିଙ୍କ କୃପା ନ ପାଇଲେ, ତାହା ଲାଭ କରି ନ ପାରେ । ସେ ସର୍ବ ସିଦ୍ଧିଦାତା, ସର୍ବ ଫଳଦାତା, ତାଙ୍କୁ ଏକାନ୍ତ ମନରେ ଧ୍ୟାନ କର, ତାଙ୍କର ଚରଣ ବନ୍ଦନା କର, ତାଙ୍କୁ ଆରାଧନା କର, ସର୍ବ କର୍ମର ଫଳ ପ୍ରାପ୍ତ ହେବୁ ।' ମହର୍ଷି ନାରଦ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ, ସମାଧି ଏହି ଅଷ୍ଟାଙ୍ଗ ଯୋଗବିଧି ଧ୍ରୁବକୁ ଶିକ୍ଷା ଦେଇଥିଲେ । ଭଗବତ୍ ପ୍ରାପ୍ତି ନିମନ୍ତେ ପ୍ରାଣରେ ଐକାନ୍ତିକ ଦୃଢ଼ତା ଜନ୍ମିଲେ ସୁଦ୍ଧାର ଅଭାବ ହୁଏ ନାହିଁ । "ଓଁ ନମୋ ଭଗବତେ ବାସୁଦେବାୟ" ଏହି ଦ୍ୱାଦଶାକ୍ଷର ମନ୍ତ୍ରରେ ଧ୍ରୁବ ନାରଦଙ୍କ କର୍ତ୍ତୃକ ଦୀକ୍ଷିତ ହୋଇଥିଲେ । ନାରଦଙ୍କ ଉପଦେଶ ମତେ ଧ୍ରୁବ ଯମୁନାତୀର ବର୍ତ୍ତୀ ମଧୁବନକୁ ଗମନ କରି ସେଠାରେ ଭଗବତ୍ ଶ୍ରୀ ଚରଣକମଳରେ ଆତ୍ମ ନିବେଦନ କରିଥିଲେ । ଧ୍ରୁବ ପ୍ରତିଦିନ ଦିନ ଅନ୍ତରରେ କଇଁଥ ଓ ବରକୋଳି ଭକ୍ଷଣ କରିଥିଲେ । ଏହିପରି ପ୍ରଥମ ମାସ ଅତିବାହିତ ହେଲା । ଦ୍ୱିତୀୟମାସରେ ଷଷ୍ଠଦିବସରେ ତୃଣ ଓ ପତ୍ରାଦି ଭକ୍ଷଣକରିଥିଲେ । ତୃତୀୟମାସରେ ନବମଦିନରେ ଜଳପାନ ମାତ୍ର କରିଥିଲେ । ଚତୁର୍ଥ ମାସରେ ପ୍ରତି ଦ୍ୱାଦଶ ଦିବସ ଉତ୍ତାରୁ ବାୟୁ ମାତ୍ର ଆହାର କରିଥିଲେ । ପଞ୍ଚମ ମାସରେ ସେ ବାୟୁ ନିରୋଧ କରି ଏକ ପାଦରେ ଦଣ୍ଡାୟମାନ ହୋଇ ଶ୍ରୀହରି ଚରଣରେ ଆତ୍ମ ନିବେଦନ କରିଥିଲେ । ଧ୍ରୁବଙ୍କ ଶ୍ୱାସ ପ୍ରଶ୍ୱାସ ନିରୋଧ ସଙ୍ଗେ ସଙ୍ଗେ ସମସ୍ତ ବ୍ରହ୍ମାଣ୍ଡର ଶ୍ୱାସ ପ୍ରଶ୍ୱାସ ନିରୁଦ୍ଧ

ହୋଇଗଲା । ଦେବତାମାନେ ଶ୍ରୀହରିଙ୍କୁ ନିଜ ନିଜର କଷ୍ଟ ଜଣାଇଲେ । ବିଷ୍ଣୁ ଗରୁଡ଼ ପୃଷ୍ଠରେ ଆସି ଧ୍ରୁବର ସମକ୍ଷରେ ଉପସ୍ଥିତ ହେଲେ ଏବଂ ତାଙ୍କୁ ଦର୍ଶନ କଲା ମାତ୍ରେ ପଞ୍ଚମ ବର୍ଷୀୟ ବାଳକ ଧ୍ରୁବ ମୁଖରୁ ଅମୃତମୟୀ ସ୍ତୁତି ବାକ୍ୟ ସ୍ରବିଲା । ଭଗବାନ୍ ଶ୍ରୀହରି ଧ୍ରୁବ ପ୍ରତି ପ୍ରସନ୍ନ ହୋଇ ତାଙ୍କୁ ଧ୍ରୁବଲୋକ ପ୍ରଦାନ କଲେ ।

ଏଣେ ରାଜା ଉତ୍ତାନପାଦଙ୍କର ଚୈତନ୍ୟ ଉଦୟ ହେଲା । ସେ କ୍ଷୁଦ୍ର ଶିଶୁ ସନ୍ତାନ ପ୍ରତି ଯେଉଁ ଅନ୍ୟାୟ ଆଚରଣ କରି ଅଛନ୍ତି, ସେଥିପାଇଁ ତାଙ୍କର ଅନୁତାପ ଆସିଲା । ଦେବର୍ଷି ନାରଦ ଆସି ଉତ୍ତାନପାଦଙ୍କୁ ସାନ୍ତ୍ୱନା ଦେଇଥିଲେ ।

ଧ୍ରୁବ ଭଗବତ୍ କୃପା ଲାଭ କରି ସ୍ୱଦେଶକୁ ଫେରି ଜନକ ଜନନୀଙ୍କ ଚରଣ ବନ୍ଦନା କରିଥିଲେ ।

ଧ୍ରୁବଙ୍କର ଭ୍ରାତା ଉତ୍ତମ ପାର୍ବତ୍ୟ ପ୍ରଦେଶରେ ଭ୍ରମଣ କରୁ କରୁ ଯକ୍ଷମାନଙ୍କ କର୍ତ୍ତୃକ ନିହତ ହୋଇଥିଲେ । ଉତ୍ତମଙ୍କ ମାତା ପୁତ୍ରର ଅନୁସନ୍ଧାନରେ ଗମନ କରି ତାଙ୍କର ମଧ୍ୟ ସେହି ଦଶା ଘଟିଲା । ଧ୍ରୁବ ଭ୍ରାତା ଓ ବିମାତାଙ୍କ ବଧ ହେତୁ କ୍ରୁଦ୍ଧ ହୋଇ ଯକ୍ଷମାନଙ୍କ ସହିତ ଯୁଦ୍ଧ କରିଥିଲେ । ଅବଶେଷରେ ମନୁଙ୍କ ଉପଦେଶରେ ଧ୍ରୁବ ଯୁଦ୍ଧରୁ ବିରତ ହୋଇଥିଲେ ଏବଂ କୁବେରଙ୍କଠାରୁ ବର ଲାଭ କରିଥିଲେ । ଅଷ୍ଟମ ଅଧ୍ୟାୟଠାରୁ ଦ୍ୱାଦଶ ଅଧ୍ୟାୟ ପର୍ଯ୍ୟନ୍ତ ଏହି ପାଞ୍ଚି ଅଧ୍ୟାୟରେ ଧ୍ରୁବଚରିତ ବର୍ଣ୍ଣିତ ହୋଇଅଛି ।

**( ଗ ) ବେଣରାଜ ପ୍ରସଙ୍ଗ—**

ତଦନନ୍ତର ତ୍ରୟୋଦଶ ଅଧ୍ୟାୟ ଠାରୁ ପଞ୍ଚଦଶ ଅଧ୍ୟାୟ ପର୍ଯ୍ୟନ୍ତ ବେଣରାଜ ଚରିତ ବର୍ଣ୍ଣିତ ହୋଇଅଛି । ବେଣ ଜଣେ ଅନାର୍ଯ୍ୟ ରାଜା ଥିବାର ଅନୁମିତ ହୁଏ । ଭଗବାନ୍ ନାରଦ ଧ୍ରୁବଲୋକର ମହିମା ଦେଖି ପ୍ରଚେତାମାନଙ୍କ ଯଜ୍ଞରେ ତିନୋଟି ଶ୍ଳୋକରେ ଧ୍ରୁବଙ୍କର ମହିମା ଗାନ କରିଥିଲେ । ଏହିଠାରୁ ପ୍ରଚେତାମାନଙ୍କର ବଂଶାନୁ ଚରିତ ବର୍ଣ୍ଣିତ ହୋଇଅଛି । ଧ୍ରୁବଙ୍କ ବଂଶରେ ପୃଥୁରାଜାଙ୍କର ଜନ୍ମ, ତାହାଙ୍କର ପ୍ରପୌତ୍ର ପ୍ରାଚୀନ ବର୍ହି, ସେହି ପ୍ରାଚୀନ ବର୍ହିଙ୍କ ପୁତ୍ର ପ୍ରଚେତାଗଣ । ଧ୍ରୁବଙ୍କର ଉତ୍କଳ, ବତ୍ସର ଓ କଳ୍ପ ନାମରେ ତିନୋଟି ପୁତ୍ର ଜନ୍ମିଥିଲେ ।

ଅଙ୍ଗଙ୍କଠାରୁ ବେଣଙ୍କର ଉତ୍ପତ୍ତି, ସେ ଅତ୍ୟନ୍ତ ଦୁର୍ଦ୍ଦାନ୍ତ । ପୁତ୍ରର ସ୍ୱଭାବରେ ବିରକ୍ତ ହୋଇ ଅଙ୍ଗ ଗୃହତ୍ୟାଗୀ ହୋଇଥିଲେ । ବିଦୁରଙ୍କ ପ୍ରଶ୍ନାନୁସାରେ ଧାର୍ମିକ ଅଙ୍ଗଙ୍କର କି ହେତୁରୁ ବେଣତୁଲ୍ୟ ଦୁର୍ବୃତ୍ତ ସନ୍ତାନ ଜନ୍ମିଲା ଏହା ବ୍ୟାଖ୍ୟା କରିବାକୁ ଯାଇଁ ମୈତ୍ରେୟ କହିଲେ "ଅଙ୍ଗ ଏ ଜନ୍ମରେ ପୁଣ୍ୟଶାଳୀ ହେଲେ ମଧ୍ୟ ଜନ୍ମାନ୍ତରୀଣ କୌଣସି ଦୁଷ୍କୃତ ହେତୁରୁ ତାହାର ଫଳଭୋଗ ସ୍ୱରୂପ ଏପରି ପୁତ୍ର ଜନ୍ମିଥିଲା । ଏ ଜନ୍ମରେ ଯାଗ ଯଜ୍ଞାଦି ଅନୁଷ୍ଠାନ କରି ପୁତ୍ର ଉତ୍ପାଦନୋପଯୋଗୀ ସୁକୃତ ଲାଭ କରିଥିଲେ ମଧ୍ୟ ପୂର୍ବ ଜନ୍ମର କର୍ମଫଳ ଭୋଗ କରିବାକୁ ହେବ ।" ଯେପରି ରାବଣ ପୁଲସ୍ତ୍ୟ ମୁନିଙ୍କର ବଂଶଧର ହେଲେ ମଧ୍ୟ ଦୁର୍ଦ୍ଦାନ୍ତ, ନଷ୍ଟଚରିତ୍ର ଥିଲା, ବେଣ ଚରିତ ସେହିପରି । ସେ ମାତାମହ ଦୋଷରୁ ରାକ୍ଷସ ହୋଇଥିଲା । ବେଣ ପ୍ରଜାପୀଡ଼କ, ଦେବତା, ବ୍ରାହ୍ମଣ, ଋଷି ସମସ୍ତଙ୍କ ପ୍ରତି ଅନିଷ୍ଟକାରୀ । ଋଷିଗଣ ତାହାକୁ ବିନାଶ କରିବାକୁ ବାଧ୍ୟ ହୋଇଥିଲେ । ବେଣଙ୍କ ମୃତ୍ୟୁରେ ଅରାଜକତା ଉପସ୍ଥିତ ହେଲା, ବେଣଙ୍କର ଊରୁଦେଶ ମନ୍ଥନ କରନ୍ତେ ତହିଁରୁ ଗୋଟିଏ ପୁତ୍ର ଜନ୍ମିଲା, ମାତ୍ର ସେ ରାଜ୍ୟରକ୍ଷା କରିବାକୁ ଉପଯୁକ୍ତ ହେଲା ନାହିଁ । ସେ ଅତ୍ୟନ୍ତ କୁତ୍ସିତ, ସେ ଜନ୍ମହେଲା ମାତ୍ରେ କହିଲା—"ମୁଁ କି କାର୍ଯ୍ୟ କରିବି ମୋତେ ଆଦେଶ କରନ୍ତୁ ।" ସେମାନେ କହିଲେ 'ନିଷୀଦ' ଅର୍ଥାତ୍ 'ବସିରୁହ ।' ତେଣୁ ସେ 'ନିଷାଦ' ନାମରେ ଖ୍ୟାତ ହେଲା । କାଳକ୍ରମେ ତାହାର ବଂଶଧରମାନେ ନିଷାଦ ବା ବନ୍ୟଜାତି ରୂପେ ପାର୍ବତ୍ୟ ପ୍ରଦେଶରେ ବାସ କଲେ ।

ମୁନିଗଣ ପୁନଶ୍ଚ ବେଣଙ୍କ ମୃତଦେହ ଅବଲମ୍ବନ କରି ତାଙ୍କର ଦକ୍ଷିଣ ହସ୍ତ ମନ୍ଥନ କରନ୍ତେ ତହିଁରୁ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଜନ୍ମିଲେ । ପୁତ୍ରର ନାମ ହେଲା ପୃଥୁ ଓ କନ୍ୟାର ନାମ ହେଲା

ଅଛି । ପୃଥୁଙ୍କ ଦକ୍ଷିଣ ହସ୍ତରେ ସୁଦର୍ଶନ ଚକ୍ର ଚିହ୍ନ ଓ ପଦରେ ପଦ୍ମଚିହ୍ନ ଥିବାରୁ ସେହି ପୃଥୁ ଓ କନ୍ୟାଙ୍କୁ ବିଷ୍ଣୁଙ୍କର ଓ ତାହାଙ୍କର ମହାଶକ୍ତି ଲକ୍ଷ୍ମୀସ୍ୱରୂପା ଜ୍ଞାନ କରିଥିଲେ ।

## ( ୪ ) ପୃଥୁ ଚରିତ;

ପୃଥୁ ଆଦିରାଜା ରୂପେ ଅବତୀର୍ଣ୍ଣ ହୋଇଥିଲେ, ପୃଥୁ ଧାର୍ମିକ, ବିଷ୍ଣୁଭକ୍ତ ଓ ପ୍ରଜାପାଳକ ଥିଲେ । ପୃଥୁଙ୍କ ରାଜ୍ୟାଭିଷେକ ଦିନରୁ ତାଙ୍କର ନିଷେଧ ସତ୍ତ୍ୱେ ବୈତାଳିକମାନେ ତାଙ୍କର ଗୁଣଗାନ କରୁଥିଲେ ଏବଂ ପୃଥୁ ସେମାନଙ୍କୁ ପୁରସ୍କାର ପ୍ରଦାନ କରିଥିଲେ । ଇତି ମଧ୍ୟରେ ଦୁର୍ଭିକ୍ଷ ଉପସ୍ଥିତ ହେଲା, ପ୍ରଜାମାନେ ହାହାକାର କରିଥିଲେ । ପୃଥୁ ଧ୍ୟାନରେ ଜାଣିପାରିଲେ ପୃଥିବୀଦେବୀ ବୀଜ ଗୋପନ କରିଥିବାରୁ ଅନାଦି ଉତ୍ପନ୍ନ ନ ହୋଇ ଦୁର୍ଭିକ୍ଷ ଉପସ୍ଥିତ ହୋଇଅଛି । ସେ ପୃଥିବୀ ପ୍ରତି କ୍ରୁଦ୍ଧ ହୋଇ ତାହାଙ୍କୁ ବିନାଶ କରିବାକୁ ଉଦ୍ୟତ ହୁଅନ୍ତେ ପୃଥିବୀ ଗୋରୂପ ଧାରଣ କରି ପଳାୟନ କଲେ ଓ ପୃଥୁ ତାହାର ପଶ୍ଚାଦ୍ଧାବନ କଲେ । ଅବଶେଷରେ ପୃଥିବୀ ସ୍ତବ କରନ୍ତେ ପୃଥୁ ଶାନ୍ତ ହୋଇଥିଲେ । ପୃଥିବୀର ଉପଦେଶ ଅନୁସାରେ ମନୁଙ୍କୁ ବତ୍ସରୂପେ କଳ୍ପନା କରି ଦୋହନ କରିବାରୁ ଶସ୍ୟାଦି ଉତ୍ପନ୍ନ ହୋଇଥିଲା । ପୃଥୁ ପୃଥିବୀର ସମତା ସାଧନ ମଧ୍ୟ କରିଥିଲେ ।

ସରସ୍ୱତୀ ନଦୀତୀରରେ ପୃଥୁ ଶତାଶ୍ୱମେଧ ଯଜ୍ଞ ସାଧନ କରିଥିଲେ । ଇନ୍ଦ୍ର ଭାବିଲେ ପୃଥୁ ଯଜ୍ଞରେ କୃତକାର୍ଯ୍ୟ ହେଲେ ମୋର ଇନ୍ଦ୍ରପଦ ହରଣ କରିବେ । ସେ ପୃଥୁଙ୍କର ଯଜ୍ଞାଶ୍ୱ ଅପହରଣ କରିଥିଲେ । ପୃଥୁ ଇନ୍ଦ୍ରଙ୍କ ପଶ୍ଚାଦ୍ଧାବନ କରି ଯଜ୍ଞାଶ୍ୱ ଉଦ୍ଧାର କରି ବିଜିତାଶ୍ୱ ଉପାଧି ଗ୍ରହଣ କରିଥିଲେ । ଇନ୍ଦ୍ର ପୁନର୍ବାର କପଟବେଶ ଧାରଣ କରି ଯୂପକାଷ୍ଠରୁ ଅଶ୍ୱ ଅପହରଣ କରିଥିଲେ । ପୃଥୁ ପୁନର୍ବାର ଇନ୍ଦ୍ରଙ୍କ ପ୍ରତି ବାଣ ଯୋଜନା କରନ୍ତେ ସେ କପଟବେଶ ତ୍ୟାଗକରି ଯଜ୍ଞାଶ୍ୱ ପ୍ରତ୍ୟର୍ପଣ କରିଥିଲେ । ଜୈନ, ବୌଦ୍ଧ କାପାଳିକ, ନାସ୍ତିକାଦି ଇନ୍ଦ୍ରଙ୍କୁ ପରିତ୍ୟାଗ କରିଥିଲେ । ଇନ୍ଦ୍ର ପାପଚିହ୍ନ ଧାରଣ କରିଥିଲେ ଏବଂ ପ୍ରଜାମାନଙ୍କର ଧର୍ମବୁଦ୍ଧି ଧ୍ୱଂସର କାରଣ ହେବୁ ପୃଥୁ ଇନ୍ଦ୍ରଙ୍କ ପ୍ରତି କୋପ କରି ତାହାଙ୍କୁ ସଂହାର କରିବାକୁ ଉଦ୍ୟମ କରୁଥିଲେ । ବ୍ରହ୍ମାଙ୍କ ଉପଦେଶ ଅନୁସାରେ ପୃଥୁ ଇନ୍ଦ୍ରଙ୍କ ସହିତ ଯୁଦ୍ଧ କରିବାରୁ ନିବୃତ୍ତ ହୋଇ ଥିଲେ ଏବଂ ଇନ୍ଦ୍ର ଓ ପୃଥୁଙ୍କ ମଧ୍ୟରେ ସନ୍ଧି ସ୍ଥାପିତ ହୋଇଥିଲା । ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ପୃଥୁଙ୍କର ସନତ୍କୁମାରମାନଙ୍କଠାରୁ ଉପଦେଶଲାଭ ବିଷ୍ଣୁଙ୍କ ପାଦସେବା ଓ ପ୍ରଜାମାନଙ୍କ ପ୍ରତି ଉପଦେଶାଦି ବର୍ଣ୍ଣିତ ହୋଇଅଛି । ଅବଶେଷରେ ସ୍ୱୀୟ ପୁତ୍ରଙ୍କୁ ରାଜ୍ୟାଭିଷେକ କରାଇ ପୃଥୁ ବାନପ୍ରସ୍ଥ ଅବଲମ୍ବନ କରିଥିଲେ ଏବଂ ବ୍ରହ୍ମ ବିଦ୍ୟାଲାଭ କରିଥିଲେ । ସେ ଯୋଗମାର୍ଗରେ ଦେହତ୍ୟାଗ କରି ବିଷ୍ଣୁଲୋକ ପ୍ରାପ୍ତ ହୋଇଥିଲେ ।

## ( ୫ ) ପ୍ରାଚୀନବର୍ହୀ ଓ ପୁରଞ୍ଜନ ଉପାଖ୍ୟାନ—

ରୁଦ୍ରଦେବ ପ୍ରଚେତାମାନଙ୍କୁ ଉପଦେଶ ଦାନ କରି ଅନ୍ତର୍ହିତ ହେଲେ । ପ୍ରଚେତାମାନେ ସିଦ୍ଧିଲାଭ କରି ଥିବାରୁ ଆନନ୍ଦିତ ହୋଇ ଜଳରେ ରହି ତପସ୍ୟା କରିବାକୁ ଲାଗିଲେ । ପ୍ରଚେତାମାନଙ୍କର ପିତା ପ୍ରାଚୀନବର୍ହୀ କର୍ମକାଣ୍ଡ ପ୍ରତି ଆଗ୍ରହାନ୍ୱିତ ହୋଇ ବହୁ ଯଜ୍ଞାନୁଷ୍ଠାନ କଲେ ଓ ଯଜ୍ଞରେ ବହୁ ପଶୁବଧ କଲେ । କର୍ମମାର୍ଗ ଓ ଜ୍ଞାନମାର୍ଗ ମଧ୍ୟରେ ଜ୍ଞାନମାର୍ଗର ଶ୍ରେଷ୍ଠତା ପ୍ରତିପାଦନ ପ୍ରାଚୀନବର୍ହୀ ଓ ପୁରଞ୍ଜନ ଉପାଖ୍ୟାନର ମୁଖ୍ୟ ଉଦ୍ଦେଶ୍ୟ । ନାରଦ ବିଷ୍ଣୁଙ୍କର ପରମ ଭକ୍ତ, ସେ ଭଗବାନଙ୍କର ମହିମା ଓ ଜ୍ଞାନମାର୍ଗର ଶ୍ରେଷ୍ଠତ୍ୱ ବିଷୟରେ ପ୍ରାଚୀନବର୍ହୀଙ୍କ ନିକଟରେ ପ୍ରତ୍ୟକ୍ଷ ପ୍ରମାଣ ଦେବା ଲାଗି ଉପସ୍ଥିତ ହେଲେ । ଯଜ୍ଞରେ ନିହତ ପଶୁମାନଙ୍କୁ ସେ ଯୋଗବଳରେ ପ୍ରାଚୀନବର୍ହୀଙ୍କୁ ଦେଖାଇ କହିଲେ । ଏହି ଦେଖ, ଯେଉଁ ପଶୁମାନଙ୍କୁ ତୁମ୍ଭେ ଯଜ୍ଞରେ ବଧ କରିଅଛ, ସେମାନେ କ୍ରୋଧରେ ପ୍ରଜ୍ୱଳିତ ହୋଇ ତୁମ୍ଭର ମୃତ୍ୟୁ ଅପେକ୍ଷାରେ ରହିଅଛନ୍ତି । ତୁମ୍ଭେ ଇହଲୀଳା ସାଙ୍ଗକରି ପରଲୋକକୁ ଗମନ କଲାରୁ ସେମାନେ ପ୍ରତିହିଂସା ସାଧନ

କରିବେ । ତୁମ୍ଭେ ମନେକରି ଅଛ, ଶାସ୍ତ୍ରାନୁମୋଦିତ ଯଜ୍ଞ କର୍ମାନୁଷ୍ଠାନ କରିଛ । ତେଣୁ ତୁମ୍ଭଙ୍କୁ ପାପ ଲାଗିବ ନାହିଁ । ଯଜ୍ଞରେ ପଶୁବଧ କଲେ ମଧ୍ୟ ସେଥିରେ ପାତକ ଲାଗେ । ସୁତରାଂ ତୁମ୍ଭେ କର୍ମମାର୍ଗ ପରିତ୍ୟାଗ କରି ଜ୍ଞାନମାର୍ଗରେ ମନୋନିବେଶ କର । କାରଣ ଜ୍ଞାନମାର୍ଗ ବିଶୁଦ୍ଧ, ସେଥିରେ ହିଂସାଦିଦୋଷ ନାହିଁ । ଏହା କହି ଉଦାହରଣ ସ୍ୱରୂପ ପୁରଞ୍ଜନ ଉପାଖ୍ୟାନ କହିଥିଲେ ।

**ପୁରଞ୍ଜନ ଉପାଖ୍ୟାନ :—**

ପୁରଞ୍ଜନ ନାମକ ଏକ ରାଜା ଥିଲେ, ତାହାଙ୍କର ଗୋଟିଏ ବନ୍ଧୁ ଥିଲା, ତାହାର ନାମ ଓ କାର୍ଯ୍ୟକଳାପ କେହି ଜାଣୁ ନ ଥିଲେ, ପୁରଞ୍ଜନପୁର ଅର୍ଥାତ୍ ଶରୀରକୁ ନିଜ କର୍ମାନୁସାରେ ଉତ୍ପାଦନ କରି ଜୀବ ସଙ୍ଗରେ ଅଭିହିତ, ତାହାର ବନ୍ଧୁ ପରମାତ୍ମା ଈଶ୍ୱର । ଜୀବ ନାନା କର୍ମାନୁସାରେ କ୍ରମେ ବହୁଲକ୍ଷ ଯୋନି ଭୋଗକରି, ସୌଭାଗ୍ୟବଶତଃ କର୍ମକ୍ଷେତ୍ରରେ ମନୁଷ୍ୟ ଦେହ ଲାଭ କରିଥାଏ ବୁଦ୍ଧି ପ୍ରସୂତ ସୁଖ ଦୁଃଖାଦି ଭୋଗକରି ପରେ ପରମଜ୍ଞାନ ଲାଭକରି ମୁକ୍ତିଲାଭ କରିଥାଏ ।

ପୁରଞ୍ଜନ ଦିନେ ଅରଣ୍ୟମଧ୍ୟରେ ଭ୍ରମଣ କରୁ କରୁ ହିମାଳୟର ଦକ୍ଷିଣ ସାନୁରେ ଗୋଟିଏ ସୁନ୍ଦର ପୁରୀ ଦେଖି ସନ୍ତୁଷ୍ଟ ହୋଇ ଭାବିଲେ, ଏହା ମୋର ସୁଯୋଗ୍ୟ ପୁରୀ । ଏହି ପୁରୀର ବାହାରେ ଯେଉଁ ଉପବନ ସେ ଦେଖିଲେ, ତାହା ଜୀବର ବାହ୍ୟ ଭୋଗ୍ୟ ବିଷୟ ସମୂହ । ସେ ପୁରୀ ମଧ୍ୟରେ ଗୋଟିଏ ରମଣୀକୁ ପୁରଞ୍ଜନ ଦେଖିଲେ, ଏ ରମଣୀ ଅବିଦ୍ୟା ବୁଦ୍ଧିର ରୂପକ । ସେହି ରମଣୀ ସହିତ ଦଶଟି ଦ୍ୱାର ଓ ଗୋଟିଏ ମହାଦ୍ୱାର ଥିଲେ । ଏବଂ ପ୍ରତ୍ୟେକ ଦ୍ୱାରଙ୍କର ଏକଶତ ଲେଖାଏ ଦାସୀ ଥିଲେ । ଏ ସମସ୍ତ ମାନବର ଇନ୍ଦ୍ରିୟ ବୃତ୍ତି ।

ତଦନନ୍ତର ପୁରଞ୍ଜନ ସେ ରମଣୀ ସହିତ ଆଳାପପରିଚୟ କରି ତାହାଙ୍କ ସଙ୍ଗ ପ୍ରାର୍ଥନା କରିଥିଲେ । ସେହି ନାରୀର ସଙ୍ଗ ଲାଭକରି ପୁରଞ୍ଜନ ଆମୋଦ ପ୍ରମୋଦରେ କାଳଯାପନ କରୁଥିଲେ । ଦିନେ ପୁରଞ୍ଜନ ମୃଗୟା କରିବାକୁ ଗମନ କରିଥିଲେ । ପୁରଞ୍ଜନୀ ଅଭିମାନରେ ତାଙ୍କ ସହିତ ଆଳାପ ନ କରିବାରୁ ନାନାପ୍ରକାର ମିଷ୍ଟ ବଚନ ଦ୍ୱାରା ପୁରଞ୍ଜନ ତାଙ୍କ ମାନଭଞ୍ଜନ କରିଥିଲେ ।

ତଦନନ୍ତର ପୁରଞ୍ଜନଙ୍କର ପୁତ୍ର ଓ କନ୍ୟା ଜାତ ହେବା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ନାରୀସଙ୍ଗ ହେତୁ ଦିନୁ ଦିନୁ ତାଙ୍କର ଆୟୁକ୍ଷୟ ହେଲା ଏବଂ ସେ ଜରାଗ୍ରସ୍ତ ହେଲେ । ଗନ୍ଧର୍ବମାନେ କ୍ରମେ ପୁରଞ୍ଜନଙ୍କର ସାମର୍ଥ୍ୟ ହରଣ କରିବାରୁ ତାଙ୍କର କର ଚରଣାଦି ଅବୟବମାନ ଶିଥିଳ ହୋଇ ଆସିଲା, ସେ ଅବ୍ୟକ୍ତ ବେଦନା ଅନୁଭବ କଲେ । ଦୁହିତା, ପୁତ୍ର, ପୌତ୍ରାଦି, ଗୃହ, ଭଣ୍ଡାର, ପରିଚ୍ଛଦ ପ୍ରଭୃତି ଯାହା ନାମ ମାତ୍ର ଅବଶିଷ୍ଟ ଥିଲା ତହିଁର ମମତା ହେତୁରୁ ସେ ସଂସାରରେ ଜଡ଼ିତ ଥିଲେ, ବର୍ତ୍ତମାନ ବିଚ୍ଛେଦକାଳ ଉପସ୍ଥିତ ହେବାରୁ ସେ ଭାବିଲେ ଏ ସବୁ କିପରି ରକ୍ଷା ପାଇବ । ବୁଦ୍ଧିଭ୍ରଂଶ ହେତୁରୁ ରାଜା ଏହିସବୁ ଅଶୋଚ୍ୟ ମାନଙ୍କ ପାଇଁ ଶୋକ କଲେ ।

ଯମଦୂତଗଣ ତାଙ୍କୁ ବନ୍ଧନ କରି ନେଇଯିବାପରେ ଏହିପୁରୀ ଭସ୍ମସାତ୍ ହେଲା । ଯଜ୍ଞରେ ସେ ଯେଉଁ ପଶୁଗଣଙ୍କୁ ବଧ କରିଥିଲେ ସେମାନେ କ୍ରୁଦ୍ଧ ହୋଇ କୁଠାରଦ୍ୱାରା ତାଙ୍କୁ ଛେଦନ କରିବାକୁ ଲାଗିଲେ । ଅନ୍ତକାଳରେ ପତ୍ନୀକଥା ଭାବୁଥିବାରୁ ତାଙ୍କୁ ପୁନଶ୍ଚ ନାରୀଜନ୍ମ ଗ୍ରହଣ କରିବାକୁ ହୋଇଥିଲା ।

ଶ୍ରୀମଦ୍ଭାଗବତର ଉନବିଂଶ ଅଧ୍ୟାୟରେ ନାରଦ ପ୍ରାଚୀନ ବର୍ହିଙ୍କୁ ପୁରଞ୍ଜନ ଉପାଖ୍ୟାନର ରୂପକ ଓ ସାରମର୍ମ ବୁଝାଇ ଅଛନ୍ତି । ପ୍ରାଚୀନବର୍ହି ନାରଦଙ୍କଠାରୁ ଉପଦେଶ ଲାଭକରି ଶ୍ରୀହରି ପାଦପଦ୍ମ ଭଜନା କରି ମୁକ୍ତିଲାଭ କରିଥିଲେ ।



# ଶ୍ରୀମଦ୍ଭାଗବତ

## ଚତୁର୍ଥ ସ୍କନ୍ଧ



### ପ୍ର ଥ ମ ଅ ଧ୍ୟା ୟ ।

ଅଥୈକତ୍ରିଂଶତାଧ୍ୟାୟୈର୍ବିସର୍ଗସ୍ତୁର୍ଯ୍ୟ ଈର୍ଯ୍ୟତେ ।
ବିସର୍ଗସ୍ତ୍ୱୀଶ୍ୱରାଧୀନୈର୍ବ୍ରହ୍ମମନ୍ୱାଦିଭିଃ କୃତଃ ॥
ତତ୍ର ତୁ ପ୍ରଥମେଽଧ୍ୟାୟେ ମନୁକନ୍ୟାନ୍ୱୟାଃ ପୃଥକ୍ ।
ବର୍ଣ୍ଣ୍ୟନ୍ତେ ଯତ୍ର ଯଜ୍ଞାଦି ମୂର୍ତ୍ତିଭିଃ ପ୍ରଭବୋ ହରେଃ । ୦ । [ଶ୍ରୀଧରସ୍ୱାମୀ]

---

### ମନୁକନ୍ୟାମାନଙ୍କର ବଂଶ ।

ଚତୁର୍ଥସ୍କନ୍ଧ ଏକତ୍ରିଂଶ ଅଧ୍ୟାୟ, ସେଥିରେ ବ୍ରହ୍ମା ମନ୍ୱାଦି ସୃଷ୍ଟି ମନୁବଂଶ ବିସ୍ତାରଂବିଷୟ କହିଅଛନ୍ତି ଏବଂ ପ୍ରଥମ ଅଧ୍ୟାୟରେ ମହର୍ଷିମନୁଙ୍କର ଦୁହିତାମାନଙ୍କର ବଂଶ ବର୍ଣ୍ଣିତ ହୋଇଅଛି ।

---

ବ୍ରହ୍ମା ମନାଦି ସୃଷ୍ଟି କଥା,     ମନୁବଂଶର ଯେ ବ୍ୟବସ୍ଥା ।
ଚତୁର୍ଥସ୍କନ୍ଧେ ଏକତ୍ରିଂଶ,     ଅଧ୍ୟାୟେ ହୋଇଛି ପ୍ରକାଶ ।
ତା ମଧ୍ୟେ ପ୍ରଥମ ଅଧ୍ୟାୟେ,     ମନୁଦୁହିତାବଂଶ କହେ ।

ଶ୍ରୀମୈତ୍ରେୟ ଉବାଚ ।

ମନୋସ୍ତୁ ଶତରୂପାୟାଂ ତିସ୍ରଃ କନ୍ୟାଶ୍ଚ ଜଜ୍ଞିରେ ।
ଆକୂତିର୍ଦେବହୂତିଶ୍ଚ ପ୍ରସୂତିରିତି ବିଶ୍ରୁତାଃ । ୧ ।
ଆକୂତିଂ ରୁଚୟେ ପ୍ରାଦାଦପି ଭ୍ରାତୃମତୀଂ ନୃପଃ ।
ପୁତ୍ରିକାଧର୍ମ୍ମମାଶ୍ରିତ୍ୟ ଶତରୂପାନୁମୋଦିତଃ । ୨ ।
ପ୍ରଜାପତିଃ ସ ଭଗବାନ୍ ରୁଚିସ୍ତସ୍ୟାମଜୀଜନତ୍ ।
ମିଥୁନଂ ବ୍ରହ୍ମବର୍ଚ୍ଚସ୍ୱୀ ପରମେଣ ସମାଧିନା । ୩ ।

---

ଶ୍ରୀ ମୈତ୍ରେୟ କହିଲେ :—

ମନୁଙ୍କର ଶତରୂପାନାମ୍ନୀ ପତ୍ନୀଙ୍କ ଗର୍ଭରେ ଆକୂତି, ଦେବହୂତି ଓ ପ୍ରସୂତି ନାମରେ ତିନୋଟି କନ୍ୟା, ପ୍ରିୟବ୍ରତ ଓ ଉତ୍ତାନପାଦ ନାମରେ ଦୁଇଟି ପୁତ୍ର ଜନ୍ମଗ୍ରହଣ କରିଥିଲେ । ୧ ।

ମନୁ ସ୍ୱୀୟ ପତ୍ନୀ ଶତରୂପାଙ୍କର ସମ୍ମତିକ୍ରମେ ଆକୂତିଙ୍କୁ ତାହାଙ୍କର ଭ୍ରାତା ଥିବା ସତ୍ତ୍ୱେ ପୁତ୍ରିକାଧର୍ମ ଅବଲମ୍ବନ ପୂର୍ବକ ପ୍ରଜାପତି ରୁଚିଙ୍କ ହସ୍ତରେ ପ୍ରଦାନ କରିଥିଲେ * । ୨ ।

ଭଗବାନ୍ ରୁଚି ବ୍ରହ୍ମ ତେଜ ସମ୍ପନ୍ନ, ସେ ଆକୂତିଙ୍କୁ ଭାର୍ଯ୍ୟାରୂପେ ଗ୍ରହଣକରି ତାହାଙ୍କ ଗର୍ଭରେ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଉତ୍ପାଦନ କରିଥିଲେ । ୩ ।

---

ଶ୍ରୀମୈତ୍ରେୟଉବାଚ—

ଏବେ ହୋ ଶୁଣ ଏକଚିତ୍ତେ
ଚତୁର୍ଥ ସ୍କନ୍ଧ ଭାଗବତେ
ପୂର୍ବେ ଯେ ପଦ୍ମଯୋନିତନୁ
ଜନ୍ମିଲେ ସ୍ୱାୟମ୍ଭୁବ ମନୁ
ତା ନାରୀ ଶତରୂପା ନାମ
ପବିତ୍ର ସର୍ବ ଗୁଣଧାମ
ତାର ଉଦରେ ବେନି ସୁତ
ଅପରେ ତିନୀଗ ଦୁହିତ
ଆକୂତି ଦେବହୂତି ବେନି
ପ୍ରସୂତି ନାମେ କନ୍ୟା ତିନି । ୧ ।
ଆକୂତି ରୁଚିଙ୍କୁ ବରିଲ
ପୁତ୍ରିକାଧର୍ମ୍ମେ ବିଭା ଦେଲ
ଯେ ଧର୍ମ୍ମବିଧି ବେଦମାର୍ଗେ
ବିଚାରି ଶତରୂପାସଙ୍ଗେ । ୨ ।
ସେ ପ୍ରଜାପତି ଗୃହେ ଆଣି
ସ୍ୱଧର୍ମ୍ମେ ଆକୂତି ଘରଣୀ
ସେ କନ୍ୟାଗର୍ଭେ ରୁଚିଙ୍କଯୋଏ
ପୁତ୍ର ଦୁହିତା ମହାତେଜେ
ଜନ୍ମିଲେ ଅତି ସୁଲକ୍ଷଣ
ତାହାଙ୍କ ନାମ ଏବେ ଶୁଣ । ୩ ।

---

* ପୁତ୍ରିକାଧର୍ମ—ଯେଉଁମାନଙ୍କର ପୁତ୍ର ନ ଥାଏ ସେମାନେ କନ୍ୟାସମ୍ପ୍ରଦାନ କାଳରେ ଜାମାତାଠାରୁ ପ୍ରତିଶ୍ରୁତି ଗ୍ରହଣ କରନ୍ତି ଯେ ସେହି କନ୍ୟା ଗର୍ଭଜାତ ପୁତ୍ର ତାହାଙ୍କର ହେବ । ଏହାକୁ ପୁତ୍ରିକା ଧର୍ମ ବୋଲାଯାଏ । ମନୁଙ୍କର ପୁତ୍ରଥିଲେ ମଧ୍ୟ ଜ୍ୟେଷ୍ଠା କନ୍ୟା ହେତୁରୁ ସେ ଏହି ପଥ ଅବଲମ୍ବନ କରିଥିଲେ ।

ଯସ୍ତୟୋଃ ପୁରୁଷଃ ସାକ୍ଷାଦ୍‌ବିଷ୍ଣୁର୍ଯଜ୍ଞସ୍ୱରୂପଧୃକ୍ ।
ଯା ସ୍ତ୍ରୀ ସା ଦକ୍ଷିଣା ଭୂତେରଂଶଭୂତାନପାୟିନୀ । ୪ ।
ଆନିନ୍ୟେ ସ୍ୱଗୃହଂ ପୁତ୍ର୍ୟାଃ ପୁତ୍ରଂ ବିତତରୋଚିଷମ୍ ।
ସ୍ୱାୟମ୍ଭୁବୋ ମୁଦା ଯୁକ୍ତୋ ରୁଚିର୍ଜଗ୍ରାହ ଦକ୍ଷିଣାମ୍ । ୫ ।
ତାଂ କାମୟାନାଂ ଭଗବାନୁବାହ ଯଜୁଷାଂ ପତିଃ ।
ତୁଷ୍ଟାୟାଂ ତୋଷମାପନ୍ନୋଽଜନୟଦ୍ଦ୍ୱାଦଶାତ୍ମଜାନ୍ । ୬ ।
ତୋଷଃ ପ୍ରତୋଷଃ ସନ୍ତୋଷୋ ଭଦ୍ରଃ ଶାନ୍ତିରିଡସ୍ପତିଃ ।
ଇଧ୍ମଃ କବିର୍ବିଭୁଃ ସ୍ୱାହ୍ନଃ ସୁଦେବୋ ରୋଚନୋ ଦ୍ୱିଷଟ୍ । ୭ ।

---

ସେହି ସନ୍ତାନମାନଙ୍କ ମଧ୍ୟରୁ ପୁତ୍ରଟି ସାକ୍ଷାତ୍ ବିଷ୍ଣୁ ଯଜ୍ଞମୂର୍ତ୍ତି ଧାରଣ କରି ଜନ୍ମ ହୋଇଥିଲେ ଓ କନ୍ୟାଟି ସ୍ୱୟଂ ଲକ୍ଷ୍ମୀ ସ୍ୱରୂପା ଏବଂ ସର୍ବ ପ୍ରାଣୀଙ୍କର ମଙ୍ଗଳକାରିଣୀ , ତାହାର ନାମ ଦକ୍ଷିଣା । ୪ ।

ସ୍ୱାୟମ୍ଭୁବ ମନୁ ଅତ୍ୟନ୍ତ ଆନନ୍ଦିତ ହୋଇ ସେହି ମହାପ୍ରଭାବଶାଳୀ ଆକୂତିପୁତ୍ର ବିଷ୍ଣୁ ସ୍ୱରୂପ ଯଜ୍ଞ-ପୁରୁଷଙ୍କୁ ସ୍ୱୀୟ ଭବନକୁ ଆନୟନ କରିଥିଲେ ଏବଂ ରୁଚି ଦକ୍ଷିଣାଙ୍କୁ ନିଜ ନିକଟରେ ରଖିଥିଲେ । ୫ ।

କିୟତ୍‌କାଳ ଅତୀତ ହେଲା ପରେ ଦକ୍ଷିଣା ଯଜ୍ଞପୁରୁଷଙ୍କୁ ବିବାହ କରିବାକୁ ଅଭିଳାଷ କରି-ଥିଲେ । ଭଗବାନ୍ ଯଜ୍ଞ ତାହାଙ୍କ ସହିତ ବିବାହିତ ହୋଇଥିଲେ ଏବଂ ସେହି ପତ୍ନୀପ୍ରତି ସନ୍ତୁଷ୍ଟହୋଇ ତାହାଙ୍କ ଗର୍ଭରେ ଦ୍ୱାଦଶଟି ପୁତ୍ର ଉତ୍ପାଦନ କରିଲେ । ୬ ।

ସେହି ଦ୍ୱାଦଶ ପୁତ୍ରଙ୍କର ନାମ :—ତୋଷ, ପ୍ରତୋଷ, ସନ୍ତୋଷ, ଭଦ୍ର, ଶାନ୍ତି, ଇଡସ୍ପତି, ଇଧ୍ମ, କବି, ବିଭୁ, ସ୍ୱାହ୍ନ, ସୁଦେବ ଏବଂ ରୋଚନ । ୭ ।

---

ଯଜ୍ଞ ପୁରୁଷ ତାଙ୍କ ବଂଶେ
ଜନ୍ମ ହୋଇଲେ ବିଷ୍ଣୁ ଅଂଶେ
କନ୍ୟା ସୁରୂପା ସୁଲକ୍ଷଣା
ତା ନାମ କଳ୍ପିଲି ଦକ୍ଷିଣା । ୪ ।
ତହୁଁ କନ୍ୟାର ପୁତ୍ର ଆଣି
ସ୍ୱୟଂହେ ମନୁଙ୍କ ଘରଣୀ
ନିଜ ଅପତ୍ୟ ପ୍ରିୟଭାବେ
ପାଳନ୍ତି ମନୁ ବଂଶ ଲାଭେ
ରୁଚିର ଘରେ କନ୍ୟା ରହି
ଦକ୍ଷିଣା ନାମ ଯାର ହୋଇ । ୫ ।
ଏମନ୍ତେ ଗଲା ଦିନାକେତେ
ସେ ମୁନି ଅଳଙ୍କାର ଯୁତେ
ସେ ଯଜ୍ଞ ପୁତ୍ରେ କନ୍ୟା ଦେଲା
ନିଗମ ମତେ ଧର୍ମ୍ମ କଲା
ସେ ଯଜ୍ଞପତି କନ୍ୟା ପାଇ
ଗୃହସ୍ଥ ଧର୍ମ୍ମ ବିଧି ବହି
ଦକ୍ଷିଣା ଗର୍ଭେ ମୁନିବଳା
ଦ୍ୱାଦଶ ପୁତ୍ର ଜନ୍ମ କଲା । ୬ ।
ତୋଷ ପ୍ରତୋଷ ପୁତ୍ର ବେନି
ସନ୍ତୋଷ ଭଦ୍ର ଶାନ୍ତି ତିନି
ଷଷ୍ଠ ପୁତ୍ର ଯେ ଇଡସ୍ପତି
ବେଦେ ଅଧିକ ଯାର ମତି
ଇଧ୍ମ କବି ଯେ ବିଭୁ ସ୍ୱାହ୍ନ
ସୁଦେବ ଦ୍ୱାଦଶେ ରୋଚନ । ୭ ।

ତୁଷିତା ନାମ ତେ ଦେବା ଆସନ୍ ସ୍ୱାୟମ୍ଭୁବାନ୍ତରେ ।
ମରୀଚିମିଶ୍ରା ଋଷୟୋ ଯଜ୍ଞଃ ସୁରଗଣେଶ୍ୱରଃ । ୮ ।
ପ୍ରିୟବ୍ରତୋତ୍ତାନପାଦୌ ମନୁପୁତ୍ରୌ ମହୌଜସୌ ।
ତତ୍‌ପୁତ୍ରପୌତ୍ରନପ୍ତୃଣାମନୁବୃତ୍ତଂ ତଦନ୍ତରମ୍ । ୯ ।
ଦେବହୂତିମଦାତ୍ ତାତ କର୍ଦ୍ଦମାୟାତ୍ମଜାଂ ମନୁଃ ।
ତତ୍‌ସମ୍ବନ୍ଧି ଶ୍ରୁତପ୍ରାୟଂ ଭବତା ଗଦତୋ ମମ । ୧୦ ।
ଦକ୍ଷାୟ ବ୍ରହ୍ମପୁତ୍ରାୟ ପ୍ରସୂତିଂ ଭଗବାନ୍ ମନୁଃ ।
ପ୍ରାଯଚ୍ଛଦ୍‌ଯତ୍‌କୃତଃ ସର୍ଗସ୍ତ୍ରିଲୋକ୍ୟାଂ ବିତତୋ ମହାନ୍ । ୧୧ ।

---

ପ୍ରଜାପତି ଭୃଗୁଙ୍କର ଏହି ଦ୍ୱାଦଶଟି ଦୌହିତ୍ର ସ୍ୱାୟମ୍ଭୁବ ମନ୍ୱନ୍ତରରେ ତୁଷିତ ନାମକ ଦେବତାରୂପରେ ପ୍ରସିଦ୍ଧି ଲାଭ କରିଥିଲେ । ଏହି ମନ୍ୱନ୍ତରରେ ମରୀଚି ପ୍ରଭୃତି ସପ୍ତର୍ଷି ଯଜ୍ଞପୁରୁଷ ଭଗବାନଙ୍କର ଅଂଶାବତାର ଏବଂ ସେହି ଯଜ୍ଞ ପୁରୁଷ ଇନ୍ଦ୍ର ହୋଇଥିଲେ । ୮ ।

ପ୍ରିୟବ୍ରତ ଓ ଉତ୍ତାନପାଦ ଏହି ଦୁଇ ମହାତେଜସ୍ୱୀ ରାଜା ମନୁଙ୍କର ପୁତ୍ର । ମହାବୀର ପ୍ରିୟବ୍ରତ ଓ ଉତ୍ତାନପାଦ ଉଭୟ ପୃଥିବୀ ପାଳକ ହୋଇଥିଲେ ଏବଂ ଏମାନଙ୍କର ବଂଶ ଜଗତ୍ ପରିବ୍ୟାପ୍ତ ହୋଇ ମନ୍ୱନ୍ତର ପର୍ଯ୍ୟନ୍ତ ପୁତ୍ର ପୌତ୍ର ଦୌହିତ୍ରାଦି କ୍ରମେ ପୃଥିବୀପାଳନ କରିଥିଲେ ❋ । ୯ ।

ମନୁ ସ୍ୱୀୟ ମଧ୍ୟମା କନ୍ୟା ଦେବହୂତିଙ୍କୁ କର୍ଦ୍ଦମଙ୍କ ହସ୍ତରେ ଅର୍ପଣ କରିଥିଲେ; ପୂର୍ବେ ସେହି ଉଭୟଙ୍କ ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି । ୧୦ ।

ମନୁ ଜାତର କନିଷ୍ଠା କନ୍ୟା ପ୍ରସୂତିଙ୍କୁ ଦକ୍ଷଙ୍କ ସହିତ ବିବାହ କରାଇଥିଲେ । ଏହି ପ୍ରସୂତିଙ୍କର ସନ୍ତାନ ସନ୍ତତିମାନେ ଏହି ତ୍ରିଲୋକ ମଧ୍ୟରେ ବ୍ୟାପ୍ତ ରହିଅଛନ୍ତି । ୧୧ ।

---

ଏ ଯେ ଦ୍ୱାଦଶ ଭୃଗୁଗଣେ
ମନୁର ଆଜ୍ଞା ପରମାଣେ
ତୁଷିତ ନାମେ ଦେବଗଣ
ହୋଇଲେ ସୃଷ୍ଟିର କାରଣ
ମରୀଚି ଆଦି ସପ୍ତ ମୁନି
ଯଜ୍ଞକୁ ଇନ୍ଦ୍ରପଦେ ଘେନି । ୮ ।
ଉତ୍ତାନପାଦ ପ୍ରିୟବ୍ରତ
ଏ ଦେନି ମନୁରାଜାସୁତ
ଏହାଙ୍କଠାରୁ ବଂଶ ଯେତେ
ପୁତ୍ର ପଉତ୍ର ଅପ୍ରମିତେ । ୯ ।
ଯେ କନ୍ୟା ଦେବହୂତି ନାମ
ତାହାକୁ ଲଭିଲେ କର୍ଦ୍ଦମ
ତାହାର ନବକନ୍ୟା ଗର୍ଭେ
ଯେ ଅବା ଜନ୍ମିଲେ ପୂର୍ବେ
ସେ କଥା କହିବଇଁ ତୋତେ
ତୁ ଯେଣୁ ପଚାରୁ ମୋତେ ।୧୦।
ପ୍ରସୂତି କନ୍ୟା ମନୁ ରାଜା
ଦେଇ ଦକ୍ଷକୁ କଲେ ପୂଜା
ତାର ସନ୍ତତି ତିନଲୋକେ
ବିସ୍ତାର ହୋଇଲେ ଅନେକେ ।୧୧

---

❋ ପ୍ରତ୍ୟେକ ମନ୍ୱନ୍ତରରେ ଗୋଟିଏ ଗୋଟିଏ ମନୁ, ଦେବତା, ମନୁପୁତ୍ର, ଇନ୍ଦ୍ର, ଓ ଭଗବାନ୍ ବିଷ୍ଣୁଙ୍କର ଅଂଶାବତାର, ଏହି ଛଅପ୍ରକାର ସୃଷ୍ଟି ହୋଇଥାଏ । ପ୍ରତ୍ୟେକ ମନ୍ୱନ୍ତରରେ ଭଗବାନଙ୍କର ଅଂଶାବତାର ଅବତୀର୍ଣ୍ଣ ହୁଅନ୍ତି, ସେ ମନ୍ୱନ୍ତରାବତାର ବୋଲି ବିଖ୍ୟାତ ।

ଯାଃ କର୍ଦ୍ଦମସୁତାଃ ପ୍ରୋକ୍ତା ନବ ବ୍ରହ୍ମର୍ଷିପତ୍ନୟଃ ।
ତାସାଂ ପ୍ରସୂତିପ୍ରସବଂ ପ୍ରୋଚ୍ୟମାନଂ ନିବୋଧ ମେ ।୧୨।
ପତ୍ନୀ ମରୀଚେସ୍ତୁ କଳା ସୁଷୁବେ କର୍ଦ୍ଦମାତ୍ମଜା ।
କଶ୍ୟପଂ ପୂର୍ଣ୍ଣିମାନଞ୍ଚ ଯୟୋରାପୂରିତଂ ଜଗତ୍ ।୧୩।
ପୂର୍ଣ୍ଣିମାସୂତ ବିରଜଂ ବିଶ୍ୱଗଞ୍ଚ ପରନ୍ତପ ।
ଦେବକୁଲ୍ୟାଂ ହରେଃ ପାଦଶୌଚାଦ୍ ଯାଭୂତ୍ ସରିଦ୍ଦିବଃ ।୧୪।
ଅତ୍ରେଃ ପତ୍ନ୍ୟନସୂୟା ତ୍ରୀନ୍ ଜଜ୍ଞେ ସୁଯଶସଃ ସୁତାନ୍ ।
ଦତ୍ତଂ ଦୁର୍ବାସସଂ ସୋମମାତ୍ମେଶବ୍ରହ୍ମସମ୍ଭବାନ୍ ।୧୫।

---

କର୍ଦ୍ଦମ ଋଷିଙ୍କର ନଅଗୋଟି କନ୍ୟା ବ୍ରହ୍ମର୍ଷିଙ୍କର ପତ୍ନୀ ହୋଇଥିଲେ, ତାହା ପୂର୍ବେ ବର୍ଣ୍ଣିତ ହୋଇଅଛି, ବର୍ତ୍ତମାନ ସେମାନଙ୍କର ବଂଶ ବିସ୍ତାର ବର୍ଣ୍ଣନା କରୁଅଛି, ମନୋଯୋଗ ପୂର୍ବକ ଶ୍ରବଣ କର ।୧୨।

କର୍ଦ୍ଦମଙ୍କର ଜ୍ୟେଷ୍ଠା କନ୍ୟା ମରୀଚି ପତ୍ନୀ କଳା ; ତାହାଙ୍କ ଗର୍ଭରେ କଶ୍ୟପ ଓ ପୂର୍ଣ୍ଣିମା ନାମକ ଦୁଇ ପୁତ୍ର ଜାତ ହୋଇଥିଲେ । ଏମାନଙ୍କ ବଂଶଦ୍ୱାରା ଜଗତ୍ ପୂର୍ଣ୍ଣ ହୋଇଥିଲା ।୧୩।

ଏହି ପୂର୍ଣ୍ଣିମାଙ୍କର ବିରଜ ଓ ବିଶ୍ୱଗ ନାମରେ ଦୁଇପୁତ୍ର ଏବଂ ଦେବକୁଲ୍ୟା ନାମରେ ଗୋଟିଏ କନ୍ୟା ଜାତ ହୋଇଥିଲେ । ସେହି ଦେବକୁଲ୍ୟା ଜନ୍ମାନ୍ତରରେ ଶ୍ରୀହରି ପାଦପଦ୍ମ ପ୍ରକ୍ଷାଳନ କରି ଗଙ୍ଗାରୂପେ ଅବତୀର୍ଣ୍ଣ ହୋଇଥିଲେ ।୧୪।

କର୍ଦ୍ଦମଙ୍କର ଅନ୍ୟ ଦୁହିତା ଅନସୂୟା ମହର୍ଷି ଅତ୍ରିଙ୍କୁ ପତିରୂପେ ବରଣ କରିଥିଲେ । ତାହାଙ୍କର ବିଷ୍ଣୁ, ରୁଦ୍ର ଓ ବ୍ରହ୍ମାଙ୍କର ଅଂଶ ସ୍ୱରୂପ ଦତ୍ତ, ଦୁର୍ବାସା, ଏବଂ ସୋମ ନାମକ ତିନୋଟି ମହାଯଶସ୍ୱୀ ପୁତ୍ର ଜନ୍ମ ହୋଇଥିଲେ ।୧୫।

---

କହିବ ଏଥିର କାରଣ
ତୁ ଏବେ ସାବଧାନେ ଶୁଣ
ଶୁଣିଲେ ନବ ମୁନିବଂଶ
ହରଇ ଅଶେଷ କଳ୍ମଷ ।୧୨।
କର୍ଦ୍ଦମ ଋଷିଙ୍କର ବାଳା
ଜ୍ୟେଷ୍ଠ ଦୁହିତା ନାମ କଳା
ମରୀଚିଆଚାର୍ଯ୍ୟ ତା ଉଦରେ
ଜନ୍ମିଲେ ବେନି ଯେ କ୍ରମରେ

କଶ୍ୟପ ପୂର୍ଣ୍ଣିମାନ ଦୁଇ
ଶୁଚି ସୁନ୍ଦର ବେନି ଭାଇ
ଏ ବେନି ଭାଇଙ୍କର ବଂଶ
ଜଗତେ ଅନେକ ପ୍ରକାଶ ।୧୩।
ବିରଜ ପୂର୍ଣ୍ଣିମାର ସୁତ
ଅପରେ ବିଶ୍ୱଗ ବିଦିତ
କନ୍ୟାଏ ଦେବକୁଲ୍ୟା ନାମ
ରୂପରେ ନାହିଁ ସରିସମ ।୧୪।

ଅତ୍ରିର ଅନସୂୟା ନାରୀ
ଅତି ସୁନ୍ଦର ସୁକୁମାରୀ
ତାହାର ଗର୍ଭେ ତିନି ସୁତ
ହୋଇଲେ ଜଗତେ ବିଖ୍ୟାତ
ଦତ୍ତ ଦୁର୍ବାସା ସୋମ ତିନି
ତିନି ଦେବଙ୍କ ଅଂଶ ଘେନି ।୧୫।

ଶ୍ରୀବିଦୁର ଉବାଚ ।

ଅତ୍ରେର୍ଗୃହେ ସୁରଶ୍ରେଷ୍ଠାଃ ସ୍ଥିତ୍ୟୁତ୍ପତ୍ତ୍ୟନ୍ତହେତବଃ ।
କିଞ୍ଚିଚ୍ଚିକୀର୍ଷବୋ ଜାତା ଏତଦାଖ୍ୟାହି ମେ ଗୁରୋ । ୧୬ ।

ଶ୍ରୀମୈତ୍ରେୟ ଉବାଚ ।

ବ୍ରହ୍ମଣା ଚୋଦିତଃ ସୃଷ୍ଟାବତ୍ରିର୍ବ୍ରହ୍ମବିଦାଂ ବରଃ ।
ସହ ପତ୍ନ୍ୟା ଯଯାବୃକ୍ଷଂ କୁଲାଦ୍ରିଂ ତପସି ସ୍ଥିତଃ । ୧୭ ।
ତସ୍ମିନ୍ ପ୍ରସୂନସ୍ତବକପଲାଶାଶୋକକାନନେ ।
ବାର୍ଭିଃ ସ୍ରବଦ୍ଭିରୁଦ୍‌ଘୁଷ୍ଟେ ନିର୍ବିନ୍ଧ୍ୟାୟାଃ ସମନ୍ତତଃ । ୧୮ ।

---

ଶ୍ରୀ ବିଦୁର କହିଲେ :—

ହେ ବ୍ରହ୍ମନ୍ ! ସୃଷ୍ଟି ସ୍ଥିତି ପ୍ରଳୟର ହେତୁ ସ୍ୱରୂପ ଏହି ସୁରଶ୍ରେଷ୍ଠ ତିନିଜଣ କି ହେତୁରୁ ଅତ୍ରିଙ୍କ ଗୃହରେ ଜନ୍ମ ଗ୍ରହଣ କରିଥିଲେ ତାହା ଅନୁଗ୍ରହ କରି ବର୍ଣ୍ଣନା କରନ୍ତୁ । ୧୬ ।

ଶ୍ରୀ ମୈତ୍ରେୟ କହିଲେ :—

ବ୍ରହ୍ମଜ୍ଞାନୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅତ୍ରି ମୁନି ବ୍ରହ୍ମାଙ୍କ କର୍ତ୍ତୃକ ସୃଷ୍ଟି ବିଷୟରେ ଆଦିଷ୍ଟ ହୋଇ ତପସ୍ୟା କରିବା ନିମନ୍ତେ ସପତ୍ନିକ ଋକ୍ଷନାମକକୁଳ ପର୍ବତକୁ ଗମନ କରିଥିଲେ । ୧୭ ।

ସେହି ପର୍ବତର ଏକ ପ୍ରଦେଶରେ ଗୋଟିଏ ରମଣୀୟ କାନନ ବିଦ୍ୟମାନ ଥିଲା । ତହିଁରେ ପଳାଶ ଓ ଅଶୋକବୃକ୍ଷମାନଙ୍କରେ ପୁଷ୍ପଗୁଚ୍ଛ ପ୍ରସ୍ଫୁଟିତହୋଇ ସେହି କାନନର ଶୋଭା ବୃଦ୍ଧି କରୁଥିଲା । ତହିଁର ଅନତି ଦୂରରେ ନିର୍ବିନ୍ଧ୍ୟା ନାମ୍ନୀ ନଦୀରୁ ଜଳ ପତିତ ହୋଇ ତାହା ମୁଖରିତ ହେଉଥିଲା । ୧୮ ।

---

ଶ୍ରୀବିଦୁରଉବାଚ—

ଅତ୍ରିର ପତ୍ନୀ ଗର୍ଭଗତେ
ତ୍ରିଦେବ ଜନ୍ମିଲେ କେମନ୍ତେ ?
ଯେ ବ୍ରହ୍ମା ବିଷ୍ଣୁ ତ୍ରିପୁରାରି
ସୃଷ୍ଟି ପାଳନ ଅନ୍ତକାରୀ
ଏ କଥା ସଂଶୟ ମୋତେ
ହେ ମୁନି କହ ଶୁଦ୍ଧ ଚିତ୍ତେ
କି ହେତୁ କି କର୍ମ୍ମ ବିସ୍ତାରି
କିମ୍ପା ଜନ୍ମିଲେ ଦେହ ଧରି । ୧୬।

ଶ୍ରୀମୈତ୍ରେୟଉବାଚ—

ଶୁଣ ବିଦୁର ତୋଷ ମନ
ଅତ୍ରି ଯେ ବ୍ରହ୍ମାର ନନ୍ଦନ
ସ୍ୱୟଂବେ ବ୍ରହ୍ମଜ୍ଞାନବର
ବ୍ରହ୍ମା ବୋଇଲେ ତପ କର
ଯେ ତପେ ଯେବା ଦେବ ସେବି
ତାର ପ୍ରସନ୍ନେ ଫଳ ଲଭି
ଏମନ୍ତେ ପିତାବାକ୍ୟ ମାନି
ଧର୍ମପତ୍ନୀକୁ ସଙ୍ଗେ ଘେନି

ସେ ପତିବ୍ରତା ଅନସୂୟା
ତାଙ୍କୁ ନ ଲାଗେ ବିଷ୍ଣୁମାୟା
ସେ ସାଧ୍ୱୀ ପତ୍ନୀ ସଙ୍ଗ ମେଳେ
ମିଳିଲେ ଗିରି କୁଳାଚଳେ ।୧୭।
ସେ ଗିରି ଶିଖେ ନାନା ଫୁଲ
ସୁରଙ୍ଗ ସୁଗନ୍ଧ ଅତୁଲ୍ୟ
ଚନ୍ଦନ ଅଶୋକ ଚମ୍ପକ
ପାରିଜାତକ କୁରୁବକ
ନିର୍ବିନ୍ଧ୍ୟା ନାମେ ନଦୀ ବହେ
ସ୍ନାନେ ସକଳ ପାପ ଦହେ ।୧୮।

ପ୍ରାଣାୟାମେନ ସଂଯମ୍ୟ ମନୋ ବର୍ଷଶତଂ ମୁନିଃ ।
ଅତିଷ୍ଠଦେକପାଦେନ ନିର୍ଦ୍ୱନ୍ଦ୍ୱୋଽନିଲଭୋଜନଃ । ୧୯ ।
ଶରଣଂ ତଂ ପ୍ରପଦ୍ୟେଽହଂ ଯ ଏବ ଜଗଦୀଶ୍ୱରଃ ।
ପ୍ରଜାମାତ୍ମସମାଂ ମହ୍ୟଂ ପ୍ରୟଚ୍ଛତ୍ୱିତି ଚିନ୍ତୟନ୍ । ୨୦ ।
ତପ୍ୟମାନଂ ତ୍ରିଭୁବନଂ ପ୍ରାଣାୟାମୈଧସାଗ୍ନିନା ।
ନିର୍ଗତେନ ମୁନେର୍ମୂର୍ଦ୍ଧ୍ନଃ ସମୀକ୍ଷ୍ୟ ପ୍ରଭବସ୍ତ୍ରୟଃ । ୨୧ ।
ଅପ୍‌ସରୋମୁନିଗନ୍ଧର୍ବସିଦ୍ଧବିଦ୍ୟାଧରୋରଗୈଃ ।
ବିତାୟମାନଯଶସସ୍ତଦାଶ୍ରମପଦଂ ଯୟୁଃ । ୨୨ ।

---

ସେ ପ୍ରାଣାୟାମ ଦ୍ୱାରା ମନ ସଂଯମ କରି ଜଗତ୍ର କର୍ତ୍ତା ଈଶ୍ୱରଙ୍କର ଶରଣାଗତ ହୋଇଥିଲେ ଏବଂ ନିଜର ଅନୁରୂପ ସନ୍ତାନଲାଭ କରିବାକୁ ପ୍ରାର୍ଥନା କରି ଶତବର୍ଷ ଏକପାଦରେ ଦଣ୍ଡାୟମାନ ହୋଇ ତପସ୍ୟାମଗ୍ନ ହୋଇଥିଲେ । ଏହି ବନମଧ୍ୟରେ ପ୍ରାଣାୟାମ ଦ୍ୱାରା ମନସଂଯତ କରିଥିବାରୁ ଶୀତ, ଉଷ୍ଣ ପ୍ରଭୃତି ଦ୍ୱନ୍ଦ୍ୱସହିଷ୍ଣୁ ହେବା ମାତ୍ରକେ ବାୟୁଭକ୍ଷଣ କରି ରହିଥିଲେ । ୧୯,୨୦ ।

ଏହି ତପସ୍ୟା କରୁ କରୁ ମୁନିଙ୍କର ମସ୍ତକରୁ ଜ୍ୱଳନ୍ତଅଗ୍ନି ବହିର୍ଗତ ହେଲା ଏବଂ ତାହାଙ୍କର ପ୍ରାଣାୟାମ ଦ୍ୱାରା ଏହି ଅଗ୍ନି ଉଦ୍ଦୀପିତ ହେଲା । ଏହି ଅଗ୍ନିଦ୍ୱାରା ତ୍ରିଭୁବନ ଦହ୍ୟମାନ ହେବାର ଦେଖି ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏହି ତିନି ପ୍ରଧାନ ଦେବତା ତାହାଙ୍କର ଆଶ୍ରମକୁ ଗମନ କରିଥିଲେ । ସେତେବେଳେ ଅପ୍‌ସରା, ମୁନି, ଗନ୍ଧର୍ବ, ସିଦ୍ଧ, ବିଦ୍ୟାଧର ଓ ନାଗ ସେମାନଙ୍କର ଯଶୋଗୀତି ଗାନ କରିଥିଲେ । ୨୧,୨୨

---

ସେ ସ୍ଥାନେ ପଶି ବେନି ଜନେ
ତପ ସମାଧି ଯୋଗ ଧ୍ୟାନେ
ମନକୁ ଧରି ଆତ୍ମାବଳେ
ପବନ ଇନ୍ଦ୍ରିୟ କଶ୍ଯଳେ
ଏକ ଚରଣେ ଉଭା ହୋଇ
ଉପର ମୁଖେ ଶୂନ୍ୟେ ଧ୍ୟାୟି
ଶତେ ବରଷ ଯୋଗ ଧ୍ୟାନେ
ବଞ୍ଚିଲେ ପବନ ଭୋଜନେ
ନିଶ୍ଚଳ ଯୋଗ ଧ୍ୟାନେ ଚିନ୍ତି
ଚିତ୍ତେ ଏମନ୍ତ ବିଚାରନ୍ତି । ୧୯ ।
ଜଗତ ପ୍ରଭୁ ଯେ ଈଶ୍ୱର
ସୃଷ୍ଟି ପାଳନ ଚକ୍ରଧର
ଅନାଦି ପରମ କାରଣ
ଦୁର୍ଲ୍ଲଭ ଯାହାର ଚରଣ

ଆତ୍ମର ସନ୍ତତି କାରଣେ
ଶରଣ ଗଲୁଁ ତା ଚରଣେ
ଏମନ୍ତ ଯୋଗ ଚିତ୍ତେ ଚିନ୍ତି
ହରିହିଁ ଆନ ନ ଜାଣନ୍ତି
ସେ ହରି ଯେବେ ଦୟା କରେ
ଜନ୍ମ ଲଭିବେ ଆତ୍ମ ଘରେ
ତେବେ ସେ ନନ୍ଦନ ଆତ୍ମର
ସେ ହରି ଶରଣ ସୋଦର
ଏମନ୍ତେ ଚିତ୍ତେ ନିତ୍ୟେ ଚିନ୍ତି
ସେ ବନେ ତପ ସେ ସାଧନ୍ତି । ୨୦ ।
ଊର୍ଦ୍ଧ୍ୱ ବଦନେ ସେ ନିଶ୍ଚଳ
ଏମନ୍ତେ ଗଲା ଦୀର୍ଘକାଳ
ପ୍ରାଣ ସଂଯମ ଶ୍ରମବଳେ
ଶିରେ ଉପୁଜିଲା ଅନଳେ

ତେଜେ ତାପିଲା ତିନିପୁର
ଦେଖି କମ୍ପିଲେ ସୁର ନର
ତକ୍ଷଣେ ପ୍ରଭୁ ନରହରି
ତିନି ଦେବଙ୍କ ରୂପ ଧରି
ବେଗେ ମିଳିଲେ ଶୂନ୍ୟ ପଥେ
ଗନ୍ଧର୍ବ ବିଦ୍ୟାଧର ଯୁତେ
ଉରଗ ସିଦ୍ଧ ମୁନିବୃନ୍ଦେ
ଅପ୍ସରା ନୃତ୍ୟନ୍ତି ଆନନ୍ଦେ
ସୁସ୍ୱର ଯନ୍ତ୍ରେ ଗୀତ ଗାନ
ଯେଉଁଣେ ସନ୍ତୋଷ ଆତ୍ମାମନ
ତପ ପ୍ରଭାବ ହୃଦେ ବହି
ଶ୍ରୀହରିଯଶ ଭୃଙ୍ଗେ ଗାଇ
ଦୁର୍ଗମ ବନ ତପ ସ୍ଥାନେ
ମିଳିଲେ ମୁନିର ଅଗ୍ରେ ନେ । ୨୧,୨୨

ତତ୍ପ୍ରାଦୁର୍ଭାବସଂଯୋଗବଦ୍ଧ୍ୟୋତିତମନା ମୁନିଃ ।
ଉତ୍ତିଷ୍ଠନ୍ନେକପାଦେନ ଦଦୃଶେ ବିବୁଧର୍ଷଭାନ୍ । ୨୩ ।
ପ୍ରଣମ୍ୟ ଦଣ୍ଡବଦ୍ ଭୂମାବୁପତସ୍ଥେଽର୍ହଣାଞ୍ଜଲିଃ ।
ବୃଷହଂସସୁପର୍ଣ୍ଣସ୍ଥାନ୍ ସ୍ୱୈଃ ସ୍ୱୈଶ୍ଚିହ୍ନୈଶ୍ଚ ଚହ୍ନିତାନ୍ ।
କୃପାବଲୋକେନ ହସଦ୍‌ବଦନେନୋପଲମ୍ଭିତାନ୍ । ୨୪ ।
ତଦ୍‌ରୋଚିଷା ପ୍ରତିହତେ ନିମୀଲ୍ୟ ମୁନିରକ୍ଷିଣୀ ।
ଚେତସ୍ତତ୍ପ୍ରବଣଂ ଯୁଞ୍ଜନ୍ନସ୍ତାବୀତ୍ ସଂହତାଞ୍ଜଲିଃ ।
ଶ୍ଲକ୍ଷ୍ଣୟା ସୂକ୍ତୟା ବାଚା ସର୍ବଲୋକଗରୀୟସଃ । ୨୫ ।

---

ଏହି ପ୍ରଭୁମାନଙ୍କର ଆବିର୍ଭାବ ମାତ୍ରେ ଅତ୍ରିଙ୍କର ମନ ଅତ୍ୟନ୍ତ ପ୍ରଫୁଲ୍ଲିତ ହେଲା । ସେ ପୂର୍ବବତ୍ ଏକପାଦରେ ଦଣ୍ଡାୟମାନ ହୋଇ ସେହି ଶ୍ରେଷ୍ଠ ଦେବତାମାନଙ୍କୁ ଦର୍ଶନ କଲେ । ୨୩ ।

ମହାଦେବ, ବ୍ରହ୍ମା, ବିଷ୍ଣୁ ଯଥାକ୍ରମେ ବୃଷଭ, ହଂସ ଓ ଗରୁଡ଼ ବାହନରେ ଆରୋହଣ କରି ଆସିଥିଲେ ଏବଂ ତ୍ରିଶୂଳ, କମଣ୍ଡଳୁ ଓ ଚକ୍ର ପ୍ରଭୃତି ନିଜ ନିଜର ଚିହ୍ନମାନ ସେମାନଙ୍କ ହସ୍ତରେ ବିରାଜମାନ ଥିଲା । ସଦୟ ଦୃଷ୍ଟି ସମ୍ପନ୍ନ ସହାସ୍ୟ ମୁଖମଣ୍ଡଳ ଦେଖିଲେ ବୁଝି ଯାଉଥିଲା ଯେ ଏମାନେ ପରମ ଦେବତ୍ରୟ, ଏମାନଙ୍କୁ ଦର୍ଶନ କରି ଅତ୍ରିମୁନି ଭୂତଳରେ ପତିତ ହୋଇ ଦଣ୍ଡପ୍ରଣାମ ପୂର୍ବକ କୃତାଞ୍ଜଳି ପୂର୍ବରେ ପୁଷ୍ପାଦି ଦ୍ୱାରା ଅର୍ଚ୍ଚନା କରିଥିଲେ । ୨୪ ।

ସେହି ଦେବତ୍ରୟର ତେଜ ପ୍ରଭାବରେ ଅତ୍ରିଙ୍କର ନୟନ ଯୁଗଳ ପ୍ରତିହତ ହେଲା । ସେ ନୟନ ମୁଦ୍ରିତ କରି ସେମାନଙ୍କ ପ୍ରତି ଏକାଗ୍ରଭାବରେ ମନଃସଂଯୋଗ କରି କୃତାଞ୍ଜଳି ପୂର୍ବରେ ସେହି ସର୍ବଲୋକ ପୂଜ୍ୟ ଦେବତାମାନଙ୍କୁ ଅର୍ଥପୂର୍ଣ୍ଣ ମଧୁର ବାକ୍ୟରେ ସ୍ତବ କରିଥିଲେ । ୨୫ ।

---

ଦେବଙ୍କ ଆଗମନ ଦେଖି
ସେ ମୁନି ଆସନ ଉପେକ୍ଷି
ସମାଧି ତପ ଆଚରଣେ
ଥିଲେ ଯେ ଏକଇ ଚରଣେ
ଦେନି ଚରଣ ଥିରେ ଥୋଇ
କପୋଳେ ଦେନି କର ଦେଇ
ଉଭରଣ ଅଶ୍ରୁଜଳ ନେତ୍ରେ
ପ୍ରଣାମ କରି ଦଣ୍ଡବତେ

ଉଠି ରହିଲି ଶୂନ୍ୟମାର୍ଗେ
ତିନି ମୂରତି ଦେଖି ଆଗେ
ବୃଷଭ ପକ୍ଷିରାଜ ଯାନେ
ପରମ ହଂସର ବିମାନେ
ତିନି ଦେବଙ୍କ ଚିହ୍ନ ଦେଖି
ନିର୍ମ୍ମଳ କଲା ଦେନି ଆଖି
ଦେଖଇ ବ୍ରହ୍ମା ବିଷ୍ଣୁ ହର
ନିଜ ଆୟୁଧ ଧରି କର

ପ୍ରସନ୍ନ ଦଶେ ମୁଖ କାନ୍ତି
ଈଷିତ ହାସ୍ୟେ ଶୋଭି ପାନ୍ତି
ଏମନ୍ତ ଦେଖି ତିନି ମୁଖ
ମୁନି ଛାଡ଼ିଲେ ମନୋଦୁଃଖ
କଣ୍ଠ କୁଣ୍ଠିତ ଗଦଗଦେ
ପ୍ରଣାମ କରି ପଡ଼େ ପାଦେ
କରି ଅଞ୍ଜଳି ଶିରେ ଦେଇ
ବୋଲଇ ତାଙ୍କ ମୁଖ ଚାହିଁ । ୨୩-୨୫

ଶ୍ରୀଅତ୍ରିରୁବାଚ ।

ବିଶ୍ୱୋଦ୍‌ଭବସ୍ଥିତିଲୟେଷୁ ବିଭଜ୍ୟମାନୈ-
ର୍ମାୟାଗୁଣୈରନୁଯୁଗଂ ବିଗୃହୀତଦେହାଃ ।
ତେ ବ୍ରହ୍ମବିଷ୍ଣୁଗିରିଶାଃ ପ୍ରଣତୋଽସ୍ମ୍ୟହଂବ-
ସ୍ତେଭ୍ୟଃ କ ଏବ ଭବତାଂ ମ ଇହୋପହୂତଃ । ୨୭ ।
ଏକୋ ମୟେହ ଭଗବାନ୍ ବିବିଧପ୍ରଧାନୈ-
ଶ୍ଚିତ୍ତୀକୃତଃ ପ୍ରଜନନାୟ କଥଂ ନୁ ଯୂୟମ୍ ।
ଅତ୍ରାଗତାସ୍ତନୁଭୃତାଂ ମନସୋଽପି ଦୂରାଦ୍-
ବ୍ରୂତ ପ୍ରସୀଦତ ମହାନିହ ବିସ୍ମୟୋ ମେ ।୨୭ ।

ଶ୍ରୀମୈତ୍ରେୟ ଉବାଚ ।

ଇତି ତସ୍ୟ ବଚଃ ଶ୍ରୁତ୍ୱା ତ୍ରୟସ୍ତେ ବିବୁଧର୍ଷଭାଃ ।
ପ୍ରତ୍ୟାହୁଃ ଶ୍ଳକ୍ଷ୍ଣୟା ବାଚା ପ୍ରହସ୍ୟ ତମୃଷିଂ ପ୍ରଭୋ । ୨୮ ।

---

ଶ୍ରୀଅତ୍ରି କହିଲେ:—

ପ୍ରତି କଳ୍ପରେ ଏହି ବିଶ୍ୱସୃଷ୍ଟିର, ସ୍ଥିତି, ବିନାଶ ନିମିତ୍ତ ମାୟା-ସ୍ୱରୂପ ଗୁଣତ୍ରୟ ବିଭାଗ କରି ଯେଉଁମାନେ ବିଭିନ୍ନମୂର୍ତ୍ତି ଧାରଣ କରିଥାନ୍ତି, ଆପଣମାନେ ସେହି ବ୍ରହ୍ମା, ବିଷ୍ଣୁ, ମହେଶ୍ୱର । ମୁଁ ଆପଣମାନଙ୍କୁ ପ୍ରଣାମ କରୁଅଛି, ସମ୍ପ୍ରତି ନିଜର ଇଷ୍ଟ ସାଧନ ନିମିତ୍ତ ମୁଁ ଯାହାଙ୍କୁ ଡାକିଅଛି, ଆପଣମାନଙ୍କ ମଧ୍ୟରୁ ସେ ଜଣକ କିଏ ? । ୨୭ ।

ମୁଁ ପ୍ରଜାସୃଷ୍ଟି କାମନାରେ ବିବିଧ ସ୍ତୁତି ପ୍ରଣତି ପ୍ରଭୃତି ପ୍ରଧାନ ଉପାୟ ଅବଲମ୍ବନ ପୂର୍ବକ ଉପସିତ ବିଷୟରେ କେବଳ ଭଗବାନଙ୍କୁ ଚିନ୍ତା କରିଅଛି । ଆପଣ ତିନିଜଣଯାକ ଏଠାକୁ କାହିଁକି ଆସିଲେ ? ଦେହଧାରୀମାନଙ୍କ ପକ୍ଷରେ ଆପଣମାନେ ମନର ଅଗୋଚର, ସୁତରାଂ ଏ ବିଷୟରେ ମୋର ଅତ୍ୟନ୍ତ ବିସ୍ମୟ ଜନ୍ମିଅଛି. ଅତଏବ ଆପଣମାନେ ମୋ ପ୍ରତି ସନ୍ତୁଷ୍ଟ ହେଉନ୍ତୁ, ସମସ୍ତ ରହସ୍ୟ ମୋ ନିକଟରେ ପ୍ରକାଶ କରନ୍ତୁ । ୨୭ ।

ଶ୍ରୀମୈତ୍ରେୟ କହିଲେ :—

ହେ ପ୍ରଭୁବ ସମ୍ପନ୍ନ ବିଦୁର ! ସେହି ଦେବତ୍ରୟ ମହର୍ଷି ଅତ୍ରିଙ୍କର ଏହି ବାକ୍ୟ ଶ୍ରବଣ କରି ସହାସ୍ୟ ବଦନରେ ମଧୁର ବଚନରେ ଋଷିଙ୍କୁ କହିଲେ । ୨୮ ।

---

ଶ୍ରୀଅତ୍ରିରୁବାଚ—

ସ୍ଥିତି ଉଦ୍ଭବ ଲୟ କାର୍ଯ୍ୟେ
ତୁମ୍ଭର ଶରୀର ବିରାଜେ
ଭକ୍ତଜନଙ୍କ ପ୍ରିୟ ଭାବେ
ଶରୀର ବହ ଅନୁଯୁଗେ
ତୁମ୍ଭେ ଯେ ବ୍ରହ୍ମା ବିଷ୍ଣୁ ହର
ମୁଁ ତୁମ୍ଭ ଚରଣେ କିଙ୍କର
ତୁମ୍ଭର ରୂପ ଏ ସଂସାରେ
ପ୍ରକାଶ ଜନ ଉପକାରେ ।୨୭,୨୭
ଏମନ୍ତ ଅତ୍ରିବାକ୍ୟ ଶୁଣି
ବିଷ୍ଣୁ ଶଙ୍କର କୃଶପାଣି
କହନ୍ତି ଅତ୍ରିମୁଖ ଚାହିଁ
ହେ ମୁନି ଭାଗ୍ୟବନ୍ତ ତୁହି
ତୋହର ପ୍ରାୟ ତପଘୋରେ
ତପସ୍ୱୀ ନାହିଁ ଏ ସଂସାରେ
ପତ୍ନୀ ସହିତେ ଦୁଃଖ ସହି
ତପ ଯେ କଲୁ ବନେ ରହି

ଶ୍ରୀଦେବା ଊଚୁଃ ।

ଯଥା କୃତସ୍ତେ ସଂକଳ୍ପୋ ଭାବ୍ୟଂ ତେନୈବ ନାନ୍ୟଥା ।
ସତ୍‌ସଙ୍କଳ୍ପସ୍ୟ ତେ ବ୍ରହ୍ମନ୍ ଯଦ୍‌ବୈ ଧ୍ୟାୟତି ତେ ବୟମ୍ । ୨୯ ।
ଅଥାସ୍ମଦଂଶଭୂତାସ୍ତେ ଆତ୍ମଜା ଲୋକବିଶ୍ରୁତାଃ ।
ଭବିତାରୋଽଙ୍ଗ ଭଦ୍ରଂ ତେ ବିସ୍ରପ୍‌ସ୍ୟନ୍ତି ଚ ତେ ଯଶଃ । ୩୦ ।
ଏବଂ କାମବରଂ ଦତ୍ତ୍ୱା ପ୍ରତିଜଗ୍ମୁଃ ସୁରେଶ୍ୱରାଃ ।
ସଭାଜିତାସ୍ତୟୋଃ ସମ୍ୟଗ୍‌ଦମ୍ପତ୍ୟୋର୍ମିଷତୋସ୍ତତଃ । ୩୧ ।
ସୋମୋଽଭୂଦ୍‌ବ୍ରହ୍ମଣୋଽଂଶେନ ଦତ୍ତୋ ବିଷ୍ଣୋସ୍ତୁ ଯୋଗବିତ୍ ।
ଦୁର୍ବାସାଃ ଶଙ୍କରସ୍ୟାଂଶୋ ନିବୋଧାଙ୍ଗିରସଃ ପ୍ରଜାଃ । ୩୨ ।

---

ଦେବତାମାନେ କହିଲେ :—

ତୁମ୍ଭର ସଂକଳ୍ପ ଅତି ସତ୍ୟ, ସୁତରାଂ ତୁମ୍ଭର ଏହି ସଂକଳ୍ପ ଅବଶ୍ୟ ଫଳବାନ୍ ହେବ, ଏଥିରେ କୌଣସି ସନ୍ଦେହ ନାହିଁ । ତୁମ୍ଭେ ଜଗଦୀଶ୍ୱର ବୋଲି ଯେଉଁ ତତ୍ତ୍ୱ ଚିନ୍ତା କରିଅଛ, ଆମ୍ଭେମାନେ ତିନିଜଣ ସେହି ଜଗଦୀଶ୍ୱର । ୨୯ ।

ହେ ଅତ୍ରି ! ତୁମ୍ଭର ମଙ୍ଗଳ ହେଉ, ଆମ୍ଭମାନଙ୍କର ଅଂଶରେ ତୁମ୍ଭର ତିନୋଟି ବିଶ୍ୱବିଖ୍ୟାତ ପୁତ୍ର ଜନ୍ମଗ୍ରହଣ କରି ତୁମ୍ଭର ଯଶବିସ୍ତାର କରିବେ । ୩୦ ।

ଏହାପରେ ଦେବତ୍ରୟ ଅତ୍ରିଙ୍କୁ ବର ପ୍ରଦାନ କରି ଓ ସେହି ସ୍ୱାମୀ ସ୍ତ୍ରୀଙ୍କଠାରୁ ପୂଜା ଗ୍ରହଣ କରି ସେମାନଙ୍କ ସାକ୍ଷାତରେ ଅନ୍ତର୍ହିତ ହୋଇଥିଲେ । ୩୧ ।

ଅତ୍ରିପତ୍ନୀଙ୍କ ଗର୍ଭରେ ବ୍ରହ୍ମାଙ୍କ ଅଂଶରେ ସୋମ, ବିଷ୍ଣୁଙ୍କ ଅଂଶରେ ଯୋଗବିଦ୍ ଦତ୍ତ ଏବଂ ରୁଦ୍ରଙ୍କ ଅଂଶରେ ଦୁର୍ବାସା ଜନ୍ମ ଗ୍ରହଣ କରିଥିଲେ । ବର୍ତ୍ତମାନ, ଅଙ୍ଗିରାଙ୍କ ସନ୍ତାନ ବିଷୟ ଶ୍ରବଣ କର । ୩୨

---

ତେଣୁ ଆମ୍ଭର ତୋତେ ଦୟା
ତପେ ଦଗଧ କଲୁ କାୟା
ଚିତ୍ତେ ତୁ କଳ୍ପିଅଛୁ ଯାହା
ତୋତେ ପ୍ରାପତ ହେଉ ତାହା
ଯାହାଙ୍କୁ ଧ୍ୟାନ କରୁ ତୁହି
ସେ ଆମ୍ଭେ ତିନି ଏକ ହୋଇ
ମନେ ତୁ ସଂଶୟ ନ କର
ହୋଇବୁ ତୁମ୍ଭର କୁମର
ତୋହର ଯଶ ଏ ଜଗତେ
କିର୍ତ୍ତନ ରହିବ ଯେମନ୍ତେ
କରିବୁଁ ସତ୍ୟ ଏ ବଚନ
କହି ହୋଇଲେ ଅନ୍ତର୍ଦ୍ଧାନ
ନିଜ ଭୁବନେ ଗଲେ ଦେବେ
ଶୁଣ ବିଦୁର କହୁଁ ଏବେ । ୨୮-୩୧
ସେ ଅତ୍ରି ପତ୍ନୀ ଗର୍ଭଭବେ
ଜନ୍ମ ହୋଇଲେ ତିନି ଦେବେ
ଜନ୍ମିଲ ମଧ୍ୟେ ସୋମ ଜାତ
ହରିଅଂଶ ଦତ୍ତ ଯେ ସମ୍ଭୂତ
ଦୁର୍ବାସା ଧୂର୍ଜଟିର ଅଂଶେ
ଜନ୍ମ ହୋଇଲେ ପୃଷ୍ଠ ଦେଶେ
ତପ ପ୍ରଭାବର ଏ ଗୁଣ
ଏବେ ଅଙ୍ଗିରାବଂଶ ଶୁଣ । ୩୨ ।

ଶ୍ରଦ୍ଧା ତ୍ୱଙ୍ଗିରସଃ ପତ୍ନୀ ଚତସ୍ରୋଽସୂତ କନ୍ୟକାଃ ।
ସିନୀବାଲୀ କୁହୂ ରାକା ଚତୁର୍ଥ୍ୟନୁମତିସ୍ତଥା ।୩୩।
ତତ୍‌ପୁତ୍ରାବପରାବାସ୍ତାଂ ଖ୍ୟାତୌ ସ୍ୱାରୋଚିଷେଽନ୍ତରେ ।
ଉତଥ୍ୟୋ ଭଗବାନ୍ ସାକ୍ଷାଦ୍ ବ୍ରହ୍ମିଷ୍ଠଶ୍ଚ ବୃହସ୍ପତିଃ ।୩୪।
ପୁଲସ୍ତ୍ୟୋଽଜନୟତ୍ ପତ୍ନ୍ୟାମଗସ୍ତ୍ୟଞ୍ଚ ହବିର୍ଭୁବି ।
ସୋଽନ୍ୟଜନ୍ମନି ଦହ୍ରାଗ୍ନିର୍ବିଶ୍ରବାଶ୍ଚ ମହାତପାଃ ।୩୫।
ତସ୍ୟ ଯକ୍ଷପତିର୍ଦେବଃ କୁବେରସ୍ତ୍ୱିଲବିଲାସୁତଃ ।
ରାବଣଃ କୁମ୍ଭକର୍ଣ୍ଣଶ୍ଚ ତଥାନ୍ୟସ୍ୟାଂ ବିଭୀଷଣଃ ।୩୬।

---

ଆଙ୍ଗିରାଙ୍କର ପତ୍ନୀ ଶ୍ରଦ୍ଧା, ସେ ସିନୀ, କୁହୂ, ରାକା ଓ ଅନୁମତୀ ନାମରେ ଚାରୋଟି କନ୍ୟା ପ୍ରସବ କରିଥିଲେ ।୩୩।

ଏତଦ୍‌ବ୍ୟତୀତ ତାଙ୍କର ଉତଥ୍ୟ ଓ ବୃହସ୍ପତି ନାମକ ଦୁଇଟି ପୁତ୍ର ଜାତ ହୋଇଥିଲେ । ସେମାନେ ସ୍ୱାରୋଚିଷ ମନ୍ୱନ୍ତରରେ ଖ୍ୟାତି ଲାଭ କରିଥିଲେ, ଉତଥ୍ୟ ସାକ୍ଷାତ୍ ଭଗବାନ୍ ଏବଂ ବୃହସ୍ପତି ବ୍ରହ୍ମଜ୍ଞଶ୍ରେଷ୍ଠ ।୩୪।

ଋଷିବର ପୌଲସ୍ତ୍ୟଙ୍କ ପତ୍ନୀ ହବିର୍ଭୂଙ୍କ ଗର୍ଭରେ ଅଗସ୍ତ୍ୟ ଜନ୍ମ ଗ୍ରହଣ କରିଥିଲେ । ସେ ଜନ୍ମାନ୍ତରରେ ଜଠରାଗ୍ନି ରୂପେ ପ୍ରାଦୁର୍ଭୂତ ହୋଇଥିଲେ । ତାହାଙ୍କର ଦ୍ୱିତୀୟ ପୁତ୍ର ମହାତପସ୍ୱୀ ବିଶ୍ରବସ୍ ।୩୫।

ସେହି ବିଶ୍ରବସ୍‌ଙ୍କର ଇଲା ବିଲା ନାମ୍ନୀ ପତ୍ନୀଙ୍କର ଗର୍ଭରେ ଯକ୍ଷପତି କୁବେର ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ଦ୍ୱିତୀୟ ପତ୍ନୀ କେଶିନୀ ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣଙ୍କର ମାତା ।୩୬।

---

ଶ୍ରଦ୍ଧା ଯେ ଅଙ୍ଗିରାଯୁବତୀ
ତାର ସଂଯୋଗେ ପ୍ରଜାପତି
ଚାରି କୁମାରୀ ଜନ୍ମ କଲା
ସୁନ୍ଦର ରୂପ ଗୁଣଶୀଳା
ଭୁଜାଇ ନାହିଁ ସରିସମ
ଶୁଣ ହେ ତାହାଙ୍କର ନାମ
ପ୍ରଥମ କନ୍ୟା ସିନୀବାଳୀ
ଅପରେ କୁହୂ, ରାକାବାଳୀ
ଚତୁର୍ଥ କନ୍ୟା ଅନୁମତି
ଏମନ୍ତେ କନ୍ୟାଙ୍କର ଖ୍ୟାତି ।୩୩।

ଅପରେ ବେନି ପୁତ୍ର ଜାତ
ଉତଥ୍ୟ ବୃହସ୍ପତି ଖ୍ୟାତ
ଏ ସ୍ୱାରୋଚିଷ ମନ୍ୱନ୍ତରେ
ଗୁଣେ ବିଖ୍ୟାତ ତିନିପୁରେ
ବ୍ରହ୍ମବନ୍ଦିତ ତାଙ୍କ ଗୁଣ
ପୁଲସ୍ତିବଂଶ ଏବେ ଶୁଣ ।୩୪।
ଅଗସ୍ତି ହବିଗର୍ଭେ ପୁଣି
ଜନ୍ମିଲେ ବ୍ରହ୍ମ ତେଜ ଘେନି
ଏ ଅନ୍ୟ ଜନ୍ମରେ ଜଠର—
ଅଗ୍ନିରେ ଖ୍ୟାତ ତିନିପୁର

ବିଶ୍ରବା ନାମେ ଆଉ ସୁତ
ଯା ଯଶ ତିନିପୁରେ ଖ୍ୟାତ ।୩୫।
ତା ପତ୍ନୀ ନାମ ଇଡ଼ବିଡ଼ା
ଦୁର୍ଲ୍ଲଭ ପୁତ୍ର ପ୍ରସବିଲା
କୁରୂପ ଦେଖି ତା ଶରୀର
ତା ନାମ କଲ୍ପିଲା କୁବେର
ପୁଣି ବିଶ୍ରବା ଋଷି ଘେନି
ଅସୁରୀ ଗର୍ଭେ ପୁତ୍ର ତିନି
ରାବଣ କୁମ୍ଭକର୍ଣ୍ଣ ନାମ
ଆଉ ଯା ନାମ ବିଭୀଷଣ ।୩୬।

ପୁଲହସ୍ୟ ଗତିର୍ଭାର୍ଯ୍ୟା ତ୍ରୀନସୂତ ସତୀ ସୁତାନ୍ ।
କର୍ମଶ୍ରେଷ୍ଠଂ ବରୀୟାଂସଂ ସହିଷ୍ଣୁଞ୍ଚ ମହାମତେ । ୩୭ ।
କ୍ରତୋରପି କ୍ରିୟା ଭାର୍ଯ୍ୟା ବାଲଖିଲ୍ୟାନସୂୟତ ।
ଋଷୀନ୍ ଷଷ୍ଟିସହସ୍ରାଣି ଜ୍ୱଲତୋ ବ୍ରହ୍ମତେଜସା । ୩୮ ।
ଊର୍ଜ୍ଜାୟାଂ ଜଜ୍ଞିରେ ପୁତ୍ରା ବଶିଷ୍ଠସ୍ୟ ପରନ୍ତପ ।
ଚିତ୍ରକେତୁପ୍ରଧାନାସ୍ତେ ସପ୍ତ ସପ୍ତର୍ଷୟୋଽମଲାଃ । ୩୯ ।
ଚିତ୍ରକେତୁଃ ସୁରୋଚିଶ୍ଚ ବିରଜା ମିତ୍ର ଏବ ଚ ।
ଉଲ୍ୱଣୋ ବସୁଭୃଦ୍ୟାନୋ ଦ୍ୟୁମାନ୍ ଶକ୍ତ୍ୟାଦୟୋଽପରେ । ୪୦ ।
ଚିତ୍ତିସ୍ତ୍ୱଥର୍ବଣଃ ପତ୍ନୀ ଲେଭେ ପୁତ୍ରଂ ଧୃତବ୍ରତମ୍ ।
ଦଧ୍ୟଞ୍ଚମଶ୍ୱଶିରସଂ ଭୃଗୋର୍ବଂଶଂ ନିବୋଧ ମେ । ୪୧ ।

---

ହେ ମହାମତେ ! ପୁଲହଙ୍କର ଭାର୍ଯ୍ୟାଙ୍କର ନାମ ଗତି, ତାହାଙ୍କଠାରୁ ତିନୋଟି ପୁତ୍ର ଜାତ ହୋଇଥିଲେ । ସେମାନଙ୍କର ନାମ—କର୍ମଶ୍ରେଷ୍ଠ, ବରୀୟସ୍ ଓ ସହିଷ୍ଣୁ । ୩୭ ।

କ୍ରତୁଙ୍କର ପତ୍ନୀ କ୍ରିୟା, ସେ ବ୍ରହ୍ମତେଜ ଦ୍ୱାରା ପ୍ରକାଶମାନ ବାଳଖିଲ୍ୟ ନାମକ ଷାଠିଏ ହଜାର ପୁତ୍ର ଜନ୍ମ କରିଥିଲେ । ୩୮ ।

ହେ ପରନ୍ତପ ! ବଶିଷ୍ଠଙ୍କର ସ୍ତ୍ରୀଙ୍କର ନାମ ଊର୍ଜ୍ଜା, ସେ ଚିତ୍ରକେତୁ ପ୍ରମୁଖ ଅମଳଚରିତ୍ର ସପ୍ତର୍ଷିନାମରେ ସାତଟି ପୁତ୍ର ପ୍ରସବ କରିଥିଲେ ଯଥା :—ଚିତ୍ରକେତୁ, ସୁରୋଚି, ବିରଜା, ମିତ୍ର; ଉଲ୍ୱଣ, ବସୁଭୃଦ୍‌ଯାନ ଓ ଦ୍ୟୁମାନ୍ । ବଶିଷ୍ଠଙ୍କ ଅନ୍ୟ ସ୍ତ୍ରୀଙ୍କ ଗର୍ଭରୁ ଶକ୍ତ୍ରୀ ପ୍ରଭୃତି ଅନ୍ୟ ପୁତ୍ରମାନେ ଜନ୍ମଗ୍ରହଣ କରିଥିଲେ । ୩୯, ୪୦ ।

ମହର୍ଷି ଅଥର୍ବାଙ୍କର ପତ୍ନୀ ଚିତ୍ତି, ଦଧିଚୀ ନାମରେ ତାହାଙ୍କର ଗୋଟିଏ ପୁତ୍ର ଜାତ ହୋଇଥିଲେ । ତାହାଙ୍କର ଅନ୍ୟ ନାମ ଅଶ୍ୱଶିରା । ଏ ତପୋନିଷ୍ଠ ଥିଲେ । ବର୍ତ୍ତମାନ ଭୃଗୁବଂଶ ବର୍ଣ୍ଣନା କରୁଅଛି ଶୁଣ ।୪୧

---

ପୁଲହ ଗତି ଭାର୍ଯ୍ୟା ଗର୍ଭେ
ତିନି ବାଳକ ସୃଷ୍ଟି ଲଭେ
ଜ୍ୟେଷ୍ଠର ନାମ କର୍ମ୍ମ ଶ୍ରେଷ୍ଠ
ଦ୍ୱିତୀୟ ବରୀୟାଂସ ଶ୍ରେଷ୍ଠ
ସହିଷ୍ଣୁ ତୃତୀୟ ପ୍ରକାଶ
ଏବେ ତୁ ଶୁଣ କ୍ରତୁ ବଂଶ ।୩୭।
କ୍ରତୁର ପତ୍ନୀ ନାମ କ୍ରିୟା
ତା ପୁତ୍ର ଶୁଣ ପୁଣ୍ୟଦେହା
ଷଷ୍ଠୀସହସ୍ର ବାଳଖିଲ୍ୟା
ତା ଗର୍ଭେ ପୁତ୍ର ଉପୁଜିଲା
କେ ପାରେ ତାଙ୍କ ଗୁଣ ଚିନ୍ତି
ଅନଳ ପ୍ରାୟ ଦିଶେ କାନ୍ତି ।୩୮।
ଶୁଣ କହିବା ବଂଶ ଏବେ
ବଶିଷ୍ଠ ଅରୁନ୍ଧତୀ ଗର୍ଭେ
ନିର୍ମ୍ମଳ ଗୁଣେ ସପ୍ତଋଷି
ମନ୍ୱନ୍ତରେ ନାମ ଘୋଷି
ଜ୍ୟେଷ୍ଠ ଚିତ୍ରକେତୁ ସୁରୋଚି
ବିରଜା ମିତ୍ର ବେନି ଶୁଚି
ଉଲ୍ୱଣ ବସୁଭୃତ ଯାନ
ଦ୍ୟୁମାନ ଶକ୍ତି ଆଦି ଅନ୍ୟ ।୩୯,୪୦
ଚିତ୍ତର ବଂଶ ଏବେ କହି
ଶୁଣ ବିଦୁର ମନଦେଇ
ଅଥର୍ବପତ୍ନୀ ସେ ସ୍ୱଭାବେ
ପୁତ୍ର ଜନ୍ମିଲେ ତାର ଗର୍ଭେ
ଦଧୀଚି ନାମେ ମହାଧୀର
ସ୍ୱଭାବେ ଦିଶେ ଅଶ୍ୱଶିର
କେ କହିପାରେ ତାଙ୍କ ଗୁଣ
ଏବେ ତୁ ଭୃଗୁବଂଶ ଶୁଣ । ୪୧ ।

ଭୃଗୁଃ ଖ୍ୟାତ୍ୟାଂ ମହାଭାଗଃ ପତ୍ନ୍ୟାଂ ପୁତ୍ରାନଜୀଜନତ୍ ।
ଧାତାରଞ୍ଚ ବିଧାତାରଂ ଶ୍ରିୟଞ୍ଚ ଭଗବତ୍ପରାମ୍ । ୪୨ ।
ଆୟତିଂ ନିୟତିଞ୍ଚୈବ ସୁତେ ମେରୁସ୍ତୟୋରଦାତ୍ ।
ତାଭ୍ୟାଂ ତୟୋରଭବତାଂ ମୃକଣ୍ଡଃ ପ୍ରାଣ ଏବ ଚ । ୪୩ ।
ମାର୍କଣ୍ଡେୟୋ ମୃକଣ୍ଡସ୍ୟ ପ୍ରାଣାଦ୍‌ବେଦଶିରା ମୁନିଃ ।
କବିଶ୍ଚ ଭାର୍ଗବୋ ଯସ୍ୟ ଭଗବାନୁଶନା ସୁତଃ-
ସର୍ବେ ତେ ମୁନୟଃ କ୍ଷତ୍ତର୍ଲୋକାନ୍ ସର୍ଗୈରଭାବୟନ୍ । ୪୪ ।
ଏଷ କର୍ଦ୍ଦମଦୌହିତ୍ରସନ୍ତାନଃ କଥିତସ୍ତବ ।
ଶୃଣ୍ୱତଃ ଶ୍ରଦ୍ଦଧାନସ୍ୟ ସଦ୍ୟଃ ପାପହରଃ ପରଃ । ୪୫ ।

---

ମହାଭାଗ ଭୃଗୁ ଆପଣାର ପତ୍ନୀ ଖ୍ୟାତିଙ୍କ ଗର୍ଭରେ ଧାତା ଓ ବିଧାତା ନାମରେ ଦୁଇ ପୁତ୍ର ଏବଂ ଭଗବତ୍ପରାୟଣା ଶ୍ରୀ ନାମ୍ନୀ ଗୋଟିଏ କନ୍ୟା ଉତ୍ପାଦନ କରିଥିଲେ । ୪୨ ।

ଧାତା ଓ ବିଧାତା ମେରୁଙ୍କର ଆୟତୀ , ନିୟତୀ ନାମରେ ଦୁଇଟି କନ୍ୟାଙ୍କୁ ବିବାହ କରିଥିଲେ । ଧାତା ଓ ବିଧାତାଙ୍କ ଠାରୁ ମୃକଣ୍ଡ ଓ ପ୍ରାଣ ନାମରେ ଦୁଇଟି ପୁତ୍ର ଜନ୍ମଗ୍ରହଣ କରିଥିଲେ । ୪୩ ।

ହେ ବତ୍ସ ! ମୃକଣ୍ଡଙ୍କର ପୁତ୍ର ମାର୍କଣ୍ଡେୟ, ପ୍ରାଣଙ୍କର ବେଦଶିରା ନାମକପୁତ୍ର ଜାତ ହୋଇଥିଲେ । ଭୃଗୁଙ୍କର କବିନାମରେ ଅନ୍ୟ ଏକ ପୁତ୍ରଥିଲେ, ତାହାଙ୍କର ପୁତ୍ର ଭଗବାନ୍ ଉଶନା । ଏହି ପୁତ୍ରମାନେ ସୃଷ୍ଟି କାର୍ଯ୍ୟରେ ପ୍ରବୃତ୍ତ ହୋଇ ଏହି ଲୋକ ସମସ୍ତ ପ୍ରକାଶ କରିଅଛନ୍ତି । ୪୪ ।

ହେ ବିଦୁର ! ପ୍ରଜାପତି କର୍ଦ୍ଦମଙ୍କର ଦୌହିତ୍ର ବଂଶର ବୃତ୍ତାନ୍ତ ତୁମ୍ଭ ନିକଟରେ ବର୍ଣ୍ଣନା କଲି । ଶ୍ରଦ୍ଧା ସହକାରେ ଏହା ଯେ ଶ୍ରବଣ କରେ ତାହାର ସମସ୍ତ ପାପ ହଠାତ୍ ବିଦୂରିତ ହୁଏ । ୪୫ ।

---

ଭୃଗୁର ପତ୍ନୀ ଖ୍ୟାତିଗର୍ଭେ
ଜନ୍ମ ଅପତ୍ୟ ସୃଷ୍ଟିଲଭେ
ଧାତା ବିଧାତା ବେନି ସୁତ
କନ୍ୟାଏ କମଳା ସମ୍ଭୂତ । ୪୨ ।
ଧାତା ବିଧାତା ବେନି ବାଳେ
ସୁନ୍ଦର ରୂପ ବାଳକାଳେ
ସୁମେରୁ ପର୍ବତ ଦୁହିତା
ଆୟତି ନିୟତି ସମ୍ଭୂତା
ଏ ବେନି କନ୍ୟା ବେନି ଭାଇ
ବିଭା ହୋଇଲେ ବନ୍ଧା ଦୁଇ
ସେ ବେନି କନ୍ୟା ଗର୍ଭଗତେ
ଜନ୍ମ ହୋଇଲେ ବେନି ସୁତେ
ମୃକଣ୍ଡ ପ୍ରାଣ ତାଙ୍କ ନାମ
ସୁନ୍ଦରେ ସମ ନୋହେ କାମ । ୪୩ ।
ମୃକଣ୍ଡସୁତ ମାର୍କଣ୍ଡେୟ
ପ୍ରାଣର ଏକଇ ତନୟ
ତା ନାମ ବେଦଶିରା ହୋଏ
ମୁନିଙ୍କ ମଧ୍ୟେ ମହାଶୟେ
ଭୃଗୁର କବି ନାମେ ପୁତ୍ର
ଉଶନା ମୁନି ତାର ସୁତ
ଏ ସର୍ବମୁନି ମହାଜନ
ସ୍ଥାପିବେ ତ୍ରୈଲୋକ୍ୟ ଭୁବନ । ୪୪ ।
ଏମନ୍ତେ କର୍ଦ୍ଦମଦୁହିତ
କହିଲି ମୁନିବଂଶ ଖ୍ୟାତି
ଶ୍ରଦ୍ଧାଏ ଶୁଣନ୍ତି ଯେ ନରେ
ଜ୍ଞାନ ଅଜ୍ଞାନ ପାପ ହରେ । ୪୫ ।

ପ୍ରସୂତିଂ ମାନବୀଂ ଦକ୍ଷ ଉପଯେମେ ହ୍ୟଜାତ୍ମଜଃ ।
ତସ୍ୟାଂ ସସର୍ଜ୍ଜ ଦୁହିତୄଃ ଷୋଡ଼ଶାମଲଲୋଚନାଃ । ୪୬ ।
ତ୍ରୟୋଦଶାଦାଦ୍ଧର୍ମାୟ ତଥୈକାମଗ୍ନୟେ ବିଭୁଃ ।
ପିତୃଭ୍ୟ ଏକାଂ ଯୁକ୍ତେଭ୍ୟୋ ଭବାୟୈକାଂ ଭବଚ୍ଛିଦେ । ୪୭ ।
ଶ୍ରଦ୍ଧା ମୈତ୍ରୀ ଦୟା ଶାନ୍ତିସ୍ତୁଷ୍ଟିଃ ପୁଷ୍ଟିଃ କ୍ରିୟୋନ୍ନତିଃ ।
ବୁଦ୍ଧିର୍ମେଧା ତିତିକ୍ଷା ହ୍ରୀର୍ମୂର୍ତ୍ତିର୍ଧର୍ମସ୍ୟ ପତ୍ନୟଃ । ୪୮ ।
ଶ୍ରଦ୍ଧାସୂତ ଋତଂ ମୈତ୍ରୀ ପ୍ରସାଦମଭୟଂ ଦୟା ।
ଶାନ୍ତିଃ ସୁଖଂ ମୁଦଂ ତୁଷ୍ଟିଃ ସ୍ମୟଂ ପୁଷ୍ଟିରସୂୟତ । ୪୯ ।
ଯୋଗଂ କ୍ରିୟୋନ୍ନତିର୍ଦର୍ପମର୍ଥଂ ବୁଦ୍ଧିରସୂୟତ ।
ମେଧା ସ୍ମୃତିଂ ତିତିକ୍ଷା ତୁ କ୍ଷେମଂ ହ୍ରୀଃ ପ୍ରଶ୍ରୟଂ ସୁତମ୍ । ୫୦ ।

---

ବ୍ରହ୍ମପୁତ୍ର ଦକ୍ଷ ମନୁକନ୍ୟା ପ୍ରସୂତିଙ୍କୁ ବିବାହ କରି ତାହାଙ୍କ ଗର୍ଭରେ ଷୋଳଗୋଟି ସୁନେତ୍ରା କନ୍ୟା ଉତ୍ପାଦନ କରିଥିଲେ । ୪୬ ।

ଦକ୍ଷ ଏହି ଷୋଳକନ୍ୟାଙ୍କ ମଧ୍ୟରୁ ତେରଗୋଟି ଧର୍ମଙ୍କୁ, ଗୋଟିଏ ଅଗ୍ନିଙ୍କୁ, ଗୋଟିଏ ଯାବତୀୟ ପିତୃଗଣଙ୍କୁ ଏବଂ ଗୋଟିଏ ଭଗବାନ୍ ଶଙ୍କରଙ୍କୁ ପ୍ରଦାନ କରିଥିଲେ । ୪୭ ।

ଏହି କନ୍ୟାମାନଙ୍କର ନାମ ଶ୍ରବଣ କର —ଶ୍ରଦ୍ଧା, ମୈତ୍ରୀ, ଦୟା, ଶାନ୍ତି, ତୁଷ୍ଟି, ପୁଷ୍ଟି କ୍ରିୟା, ଉନ୍ନତି, ବୁଦ୍ଧି, ମେଧା, ତିତିକ୍ଷା ଲଜ୍ଜା, ମୂର୍ତ୍ତି, ଏହି ତେରଜଣ ଧର୍ମପତ୍ନୀ । ୪୮ ।

ଶ୍ରଦ୍ଧାଙ୍କଠାରୁ ସତ୍ୟ, ମୈତ୍ରୀଙ୍କ ଠାରୁ ପ୍ରସାଦ, ଦୟାଙ୍କଠାରୁ ଅଭୟ, ଶାନ୍ତିଙ୍କଠାରୁ ଶମ, ତୁଷ୍ଟିଙ୍କ ଠାରୁ ହର୍ଷ ପୁଷ୍ଟିଙ୍କ ଠାରୁ ଗର୍ବ, କ୍ରିୟାଙ୍କଠାରୁ ଯୋଗ, ଉନ୍ନତିଠାରୁ ଦର୍ପ, ବୁଦ୍ଧିଙ୍କଠାରୁ ଧୈର୍ଯ୍ୟ, ମେଧାଙ୍କଠାରୁ ସ୍ମୃତି, ତିତିକ୍ଷାଙ୍କଠାରୁ କ୍ଷେମ ଓ ଲଜ୍ଜାଙ୍କଠାରୁ ବିନୟ ଜାତ ହୋଇଥିଲେ । ୪୯ ୫୦ ।

---

ଯେ ସ୍ୱାୟମ୍ଭୁବ ମନୁ ସୁତା
ପ୍ରସୂତି ନାମେ ପତିବ୍ରତା
ତାହାର ପତି ଶୁଦ୍ଧମତି
ଯା ନାମ ଦକ୍ଷ ପ୍ରଜାପତି
ତା ସ୍ୱାର୍ଯ୍ୟେ ପ୍ରସୂତିର ଗର୍ଭେ
ଷୋଡ଼ଶ କନ୍ୟା ସେ ପ୍ରସବେ
ଜନ୍ମିଲେ ନାରୀ ସୁଲୋଚନୀ
ରୂପେ ତ୍ରିଭୁବନ ମୋହିନୀ । ୪୬ ।
ଧର୍ମଙ୍କୁ ତ୍ରୟୋଦଶ ନାରୀ
ଦେଲେ ସେ ଅଳଙ୍କାର ଭରି
ଅଗ୍ନିଙ୍କୁ ଏକ କନ୍ୟା ଦେଲେ
ପିତୃ ପୁରୁଷେ ଏକ ବାଳା

ଅପରେ ସତୀ ନାମେ କନ୍ୟା
ସୁଗୁଣ ପତିବ୍ରତା ଧନ୍ୟା
ତାଙ୍କୁ ହରଙ୍କୁ କଲେ ଦାନ
ଧର୍ମପତ୍ନୀର ନାମ ଶୁଣ । ୪୭ ।
ଶ୍ରଦ୍ଧା ମଇତ୍ରୀ ଦୟା ଶାନ୍ତି
ତୁଷ୍ଟି ପୁଷ୍ଟି କ୍ରିୟା ଉନ୍ନତି
ତିତିକ୍ଷା ମୂର୍ତ୍ତି ବୁଦ୍ଧି ମେଧା
ଲଜ୍ଜା ସହିତେ ଯେ ପ୍ରସିଦ୍ଧା
ଏମନ୍ତେ ଏତେ ଧର୍ମ ନାରୀ
ଦକ୍ଷ ସୁମନେ ବିଭା କରି । ୪୮ ।

ଶ୍ରଦ୍ଧାର ସୁତ ସତ୍ୟ ଖ୍ୟାତ
ପ୍ରସାଦ ମୈତ୍ରୀ ଠାରୁଁ ଜାତ
ଦୟାର ସୁତ ଯେ ଅଭୟ
ସୁଖ ଯେ ଶାନ୍ତିର ତନୟ
ଆନନ୍ଦ ତୁଷ୍ଟି ଠାରୁଁ ଜାତ
ପୁଷ୍ଟିରୁ ଗର୍ବ ଯେ ସମ୍ଭୂତ
କ୍ରିୟାର ଠାରୁଁ ଯୋଗ ହୋଇ
ଉନ୍ନତି ଦର୍ପ ପ୍ରସବଇ
ଅର୍ଥ ବୁଦ୍ଧିରୁ ପ୍ରସବିଲା
ଲଜ୍ଜାରୁ ବିନୟ ହୋଇଲା ।୪୯,୫

ମୂର୍ତ୍ତିଃ ସର୍ବଗୁଣୋତ୍ପତ୍ତିର୍ନରନାରାୟଣାବୃଷୀ ।
ଯସ୍ୟୋର୍ଜନ୍ମନ୍ୟଦୋ ବିଶ୍ୱମଭ୍ୟନନ୍ଦତ୍ ସୁନିର୍ବୃତମ୍ । ୫୧ ।
ମନାଂସି କକୁଭୋ ବାତାଃ ପ୍ରସେଦୁଃ ସରିତୋଽଦ୍ରୟଃ ।
ଦିବ୍ୟବାଦ୍ୟନ୍ତ ତୂର୍ଯ୍ୟାଣି ପେତୁଃ କୁସୁମବୃଷ୍ଟୟଃ । ୫୨ ।
ମୁନୟସ୍ତୁଷ୍ଟୁବୁସ୍ତୁଷ୍ଟା ଜଗୁର୍ଗନ୍ଧର୍ବକିନ୍ନରାଃ ।
ନୃତ୍ୟନ୍ତି ସ୍ମ ସ୍ତ୍ରିୟୋ ଦେବ୍ୟ ଆସୀତ୍ ପରମମଙ୍ଗଳମ୍ । ୫୩ ।
ଦେବା ବ୍ରହ୍ମାଦୟଃ ସର୍ବ ଉପତସ୍ଥୁରଭିଷ୍ଟବୈଃ । ୫୪ ।

---

ସର୍ବଗୁଣୋତ୍ପାଦନୀ ମୂର୍ତ୍ତିଙ୍କ ଗର୍ଭରୁ ନର ନାରାୟଣ ଋଷି ଦୁହେଁ ଉତ୍ପନ୍ନ ହୋଇଥିଲେ, ସେମାନଙ୍କର, ଉତ୍ପତ୍ତିରେ ସମଗ୍ରବିଶ୍ୱ ଶାନ୍ତିପ୍ରାପ୍ତ ହୋଇ ଆନନ୍ଦ ପ୍ରକାଶ କରିଥିଲା । ୫୧ ।

ସମସ୍ତ ପ୍ରାଣୀଙ୍କର ମନ, ଦିକ୍, ବାୟୁ, ନଦୀ, ପର୍ବତ ସମସ୍ତ ପ୍ରସନ୍ନ ହୋଇଥିଲା, ସେ ସମୟରେ ସ୍ୱର୍ଗରେ ବାଦ୍ୟ ନିନାଦିତ ହୋଇଥିଲା ଏବଂ ଆକାଶରୁ ପୁଷ୍ପବୃଷ୍ଟି ହୋଇଥିଲା । ୫୨ ।

ମୁନିମାନେ ଆନନ୍ଦିତ ଚିତ୍ତରେ ସ୍ତବ କରିଥିଲେ, ଗନ୍ଧର୍ବ ଓ କିନ୍ନରମାନେ ଗାନ କରିଥିଲେ । ଅପ୍ସରା ପ୍ରମୁଖ ଦେବରମଣୀମାନେ ନୃତ୍ୟ କରିଥିଲେ । ଫଳତଃ ସମଗ୍ର ବିଶ୍ୱ ସୁପ୍ରସନ୍ନ ଓ ମଙ୍ଗଳମୟ ହୋଇଥିଲା । ୫୩ ।

ଅଧିକନ୍ତୁ ବ୍ରହ୍ମାଦି ଦେବଗଣ ସ୍ତବଦ୍ୱାରା ଏହି ବାଳକଦ୍ୱୟଙ୍କୁ ଉପାସନା କରିଥିଲେ । ୫୪ ।

---

ମୂର୍ତ୍ତିର ସୁତ ଏବେ କହି
ଆଶ୍ରିତ ସର୍ବ ଗୁଣ ଯହିଁ
ସେ ବେଳେ ନର ନାରାୟଣ
ତାହାଙ୍କ ଜନ୍ମ କର୍ମ ଶୁଣ
ସେ ବେଳେ ପୁତ୍ର ଜନ୍ମ ଦିନେ
ଆନନ୍ଦ ଏ ତିନି ଭୁବନେ
ଦିଗ ପବନ ଗିରି ନଦୀ
ଆନନ୍ଦେ ଉଚ୍ଛୁଳେ ଜଳଧି
ଗଗନେ ସୁରତୂରି ଘୋଷେ
ନିର୍ମଳ କୁସୁମ ବରଷେ
ସକଳ ମୁନି ସ୍ତୁତି କରେ
ସନ୍ତୋଷେ ଗନ୍ଧର୍ବ କିନ୍ନରେ
ନାଚନ୍ତି ଅପସରୀ ବୃନ୍ଦ
ସକଳେ ହୋଇଲେ ଆନନ୍ଦ
ସକଳ ଗ୍ରହେ ଅନୁକୂଳ
ଉତ୍ସବ ପରମ ମଙ୍ଗଳ
ହରଷେ ହର ପଦ୍ମ-ଯୋନି
ସଙ୍ଗେ ଦେବତା ବୃନ୍ଦ ଘେନି
ମିଳିଲେ ଧର୍ମ୍ମର ଭୁବନେ
ଆନନ୍ଦ ମନ ସର୍ବଜନେ ।୫୧-୫୪

ଶ୍ରୀଦେବାଊଚୁଃ ।

**ଯୋ ମାୟୟା ବିରଚିତଂ ନିଜୟାତ୍ମନୀଦଂ ଖେ ରୂପଭେଦମିବ ତତ୍‌ପ୍ରତିଚକ୍ଷଣାୟ ।**
**ଏତେନ ଧର୍ମ୍ମସଦନେ ଋଷିମୂର୍ତ୍ତିନାଦ୍ୟ ପ୍ରାଦୁଶ୍ଚକାର ପୁରୁଷାୟ ନମଃ ପରସ୍ମୈ ।୫୫।**
**ସୋଽୟଂ ସ୍ଥିତିବ୍ୟତିକରୋପଶମାୟ ସୃଷ୍ଟାନ୍ ସତ୍ତ୍ୱେନ ନଃ ସୁରଗଣାନନୁମେୟତତ୍ତ୍ୱଃ ।**
**ଦୃଶ୍ୟାଦଦଭ୍ରକରୁଣେନ ବିଲୋକନେନ ଯଚ୍ଛ୍ରୀନିକେତମମଲଂ କ୍ଷିପତାରବିନ୍ଦମ୍ ।୫୬।**
**ଏବଂ ସୁରଗଣୈସ୍ତାତ ଭଗବନ୍ତାବଭିଷ୍ଟୁତୌ ।**
**ଲବ୍‌ଧାବଲୋକୈର୍ଯଯତୁରର୍ଚ୍ଚିତୌ ଗନ୍ଧମାଦନମ୍ । ୫୭ ।**

---

ଦେବଗଣ କହିଲେ ଃ—

ଆକାଶରେ ମାୟାକୃତ ଗନ୍ଧର୍ବ ନଗରୀର ତୁଲ୍ୟ ଭଗବାନ୍ ନିଜର ମାୟା ବଳରେ ସ୍ୱକୀୟ ସ୍ୱରୂପ ମଧ୍ୟରେ ଏହି ବିଶ୍ୱ ରଚନା କରିଅଛନ୍ତି । ସେହି ସ୍ୱରୂପ ପ୍ରକାଶ ନିମିତ୍ତ ବର୍ତ୍ତମାନ ଏହି ପୁଣ୍ୟାଶ୍ରମରେ ଆପଣ ଋଷିତୁଲ୍ୟ ମୂର୍ତ୍ତି ଧାରଣ କରି ଆତ୍ମ ପ୍ରକାଶ କରିଅଛନ୍ତି, ସେହି ପରମପୁରୁଷ ଭଗବାନଙ୍କୁ ଆମ୍ଭମାନଙ୍କର ନମସ୍କାର । ୫୫ ।

ଏହି ଭଗବାନ୍ ଲୋଚନଦ୍ୱାରା ଆମ୍ଭମାନଙ୍କୁ ଅବଲୋକନ କରନ୍ତୁ , ତାହାଙ୍କର ନୟନ କମଳାଙ୍କର ନିକେତନ ନିର୍ମଳକମଳକୁ ନିନ୍ଦା କରୁଅଛି, ତାହାଙ୍କର ତତ୍ତ୍ୱ ଆମ୍ଭମାନଙ୍କ ପ୍ରତ୍ୟକ୍ଷୀଭୂତ ନୁହେଁ । ବହୁଶାସ୍ତ୍ର ବିଚାର ଦ୍ୱାରା ତାହା ଅନୁମେୟ । ଆମ୍ଭେମାନେ ତାହାଙ୍କର ଅନୁଗ୍ରହ ପାତ୍ର । ଏଣୁ ପ୍ରାର୍ଥନା କରୁଅଛୁ ଯେ ସେ ଏହି ଜଗତର ନିୟମ ବ୍ୟତିକ୍ରମ ଉପଶମାର୍ଥ ସତ୍ତ୍ୱଗୁଣ ଦ୍ୱାରା ଆମ୍ଭମାନଙ୍କୁ ସୃଷ୍ଟି କରିଅଛନ୍ତି । ସୁତରାଂ ତାହାଙ୍କଠାରୁ ଆମ୍ଭେମାନେ ଦେବତ୍ୱ ପ୍ରାପ୍ତ ହୋଇଅଛୁ । ୫୬ ।

ହେ ବତ୍ସ ବିଦୁର ! ଦେବଗଣ ସେହି ନରନାରାୟଣ ଭଗବାନଙ୍କୁ ସ୍ତବ କରିବାରୁ ସେମାନଙ୍କୁ ସେ ଦର୍ଶନ ଦେଇଥିଲେ ଓ ସେମାନଙ୍କ ପ୍ରଦତ୍ତ ପୂଜାଗ୍ରହଣ କରିବାରୁ ସେମାନେ ଗନ୍ଧମାଦନ ପର୍ବତକୁ ଗମନ କରିଥିଲେ । ୫୭ ।

---

ଦେବାଊଚୁ—

ଯେ ନିଜ ମାୟା ଗୁଣେ ହରି
ବିଶ୍ୱ ସଂସାରେ ଦେହ ଧରି
ବିଶ୍ୱ ପାଳନ କ୍ଷେମ ଅର୍ଥେ
ଭାରତ ଭୂମିମଧ୍ୟଗତେ
ଧର୍ମ୍ମର ଗୃହେ ଅବତରି
ପ୍ରକଟ ଋଷି ରୂପ ଧରି
ତପ ଆଚରେ ଜନହିତେ
ସେ ହରିଚରଣେ ନମସ୍ତେ ।୫୫।

ଯେ ହରି ସୃଷ୍ଟି ସ୍ଥିତି ଅର୍ଥେ
ଆମ୍ଭଙ୍କୁ ସର୍ଜ୍ଜିଲେ ଯେ ସତ୍ତ୍ୱେ
ସର୍ବ ରକ୍ଷଣ ଅର୍ଥେ ହରି
ଆତ୍ମାକୁ ବେନି ରୂପ କରି
ପରିପାଳନ ତପବଳେ
ଆସନ ଧରଣୀ ମଣ୍ଡଳେ
ଶ୍ରୀ ନିକେତନ ଜିଣି ନେତ୍ର
କଟାକ୍ଷ ଈକ୍ଷଣେ ପବିତ୍ର

ଯେ ପ୍ରାଣୀ ତାକୁ ଆଶ୍ରେ କରେ
ସଂସାର ବନ୍ଧୁଁ ସୁଖେ ତରେ ।୫୬।
ସେ ଦେବ ସ୍ତୁତି ପୂଜା ଘେନି
ସେ ନର ନାରାୟଣ ବେନି
ତପେ ଜଗତ ଜନ ହିତେ
ସେ ଗନ୍ଧମାଦନ ପର୍ବତେ
ମିଳିଲେ ଶୁଭ ଲଗ୍ନ ବେଳେ
ଭାରତ ଭୂମି ସୁମଙ୍ଗଳେ । ୫୭ ।

ତାବିମୌ ବୈ ଭଗବତୋ ହରେରଂଶାବିହାଗତୌ ।
ଭାରବ୍ୟୟାୟ ଚ ଭୁବଃ କୃଷ୍ଣୌ ଯଦୁକୁରୂଦ୍‌ବହୌ । ୫୮ ।
ସ୍ୱାହାଭିମାନିନଶ୍ଚାଗ୍ନେରାତ୍ମଜାଂସ୍ତ୍ରୀନଜୀଜନତ୍ ।
ପାବକଂ ପବମାନଞ୍ଚ ଶୁଚିଞ୍ଚ ହୁତଭୋଜନମ୍ । ୫୯ ।
ତେଭ୍ୟୋଽଗ୍ନୟଃ ସମଭବଂଶ୍ଚତ୍ୱାରିଂଶଚ୍ଚ ପଞ୍ଚ ଚ ।
ତ ଏବୈକୋନପଞ୍ଚାଶତ୍ ସାକଂ ପିତୃପିତାମହୈଃ । ୬୦ ।
ବୈତାନିକେ କର୍ମ୍ମଣି ଯନ୍ନାମଭିର୍ବ୍ରହ୍ମବାଦିଭିଃ ।
ଆଗ୍ନେୟ୍ୟ ଇଷ୍ଟୟୋ ଯଜ୍ଞେ ନିରୂପ୍ୟନ୍ତେଽଗ୍ନୟସ୍ତୁ ତେ । ୬୧ ।
ଅଗ୍ନିଷ୍ୱାତ୍ତା ବର୍ହିଷଦ ସୌମ୍ୟାଃ ପିତର ଆଜ୍ୟପାଃ ।
ସାଗ୍ନୟୋଽନଗ୍ନୟସ୍ତେଷାଂ ପତ୍ନୀ ଦାକ୍ଷାୟଣୀ ସ୍ୱଧା । ୬୨ ।

---

ଭଗବାନ୍ ହରିଙ୍କର ସେହି ଦୁଇ ଅଂଶ ପୃଥିବୀର ଭାର ହରଣାର୍ଥ କୃଷ୍ଣରୂପେ ଅବତୀର୍ଣ୍ଣ ହୋଇଥିଲେ । ଏମାନଙ୍କ ମଧ୍ୟରୁ ଜଣେ ଯଦୁବୀର ଶ୍ରୀକୃଷ୍ଣ ଓ ଅନ୍ୟ ଜଣକ ମଧ୍ୟମ ପାଣ୍ଡବ ଅର୍ଜୁନ । ୫୮ ।

ବର୍ତ୍ତମାନ୍ ଅନ୍ୟାନ୍ୟ ଦକ୍ଷକନ୍ୟାଙ୍କର ନାମ ଓ ବଂଶ ବୃତ୍ତାନ୍ତ ଶ୍ରବଣ କର । ଅଗ୍ନିଙ୍କର ପତ୍ନୀ ସ୍ୱାହା, ତାହାଙ୍କଠାରୁ ପାବକ, ପବମାନ ଓ ଶୁଚିନାମରେ ଯଜ୍ଞର ହୁତଭୋଗୀ ତନୋଽପୁତ୍ରଜାତ ହୋଇଥିଲେ । ୫୯

ଏମାନଙ୍କଠାରୁ ପଇଁଚାଳିଶଟି ଅଗ୍ନି ଉତ୍ପନ୍ନ, ସେମାନେ ପିତୃ ପିତାମହଙ୍କ ସହିତ ଊନପଞ୍ଚାଶ ସଂଖ୍ୟକ ହୋଇଥିଲେ । ୬୦ ।

ବୈଦିକ କର୍ମରେ ଅର୍ଥାତ୍ ଯାଗ ଯଜ୍ଞାଦିରେ ବ୍ରହ୍ମବାଦୀ ବ୍ରାହ୍ମଣମାନେ ଯେଉଁମାନଙ୍କ ନାମରେ ଅଗ୍ନିରେ ଆହୁତି ପ୍ରଦାନ କରନ୍ତି, ସେମାନେ ଏହି ଅଗ୍ନି । ୬୧ ।

ଅଗ୍ନିଷ୍ୱାତ୍ତ, ବର୍ହିଷଦ, ସୋମପ, ଆଜ୍ୟପ ଏହି ପିତୃଗଣଙ୍କ ମଧ୍ୟରୁ ଯେଉଁମାନେ ଅଗ୍ନୌକରଣ କର୍ମରେ ପ୍ରବୃତ୍ତ ସେମାନେ ସାଗ୍ନି, ଯେଉଁମାନଙ୍କର ଏକର୍ମ ନାହିଁ ସେମାନେ ଅନଗ୍ନି, ସ୍ୱଧା ଏମାନଙ୍କର ପତ୍ନୀ । ୬୨ ।

---

ସେ ବେନି ରୂପ ବିଷ୍ଣୁ ଅଂଶେ
ଜନ୍ମ ଲଭିଲେ ଧର୍ମ ବଂଶେ
ଭୂମିର ଭାର ନିବାରଣେ
ଜଗତ ପରମ କାରଣେ
ସମ୍ପ୍ରତେ ଯଦୁ କୁରୁବଂଶେ
କୃଷ୍ଣ ଅର୍ଜୁନ ବିଷ୍ଣୁ ଅଂଶେ । ୫୮ ।
ଅଗ୍ନିର ସ୍ୱାହା ନାମେ ନାରୀ
ତିନି କୁମର ଜାତ କରି
ପାବକ ପବମାନ ଶୁଚି
ହୁତ ଭୋଜନେ ତାଙ୍କ ରୁଚି । ୫୯ ।

ଏ ତିନି ସାଟଏ ଅଗ୍ନିଗଣେ
ଜନ୍ମିଲେ ସଂସାର ଧାରଣେ
ପଇଁଚାଳିଶ ରୂପ ହୋଇ
ତେତେକେ ଗଲେ ସ୍ୱର୍ଗ ମହୀ
ସେ ପୁଣି ପିତୃ ପିତାମହ
ସଙ୍ଗତେ ଅଣଚାଶ ଦେହ
ସ୍ୱଚ୍ଛନ୍ଦେ ପିତୃଗଣ ସଙ୍ଗେ
ମିଳନ୍ତି ବୈତାନିକ ରଙ୍ଗେ
ଯେ ବ୍ରହ୍ମବାଦୀ ବିପ୍ରଗଣେ
ସେ ଯଜ୍ଞେ ମନ୍ତ୍ର ଉଚାରଣେ

ଅଗ୍ନିକୁ କରନ୍ତି ବରଣ
ତାହାଙ୍କ ନାମ ଏବେ ଶୁଣ
ଅନଳ ସ୍ୱାତ୍ତ ବର୍ହିଷଦ
ସୌମ୍ୟ ଆଜ୍ୟପା ଆଦିଭେଦ
ଅଗ୍ନି ଅନଗ୍ନି ଦୁଇ ହୋଇ
ଅନଗ୍ନି ପିତୃଗଣ କହି
ପିତୃଙ୍କ ପତ୍ନୀ ସ୍ୱଧା ନାମ
ସ୍ୱରୂପ ଗୁଣେ ଅନୁପମ

ତତଭ୍ୟୋ ଦଧାର କନ୍ୟେ ଦ୍ୱେ ବୟୁନାଂ ଧାରଣୀଂ ସ୍ୱଧା ।
ଉଭେ ତେ ବ୍ରହ୍ମବାଦିନ୍ୟୌ ଜ୍ଞାନବିଜ୍ଞାନପାରଗେ । ୬୩ ।
ଭବସ୍ୟ ପତ୍ନୀ ତୁ ସତୀ ଭବଂ ଦେବମନୁବ୍ରତା ।
ଆତ୍ମନଃ ସଦୃଶଂ ପୁତ୍ରଂ ନ ଲେଭେ ଗୁଣଶୀଲତଃ । ୬୪ ।
ପିତର୍ଯ୍ୟପ୍ରତିରୂପେ ସ୍ୱେ ଭବାୟାନାଗସେ ରୁଷା ।
ଅପ୍ରୌଢ଼ୈବାତ୍ମନାତ୍ମାନମଜହାଦ୍‌ଯୋଗସଂଯୁତା । ୬୫ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ଦାକ୍ଷାୟଣୀଂ ନାମ ପ୍ରଥମୋଽଧ୍ୟାୟଃ । ୧ ।

---

ଏମାନଙ୍କର ଔରସରେ ସ୍ୱଧାଙ୍କର ଦୁଇଟି କନ୍ୟା ଜାତ ହୋଇଥିଲେ, ସେମାନଙ୍କର ନାମ, ବୟୁନ ଧାରଣୀ, କିନ୍ତୁ ଏହି ଦୁଇ କନ୍ୟା ଜ୍ଞାନ ବିଜ୍ଞାନରେ ପଣ୍ଡିତା ହୋଇ ବ୍ରହ୍ମବାଦିନୀ ହୋଇଥିଲେ । ଜୀବନ୍‌ମୁକ୍ତା ପ୍ରଯୁକ୍ତ ସେମାନଙ୍କର କୌଣସି ସନ୍ତାନ ନ ଥିଲା । ୬୩ ।

ମହାଦେବ ସତୀନାମ୍ନୀ ଦକ୍ଷକନ୍ୟାଙ୍କର ପାଣିଗ୍ରହଣ କରିଥିଲେ । କିନ୍ତୁ ସେ ପତିପରାୟଣା ହେଲେ ମଧ୍ୟ ଗୁଣ ଓ ଶୀଳରେ ଆତ୍ମତୁଲ୍ୟ ପୁତ୍ରଲାଭ କରି ପାରି ନଥିଲେ । ୬୪ ।

କାରଣ ପିତା ଦକ୍ଷ ବିନା ଦୋଷରେ ତାହାଙ୍କର ସ୍ୱାମୀ ମହାଦେବଙ୍କୁ ନିନ୍ଦା କରିବାରୁ ସେ କ୍ରୋଧ ବଶତଃ ଯୌବନକାଳରେ ଯୋଗାବଲମ୍ବନ କରି ଦେହ ତ୍ୟାଗ କରିଥିଲେ । ୬୫ ।

---

ତାର ଉଦରେ କନ୍ୟା ବେନି
ଜନ୍ମିଲେ ପିତୃ ରୂପ ଘେନି
ଯା ନାମ ବୟୁନା ଧାରଣୀ
ଏ ବେନି କନ୍ୟା ବ୍ରହ୍ମଜ୍ଞାନୀ ।୬୨-୬୩
ଏ ଅନ୍ତେ ଦକ୍ଷ ପ୍ରଜାପତି
ତାର ଦୁହିତା ନାମ ସତୀ

ଈଶ୍ୱର ପତ୍ନୀ ସେ ସ୍ୱଭାବେ
ତାର ଚରିତ ଶୁଣ ଏବେ
ଆତ୍ମା ସଦୃଶ ପୁତ୍ର ଗର୍ଭେ
ସେ ସତୀ କେବେହେଁ ନ ଲଭେ
ପିତା ଅବଜ୍ଞା ସ୍ୱାମୀ ତୁଲେ
ଛଳେ ସେ ନ ସହିଲା ଭଲେ

ପିତାର ଯଜ୍ଞ ଶାଳେ ଯାଇଁ
ସ୍ୱାମିର ଛଳେ କୋପ ବହି
ଦେବଙ୍କ ମଧ୍ୟେ ଯଜ୍ଞଶାଳେ
ଜୀବନଛାଡ଼େଯୋଗବଳେ ।୬୪,୬୫
ଚତୁର୍ଥ ସ୍କନ୍ଧେ ଭାଗବତ
କହିଲା ବିପ୍ର ଜଗନ୍ନାଥ ।



## ଦ୍ୱି ତୀ ୟ ଅ ଧ୍ୟା ୟ ।

ଦ୍ୱିତୀୟେ ପ୍ରଥମାଧ୍ୟାୟୋପକ୍ଷିପ୍ତେ ଭବଦକ୍ଷୟୋଃ ।
ବିଦ୍ୱେଷେ ବର୍ଣ୍ଣ୍ୟତେ ହେତୁର୍ବିଶ୍ୱସୃଗ୍‌ଯଜ୍ଞସମ୍ଭବଃ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀବିଦୁର ଉବାଚ ।

ଭବେ ଶୀଲବତାଂ ଶ୍ରେଷ୍ଠେ ଦକ୍ଷୋ ଦୁହିତୃବତ୍ସଳଃ ।
ବିଦ୍ୱେଷମକରୋତ୍ କସ୍ମାଦନାଦୃତ୍ୟାତ୍ମଜାଂ ସତୀମ୍ । ୧ ।
କସ୍ତଂ ଚରାଚରଗୁରୁଂ ନିର୍ବୈରଂ ଶାନ୍ତବିଗ୍ରହମ୍ ।
ଆତ୍ମାରାମଂ କଥଂ ଦ୍ୱେଷ୍ଟି ଜଗତୋ ଦୈବତଂ ମହତ୍ । ୨ ।
ଏତଦାଖ୍ୟାହି ମେ ବ୍ରହ୍ମନ୍ ଜାମାତୁଃ ଶ୍ୱଶୁରସ୍ୟ ଚ ।
ବିଦ୍ୱେଷସ୍ତୁ ଯତଃ ପ୍ରାଣାଂସ୍ତତ୍ୟାଜ ଦୁସ୍ତ୍ୟଜାନ୍ ସତୀ । ୩ ।

---

### ଶିବ ଓ ଦକ୍ଷଙ୍କର ବିଦ୍ୱେଷାରମ୍ଭ ।

ଦ୍ୱିତୀୟଅଧ୍ୟାୟରେ ବିଶ୍ୱସ୍ରଷ୍ଟା ଦକ୍ଷଙ୍କର ଯଜ୍ଞହେତୁ ଶିବଙ୍କ ସହିତ ବିବାଦ ବିଷୟ ବର୍ଣ୍ଣିତ ହୋଇଅଛି ।୦।

ଶ୍ରୀ ବିଦୁର କହିଲେ :—

ପ୍ରଜାପତି ଦକ୍ଷ ଅତ୍ୟନ୍ତ କନ୍ୟାବତ୍ସଳ, ତଥାପି ସେ କିକାରଣରୁ ସତୀନାମ୍ନୀ କନ୍ୟାଙ୍କୁ ଅନାଦର କରିଥିଲେ ଏବଂ କି ହେତୁ ସେ ଶୀଳବାନ୍ ମାନଙ୍କ ମଧ୍ୟରେ ଶ୍ରେଷ୍ଠ ମହାଦେବଙ୍କ ପ୍ରତି ବିଦ୍ୱେଷ କରିଥିଲେ ? । ୧ ।

ଚରାଚର ବିଶ୍ୱଗୁରୁ, ଶତ୍ରୁତାଚରଣ ଶୂନ୍ୟ, ପ୍ରଶାନ୍ତମୂର୍ତ୍ତି, ସତତ ଆତ୍ମରତ୍ନରେ ନିରତ, ଜଗତର ପରମଦେବତା ସ୍ୱରୂପ ମହାଦେବଙ୍କ ପ୍ରତି କିହେତୁରୁ ସେ ବିଦ୍ୱେଷ ଭାବ ପ୍ରକାଶ କଲେ ? । ୨ ।

ହେ ବ୍ରହ୍ମନ୍ ! ଜାମାତା ଏବଂ ଶ୍ୱଶୁରଙ୍କ ମଧ୍ୟରେ କି କାରଣରୁ ପରସ୍ପରରେ ଦ୍ୱେଷଭାବ ଜାତ ହେଲା, ଯେଉଁ ବିଦ୍ୱେଷ ହେତୁ ସତୀ ନିଜର ଦୁସ୍ତ୍ୟଜ୍ୟ ପ୍ରାଣ ତ୍ୟାଗ କରିଥିଲେ, ତାହା ମୋ ନିକଟରେ ପ୍ରକାଶ କରନ୍ତୁ । ୩ ।

---

### ଶିବଙ୍କ ଭୁଲେ ଦକ୍ଷବାଦ, ଦ୍ୱିତୀୟ ଅଧ୍ୟାୟ ସମ୍ବାଦ ।

ଶ୍ରୀବିଦୁରଉବାଚ—

ଯେ ଶିବ ସାଧୁଙ୍କର ଶ୍ରେଷ୍ଠ
ତା ସଙ୍ଗେ ଦକ୍ଷ କଲା ହଠ
ଦୁହିତା ବତ୍ସଳ ସ୍ୱଭାବେ
ସତୀକୁ ଦେଇଅଛି ଭବେ
କିପାଁ ଅନୀତ ଆଚରିଲା
ସତୀକୁ ଅନାଦର କଲା । ୧ ।

ସଚରାଚର ଗୁରୁ ହର
ଯେ ଆତ୍ମାରାମ ଯୋଗେଶ୍ୱର
ଶାନ୍ତ ବିଗ୍ରହ ନିର୍ବିକାର
ଅଦ୍ଭୁତ ମହିମା ଯାହାର
ସମ ସୁହୃଦ ଶୁଦ୍ଧଚିତ୍ତ
ଜଗତବନ୍ଧୁ ବିଶ୍ୱନାଥ
ତାଙ୍କୁ ଅବଜ୍ଞା କିପାଁ କଲା
କେବା ତାହାଙ୍କୁ ଶିକ୍ଷା ଦେଲା ।୨।

ଜାମାତା ଶ୍ୱଶୁର ସମ୍ବନ୍ଧ
କିପାଁ ସାଧିଲା ବନ୍ଧୁ ଭେଦ
ଶିବଙ୍କୁ ଅନାଦର କଲା
ସେ ଛଳେ ସତୀ ପ୍ରାଣ ଦେଲା
ଏ ବାଣୀ ଶୁଣି ମୋର ମନ
ଚହଲି ଭାବେ ହୋଏ ଛନ୍ନ
ହେ ମୁନି କରିବା ସେନେହ
କହିବା ନ ରହୁ ସନ୍ଦେହ । ୩ ।

ଶ୍ରୀମୈତ୍ରେୟ ଉବାଚ ।

ପୁରା ବିଶ୍ୱସୃଜାଂ ସତ୍ରେ ସମେତାଃ ପରମର୍ଷୟଃ ।
ତଥାମରଗଣାଃ ସର୍ବେ ସାନୁଗା ମୁନୟୋଽଗ୍ନୟଃ । ୪ ।
ତତ୍ର ପ୍ରବିଷ୍ଟମୃଷୟୋ ଦୃଷ୍ଟ୍ୱାର୍କମିବ ରୋଚିଷା ।
ଭ୍ରାଜମାନଂ ବିତିମିରଂ କୁର୍ବନ୍ତଂ ତଂ ମହତ୍ ସଦଃ । ୫ ।
ଉଦତିଷ୍ଠନ୍ ସଦସ୍ୟାସ୍ତେ ସ୍ୱଧିଷ୍ଣ୍ୟେଭ୍ୟଃ ସହାଗ୍ନୟଃ ।
ଋତେ ବିରିଞ୍ଚଂ ଶର୍ବାଂ ଚ ତଦ୍‌ଭାସାକ୍ଷିପ୍ତଚେତସଃ । ୬ ।

---

ଶ୍ରୀ ମୈତ୍ରେୟ କହିଲେ :—

ପୂର୍ବକାଳରେ ବିଶ୍ୱସ୍ରଷ୍ଟା ପ୍ରଜାପତିମାନଙ୍କର ଯଜ୍ଞଲାଗି ମହର୍ଷିଗଣ, ଦେବଗଣ, ମୁନିଗଣ ଓ ଅଗ୍ନି-ସମୂହ ନିଜ ନିଜର ଅନୁଚର ସହିତ ସମାଗତ ହୋଇଥିଲେ । ୪ ।

ଏହି ସମୟରେ ପ୍ରଜାପତି ଦକ୍ଷ ଦିବାକର ତୁଲ୍ୟ ନିଜର ତେଜରେ ଦେଦୀପ୍ୟମାନ ହୋଇ ସେମାନଙ୍କ ସଭାରେ ପ୍ରବେଶ କରିଥିଲେ । ଦକ୍ଷଙ୍କର ଜ୍ୟୋତିରେ ସେହି ପ୍ରଶସ୍ତ ସଭାର ଅନ୍ଧକାର ଦୂରୀଭୂତ ହୋଇଥିଲା । ବ୍ରହ୍ମା ଓ ଶିବଙ୍କ ବ୍ୟତୀତ ଅନ୍ୟାନ୍ୟ ସଭାସଦମାନେ ତାହାଙ୍କୁ ଅବଲୋକନ କରିବା ମାତ୍ରେ ନିଜ ନିଜର ଆସନରୁ ଉତ୍ଥିତ ହୋଇଥିଲେ; କାରଣ ଦକ୍ଷଙ୍କର ଶରୀର ପ୍ରଭାରେ ସେମାନଙ୍କର ଚିତ୍ତ ଆକ୍ଷିପ୍ତ ହୋଇଥିଲା । ୫, ୬ ।

---

ଶ୍ରୀମୈତ୍ରେୟଉବାଚ—
ଶୁଣ ବିଦୁର ଶାସ୍ତ୍ର ଯୋଗେ
ପୂର୍ବେ ସେ ବିଶ୍ୱସ୍ରଷ୍ଟା ଯଜ୍ଞେ
ଯଜ୍ଞ ଆରମ୍ଭ ଆଚରଣେ
ମିଳିଲେ ସର୍ବ ଦେବମାନେ
ଅଶେଷ ମୁନିଙ୍କର ମେଳେ
ମିଳିଲେ ଦଶଦିଗପାଳେ
ଯକ୍ଷ କିନ୍ନର ନାଗକୁଳେ
ମିଳିଲେ ପିତୃ ଯେ ଅନଳେ
ଋଷି ଦେବତାଗଣ ଆଦି
ଯେଉଁଣେ ମହାଯଜ୍ଞ ସମ୍ପାଦି
ଏମନ୍ତେ ସୁରଗଣ ଯେତେ
ମିଳିଲେ ବ୍ରହ୍ମାଙ୍କ ଅଗ୍ରତେ । ୪ ।
ସୁର କିନ୍ନର ସର୍ବ ମୁନି
ଦକ୍ଷଙ୍କୁ ସର୍ବେ ସଙ୍ଗେ ଘେନି
ସେ ଦକ୍ଷ ନିଜ ବ୍ରହ୍ମତେଜେ
ସୁନ୍ଦରେ ତ୍ରିଭୁବନ ମଧ୍ୟେ
ଆଦିତ୍ୟ ପ୍ରାୟେ ଦେହକାନ୍ତି
ମଣି କଙ୍କଣ ଝଟକନ୍ତି
ବ୍ରହ୍ମାର ସଭା ମଧ୍ୟେ ଯେତେ
ଥିଲେ ଯେ ତମିର ଆସ୍ଥରେ
ଦକ୍ଷର ତେଜେ ତମ ଗଲା
ସେ ସଭା ନିର୍ମଳ ଦଶିଲା
ସର୍ବେ ସଭାରେ ଦକ୍ଷ ଦେଖି
ଉଠିଲେ ଆସନ ଉପେକ୍ଷି
ମଧ୍ୟେ ଯେ ବ୍ରହ୍ମା ଶିବ ଥିଲେ
ଦକ୍ଷକୁ ଦେଖି ନ ଉଠିଲେ ।୫,୬।

ସଦସସ୍ପତିଭିର୍ଦକ୍ଷୋ ଭଗବାନ୍ ସାଧୁସତ୍କୃତଃ ।
ଅଜଂ ଲୋକଗୁରୁଂ ନତ୍ୱା ନିଷସାଦ ତଦାଜ୍ଞୟା । ୭ ।
ପ୍ରାଙ୍‌ନିଷଣ୍ଣଂ ମୃଡ଼ଂ ଦୃଷ୍ଟ୍ୱା ନାମୃଷ୍ୟତ୍ ତଦନାଦୃତଃ ।
ଉବାଚ ବାମଂ ଚକ୍ଷୁର୍ଭ୍ୟାମଭିବୀକ୍ଷ୍ୟ ଦହନ୍ନିବ । ୮ ।
ଶ୍ରୂୟତାଂ ବ୍ରହ୍ମର୍ଷୟୋ ମେ ସହଦେବାଃ ସହାଗ୍ନୟଃ ।
ସାଧୂନାଂ ବ୍ରୁବତୋ ବୃତ୍ତଂ ନାଜ୍ଞାନାନ୍ନ ଚ ମତ୍ସରାତ୍ । ୯ ।
ଅୟଂ ନ୍ତୁ ଲୋକପାଲାନାଂ ଯଶୋଘ୍ନୋ ନିରପତ୍ରପଃ ।
ସଦ୍‌ଭିରାଚରିତଃ ପନ୍ଥା ଯେନ ସ୍ତବ୍‌ଧେନ ଦୂଷିତଃ । ୧୦ ।

---

ସଭାସଦଗଣଙ୍କ କର୍ତ୍ତୃକ ଭଗବାନ୍ ଦକ୍ଷ ଯଥୋପଯୁକ୍ତ ରୂପେ ସତ୍କୃତ ହେଲାପରେ ସେ ଲୋକଗୁରୁ ବ୍ରହ୍ମାଙ୍କୁ ନମସ୍କାର କରି ତାହାଙ୍କ ଆଜ୍ଞା ଗ୍ରହଣ କରି ଆସନରେ ଉପବେଶନ କରିଥିଲେ । ୭ ।

ଦକ୍ଷଙ୍କର ଆସନ ପରିଗ୍ରହର ପୂର୍ବାବଧି ଭଗବାନ୍ ଶଙ୍କର ନିଜର ଆସନରେ ଉପବେଶନ କରିଥିଲେ । ଦକ୍ଷ ତାହାଙ୍କ ପ୍ରତି ବାରମ୍ବାର ଦୃଷ୍ଟି ନିକ୍ଷେପକରି ଭାବିଲେ ଏ ମୋର ଆଦରକଲେ ନାହିଁ । ଏହି ଅନାଦର ସହ୍ୟକରି ନପାରି ସେ ଉଭୟ ଚକ୍ଷୁ ଦ୍ୱାରା କୁଟିଳଭାବରେ ଅବଲୋକନ କରି ଦଗ୍‌ଧୀଭୂତ ହେବାକୁ ଲାଗିଲେ ।୮

ହେ ବ୍ରହ୍ମର୍ଷିଗଣ ! ଦେବତା ଓ ଅଗ୍ନିସମୂହ ! ମୋର ବଚନ ଶ୍ରବଣ କରନ୍ତୁ । ମୁଁ ସାଧୁମାନଙ୍କର ଆଚରଣ କଥା କହୁଅଛି, ମୁଁ ମାତ୍ସର୍ଯ୍ୟ ବା ଅଜ୍ଞାନ ବଶବର୍ତ୍ତୀ ହୋଇ କହୁନାହିଁ । ୯ ।

ହେ ସଭାସଦଗଣ ! ଏହି ନିର୍ଲ୍ଲଜ ପାଷଣ୍ଡ ଶଙ୍କର କର୍ତ୍ତବ୍ୟାଚରଣରେ ବିମୁଖ, ଯେଉଁ ବ୍ୟକ୍ତି ନିଜର ଉଚିତ କ୍ରିୟା ପରିତ୍ୟାଗ କରି ସାଧୁଜନ ଆଚରିତ ପଥ ଦୂଷିତ କରେ, ସେହି ନିର୍ଲ୍ଲଜ ପାଷଣ୍ଡ ଦ୍ୱାରା ଲୋକପାଳ ମାନଙ୍କର ଯଶ ବିନଷ୍ଟ ହୁଏ । ୧୦ ।

---

ସେ ସଭା ମଧ୍ୟେ ମୁନି ଯେତେ
ଆନନ୍ଦ ଭକ୍ତି ଶୁଦ୍ଧ ଚିତ୍ତେ
ପ୍ରେମାଶ୍ରୁ ଅଶ୍ରୁଜଳ ନେତ୍ରେ
ଅଞ୍ଜଳି କରି କରପାତ୍ରେ
ଦକ୍ଷକୁ ସାଧୁ ସାଧୁ ବାଣୀ
ସ୍ତବେ କହନ୍ତି ପୁଣ ପୁଣି ।
ସେ ଦକ୍ଷ ସଭା ମଧ୍ୟେ ଗଲା
ବ୍ରହ୍ମାଚରଣେ ପ୍ରଣମିଲା
ସେ ବ୍ରହ୍ମା କୃତ କୃତ ହୋଇ
ଦକ୍ଷକୁ ଆଲିଙ୍ଗନ ଦେଇ
ନିଜ ସମୀପେ ବସାଇଲେ
ଅନେକ ପୁରସ୍କାର କଲେ । ୭ ।
ରୁଦ୍ର ଯେ ସଭାମଧ୍ୟେ ଥିଲେ
ଦକ୍ଷଙ୍କୁ ଦେଖି ନ ଉଠିଲେ

ଦେଖି ରୁଦ୍ରର ଅପମାନ
ଦକ୍ଷର ଚିତ୍ତେ ଗର୍ବ ତମ
ଯେ ଦକ୍ଷ ସ୍ୱଭାବେ ଶ୍ୱଶୁର
ତାକୁ ନ ଗଣିଲେ ଈଶ୍ୱର
ଅବଜ୍ଞା ଦୋଷେ ସେ ପ୍ରଚଣ୍ଡ
ଯେସନ୍ତ ଉଦିତ ମାର୍ତ୍ତଣ୍ଡ
କରି ପ୍ରସାରି ସଭା ମଧ୍ୟେ
କୋପେ ବୋଲନ୍ତି ଶାସ୍ତ୍ରବାଦେ ।୮
ଶୁଣ ହେ ବ୍ରହ୍ମର୍ଷିଗଣେ
ଆଗମ ନିଗମ ପ୍ରମାଣେ
ତୁମ୍ଭେତ ସଭା ମଧ୍ୟେ ଅଛ
ଏବେତ ଦେଖିଲ ପ୍ରତ୍ୟକ୍ଷ । ୯ ।

ଶାସ୍ତ୍ରେ ତୁମ୍ଭର ବାକ୍ୟ ଯେତେ
ସେ ସଦାଚାର ଏ ଜଗତେ
କେ ଲଙ୍ଘି ପାରେ ତାହା ବଳେ
ଏ ତିନି ଭୁବନ ମଣ୍ଡଳେ
ଦେଖ ଏ ତୁମ୍ଭର ବଚନ
ଲଙ୍ଘିଲା ମର୍କଟ ଲୋଚନ
ରୁଦ୍ର ବୋଲାଇ ଗର୍ବ କଲା
ଏ ମୋତେ ଦେଖି ନ ଉଠିଲା
ଦେଖ ଏ ଲୋକପାଳ ମଧ୍ୟେ
ନିର୍ଲ୍ଲଜ୍ଜେ ରହି ସଭା ମଧ୍ୟେ
ଯେ ସାଧୁ ବୃତ୍ତି ଆଚରଣ
କି ଭାବେ କଲାକ ଦୂଷଣ ।୧୦।

ଏଷ ମେ ଶିଷ୍ୟତାଂ ପ୍ରାପ୍ତୋ ଯନ୍ମେ ଦୁହିତୁରଗ୍ରହୀତ୍ ।
ପାଣିଂ ବିପ୍ରାଗ୍ନିମୁଖତଃ ସାବିତ୍ର୍ୟା ଇବ ସାଧୁବତ୍ । ୧୧ ।
ଗୃହୀତ୍ୱା ମୃଗଶାବାକ୍ଷ୍ୟାଃ ପାଣିଂ ମର୍କଟଲୋଚନଃ ।
ପ୍ରତ୍ୟୁତ୍ଥାନାଭିବାଦାର୍ହେ ବାଚାପ୍ୟକୃତ ନୋଚିତମ୍ । ୧୨ ।
ଲୁପ୍ତକ୍ରିୟାୟାଶୁଚୟେ ମାନିନେ ଭିନ୍ନସେତବେ ।
ଅନିଚ୍ଛନ୍ନପ୍ୟଦାଂ ବାଲାଂ ଶୂଦ୍ରାୟେବୋଶତୀଂ ଗିରମ୍ । ୧୩ ।
ପ୍ରେତାବାସେଷୁ ଘୋରେଷୁ ପ୍ରେତୈର୍ଭୂତଗଣୈର୍ବୃତଃ ।
ଅଟତ୍ୟୁନ୍ମତ୍ତବନ୍ନଗ୍ନୋ ବ୍ୟୁପ୍ତକେଶୋ ହସନ୍ ରୁଦନ୍ । ୧୪ ।

---

କିନ୍ତୁ ଅସାଧୁ ବ୍ୟକ୍ତି ତୁଲ୍ୟ ଏହି ଦୁଷ୍ଟ ଶଙ୍କର ବ୍ରାହ୍ମଣ ଓ ଅଗ୍ନି ସାକ୍ଷାତରେ ମୋର ସାବିତ୍ରୀ ତୁଲ୍ୟ କନ୍ୟାର ପାଣିଗ୍ରହଣ କରିଅଛି । ସୁତରାଂ ତାହାକୁ ମୋର ଶିଷ୍ୟ ବୋଲି ଗ୍ରହଣ କରାଯାଇ ପାରେ । କିନ୍ତୁ ଆପଣମାନେ ଏହାର ଆଚରଣ ଦେଖିଲେତ ? । ୧୧ ।

ଏହି ମର୍କଟଲୋଚନ ମୋର ମୃଗନୟନା କନ୍ୟାକୁ ବିବାହ କରିଅଛି, ଏ ଉତ୍ଥାନ କରି ମୋତେ ଅଭିବାଦନ କରିବା ସ୍ଥଳେ, ବାକ୍ୟ ଦ୍ୱାରା ସୁଦ୍ଧା ମୋର ଉଚିତ ସମ୍ମାନ ପ୍ରଦର୍ଶନ କଲା ନାହିଁ । ୧୨ ।

ଏ ବ୍ୟକ୍ତି କର୍ତ୍ତବ୍ୟ କାର୍ଯ୍ୟରେ ପରାଂମୁଖ , ଲୁପ୍ତକ୍ରିୟ, ଅପବିତ୍ର, ବୃଥାଭିମାନୀ, ଗୁରୁଜନ ମର୍ଯ୍ୟାଦା ଲଙ୍ଘନ କାରୀ, ସୁତରାଂ ଶୂଦ୍ରକୁ ବେଦବାକ୍ୟ ଶିକ୍ଷାଦେବା ଯେପରି, ମୁଁ ସେହିପରି ଅନିଚ୍ଛାସତ୍ତ୍ୱେ କେବଳ ବ୍ରହ୍ମାଙ୍କ ଆଦେଶରେ ଏହା ହସ୍ତରେ କନ୍ୟାଦାନ କରିଅଛି । ୧୩ ।

ଏ ବ୍ୟକ୍ତି ଭୟଙ୍କର ଭୂତ ପ୍ରେତଗଣ ସହିତ ଉଲଗ୍ନ ଓ ବିକୀର୍ଣ୍ଣ କେଶ ହୋଇ ଉନ୍ମତ୍ତ ତୁଲ୍ୟ କେତେବେଳେ ହାସ୍ୟ, କେତେବେଳେ କ୍ରନ୍ଦନ କରି କରି ଶ୍ମଶାନରେ ଭ୍ରମଣ କରେ । ୧୪ ।

---

ମୋହର ଶିଷ୍ୟ ଏ ବୋଲଇ
ଯେଣୁ ଦୁହିତା ଦେଲି ମୁହିଁ
ଅଗ୍ନି ଦେବତା ବିପ୍ର ସ୍ଥାନେ
ଦୁହିତା ଦେଇଛି ପ୍ରଧାନେ
ଏଣୁ ମୁଁ ଏହାର ଶ୍ୱଶୁର
ଗୁରୁଙ୍କ ମଧ୍ୟେ ଗୁରୁତର
ଅଭିବାଦନ ସ୍ତୁତି ବାଦେ
ଧର୍ମ୍ମେ ନମିବ ମୋର ପାଦେ
ଏହା ନ କରି ମୋ ଚରଣେ
ଅବଜ୍ଞାକଲା ଦୁଷ୍ଟପଣେ ।୧୧,୧୨।

ଏ ଲୁପ୍ତକ୍ରିୟା ହୀନାଚାର
ଅଶୁଚି ଶରୀର ଏହାର
ମର୍ଯ୍ୟାଦା ଭେଦେ ଅଭିମାନୀ
ବର୍ତ୍ତଇ ଶୂଦ୍ର ଦେହ ଘେନି
ଏହା ମୁଁ ନ ଜାଣି ଅଜ୍ଞାନେ
ବିଶ୍ୱାସି ବ୍ରହ୍ମାର ବଚନେ
ଦୁହିତା ଦାନ ଦେଲି ମୁହିଁ
ଶୂଦ୍ରକୁ ଯେସନେ ବେଦ କହି
ଅପାତ୍ରେ ଦେଲେ ଫଳ ଯେତେ
ଏବେ ବାଧିଲା ଆସି ମୋତେ ।୧୩

ଶ୍ମଶାନବାସୀ ଏ ନିରତେ
ବର୍ତ୍ତଇ ଭୂତ ପ୍ରେତ ସାଥେ
ଉନ୍ମତ୍ତ ପ୍ରାୟେ ନଗ୍ନ ହୋଇ
ଶ୍ମଶାନେ ଶ୍ମଶାନେ ଭ୍ରମଇ
ଜଟା କଳାପ ମୁକ୍ତ କେଶ
ଶ୍ମଶାନ-ଚିତା-ଭସ୍ମବେଶ
ଉନ୍ମତ୍ତ ଭେଳେ ହସେ ମୁଖେ
ନିତ୍ୟ ବର୍ଷଇ ଆତ୍ମାସୁଖେ
ଅକ୍ଷିବିଗଣେ ନିତ୍ୟେ ସଧ
ଏଣୁ ଅଶିବ, ଶିବ ବାଦ

ଚିତାଭସ୍ମକୃତସ୍ନାନଃ ପ୍ରେତସ୍ରଙ୍‌ନ୍ରସ୍ଥିଭୂଷଣଃ ।
ଶିବାପଦେଶୋ ହ୍ୟଶିବୋ ମତ୍ତୋ ମତ୍ତଜନପ୍ରିୟଃ ।
ପତିଃ ପ୍ରମଥନାଥାନାଂ ତମୋମାତ୍ରାତ୍ମକାତ୍ମନାମ୍ । ୧୫ ।
ତସ୍ମା ଉନ୍ମାଦନାଥାୟ ନଷ୍ଟଶୌଚାୟ ଦୁର୍ହୃଦେ ।
ଦତ୍ତା ବତ ମୟା ସାଧ୍ୱୀ ଚୋଦିତେ ପରମେଷ୍ଠିନା । ୧୬ ।
ଶ୍ରୀମୈତ୍ରେୟ ଉବାଚ ।
ବିନିନ୍ଦ୍ୟୈବଂ ସ ଗିରିଶମପ୍ରତୀପମବସ୍ଥିତମ୍ ।
ଦକ୍ଷୋଽଥାପ ଉପସ୍ପୃଶ୍ୟ କ୍ରୁଦ୍ଧଃ ଶପ୍ତୁଂ ପ୍ରଚକ୍ରମେ । ୧୭ ।
ଅୟନ୍ତୁ ଦେବଯଜନ ଇନ୍ଦ୍ରୋପେନ୍ଦ୍ରାଦିଭିର୍ଭବଃ ।
ସହ ଭାଗଂ ନ ଲଭତାଂ ଦେବୈର୍ଦେବଗଣାଧମଃ । ୧୮ ।

---

ଚିତାଭସ୍ମଦ୍ୱାରା ଏ ସ୍ନାନ କରେ । ଏହାର ଗଳାରେ ପ୍ରେତଗଣ ମାଳ୍ୟାଭରଣ ସ୍ୱରୂପ ବିରାଜିତ, ମୃତ ନରଗଣଙ୍କର ଅସ୍ଥି ଏହାର ଭୂଷଣ; ଏହାର ନାମ ଶିବ ହେଲେ ମଧ୍ୟ ସେ ଯଥାର୍ଥରେ ଅଶିବ ଅର୍ଥାତ୍ ଅମଙ୍ଗଳର କାରଣ । ମାଦକ ଦ୍ରବ୍ୟାଦି ସେବନରେ ସ୍ୱୟଂ ମତ୍ତ ଏବଂ ମତ୍ତବ୍ୟକ୍ତିମାନେ ଏହାର ପ୍ରିୟ । ଏ କେବଳ ପ୍ରମଥମାନଙ୍କର ଓ ତମଃ ସ୍ୱଭାବବ୍ୟକ୍ତିମାନଙ୍କର ପତି । ୧୫ ।

ଉନ୍ମାଦ ନାମକ ଭୂତ ସମ୍ପ୍ରଦାୟର ଏ ଅଧିନାୟକ ଏବଂ ସ୍ୱୟଂ ସର୍ବଦା ଅଶୁଚି ଓ ଦୁଷ୍ଟଚିତ୍ତ । କେବଳ ବ୍ରହ୍ମାଙ୍କର ଆଦେଶ ପାଳନ କରି ଏପରି ବ୍ୟକ୍ତି ହସ୍ତରେ ମୁଁ ସତୀନାମ୍ନୀ କନ୍ୟାକୁ ପ୍ରଦାନ କରିଅଛି, ଏହା ପରିତାପର ବିଷୟ । ୧୬ ।

ଶ୍ରୀ ମୈତ୍ରେୟ କହିଲେ :—

ଦେବଦେବ ମହାଦେବ ଦକ୍ଷଙ୍କର କୌଣସି ଅନିଷ୍ଟ କରି ନାହାନ୍ତି, କେବଳ ସ୍ଥିର ହୋଇ ବସିଥିଲେ; ଦକ୍ଷ କ୍ରୋଧରେ ତାହାଙ୍କର ଏପରି ନିନ୍ଦାକରି ତାହାଙ୍କୁ ଅଭିଶାପ ପ୍ରଦାନ କଲେ । ୧୭ ।

---

ପ୍ରମତ୍ତ ମତ୍ତ ଜନ ପ୍ରିୟ
ଏଣୁ ଅଶୁଚି ଏହା ଦେହ
ପ୍ରଥମ ଭୂତଗଣ ପତି
ନିତ୍ୟେ ତାମସ ବହେ ମତି
ଯେଣୁ ତାମସ ଜନପ୍ରିୟ
ନିତ୍ୟେ ନିନ୍ଦିତ ଏହା ଦେହ
ମୁଁ ମୂଢ଼ ନ ଜାଣି ଅଜ୍ଞାନେ
ବିଶ୍ୱାସି ବ୍ରହ୍ମାର ବଚନେ
ଏହାକୁ ସତୀ କନ୍ୟା ଦେଲି
ଅତି ଅନୀତି ଆଚରିଲି ।୧୪-୧୬।

ଶ୍ରୀମୈତ୍ରେୟଉବାଚ—
ଏମନ୍ତେ କୁତ୍ସିତ ବଚନେ
ସେ ପ୍ରଜାପତି କୋପ ମନେ
ଦୁର୍ବୁଦ୍ଧିପଣ ଆଚରିଲା
ଗିରିଶେ ବହୁ ନିନ୍ଦା କଲା
ହରଙ୍କୁ ଶାପ ଦେବା ଅର୍ଥେ
ଭୃଗୁର ବଚନ ସମ୍ମତେ
ସୁଜନେ ଆଚମନ କରି
କହେ ସତ୍ୱରେ ଆଗସରି । ୧୭

ଶ୍ରୀଦକ୍ଷଉବାଚ—
ଇନ୍ଦ୍ର ଉପେନ୍ଦ୍ର ଆଦି ଯେତେ
ଅଶେଷ ଦେବଙ୍କ ସମେତେ
ଦେବ ଯଜନେ ହବିର୍ଭାଗ
କେବେହେଁ ହର ନ ପାଇବ
ଏ କଥା ମୋହର ପ୍ରମାଣ
ଏଥିକୁ ସାକ୍ଷୀ ନାରାୟଣ
ଏ ଦେବଗଣଙ୍କ ଅଧମ
ଆମ୍ଭାକୁ ଗଣେ ସର୍ବ ସମ । ୧୮ ।

ନିଷିଧ୍ୟମାନଃ ସ ସଦସ୍ୟମୁଖ୍ୟୈର୍ଦକ୍ଷୋ ଗିରିଶାୟ ବିସୃଜ୍ୟ ଶାପମ୍ ।
ତସ୍ମାଦ୍‌ବିନିଷ୍କ୍ରମ୍ୟ ବିବୃଦ୍ଧମନ୍ୟୁର୍ଜଗାମ କୌରବ୍ୟ ନିଜଂ ନିକେତନମ୍ । ୧୯ ।
ବିଜ୍ଞାୟ ଶାପଂ ଗିରିଶାନୁଗାଗ୍ରଣୀର୍ନନ୍ଦୀଶ୍ୱରୋ ରୋଷକଷାୟଦୂଷିତଃ ।
ଦକ୍ଷାୟ ଶାପଂ ବିସସର୍ଜ୍ଜ ଦାରୁଣଂ ଯେ ଚାନ୍ୱମୋଦଂସ୍ତଦବାଚ୍ୟତାଂ ଦ୍ୱିଜାଃ ।୨୦।
ଯ ଏତନ୍ମର୍ତ୍ତ୍ୟମୁଦ୍ଦିଶ୍ୟ ଭଗବତ୍ୟପ୍ରତିଦ୍ରୁହି ।
ଦ୍ରୁହ୍ୟତ୍ୟଜ୍ଞଃ ପୃଥଗ୍‌ଦୃଷ୍ଟିସ୍ତତ୍ତ୍ୱତୋ ବିମୁଖୋ ଭବେତ୍ । ୨୧ ।
ଗୃହେଷୁ କୂଟଧର୍ମ୍ମେଷୁ ସକ୍ତୋ ଗ୍ରାମ୍ୟସୁଖେଚ୍ଛୟା ।
କର୍ମ୍ମତନ୍ତ୍ରଂ ବିତନୁତେ ବେଦବାଦବିପନ୍ନଧୀ । ୨୨ ।
ବୁଦ୍ଧ୍ୟା ପରାଭିଧ୍ୟାୟିନ୍ୟା ବିସ୍ମୃତାତ୍ମଗତିଃ ପଶୁଃ ।
ସ୍ତ୍ରୀକାମଃ ସୋଽସ୍ତ୍ୱତିତରାଂ ଦକ୍ଷୋ ବସ୍ତମୁଖୋଽଚିରାତ୍ । ୨୩ ।

---

ଲୋକେ ଯେତେବେଳେ ଦେବତାମାନଙ୍କ ଉଦ୍ଦେଶ୍ୟରେ ଯଜ୍ଞ କରିବେ, ଓ ସେତେବେଳେ ଏହି ଦେବାଧମ ଶିବ, ଇନ୍ଦ୍ର, ହରି, ପ୍ରଭୃତିଙ୍କ ସହିତ କୌଣସି ଯଜ୍ଞ ଭାଗ ଲଭିକରି ପାରିବନାହିଁ । ୧୮ ।

ହେ ବିଦୁର ! ଏହି ସଭାସ୍ଥ ପ୍ରଧାନ ପ୍ରଧାନ ବ୍ୟକ୍ତିମାନେ ଦକ୍ଷଙ୍କୁ ନିଷେଧ କଲେ ମଧ୍ୟ ସେ ଅତ୍ୟନ୍ତ କ୍ରୋଧବଶତଃ ମହାଦେବଙ୍କୁ ଏହିପରି ଅଭିଶାପ ପ୍ରଦାନ କରିଥିଲେ । ଏବଂ ସେଠାରୁ ନିର୍ଗତ ହୋଇ ସ୍ୱୀୟ ଗୃହକୁ ପ୍ରସ୍ଥାନ କରିଥିଲେ । ୧୯ ।

ମହାଦେବଙ୍କର ପ୍ରଧାନ ଅନୁଚର ନନ୍ଦୀଶ୍ୱର ଏହି ଅଭିଶାପ ପ୍ରସଙ୍ଗ ଶ୍ରବଣକରି କ୍ରୋଧ ଆରକ୍ତ-ନୟନରେ ଦକ୍ଷଙ୍କୁ ଓ ତତ୍‌କୃତ ଶିବନିନ୍ଦା ସମର୍ଥନ-କାରୀ ବ୍ରାହ୍ମଣମାନଙ୍କୁ ଦାରୁଣ ଅଭିଶାପ ପ୍ରଦାନ କରିଥିଲେ ॥

ଭଗବାନ୍ ଶିବ କଦାପି କାହାରି ଅନିଷ୍ଟ କରନ୍ତି ନାହିଁ, କିନ୍ତୁ ଯେଉଁ ମୂଢ ଭେଦଦର୍ଶୀ ହୋଇ ଦକ୍ଷଙ୍କୁ ଶ୍ରେଷ୍ଠ ଜ୍ଞାନକରି ଶିବଙ୍କର ଅନିଷ୍ଟାଚରଣରେ ପ୍ରବୃତ୍ତ ହେବ ତାହାର କଦାପି ପରମାର୍ଥ ସିଦ୍ଧ ହେବନାହିଁ । ୨୧ ।

ସେହି ଅଜ୍ଞବ୍ୟକ୍ତି ବେଦର ଅର୍ଥବାଦରେ ଭ୍ରାନ୍ତଧାରଣାଯୁକ୍ତ ହୋଇ ତୁଚ୍ଛ ସୁଖ ଆଶାରେ କପଟ ଧର୍ମଜନ୍ୟ ଗାର୍ହସ୍ଥ୍ୟ ବ୍ୟାପାରରେ ଅନୁରକ୍ତ ହୋଇ କେବଳ କର୍ମକାଣ୍ଡ ବିସ୍ତାର କରନ୍ତି । ୨୨ ।

ଏହି ଦକ୍ଷଙ୍କର ବୁଦ୍ଧି ଦେହକୁ ଆତ୍ମା ବୋଲି ଧ୍ୟାନ କରେ, ତେଣୁ ଏ ଆତ୍ମତତ୍ତ୍ୱ ବିସ୍ମୃତ ହୋଇ-ଅଛନ୍ତି, ତେଣୁ ଏ ବ୍ୟକ୍ତି ପଶୁତୁଲ୍ୟ ସ୍ତ୍ରୀକାମୀ ହୁଅନ୍ତୁ ଏବଂ ଅଚିରେ ଏହାଙ୍କର ଛାଗତୁଲ୍ୟ ମୁଣ୍ଡ ହେଉ ।୨୩

---

ଦକ୍ଷଙ୍କୁ ଶୁଣି ଦେବଲୋକେ
ନିଷେଧ କଲେ ଏକେ ଏକେ
ସେ ଦକ୍ଷ କୋପେ ଅଭିମାନୀ
ଦେବଙ୍କ ବଚନ ନ ମାନି
ଅତ୍ୟନ୍ତ କୋପେ ଶାପ ଦେଲା
ଋଷିଙ୍କ ବଚନ ନ କଲା
ବ୍ରହ୍ମାର ସଭାରୁ ବାହାର
ତକ୍ଷଣେ ଯାଉେ ନିଜପୁର

ନନ୍ଦି ଯେ ରୁଦ୍ର ପାଶେ ଥିଲା
ଦକ୍ଷର ଶାପ ସେ ଶୁଣିଲା
ରୋଷେ ସେ କଷାୟ ଲୋଚନ
ଦକ୍ଷର ବାକ୍ୟେ କୋପମନ
ଦକ୍ଷକୁ ପ୍ରତିଶାପ ଦେଇ
ବୋଲଇ ସଭାଜନେ ଶୁଣି ।୧୯,୨୦
ଦକ୍ଷର ମତେ ଯେତେ ଥିବେ
ଏ ଶାପ ଭୁଲେ ସେ ପାଇବେ

ଦକ୍ଷକୁ ଯେବେ ଆଶ୍ରିଥିବେ
ବିଷ୍ଣୁରେଦୋରେହୋହୋଇବୋ।୨୧
ଏ କୂଟ ଗୃହ ଧର୍ମ୍ମ ମଧ୍ୟେ
ବିଷୟ ଭୋଗ ଇଚ୍ଛା ସଧେ
ବିସ୍ତାର ଯଜ୍ଞ କର୍ମ୍ମ କାଣ୍ଡେ
ଦମ୍ଭେ ଆରମ୍ଭି ଏ ପାଷଣ୍ଡେ
ଦେହକୁ ସ୍ୱାର୍ଥ ପ୍ରାୟ ମଣି
ଆତ୍ମାର ଗତି ନ ପ୍ରମାଣି

ଅବିଦ୍ୟାବୁଦ୍ଧିରବିଦ୍ୟାୟାଂ କର୍ମମୟ୍ୟାମସାବଜଃ ।
ସଂସରନ୍ତ୍ୱିହ ଯେ ଚାମୁମନୁ ଶର୍ବାବମାନିନମ୍ । ୨୪ ।
ଗିରଃ ଶ୍ରୁତାୟାଃ ପୁଷ୍ପିଣ୍ୟା ମଧୁଗନ୍ଧେନ ଭୂରିଣା ।
ମଥ୍ନା ଚୋନ୍ମଥିତାତ୍ମାନଃ ସଂମୁହ୍ୟନ୍ତୁ ହରଦ୍ୱିଷଃ । ୨୫ ।
ସର୍ବଭକ୍ଷା ଦ୍ୱିଜା ବୃତ୍ତ୍ୟୈ ଧୃତବିଦ୍ୟାତପୋବ୍ରତାଃ ।
ବିତ୍ତଦେହେନ୍ଦ୍ରିୟାରାମା ଯାଚକା ବିଚରନ୍ତ୍ୱିହ । ୨୬ ।
ତସ୍ୟୈବଂ ବଦତଃ ଶାପଂ ଶ୍ରୁତ୍ୱା ଦ୍ୱିଜକୁଲାୟ ବୈ ।
ଭୃଗୁଃ ପ୍ରତ୍ୟସୃଜଚ୍ଛାପଂ ବ୍ରହ୍ମଦଣ୍ଡଂ ଦୁରତ୍ୟୟମ୍ । ୨୭ ।

---

ଦକ୍ଷ କର୍ମବନ୍ଧନଜନିତ ମିଥ୍ୟାଜ୍ଞାନକୁ ଯଥାର୍ଥ ଜ୍ଞାନ ବୋଲି ମନେ କରେ ସୁତରାଂ ଏହାଙ୍କୁ ଛାଗ ବୋଲାଯାଇ ପାରେ, ଯେଉଁମାନେ ଏହି ଶିବ ନିନ୍ଦାକାରୀର ମତାନୁବର୍ତ୍ତୀ ସେମାନେ ମଧ୍ୟ ସଂସାର ଦୁଃଖରେ ମଗ୍ନ ହେଉନ୍ତୁ । ୨୪ ।

ଶିବ ବିଦ୍ୱେଷୀ ଏହି ବ୍ରାହ୍ମଣମାନେ କର୍ମକାଣ୍ଡରେ ଆସକ୍ତହୋଇ ବେଦୋକ୍ତ ଅର୍ଥବାଦ ସ୍ୱରୂପ ପୁଷ୍ପର ମଧୁଗନ୍ଧ ତୁଲ୍ୟ ପ୍ରାଣରେ କ୍ଷୋଭପ୍ରବୋଚନାରେ ଏହି ବ୍ୟକ୍ତିମାନଙ୍କର ବୁଦ୍ଧି ଉନ୍ମଥିତ ହେଉ-ଥିବାରୁ ସେମାନେ ସମ୍ୟକ୍ ଭାବରେ ମୋହଗ୍ରସ୍ତ ହେଉନ୍ତୁ । ୨୫ ।

ଏହି ବ୍ରାହ୍ମଣମାନେ ସର୍ବଭକ୍ଷ ହେଉନ୍ତୁ, ଭୃତ୍ୟ ନିମିତ୍ତ ସେମାନେ ବିଦ୍ୟା, ତପସ୍ୟା ଓ ବ୍ରତଧାରୀ ହେଉନ୍ତୁ ଏବଂ ଧନ, ଜନ, ଦେହ, ଇନ୍ଦ୍ରିୟରେ ଅନୁରାଗୀ ଓ ଯାଚକ ହୋଇ ଇତସ୍ତତ ବିଚରଣ କରନ୍ତୁ । ୨୬

ନନ୍ଦୀ ବିପ୍ରମାନଙ୍କୁ ଏହିପରି ଅଭିଶାପ ଦଅନ୍ତେ; ଭୃଗୁ ବ୍ରହ୍ମଦଣ୍ଡ ସ୍ୱରୂପ ଦୁର୍ଲଙ୍ଘ୍ୟ ଅଭିଶାପ ପ୍ରଦାନ କରିଥିଲେ । ୨୭ ।

---

ପଶୁଙ୍କ ପ୍ରାୟ କରି ଆଶ
ସର୍ବଦା ହେଉ ନାରୀ ବଶ
ଏ ଦକ୍ଷ ଛାଗମୁଖ ହେଉ
ଆମ୍ଭର ଶାପ ଆନନୋହୁ । ୨୨, ୨୩
ଅବିଦ୍ୟାମାର୍ଗେ ବିଦ୍ୟା କଳି
ଅଜ୍ଞାନେ ଲଭୁ ବୁଦ୍ଧି ଛାଡି
ଏଣୁ ଏ ଛାଗର ସମାନ
ଅନ୍ତଶଯ୍ୟରେ ଜ୍ଞାନ ହୀନ
ଦକ୍ଷର ମତେ ଯେତେ ଥିବେ
ଯେ ଅବା ଦକ୍ଷେ ଆଶ୍ରୀବେ
ଅଶେଷ ଘୋର ସେ ପାଇବେ
ଜନ୍ମ ମରଣେ ପଶିବେ

ପଶୁ ହିଂସିବେ କର୍ମମତେ
ଅଜ୍ଞାନବଳେ ବିମୋହିତେ
ଅଶେଷ ଯଜ୍ଞ କର୍ମ କରି
ଏ ଭକ୍ଷାଭକ୍ଷ୍ୟ ନ ବିଚାରି
ଏ ବିପ୍ରେ ତପ ବିଦ୍ୟା ବ୍ରତ
ଅଶେଷ କାମ୍ୟ ଫଳେ ରତ
ବିତ୍ତ ଇନ୍ଦ୍ରିୟ ଦେହେ ରମି
ଯାଚକପ୍ରାୟେ ଘରେ ଭ୍ରମି
ଭ୍ରମିବେ ଇହ ପରଲୋକେ
ଅଶୁଦ୍ଧ ମାର୍ଗେ ଅନ୍ତରେକେ
। ୨୪-୨୬

ଏମନ୍ତ ଶାପ ଦେବାବେଳେ
ସେ ନନ୍ଦୀଶ୍ୱର କୋପାନଳେ
ଭୃଗୁ ଯେ ସଭାମଧ୍ୟେ ଥିଲେ
ନନ୍ଦୀର ଶାପ ସେ ଶୁଣିଲେ
ଦକ୍ଷର ମତେ ପକ୍ଷ ଧରି
ରୁଦ୍ର ବିଷୟେ କୋପ କରି
ଯେ ବ୍ରହ୍ମଦଣ୍ଡ ଦୁରତ୍ୟୟ
ସ୍ୱଭାବେ ଭୃଗୁ ମହାଶୟ
ଦକ୍ଷିଣ ହସ୍ତେ ଜଳ ଘେନି
ସଭା ସମୂହେ ଭଣେ ବାଣୀ
କହଇ ହସ୍ତେ ଜଳଧରି
ହୃଦରେ କୋପାନଳ ଭରି । ୨୭ ।

ଭବବ୍ରତଧରା ଯେ ଚ ଯେ ଚ ତାନ୍ ସମନୁବ୍ରତାଃ ।
ପାଷଣ୍ଡିନସ୍ତେ ଭବନ୍ତୁ ସଚ୍ଛାସ୍ତ୍ରପରିପନ୍ଥିନଃ । ୨୮ ।
ନଷ୍ଟଶୌଚା ମୂଢ଼ଧିୟୋ ଜଟାଭସ୍ମାସ୍ଥିଧାରିଣଃ ।
ବିଶନ୍ତୁ ଶିବଦୀକ୍ଷାୟାଂ ଯତ୍ର ଦୈବଂ ସୁରାସବମ୍ । ୨୯ ।
ବ୍ରହ୍ମ ଚ ବ୍ରାହ୍ମଣାଂଶ୍ଚୈବ ଯଦ୍ୟୂୟଂ ପରିନିନ୍ଦଥ ।
ସେତୁଂ ବିଧାରଣଂ ପୁଂସାମତଃ ପାଷଣ୍ଡମାଶ୍ରିତାଃ ।
ଏଷ ଏବ ହି ଲୋକାନାଂ ଶିବଃ ପନ୍ଥାଃ ସନାତନଃ ।
ଯଂ ପୂର୍ବେ ଚାନୁସନ୍ତସ୍ଥୁର୍ୟତ୍ପ୍ରମାଣଂ ଜନାର୍ଦ୍ଦନଃ । ୩୧ ।
ତଦ୍ବ୍ରହ୍ମ ପରମଂ ଶୁଦ୍ଧଂ ସତାଂ ବର୍ତ୍ମ ସନାତନମ୍ ।
ବିଗର୍ହ୍ୟ ଯାତ ପାଷଣ୍ଡଂ ଦୈବଂ ବୋ ଯତ୍ର ଭୂତରାଟ୍ । ୩୨ ।

---

ଯେଉଁମାନେ ମହାଦେବଙ୍କର ବ୍ରତ ଧାରଣ କରିବେ ଅଥବା ତାହାଙ୍କର ଅନୁଗାମୀ ହେବେ, ସେମାନେ ସତ୍‌ଶାସ୍ତ୍ର ପ୍ରତିକୂଳାଚାରୀ ଓ ପାଷଣ୍ଡ ହେବେ । ୨୮ ।

ଯେଉଁଠାରେ ଗୌଡ଼ୀ, ପୈଷ୍ଟୀ, ଓ ମାଧ୍ୱୀ ସୁରା ଏବଂ ତାଳାଦି ସମ୍ଭବ ସୁରା ଦେବବତ୍ ଆଦରଣୀୟ, ଏହି ନଷ୍ଟ ଶୌଚ ମୂଢ଼ ବ୍ୟକ୍ତିମାନେ ଜଟା ଭସ୍ମ ଓ ଅସ୍ଥିଧାରୀ ହୋଇ ସେଠାରେ ପ୍ରବେଶ କରିବେ; ( ଅର୍ଥାତ୍ ସଦାଚାର ହୀନ ମୂଢ଼ବ୍ୟକ୍ତିମାନେ ଜଟା, ଭସ୍ମ, ଅସ୍ଥିଧାରଣ ପୂର୍ବକ ଶୈବଧର୍ମରେ ପ୍ରବିଷ୍ଟ ହେଉନ୍ତୁ । ଯେଉଁ ଧର୍ମରେ ସୁରା ଓ ଆସବ ଦେବରୂପେ ଆଦୃତ ) । ୨୯ ।

ଯେହେତୁ ତୁମ୍ଭେମାନେ ଶାସ୍ତ୍ର ମର୍ଯ୍ୟାଦାରୂପବର୍ଣ୍ଣାଶ୍ରମ ଆଚାର ବିଶିଷ୍ଟ ପୁରୁଷମାନଙ୍କର ଧାରଣକାରୀ ଦେବତାମାନଙ୍କର ଏବଂ ବେଦପ୍ରବର୍ତ୍ତକ ବ୍ରାହ୍ମଣମାନଙ୍କର ନିନ୍ଦା କରୁଅଛ ତେଣୁ ତୁମ୍ଭମାନଙ୍କୁ ପାଷଣ୍ଡ ଆଶ୍ରୟ ଗ୍ରହଣ କରିବାକୁ ହେବ । ୩୦ ।

ବେଦହିଁ ଲୋକମାନଙ୍କର ପ୍ରଧାନ ଅବଲମ୍ବନ ଓ ମଙ୍ଗଳର ପଥ । ପ୍ରାଚୀନ ଋଷିଗଣ ସେହି ବେଦକୁ ଆଶ୍ରୟ କରିଅଛନ୍ତି ଏବଂ ଭଗବାନ୍ ଜନାର୍ଦ୍ଦନ ଏହାର ମୂଳ ସ୍ୱରୂପ । ୩୧ ।

ତୁମ୍ଭେ ଯେଉଁମାନେ ସେହି ପରମଶୁଦ୍ଧ ସନାତନ ପନ୍ଥା ବେଦର ଅବମାନ କରୁଅଛ, ସୁତରାଂ ଯେଉଁ ଧର୍ମରେ ତୁମ୍ଭମାନଙ୍କର ଭୂତନାଥ ଅଧିପତି, ତୁମ୍ଭେମାନେ ସେହି ଧର୍ମ ଲାଭକର । ୩୨ ।

---

ଯେ ଶିବ ବ୍ରତ ଏ ଜଗତେ
କରିବ ଶିବର ଆଶ୍ରୟରେ
ସେ ଶାସ୍ତ୍ରମତ ନ ଆଦରି
ପାଷଣ୍ଡ ହୋନ୍ତୁ ତମଧରି ।୨୮।
ଦୁଷ୍ଟ ଅଶୁଚି ମୂଢ଼ ବୁଦ୍ଧି
ପାଷଣ୍ଡ ପଣେ ସେ ପ୍ରସିଦ୍ଧି

ଭୂଷଣ ଜଟା ଭସ୍ମ ଅସ୍ଥି
ଶିବ ପୂଜନ୍ତୁ ଦୁଷ୍ଟ ମତି
ବହନ୍ତୁ ଶିବ ଦୀକ୍ଷା ହୃଦେ
ଯହିଁ ଦେବତା ସୁରା ମଦେ ।୨୯।
ବ୍ରହ୍ମା ବ୍ରାହ୍ମଣେ ନିନ୍ଦାକରି
ନରତେ ଶିବ ଦୀକ୍ଷା ଧରି

ଶିବର ପଥ ସନାତନ
ଯେ ଏବା ଆଚରିବେ ଜନ
ବିଷ୍ଣୁ ନିନ୍ଦକ [illegible]
ଅନ୍ତେ ପାଷଣ୍ଡ ଗତି ହେଉ
।୩୦-୩୨।

ଶ୍ରୀମୈତ୍ରେୟ ଉବାଚ ।

ତସ୍ମୈଏବଂ ବଦତଃ ଶାପ ଭୃଗୋଃ ସ ଭଗବାନ୍ ଭବଃ ।
ନିଶ୍ଚକ୍ରାମ ତତଃ କିଞ୍ଚିଦ୍ବିମନା ଇବ ସାନୁଗଃ । ୩୩ ।
ତେଽପି ବିଶ୍ୱସୃଜଃ ସତ୍ରଂ ସହସ୍ରଂ ପରିବତ୍ସରାନ୍ ।
ସଂବିଧାୟ ମହେଷ୍ୱାସ ଯତ୍ରେଜ୍ୟ ଋଷଭୋ ହରିଃ । ୩୪ ।
ଆପ୍ଲୁତ୍ୟାବଭୃଥଂ ଯତ୍ର ଗଙ୍ଗା ଯମୁନୟାନ୍ୱିତା ।
ବିରଜେନାତ୍ମନା ସର୍ବେ ସ୍ୱଂ ସ୍ୱଂ ଧାମ ଯୟୁସ୍ତତଃ । ୩୫ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ଦକ୍ଷଶାପୋ ନାମ ଦ୍ୱିତୀୟୋଽଧ୍ୟାୟଃ । ୨ ।

---

ଶ୍ରୀ ମୈତ୍ରେୟ କହିଲେ ଃ—

ମହର୍ଷି ଭୃଗୁ ଏହିପରି ଅଭିଶାପ ପ୍ରଦାନ କରନ୍ତେ ଭଗବାନ୍ ଶଙ୍କର କିଞ୍ଚିତ ଦୁଃଖିତ ହୋଇ ନିଜର ଅନୁଚରମାନଙ୍କ ସହିତ ସେଠାରୁ ପ୍ରସ୍ଥାନ କଲେ । ୩୩ ।

ହେ ମହାତ୍ମାର ବିଦୁର ! ସେହି ପ୍ରଜାପତିଗଣ ଯେଉଁ ଯଜ୍ଞରେ ସୁରଶ୍ରେଷ୍ଠ ଭଗବାନ୍ ଶ୍ରୀହରି ଯଜ୍ଞତ, ସହସ୍ରବର୍ଷ ବ୍ୟାପି ସେହି ଯଜ୍ଞ ସମ୍ୟକ୍ ଅନୁଷ୍ଠାନ କରିଥିଲେ । ୩୪ ।

ପବିତ୍ର ପ୍ରୟାଗ, ଯେଉଁଠାରେ ପୁଣ୍ୟତୋୟା ଗଙ୍ଗା ଯମୁନା ମିଳିତ ହୋଇଅଛନ୍ତି, ସେହିସ୍ଥାନରେ ସ୍ନାନକରି ସ୍ୱ ସ୍ୱ ସ୍ଥାନକୁ ପ୍ରସ୍ଥାନ କରିଥିଲେ । ୩୫ ।

---

ଶ୍ରୀମୈତ୍ରେୟ ଉବାଚ—

ଏମନ୍ତେ ଭୃଗୁ ବାକ୍ୟ ଶୁଣି
ସଭାର ମଧ୍ୟୁ ଶୂଳପାଣି
ଅଳ୍ପ ବିମନା ହୋଇ ଉଠି
ଅନଳ ପ୍ରାୟ କୋପ ଦୃଷ୍ଟି
ନିଜଗଣଙ୍କୁ ଘେନି ସଙ୍ଗେ
ମିଳିଲେ ନିଜସ୍ଥାନେ ବେଗେ ।୩୩

ଶିବ ଗମନେ ମୁନିଗଣେ
ଆଗମ ନିଗମ ପ୍ରମାଣେ
ସହସ୍ର ସମ୍ବତ୍ସର ଗଣ
ଯେ ଯଜ୍ଞ ବିଧିର ପ୍ରମାଣ
ବିଷ୍ଣୁର ପୂଜା ବିଧି ସାରି
ଯଜ୍ଞାବଭୃଥସ୍ନାନ କରି
ଜାହ୍ନବୀ ଜଳେ କରି ସ୍ନାନ
ବିପ୍ରେ ମିଳିଲେ ନିଜସ୍ଥାନ ।୩୪,୩୫

ବିଷ୍ଣୁ ଚରିତ ସୁଧା ରସ
କହଇ ଜଗନ୍ନାଥ ଦାଶ
ଭାଷା ପ୍ରବନ୍ଧେ ଭାଗବତ
ଅମୃତ ରସମୟ ଗୀତ








## ତୃ ତୀ ୟ ଅ ଧ୍ୟା ୟ ।

ତୃତୀୟେ ତୁ ସତୀ ତାତ ଯଜ୍ଞୋତ୍ସବଦିଦୃକ୍ଷୟା ।
ଗମିଷ୍ୟନ୍ତୀ ମହେଶେନ ବାରିତା ନୀତିହେତୁଭିଃ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ସଦା ବିଦ୍ୱିଷତୋରେବଂ କାଲୋ ବୈ ଧ୍ରିୟମାଣୟୋଃ ।
ଜାମାତୁଃ ଶ୍ୱଶୁରସ୍ୟାପି ସୁମହାନତିଚକ୍ରମେ । ୧ ।
ଯଦାଭିଷିକ୍ତୋ ଦକ୍ଷସ୍ତୁ ବ୍ରହ୍ମଣା ପରମେଷ୍ଠିନା ।
ପ୍ରଜାପତୀନାଂ ସର୍ବେଷାମାଧିପତ୍ୟେ ସ୍ମୟୋଽଭବତ୍ । ୨ ।
ଇଷ୍ଟ୍ୱା ସ ବାଜପେୟେନ ବ୍ରହ୍ମିଷ୍ଠାନଭିଭୂୟ ଚ ।
ବୃହସ୍ପତି ସବଂନାମ ସମାରେଭେ କ୍ରତୂତ୍ତମମ୍ । ୩ ।

### ସତୀଙ୍କର ଦକ୍ଷାଳୟକୁ ଗମନ ।

ତୃତୀୟ ଅଧ୍ୟାୟରେ ସତୀ ପିତା ଦକ୍ଷଙ୍କର ଯଜ୍ଞୋତ୍ସବ ଦେଖିବାକୁ ଯିବାପାଇଁ ଉଦ୍ୟତ ହୁଅନ୍ତେ ଶିବ ବାରଣ କରିବା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀ ମୈତ୍ରେୟ କହିଲେ :—

ଜାମାତା ଶଙ୍କର ଓ ଶ୍ୱଶୁର ଦକ୍ଷ ଉଭୟ ଏହିପରି ବହୁକାଳ ବିଦ୍ୱେଷ ଭାବରେ ଅବସ୍ଥାନ କରି ବହୁକାଳ ଅତୀତ କଲେ । ୧ ।

କିୟତ୍‌କାଳପରେ ପରମେଷ୍ଠୀ ବ୍ରହ୍ମା ଦକ୍ଷଙ୍କୁ ସକଳ ପ୍ରଜାପତିଙ୍କର ଅଧିପତିରୂପେ ଅଭିଷେକ କରନ୍ତେ, ଦକ୍ଷଙ୍କ ମନରେ ଅତ୍ୟନ୍ତ ଗର୍ବ ଉଦ୍‌ଭବହେଲା । ୨ ।

ସେ ଏହି ଗର୍ବହେତୁ ବ୍ରହ୍ମପରାୟଣ ବ୍ୟକ୍ତିମାନଙ୍କୁ ତିରସ୍କାର କରି "ବାଜପେୟ" ଯଜ୍ଞାନୁଷ୍ଠାନ ପୂର୍ବକ "ବୃହସ୍ପତି" ଯଜ୍ଞନାମକ ଉତ୍କୃଷ୍ଟ ଯଜ୍ଞ ଆରମ୍ଭ କରିଥିଲେ । ୩ ।

ପିତାର ଯଜ୍ଞ ଦେଖିବାକୁ, ଇଚ୍ଛନ୍ତେ, ସତୀ, ଶିବ ତାଙ୍କୁ ।
ଯେପରି କରିଲେ ନିଷେଧ, ତୃତୀୟ ଅଧ୍ୟାୟ ସମ୍ବାଦ ॥

ଶ୍ରୀମୈତ୍ରେୟ ଉବାଚ—

ଶୁଣ ବିଦୁର ସାବଧାନେ
କାଳର ବିଶେଷ ବେଳିଜନେ
ଶ୍ୱଶୁର ଜୁଆଁଇ ସମ୍ବନ୍ଧ
ବିବାଦ ଆଚରିଲେ ବାଦେ । ୧ ।
କମଳଯୋନି ଯେତେବେଳେ
ଦକ୍ଷକୁ ଶୁଭ ଲଗ୍ନ ବେଳେ
ସକଳ ମୁନି ମନୁଗଣେ
ସ୍ଥାପିଲେ ଅଧିପତି ପଣେ
ଦକ୍ଷକୁ କଲେ ଅଭିଷେକ
ପୂଜି କହିଲେ ଏକ ଏକ
ତୁମ୍ଭ ସକଳ ମଧ୍ୟେ ଏହୁ
ପାଳନେ ଅଧିପତି ହେଉ । ୨ ।
ଦକ୍ଷକୁ ଦେଲେ ବେଦବର
ତୁ ବାଜପେୟ ଯଜ୍ଞକର
ସେ ଦକ୍ଷ ମନେ ଗର୍ବ କଲା
ଦ୍ୱେଷେ ରୁଦ୍ରଙ୍କୁ ନ ବରିଲା
ଭୃଗୁଙ୍କୁ କଲା ପୁରୋହିତ
ସଙ୍ଗେ ଘେନିଣ ମୁନି ସନ୍ତ
ଯେ ଯଜ୍ଞ ବୃହସ୍ପତି ନାମ
ଶୁଣିଲା ଯଜ୍ଞଙ୍କ ଉତ୍ତମ
ସେ ଯଜ୍ଞ ଆରମ୍ଭର କାଳେ
ସକଳ ମୁନି ଏକମେଳେ

ତସ୍ମିନ୍ ବ୍ରହ୍ମର୍ଷୟଃ ସର୍ବେ ଦେବର୍ଷିପିତୃଦେବତାଃ ।
ଆସନ୍ କୃତସ୍ୱସ୍ତ୍ୟୟନାସ୍ତତ୍ପତ୍ନ୍ୟଶ୍ଚ ସଭର୍ତୃକାଃ । ୪ ।
ତଦୁପଶ୍ରୁତ୍ୟ ନଭସି ଖେଚରାଣାଂ ପ୍ରଜଳ୍ପତାମ୍ ।
ସତୀ ଦାକ୍ଷାୟଣୀ ଦେବୀ ପିତୁର୍ଯଜ୍ଞମହୋତ୍ସବମ୍ । ୫ ।
ବ୍ରଜନ୍ତୀଃ ସର୍ବତୋ ଦିଗ୍ଭ୍ୟ ଉପଦେବବରସ୍ତ୍ରିୟଃ ।
ବିମାନଯାନାଃ ସପ୍ରେଷ୍ଠା ନିଷ୍କକଣ୍ଠୀଃ ସୁବାସସଃ । ୬ ।
ଦୃଷ୍ଟ୍ୱା ସ୍ୱନିଳୟାଭ୍ୟାସେ ଲୋଲାକ୍ଷୀର୍ମୃଷ୍ଟକୁଣ୍ଡଳାଃ ।
ପତିଂ ଭୂତପତିଂ ଦେବମୌତ୍ସୁକ୍ୟାଦଭ୍ୟଭାଷତ । ୭ ।

---

ସେହି ଯଜ୍ଞରେ ସମସ୍ତ ବ୍ରହ୍ମର୍ଷି, ଦେବର୍ଷି, ପିତୃ, ଦେବତାମାନଙ୍କର ପୂଜା ହୋଇଥିଲା ଏବଂ ସେମାନଙ୍କର ସ୍ତ୍ରୀମାନେ ନିଜ ନିଜର ସ୍ୱାମୀଙ୍କ ସହିତ ଯଥାଯୋଗ୍ୟ ପୂଜା ପାଇଥିଲେ । ୪ ।

ଖେଚରମାନେ ଆକାଶରେ ବିଚରଣ କରୁ କରୁ ଦକ୍ଷଯଜ୍ଞ ବିଷୟ କଥୋପକଥନ କରୁଥିଲେ; ଦକ୍ଷକନ୍ୟା ସତୀ ତାହା ଶୁଣିଲେ । ୫ ।

ସେ ନିଜର ଗୃହ ସମୀପରେ ଦେଖିଲେ ଗନ୍ଧର୍ବ ମହିଳାମାନେ ନିଜ ନିଜର ପତିସହ ବିମାନାରୋହଣ କରି ଯଜ୍ଞସ୍ଥଳକୁ ଗମନ କରୁଅଛନ୍ତି । ୬ ।

ସେ ବରାଙ୍ଗନା ମାନଙ୍କର କଣ୍ଠରେ ପଦକ ଓ ପରିଧାନ ଉତ୍ତମ ବସନ, କର୍ଣ୍ଣରେ କୁଣ୍ଡଳ ଇତ୍ୟାଦି ଶୋଭିତ ହେଉଥିଲା, ସେମାନଙ୍କୁ ଦେଖି ସତୀଙ୍କର ଯଜ୍ଞ ଦର୍ଶନାର୍ଥ ଔତ୍ସୁକ୍ୟ ଜନ୍ମିଲା; ସେ ସ୍ୱପତି ଭୂତପତି ଭଗବାନ୍ ମହାଦେବଙ୍କୁ କହିଲେ । ୭ ।

---

ଯେ ବ୍ରହ୍ମଋଷି ଦେବଋଷି
ସର୍ବ ଦେବଙ୍କ ସଙ୍ଗେ ମିଶି
ପିତୃଦେବତା ଋଷି ଜନେ
ପତ୍ନୀଙ୍କି ଘେନି ଦିବ୍ୟ ଯାନେ
ଯଜ୍ଞେ ଗମନ୍ତି ଯୂଥ ଯୂଥ
ଗୀତ ସୁବାଦ୍ୟ ଶୂନ୍ୟପଥେ ।୩-୫।
ଆକାଶେ ବିମାନ ଗହଳ
ଚଳନ୍ତେ ଶୁଭେ ମୁଖ ଗୋଳ
ଯେ ସତୀ ଶମ୍ଭୁର ଘରଣୀ
ଗଗନେ ଶୁଣି ଦେବ ବାଣୀ
ନିଜ ସଖୀଙ୍କି ପଚାରିଲା
ତାହାଙ୍କ ବଦନୁଁ ଶୁଣିଲା
ତୋର ପିତାର ମହାଯଜ୍ଞେ
ଦେବେ ଗମନ୍ତି ଶୂନ୍ୟ ମାର୍ଗେ
ନିଜ କାମିନୀ ଘେନି ସଙ୍ଗେ
ବିମାନେ ଯାନ୍ତି ନାନାରଙ୍ଗେ
ତିନି ଭୁବନେ ଯେତେ ଜନେ
ଯଜ୍ଞେ ଗମନ୍ତି ତୋଷ ମନେ
ଦିବ୍ୟ ଅଳଙ୍କାର ଭୂଷଣେ
ବିମାନେ ବସି ବଧୂଗଣେ
ସ୍ୱାମୀଙ୍କ ସଙ୍ଗେ ସେ ଚଳନ୍ତି
ଦେଖ ଗଗନେ ପନ୍ତି ପନ୍ତି
ନକ୍ଷତ୍ର ପ୍ରାୟ ଦିଶେ ଶୋଭା
କିବା ଉପମା ଅନ୍ୟ ଦେବା । ୬ ।
ତା ଶୁଣି ଗଗନକୁ ଚାହିଁ
ଅମ୍ବିକା ମନେ ବିଚାରଇ
ଦେଖ ଅଭାଗ୍ୟ କର୍ମ ମୋର
ମୋହର ସ୍ୱାମୀ ମହେଶ୍ୱର
ମୋହର ପିତା ଯଜ୍ଞକାଳେ
ମୁହିଁ ନିବାଶ କର୍ମବଳେ
ମୋର ସ୍ୱାମିଙ୍କୁ ନ ବରିଲା
ଅବହେଳନ ମୋତେ କଲା
ମୋର ପିତାର ଦୟା ନାହିଁ
କେ ଅବା ସହୁ ଦେହ ବହି
ଏମନ୍ତ ଭାବ ଦେଖା ମନେ
ମିଳିଲେ ସ୍ୱାମି ସନ୍ନିଧାନେ
ହୃଦରେ ଶୋକଭର ହୋଇ
ବୋଲନ୍ତି ରୁଦ୍ର ମୁଖ ଚାହିଁ । ୭ ।

ଶ୍ରୀସତ୍ୟୁବାଚ ।
ପ୍ରଜାପତେସ୍ତେ ଶ୍ୱଶୁରସ୍ୟ ସାମ୍ପ୍ରତଂ ନିର୍ଯ୍ୟାପିତୋ ଯଜ୍ଞମହୋତ୍ସବଃ କିଲ ।
ବୟଞ୍ଚ ତତ୍ରାଭିସରାମ ବାମ ତେ ଯଦ୍ୟର୍ଥିତାମୀ ବିବୁଧା ବ୍ରଜନ୍ତି ହି ।୮।
ତସ୍ମିନ୍ ଭଗିନ୍ୟୋ ମମ ଭର୍ତ୍ତୃଭିଃ ସ୍ୱକୈର୍ଧ୍ରୁବଂ ଗମିଷ୍ୟନ୍ତି ସୁହୃଦ୍ଦିଦୃକ୍ଷବଃ ।
ଅହଞ୍ଚ ତସ୍ମିନ୍ ଭବତାଭିକାମୟେ ସହୋପନୀତଂ ପରିବର୍ହମର୍ହିତୁମ୍ ।୯।
ତତ୍ର ସ୍ୱସୄର୍ମେ ନନୁ ଭର୍ତ୍ତୃସମ୍ମିତା ମାତୃଷ୍ୱସୄଃ କ୍ଲିନ୍ନଧିୟଞ୍ଚ ମାତରମ୍ ।
ଦ୍ରକ୍ଷ୍ୟେ ଚିରୋତ୍କଣ୍ଠମନା ମହର୍ଷିଭିରୁନ୍ନୀୟମାନଞ୍ଚ ମୃଡାଧ୍ୱରଧ୍ୱଜମ୍ ।୧୦।
ତ୍ୱୟ୍ୟେତଦାଶ୍ଚର୍ଯ୍ୟମଜାତ୍ମମାୟୟା ବିନିର୍ମିତଂ ଭାତି ଗୁଣତ୍ରୟାତ୍ମକମ୍ ।
ତଥାପ୍ୟହଂ ଯୋଷିଦତତ୍ତ୍ୱବିଚ୍ଚ ତେ ଦୀନା ଦିଦୃକ୍ଷେ ଭବ ମେ ଭବକ୍ଷିତିମ୍ ।୧୧।

ଶ୍ରୀ ସତୀ କହିଲେ ଃ—

ନାଥ ! ବର୍ତ୍ତମାନ୍ ଆପଣଙ୍କର ଶ୍ୱଶୁର ପ୍ରଜାପତି ଦକ୍ଷ, ମହା ସମାରୋହରେ ଯଜ୍ଞାନୁଷ୍ଠାନ କରୁଅଛନ୍ତି, ତାହା ବର୍ତ୍ତମାନ୍ ସୁଦ୍ଧା ଶେଷ ହୋଇନାହିଁ । ସେଠାକୁ ଦେବତାମାନେ ଗମନ କରୁଅଛନ୍ତି, ଆପଣଙ୍କର ଯଦି ଇଚ୍ଛାହୁଏ ତେବେ ଚାଲନ୍ତୁ ସେଠାକୁ ଯିବା । ୮ ।

ମୋର ଭଗିନୀମାନେ ନିଜ ନିଜର ପତି ସହିତ ନିଶ୍ଚୟ ସୁହୃଦ୍ମାନଙ୍କର ଦର୍ଶନାଭିଳାଷରେ ସେହି ଯଜ୍ଞସ୍ଥାନକୁ ଆଗମନ କରିଥିବେ । ଏହି ଯଜ୍ଞରେ ପିତାମାତାଙ୍କ ପ୍ରଦତ୍ତ ଅଳଙ୍କାରାଦି ସେମାନେ ଯେପରି ଉପହାର ପ୍ରାପ୍ତ ହେବେ, ମୁଁ ମଧ୍ୟ ସେଠାକୁ ଆପଣଙ୍କ ସହିତ ଗମନକରି ଅଳଙ୍କାରାଦି ଉପହାର ଗ୍ରହଣ କରିବାକୁ ଇଚ୍ଛା କରେ । ୯ ।

ହେ ମୃଢ଼ ( ଶଙ୍କର ) ! ବହୁଦିନ ଯାବତ୍ ମୋର ମନ ବଡ଼ ଉତ୍କଣ୍ଠିତ ହୋଇଅଛି, ସେଠାକୁ ଗଲେ ନିଜ ନିଜର ଭଗ୍ନୀ, ମାତୃ ସ୍ୱସା ( ମାଉଶୀ ) ଓ ସ୍ନେହାର୍ଦ୍ର ଚିତ୍ତ ମାତା ଏବଂ ମହର୍ଷିମାନଙ୍କ କର୍ତ୍ତୃକ ଅନୁଷ୍ଠିତ ଯଜ୍ଞ ଦେଖି ପାରିବା । ୧୦ ।

ହେ ଅନାଦି ଦେବ ! ତ୍ରିଗୁଣ ସ୍ୱରୂପ ଏହି ଆଶ୍ଚର୍ଯ୍ୟ ବିଶ୍ୱ ଆପଣଙ୍କ ମାୟା ଶକ୍ତିରେ ରଚିତହୋଇ ଆପଣଙ୍କଠାରେ ପ୍ରକାଶିତ ହେଉଅଛି, ଆପଣଙ୍କ ନିକଟରେ କିଛି ଆଶ୍ଚର୍ଯ୍ୟ ନ ହେଲେ ମଧ୍ୟ ମୁଁ ନାରୀ, ଆପଣଙ୍କର ତତ୍ତ୍ୱ ଜାଣିବାକୁ ଅକ୍ଷମ, ସୁତରାଂ ଔତ୍ସୁକ୍ୟ ବଶତଃ କାତର ଚିତ୍ତରେ ମୋର ଜନ୍ମଭୂମି ଦର୍ଶନ କରିବାକୁ ମୁଁ ଇଚ୍ଛୁକ । ୧୧ ।

ଶ୍ରୀସତୀଉବାଚ—
ହେ ନାଥ ! ଶୁଣ ପଶୁପତି
ତୁମ୍ଭ ଶ୍ୱଶୁର ମୂଢ଼ମତି
ଯଜ୍ଞ ଆରମ୍ଭେ ପୁଣ୍ୟକାଳେ
ତା ଶୁଣି ସର୍ବଦେବ ଚଳେ
ମୁନିଏ ସୁନ୍ଦରୀ ସଙ୍ଗତେ
ଶୂନ୍ୟେ ଗମନ୍ତି ଦିବ୍ୟ ରଥେ
ଦେଖ ଏ ମୁଖ ସବୁ ଗୋଳ
ପୂରିଛି ଗଗନ ମଣ୍ଡଳ
ଦେଖ ଆନନ୍ଦେ ଦେବଗଣେ
ଗମନ୍ତି ଯଜ୍ଞର କାରଣେ
ହେ ନାଥ ! ଚାଲ ଆମ୍ଭେ ଯିବା
ପିତାର ଉତ୍ସବ ଦେଖିବା । ୮ ।
ଯଜ୍ଞ ଉତ୍ସବ ପିତାଘରେ
ମୋହର ଭଗ୍ନୀ ସହୋଦରେ
ଯାଆନ୍ତି ସ୍ୱାମୀ ଘେନି ସଙ୍ଗେ
ଯଜ୍ଞ ଦେଖିବେ ମନ ରଙ୍ଗେ
ମୁଁ ଏବେ ତୁମ୍ଭ ସଙ୍ଗେ ଯିବି
ପିତାର ଉତ୍ସବ ଦେଖିବି । ୯ ।
ମାତାଙ୍କୁ ଦେଖିବି ଲୋଚନେ
ଭଗ୍ନୀଗଣଙ୍କୁ ସୁଖ ମନେ
ହେ ନାଥ ! ଆଜ୍ଞାଦିଅ ମୋତେ
ମୁହିଁ ଚଳିବି ତୁମ୍ଭ ସାଥେ । ୧୦ ।
ତୁମ୍ଭ ଗୋଚରେ ବିଷ୍ଣୁ ମାୟା
କେ ଜାଣିପାରେ ନାଥ ତାହା
ତଥାପି ପ୍ରିୟ ଜନ୍ମ ମୋର
ମୁଁ ତାହିଁ କରିବି ଗୋଚର ।୧୧

ପଶ୍ୟ ପ୍ରୟାନ୍ତୀରଭବାନ୍ୟଯୋଷିତୋଽପ୍ୟଲଙ୍କୃତାଃ କାନ୍ତସଖା ବରୂଥଶଃ ।
ଯାସାଂ ବ୍ରଜଦ୍ଭିଃ ଶିତିକଣ୍ଠ ମଣ୍ଡିତଂ ନଭୋ ବିମାନୈଃ କଲହଂସପାଣ୍ଡୁଭିଃ ।୧୨।
କଥଂ ସୁତାୟାଃ ପିତୃଗେହକୌତୁକଂ ନିଶମ୍ୟ ଦେହଂ ସୁରବର୍ଯ୍ୟ ନେଙ୍ଗତେ ।
ଅନାହୁତା ଅପ୍ୟଭିୟନ୍ତି ସୌହୃଦଂ ଭର୍ତ୍ତୁର୍ଗୁରୋର୍ଦେହକୃତଶ୍ଚ କେତନମ୍ ।୧୩।
ତନ୍ମେ ପ୍ରସୀଦେଦମମର୍ତ୍ତ୍ୟ ବାଞ୍ଛିତଂ କର୍ତ୍ତୁଂ ଭବାନ୍ କାରୁଣିକୋ ବତାର୍ହତି ।
ତ୍ୱୟାତ୍ମନୋଽର୍ଦ୍ଧେଽହମଦଭ୍ରଚକ୍ଷୁଷା ନିରୂପିତା ମାନୁଗୃହାଣ ଯାଚତଃ । ୧୪ ।

ଶ୍ରୀଋଷିରୁବାଚ ।

ଏବଂ ଗିରିତ୍ରଃ ପ୍ରିୟୟାଭିଭାଷିତଃ ପ୍ରତ୍ୟଭ୍ୟଧତ୍ତ ପ୍ରହସନ୍ ସୁହୃତ୍ପ୍ରିୟଃ ।
ସଂସ୍ମାରିତୋ ମର୍ମ୍ମଭିଦଃ କୁବାଗିଷୂନ୍ ଯାନାହ କୋ ବିଶ୍ୱସୃଜାଂ ସମକ୍ଷତଃ । ୧୫ ।

---

ହେ ଜନ୍ମରହିତ ନୀଳକଣ୍ଠ ! ଆପଣ ଦେଖନ୍ତୁ ଯେଉଁମାନଙ୍କର କୌଣସି ସମ୍ପର୍କ ନାହିଁ, ଏପରି ରମଣୀମାନେ ସୁଦ୍ଧା ସୁସଜ୍ଜିତ ହୋଇ ନିଜ ନିଜର ପତିସହ ଦଳେ ଦଳେ ସେଠାକୁ ଗମନ କରୁଅଛନ୍ତି; ଏମାନଙ୍କର କଳହଂସ ତୁଲ୍ୟ ଶୁଭ୍ରବର୍ଣ୍ଣ ରଥମାନ ଗମନକରି ଆକାଶରେ ଶୋଭା ପାଉଅଛି ।୧୨।

ହେ ସୁରଶ୍ରେଷ୍ଠ ! ପିତାଙ୍କର ଗୃହରେ ଉତ୍ସବ ସଂବାଦ ଶୁଣିଲେ, ତାହା ଦର୍ଶନ କରିବାକୁ ଯିବା ନିମନ୍ତେ କନ୍ୟାର ଦେହ ବିଚଳିତ ହୁଏ । ବନ୍ଧୁଗଣ, ପତି, ଶ୍ୱସୁରାଦି ଗୁରୁଜନ ଓ ଜନ୍ମଦାତା ପିତାଙ୍କ ଗୃହକୁ ଅନିମନ୍ତ୍ରିତଭାବରେ ଯିବାକୁ କୌଣସି ବାଧାନାହିଁ । ୧୩ ।

ହେ ଦେବଶ୍ରେଷ୍ଠ ! ମୋ ପ୍ରତି ପ୍ରସନ୍ନ ହେଉନ୍ତୁ । ଆପଣ ଦୟାଳୁ, ଆପଣ କୃପାକରି ମୋର ଏହି କାମନା ପୂର୍ଣ୍ଣ କରନ୍ତୁ, ଆପଣ ପରମ ଜ୍ଞାନୀ ହେଲେ ମଧ୍ୟ ମୋତେ ଅର୍ଦ୍ଧାଙ୍ଗିନୀରୂପେ ଗ୍ରହଣ କରିଅଛନ୍ତି, ସୁତରାଂ ମୋ ପ୍ରତି ଅନୁଗ୍ରହ ପ୍ରକାଶ କରନ୍ତୁ । ମୁଁ ଏହି କୃପା ଭିକ୍ଷା କରୁଅଛି । ୧୪ ।

ଶ୍ରୀ ଋଷି କହିଲେ :—( ମୈତ୍ରେୟ )

ପ୍ରିୟତମା ସତୀ ସାଧୁଭକ୍ତମାନଙ୍କ ହିତକାଙ୍କ୍ଷୀ ମହାଦେବଙ୍କୁ ଏହିକଥା କହିବାରୁ ମହାଦେବଙ୍କ ହୃଦୟରେ ଦକ୍ଷଙ୍କର ସେହି ଦୁର୍ବାକ୍ୟ ବାଣମାନଙ୍କର ସ୍ମୃତି ଜାଗରିତ ହୋଇଅଛି । ଯାହା ପ୍ରଜାପତିମାନଙ୍କର ସମକ୍ଷରେ ଦକ୍ଷ ତାହାଙ୍କୁ କହିଥିଲେ, ତହୁଁ ସେ ସହାସ୍ୟବଦନରେ ଉତ୍ତର ଦେଲେ । ୧୫ ।

---

ଦେଖ ହେ ପ୍ରଭୁ ଶୂନ୍ୟପଥେ
ଦେବେ ଗମନ୍ତି ଯୂଥେ ଯୂଥେ
ଯେସନେ ରାଜହଂସ ପନ୍ତି
ବିମାନ ମଧ୍ୟେ ଶୂନ୍ୟେ ଯାନ୍ତି ।୧୨।
ମୋର ପିତାର ଘରେ ଯାଇଁ
ଯଜ୍ଞ ଦେଖିବେ ସୁଖ ବହି
ମୁଁ ଏହା ସହିବି କେମନ୍ତେ
ଶରୀର ବହି ଏ ଜଗତେ ?

ପିତା ଭର୍ତ୍ତା ଗୁରୁସଦନେ
ଯୋଗାଇ ଯିବା ଅବରଣେ
ହେ ନାଥ ଶୁଣ ସଦାଶିବ
ଯେବେ ଅବରଣେ ନ ଯିବ
ମୁଁ ଯିବି ଆଜ୍ଞା ଦିଅ ମୋତେ
ପ୍ରସନ୍ନ ମନେ ଶୁଦ୍ଧଚିତ୍ତେ ।୧୩,୧୪।

ଶ୍ରୀମୈତ୍ରେୟ ଉବାଚ
ଏମନ୍ତ ପ୍ରିୟା ମୁଖୁଁ ଶୁଣି
ଈଶ୍ୱର ସ୍ମରି ଚିତ୍ତେ ଗୁଣି
ସ୍ୱଭାବେ ଜଗତ ଈଶ୍ୱର
ଜଗତ ଯାର ଦେଳଘର
ଅଜପ ଅସମାନ ବହି
କହନ୍ତି ପତ୍ନୀମୁଖ ଚାହିଁ । ୧୫ ।

ଶ୍ରୀଭଗବାନୁବାଚ ।

ତ୍ୱୟୋଦିତଂ ଶୋଭନମେବ ଶୋଭନେ ଅନାହୂତା ଅପ୍ୟଭିୟନ୍ତି ବନ୍ଧୁଷୁ ।
ତେ ଯଦ୍ୟନୁତ୍ପାଦିତଦୋଷଦୃଷ୍ଟୟୋ ବଲୀୟସାନାତ୍ମ୍ୟମଦେନ ମନ୍ୟୁନା । ୧୬ ।
ବିଦ୍ୟାତପୋବିତ୍ତବପୁର୍ବୟଃକୁଲୈଃ ସତାଂ ଗୁଣୈଃ ଷଡ୍ଭିରସତ୍ତମେତରୈଃ ।
ସ୍ମୃତୌ ହତାୟାଂ ଭୃତମାନଦୁର୍ଦ୍ଦୃଶଃ ସ୍ତବ୍ଧା ନ ପଶ୍ୟନ୍ତି ହି ଧାମ ଭୂୟସାମ୍ ।୧୭।
ନୈତାଦୃଶାନାଂ ସ୍ୱଜନବ୍ୟପେକ୍ଷୟା ଗୃହାନ୍ ପ୍ରତୀୟାଦନବସ୍ଥିତାତ୍ମନାମ୍ ।
ଯେଽଭ୍ୟାଗତାନ୍ ବକ୍ରଧିୟାଭିଚକ୍ଷତେ ଆରୋପିତଭ୍ରୂଭିରମର୍ଷଣାକ୍ଷିଭିଃ । ୧୮ ।

---

**ଶ୍ରୀଭଗବାନ୍ ଶଂକର କହିଲେ :—**

ହେ ସୁନ୍ଦରି ! ବନ୍ଧୁମାନେ ଯଦି ଦେହାଦିରେ ପ୍ରବଳ ଅଭିମାନ ଓ କ୍ରୋଧବଶତଃ ବୃଥା ଦୋଷ ଦୃଷ୍ଟି ସମ୍ପନ୍ନ ନ ହୋଇଥାନ୍ତି, ତାହାହେଲେ ଅନାମନ୍ତ୍ରିତ ଭାବରେ ବନ୍ଧୁଗୃହକୁ ଗମନ ସୁସଙ୍ଗତ ହୁଅନ୍ତି । ୧୬

ବିଦ୍ୟା ତପସ୍ୟା, ବିତ୍ତ, ଦେହ, ବୟସ ଓ ବଂଶ ଏହି ଛଅଟି ସାଧୁମାନଙ୍କ ପକ୍ଷରେ ଗୁଣ କିନ୍ତୁ ଅସାଧୁମାନଙ୍କଠାରେ ତାହା ଦୋଷରୂପେ ପରିଣତ ହୁଏ ଏବଂ ସେମାନଙ୍କର ବିବେକ ନଷ୍ଟକରେ । ସେଥିରେ ଯେହି ଅସାଧୁମାନେ ନିତାନ୍ତ ଉଦ୍ଧତ ହୋଇ ଅଭିମାନାନ୍ଧ ହୋଇ ଉଠନ୍ତି । ସୁତରାଂ ସେମାନେ ସାଧୁଜନଙ୍କର ତେଜ କୌଣସି ପ୍ରକାରେ ଦେଖି ପାରନ୍ତି ନାହିଁ । ୧୭ ।

ଯେଉଁ ବ୍ୟକ୍ତିମାନେ କୁଟିଳ ବୁଦ୍ଧିବଶତଃ ଭ୍ରୂକୁଞ୍ଚିତ କରି କ୍ରୋଧବ୍ୟଞ୍ଜକ ନୟନରେ ଅତିଥି-ମାନଙ୍କ ପ୍ରତି ଦୃଷ୍ଟିପାତ କରନ୍ତି, ସେପରି ଅବ୍ୟବସ୍ଥଚିତ୍ତ ଅସଜ୍ଜନମାନଙ୍କ ଗୃହକୁ ଆତ୍ମୀୟ ଭାବରେ ଗମନ କରିବା ଉଚିତ ନୁହେଁ । ୧୮ ।

---

ଶ୍ରୀମହାଦେବ ଉବାଚ—

ଶୁଣ ସୁନ୍ଦରି କହୁଁ ତୋତେ
ତୁ ଯେଣୁ ପଚାରିଲୁ ମୋତେ
ସାଧୁ ବଚନ ଏ ତୋହର
ଶୁଦ୍ଧ ସୁନ୍ଦର ମନୋହର
ଅବରଣରେ ଯେ ଯିବାର
ପ୍ରମାଣ ସାଧୁ ଏ ବଚନ
ବନ୍ଧୁକୁ ବନ୍ଧୁଭାବ ଖେଳେ
ଅମାନ୍ୟ କଲେ ଅବହେଳେ
ତହିଁ ନ ଥାଇଁ ଅପମାନ—
କେ ସହୁ ପୁଣି ଦୁର୍ବଚନ ? ।୧୬।
ବିଦ୍ୟାର ବଳେ ତପଦାହେ
ସୁନ୍ଦର ବପୁ ବୟ ବହେ
ଉତ୍ତମ କୁଳେ ଯେହୁ ଜାତ
ସକଳ ଗୁଣେ ଯେ ବିଖ୍ୟାତ
ଜାଣଇ ଶ୍ରୁତି ସ୍ମୃତିଧର୍ମ୍ମ
ଆଗମ ନିଗମ ଯେ କର୍ମ୍ମ
ସେ ପୁଣି ଅବିବେକ ବଳେ
ବନ୍ଧୁ ନିନ୍ଦଇ ଅବହେଳେ
ମହତ ତେଜ ସେ ସହେ
ନିରତେ ମନେ ଗର୍ବ ବହେ
ଅଜ୍ଞାନବାଦୀ ବୋଲି ତାରେ
ସୁଖ ନ ଲଭେ ଏ ସଂସାରେ ।୧୭
ଯେ ପ୍ରାଣୀ ଅଭ୍ୟାଗତ ଦେଖି
ବକ୍ର ବଦନେ ବୁଲେ ଆଖି
ବନ୍ଧୁ ହେଲେହେଁ ଜାଣ ତୁହି
ତା ଗୃହେ ଯିବା ନ ଯୋଗାଇ ।୧୮

ତଥାରିଭିର୍ନ ବ୍ୟଥତେ ଶିଲୀମୁଖୈଃ ଶେତେଽର୍ଦ୍ଦିତାଙ୍ଗୋ ହୃଦୟେନ ଦୂୟତା ।
ସ୍ୱାନାଂ ଯଥା ବକ୍ରଧିୟାଂ ଦୁରୁକ୍ତିଭିର୍ଦିବାନିଶଂ ତପ୍ୟତି ମର୍ମ୍ମତାଡ଼ିତଃ । ୧୯ ।
ବ୍ୟକ୍ତଂ ତ୍ୱମୁତ୍କୃଷ୍ଟଗତେଃ ପ୍ରଜାପତେଃ ପ୍ରିୟାତ୍ମଜାନାମସି ସୁଭ୍ରୂ ମେ ମତା ।
ତଥାପି ମାନଂ ନ ପିତୁଃ ପ୍ରପତ୍ସ୍ୟସେ ମଦାଶ୍ରୟାତ୍ କଃ ପରିତପ୍ୟତେ ଯତଃ ।୨୦।
ପାପଚ୍ୟମାନେନ ହୃଦାତୁରେନ୍ଦ୍ରିୟଃ ସମୃଦ୍ଧିଭିଃ ପୂରୁଷବୁଦ୍ଧିସାକ୍ଷିଣାମ୍ ।
ଅକଲ୍ୟ ଏଷାମଧିରୋଢ଼ୁମଞ୍ଜସା ପରଂ ପଦଂ ଦ୍ୱେଷ୍ଟି ଯଥାସୁରା ହରିମ୍ । ୨୧ ।
ପ୍ରତ୍ୟୁଦ୍‌ଗମପ୍ରଶ୍ରୟଣାଭିବାଦନଂ ବିଧୀୟତେ ସାଧୁ ମିଥଃ ସୁମଧ୍ୟମେ ।
ପ୍ରାଜ୍ଞୈଃ ପରସ୍ମୈ ପୁରୁଷାୟ ଚେତସା ଗୁହାଶୟାୟୈବ ନ ଦେହମାନିନେ ।୨୨।

କୁଟିଳ ବୁଦ୍ଧି ଆତ୍ମୀୟମାନଙ୍କର ଦୁର୍ବାକ୍ୟ ଦ୍ୱାରା ମର୍ମାହତ ହୋଇ ଯେପରି ଲୋକେ ବ୍ୟଥା ଅନୁଭବ କରନ୍ତି, ଶତ୍ରୁମାନଙ୍କର ତୀକ୍ଷ୍ଣ ବାଣ ଦ୍ୱାରା ସେହିପରି ବ୍ୟଥା ହୋଇଥାଏ, କାରଣ ବାଣବିଦ୍ଧ ବ୍ୟକ୍ତି ମଧ୍ୟ ନିଦ୍ରା ସୁଖ ଅନୁଭବ କରିପାରେ ମାତ୍ର ବାକ୍ୟବାଣ ବିଦ୍ଧ ବ୍ୟକ୍ତିର ହୃଦୟରେ ଦାବାଗ୍ନି ଅଶାନ୍ତ ଜନ୍ମେ ।୧୯।

ହେ ସୁଭ୍ରୂ ! ଦକ୍ଷଙ୍କ ମର୍ଯ୍ୟାଦା ଅତି ଉତ୍ତମ, ତୁମ୍ଭେ ଯେ ତାହାଙ୍କର କନ୍ୟାମାନଙ୍କ ମଧ୍ୟରେ ଆଦରଣୀୟା, ତାହା ମଧ୍ୟ ମୁଁ ଜାଣେ, କିନ୍ତୁ ତୁମ୍ଭେ ମୋର ସମ୍ବନ୍ଧ ବଶତଃ ତାହାଙ୍କଠାରୁ ସମ୍ମାନ ଲାଭକରି ପାରିବ ନାହିଁ; କାରଣ ଦକ୍ଷ ଏହି ସମ୍ବନ୍ଧ ହେତୁ ଅନୁତାପ ଭୋଗୁ ଅଛନ୍ତି । ୨୦ ।

ନିରହଙ୍କାର ପୁରୁଷମାନଙ୍କର ଯଶ ପ୍ରତିଷ୍ଠା ଦ୍ୱାରା ଯେଉଁମାନଙ୍କର ହୃଦୟ ଈର୍ଷାନଳରେ ଦଗ୍‌ଧହୁଏ ଓ ଇନ୍ଦ୍ରିୟମାନେ ବ୍ୟଥିତ ହୁଅନ୍ତି, ସେହି ପୁରୁଷ ଅହଂକାରଗ୍ରସ୍ତ ଲୋକତୁଲ୍ୟ ପୁଣ୍ୟକୀର୍ତ୍ତି ଲାଭକରି ନପାରି, ଅସୁରମାନେ ଭଗବାନ୍ ଶ୍ରୀହରିଙ୍କ ପ୍ରତି ବିଦ୍ୱେଷ କଲାପରି ଅନ୍ୟ ପ୍ରତି ବିଦ୍ୱେଷଭାବ ପୋଷଣ କରିଥାନ୍ତି ।୨୧

ହେ ସୁମଧ୍ୟମେ ! ଲୋକମାନେ ପରସ୍ପରକୁ ପ୍ରତ୍ୟୁତ୍‌ଥାନ ବିନୟ ଓ ଅଭିବାଦନ କରିଥାନ୍ତି । ପଣ୍ଡିତ ବ୍ୟକ୍ତି ଏ ସମସ୍ତ ବ୍ୟବହାର ଅନ୍ୟପ୍ରକାରେ ସୁଚାରୁରୂପେ ନିର୍ବାହ କରେ, କାରଣ ସେମାନେ ସର୍ବାନ୍ତର୍ଯ୍ୟାମୀ ପରମପୁରୁଷ ବାସୁଦେବଙ୍କ ପ୍ରତି ଅନ୍ତଃକରଣରେ ସେହି ଭାବ ପ୍ରକାଶ କରନ୍ତି, ଦେହାଭିମାନୀ ପୁରୁଷପ୍ରତି ପ୍ରକାଶ କରନ୍ତି ନାହିଁ । ୨୨ ।

ସମରେ ଅରି ବାଣ ଘାଏ
ଅଙ୍ଗରେ ତେତେ ପୀଡ଼ା ନୋହେ
ବନ୍ଧୁର କୁବଚନ ବାଣ
ଅନିଶେ ଦହେ ମନ ପ୍ରାଣ ।୧୯।
ତୁ ପୁଣି ପିତା ପ୍ରିୟ ବହୁ
ତାର ସୁହୃଦ ପଣ କହୁ
ତଥାପି ପିତା ଗୃହେ ଗଲେ
ମାନ ତୁ ନ ପାଇବୁ ଭଲେ
ଯେଣୁ ମୋ ଆଶ୍ରେ ଯେତେ ଛନ୍ତି
ଦକ୍ଷର ପ୍ରିୟ ସେ ନୁହନ୍ତି ।୨୦।

ଅସାଧୁଜନଙ୍କ ସ୍ୱଭାବ
ନିରତେ ଅସହଣି ଭାବ
ସାଧୁଙ୍କ ସୁପୁଣ୍ୟ ସମ୍ପଦ
ଦେଖି ବହନ୍ତି ମନେ ଖେଦ
ହିଂସନ୍ତି ତାଙ୍କ ଅକାରଣେ
ହରିଙ୍କି ଯେସନେ ପୁଣ୍ୟଜନେ ।୨୧।
ସଭାର ମଧ୍ୟେ ତୋ ପିତାରେ
ଅବଜ୍ଞା କଲି ମୁଁ ଯେଭାବରେ
ଏମନ୍ତ ନ ବିଚାର ମନେ
ଶୁଣ କହୁଛି ସୁମଧ୍ୟମେ !

ବନ୍ଧୁର ଆଗମନ ଦେଖି
ଉଠିବ ଆସନ ଉପେକ୍ଷି
ଭାବେ ଆସିବ କିଛି ଦୂର
ସମ୍ଭ୍ରମେ କରି ନମସ୍କାର
ଅଭିଗମନ ମଞ୍ଜୁବାଣୀ
ପୂଜିବ ନିଜଘରେ ଆଣି
ଏମନ୍ତ ବେଭାରେ ସାଧବେ
ବନ୍ଧୁ ପୂଜନ୍ତି ବିଷ୍ଣୁଭାବେ ।୨୨।

ସତ୍ତ୍ୱଂ ବିଶୁଦ୍ଧଂ ବସୁଦେବଶବ୍ଦିତଂ ଯଦୀୟତେ ତତ୍ର ପୁମାନପାବୃତଃ ।
ସତ୍ତ୍ୱେ ଚ ତସ୍ମିନ୍ ଭଗବାନ୍ ବାସୁଦେବୋ ହ୍ୟଧୋକ୍ଷଜୋ ମେ ନମସା ବିଧୀୟତେ ।୨୩।
ତତ୍ ତେ ନିରୀକ୍ଷ୍ୟୋ ନ ପିତାପି ଦେହକୃଦ୍‌ଦକ୍ଷୋ ମମ ଦ୍ୱିଟ୍ ତଦନୁବ୍ରତାଶ୍ଚ ଯେ ।
ଯୋ ବିଶ୍ୱସୃଗ୍‌ଯଜ୍ଞଗତଂ ବରୋରୁ ମାମନାଗସଂ ଦୁର୍ବଚସାକରୋତ୍ ତିରଃ । ୨୪ ।
ଯଦି ବ୍ରଜିଷ୍ୟସ୍ୟତିହାୟ ମଦ୍‌ବଚୋ ଭଦ୍ରଂ ଭବତ୍ୟା ନ ତତୋ ଭବିଷ୍ୟତି ।
ସମ୍ଭାବିତସ୍ୟ ସ୍ୱଜନାତ୍ ପରାଭବୋ ଯଦା ସ ସଦ୍ୟୋ ମରଣାୟ କଳ୍ପତେ । ୨୫ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ଉମାରୁଦ୍ରସମ୍ବାଦେ ତୃତୀୟୋଽଧ୍ୟାୟଃ । ୩ ।

---

ବିଶୁଦ୍ଧ ଅନ୍ତଃକରଣ " ବାସୁଦେବ " ଶବ୍ଦଦ୍ୱାରା ଉକ୍ତହୁଏ, ଯେହେତୁ ତଦ୍ଦ୍ୱାରା ଗୁଣାତୀତ ପରମପୁରୁଷ ବାସୁଦେବ ପ୍ରକାଶିତ ହୁଅନ୍ତି । ମୁଁ ମଧ୍ୟ ସେହି ବିଶୁଦ୍ଧାନ୍ତଃକରଣରେ ଲୌକିକ ଇନ୍ଦ୍ରିୟର ଅଗୋଚର ଭଗବାନ୍ ବାସୁଦେବଙ୍କୁ ନମସ୍କାର କରି ସର୍ବଦା ସେବା କରିଥାଏ । ୨୩ ।

ସୁନ୍ଦରି ! ଦକ୍ଷ ତୁମ୍ଭର ଦେହର ଜନ୍ମଦାତା ପିତା ହେଲେ ମଧ୍ୟ ସେ ମୋର ଶତ୍ରୁତା କରିଥାନ୍ତି, ଅତଏବ ସେ ବା ତାହାଙ୍କର ଅନୁଗାମୀ ଲୋକମାନଙ୍କର ମୁଖାବଲୋକନ କରିବା ଉଚିତ ନୁହେଁ, ସେ ବିଶ୍ୱ-ସ୍ରଷ୍ଟାମାନଙ୍କର ଯଜ୍ଞରେ ମୋତେ ବିନା ଅପରାଧରେ ବିବିଧ ଦୁର୍ବାକ୍ୟ ଦ୍ୱାରା ତିରସ୍କାର କରିଥିଲେ । ୨୪।

ଯଦି ତୁମ୍ଭେ ମୋହର ବାକ୍ୟ ଲଂଘନ କରି ସେଠାକୁ ଗମନ କର, ତେବେ ତୁମ୍ଭର କଦାପି ମଙ୍ଗଳ ହେବ ନାହିଁ, ସୁପ୍ରତିଷ୍ଠିତ ବ୍ୟକ୍ତିର ଯେବେ ସ୍ୱଜନଠାରୁ ଅପମାନ ଘଟେ, ତେବେ ତାହା ମୃତ୍ୟୁ ତୁଲ୍ୟ ଯାତନା ହୁଏ । ୨୫ ।

---

ସେ ବସ୍ତୁ ଶୁଦ୍ଧ ସତ୍ତ୍ୱମୟ
ପ୍ରକାଶେ ଜୀବର ହୃଦୟ
ତେଣୁ ବୋଲିଏ ବାସୁଦେବ
ସେ ଯେ ମୋହର ନିତ୍ୟ ସେବ୍ୟ
ଦକ୍ଷ ହୃଦୟେ ତାଙ୍କୁ ଲକ୍ଷି
ମୁଁ ନମସ୍କାର କରି ଅଛି ।
ଏତେଦେହି ଅଭିମାନ କରି
ଦକ୍ଷ ତା ଜାଣିବ କପରି

ଯେଣୁ ସେ ଦକ୍ଷ ପ୍ରଜାପତି
ମୋ ଭାବେ ଛନ୍ତିଇ ଅନୀତି
ନିରପରାଧି ମୁଁ ତାହାର
ଦୁର୍ବାକ୍ୟେ କଲା ତିରସ୍କାର
ପିତା ହେଲେହେଁ ତାର ତହିଁ
ଯିବା ତୋହର ନ ଯୋଗାଇ ।୨୩
ତୁ ଯେବେ ମୋହର ବଚନ
ଅଜ୍ଞାନେ କରିବୁ ଲଘନ

ପିତା ଭୁବନେ ଯିବୁ ତୁହି
କେବେହେଁ ତୋର ଭଲ ନାହିଁ
ଉତ୍ତମ ଜନ ଜାଣ ଯେବେ
ସ୍ୱଜନୁଁ ପରାଭବ ଲଭେ
ତେବେ ସେ ତାର ଭଲ ନାହିଁ
ଏମନ୍ତ ଦେବୀ ଆଗେ କହି
ସ୍ଥିର ହୋଇଲେ ଉମାକାନ୍ତ
କହିଲା ଦାସ ଜଗନ୍ନାଥ ।୨୪,୨୫



# ଚ ତୁ ର୍ଥ ଅ ଧ୍ୟା ୟ ।

ଚତୁର୍ଥେ ତୁ ପତିଂ ହିତ୍ୱା ଗତା ପିତ୍ରାବମାନିତା ।
ରුଷା ନିର୍ଭର୍ତ୍ସ୍ୟ ତଂ ଯୋଗେ ଜହୌ ଦେହମିତୀର୍ଯ୍ୟତେ ।୦। [ଶ୍ରୀଧରସ୍ୱାମୀ]

ଶ୍ରୀମୈତ୍ରେୟ ଉବାଚ ।

ଏତାବଦୁକ୍ତ୍ୱା ବିରରାମ ଶଙ୍କରଃ ପତ୍ନ୍ୟଙ୍ଗନାଶଂ ହ୍ୟୁଭୟତ୍ର ଚିନ୍ତୟନ୍ ।
ସୁହୃଦ୍ଦିଦୃକ୍ଷୁଃ ପରିଶଙ୍କିତା ଭବାନ୍ନିଷ୍କ୍ରାମତୀ ନିର୍ବିଶତୀ ଦ୍ୱିଧାସ ସା ।୧।
ସୁହୃଦ୍ଦିଦୃକ୍ଷାପ୍ରତିଘାତଦୁର୍ମନାଃ ସ୍ନେହାଦ୍ରୁଦତ୍ୟଶ୍ରୁକଳାତିବିହ୍ୱଳା ।
ଭବଂ ଭବାନ୍ୟପ୍ରତିପୂରୁଷଂ ରුଷା ପ୍ରଧକ୍ଷ୍ୟତୀବୈକ୍ଷତ ଜାତବେପଥୁଃ ।୨।

---

## ସତୀଙ୍କର ଦେହତ୍ୟାଗ ।

ଚତୁର୍ଥ ଅଧ୍ୟାୟରେ ସତୀ ଶିବଙ୍କୁ ପରିତ୍ୟାଗ କରି ପିତ୍ରାଳୟକୁ ଗମନ କରିଥିଲେ ଏବଂ ସେଠାରେ ଦକ୍ଷଙ୍କ ଅପମାନ ସହ୍ୟ କରି ନପାରି ଯଜ୍ଞାଗ୍ନିରେ ଦେହ ତ୍ୟାଗକରିବା ବିଷୟ ବର୍ଣ୍ଣିତ ହୋଇଅଛି ।୦।

ଶ୍ରୀ ମୈତ୍ରେୟ କହିଲେ :—

ହେ ବିଦୁର ! ମହାଦେବ ଏହି କଥା ଭାବିଲେ ଯେ ମୁଁ ପିତ୍ରାଳୟ ଗମନ ଲାଗି ଏହାଙ୍କୁ ଅନୁମତି ଦିଏଁ ବା ନଦିଏଁ, ଏହାଙ୍କର ଦେହତ୍ୟାଗ ଅବଶ୍ୟମ୍ଭାବୀ । ଏହା ଭାବି ସେ ନୀରବ ରହିଲେ । ଏଣେ ସତୀ ପିତା ଓ ସ୍ୱଜନବର୍ଗଙ୍କୁ ଦର୍ଶନ କରିବା ଅଭିଳାଷରେ ଥରେ ଗୃହରୁ ବହିର୍ଗତ ହୁଅନ୍ତି ପୁଣି ଶିବଙ୍କ ଭୟରେ ଗୃହ ମଧ୍ୟରେ ପ୍ରବେଶ କରନ୍ତି; ଏହିପରି ଦୋଦୁଲ୍ୟମାନ ଅବସ୍ଥାରେ ସେ ଅବସ୍ଥାନ କଲେ ।୧।

କ୍ରମେ ସ୍ୱଜନବର୍ଗଙ୍କୁ ଦେଖିବାର ଇଚ୍ଛା ପ୍ରତିହତ ହେବାରୁ ସତୀ ଅତ୍ୟନ୍ତ ବିମର୍ଷ ହେଲେ ଏବଂ ପ୍ରେମାତିଶଯ୍ୟ ହେତୁରୁ ରୋଦନ କରୁ କରୁ ଅଶ୍ରୁଧାରା ନିର୍ଗତ ହେଲା ଏବଂ କ୍ରୋଧରେ ତାହାଙ୍କର ଅଙ୍ଗ କମ୍ପିତ ହେଲା । ବୋଧ ହେଲା ଯେପରି ସେ ତାହାଙ୍କର ରୋଷାଗ୍ନିରେ ସେହି ଅତୁଳନୀୟ ପୁରୁଷ ଶିବଙ୍କ ଦଗ୍ଧ କରି ପକାଇବେ । ଏହିପରି ଭାବରେ ସେ ତାହାଙ୍କ ପ୍ରତି ଦୃଷ୍ଟିପାତ କଲେ ।୨।

---

ଶିବଙ୍କୁ ଲଂଘି ସତୀଯାଇ, ପିତାରେ ଅପମାନ ପାଇ । ରୋଷେ ତେଜିଲେ କଳେବର, ଚରିତ ଚତୁର୍ଥ ଅଧ୍ୟାର ॥

ଶ୍ରୀମୈତ୍ରେୟଉବାଚ—

ଏମନ୍ତେ ଦେବୀ ଆଗେ କହି
ରୁଦ୍ର ରହିଲେ ତୁନି ହୋଇ
ମନେ ଚିନ୍ତନ୍ତି ବିଶ୍ୱନାଥ
ନିପୁଣ ହୁଅଇ ଅନର୍ଥ
ମୋ ପତ୍ନୀ ପିତାଘର ଗଲେ
ପ୍ରାଣ ଏ ନ ଧରିବ ଭଲେ
ଏହାର ମନ ସ୍ଥିର ନାହିଁ
ନ ଗଲେ ନ ଧରିବ ଦେହି
ଏମନ୍ତ ଚିତ୍ତେ ଚିନ୍ତି ହର
କେତେବେଳେ ମନ ନୋହେ ସ୍ଥିର
ଚିନ୍ତା ଆକୁଳେ ଦୁଃଖ ମତି
ନିଜ ଗଣଙ୍କୁ ମନେ ଚିନ୍ତି
ଏହାର ସଙ୍ଗେ ଥିବ ମୁହିଁ
ନିଜଗଣଙ୍କୁ ସଙ୍ଗେ ନେଇ
ଏମନ୍ତେ ରୁଦ୍ର ଚିନ୍ତା କରୁଁ
ଦେବୀ ବାହାର ହେଲେ ଘରୁଁ
ନୟନୁଁ ବହେ ଅଶ୍ରୁଜଳ
ଶୁଖିଲା ବଦନକମଳ
ଶରୀର କମ୍ପେ ରୋଷ ଚିତ୍ତେ
କଦଳୀବନ ଯେମନ୍ତେ ବାତେ
ନିଶ୍ୱାସ ବହେ ଥରହର
ଶୁଖିଲା ସୁରଙ୍ଗ ଅଧର

ତତୋ ବିନଶ୍ୱସ୍ୟ ସତୀ ବିହାୟ ତଂ ଶୋକେନ ରୋଷେଣ ଚ ଦୂୟତା ହୃଦା ।
ପିତ୍ରୋରଗାତ୍ ସ୍ତ୍ରୈଣ୍ୟବିମୂଢ଼ଧୀର୍ଗୃହାନ୍ ପ୍ରେମ୍ଣାତ୍ମନୋ ଯୋଽର୍ଦ୍ଧମଦାତ୍ ସତାଂ ପ୍ରିୟଃ ।୩।
ତାମନ୍ୱଗଚ୍ଛନ୍ ଦ୍ରୁତବିକ୍ରମାଂ ସତୀମେକାଂ ତ୍ରିନେତ୍ରାନୁଚରାଃ ସହସ୍ରଶଃ ।
ସପାର୍ଷଦଯକ୍ଷା ମଣିମନ୍ମଦାଦୟଃ ପୁରୋବୃଷେନ୍ଦ୍ରାସ୍ତରସା ଗତବ୍ୟଥାଃ । ୪ ।
ତାଂ ସାରିକାକନ୍ଦୁକଦର୍ପଣାମ୍ବୁଜୈଃ ଶ୍ୱେତାତପତ୍ରବ୍ୟଜନସ୍ରଗାଦିଭିଃ ।
ଗୀତାୟନୈର୍ଦୁନ୍ଦୁଭିଶଙ୍ଖରେଣୁଭିର୍ବୃଷେନ୍ଦ୍ରମାରୋପ୍ୟ ବିଟଙ୍କିତା ଯୟୁଃ । ୫ ।

---

ତଦନନ୍ତର ସତୀ ଶୋକରେ ଓ କ୍ରୋଧରେ ଅତ୍ୟନ୍ତ କାତର ହୋଇ ଦୀର୍ଘଶ୍ୱାସ ତ୍ୟାଗ କଲେ । ସାଧୁଜନ ପ୍ରିୟ ଶଙ୍କର ସ୍ନେହ ହେତୁରୁ ତାହାଙ୍କୁ ଅର୍ଦ୍ଧାଙ୍ଗ ପ୍ରଦାନ କରିଥିଲେ, ମାତ୍ର ସ୍ତ୍ରୀ ସ୍ୱଭାବପ୍ରଯୁକ୍ତ ମୂଢ଼ବୁଦ୍ଧି ହେତୁରୁ ସତୀ ସ୍ୱାମୀଙ୍କୁ ତ୍ୟାଗକରି ସ୍ୱେଚ୍ଛାରେ ପିତ୍ରାଳୟକୁ ଗମନ କଲେ । ୩ ।

ସତୀ ଏକାକିନୀ ଅତିବେଗରେ ଗମନ କରିବାରୁ ମଣିମାନ୍ ଓ ମଦ ପ୍ରଭୃତି ଶିବାନୁଚରବର୍ଗ, ପ୍ରମଥ ଓ ଯକ୍ଷମାନେ ବହୁସଂଖ୍ୟାରେ ବୃଷେନ୍ଦ୍ରଙ୍କୁ ଆଗରେ ରଖି ତାହାଙ୍କର ପଶ୍ଚାତ୍ ଅନୁଧାବନ କଲେ ।୪।

ତଦନନ୍ତର ସେମାନେ ଦେବୀଙ୍କ ସମୀପବର୍ତ୍ତୀ ହୋଇ ତାହାଙ୍କୁ ବୃଷାରୋହଣ କରାଇଲେ ଏବଂ ସାରିକା, କନ୍ଦୁକ, ଦର୍ପଣ, ପଦ୍ମ ପ୍ରଭୃତି କ୍ରୀଡ଼ୋପକରଣ, ଶ୍ୱେତଛତ୍ର, ବ୍ୟଜନ, ମାଲ୍ୟାଦି ରାଜୋଚିତଦ୍ରବ୍ୟ ସମ୍ଭାର ଏବଂ ସଙ୍ଗୀତ ସାଧନ, ଦୁନ୍ଦୁଭି, ଶଙ୍ଖ ଓ ବେଣୁ ପ୍ରଭୃତି ବିବିଧ ବାଦ୍ୟଯନ୍ତ୍ର ଦ୍ୱାରା ସୁଶୋଭିତ ଓ ସୁସଜ୍ଜିତ କରି ଦେବୀଙ୍କ ସହିତ ଗମନ କଲେ । ୫ ।

---

ଅଧୋବଦନେ ମନଦୁଃଖୀ
ଉଠିଲେ ସ୍ୱାମିଙ୍କୁ ଉପେକ୍ଷି
ସତୀ ଚଳନ୍ତେ ରୋଷଭରେ
ଅବନୀ କମ୍ପେ ପାଦଭରେ
ପିତା ଭୁବନେ ଦେଖି ଯାନ୍ତେ
କେହି ନାହାନ୍ତି ତାଙ୍କ ସାଥେ
ସ୍ତ୍ରୀର ସ୍ୱଭାବ ମୂଢ଼ମତି
ଯେ ହର ସାଧୁଜନ ପତି
ସ୍ନେହରେ ଅର୍ଦ୍ଧ ଅଙ୍ଗ ହୋଇ
ସେ ସତୀ ଲଙ୍ଘି ତାଙ୍କୁ ଯାଇ ।୧-୩

ପିତା ଭୁବନେ ଦେଖି ଯାନ୍ତେ
ପଛେ ଚଳନ୍ତି ଗଣଯୂଥେ
ଶତ ସହସ୍ର ରୁଦ୍ରଗଣ
ନିକଟେ ମିଳିଲେ ତକ୍ଷଣ
ସତୀଙ୍କୁ ବୃଷଭେ ବସାଇ
ସର୍ବେ ଧାଇଁଲେ ସଜ ହୋଇ
ନନ୍ଦୀ ଚଳିଲେ ଗଣ ଲଇଁ
ଏମନ୍ତେ ରୁଦ୍ର ଆଗେ କହି
"ମୁଁ ଯିବି ଅମ୍ବିକାର ପଛେ
ମୋ କଥା ଦେଖ ତୁ ପ୍ରତ୍ୟକ୍ଷେ" ।୪।

ଅମ୍ବିକା ଭୁଲେ ନାଶି ଯୂଥେ
ମିଳିଲେ ଉପାୟନ ହସ୍ତେ
କନ୍ଦୁକ ଦର୍ପଣ ଅମ୍ବୁଜ
ଶ୍ୱେତାତପତ୍ର ଶ୍ୱେତଧ୍ୱଜ
ବ୍ୟଜନ ପୁଷ୍ପମାଳା ଘେନି
ସଙ୍ଗୀତ ଗୀତ ନାଦ ଧ୍ୱନି
ଦୁନ୍ଦୁଭି ଶଙ୍ଖ ବେଣୁ ନାଦେ
ସଙ୍ଗତେ ଚଳିଲେ ଆନନ୍ଦେ । ୫ ।

ଆବ୍ରହ୍ମଘୋଷୋର୍ଜିତଯଜ୍ଞବୈଶସଂ ବିପ୍ରର୍ଷିଜୁଷ୍ଟଂ ବିବୁଧୈଶ୍ଚ ସର୍ବଶଃ ।
ମୃଦ୍‌ଦାର୍ୱୟଃକାଞ୍ଚନଦର୍ଭଚର୍ମଭିର୍ନିସୃଷ୍ଟଭାଣ୍ଡଂ ଯଜନଂ ସମାବିଶତ୍ । ୬ ।
ତାମାଗତାଂ ତତ୍ର ନ କଶ୍ଚନାଦ୍ରିୟଦ୍‌ବିମାନିତାଂ ଯଜ୍ଞକୃତୋ ଭୟାଜ୍ଜନଃ ।
ଋତେ ସ୍ୱସୃର୍ବୈ ଜନନୀଞ୍ଚ ସାଦରାଃ ପ୍ରେମାଶ୍ରୁକଣ୍ଠ୍ୟଃ ପରିଷସ୍ୱଜୁର୍ମୁଦା । ୭ ।
ସୌଦର୍ଯ୍ୟସମ୍ପ୍ରଶ୍ନସମର୍ଥବାର୍ତ୍ତୟା ମାତ୍ରା ଚ ମାତୃସ୍ୱସୃଭିଶ୍ଚ ସାଦରମ୍ ।
ଦତ୍ତାଂ ସପର୍ଯ୍ୟାଂ ବରମାସନଞ୍ଚ ସା ନାଦତ୍ତ ପିତ୍ରାପ୍ରତିନନ୍ଦିତା ସତୀ । ୮ ।

---

ସତୀ ଅନୁଚରବର୍ଗଙ୍କ ସହିତ ପିତାଙ୍କର ଯଜ୍ଞସ୍ଥାନରେ ଉପସ୍ଥିତ ହୋଇଥିଲେ, ସେଠାରେ ଦେଖିଲେ, ଯଜ୍ଞପଶୁବଧ କୋଳାହଳରେ ଓ ବେଦଧ୍ୱନି ଦ୍ୱାରା ଯଜ୍ଞସ୍ଥଳ ମୁଖରିତ ହେଉଅଛି, ଏବଂ ଅପୂର୍ବ ମଧୁରରବ ଶ୍ରୁତି ଗୋଚର ହେଉଅଛି, ଚତୁର୍ଦ୍ଦିଗରେ ବ୍ରହ୍ମର୍ଷି ଦେବତା ପ୍ରଭୃତି ଉପସ୍ଥିତ ଅଛନ୍ତି ଏବଂ ମୃତ୍ତିକା, କାଷ୍ଠ, ଲୌହ, କାଞ୍ଚନ, କୁଶ ଓ ଚର୍ମଦ୍ୱାରା ନିର୍ମିତ ଯଜ୍ଞପାତ୍ର ସମୂହ ସ୍ଥାନେ ସ୍ଥାନେ ବିରାଜିତ ହେଉଅଛି ।୬

ସତୀ ସେଠାରେ ଉପସ୍ଥିତ ହୁଅନ୍ତେ ତାହାଙ୍କର ମାତା ଓ ଭଗ୍ନୀଗଣ ବ୍ୟତୀତ ଅନ୍ୟ କେହି ଦକ୍ଷଙ୍କ ଭୟରେ ତାହାଙ୍କୁ ଆଦର କଲେ ନାହିଁ , କେବଳ ମାତା ଓ ଭଗ୍ନୀମାନେ ପ୍ରେମାଶ୍ରୁ ବର୍ଜନ ଦ୍ୱାରା ଜାଡ୍ୟକଣ୍ଠା ହୋଇ ତାହାଙ୍କୁ ଆଦରରେ ଆଲିଙ୍ଗନ କରିଥିଲେ । ୭ ।

ଦକ୍ଷ ବାକ୍ୟଦ୍ୱାରା ସୁଦ୍ଧା ତାହାଙ୍କୁ ସମ୍ଭାଷଣ କଲେ ନାହିଁ, ଭଗିନୀମାନଙ୍କ କୁଶଳ ପ୍ରଶ୍ନ ପ୍ରତି ସେ କର୍ଣ୍ଣପାତ କଲେ ନାହିଁ, ମାତା ଓ ମାତୃସ୍ୱସାଗଣ ସ୍ନେହରେ ତାହାଙ୍କୁ ଯେପରି ଉତ୍କୃଷ୍ଟ ଆସନ ଓ ଅଳଙ୍କାର-ମାନ ପ୍ରଦାନ କଲେ; ତାହା ସେ ମଧ୍ୟ ଗ୍ରହଣ କଲେ ନାହିଁ । ୮ ।

---

ଏମନ୍ତେ ରୁଦ୍ରଗଣେ ଯାଇ
ଯଜ୍ଞ ଦେଖିଲେ ଦୂରେ ରହି
ଧୂମ ବ୍ୟାପିଛି ଯଜ୍ଞଶାଳେ
ଅଶେଷ ଋଷି ବିପ୍ର ମେଳେ
ବିପ୍ରଙ୍କ ସଙ୍ଗେ ପ୍ରଜାପତି
ଅନଳେ ଦେଉଛନ୍ତି ଆହୁତି
ଯଜ୍ଞର ଭାଣ୍ଡ ନାନାବିଧି
ଯେ ଭାଣ୍ଡେ ଯେ ଦ୍ରବ୍ୟ ପ୍ରସିଦ୍ଧି
ମନ୍ତ୍ର ଆହୁତି ହୋମ ବେଳେ
ସତୀ ମିଳିଲେ ଯଜ୍ଞଶାଳେ

ସତୀ ଗୃହାନ୍ତେ କୋପଚିତ୍ତେ
ସେ ଯଜ୍ଞେ ଥିଲେ ଯେ ସମସ୍ତେ
ସତୀକି ଦକ୍ଷୁଁ ଭୟ ପାଇ
ଆଦର ନ କରିଲେ କେହି
ଭଗିନୀଗଣେ ମାତା ଭୁଲେ
ଆଦରେ ସମୀପେ ମିଳିଲେ
ପ୍ରେମାଶ୍ରୁ କଣ୍ଠେ ଭଗ୍ନୀଗଣ
କୋଳ କରନ୍ତି ଜଣେ ଜଣ ।୬,୭।
ସୋଦର ସ୍ନେହେ ପ୍ରଶ୍ନ କଲେ
ସର୍ବ ମଙ୍ଗଳ ପଚାରିଲେ

ଉତ୍ତମ ପୂଜା ବିଧି ଦ୍ରବ୍ୟ
ସମୀପେ ଦେଲେ ଆଣି ସର୍ବ
ରତ୍ନ ଆସନ ବେଗେ ଆଣି
ସେ ପ୍ରଜାପତିର ଘରଣୀ
ସତୀ ସମୀପେ ଆଣି ଦେଲେ
ତା ଦେଖି ସତୀ କୋପ କଲେ
ପିତାର ଅନାଦର ଦେଖି
କୋପେ କମ୍ପଇ ଅଶ୍ରୁମୁଖୀ ।୮।

ଅରୁଦ୍ରଭାଗଂ ତମବେକ୍ଷ୍ୟ ସ୍ୱଧ୍ୱରଂ ପିତ୍ରା ଚ ଦେବେ କୃତହେଳନଂ ବିଭୌ ।
ଅନାଦୃତା ଯଜ୍ଞସଦସ୍ୟଧୀଶ୍ୱରୀ ଚୁକୋପ ଲୋକାନିବ ଧକ୍ଷ୍ୟତୀ ରୁଷା । ୯ ।
ଜଗର୍ହ ସାମର୍ଷବିପନ୍ନୟା ଗିରା ଶିବଦ୍ୱିଷଂ ଧୂମପଥଶ୍ରମସ୍ମୟମ୍ ।
ସ୍ୱତେଜସା ଭୂତଗଣାନ୍ ସମୁତ୍ଥିତାନ୍ ନିଗୃହ୍ୟ ଦେବୀ ଜଗତୋଽଭିଶୃଣ୍ୱତଃ ।୧୦।

ଶ୍ରୀଦେବ୍ୟୁବାଚ ।

ନ ଯସ୍ୟ ଲୋକେଽସ୍ତ୍ୟତିଶାୟନଃ ପ୍ରିୟସ୍ତଥାଽପ୍ରିୟୋ ଦେହଭୃତାଂ ପ୍ରିୟାତ୍ମନଃ ।
ତସ୍ମିନ୍ ସମସ୍ତାତ୍ମନି ମୁକ୍ତବୈରକେ ଋତେ ଭବନ୍ତଂ କତମଃ ପ୍ରତୀପୟେତ୍ । ୧୧ ।

---

ସତୀ ଦେଖିଲେ ଏହି ଯଜ୍ଞରେ ତାହାଙ୍କର ସ୍ୱାମୀଙ୍କର କୌଣସି ଅଂଶ ନାହିଁ, ବରଂ ରୁଦ୍ରଙ୍କୁ ତାହାଙ୍କର ପିତା ଅବମାନନା କରିଅଛନ୍ତି, ନିଜେ ମଧ୍ୟ ଯଜ୍ଞକ୍ଷେତ୍ରରେ ଅପମାନିତା ହୋଇ ଅତ୍ୟନ୍ତ କ୍ରୁଦ୍ଧ ହେଲେ ଏବଂ ତାହାଙ୍କ କ୍ରୋଧରେ ଚତୁର୍ଦ୍ଦିଗ ଦଗ୍‌ଧ ହେବାକୁ ଲାଗିଲା । ୯ ।

ତାହାଙ୍କ ସହିତ ଆଗତଭୂତଗଣ ଯଜ୍ଞସ୍ଥଳରେ ଉପଦ୍ରବ କରିବାକୁ ଲାଗିଲେ । ସେ ନିଜର ଆଜ୍ଞା ଦ୍ୱାରା ସେମାନଙ୍କୁ ନିବାରଣ କଲେ, ଏବଂ ଶିବଦ୍ୱେଷୀ ଦକ୍ଷ କର୍ମମାର୍ଗରେ ବହୁଶ୍ରମ କରିଥିବାରୁ ସତୀ ଗର୍ବିତଭାବରେ ସର୍ବଜନ ସମକ୍ଷରେ ତାହାଙ୍କର ନିନ୍ଦା କରିଥିଲେ । ୧୦ ।

ଶ୍ରୀ ଦେବୀ କହିଲେ :—

ପିତଃ ! ଇହ ଲୋକରେ ଯାହାଙ୍କ ଅପେକ୍ଷା କେହି ଶ୍ରେଷ୍ଠ ନୁହେଁ, ଯାହାଙ୍କର ପ୍ରିୟ ଅପ୍ରିୟ କେହି ନାହିଁ, ଯେ ଦେହଧାରୀ ଜୀବମାନଙ୍କର ଆତ୍ମାସ୍ୱରୂପ ପ୍ରିୟତମ, ସେହି ସର୍ବାତ୍ମକ ମହାଦେବଙ୍କ ପ୍ରତି ଆପଣଙ୍କ ଭିନ୍ନ ଅନ୍ୟ କେହି ପ୍ରତିକୂଳାଚରଣ କରୁ ନାହିଁ । ୧୧ ।

---

ଯଜ୍ଞେ ନ ଦେଖି ସ୍ୱାମିଭାଗ
ମନେ ବହିଲା ମହାରାଗ
ଈଶ୍ୱର ପଣ ନ ଗଣିଲା
ଅବହେଳେନ ପଣ କଲା
ସଭାରେ ଯେତେ ଲୋକ ଥିଲେ
ସତୀଙ୍କି ଦେଖି ନ ଉଠିଲେ
ପିତା ଅବଜ୍ଞା କର୍ମ ଦେଖି
କୋପେ କମ୍ପଇ ଅଧୋମୁଖୀ

ନିଜ ଶରୀର ମହାତେଜେ
ନିବାରି ଭୂତଗଣ ମାତେ
କୋପେ ବୋଲନ୍ତି ଉଚ୍ଚେ ବାଣୀ
ଯେମନ୍ତେ ସର୍ବଲୋକେ ଶୁଣି ।୯,୧୦
କୋପେ କମ୍ପଇ ତାର ଦେହ
କହଇ ପିତା ମୁଖ ଚାହିଁ

ଶ୍ରୀଦେବ୍ୟୁବାଚ—
ପ୍ରିୟ ଅପ୍ରିୟ ଅତିରେକେ
ନ ଦେଖି ଯାର ଇହଲୋକେ
ଜଗତ ମଧ୍ୟେ ଯେତେ ଦେହ
ସ୍ୱାମୀ ମୋହର ସର୍ବ ପ୍ରିୟ
ଯେ ରୁଦ୍ର ସର୍ବ ଆତ୍ମା ହୋଇ
ଅରି ମିତ୍ର ଯାର ନାହିଁ
ସେ ଯେ ଅଶେଷ ଜନ ଗୁରୁ
ତୋ ବିନା କେହୁ ନିନ୍ଦା କରୁ ।୧୧

ଦୋଷାନ୍ ପରେଷାଂ ହି ଗୁଣେଷୁ ସାଧବୋ ଗୃହ୍ଣନ୍ତି କେଚନ୍ନ ଭବାଦୃଶା ଦ୍ୱିଜ ।
ଗୁଣାଂଶ୍ଚ ଫଲ୍ଗୁନ୍ ବହୁଲୀକରିଷ୍ଣବୋ ମହତ୍ତମାସ୍ତେଷ୍ୱବଦଦ୍ଭବାନଘମ୍ । ୧୨ ।
ନାଶ୍ଚର୍ଯ୍ୟମେତଦ୍ୟଦସତ୍ସୁ ସର୍ବଦା ମହଦ୍ବିନିନ୍ଦାକୁଣପାତ୍ମବାଦିଷୁ ।
ସେର୍ଷ୍ୟଂ ମହାପୁରୁଷପାଦପାଂଶୁଭିର୍ନିରସ୍ତତେଜଃସୁ ତଦେବ ଶୋଭନମ୍ । ୧୩ ।
ଯଦ୍ଦ୍ୱ୍ୟକ୍ଷରଂ ନାମ ଗିରେରିତଂ ନୃଣାଂ ସକୃତ୍ ପ୍ରସଙ୍ଗାଦଘମାଶୁ ହନ୍ତି ତତ୍ ।
ପବିତ୍ରକୀର୍ତ୍ତିଂ ତମଲଙ୍ଘ୍ୟଶାସନଂ ଭବାନହୋ ଦ୍ୱେଷ୍ଟି ଶିବଂ ଶିବେତରଃ । ୧୪ ।

---

ହେ ଦ୍ୱିଜବର ! କୌଣସି କୌଣସି ସାଧୁ ପୁରୁଷ ଅନ୍ୟର ଦୋଷ ସବୁକୁ ଗୁଣ ବୋଲି ଗ୍ରହଣ କରିଥାନ୍ତି, କିନ୍ତୁ ଆପଣଙ୍କ ତୁଲ୍ୟ ଅସୂୟାପରବଶ ବ୍ୟକ୍ତି ପରର ଗୁଣକୁ ଦୋଷ ବୋଲି ଗ୍ରହଣ କରେ । ଯେଉଁମାନେ ଯଥାର୍ଥରେ ଦୋଷଗୁଣ ବିଗ୍ରହ କରନ୍ତି ସେମାନେ ମଧ୍ୟମ, ଯେଉଁମାନେ ତୁଚ୍ଛଗୁଣକୁ ମଧ୍ୟ ମହତ୍ତ୍ୱ ବୋଲି ବିବେଚନା କରନ୍ତି ସେମାନେ ଶ୍ରେଷ୍ଠ, ଆପଣ ସେହି ଶ୍ରେଷ୍ଠ ପୁରୁଷ ମହାଦେବଙ୍କ ପ୍ରତି ଅଯଥା ଦୋଷାରୋପ କରୁ ଅଛନ୍ତି । ୧୨ ।

ଯେଉଁମାନେ ଏହି ଜଡ଼ ଦେହକୁ ଆତ୍ମା ବୋଲି ମନେ କରନ୍ତି, ସେମାନେ ଈର୍ଷାବଶତଃ ଏହି ମହାଜନ ମାନଙ୍କର ନିନ୍ଦା କରିଥାନ୍ତି, ଏଥିରେ ଆଉ ଆଶ୍ଚର୍ଯ୍ୟ କଣ ଅଛି । ସାଧୁବ୍ୟକ୍ତିମାନେ ନିଜର ନିନ୍ଦା ସହ୍ୟ କରିଥାନ୍ତି ସତ୍ୟ ମାତ୍ର ସେମାନଙ୍କର ପଦରେଣୁ ସୁଦ୍ଧା ମହତର ନିନ୍ଦା ସହ୍ୟ କରିବାକୁ ସମର୍ଥ ନୁହେଁ । ସେହି ପଦ ରେଣୁ କଣିକାମାତ୍ର ନିନ୍ଦୁକର ତେଜ ନାଶ କରେ, ସୁତରାଂ ଦଣ୍ଡ୍ୟ ପ୍ରତିଫଳ ପାଇବାଲାଗି ଅସତ୍ପୁରୁଷ ପକ୍ଷରେ ମହାଜନ ମାନଙ୍କର ନିନ୍ଦା କରିବା ବିଚିତ୍ର ନୁହେଁ । ୧୩ ।

ଯାହାଙ୍କର ନାମ 'ଶିବ' ଏହି ଦୁଇଟି ଅକ୍ଷର ଦ୍ୱାରା ପ୍ରସିଦ୍ଧ, ଏହି ଦୁଇଟି ଅକ୍ଷର ଉଚ୍ଚାରଣ କଲେ ତତ୍କ୍ଷଣାତ୍ ମାନବର ସମସ୍ତ ପାପ ନଷ୍ଟହୁଏ, ତାହାଙ୍କର କୀର୍ତ୍ତି ଅତିପବିତ୍ର, ତାହାଙ୍କର ଶାସନ କାହାର ପକ୍ଷରେ ଲଂଘନୀୟ ନୁହେଁ । ସେହି ପୁଣ୍ୟ କୀର୍ତ୍ତି ମହାଦେବଙ୍କ ପ୍ରତି ଆପଣ ବିଦ୍ୱେଷାଚରଣ କରିଅଛନ୍ତି, ଏହାଆପଣଙ୍କର ମଙ୍ଗଳ ଜନକ ନୁହେଁ । ୧୪ ।

---

ଦେଖ ଏ ସଂସାର ଦେଶରେ
ଯେ ସାଧୁଜନେ ହିଂସା କରେ
ଅନେକ ଦୋଷ କରିଥିଲେ
ସାଧବେ ନ ଧରନ୍ତି ଭଲେ
ମାନ୍ୟ ଜନଙ୍କ ପ୍ରାପ୍ୟ ହୋଇ
ରୁଦ୍ର ବିଷୟେ କୋପ ବହି

ଯେଣୁ ବୋଲଇ ପ୍ରଜାପତି
ସେ ଗର୍ବେ ନିନ୍ଦୁ ମୋର ପତି
ଏ ନୋହେ ମହତଙ୍କ କର୍ମ୍ମ
ଗର୍ବେ ହୋଇଲୁ ମତିଭ୍ରମ । ୧୨, ୧୩
ଯେ ବେଳ ଅକ୍ଷର ଉଚ୍ଚାରେ
ପ୍ରସଙ୍ଗେ "ଶିବ" ନାମ ଧରେ

ପ୍ରବେଶ ଯାର ଶ୍ରୁତି ପଥେ
ପାପ ନାଶଇ କ୍ଷଣମାତ୍ରେ
ଯାହାର ନାମ ଏ ଜଗତେ
ସର୍ବମଙ୍ଗଳ ବହୁମତେ
ତୋର ଜୀବନ ପାପବନ୍ଧୁ
ଅଶିବ ହୋଇ ଶିବ ନିନ୍ଦୁ । ୧୪ ।

ଯତ୍ପାଦପଦ୍ମଂ ମହତାଂ ମନୋଽଲିଭିର୍ନିଷେବିତଂ ବ୍ରହ୍ମରସାସବାର୍ଥିଭିଃ ।
ଲୋକସ୍ୟ ଯଦ୍ବର୍ଷତି ଚାଶିଷୋଽର୍ଥିନସ୍ତସ୍ମୈ ଭବାନ୍ ଦ୍ରୁହ୍ୟତି ବିଶ୍ୱବନ୍ଧବେ । ୧୫ ।
କିଂ ବା ଶିବାଖ୍ୟମଶିବଂ ନ ବିଦୁସ୍ତ୍ୱଦନ୍ୟେ ବ୍ରହ୍ମାଦୟସ୍ତମବକୀର୍ଯ୍ୟ ଜଟାଃ ଶ୍ମଶାନେ ।
ତନ୍ମାଲ୍ୟଭସ୍ମନୃକପାଲ୍ୟବସତ୍ ପିଶାଚୈର୍ୟେ ମୂର୍ଦ୍ଧଭିର୍ଦଧତି ତଚ୍ଚରଣାବସୃଷ୍ଟମ୍ । ୧୬ ।
କର୍ଣ୍ଣୌ ପିଧାୟ ନିରୟାଦ୍ୟଦକଲ୍ପ ଈଶେ ଧର୍ମାବିତର୍ଯ୍ୟସୃଣିଭିର୍ନୃଭିରସ୍ୟମାନେ ।
ଛିନ୍ଦ୍ୟାତ୍ ପ୍ରସହ୍ୟ ରୁଶତୀମସତୀଂ ପ୍ରଭୁଶ୍ଚେତ୍ ଜିହ୍ୱାମସୂନପି ତତୋ ବିସୃଜେତ୍ ସ ଧର୍ମଃ ॥
ଅତସ୍ତବୋତ୍ପନ୍ନମିଦଂ କଲେବରଂ ନ ଧାରୟିଷ୍ୟେ ଶିତିକଣ୍ଠଗର୍ହିଣଃ ।
ଜଗ୍ଧସ୍ୟ ମୋହାଦ୍ଧି ବିଶୁଦ୍ଧିମନ୍ଧସୋ ଜୁଗୁପ୍ସିତସ୍ୟୋଦ୍ଧରଣଂ ପ୍ରଚକ୍ଷତେ । ୧୮ ।

---

ବ୍ରହ୍ମାନନ୍ଦ ମକରନ୍ଦଲୋଭୀ ମହାପୁରୁଷମାନଙ୍କର ମନ ଭ୍ରମର ଯାହାଙ୍କର ପାଦପଦ୍ମକୁ ନିରନ୍ତରେ ଭଜନ କରେ ଏବଂ ଯାହାଙ୍କର ପାଦପଦ୍ମ ସକାମ ପୁରୁଷମାନେ ଅଭିଳାଷ କରିବାରୁ ସେମାନେ ମଙ୍ଗଳ ଲାଭ କରନ୍ତି, ଆପଣ ଜଗତର ବନ୍ଧୁ ସେହି ଶିବଙ୍କ ସହିତ ବିଦ୍ରୋହାଚରଣ କରୁଅଛନ୍ତି; ଏହା ଅତି ଆଶ୍ଚର୍ଯ୍ୟର ବିଷୟ । ୧୫ ।

ଯେ ଶ୍ମଶାନର ମାଲ୍ୟ, ଭସ୍ମ, ଓ ନରକପାଳ ଧାରଣ କରି ଜଟା ବିକୀର୍ଣ୍ଣ ପୂର୍ବକ ପିଶାଚମାନଙ୍କ ସହିତ ଶ୍ମଶାନବାସୀ ହୋଇ ଅଛନ୍ତି, ସେହି ଶିବ ଦେବଙ୍କତତ୍ତ୍ୱ ଆପଣଙ୍କ ଭିନ୍ନ ବ୍ରହ୍ମା ପ୍ରମୁଖ ଦେବତାମାନେ ଅବଗତ ଅଛନ୍ତି । କାରଣ ସେମାନେ ସେହି ଶିବଙ୍କର ଚରଣ ବିଗଳିତ ନିର୍ମାଲ୍ୟ ସ୍ୱରୂପ ଭସ୍ମାଦି ନିଜ ନିଜର ମସ୍ତକରେ ଧାରଣ କରି ଅଛନ୍ତି । ୧୬ ।

ଉଚ୍ଛୃଙ୍ଖଳ ବ୍ୟକ୍ତିମାନେ ଯଦି ଧର୍ମରକ୍ଷକ ପ୍ରଭୁଙ୍କର ନିନ୍ଦା କରନ୍ତି, ତେବେ ସେ ବ୍ୟକ୍ତିକୁ ମାରିବା ବା ପ୍ରାଣତ୍ୟାଗ କରିବା କ୍ଷମତା ନଥିଲେ, କର୍ଣ୍ଣ ଆଚ୍ଛାଦନ କରି ପ୍ରଭୁଭକ୍ତର ସେଠାରୁ ପ୍ରସ୍ଥାନ କରିବା ଉଚିତ; ଯଦି ଶକ୍ତିଥାଏ ତେବେ ସେହି କୁବାକ୍ୟବାଦିନୀ ଜିହ୍ୱାକୁ ବଳପୂର୍ବକ ଛେଦନ କରିବା ପ୍ରଭୁଭକ୍ତର କର୍ତ୍ତବ୍ୟ ।୧୭।

ସୁତରାଂ ଶିବ ବିଦ୍ୱେଷୀ ଆପଣ, ଆପଣଙ୍କ ଔରସଜାତ ଏହି ଦେହକୁ ମୁଁ ଧାରଣ କରିପାରିବି ନାହିଁ , ଯଦି ଅଜ୍ଞାନ ବଶତଃ କେହି କୌଣସି ଅଭକ୍ଷଣୀୟ ବସ୍ତୁ ଭକ୍ଷଣ କରେ ତେବେ ବମନଦ୍ୱାରା ତାହାର ଶୁଦ୍ଧି ଲାଭ ହୁଏ; ଏହା ପଣ୍ଡିତମାନଙ୍କର ଅଭିମତ । ୧୮ ।

---

ଯେ ପାଦପଦ୍ମ ମଧୁଲୋଭେ
ମହାନ୍ତ ଜନ ନିତ୍ୟ ସେବେ
କାମିକାମନା ପୂରେ ଯହିଁ
ବିଶ୍ୱବାନ୍ଧବ ଅଟେ ଯେହି
ତାହାରେ ଦ୍ରୋହ ଚିନ୍ତ ପିତ !
ଏ କଥା ବଡ଼ ଆଚମ୍ବିତ
ଜଟା ବିସ୍ତାରି ଶ୍ମଶାନରେ
ବୁଲଇ ଶିବ ଭିକାରେ
ଶ୍ମଶାନଭସ୍ମ ମାଲ୍ୟ ତାର
ନର କପାଳ ଅଳଙ୍କାର

ହେଲେହେଁ ଶିବଙ୍କୁ ଅଶିବ
ତୋ ବିନା କେ ଅବା ବୋଲିବ ?
ଯେ ବ୍ରହ୍ମା ଆଦି ଦେବେ ଛନ୍ତି
ଏହା କି କେହି ନ ଜାଣନ୍ତି
ଶିବ ନିର୍ମାଲ୍ୟ ମଥାପାତି
ତଥାପି କେମନ୍ତେ ଘେନନ୍ତି ।୧୫,୧୬
ଏହିଟି ପତିବ୍ରତା ଧର୍ମ
ପାଷଣ୍ଡେ ସ୍ୱାମିର ନିନ୍ଦନ
ଶୁଣିଲେ କାନେ ହାତ ଦେବ
ତକ୍ଷଣେ ତହୁଁ ପଳାଇବ

ପାରିଲେ ତା ଜିହ୍ୱା ଛେଦିବ
ଆପଣା ଜୀବନ ତେଜିବ ।୧୭।
ତୋ ବୀର୍ଯ୍ୟେ ଜନ୍ମ ମୋର ଦେହ
ଧୋଇଲି ପୂର୍ବ ପାପ ବହି
ସ୍ୱାମୀ ନିନ୍ଦନ ବାକ୍ୟ ସହି
ଏ ଦେହ ନ ଧରିବି ମୁହିଁ
ପୂର୍ବର ପାପ ଯେ ନ ସ୍ମରେ
ତା ପ୍ରତିକାର ଯେ ନ କରେ
ଦିନ ବଢ଼ଇ ଦୁଃଖ ଶୋକେ
ଅନ୍ତେ ସେ ପଡ଼ଇ ନରକେ ।୧୮

ନ ବେଦବାଦାନନୁବର୍ତ୍ତତେ ମତିଃ ସ୍ୱ ଏବ ଲୋକେ ରମତୋ ମହାମୁନେଃ ।
ଯଥା ଗତିର୍ଦେବମନୁଷ୍ୟୟୋଃ ପୃଥକ୍ ସ୍ୱ ଏବ ଧର୍ମ୍ମେ ନ ପରଂ କ୍ଷିପେତ୍ ସ୍ଥିତଃ ।୧୯।
କର୍ମ୍ମ ପ୍ରବୃତ୍ତଞ୍ଚ ନିବୃତ୍ତମପ୍ୟୃତଂ ବେଦେ ବିବିଚ୍ୟୋଭୟଲିଙ୍ଗମାଶ୍ରିତମ୍ ।
ବିରୋଧି ତଦ୍‌ଯୌଗପଦୈକକର୍ତ୍ତରି ଦ୍ୱୟଂ ତଥା ବ୍ରହ୍ମଣି କର୍ମ୍ମ ନର୍ଚ୍ଛତି । ୨୦ ।
ମା ବଃ ପଦବ୍ୟଃ ପିତରସ୍ମଦାସ୍ଥିତା ଯା ଯଜ୍ଞଶାଳାସୁ ନ ଧୂମବର୍ତ୍ମଭିଃ ।
ତଦନ୍ନତୃପ୍ତୈରସୁଭୃଦ୍‌ଭିରୀଡ଼ିତା ଅବ୍ୟକ୍ତଲିଙ୍ଗା ଅବଧୂତସେବିତାଃ । ୨୧ ।
ନୈତେନ ଦେହେନ ହରେ କୃତାଗସୋ ଦେହୋଦ୍‌ଭବେନାଲମଲଂ କୁଜନ୍ମନା ।
ବ୍ରୀଡ଼ା ମମାଭୂତ୍ କୁଜନପ୍ରସଙ୍ଗତସ୍ତଜ୍ଜନ୍ମ ଧିଗ୍‌ଯୋ ମହତାମବଦ୍ୟକୃତ୍ । ୨୨ ।

---

ପରମଯୋଗୀ ଶଙ୍କର ଆତ୍ମତତ୍ତ୍ୱାନୁଶୀଳନରେ ସର୍ବଦା ତନ୍ମୟ, ସୁତରାଂ ତାହାଙ୍କର ବୁଦ୍ଧି କଦାପି ବିଧି ନିଷେଧ ସ୍ୱରୂପ ବେଦ ବାକ୍ୟର ଅନୁଗାମୀ ହୁଏ ନାହିଁ; ଦେବତା ଓ ମନୁଷ୍ୟର ଗତି ଭିନ୍ନପ୍ରକାର, ସେହିପରି ପ୍ରବୃତ୍ତିମାର୍ଗ ଓ ନିବୃତ୍ତିମାର୍ଗ ଭିନ୍ନ ଦିଗରେ ଅବସ୍ଥିତ । ସୁତରାଂ ଏହି ପଥାବଲମ୍ବୀ ଅନ୍ୟ ପଥାବଲମ୍ବୀକୁ ନିନ୍ଦା କରିବା ଉଚିତ ନୁହେ । ୧୯ ।

ପ୍ରବୃତ୍ତି ଓ ନିବୃତ୍ତି ଉଭୟ ପଥହିଁ କର୍ମର ସତ୍ୟତା ପ୍ରତିପାଦନ କରେ । ପୃଥକ୍ ପୃଥକ୍ ଅଧିକାରୀ ଭେଦରେ ଏହି ଦ୍ୱିବିଧ କର୍ମ ବିହିତ ହୋଇଅଛି, ସୁତରାଂ ଉଭୟକର୍ମ ଏକ କର୍ତ୍ତାଠାରେ ଏକକାଳରେ ପରସ୍ପର ବିରୁଦ୍ଧ ହୋଇଥାଏ, କିନ୍ତୁ ସାକ୍ଷାତ୍ ବ୍ରହ୍ମ ସ୍ୱରୂପ ଶିବ ଏହି ଉଭୟବିଧ କର୍ମରୁ କୌଣସିଟି ପ୍ରାପ୍ତହୋଇ ନାହାନ୍ତି । ୨୦ ।

ଆମ୍ଭେମାନେ ଅଣିମାଦି ଯେ ସମସ୍ତ ଐଶ୍ୱର୍ଯ୍ୟ ଲାଭ କରିଅଛୁଁ, ଆପଣମାନଙ୍କ ଠାରେ ତାହା ନାହିଁ; ଆପଣଙ୍କ ଐଶ୍ୱର୍ଯ୍ୟ କେବଳ ଯଜ୍ଞଶାଳାରେ ଆବଦ୍ଧ, ଆପଣଙ୍କର କର୍ମ କେବଳ ଯଜ୍ଞାନ୍ନପୁଷ୍ଟ କର୍ମକାଣ୍ଡ ପରାୟଣ ବ୍ୟକ୍ତିମାନଙ୍କ ଦ୍ୱାରା ପ୍ରଶଂସିତ ହୋଇଥାଏ, କିନ୍ତୁ କର୍ମୀମାନେ ତହିଁର କାରଣ ସୁଦ୍ଧା ଉପଲବ୍ଧି କରି ପାରନ୍ତି ନାହିଁ, କେବଳ ବ୍ରହ୍ମଜ୍ଞାନୀ ମାନେ ତାହା ଲାଭ କରିବାକୁ ସମର୍ଥ ହୁଅନ୍ତି । ଏହି ଐଶ୍ୱର୍ଯ୍ୟର ଲେଶମାତ୍ର ଆପଣମାନଙ୍କର ନାହିଁ । ୨୧ ।

ଆପଣ ଭଗବାନ୍ ଶଙ୍କରଙ୍କ ନିକଟରେ ଅପରାଧୀ, ଆପଣଙ୍କ ଦେହରୁ ଏଦେହ ଜାତ ହୋଇଅଛି, ସୁତରାଂ ମୋର ଜନ୍ମ ମଧ୍ୟ କୁତ୍ସିତ, ଅତଏବ ଏ ଦେହରେ କୌଣସି ପ୍ରୟୋଜନ ନାହିଁ, ଆପଣ କୁଜନ, ଆପଣଙ୍କ ସହିତ ସମ୍ପର୍କ ରଖିବାପାଇଁ ସୁଦ୍ଧା ମୁଁ ଲଜ୍ଜିତା, ମହତ୍ ଜନମାନଙ୍କର ଅପ୍ରିୟକର୍ତ୍ତାଙ୍କ ଠାରୁ ଯେଉଁ ଜନ୍ମଲାଭ ହୁଏ ସେ ଜନ୍ମ ଧିକ୍ । ୨୨ ।

---

ଯେ ଆତ୍ମାରାମ ବଇରାଗୀ
ବିଧି ନିଷେଧ ପାରେ ଲଂଘି
ସ୍ୱଧର୍ମ୍ମେ ନିଷ୍ଠା ଯାର ଥିବ
ସେ ପରନିନ୍ଦା ନ କରିବ ।୧୯।
ଯେ ଅବା ବେଦବିଧି ଧର୍ମ
ପ୍ରବୃତ୍ତି ନିବୃତ୍ତି ଲକ୍ଷଣ

ଶିବେ ତା ନ ସମ୍ଭବେ ଦୁଇ
ଯେଣୁଟି ଆତ୍ମାରାମ ସେହି ।୨୦।
ଦରିଦ୍ର ବୋଲି ଶିବେ ତୁହି
ନିନ୍ଦା ନ କରି ଗର୍ବ ବହି
ଅଣିମା ଆଦି ଅଷ୍ଟ ସିଦ୍ଧି
ଯା ତହୁଁ ଲଭେ ଯୋଗୀ ସାଧି

ତୋ ପରି ଯତଜ୍ଞ ଯେ ଭ୍ରମନ୍ତି
କାହୁଁ ଲଭିବେ ସେ ସମ୍ପତ୍ତି ।୨୧
ତୁ ପାପୀ ଯେଣୁ ଶିବଦ୍ରୋହୀ
ତୋଠାରୁ ଜାତ ମୋର ଦେହି
ଧିକ ଏ ଦେହ ନ ରଖିବ
ଆଉ ଏ ଲଜ୍ଜା ନ ସହିବ

ଗୋତ୍ରଂ ତ୍ୱଦୀୟଂ ଭଗବାନ୍ ବୃଷଧ୍ୱଜୋ ଦାକ୍ଷାୟଣୀତ୍ୟାହ ଯଦା ସୁଦୁର୍ମନାଃ ।
ବ୍ୟପେତନର୍ମସ୍ମିତମାଶୁ ତଦ୍ଧ୍ୟହଂ ବ୍ୟୁତ୍ସ୍ରକ୍ଷ୍ୟ ଏତତ୍ କୁଣପଂ ତ୍ୱଦଙ୍ଗଜମ୍ । ୨୩ ।

ଶ୍ରୀମୈତ୍ରେୟ ଉବାଚ ।

ଇତ୍ୟଧ୍ୱରେ ଦକ୍ଷମନୂଦ୍ୟ ଶତ୍ରୁହନ୍ କ୍ଷିତାବୁଦୀଚୀଂ ନିଷସାଦ ଶାନ୍ତବାକ୍ ।
ସ୍ପୃଷ୍ଟ୍ୱା ଜଲଂ ପୀତଦୁକୂଲସଂବୃତା ନିମୀଲ୍ୟ ଦୃଗ୍ଯୋଗପଥଂ ସମାବିଶତ୍ ।୨୪।
କୃତ୍ୱା ସମାନାବନିଲୌ ଜିତାସନା ସୋଦାନମୁତ୍ଥାପ୍ୟ ଚ ନାଭିଚକ୍ରତଃ ।
ଶନୈର୍ହୃଦି ସ୍ଥାପ୍ୟ ଧିୟୋରସି ସ୍ଥିତଂ କଣ୍ଠାଦ୍ଭ୍ରୁବୋର୍ମଧ୍ୟମନିନ୍ଦିତାନୟତ୍ ।୨୫।

---

ଭଗବାନ୍ ଶଙ୍କର ପରିହାସ ଛଳରେ ଯେତେବେଳେ ମୋତେ ଦାକ୍ଷାୟଣୀ ବୋଲି ସମ୍ବୋଧନ କରି ମୋ ସହିତ ଆପଣଙ୍କ କନ୍ୟାସମ୍ବନ୍ଧ ସୂଚାଇ ଦିଅନ୍ତି; ସେତେବେଳେ ମୁଁ ଏପରି ଦୁଃଖିତଚିତ୍ତ ହୋଇ ପଡ଼େ ଯେ ପରିହାସ ସମୟରେ ସୁଦ୍ଧା ମୁଁ ହାସ୍ୟ କରିପାରେ ନାହିଁ, ସୁତରାଂ ଆପଣଙ୍କ ଶରୀରରୁ ଉତ୍ପନ୍ନ ଏହି ଘୃଣିତ ଦେହକୁ ମୁଁ ମୃତ ଦେହ ତୁଲ୍ୟ ଶୀଘ୍ର ବର୍ଜନ କରିବି । ୨୩ ।

ଶ୍ରୀ ମୈତ୍ରେୟ କହିଲେ :—

ହେ ଶତ୍ରୁନାଶନ ବିଦୁର ! ଯଜ୍ଞସଭା ମଧ୍ୟରେ ସତୀ ଦକ୍ଷଙ୍କୁ ଏହିପରି ତିରସ୍କାର କରି ମୌନାବଲମ୍ବନ ପୂର୍ବକ ଉତ୍ତରମୁଖୀ ହୋଇ ଭୂତଳରେ ଉପବେଶନ କଲେ ଏବଂ ପୀତବସ୍ତ୍ରରେ ନିଜର ଶରୀରକୁ ଆଚ୍ଛାଦନ କରି ନୟନ ମୁଦ୍ରିତଭାବରେ ଯୋଗରେ ବସିଲେ ।୨୪।

ଅନିନ୍ଦ୍ୟଚରିତ୍ରା ସତୀ ଆସନ ଜୟକରି ସ୍ଥିରଭାବରେ ଉପବେଶନ ପୂର୍ବକ ପ୍ରାଣ ଓ ଅପାନ ବାୟୁକୁ ନିରୋଧକରି ନାଭିଚକ୍ରରେ ସମାନଭାବରେ ଅବସ୍ଥାନ କରାଇ ନାଭିଚକ୍ରରୁ ଉଦାନ ବାୟୁକୁ ଧୀରେ ଧୀରେ ଊର୍ଦ୍ଧ୍ୱକୁ ସଞ୍ଚାଳିତ କରି ବୁଦ୍ଧି ସହିତ ତାହାକୁ ହୃଦୟରେ ସଂସ୍ଥାପିତ କରିଥିଲେ ଏବଂ ହୃଦୟସ୍ଥ ବାୟୁକୁ କଣ୍ଠ ନାଡ଼ିକା ଦ୍ୱାରା କ୍ରମଶ ଭ୍ରୂଯୁଗଳକୁ ଆନୟନ କରିଥିଲେ । ୨୫ ।

---

କେହି ନ ବୋଲୁ ଦାକ୍ଷାୟଣୀ
ଅଟଇ ଶିବର ଘରଣୀ ।୨୨-୨୩।

ଶ୍ରୀମୈତ୍ରେୟଉବାଚ—

ଏମନ୍ତ ଦକ୍ଷ ଆଗେ କହି
କୁଣ୍ଡ ଉତ୍ତର ଦିଗେ ଯାଇ
ଯୋଗ ଧାରଣା ଆଗମନେ
ବସିଲେ ନିଶ୍ଚଳ ଆସନେ

ସ୍ୱାମୀର ଅବମାନ ଅର୍ଥେ
ପିତାର ଅନାଦର ଚିତ୍ତେ
ପୀତ ବସନ ପରିଧାନ
ସୁଜଳେ କରି ଆଚମନ
ହୃଦରେ କରି ମହାମନ୍ୟୁ
ପବନ ଅଧ ଊର୍ଦ୍ଧ୍ୱସ୍ଥାନୁ
ନାଭି-କମଳେ ସୁନିଶ୍ଚଳେ
ପ୍ରାଣ ଧାରଣ ଯୋଗବଳେ

ଏ ତିନି ପ୍ରାଣ ଊର୍ଦ୍ଧ୍ୱେ ନେଇ
ଉଦାନ ସଙ୍ଗେ ହୃଦେ ଥୋଇ
ହୃଦୟ ପ୍ରାଣ ସଙ୍ଗେ ବ୍ୟାପି
କଣ୍ଠୁ ଲଲାଟେ ଚନ୍ଦ୍ରେ ଛେପି
ଭ୍ରୂ ମଧ୍ୟେ ଥାପି ଅନୁମାନେ
ଯୋଖିଲେ ବ୍ରହ୍ମରନ୍ଧ୍ର ସ୍ଥାନେ

ଏବଂ ସ୍ୱଦେହଂ ମହତାଂ ମହୀୟସା ମୁହୁଃ ସମାରୋପିତମଙ୍କମାଦରାତ୍ ।
ଜିହାସତୀ ଦକ୍ଷରୁଷା ମନସ୍ୱିନୀ ଦଧାର ଗାତ୍ରେଷ୍ୱନିଲାଗ୍ନି ଧାରଣାମ୍ । ୨୬ ।
ତତଃ ସ୍ୱଭର୍ତ୍ତୁଶ୍ଚରଣାମ୍ବୁଜାସବଂ ଜଗଦ୍‌ଗୁରୋଶ୍ଚିନ୍ତୟତୀ ନ ଚାପରମ୍ ।
ଦଦର୍ଶ ଦେହୋ ହତକଲ୍ମଷଃ ସତୀ ସଦ୍ୟଃ ପ୍ରଜଜ୍ୱାଲ ସମାଧିଜାଗ୍ନିନା । ୨୭ ।
ତତ୍ ପଶ୍ୟତାଂ ଖେ ଭୁବି ଚାଦ୍‌ଭୁତଂ ମହଦ୍ଧାହେତି ବାଦଃ ସୁମହାନଜାୟତ ।
ହନ୍ତ ପ୍ରିୟା ଦୈବତମସ୍ୟ ଦେବୀ ଜହାବସୂନ୍ କେନ ସତୀ ପ୍ରକୋପିତା ।୨୮।

---

ମହତ୍ ବ୍ୟକ୍ତିମାନଙ୍କର ପୂଜ୍ୟତମ ଭଗବାନ୍ ଶଙ୍କର ଯେଉଁ ଦେହକୁ ଆଦର କରି ପୁନଃ ପୁନଃ କ୍ରୋଡ଼ରେ ସ୍ଥାପନ କରିଥିଲେ, ମନସ୍ୱିନୀ ସତୀ ଦକ୍ଷଙ୍କ ପ୍ରତି କ୍ରୋଧ ହେତୁ ସେହି ଦେହ ତ୍ୟାଗ କରିବା ଇଚ୍ଛାରେ ସର୍ବାଙ୍ଗରେ ବାୟୁକୁ ରୁଦ୍ଧ କରିଥିଲେ ।୨୬।

ତଦନନ୍ତର ସେ ଜଗଦ୍‌ଗୁରୁ ସ୍ୱାମୀ ପତିଙ୍କର ପଦାରବିନ୍ଦ ମଧୁ ଧ୍ୟାନକରି ଅନ୍ୟ ଦର୍ଶନ ରହିତା ହେଲେ, ଏଣେ ତାହାଙ୍କର ପାପଶୂନ୍ୟ ଦେହ, ସମାଧି ସମୁତ୍ପନ୍ନ ଅଗ୍ନିଦ୍ୱାରା ସଦ୍ୟ ପ୍ରଜ୍ଜ୍ୱଳିତ ହେଲା । ୨୭ ।


ସତୀଙ୍କର ଦେହ ତ୍ୟାଗ ।

ଆକାଶ ଓ ଭୂତଳରେ ଯେଉଁମାନେ ଏହି ଅଦ୍ଭୁତ ଘଟଣା ଅବଲୋକନ କରୁଥିଲେ ସେମାନେ ମଧ୍ୟ ଉଚ୍ଚସ୍ୱରରେ ହାହାକାର କରିବାକୁ ଲାଗିଲେ । ସମସ୍ତେ କହିଲେ "ଆହା ! କି ଦୁଃଖର ବିଷୟ, ପୂଜ୍ୟତମ ମହାଦେବଙ୍କ ପତ୍ନୀ ସତୀ ଦକ୍ଷ କର୍ତ୍ତୃକ ଅପମାନିତାହୋଇ କ୍ରୋଧରେ ପ୍ରାଣତ୍ୟାଗ କଲେ ।" ୨୮ ।

---

ସ୍ୱାମୀ-ଚରଣ ଧ୍ୟାନ କରି
ଯୋଗ ଅନଳେ ବାୟୁ ଧରି
ମୂର୍ଦ୍ଧନା ଭେଦି ତତକ୍ଷଣ
ଶୂନ୍ୟେ ମିଶିଲା ଦଶପ୍ରାଣ ।୨୪-୨୭

ସତୀ ମରଣ କର୍ମ୍ମ ଶୁଣି
ଯେତେକ ଯକ୍ଷଶାଳେ ଥାଇ
ଭୂମି ଗଗନେ ଯେତେ ଥିଲେ
ହା ହା ଶବଦ ଉଚ୍ଚେ କଲେ

ଦେଖ ଏ ଦେବଦେବନାରୀ
କି ଅପମାନେ କୋପ କରି
ପ୍ରାଣ ଛାଡ଼ିଲା ଯଜ୍ଞ ଘରେ
ପିତାର ମାନ କୋପଭରେ ।୨୮

ଅହୋ ଅନାତ୍ମ୍ୟଂ ମହଦସ୍ୟ ପଶ୍ୟତଃ ପ୍ରଜାପତେର୍ଯସ୍ୟ ଚରାଚରଂ ପ୍ରଜାଃ ।
ଜହାବସୂନ୍ ଯଦ୍‌ବିମତାତ୍ମଜା ସତୀ ମନସ୍ୱିନୀ ମାନମଭୀକ୍ଷ୍‌ଣମର୍ହତି । ୨୯ ।
ସୋଽୟଂ ଦୁର୍ମର୍ଷହୃଦୟୋ ବ୍ରହ୍ମଧ୍ରୁକ୍ ଚ ଲୋକେ ଚ କୀର୍ତ୍ତିମସତୀମବାପ୍‌ସ୍ୟତି ।
ଯଦଙ୍ଗଜାଂ ସ୍ୱାଂ ପୁରୁଷଦ୍‌ବିଡୁଦ୍ୟତାଂ ନ ପ୍ରତ୍ୟଷେଧନ୍ମୃତୟେଽପରାଧତଃ ।୩୦।
ବଦତ୍ୟେବଂ ଜନେ ସତ୍ୟା ଦୃଷ୍ଟ୍ୱାସୁତ୍ୟାଗମଦ୍‌ଭୁତମ୍ ।
ଦକ୍ଷଂ ତତ୍‌ପାର୍ଷଦା ହନ୍ତୁମୁଦତିଷ୍ଠନ୍ନୁଦାୟୁଧାଃ । ୩୧ ।
ତେଷାମାପତତାଂ ବେଗଂ ନିଶାମ୍ୟ ଭଗବାନ୍ ଭୃଗୁଃ ।
ଯଜ୍ଞଘ୍ନଘ୍ନେନ ଯଜୁଷା ଦକ୍ଷିଣାଗ୍ନୌ ଜୁହାବ ହ । ୩୨ ।

---

ଦକ୍ଷଙ୍କର ଦୁର୍ଜନସ୍ୱଭାବ ଦେଖ, ସେ ପ୍ରଜାପତି, ଏହି ଚରାଚର ବିଶ୍ୱ ଏହାଙ୍କର ପ୍ରଜା, ସମସ୍ତଙ୍କ ପ୍ରତି ଏହାଙ୍କର ସ୍ନେହ କରିବା ଉଚିତ, କିନ୍ତୁ ସ୍ନେହଭାଜନ ହେଲେ ମଧ୍ୟ ସେ ନିଜର କନ୍ୟା ଓ ବହୁ ସମ୍ମାନ ଯୋଗ୍ୟା ସତୀଙ୍କୁ ଅପମାନିତ କରିବାରୁ ସେ ପ୍ରାଣତ୍ୟାଗ କଲେ । ୨୯ ।

କଷ୍ଟୁର ହୃଦୟ ଦକ୍ଷ ବ୍ରହ୍ମ ଦ୍ରୋହୀ, ଶିବଦ୍ୱେଷୀ, ଜନ ସମାଜରେ ସେ ଅସତ୍‌କୀର୍ତ୍ତି ଓ ପରଲୋକରେ ନରକପ୍ରାପ୍ତି ହେବେ । କାରଣ ତାହାଙ୍କର ନିଜକୃତ ଅପମାନ ହେତୁ ତାଙ୍କରକନ୍ୟା ତାହାଙ୍କ ସମକ୍ଷରେ ଦେହ ତ୍ୟାଗ କରୁଥିବା ଦେଖି ମଧ୍ୟ ସେ ତାହା ନିବାରଣ କରି ନଥିଲେ । ୩୦ ।

ସମସ୍ତେ ସତୀଙ୍କର ଏହିପରି ଅଦ୍ଭୁତ ପ୍ରାଣତ୍ୟାଗ ଦେଖି ଏହିପରି କଥୋପକଥନ କରିବାକୁ ଲାଗିଲେ ଏବଂ ସତୀଙ୍କର ପାର୍ଶ୍ୱଚରମାନେ ଅସ୍ତ୍ରଧାରଣ କରି ଦକ୍ଷଙ୍କୁ ବିନାଶ କରିବାକୁ ଉଦ୍ୟତହେଲେ ।୩୧।

ଭଗବାନ୍ ଭୃଗୁ ସତୀଙ୍କର ଅନୁଚରମାନଙ୍କୁ ଆକ୍ରମଣ ଉନ୍ମୁଖ ଦେଖି କ୍ରୁଦ୍ଧ ହୋଇଥିଲେ ଏବଂ ମନ୍ତ୍ରଦ୍ୱାରା ଯଜ୍ଞ ବିଘ୍ନକାରୀମାନଙ୍କର ବିନାଶ ଲାଗି ଦକ୍ଷିଣାଗ୍ନିରେ ଆହୁତି ପ୍ରଦାନ କରିଥିଲେ । ୩୨ ।

---

ଦେଖ ଏ ଦକ୍ଷ ପ୍ରଜାପତି
ଗର୍ବେ ଆଚରିଲା ଅନୀତି
ପ୍ରଜାଙ୍କ ପତି ଏ ବୋଲାଇ
ଅନ୍ୟାୟ କଲା ଗର୍ବ ବହି
ନିଜ ଦୁହିତାର ନିଧନେ
ଯତ୍ନ ନ କଲା କ୍ରୋଧମନେ
ଏ ନୋହେ ସାଧୁଙ୍କ ବେଭାର
ଅଧର୍ମ୍ମ କଲା ଗୁରୁତର ।୨୯,୩୦।

ଏମନ୍ତ ବାକ୍ୟ କହୁଁ ଜନେ
ସତୀର ପ୍ରାଣ ଅବସାନେ
ସତୀ ମରଣ କଥା ଶୁଣି
ନନ୍ଦିକେଶ୍ୱର ସ୍ୱାରମଣି
ରୁଦ୍ରଗଣଙ୍କୁ ସଙ୍ଗେ ଲଇ
ବେଗେ ଧାଇଁଲା କ୍ରୋଧ ବହି
ବିବିଧ ଶସ୍ତ୍ର ଧରି କରେ
ମିଳିଲେ ଦକ୍ଷ ଯଜ୍ଞ ଘରେ ।୩୧।

ତାହାଙ୍କୁ ଦେଖି ଭୃଗୁମୁନି
ଘୃତ ଆହୁତି କରେ ଘେନି
ଯଜ୍ଞଘ୍ନ-ନାଶୀ ଯଜୁ ମନ୍ତ୍ରେ
କଲିଲି ଅଭିଚାର ତନ୍ତ୍ରେ ।୩୨।

ଅଧ୍ୱର୍ଯ୍ୟୁଣା ହୂୟମାନେ ଦେବା ଉତ୍ପେତୁରୋଜସା ।
ଋଭବୋ ନାମ ତପସା ସୋମଂ ପ୍ରାପ୍ତାଃ ସହସ୍ରଶଃ । ୩୩ ।
ତୈରଲାତାୟୁଧୈଃ ସର୍ବୈଃ ପ୍ରମଥାଃ ସହଗୁହ୍ୟକାଃ ।
ହନ୍ୟମାନା ଦିଶୋ ଭେଜୁରୁଶଦ୍ଭିର୍ବ୍ରହ୍ମତେଜସା । ୩୪ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ସତୀଦେହୋତ୍ସର୍ଗୋନାମ ଚତୁର୍ଥୋଽଧ୍ୟାୟଃ । ୪ ।

---

ଭୃଗୁ ଯଜୁର୍ବେଦ ନିପୁଣ ଥିବାରୁ ଅଗ୍ନିରେ ଆହୂତ ଦେବାମାନେ ତହିଁରୁ ଋଭୁନାମକ ବହୁ ଦେବଗଣ ପ୍ରାଦୁର୍ଭୂତ ହୋଇଥିଲେ, ସେହି ଦେବତା ତପସ୍ୟା ବଳରେ ଚନ୍ଦ୍ରଲୋକ ପ୍ରାପ୍ତହୋଇଥିଲେ ।୩୩

ସେମାନେ ବ୍ରହ୍ମତେଜରେ ଦେଦୀପ୍ୟମାନ ହୋଇ ପ୍ରଜ୍ୱଳିତ କାଷ୍ଠଦ୍ୱାରା ପ୍ରମଥ ଓ ଗୁହ୍ୟମାନଙ୍କୁ ଆଘାତ କରିଥିଲେ । ସେମାନେ ବଭିନ୍ନ ଦିଗରେ ପଳାୟନ କଲେ । ୩୪ ।

---

ଆହୂତ ଦ୍ୟନ୍ତେ ଅଗ୍ନିକୁଣ୍ଡେ
ଅନଳ ଧୂମ ବର୍ଣ୍ଣ ପିଣ୍ଡେ
ମନ୍ତ୍ର ମନ୍ତ୍ରିତ ସୋମ ପାଇ
ପ୍ରଚଣ୍ଡ ରୂପ କୋପ ବହି
ଋଭବ ନାମେ ଦେବଗଣେ
ଅନନ୍ତ ଉଠିଲେ ତକ୍ଷଣେ ।୩୩।
ଅନଳ କାଷ୍ଠ ଘେନି କରେ
ଶତସହସ୍ର କୋପଭରେ

ଶବଦେ ସର୍ବ ଦିଗ ପୂରି
ଧାଇଁଲେ ଘୋର ନାଦ କରି
ତେଣେ ନାଶିଲେ ରୁଦ୍ରସୈନ
ତା ଦେଖି ବେଗେ ଦେବମୁନି
ବେଗେ ଧାଇଁଲେ ଶୂନ୍ୟମାର୍ଗେ
କହିଲେ ସଦାଶିବ ଆଗେ
ସତୀ ମରଣ କଥା ଆଦି
କହିଲେ ସକଳ ସମ୍ବାଦ ।୩୪।

ସେ ଦେବ ମୁନିର ଚରଣେ
ଆମ୍ଭର ନିସ୍ତାର କାରଣେ
କୃଷ୍ଣ ବିଷୟେ ଭାଗବତ
କହିଲା ଦାସ ଜଗନ୍ନାଥ
ଚତୁର୍ଥ ସ୍କନ୍ଧ ସୁଧାବାଣୀ
ସୁଜନେ ତର ଏହା ଶୁଣି ।





## ପ ଞ୍ଚ ମ ଅ ଧ୍ୟା ୟ ।

ପଞ୍ଚମେ ତୁ ସତୀଦେହତ୍ୟାଗମାକର୍ଣ୍ଣ୍ୟ ଶଙ୍କରଃ ।
ବୀରଭଦ୍ରଂ ରୁଷୋତ୍ପାଦ୍ୟ ତେନ ଦକ୍ଷମଘାତୟତ୍ । ୦ ।

ଶ୍ରୀମୈତ୍ରେୟ ଉବାଚ ।

ଭବୋ ଭବାନ୍ୟା ନିଧନଂ ପ୍ରଜାପତେରସତ୍କୃତାୟା ଅବଗମ୍ୟ ନାରଦାତ୍ ।
ସ୍ୱପାର୍ଷଦସୈନ୍ୟଞ୍ଚ ତଦଧ୍ୱରର୍ଭୁଭିର୍ବିଦ୍ରାବିତଂ କ୍ରୋଧମପାରମାଦଧେ । ୧ ।
କ୍ରୁଦ୍ଧଃ ସୁଦଷ୍ଟୌଷ୍ଠପୁଟଃ ସ ଧୂର୍ଜଟିର୍ଜଟାଂ ତଡ଼ିଦ୍‌ବହ୍ନିସଟୋଗ୍ରରୋଚିଷମ୍ ।
ଉତ୍କୃତ୍ୟ ରୁଦ୍ରଃ ସହସୋତ୍ଥିତୋ ହସନ୍ ଗମ୍ଭୀରନାଦୋ ବ୍ୟସୃଜତ୍ ତାଂ ଭୁବି । ୨

---

### ଦ କ୍ଷ ବ ଧ ।

ପଞ୍ଚମ ଅଧ୍ୟାୟରେ ସତୀଙ୍କର ଦେହତ୍ୟାଗ ବିଷୟ ଶୁଣି ଶିବ କୋପରେ ଜଟାରୁ ବୀରଭଦ୍ରଙ୍କୁ ଜାତ କରିଥିଲେ ଏବଂ ତାହାଦ୍ୱାରା ଦକ୍ଷଙ୍କୁ ବିନାଶ କରିବା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀ ମୈତ୍ରେୟ କହିଲେ :—

ହେ ବିଦୁର ! ଶଙ୍କର ନାରଦଙ୍କ ଠାରୁ ସତୀ ଦକ୍ଷକର୍ତ୍ତୃକ ଅପମାନିତା ହୋଇ ପ୍ରାଣତ୍ୟାଗ କରିଥିବା ଶୁଣିଲେ ଏବଂ ଦକ୍ଷ ଯଜ୍ଞରେ ଋଭୁମାନେ ଉତ୍ପନ୍ନ ହୋଇ ସ୍ୱୀୟ ଅନୁଚରବର୍ଗଙ୍କୁ ବିତାଡ଼ିତ କରିଥିବା ପ୍ରସଙ୍ଗ ଶୁଣି ଅତ୍ୟନ୍ତ କୁପିତ ହେଲେ । ୧ ।

କୁପିତ ଶଙ୍କର ଆପଣାର ଅଧର ଦଂଶନ କରି ତତ୍‌କ୍ଷଣାତ୍ ମସ୍ତକରୁ ବିଦ୍ୟୁତ୍ ଓ ବହ୍ନିଶିଖାତୁଲ୍ୟ ଉଗ୍ର ଦୀପ୍ତିଶାଳିନୀ ଗୋଟିଏ ଜଟା ଉତ୍ପାଟନ କରି ଗାତ୍ରୋତ୍ଥାନ ପୂର୍ବକ ଅଟ୍ଟହାସ୍ୟ କରୁ କରୁ ସେହି ଜଟାକୁ ଭୂତଳରେ ନିକ୍ଷେପ କରିଥିଲେ । ୨ ।

---

ପଞ୍ଚମେ ସତୀଦେହନାଶେ, ଜଟାରୁ ଭିଆଇ ପୁତ୍ରକେ । ଶଙ୍କର ଅତି କୋପଭରେ, ଦକ୍ଷ ନାଶିଲେ ତାରଦ୍ୱାରେ ॥

ଶ୍ରୀମୈତ୍ରେୟଉବାଚ—

ନାରଦ ବାକ୍ୟ ଅବଧାନେ
ରୁଦ୍ର ଅପାର କୋପମନେ
ଦକ୍ଷର ଯଜ୍ଞ ନାଶ ଅର୍ଥେ
କୋପ ବସିଲା ରୁଦ୍ରଚିତ୍ତେ । ୧ ।

ରୁଦ୍ର ବଦନେ କୋପ ଦେଖି
ବିବୁଧ ଭୁବନ ଉପେକ୍ଷି
କମ୍ପିଲେ ରୁଦ୍ର କୋପ ଶୁଣି
ମହା ପ୍ରଳୟ ପ୍ରାୟ ମଣି
ଦନ୍ତେ କାମୋଡ଼ି ଓଷ୍ଠ ପାଟି
ପ୍ରଚଣ୍ଡ କରିଲା ଭ୍ରୂକୁଟୀ

ଜଟା କଳାପେ ଅଗ୍ନି ଜଳେ
ଉପାଡ଼ି ପକାଇଲେ ତଳେ । ୨ ।

ତତୋଽତିକାୟସ୍ତନୁବା ସ୍ପୃଶନ୍ ଦିବଂ ସହସ୍ରବାହୁର୍ଘନରୁକ୍ ତ୍ରିସୂର୍ଯ୍ୟଦୃକ୍ ।
କରାଳଦଂଷ୍ଟ୍ରୋ ଜ୍ୱଲଦଗ୍ନି ମୂର୍ଦ୍ଧଜଃ କପାଳମାଲୀ ବିବିଧୋଦ୍ୟତାୟୁଧଃ । ୩ ।
ତଂ କିଂ କରୋମୀତି ଗୃଣନ୍ତମାହ ବଦ୍ଧାଞ୍ଜଳିଂ ଭଗବାନ୍ ଭୂତନାଥଃ ।
ଦକ୍ଷଂ ସଯଜ୍ଞଂ ଜହି ମଦ୍‌ଭଟାନାଂ ତ୍ୱମଗ୍ରଣୀ ରୁଦ୍ର ଭଟାଂଶକୋ ମେ । ୪ ।
ଆଜ୍ଞପ୍ତ ଏବଂ କୁପିତେନ ମନ୍ୟୁନା ସ ଦେବଦେବଂ ପରିଚକ୍ରମେ ବିଭୁମ୍ ।
ମେନେ ତଦାତ୍ମାନମସଙ୍ଗରଂହସା ମହୀୟସାଂ ତାତ ସହଃ ସହିଷ୍ଣୁମ୍ । ୫ ।

---

ସେହି ଜଟାରୁ ମହାକାଳ ବୀରଭଦ୍ର ଉତ୍ପନ୍ନ ହେଲେ, ତାହାଙ୍କର ଶରୀର ଆକାଶ ସ୍ପର୍ଶ କରିଥିଲା । ତାହାଙ୍କର ମେଘ ତୁଲ୍ୟ କୃଷ୍ଣବର୍ଣ୍ଣ ସହସ୍ରବାହୁ, ସୂର୍ଯ୍ୟ ତୁଲ୍ୟ ଜ୍ୱଳନ୍ତ ଚକ୍ଷୁତ୍ରୟ, ତାହାଙ୍କର କରାଳଦନ୍ତ ଏବଂ ଅଗ୍ନି ତୁଲ୍ୟ ଜ୍ୱଳନ୍ତ କେଶକଳାପ ଅତ୍ୟନ୍ତ ଭୀଷଣ ହୋଇଥିଲା । ତାହାଙ୍କର ଗଳାରେ ନରକପାଳମାଳା ବିରାଜିତ ଏବଂ ତାହାଙ୍କର ହସ୍ତରେ ବିବିଧ ଅସ୍ତ୍ର ଶସ୍ତ୍ର ଶୋଭିତ । ୩ ।

ବୀରଭଦ୍ର କୃତାଞ୍ଜଳିପୁଟରେ କହିଲେ ପ୍ରଭୋ ! ଆଜ୍ଞାଦିଅନ୍ତୁ କଅଣ କରିବାକୁ ହେବ । ଭଗବାନ୍ ଶିବ କହିଲେ ହେ ରୁଦ୍ରଭଟ୍ଟ ! ତୁମ୍ଭେ ଅତ୍ୟନ୍ତ ଯୁଦ୍ଧକୌଶଳୀ, ତୁମ୍ଭେ ମୋ ପକ୍ଷର ଯୋଦ୍ଧାମାନଙ୍କର ସେନାପତି ହୋଇ ଦକ୍ଷକୁ ଏବଂ ତାହାର ଯଜ୍ଞକୁ ବିନାଶ କର । ତୁମ୍ଭେ ମୋର ଅଂଶରେ ଜାତ, ତେଣୁ ବ୍ରହ୍ମତେଜକୁ ଭୟ କରିବାର କାରଣ ନାହିଁ । ୪ ।

ଦୁର୍ଜ୍ଜୟ ଭଗବାନ୍ ଶିବ କୋପାନ୍ୱିତ ହୋଇ ଏପରି ଆଜ୍ଞା ଦେବାରୁ ବୀରଭଦ୍ର ମହେଶ୍ୱରଙ୍କୁ ପ୍ରଣାମ ଓ ପ୍ରଦକ୍ଷିଣ କରିବାରୁ ତାହାଙ୍କର ଅପ୍ରତିହତ ବଳ ଓ ବେଗ ଜାତହେଲା । ୫ ।

---

ରୁଦ୍ରର ସେ ଜଟାର ମଧ୍ୟ
ପୁରୁଷେ ଜାତ ବୀରଭଦ୍ର
ସହସ୍ରେ ବାହୁ ମେଘ ବର୍ଣ୍ଣ
ଅନଳ ପ୍ରାୟେକ ନୟନ
ତନ ଆଦିତ୍ୟ ତେଜ ଯେହ୍ନେ
ଦେଖି ପଳାନ୍ତି ସର୍ବ ଜନେ
କରାଳ ଦଂଷ୍ଟ୍ର ଦିଶେ ତୁଣ୍ଡେ
ଅଗ୍ନି ଜ୍ୱଳଇ ଶିଖା ମୁଣ୍ଡେ
ନାନା ଆୟୁଧ ଦିଶେ କରେ
ମୁଣ୍ଡ ମାଳାଏ ଲମ୍ବେ ଉରେ ।୩।
ରୁଦ୍ରଙ୍କୁ ଚାହିଁ କରି ଯୋଡ଼
ବୋଲଇ ଅଧର କାମୋଡ଼
କହିଇ କି କରିବି ମୁହିଁ
ରୁଦ୍ର ବୋଲନ୍ତି ତାକୁ ଚାହିଁ
ତୁ ହୁଅ ଗଣଙ୍କ ଈଶ୍ୱର
ମୋହର ବୋଲ ଏବେ କର
ଦକ୍ଷର ପ୍ରାଣ ଯଜ୍ଞ ସଙ୍ଗେ
ବିନାଶ କର ଉଗ୍ରେ ରଙ୍ଗେ
ତୁ ମୋର ଅଂଶ ଆତ୍ମାରୂପୀ
ସହସ୍ର ଭୁଜ ଶୂନ୍ୟେ ବ୍ୟାପୀ
ଦକ୍ଷର ଯଜ୍ଞ ନାଶ କର
ତାହାର ପ୍ରାଣ ବେଗେ ହର ।୪।
ଏମନ୍ତ ରୁଦ୍ର ଆଜ୍ଞା ପାଇ
କୋପେ କମ୍ପଇ ତାର ଦେହ
ଜଳଇ ଅତି କୋପାନଳେ
ନମିଲା ରୁଦ୍ର ପାଦମୂଳେ
ସ୍ୱଭାବେ ରୁଦ୍ର ଆତ୍ମା ସେହି
ତାର ମହିମା କେବା କହି
ଚଳିଲା ରୁଦ୍ରଗଣ ଘେନି
ଶବଦେ କମ୍ପଇ ମେଦିନୀ
ଗର୍ଜଇ ଭୟଙ୍କର ନାଦେ
ବେଗେ ଧାଇଁ ଗଲେ ପାଦେ
ଶୂଳ ବୁଲାଇ ଦକ୍ଷ କରେ
ନୂପୁର ବାଜଇ ପାଦରେ

ଅନ୍ୱୀୟମାନଃ ସ ତୁ ରୁଦ୍ରପାର୍ଷଦୈର୍ଭୃଶଂ ନଦଦ୍ଭିର୍ବ୍ୟନଦତ୍ ସୁଭୈରବମ୍ ।
ଉଦ୍ୟମ୍ୟ ଶୂଲଂ ଜଗଦନ୍ତକାନ୍ତକଂ ସଂପ୍ରାଦ୍ରବଦ୍‌ଘୋଷଣଭୂଷଣାଙ୍ଘ୍ରିଃ । ୬ ।
ଅଥର୍ତ୍ୱିଜୋ ଯଜମାନଃ ସଦସ୍ୟାଃ କକୁଭ୍ୟୁଦୀଚ୍ୟାଂ ପ୍ରସମୀକ୍ଷ୍ୟ ରେଣୁମ୍ ।
ତମଃ କିମେତତ୍ କୁତ ଏତଦ୍ରଜୋଽଭୂଦିତି ଦ୍ୱିଜା ଦ୍ୱିଜପତ୍ନ୍ୟଶ୍ଚ ଦଧ୍ୟୁଃ । ୭ ।
ବାତା ନ ବାନ୍ତି ନ ହି ସନ୍ତି ଦସ୍ୟବଃ ପ୍ରାଚୀନବର୍ହିର୍ଜୀବତି ହୋଗ୍ରଦଣ୍ଡଃ ।
ଗାବୋ ନ କାଲ୍ୟନ୍ତ ଇଦଂ କୁତୋ ରଜୋ ଲୋକୋଽଧୁନା କିଂ ପ୍ରଳୟାୟ କଳ୍ପତେ ।୮।
ପ୍ରସୂତିମିଶ୍ରାଃ ସ୍ତ୍ରିୟ ଉଦ୍‌ବିଗ୍ନଚିତ୍ତା ଊଚୁର୍ବିପାକୋ ବୃଜିନସ୍ୟୈବ ତସ୍ୟ ।
ଯତ୍ ପଶ୍ୟନ୍ତୀନାଂ ଦୁହିତୄଣାଂ ପ୍ରଜେଶଃ ସୁତାଂ ସତୀମବଦଧ୍ୟାବନାଗାମ୍ । ୯ ।

---

ସେହି ବୀରଭଦ୍ର ଭୀଷଣ ଶବ୍ଦକାରୀ ରୁଦ୍ରାନୁଚରମାନଙ୍କ ସହିତ ମିଳିତ ହୋଇ ଘୋର ଗମ୍ଭୀରଗର୍ଜନ କରିଥିଲେ ଏବଂ ଜଗଦ୍‌ଗୁରୁ, ମୃତ୍ୟୁଙ୍କର ମୃତ୍ୟୁସ୍ୱରୂପ ତ୍ରିଶୂଳ ଉତ୍ତୋଳନ କରି ଦକ୍ଷଯଜ୍ଞ ନିକଟକୁ ପ୍ରବଳ ବେଗରେ ଧାବିତ ହୋଇଥିଲେ । ସେତେବେଳେ ତାଙ୍କର ଚରଣର ଭୂଷଣାଦି ଉଗ୍ରଙ୍କର ଶବ୍ଦରେ କମ୍ପିତ ହୋଇଥିଲା । ୬ ।

ଏଣେ ଦକ୍ଷଙ୍କର ଯଜ୍ଞସ୍ଥାନରୁ ପୂର୍ବୋକ୍ତ ଯଜମାନ ସଦସ୍ୟବର୍ଗ ଏବଂ ଅନ୍ୟାନ୍ୟ ଦ୍ୱିଜ, ଦ୍ୱିଜପତ୍ନୀଗଣ ଉତ୍ତର ଦିଗରେ ଅତ୍ୟନ୍ତ ବେଗରେ ଧୂଳି ଉଡ଼ୁଥିବା ଦେଖି ଭାବିଲେ ଅନ୍ଧକାର ଆସୁଅଛି, ପୁଣି ଭାବିଲେ ନା ଏତ ଧୂଳି ଉଡ଼ୁଅଛି, ଏ ଧୂଳିରାଶି କେଉଁଆଡ଼ୁ ଆସିଲା ? । ୭ ।

ବାୟୁ ପ୍ରବଳବେଗରେ ବହୁ ନାହିଁ, ଦସ୍ୟୁଗଣଙ୍କର ପ୍ରଭାବ ମଧ୍ୟ ନାହିଁ କାରଣ କଠୋର ଶାସକ ରାଜା ପ୍ରାଚୀନ ବର୍ହି ଅଦ୍ୟାପି ଜୀବିତ ରହିଅଛନ୍ତି, ଗୋ ବୃନ୍ଦ ଦ୍ରୁତବେଗରେ ଚାଳିତ ହେଉ ନାହାନ୍ତି; ତାହାହେଲେ କି କାରଣରୁ ଧୂଳି ଉଡ଼ୁଅଛି ? ତାହାହେଲେ କଣ ବିଶ୍ୱର ପ୍ରଳୟଦଶା ଉପସ୍ଥିତ ହେଲା ।୮।

ଦକ୍ଷପତ୍ନୀ ପ୍ରସୂତି ପ୍ରମୁଖ ନାରୀମାନେ ଉଦ୍‌ବିଗ୍ନଚିତ୍ତ ହୋଇ କହିଲେ—ପ୍ରଜାପତି ଦକ୍ଷ ନିରପରାଧିନୀ କନ୍ୟା ସତୀଙ୍କୁ ଅନ୍ୟ କନ୍ୟାମାନଙ୍କ ସମକ୍ଷରେ ଅପମାନିତ କରିବାରୁ ନିଶ୍ଚୟ ସେହି ପାପର ଫଳରେ ଏପରି ହେଉଅଛି । ୯ ।

---

ଧାମଇଁ ପବନଠୁଁ ବେଗେ
ସେ ରୁଦ୍ର କୋପେ ବୀରଦପେ
ଶବଦେ ଦଶ ଦିଗ ପୂରେ
ଧୂଳି ଉଡ଼ଇ ପାଦ ଭରେ ।୫-୬।
ବିପ୍ରେ ଯେ ଥିଲେ ଯଜ୍ଞଶାଳେ
ଧୂଳି ଦେଖିଲେ ଅନ୍ତରାଳେ
ଉତ୍ତର ଦିଗେ ରେଣୁ ଦେଖି
ଉଠିଲେ ଯଜ୍ଞ ସେ ଉପେକ୍ଷି
ଉତ୍ତର ଦିଗକୁ ଅନାଇଁ
କହନ୍ତି ଏକୁ ଆରେ ରହି

ଦେଖ ଦିବସେ ଘୋର ତମ
ଦିଗ ନ ଦିଶେ ବାତ ଭ୍ରମ ।୭।
ଏମନ୍ତ ବିପ୍ର ବିପ୍ରନାରୀ
କହନ୍ତି ହସ୍ତେ ହସ୍ତ ଧରି
ବୋଲନ୍ତି କିଏ ତମ ଘୋର
ଦିବସେ ଦିଶେ ଅନ୍ଧକାର
ପବନ ନ ବହଇ ଖରେ
ଅସାଧୁ ନାହାନ୍ତି ସଂସାରେ
ପ୍ରାଚୀନବର୍ହି ଦଣ୍ଡଧାରୀ
ଯେଣୁ ଅଛଇ ପ୍ରାଣ ଧରି

ଗୋରୁ ଚରଣ ଧୂଳି ନୋହେ
କିଏ ତମିସ୍ର କାହୁଁ ହୋଏ
ଆଜ କି ପ୍ରଳୟ ହୋଇବ
ବାମ କି ହୋଇଲା ଦଇବ ।୮।
ପ୍ରସୂତି ଆଦି ବାମା ଯେତେ
ବୋଲନ୍ତି ରହି ଦୁଃଖ ଚିତ୍ତେ
ସତୀ ଅବଜ୍ଞା ଫଳ ମୂଳ
ନିଶ୍ଚୟ ସେହି ପାପ ଫଳ ।୯।

ଯସ୍ତ୍ୱନ୍ତକାଲେ ବ୍ୟୁପ୍ତଜଟାକଲାପଃ ସ୍ୱଶୂଲସୂଚ୍ୟର୍ପିତଦିଗ୍‌ଗଜେନ୍ଦ୍ରଃ ।
ବିତତ୍ୟ ନୃତ୍ୟତ୍ୟୁଦିତାସ୍ତ୍ରଦୋର୍ଦ୍ଧ୍ୱଜାନୁଚ୍ଚାଟ୍ଟହାସସ୍ତନୟିତ୍ନୁଭିନ୍ନଦିକ୍ । ୧୦ ।
ଅମର୍ଷୟିତ୍ୱା ତମସହ୍ୟତେଜସଂ ମନ୍ୟୁପ୍ଲୁତଂ ଦୁର୍ନିରୀକ୍ଷ୍ୟଂ ଭ୍ରୁକୁଟ୍ୟା ।
କରାଳଦଂଷ୍ଟ୍ରାଭିରୁଦସ୍ତଭାଗଣଂ ସ୍ୟାତ୍ ସ୍ୱସ୍ତି କିଂ କୋପୟତୋ ବିଧାତୁଃ । ୧୧ ।
ବହ୍ୱେବମୁଦ୍‌ବିଗ୍ନଦୃଶୋଚ୍ୟମାନେ ଜନେନ ଦକ୍ଷସ୍ୟ ମୁହୁର୍ମହାତ୍ମନଃ ।
ଉତ୍ପେତୁରୁତ୍ପାତତମାଃ ସହସ୍ରଶୋ ଭୟାବହା ଦିବି ଭୂମୌ ଚ ପର୍ଯ୍ୟକ୍ । ୧୨ ।
ତାବତ୍ ସ ରୁଦ୍ରାନୁଚରୈର୍ମହାମଖୋ ନାନାୟୁଧୈର୍ବାମନକୈରୁଦାୟୁଧୈଃ ।
ପିଙ୍ଗୈଃ ପିଶଙ୍ଗୈର୍ମକରୋଦରାନନୈଃ ପର୍ଯ୍ୟାଦ୍ରବଦ୍ଭିର୍ବିଦୁରାନ୍ୱରୁଧ୍ୟତ । ୧୩ ।

---

ଯେ ପ୍ରଳୟକାଳରେ ଆପଣାର ଜଟା କଳାପ ବିକୀର୍ଣ୍ଣ କରି ଆପଣାର ଶୂଳର ଅଗ୍ରଭାଗରେ ଦିଗ୍‌ଗଜେନ୍ଦ୍ରମାନଙ୍କୁ ବିଦ୍ଧ କରିଥିଲେ ଏବଂ ନାନାଶସ୍ତ୍ର ବିଭୂଷିତ ବାହୁରୂପ ଧ୍ୱଜମାନ ବିସ୍ତାର କରି ଆହ୍ଲାଦରେ ନୃତ୍ୟ କରି କରି ମେଘଗର୍ଜନ ତୁଲ୍ୟ ଭୀଷଣ ଅଟ୍ଟହାସରେ ଦିଙ୍‌ମଣ୍ଡଳ ବିଦାରଣ କରିଥିଲେ । ୧୦ ।
ଯାହାଙ୍କର ତେଜ ଅସହନୀୟ ଏବଂ କ୍ରୋଧ ପରିବ୍ୟାପ୍ତ, ଯାହାଙ୍କର ଭ୍ରୂକୁଟି ବିକୃତମୁଖ ନିରୀକ୍ଷଣ କରିବା ସାଧ୍ୟାୟତ୍ତ ନୁହେଁ, ଯାହାଙ୍କର ଭୀଷଣ ଦନ୍ତଦ୍ୱାରା ଅଗ୍ନି ପ୍ରଭୃତିଙ୍କର ପ୍ରଭାମଧ୍ୟ ପରାଭୂତ ଏବଂ ନକ୍ଷତ୍ରମାନେ କକ୍ଷଚ୍ୟୁତ ହୋଇ ଯେହି ଉଗ୍ରମୂର୍ତ୍ତି ରୁଦ୍ରଙ୍କୁ ପ୍ରକୋପିତ କରି ସ୍ୱୟଂ ବ୍ରହ୍ମା ମଧ୍ୟ ନିସ୍ତାର ପାଇପାରନ୍ତି ନାହିଁ । ୧୧ ।
ଯଜ୍ଞ ସଭାରେ ସମସ୍ତ ବ୍ୟକ୍ତି ଉଦ୍‌ବିଗ୍ନଚିତ୍ତରେ ଚକିତ ଲୋଚନରେ ବାରମ୍ବାର ଏହିପରି କହିବାକୁ ଲାଗିଲେ, ଅକସ୍ମାତ୍ ଗଗନମଣ୍ଡଳରେ ଏବଂ ପୃଥିବୀରେ ଅସଂଖ୍ୟ ଘୋର ଉତ୍ପାତମାନ ସମୁତ୍ଥିତ ହେଲା । ତାହା ଦେଖି ଧୀର ସ୍ୱଭାବ ଦକ୍ଷଙ୍କର ଭୟ ଜନ୍ମିଲା । ୧୨ ।
ହେ ବିଦୁର ! ସେତେବେଳେ ବିବିଧ ଅସ୍ତ୍ରସମ୍ପନ୍ନ ଖର୍ବାକୃତି ରୁଦ୍ରାନୁଚରମାନେ ନିଜ ନିଜର ଅସ୍ତ୍ର ଉତ୍ତୋଳନ କରି ଚତୁର୍ଦ୍ଦିଗରୁ ବେଗରେ ଆଗମନ କରି ଦକ୍ଷଙ୍କର ସେହି ମହାଯଜ୍ଞ ଅବରୋଧ କରିଥିଲେ । ଏମାନଙ୍କ ମଧ୍ୟରେ କେହି ପିଙ୍ଗଳ ବା କେହି ପୀତବର୍ଣ୍ଣ, କାହାର ଉଦର, ଓ ମୁଖ ମକର ପରି । ୧୩ ।

---

ଏମନ୍ତେ ଶୁଣ ବ୍ୟାସ ସୁତ
ଅଦ୍ଭୁତ ରୁଦ୍ରର ଚରିତ
ଯେ ରୁଦ୍ର ପ୍ରଳୟ କାଳରେ
ତୀକ୍ଷ୍ଣ ତ୍ରିଶୂଳ ଧରି କରେ
ନୃତ୍ୟ କରନ୍ତି ଅତି ବେଗେ
ଦେଖି ପଳାନ୍ତି ଦିଗ ନାଗେ
ସହସ୍ର ଭୁଜ ଊର୍ଦ୍ଧ୍ୱ କରି
ନଟର ପ୍ରାୟେ ବେଶ ଧରି
ଚଣ୍ଡାଟ୍ଟହାସ ଶୋହେ ତୁଣ୍ଡେ
ଯେସନ୍ତେ ତଡ଼ିତ ମେଘ ଖଣ୍ଡେ
ଅସଂଖ୍ୟ ତେଜ ଯୋଗବନ୍ତ
ଦିଶଇ ଭ୍ରୂକୁଟି କୁଟିଳ
କରାଳ ଦଂଷ୍ଟ୍ର ଶୋହେ ତୁଣ୍ଡେ
ତେଜେ ନକ୍ଷତ୍ରଗଣ ଖଣ୍ଡେ
ତାରେ ରୋଷେ ଯେବେ କରି କେହି
ବିଧାତାହେଲେ ରକ୍ଷା ନାହିଁ ।୧୦,୧୧
ଦକ୍ଷକୁ ଚାହିଁ ସଭାଜନେ
କହନ୍ତି ଅତି ଦୁଃଖମନେ
ଦେଖ ଏହାର କର୍ମ୍ମଫଳେ
ଆଜତ ନାଶିଲୁ ସକଳେ
ଘୋର ଉତ୍ପାତ ଦୁଃଖ ମନେ
ଭୟେ ଲୁଚିଲେ ସର୍ବଜନେ
କେ କହୁ ତନଙ୍କ ବିକଳ
ତକ୍ଷଣେ ମିଳେ ରୁଦ୍ରବଳ ।୧୨।
ନାନା ଆୟୁଧ ଧରି କରେ
ବେଢ଼ିଲେ ଯାଇ ଯଜ୍ଞଘରେ
କେ ପିଙ୍ଗ ପିଶଙ୍ଗ ବାମନ
ମକର ଉଦର ଆନନ
ଶବଦେ ଗଗନ ଛୁଟିଲେ
ବେଗେ ପଶିଲେ ଯଜ୍ଞଶାଳେ ।୧୩

କେଚିଦ୍‌ବଭଞ୍ଜୁଃ ପ୍ରାଗ୍‌ବଂଶଂ ପତ୍ନୀଶାଲାଂ ତଥାପରେ ।
ସଦ ଆଗ୍ନୀଧ୍ରଶାଲାଞ୍ଚ ତଦ୍‌ବହାରଂ ମହାନସମ୍ । ୧୪ ।
ରୁରୁଜୁର୍ଯଜ୍ଞପାତ୍ରାଣି ତଥୈକେଽଗ୍ନୀନନାଶୟନ୍ ।
କୁଣ୍ଡେଷ୍ୱମୂତ୍ରୟନ୍ କେଚିଦ୍‌ବିଭିଦୁର୍ବେଦମେଖଳାଃ । ୧୫ ।
ଅବାଧନ୍ତ ମୁନୀନନ୍ୟେ ଏକେ ପତ୍ନୀରତର୍ଜ୍ଜୟନ୍ ।
ଅପରେ ଜଗୃହୁର୍ଦେବାନ୍ ପ୍ରତ୍ୟାସନ୍ନାନ୍ ପଳାୟିତାନ୍ । ୧୬ ।
ଭୃଗୁଂ ବବନ୍ଧ ମଣିମାନ୍ ବୀରଭଦ୍ରଃ ପ୍ରଜାପତିମ୍ ।
ଚଣ୍ଡେଶଃ ପୂଷଣଂ ଦେବଂ ଭଗଂ ନନ୍ଦୀଶ୍ୱରୋଽଗ୍ରହୀତ୍ । ୧୭ ।

---

ସେମାନଙ୍କ ମଧ୍ୟରୁ କେହି କେହି ଯଜ୍ଞଶାଳାର ପୂର୍ବ ପଶ୍ଚିମ ସ୍ତମ୍ଭରେ ଉପସ୍ଥିତ ହୋଇ ସେହି ଦିଗର କାଷ୍ଠମାନ ଭଗ୍ନ କରିଥିଲେ । କେହି ପଶ୍ଚିମ ଦିଗସ୍ଥ ପତ୍ନୀଶାଳା ଭଗ୍ନ କରିଥିଲେ, କେହି ଯଜ୍ଞଶାଳାର ସମ୍ମୁଖସ୍ଥ ମଣ୍ଡପ ଓ ଘୃତକୁଣ୍ଡ ଭଗ୍ନ କରିଥିଲେ, କେହି ବା ହୋତୃମାନଙ୍କର ଅବସ୍ଥାନଗୃହ ଭଗ୍ନ କରିଥିଲେ । କେହି ଯଜମାନ ଗୃହ ବା କେହି ପାକଶାଳା ଭଗ୍ନ କରିଥିଲେ । ୧୪ ।

କେହି କେହି ଯଜ୍ଞପାତ୍ର ଭଗ୍ନ କରିଥିଲେ, କେହି ଅବା ଅଗ୍ନି ନଷ୍ଟ କରିଥିଲେ, କେହି ବା ଯଜ୍ଞ-ବେଦୀର ମେଖଳା ବିଦାରଣ କରିଥିଲେ । ୧୫ ।

କତିପୟ ରୁଦ୍ରାନୁଚର ମୁନିମାନଙ୍କର ପଶ୍ଚାଦ୍ଧାବନ କରିଥିଲେ, କେହି ଅବା ମୁନିପତ୍ନୀମାନଙ୍କୁ ତର୍ଜନ ଗର୍ଜନ କରିଥିଲେ, ଅନ୍ୟାନ୍ୟ ରୁଦ୍ରାନୁଚରମାନେ ନିକଟବର୍ତ୍ତୀ ପଳାୟମାନ ଦେବଗଣଙ୍କୁ ଧରିବାକୁ ଲାଗିଲେ । ୧୬ ।

ମଣିମାନ୍ ନାମକ ରୁଦ୍ରାନୁଚର ଭୃଗୁଙ୍କୁ ବନ୍ଧନ କରିଥିଲେ, ବୀରଭଦ୍ର ଦକ୍ଷଙ୍କୁ, ଚଣ୍ଡେଶ ସୂର୍ଯ୍ୟଦେବଙ୍କୁ, ନନ୍ଦୀଶ୍ୱର ଭଗଦେବଙ୍କୁ ବନ୍ଧନ କରିଥିଲେ । ୧୭ ।

---

କେହୁ ଭାଙ୍ଗନ୍ତି ଯଜ୍ଞବାସ
କେ ପତ୍ନୀଶାଳ କରେ ନାଶ
କେ ପାକଶାଳେ ପ୍ରବେଶନ୍ତି
କେ ଯଜ୍ଞପାତ୍ରକୁ ଭାଙ୍ଗନ୍ତି
କେ ଯଜ୍ଞକୁଣ୍ଡରେ ମିଳନ୍ତି
ମୂତ୍ର ପୁରୀଷ ଉତ୍ସର୍ଗନ୍ତି
କେ ଉଚ୍ଚୁଙ୍କର ନାଦ କଲେ
ଯଜ୍ଞ ମେଖଳା ବେଦ ଭୁଲେ
ଭାଙ୍ଗିଲେ ଅତି କୋପଭରେ
ଶୂନ୍ୟ ବୁଲାଇ ଦକ୍ଷ କରେ ।୧୪,୧୫
କେ ଧାଇଁ ମୁନିଙ୍କ ଉପରେ
ତର୍ଜ୍ଜନ୍ତି ଅତି କୋପଭରେ
ସ୍ତ୍ରୀସ୍ୱିଗଣଙ୍କ ମଧ୍ୟେ ପଶି
ରାହୁ ଯେସନେ ଗ୍ରାସେ ଶଶୀ
ଦେବେ ପଳାନ୍ତି ତାହା ଦେଖି
ଯଜ୍ଞର ବିଭାଗ ଉପେକ୍ଷି
ତାହାଙ୍କୁ ରୁଦ୍ରଗଣେ ଦେଖି
ଧାଇଁଲେ ଦସ୍ୟୁକୁ ଉପେକ୍ଷି ।୧୬।
ଭୃଗୁକୁ ମଣିମାନ ବାନ୍ଧେ
ତା ଦେଖି ପ୍ରଜାପତି କାନ୍ଦେ
ଦକ୍ଷକୁ ବୀରଭଦ୍ର ଧରି
ପଶୁର ପ୍ରାୟେ ବନ୍ଧ କରି
ଚଣ୍ଡେଷ ପୁଷଣକୁ ଧରେ
ଭଗକୁ ଧରେ ନନ୍ଦୀଶ୍ୱରେ ।୧୭।

ସର୍ବ ଏବର୍ତ୍ୱିଜୋ ଦୃଷ୍ଟ୍ୱା ସଦସ୍ୟାଃ ସଦିବୌକସଃ ।
ତୈରର୍ଦ୍ଦ୍ୟମାନାଃ ସୁଭୃଶଂ ଗ୍ରାବଭିର୍ନୈକଧାଦ୍ରବନ୍ । ୧୮ ।
ଜୁହ୍ୱତଃ ସ୍ରୁବହସ୍ତସ୍ୟ ଶ୍ମଶ୍ରୂଣି ଭଗବାନ୍ ଭବଃ ।
ଭୃଗୋର୍ଲୁଲୁଞ୍ଚେ ସଦସି ଯୋଽହସତ୍ ଶ୍ମଶ୍ରୁ ଦର୍ଶୟନ୍ । ୧୯ ।
ଭଗସ୍ୟ ନେତ୍ରେ ଭଗବାନ୍ ପାତିତସ୍ୟ ରୁଷା ଭୁବି ।
ଉଜ୍ଜହାର ସଦଃସ୍ଥୋଽକ୍ଷ୍ଣା ଯଃ ଶପନ୍ତମସୂସୁଚତ୍ । ୨୦ ।
ପୂଷ୍ଣୋହ୍ୟପାତୟଦ୍ଦନ୍ତାନ୍ କାଳିଙ୍ଗସ୍ୟ ଯଥା ବଳଃ ।
ଶପ୍ୟମାନେ ଗରିମଣି ଯୋଽହସଦ୍ଦର୍ଶୟନ୍ ଦତଃ । ୨୧ ।

---

ଋତ୍ୱିକ ଓ ଦେବତାଗଣ ଓ ସଦସ୍ୟଗଣ ଏପରି ଉପଦ୍ରବ ଦେଖି ଚତୁର୍ଦ୍ଦିଗକୁ ପଳାୟନ କଲେ, ରୁଦ୍ରାନୁଚରଗଣ ସେମାନଙ୍କ ଉପରକୁ ପ୍ରସ୍ତର ନିକ୍ଷେପ କଲେ, ତହିଁରେ ସେମାନଙ୍କର ବିଶେଷ ବ୍ୟଥା ଜନ୍ମିଲା । ୧୮ ।

ମହର୍ଷି ଭୃଗୁ ଯଜ୍ଞସ୍ଥଳରେ ଉପବେଶନ କରି ସ୍ରୁବରେ ହୋମ କରୁଥିବାବେଳେ ଭଗବାନ୍ ରୁଦ୍ରଙ୍କ ଅଂଶଜାତ ବୀରଭଦ୍ର ତାହାଙ୍କର ଶ୍ମଶ୍ରୁ ଉତ୍ପାଟନ କରିଥିଲେ, କାରଣ ଏହି ଭୃଗୁ ସଭାସ୍ଥଳରେ ମହାଦେବଙ୍କୁ ଶ୍ମଶ୍ରୁ ଦେଖାଇ ହାସ୍ୟ କରିଥିଲେ । ୧୯ ।

ଦକ୍ଷ ସଭାସ୍ଥଳରେ ଶିବନିନ୍ଦା କରୁଥିଲାବେଳେ ଭଗଦେବ ଚକ୍ଷୁର ସଙ୍କେତ ଦ୍ୱାରା ତାହାଙ୍କୁ ଉତ୍ସାହିତ କରିଥିଲେ, ଏଣୁ ବୀରଭଦ୍ର କ୍ରୋଧରେ ତାହାଙ୍କୁ ଭୂମିରେ ନିକ୍ଷେପକରି ତାହାଙ୍କର ଚକ୍ଷୁ ଉତ୍ପାଟନ କରିଥିଲେ । ୨୦ ।

ବଳଭଦ୍ର ଯେପରି କଳିଙ୍ଗରାଜ ଦନ୍ତବକ୍ରଙ୍କର ଦନ୍ତମାନ ଉତ୍ପାଟନ କରିଥିଲେ, ବୀରଭଦ୍ର ସେହିପରି ପୂଷାଙ୍କର ଦନ୍ତମାନ ଉତ୍ପାଟନ କରିଥିଲେ, କାରଣ ଦକ୍ଷ ଯେତେବେଳେ ପରମଗୁରୁ ମହାଦେବଙ୍କ ନିନ୍ଦା କରିଥିଲେ; ସେ ସେତେବେଳେ ଦନ୍ତ ପ୍ରକାଶକରି ହାସ୍ୟ କରିଥିଲେ । ୨୧ ।

---

ଯଜ୍ଞେ ଦେବତା ଯେତେ ଥିଲେ
ଋତ୍ୱିଜ ଆଦି ବିପ୍ର ଭୁଲେ
ରୁଦ୍ରଗଣଙ୍କ ତେଜ ଦେଖି
ପଳାଇଲେ ଯଜ୍ଞକୁ ଉପେକ୍ଷି । ୧୮ ।
ଯେ ଭୃଗୁଯଜ୍ଞେ ହୋମ କରି
ଘୃତ ଆହୁତି ସ୍ରୁବ ଧରି
ତାହାଙ୍କ କେଶ ବାମ ହସ୍ତେ
ବିଶେଷ ସେ ଧଇଲେ ତୁରିତେ
ତାହାଙ୍କ ଦାଢ଼ି ଦକ୍ଷକରେ
ପୁଣ ଉପାଡ଼ି କୋପଭରେ
ସଭାରେ ସଦ୍ଗୁଯୋନିବଳା
ସେ ଦାଢ଼ି ଦେଖାଇ ହସିଲା । ୧୯ ।
ଉପାଡ଼ି ଭୃଗୁର ଲମ୍ବ ଦାଢ଼ି
ଭଗକୁ ବେଗେ ତଳେ ପାଡ଼ି
ଚକ୍ଷୁ ଉପାଡ଼ି ନଖ ଅଗ୍ରେ
ପୂର୍ବର ଶାପ ବଇରେ ବେଗେ
ସଭାରେ ଶାପ ଦେବାକାଳେ
ଯେଉଁ ଚକ୍ଷୁରେ ଠାରିଥିଲେ । ୨୦ ।
ଗରିମଣିଙ୍କି ଶାପ ବେଳେ
ଅପମାନିତ କୋପାନଳେ
ଦନ୍ତ ଦେଖାଇ ପୂଷା ହସେ
ସେ କଥା ସ୍ମରି ମହା ରୋଷେ
ମୁଷ୍ଟି ପ୍ରହାରି ବାମକରେ
ଦନ୍ତ ଝଡ଼ାଇଲେ ବେଗଭରେ
କଳିଙ୍ଗ ଦେଶ ରାଜାରଦ
ଯେସନ୍ତେ ଭଙ୍ଗିଲେ ବଳଭଦ୍ର । ୨୧ ।

ଆକ୍ରମ୍ୟୋରସି ଦକ୍ଷସ୍ୟ ଶିତଧାରେଣ ହେତିନା ।
ଛିନ୍ଦନ୍ନପି ତଦୁଦ୍ଧର୍ତ୍ତୁଂ ନାଶକ୍ନୋତ୍ ତ୍ର୍ୟମ୍ବକସ୍ତଦା । ୨୨ ।
ଶସ୍ତ୍ରୈରସ୍ତ୍ରାନ୍ୱିତୈରେବମନିର୍ଭିନ୍ନତ୍ୱଚଂ ହରଃ ।
ବିସ୍ମୟଂ ପରମାପନ୍ନୋ ଦଧ୍ୟୌ ପଶୁପତିଶ୍ଚିରମ୍ । ୨୩ ।
ଦୃଷ୍ଟ୍ୱା ସଂଜ୍ଞପନଂ ଯୋଗଂ ପଶୂନାଂ ସ ପତିର୍ମଖେ ।
ଯଜମାନପଶୋଃ କସ୍ୟ କାୟାତ୍ ତେନାହରଚ୍ଛିରଃ । ୨୪ ।
ସାଧୁବାଦସ୍ତଦା ତେଷାଂ କର୍ମ ତତ୍ ତସ୍ୟ ପଶ୍ୟତାମ୍ ।
ଭୂତପ୍ରେତପିଶାଚାନାମନ୍ୟେଷାଂ ତଦ୍‌ବିପର୍ଯ୍ୟୟଃ । ୨୫ ।

ତଦନନ୍ତର ରୁଦ୍ରାଂଶ ବୀରଭଦ୍ର ଦକ୍ଷଙ୍କର ବକ୍ଷସ୍ଥଳ ଆକ୍ରମଣ କରି ତୀକ୍ଷ୍ଣଧାର ଖଡ୍‌ଗଦ୍ୱାରା ତାହାଙ୍କର ମସ୍ତକ ଛେଦନ କରିବାକୁ ଆରମ୍ଭକଲେ, କିନ୍ତୁ ପୁନଃ ପୁନଃ ଆଘାତ ସତ୍ତ୍ୱେ ଦକ୍ଷଙ୍କର ମସ୍ତକ ଶରୀରରୁ ବିଚ୍ଛିନ୍ନ ହେଲା ନାହିଁ । ୨୨ ।

ବିବିଧ ଅସ୍ତ୍ର ପ୍ରହାର ଦ୍ୱାରା ଦକ୍ଷଙ୍କର ଚର୍ମଛିନ୍ନ ହେଲନାହିଁ, ସେତେବେଳେ ବୀରଭଦ୍ର ବିସ୍ମିତ ହୋଇ ବହୁକ୍ଷଣ ଚିନ୍ତା କରିଥିଲେ । ୨୩ ।

ତଦନନ୍ତର ପଶୁପତି ବୀରଭଦ୍ର କଣ୍ଠ-ନିପୀଡ଼ନ ଦ୍ୱାରା ପଶୁବଧ କରିବାର ଯନ୍ତ୍ର ଦେଖି ତଦ୍ୱାରା ଯଜମାନରୂପ ପଶୁ ପ୍ରଜାପତି ଦକ୍ଷଙ୍କର ଶରୀରରୁ ତାହାଙ୍କର ମସ୍ତକ ବିଚ୍ଛିନ୍ନ କରିଥିଲେ । ୨୪



ଦକ୍ଷବଧ ।

ସେତେବେଳେ ତାହାଙ୍କର ଏହି କର୍ମ ଦେଖି ଭୂତ ପ୍ରେତ ପିଶାଚମାନେ ସାଧୁବାଦଙ୍କର କୋଳାହଳ କରି ଉଠିଲେ କିନ୍ତୁ ଯଜ୍ଞସ୍ଥଳରେ ଉପସ୍ଥିତ ଦକ୍ଷପକ୍ଷୀୟ ଅନ୍ୟମାନେ ଅସାଧୁବାଦ କରିଥିଲେ । ୨୫ ।

ଦକ୍ଷର ହୃଦେ କରି ଚାପ
ରୁଦ୍ର ଯେ ଅଧର କାମୋଡ଼ି
ଭୂମିରେ ପାଡ଼ିଲେ ଉଗ୍ରମନେ
ତୀକ୍ଷ୍ଣ ଖଡ଼ଗେ ମୁଣ୍ଡହାଣେ
ତେବେଶ ନ ପାରେ ମୁଣ୍ଡ ଛିନ୍ନି
କୋଟିଏ ଅସ୍ତ୍ର ଶସ୍ତ୍ର ଘେନି

ପ୍ରହାର କଲେ କଣ୍ଠ ତଟେ
ତେବେଶ ଚର୍ମ୍ମରେ ତା ନ କାଟେ
ଅକ୍ଷୟ ତାହାର ଶରୀର
ଦେଖି ବିସ୍ମୟ ଶୂଳଧର
ଅବଧ ଦେଖି ତାର ଗତି
ବିସ୍ମୟେ ଭଲ ପଶୁପତି

ବେକ ମୋଡ଼ି ତା ଛେଦ ଶିର
ଈଶ୍ୱରହୋଇଲେବାହାର । ୨୨-୨୪
ଶିର ପଡ଼ିଲା ଅଗ୍ନିକୁଣ୍ଡେ
କୁଢେ ରହିଲା ମୃତପିଣ୍ଡେ
ପିଶାଚଗଣ ଘେନି ସଙ୍ଗେ
ରୁଦ୍ର ନାଚନ୍ତି ରଣରଙ୍ଗେ

କୁହାବୈତଚ୍ଛିରସ୍ତସ୍ମିନ୍ ଦକ୍ଷିଣାଗ୍ନାବମର୍ଷିତଃ ।
ତଦ୍ଦେବଯଜନଂ ଦଗ୍ଧ୍ୱା ପ୍ରାତିଷ୍ଠଦ୍‌ଗୁହ୍ୟକାଲୟମ୍ । ୨୬ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ଦକ୍ଷଯଜ୍ଞ ବିଧ୍ୱଂସନଂ ନାମ ପଞ୍ଚମୋଽଧ୍ୟାୟଃ । ୫ ।

---

ତହୁଁ କ୍ରୋଧପ୍ରାପ୍ତ ବୀରଭଦ୍ର ଦକ୍ଷଙ୍କର ଛିନ୍ନମସ୍ତକ ଦକ୍ଷିଣାଗ୍ନିରେ ଆହୁତ ପ୍ରଦାନ କଲେ ଏବଂ ଯଜ୍ଞଶାଳା ଦହନକରି କୈଳାସକୁ ପ୍ରତ୍ୟାବର୍ତ୍ତନ କଲେ । ୨୬ ।

---

ଦକ୍ଷ ସମ୍ପଦ ନାଶକରି
ଦକ୍ଷିଣ ଭୁଜେ ଶୂଳ ଧରି
ଶଙ୍କର କ୍ରୋଧରୁ ବାହାରି
ଗଲେ ସେ କଇଳାସପୁରି ।୨୫,୨୬
ସେ ରୁଦ୍ର ଚରଣପଙ୍କଜେ
ବ୍ରାହ୍ମଣ ଜଗନ୍ନାଥ ଭଜେ ।



# ଷ ଷ୍ଠ ଅ ଧ୍ୟା ୟ୍ଃ ।

ଷଷ୍ଠେ ତୁ ଦେବସଙ୍ଘେନ ସହ ଗତ୍ୱା ଭବଂ ବିଧିଃ ।
ସାନ୍ତ୍ୱୟାମାସ ଦକ୍ଷାଦିଜୀବିତାଦ୍ୟର୍ଥମାଦରାତ୍ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ଅଥ ଦେବଗଣାଃ ସର୍ବେ ରୁଦ୍ରାନୀକୈଃ ପରାଜିତାଃ ।
ଶୂଳପଟ୍ଟିଶନିସ୍ତ୍ରିଂଶଗଦାପରିଘମୁଦ୍‌ଗରୈଃ ।୧।
ସଂଛିନ୍ନଭିନ୍ନସର୍ବାଙ୍ଗାଃ ସର୍ତ୍ୱିକ୍‌ସଭ୍ୟା ଭୟାକୁଳାଃ ।
ସ୍ୱୟମ୍ଭୁବେ ନମସ୍କୃତ୍ୟ କାର୍ତ୍‌ସ୍ନ୍ୟେନୈତନ୍ନ୍ୟବେଦୟନ୍ । ୨ ।
ଉପଲଭ୍ୟ ପୁରୈବୈତଦ୍‌ଭଗବାନବ୍‌ଜସମ୍ଭବଃ ।
ନାରାୟଣଶ୍ଚ ବିଶ୍ୱାତ୍ମା ନ କସ୍ୟାଧ୍ୱରମୀୟତୁଃ । ୩ ।

---

## ଶିବଙ୍କ ନିକଟରେ ଦକ୍ଷପ୍ରଭୃତିଙ୍କର ଜୀବନ ପ୍ରାର୍ଥନା ।

ଷଷ୍ଠ ଅଧ୍ୟାୟରେ ବ୍ରହ୍ମା ଦେବଗଣଙ୍କ ସହିତ ଶିବଙ୍କ ନିକଟକୁ ଯାଇ ତାଙ୍କୁ ସାନ୍ତ୍ୱନାପୂର୍ବକ ଦକ୍ଷାଦିଙ୍କର ଜୀବନଦାନ ପ୍ରାର୍ଥନା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀ ମୈତ୍ରେୟ କହିଲେ :—

ଅନନ୍ତର ରୁଦ୍ରସୈନ୍ୟଗଣ ଦେବତାମାନଙ୍କୁ ପରାସ୍ତକରି ଶୂଳ, ପଟ୍ଟିଶ, ଖଡ୍ଗ, ଗଦା, ପରିଘ, ମୁଦ୍ଗର ପ୍ରଭୃତି ଅସ୍ତ୍ରଦ୍ୱାରା ସେମାନଙ୍କର ଦେହ ଖଣ୍ଡ ଖଣ୍ଡ କରିଥିଲେ, ସେମାନେ ଭୟବିହ୍ୱଳ ହୋଇ ଋତ୍ୱିକ ଓ ସଦସ୍ୟମାନଙ୍କ ସହିତ ବ୍ରହ୍ମାଙ୍କ ନିକଟରେ ଉପସ୍ଥିତ ହୋଇଥିଲେ ଏବଂ ତାହାଙ୍କୁ ପ୍ରଣାମକରି ବିସ୍ତାରିତ ଭାବରେ ଯଜ୍ଞ ସମ୍ପର୍କୀୟ ଏହି ବୃତ୍ତାନ୍ତମାନ ପ୍ରକାଶ କରିଥିଲେ । ୧,୨ ।

ଭଗବାନ୍ ବ୍ରହ୍ମା ଓ ସର୍ବାନ୍ତର୍ଯାମୀ ନାରାୟଣ ପୂର୍ବରୁ ଏହା ଜାଣି ପାରିଥିବାରୁ ଉଭୟ ଦକ୍ଷଯଜ୍ଞକୁ ଗମନ କରି ନ ଥିଲେ । ୩ ।

---

ଷଷ୍ଠେ ବ୍ରହ୍ମାଙ୍କୁ ଦେବେ ଘେନି, ସାନ୍ତ୍ୱନା କଲେ ଶୂଳପାଣି । ୦ ।

ଶ୍ରୀମୈତ୍ରେୟଉବାଚ—

ରୁଦ୍ରର ଦେଖି ଘୋର ରଣ
ଭୟେ ଭାଜିଲେ ଦେବଗଣ
ଶୂଳ ପଟ୍ଟିଶ ଭୁଜ ଶର
ନିସ୍ତ୍ରିଂଶ ଗଦା ମୁଦଗର

ଏ ଶସ୍ତ୍ର ପଡ଼ି ସର୍ବ ଅଙ୍ଗେ
ଭୟେ ଭାଜିଲେ ଦଶଦିଗେ
ଭୟେ ସକଳେ ଏକ ମେଳେ
ଗମିଲେ ଗଗନମଣ୍ଡଳେ
ଛନ୍ନ ବ୍ୟାକୁଳ ମନଦୁଃଖେ
ବେଗେ ମିଳିଲେ ବ୍ରହ୍ମଲୋକେ

ବ୍ରହ୍ମାଚରଣ ତଳେ ପଡ଼ି
କହିଲେ ସବୁ କର ଯୋଡ଼ି ।୧,୨।
ଅନର୍ଥ ହେବ ବୋଲି ଜାଣି
ଯଜ୍ଞେ ନ ଗଲେ କୁଣ୍ଡପାଣି
ଏବେ ଦେବଙ୍କ ମୁଖୁ ଶୁଣି
ସେ ବ୍ରହ୍ମା କହେ ମଞ୍ଜୁ ବାଣୀ—

ତଦାକର୍ଣ୍ଣ୍ୟ ବିଭୁଃ ପ୍ରାହ ତେଜୀୟସି କୃତାଗସି ।
କ୍ଷେମାୟ ତତ୍ର ସା ଭୂୟାନ୍ନ ପ୍ରାୟେଣ ବୁଭୂଷତାମ୍ । ୪ ।
ଅଥାପି ଯୂୟଂ କୃତକିଲ୍‌ବିଷା ଭବଂ ଯେ ବର୍ହିଷୋ ଭାଗଭାଜଂ ପରାଦୁଃ ।
ପ୍ରସାଦୟଧ୍ୱଂ ପରିଶୁଦ୍ଧଚେତସା କ୍ଷିପ୍ରପ୍ରସାଦଂ ପ୍ରଗୃହୀତାଙ୍ଘ୍ରିପଦ୍ମମ୍ । ୫ ।
ଆଶାସାନା ଜୀବିତମଧ୍ୱରସ୍ୟ ଲୋକଃ ସପାଲଃ କୁପିତେ ନ ଯସ୍ମିନ୍ ।
ତମାଶୁ ଦେବଂ ପ୍ରିୟୟା ବିହୀନଂ କ୍ଷମାପୟଧ୍ୱଂ ହୃଦି ବିଦ୍ଧଂ ଦୁରୁକ୍ତୈଃ । ୬ ।
ନାହଂ ନ ଯଜ୍ଞୋ ନ ଚ ଯୂୟମନ୍ୟେ ଯେ ଦେହଭାଜୋ ମୁନୟଶ୍ଚ ତତ୍ତ୍ୱମ୍ ।
ବିଦୁଃ ପ୍ରମାଣଂ ବଲବୀର୍ଯ୍ୟୟୋର୍ବା ଯସ୍ୟାତ୍ମତନ୍ତ୍ରସ୍ୟ କ ଉପାୟଂ ବିଧିତ୍ସେତ୍ ।୭।

---

ବ୍ରହ୍ମା ଦେବତାମାନଙ୍କଠାରୁ ଏହି ପ୍ରସଙ୍ଗ ଶ୍ରବଣ କରି କହିଲେ ମହାତେଜସ୍ୱୀ ପୁରୁଷ ନିକଟରେ ଅପରାଧ କରି ଯେଉଁମାନେ ପ୍ରାଣଧାରଣ କରିବାକୁ ଇଚ୍ଛା କରନ୍ତି; ସେମାନଙ୍କର ପ୍ରାୟ ମଙ୍ଗଳ ହୁଏନାହିଁ ।୪

ଭଗବାନ୍ ଶଙ୍କର ଯଜ୍ଞ ଅଂଶଭାଗୀ, ତୁମ୍ଭେମାନେ ତାହାଙ୍କୁ ସେହି ଭାଗରୁ ବର୍ଜିତ କରି ଘୋର ଅପରାଧ କରିଅଛ, ତଥାପି ତୁମ୍ଭେମାନେ ପବିତ୍ର ଚିତ୍ତରେ ତାହାଙ୍କ ପାଦପଦ୍ମ ଧାରଣ କରି ସେହି ଆଶୁତୋଷଙ୍କୁ ପ୍ରସନ୍ନ କରିବାକୁ ଯତ୍ନବାନ୍ ହୁଅ । ୫ ।

ଯେ କ୍ରୁଦ୍ଧହେଲେ ଲୋକପାଳ ବର୍ଗଙ୍କ ସହିତ ସମସ୍ତ ଲୋକ ନଷ୍ଟ ହୁଏ, ଯେ ପ୍ରିୟତମା ପତ୍ନୀଙ୍କର ବିୟୋଗ ହେତୁ କାତର, ତହିଁ ଉପରେ ପୁଣି ଦକ୍ଷଙ୍କର ଦୁର୍ବ୍ୟବହାର ହେତୁ ସେ ମର୍ମାହତ; ସୁତରାଂ ତୁମ୍ଭେମାନେ ଯଜ୍ଞର ପୁନରୁଦ୍ଧାର ପ୍ରାର୍ଥନାକରି ଶୀଘ୍ର ସେହି ମହାଦେବଙ୍କ ନିକଟକୁ ଗମନକରି ଓ ତାହାଙ୍କ ନିକଟରେ କ୍ଷମାଭିକ୍ଷାକର । ୬ ।

ମୁଁ ଇନ୍ଦ୍ର ଓ ତୁମ୍ଭେମାନେ ଓ ଅନ୍ୟାନ୍ୟ ଦେହଧାରୀ ମୁନିମାନେ ଯଥାର୍ଥରେ କେହି ତାହାଙ୍କର ବଳବୀର୍ଯ୍ୟର ଇୟତ୍ତା କରି ନ ପାରନ୍ତି, ତାହାଙ୍କୁ ଶାନ୍ତ କରିବାକୁ କିଏ ସମର୍ଥ ? । ୭ ।

---

"ଯଜ୍ଞ ବିନାଶି କୋପଭରେ
ରୁଦ୍ର ଯେ ଗଲେ ନିଜପୁରେ
ସ୍ୱଭାବେ ତେଜେ ଅପ୍ରମିତ
ଅନନ୍ତ ଜଗତ କରେ ଗ୍ରସ୍ତ
ତାହାର ତେଜ ବଳ ତଥ୍ୟ
କେ ଅବା ବର୍ଣ୍ଣିବେ ସମର୍ଥ
ତାହାରେ ଅପରାଧ କରି
କେ ଅବା ଥିବ ଦେହ ଧରି
ଏବେ ସକଳ ଦେବେ ଶୁଣ
କେ ଜାଣେ ଈଶ୍ୱର ପ୍ରମାଣ
ଚାଲ ସକଳେ ସୁରଦେବା
ଏବେ ହୋ କଇଳାସ ଯିବା

ରୁଦ୍ରଚରଣେ ନମସ୍କାର
ସ୍ତୋତ୍ରେ ସନ୍ତୋଷ ଦେବ ହର
ସ୍ୱଭାବେ ସେହୁ ଆଶୁତୋଷ
ଅବଶ୍ୟ ହୋଇବେ ସନ୍ତୋଷ
ଈଶ୍ୱରଚରଣକମଳେ
ଶରଣ ପଶ ଏକମେଳେ
ମୋହର ବୋଲ ଏବେ କର
ଅନ୍ୟଥା ନାହିଁଟି ନିସ୍ତାର
ଯେ ଅନ୍ତକାଳେ ଅଣ୍ଡକୋଷ
ନିମିଷ ମାତ୍ରେ କରେ ଗ୍ରାସ
ତାର ଚରଣେ ନ ସେବିଲେ
କେବା ସଂସାରେ ଥିବ ଭଲେ ?

ଦକ୍ଷର ଅପରାଧ ଯୋଗେ
ବିଶେଷେ ପତ୍ନୀର ବିଯୋଗେ
ସ୍ୱଭାବେ ତମ ଗୁଣ ଯୋଗେ
କେବା ମିଳିବ ତାର ଆଗେ ?
ଯାର ମହିମା ବିସ୍ତାରଣେ
ମୋ ଆଦି ସର୍ବ ଦେବଗଣେ
ଏ ଯଜ୍ଞ ଆଦି ଯେତେ ମୁନି
ସଙ୍ଗତେ ବେଦତନ୍ତ୍ର ଘେନି
କେ ଜାଣି ପାରିବ ପ୍ରମାଣ
ସେ ଆତ୍ମ-ତନ୍ତ୍ର ଭଗବାନ
ଏବେ ସକଳ ଦେବେ ଯିବା
ସେ ରୁଦ୍ରଚରଣେ ପୂଜିବା

ସ ଇତ୍ଥମାଦିଶ୍ୟ ସୁରାନଜସ୍ତୁ ତୈଃ ସମନ୍ୱିତଃ ପିତୃଭିଃ ସପ୍ରଜେଶୈଃ ।
ଯଯୌ ସ୍ୱଧିଷ୍ଣ୍ୟାନ୍ନିଲୟଂ ପୁରଦ୍ୱିଷଃ କୈଳାସମଦ୍ରିପ୍ରବରଂ ପ୍ରିୟଂ ପ୍ରଭୋଃ ।୮।
ଜନ୍ମୌଷଧିତପୋମନ୍ତ୍ରଯୋଗସିଦ୍ଧୈର୍ନରେତରୈଃ ।
ଜୁଷ୍ଟଂ କିନ୍ନରଗନ୍ଧର୍ବୈରପ୍ସରୋଭିର୍ବୃତଂ ସଦା ।୯।
ନାନାମଣିମୟୈଃ ଶୃଙ୍ଗୈର୍ନାନାଧାତୁବିଚିତ୍ରିତୈଃ ।
ନାନାଦ୍ରୁମଲତାଗୁଲ୍ମୈର୍ନାନାମୃଗଗଣାବୃତୈଃ ।୧୦।
ନାନାମଳପ୍ରସ୍ରବଣୈର୍ନାନାକନ୍ଦରସାନୁଭିଃ ।
ରମଣଂ ବିହରନ୍ତୀନାଂ ରମଣୈଃ ସିଦ୍ଧଯୋଷିତାମ୍ ।୧୧।

---

ଭଗବାନ୍ ବ୍ରହ୍ମା ଦେବଗଣଙ୍କୁ ଏହିପରି ଆଦେଶ ପ୍ରଦାନ କରି ପ୍ରଜାପତିଗଣ ଓ ଦେବଗଣଙ୍କ ସହିତ ସ୍ୱଧାମରୁ ଶିବଙ୍କର ପ୍ରିୟତମ ଆଳୟ ଗିରିରାଜ କୈଳାସକୁ ଗମନ କରିଥିଲେ । ୮ ।

ଏହି କୈଳାସପର୍ବତ ଜନ୍ମ, ଔଷଧି, ତପସ୍ୟା, ମନ୍ତ୍ର ଏବଂ ଯୋଗ ବିଷୟରେ ସିଦ୍ଧ, ଦେବତାଗଣ, କିନ୍ନରଗଣ ଓ ଗନ୍ଧର୍ବଗଣଙ୍କ କର୍ତ୍ତୃକ ସେବିତ ଏବଂ ସର୍ବଦା ଅପ୍ସରାମାନଙ୍କ ଦ୍ୱାରା ପରିବୃତ । ୯ ।

ଏହି ପର୍ବତର ମଣିମୟଶୃଙ୍ଗ ବିବିଧଧାତୁ ଦ୍ୱାରା ରଞ୍ଜିତ, ବିବିଧ ବୃକ୍ଷଲତା ଗୁଳ୍ମ ତାହାର ଚତୁଃପାର୍ଶ୍ୱରେ ଉତ୍ପନ୍ନ ହୋଇ ତାହାର ଶୋଭା ବୃଦ୍ଧି କରୁଅଛନ୍ତି ଏବଂ ବିବିଧ ପଶୁ ତହିଁରେ ବିଚରଣ କରୁଅଛନ୍ତି । ୧୦ ।

ସେହି ପର୍ବତରେ ନାନାପ୍ରକାର ଅମଳ ପ୍ରସ୍ରବଣ, ବିବିଧ କନ୍ଦର ଓ ସାନୁ ବିରାଜମାନ ଥିବାରୁ ତାହା ପତିସହ ବିହାରମାଣା ସିଦ୍ଧପତ୍ନୀମାନଙ୍କର ଆସକ୍ତିବର୍ଦ୍ଧକ ହୋଇଅଛି । ୧୧ ।

---

ସ୍ତୁତି କରିବା ନାନାମତେ
ଯେମନ୍ତେ ଦକ୍ଷ ବଞ୍ଚେ ଛତେ”
ଏମନ୍ତ କହି ପଦ୍ମ-ଯୋନି
ସଙ୍ଗେ ସକଳ ଦେବ ଘେନି
ଆଗେ ଚଳନ୍ତି ନାରାୟଣ
ଯକ୍ଷ କିନ୍ନର ସୁରଗଣ
ସିଦ୍ଧ ଚାରଣ ପିତୃକୁଳେ
ସର୍ବେ ଚଳିଲେ ବ୍ରହ୍ମାବୋଲେ
ଈଶ୍ୱର ଦରଶନ ଆଶେ
ମିଳିଲେ କଇଳାସ ଦେଶେ ।୩-୮।

ଯେ ବନେ ବସେ ସଦାଶିବ
ସେ ସ୍ଥାନ ଉପମା କେ ଦେବ
ଜନ୍ମ ଔଷଧି ତପ ମନ୍ତ୍ର
ଯୋଗ ଋଷିସିଦ୍ଧି ଦେବଯୂଥ
ଯକ୍ଷ କିନ୍ନର ବିଦ୍ୟାଧରୀ
ଗନ୍ଧର୍ବ ମୁନି ଅପସରୀ
ସର୍ବେ ବସନ୍ତି ସିଦ୍ଧବନେ
ତାଙ୍କୁ ପୂଜେ ଯୋଗଧ୍ୟାନେ
ଅଶେଷ ମଣିରତ୍ନ ରେଖେ
ଶୃଙ୍ଗ ବିରାଜେ ଗିରିଶିଖେ

ଦେଖେ ବିଚିତ୍ର ନାନା ଧାତୁ
ଅତି ଆନନ୍ଦ ରୂପ ହେତୁ
ବିରାଜେ ନାନା ଗୁଳ୍ମ ଲତା
କେ ତା ବର୍ଣ୍ଣିବେ ସାମରଥା
ଆନନ୍ଦେ ମନୋହର ସ୍ଥାନେ
କ୍ରୀଡ଼ନ୍ତି ନାନା ପଶୁଗଣେ
ଅନେକ କନ୍ଦର ଗମ୍ଭୀର
ବହନ୍ତି ପ୍ରସ୍ରବଣ ଧାର
ରମଣ କୁଳେ ନାରୀଗଣେ
ରମନ୍ତି ସିଦ୍ଧ ସ୍ତ୍ରୀମାନେ ।୯-୧୧।

ମୟୂରକେକାଭିରୁତଂ ମଦାନ୍ଧାଳିବିମୂର୍ଚ୍ଛିତମ୍ ।
ପ୍ଲାବିତୈ ରକ୍ତକଣ୍ଠାନାଂ କୂଜିତୈଶ୍ଚ ପତତ୍ତ୍ରିଣାମ୍ ।୧୨।
ଆହ୍ୱୟନ୍ତମିବୋଦ୍ଧସ୍ତୈର୍ଦ୍ୱିଜାନ୍ କାମଦୁଘୈର୍ଦ୍ରୁମୈଃ ।
ବ୍ରଜନ୍ତମିବ ମାତଙ୍ଗୈର୍ଗୃଣନ୍ତମିବ ନିର୍ଝରୈଃ ।୧୩।
ମନ୍ଦାରୈଃ ପାରିଜାତୈଶ୍ଚ ସରଳୈଶ୍ଚୋପଶୋଭିତମ୍ ।
ତମାଲୈଃ ଶାଲତାଲୈଶ୍ଚ କୋବିଦାରାସନାର୍ଜ୍ଜୁନୈଃ ।୧୪।
ଚୂତୈଃ କଦମ୍ବୈର୍ନୀପୈଶ୍ଚ ନାଗପୁନ୍ନାଗଚମ୍ପକୈଃ ।
ପାଟଲାଶୋକବକୁଳୈଃ କୁନ୍ଦୈଃ କୁରବକୈରପି ।୧୫।
ସ୍ୱର୍ଣ୍ଣାର୍ଣ୍ଣଶତପତ୍ରୈଶ୍ଚ ବୀରରେଣୁକଜାତିଭିଃ ।
କୁବ୍‌ଜକୈର୍ମଲ୍ଲିକାଭିଶ୍ଚ ମାଧବୀଭିଶ୍ଚ ମଣ୍ଡିତମ୍ ।୧୬।

---

ଏହି ପର୍ବତ ମୟୂରମାନଙ୍କର "କେକା" ରବରେ ନିନାଦିତ, ମଦାନ୍ଧ ଭ୍ରମରଗଣଙ୍କର ଗୁଣୁଗୁଣୁ ଧ୍ୱନିରେ ଏହା ମୁଖରିତ, ଏହାର ଉପରିସ୍ଥଗମ୍ଭ ବିବିଧ କାମଦୁଘା କଳ୍ପବୃକ୍ଷମାନଙ୍କର ଉଚ୍ଚଶାଖାରେ ରକ୍ତକଣ୍ଠ କୋକିଳମାନେ ଓ ବିବିଧ ପକ୍ଷୀବୃନ୍ଦ କୋକିଳକଣ୍ଠ ନିନାଦସ୍ୱରରେ ଗାନ କଲାପରି ବୋଧ ହେଉ-ଥିଲା । ଏହି ପର୍ବତରାଜ ନିଜର ହସ୍ତ ଉତ୍ତୋଳନକରି ବିହଙ୍ଗମମାନଙ୍କୁ ଆହ୍ୱାନ କରୁଥିଲା, ସେଠାରେ ଅସଂଖ୍ୟ ହସ୍ତୀ ଇତସ୍ତତ ଭ୍ରମଣ କରିବାରୁ ସେହି ପର୍ବତ ଗମନ କଲାପରି ବୋଧ ହେଉଥିଲା । ପର୍ବତ ନିର୍ଝରରୁ ବାରି ପତିତ ହେବାରୁ ପର୍ବତରାଜ ମଧୁର ସମ୍ଭାଷଣ କଲାପରି ବୋଧହେଉଥିଲା । ୧୨,୧୩ ।

ଏହି ପର୍ବତ ମନ୍ଦାର, ପାରିଜାତ, ସରଳ ତମାଳ, ଶାଳ, ତାଳ, ରକ୍ତକାଞ୍ଚନ, ଝାଉଁ ଓ ଅର୍ଜ୍ଜୁନ ପ୍ରଭୃତି ବୃକ୍ଷଦ୍ୱାରା ଶୋଭିତ ହେଉଥିଲା । ୧୪ ।

ତନ୍ମଧ୍ୟରେ ପୁଣି ଚୂତ, କଦମ୍ବ, ନୀପ, ପୁନ୍ନାଗ, ନାଗ, ଚମ୍ପକ, ପାଟଳ, ଅଶୋକ, ବକୁଳ, କୁନ୍ଦ ଓ କୁରୁବକ ଇତ୍ୟାଦି ପରମରମଣୀୟ ଶୋଭା ବର୍ଦ୍ଧନ କରୁଥିଲା । ୧୫ ।

ତାହା ପୁଣି ସୁବର୍ଣ୍ଣବର୍ଣ୍ଣ ଶତପତ୍ରରେ ବୀର, ବେଣୁକ, ଜାତି, କୁବ୍‌ଜକ, ମଲ୍ଲିକା, ମାଧବୀ ପ୍ରଭୃତି ଦ୍ୱାରା ଅଳଂକୃତ ହୋଇଥିଲା । ୧୬ ।

---

ମୟୂର କେକାନାଦ ବାଣୀ
ସେ ବନେ ମନୋହର ଶୁଣି
କୋମଳ କଣ୍ଠେ ପିକଗଣେ
ନାଦ କରନ୍ତି ପକ୍ଷିମାନେ
ବସନ୍ତ କଳ୍ପଦ୍ରୁମ ସନ୍ତ
କି ଅବା ପକ୍ଷୀଙ୍କି ଡାକନ୍ତି
ମତ୍ତମାତଙ୍ଗ ଛନ୍ଦେ ଚଳି
ଗର୍ଜ୍ଜଇ କ୍ଷୁଦ୍ର ନଦୀ ଜଳେ ।୧୨,୧୩

ମନ୍ଦାର ପାରିଜାତ ଦ୍ରୁମ
ସରଳ କୋବିଦାର ବନ
ତମାଳ ଶାଳ ତାଳବନ
ଆବର ଅସନ ଅର୍ଜ୍ଜୁନ
ଚୂତ କଦମ୍ବ ନାଗେଶ୍ୱର
ପୁନ୍ନାଗ ଚମ୍ପା କରବୀର
ପାଟଳୀ ଅଶୋକ ଅନେକ
ବକୁଳ କୁନ୍ଦ କୁରବକ

ସୁନାସ୍ୱ ଶତପତ୍ର ଜାତି
ମଲ୍ଲିକା ମାଧବୀ ଯେ ଯୂଥି
ପନସ ଉଦୁମ୍ବର ପ୍ଲକ୍ଷ
ବଟ ଅଶ୍ୱତ୍ଥ ହିଙ୍ଗୁ ବୃକ୍ଷ
ଖର୍ଜ୍ଜୁର ଜମ୍ବୁ ଯେ କମୁକ
ଆମ୍ର ପିଆଳ ଆମ୍ରାତକ
ଭୂର୍ଜ୍ଜ ଔଷଧି ଯେ ମଧୁକ
ଇଙ୍ଗୁଧ ବେଣୁ ଯେ ଝାଟକ

ପନସୋଦୁମ୍ବରାଶ୍ୱତ୍‌ଥପ୍ଲକ୍ଷନ୍ୟଗ୍ରୋଧହିଙ୍ଗୁଭିଃ ।
ଭୁର୍ଜ୍ଜୈରୋଷଧିଭିଃ ପୂଗୈ ରାଜପୂଗୈଶ୍ଚ ଜମ୍ବୁଭିଃ । ୧୭ ।
ଖର୍ଜ୍ଜୂରାମ୍ରାତକାମ୍ରାଦ୍ୟୈଃ ପିୟ୍ୟାଳମଧୁକେଙ୍ଗୁଦୈଃ ।
ଦ୍ରୁମଜାତିଭିରନ୍ୟୈଶ୍ଚ ରାଜିତଂ ବେଣୁକୀଚକୈଃ । ୧୮ ।
କୁମୁଦୋତ୍‌ପଲକହ୍ଲାର ଶତପତ୍ରସମୃଦ୍ଧିଭିଃ ।
ନଳିନୀଷୁ କଳଂ କୂଜତ୍‌ ଖଗବୃନ୍ଦୋପଶୋଭିତମ୍ । ୧୯ ।
ମୃଗୈଃ ଶାଖାମୃଗୈଃ କ୍ରୋଡ଼ୈର୍ମୃଗେନ୍ଦ୍ରୈଭର୍କ୍ଷଶଲ୍ୟକୈଃ ।
ଗବୟୈଃ ଶରଭୈର୍ବ୍ୟାଘ୍ରୈ ରୁରୁଭିର୍ମହିଷାଦଭିଃ ।
କର୍ଣ୍ଣାନ୍ତ୍ରୈକପଦାଶ୍ୱାସ୍ୟୈର୍ନିର୍ଜ୍ଜୁଷ୍ଟଂ ବୃକନାଭିଭିଃ । ୨୦ ।
କଦଳୀଷଣ୍ଡସଂରୁଦ୍ଧନଳିନୀପୁଳିନଶ୍ରିୟମ୍ । ୨୧ ।
ପର୍ଯ୍ୟସ୍ତଂ ନନ୍ଦୟା ସତ୍ୟାଃ ସ୍ନାନପୁଣ୍ୟତରୋଦୟା ।
ବିଲୋକ୍ୟ ଭୂତେଶଗିରିଂ ବିବୁଧା ବିସ୍ମୟଂ ଯୟୁଃ । ୨୨ ।

ପଣସ ଉଦୁମ୍ବର ( ଡ଼ିମ୍ବିରି ) ଅଶ୍ୱତ୍ଥ, ପ୍ଲକ୍ଷ, ନ୍ୟଗ୍ରୋଧ, ହେଙ୍ଗୁ, ଭୂର୍ଜ, ବିବିଧ ଔଷଧି, ଗୁଆ, ରାଜପୂଗ, ଜମ୍ବୁ, ଖର୍ଜୁର, ଆମ୍ରାତକ, ଆମ୍ର, ପିଆଳ, ମଧୂକ, ଇଙ୍ଗୁଦ, ବଂଶ, କୀଚକ ଓ ଅନ୍ୟାନ୍ୟ ବିବିଧ ବୃକ୍ଷ ଲତାଦ୍ୱାରା ସୁଶୋଭିତ ହେଉଥିଲା । ୧୭,୧୮ ।

ତତ୍ରତ୍ୟ ସରୋବର ସମୂହରେ ଜଳଚର ବିହଙ୍ଗମଗଣ, କୁମୁଦ, ଉତ୍ପଳ, ପଦ୍ମ ପ୍ରଭୃତି ବିକଶିତ ଜଳଜପୁଷ୍ପର ମଧୁ ଓ ସୌରଭ ସମୃଦ୍ଧିଜନିତ ମଧୁର କୂଜନ କରୁଥିବାରୁ ଏହି ପର୍ବତ ଅତ୍ୟନ୍ତ ଶୋଭମାନ ହେଉଥିଲା । ୧୯ ।

ଯେଉଁଠାରେ ମୃଗ, ଶାଖାମୃଗ, ବରାହ, ସିଂହ, ଗଜ, ଭଲ୍ଲୁକ, ଶଳାକ, ଗବୟ, ସରଭ, ବ୍ୟାଘ୍ର, ରୁରୁ, ମହିଷ, କର୍ଣ୍ଣ ଉର୍ଣ୍ଣି, ଏକପଦ, ଅଶ୍ୱମୁଖ ପ୍ରଭୃତି ବିବିଧପଶୁ ବିଶେଷତଃ ବୃକ ଓ କସ୍ତୁରୀମୃଗ ସର୍ବଦା ବିଚରଣ କରୁଥିଲେ । ୨୦ ।

ସେଠାରେ ବହୁ ପଦ୍ମପୂର୍ଣ୍ଣ ସରୋବର ତୀରରେ କଦଳୀବୃକ୍ଷମାନ ଅବସ୍ଥିତ ଥିବାରୁ ସେହି ପର୍ବତର ଶୋଭା ରମଣୀୟ ହୋଇଥିଲା, ତାହାର ଚତୁର୍ଦ୍ଦିଗ ବେଷ୍ଟନ କରି ପୁଣ୍ୟତୋୟା ଗଙ୍ଗା ପ୍ରବାହିତା, ସେହି ଗଙ୍ଗାର ଜଳରେ ସତୀ ସ୍ନାନ କରିବାରୁ ତାହା ଅତ୍ୟନ୍ତ ପବିତ୍ର ହୋଇଥିଲା । ଦେବତାମାନେ ଏହି କୈଳାସ ପର୍ବତ ଦର୍ଶନ କରି ବିସ୍ମିତ ହୋଇଥିଲେ । ୨୧, ୨୨ ।

କୃକ୍ଷେ ଅଛନ୍ତି ନାନା ବର୍ଣ୍ଣେ
ଶୋଭନ କଇଳାସ ବନେ
କୁମୁଦ ଉତ୍ପଳ କହ୍ଲାର
ଶତପତ୍ରରେ ଶୋହେ ନୀର
ଆନନ୍ଦ ମନେ ପକ୍ଷୀକୁଳ
ଗର୍ଜ୍ଜର ନାଦେ କୁତୁହଳ ।୧୮-୧୯

ମୃଗ ବାନର କୋଳ ଯୂଥ
ସିଂହ ଶାର୍ଦ୍ଦୂଳ ଗଜ ଯୂଥ
ଗବୟ ବ୍ୟାଘ୍ର ରିକ୍ଷ ଦଳ
ରୁରୁ ମହିଷ ଶଶାକୁଳ
ଅରଣ୍ୟେ ମୃଗନାଭି ଆଦି
କେ କହୁ ସେ ବନ ସମ୍ପାଦ

ସୁନ୍ଦର ଶୋହେ ରମ୍ଭାବନ
ଦେଖନ୍ତା ପ୍ରାଣୀ ମୋହେ ମନ
। ୨୦,୨୧ ।
ବହଇ ତହିଁ ନନ୍ଦା ନନ୍ଦା
ସତୀ ସ୍ନାନରେ ପୁଣ୍ୟଗନ୍ଧା

ଦଦୃଶୁସ୍ତତ୍ର ତେ ରମ୍ୟାମଲକାଂ ନାମ ବୈ ପୁରୀମ୍ ।
ବନଂ ସୌଗନ୍ଧିକଞ୍ଚାପି ଯତ୍ର ତନ୍ନାମପଙ୍କଜମ୍ । ୨୩ ।
ନନ୍ଦା ଚାଳକନନ୍ଦା ଚ ସରିତୌ ବାହ୍ୟତଃ ପୁରଃ ।
ତୀର୍ଥପାଦପଦାମ୍ଭୋଜରଜସାତୀବ ପାବନେ । ୨୪ ।
ଯୟୋଃ ସୁରସ୍ତ୍ରିୟଃ କ୍ଷତ୍ତରବରୁହ୍ୟ ସ୍ୱଧିଷ୍ଣ୍ୟତଃ ।
କ୍ରୀଡ଼ନ୍ତି ପୁଂସଃ ସିଞ୍ଚନ୍ତ୍ୟୋ ବିଗାହ୍ୟ ରତିକର୍ଷିତାଃ । ୨୫ ।
ଯୟୋସ୍ତତ୍ସ୍ନାନବିଭ୍ରଷ୍ଟନବକୁଙ୍କୁମପିଞ୍ଜରମ୍ ।
ବିତୃଷୋଽପି ପିବନ୍ତ୍ୟମ୍ଭଃ ପାୟୟନ୍ତୋ ଗଜା ଗଜୀଃ । ୨୬ ।
ତାରହେମମହାରତ୍ନବିମାନଶତସଙ୍କୁଲାମ୍ ।
ଜୁଷ୍ଟାଂ ପୁଣ୍ୟଜନସ୍ତ୍ରୀଭିର୍ଯଥା ଖଂ ସତଡ଼ିଦ୍‌ଘନମ୍ । ୨୭ ।

---

ତଦନନ୍ତର ଦେବତାମାନେ ସର୍ବତୋପରି ଅଳକାନାମକପୁରୀ ଓ ସୌଗନ୍ଧିକ ନାମକ ବନ ଦେଖିଥିଲେ । ଏହି ସୌଗନ୍ଧିକ ବନରେ ପଦ୍ମପୁଷ୍ପଜାତ ହୋଇଥାଏ । ୨୩ ।

ସେହି ଅଳକାପୁରୀର ବହିର୍ଭାଗରେ ଭଗବାନ୍ ଶ୍ରୀହରିଙ୍କର ପାଦପଦ୍ମର ରେଣୁଦ୍ୱାରା ସାତିଶୟ ପବିତ୍ର ନନ୍ଦା ଏବଂ ଅଳକାନନ୍ଦା ନାମକ ନଦୀଦ୍ୱୟ ପ୍ରବାହିତ ହେଉଥିଲି । ୨୪ ।

ହେ କ୍ଷତ୍ତ ( ବିଦୁର ) ! ଦେବରମଣୀଗଣ ନିଜ ନିଜ ସ୍ଥାନରୁ ଅବତରଣ କରି ସେହି ନନ୍ଦା ଓ ଅଳକାନନ୍ଦା ମଧ୍ୟରେ ପ୍ରବେଶ କରି ଅନୁରକ୍ତ ଚିତ୍ତରେ ନାୟକମାନଙ୍କର ଶରୀରରେ ଜଳସେଚନ କରି ନାନାପ୍ରକାର କ୍ରୀଡ଼ା କରୁଥିଲେ । ୨୫ ।

ଏହି ନଦୀର ଜଳରେ ଦେବକନ୍ୟାମାନଙ୍କର ସ୍ନାନକାଳରେ ସେମାନଙ୍କର ଗାତ୍ରରୁ ବିଗଳିତ ନୂତନ କୁଙ୍କୁମ ପ୍ରଭାବରେ ସେହି ନଦୀର ଜଳ ପୀତବର୍ଣ୍ଣ ଧାରଣ କରିଥିଲା, ହସ୍ତିମାନେ ଜଳକ୍ରୀଡ଼ା ଛଳରେ ହସ୍ତିନୀମାନଙ୍କୁ ସେହି ଜଳପାନ କରାଇବା ଛଳରେ ନିଜର ପିପାସା ନଥିଲେ ମଧ୍ୟ ତାହା ପାନକରୁଥିଲେ ।୨୬

ଅଳକାପୁରୀରେ ରୌପ୍ୟ ଓ ସ୍ୱର୍ଣ୍ଣ ନିର୍ମିତ ମଣିମାଣିକ୍ୟ ଖଚିତ ଶତଶତ ବିମାନ ଦ୍ୱାରା ପରିବୃତ ହୋଇ ଦେବଗଣ ବିଦ୍ୟୁଦ୍‌ଭୂଷିତ ମେଘଯୁକ୍ତ ନଭୋମଣ୍ଡଳ ତୁଲ୍ୟ ଯକ୍ଷରମଣୀମାନଙ୍କ କର୍ତ୍ତୃକ ନିସେବିତ ଅଳକାପୁରୀ ଅତିକ୍ରମ କରି ସୌଗନ୍ଧିକ ବନରେ ଉପନୀତ ହୋଇଥିଲେ । ସେଠାରେ ବିଚିତ୍ରମାଲ୍ୟ, ଫଳ

---

ଏମନ୍ତ ବିଶ୍ୱନାଥ ବନେ
ଦେଖି ସାନନ୍ଦ ଦେବଗଣେ
ମନ ବିସ୍ମୟ ପାଇ ବେଗେ
ଦେଖେ ସ୍ୱର୍ଗାନ୍ତ ଦିଗଦିଗେ ।୨୨।
ତାର ଉପର ପୁରେ ଯାଇଁ
ଅଳକାପୁରୀକୁ ଅନାଇ
ସୁଗନ୍ଧ ନାମ ବନ ଯହିଁ
ହେମ ପଙ୍କଜବିରାଜଇ

ନନ୍ଦା ଅଳକନନ୍ଦା ନଦୀ
ବହେ ଦକ୍ଷିଣ ବାମ ଭେଦି
ବିଷ୍ଣୁ ଚରଣ ରଜ ଲାଗି
ସେ ନଦୀ ଅତିସଉଭାଗୀ ।୨୩,୨୪
ଯେ ନଦୀ ଜଳେ ସୁରନାରୀ
ରମନ୍ତି ନାନା କ୍ରୀଡ଼ା କରି
କୁଚ କୁଙ୍କୁମ ଜଳେ ମିଶେ
ସ୍ୱଭାବେ ସ୍ୱମଞ୍ଜୁଳ ଦିଶେ

କରିଣୀ ତୁଲେ ହସ୍ତିବଳ
ନିତ୍ୟେ ପିବନ୍ତି ଯାର ଜଳ
ଆନନ୍ଦେ ପଦ୍ମବନେ ପଶି
କ୍ରୀଡ଼ାଆନନ୍ଦେ ମନତୋଷି ।୨୫-୨୭

ଦୃଷ୍ଟ୍ୱା ଯକ୍ଷେଶ୍ୱରପୁରୀଂ ବନଂ ସୌଗନ୍ଧିକଞ୍ଚ ତତ୍ ।
ଦ୍ରୁମୈଃ କାମଦୁଘୈର୍ହୃଦ୍ୟଂ ଚିତ୍ରମାଲ୍ୟଫଲଚ୍ଛଦୈଃ । ୨୮ ।
ରକ୍ତକଣ୍ଠଖଗାନୀକସ୍ୱରମଣ୍ଡିତଷଟ୍‌ପଦମ୍ ।
କଳହଂସକୁଳପ୍ରେଷ୍ଠଖରଦଣ୍ଡଜଳାଶୟମ୍ । ୨୯ ।
ବନକୁଞ୍ଜରସଂଘୃଷ୍ଟହରିଚନ୍ଦନବାୟୁନା ।
ଅଧି ପୁଣ୍ୟଜନସ୍ତ୍ରୀଣାଂ ମୁହୁରୁନ୍ମଥୟନ୍ମନଃ । ୩୦ ।
ବୈଦୁର୍ଯ୍ୟକୃତସୋପାନା ବାପ୍ୟ ଉତ୍ପଳମାଳିନୀଃ ।
ପ୍ରାପ୍ତଂ କିମ୍ପୁରୁଷୈର୍ଦୃଷ୍ଟ୍ୱା ତ ଆରାଦଦୃଶୁର୍ବଟମ୍ । ୩୧ ।

---

ଓ ସତ୍ର ସମ୍ପନ୍ନ କଳ୍ପବୃକ୍ଷମାନଙ୍କ ଦ୍ୱାରା ଶୋଭମାନ ସେହି ସୌଗନ୍ଧିକବନ ଦର୍ଶନ କରିଥିଲେ । ସେଠାରେ କଳ୍ପବୃକ୍ଷତୁଲ୍ୟ ଗୋଟିଏ ବଟବୃକ୍ଷ ଦର୍ଶନ କଲେ । ୨୭, ୨୮ ।

ସେହି ବନରେ ପିକ ପ୍ରଭୃତ ବିହଙ୍ଗମମାନଙ୍କ ମଧୁରସ୍ୱର ସହିତ ଭ୍ରମରମାନଙ୍କର ଗୁଞ୍ଜନମିଶ୍ରିତ ହୋଇ ଅତ୍ୟନ୍ତ ସୁଶ୍ରାବ୍ୟ ହୋଇଥିଲା । ତତ୍ରତ୍ୟ ଜଳାଶୟମାନ କଳହଂସମାନଙ୍କର ପ୍ରିୟ ପଦ୍ମସମୂହରେ ଶତତ ଶୋଭା ପାଉଥିଲା । ୨୯ ।

ବନ୍ୟହସ୍ତୀମାନଙ୍କର ଗାତ୍ର ସଙ୍ଘର୍ଷଣରେ ହରିଚନ୍ଦନ ବୃକ୍ଷର ନିର୍ଯ୍ୟାସ କ୍ଷରିତହେବାରୁ ସେହି ବନର ବାୟୁ ଏପରି ମନୋହର ଗନ୍ଧଯୁକ୍ତ ହୋଇଥିଲା ଯେ ତାହା ଆଘ୍ରାଣ କରି ଯକ୍ଷ ରମଣୀମାନଙ୍କର ଚିତ୍ତ ଚଞ୍ଚଳ ହେଉଥିଲା । ୩୦ ।

ସେହି ବନରେ ବୈଦୁର୍ଯ୍ୟମଣି ରଚିତ ସୋପାନ ଶ୍ରେଣୀ ଶୋଭିତ, ପଦ୍ମପୁଷ୍ପ ପୂରିତ ବାପି ମଧ୍ୟ ଥିଲା ଏବଂ କିନ୍ନରମାନେ ସେଠାରେ ଅବସ୍ଥାନ କରୁଥିଲେ । ସମାଗତ ଦେବଗଣ ସେହି ବନ ଦର୍ଶନ କଲାପରେ ନିକଟରେ ଗୋଟିଏ ବଟବୃକ୍ଷ ଦେଖିଲେ । ୩୧ ।

---

ସେ ନଗ୍ରୀକୂଳେ ଉପଗତ
ରତ୍ନବମାନ ଯୂଥ-ଯୂଥ
ପୁଣ୍ୟଜନଙ୍କ ପରମଳ
ମିଶି ସୁଗନ୍ଧ ଗଙ୍ଗାଜଳ
ଚତୁଃତ ଯେତେହୁ ନୀଳତମଗେ
ଶୋଭା ଦଶନ୍ତି ଦଶଦଗେ
ଏମନ୍ତେ କୁବେର-ନଗରୀ
ସୁଗନ୍ଧ ବନ ଆଦି କରି

ଯହିଁରେ କଳ୍ପବୃକ୍ଷ ପ୍ରାୟେ
ଫଳ ପଲ୍ଲବ ପୁଷ୍ପ ଶୋହେ
କୋମଳ କଣ୍ଠନାଦ ପକ୍ଷୀ
ଭୃଙ୍ଗ ଶବଦ ଯହିଁ ଲକ୍ଷି
ଜଳରେ କଳହଂସଗଣେ
କ୍ରୀଡ଼ା କରନ୍ତି ପଦ୍ମବନେ
ହରି ଚନ୍ଦନ ବାୟୁ ସଙ୍ଗେ
ମତ୍ତ ମାତଙ୍ଗଗଣ ରଙ୍ଗେ

ବୈଦୁର୍ଯ୍ୟ ବାପୀ କୂପ ସ୍ଥାନେ
ନିବଡ଼ ପ୍ରବନ୍ଧ ସୋପାନେ
ସ୍ୱଚ୍ଛରେ ଉତ୍ପଳମାଳିନୀ
ବରାଡେ ଗନ୍ଧ ଗୁଣ ଘେନି
ସେ ବନେ ଦେଖେ ବଟବୃକ୍ଷ
ଯହିଁ କିନ୍ନରଗଣ ରକ୍ଷ । ୨୮-୩୧ ।

ସ ଯୋଜନଶତୋତ୍ସେଧଃ ପାଦୋନବିଟପାୟତଃ ।
ପର୍ଯ୍ୟକ୍‌କୃତାଚଲଚ୍ଛାୟୋ ନିର୍ନୀଡ଼ସ୍ତାପବର୍ଜ୍ଜିତଃ । ୩୨ ।
ତସ୍ମିନ୍ ମହାଯୋଗମୟେ ମୁମୁକ୍ଷୁଶରଣେ ସୁରାଃ ।
ଦଦୃଶୁଃ ଶିବମାସୀନଂ ତ୍ୟକ୍ତାମର୍ଷମିବାନ୍ତକମ୍ । ୩୩ ।
ସନନ୍ଦନାଦ୍ୟୈର୍ମହାସିଦ୍ଧୈଃ ଶାନ୍ତୈଃ ସଂଶାନ୍ତବିଗ୍ରହମ୍ ।
ଉପାସ୍ୟମାନଂ ସଖ୍ୟା ଚ ଭର୍ତ୍ରା ଗୁହ୍ୟକରକ୍ଷସାମ୍ । ୩୪ ।
ବିଦ୍ୟାତପୋଯୋଗପଥମାସ୍ଥିତଂ ତମଧୀଶ୍ୱରମ୍ ।
ଚରନ୍ତଂ ବିଶ୍ୱସୁହୃଦଂ ବାତ୍ସଲ୍ୟାଲ୍ଲୋକମଙ୍ଗଳମ୍ । ୩୫ ।

---

ସେହି ବଟବୃକ୍ଷ ଶତ ଯୋଜନଉଚ୍ଚ, ତହିଁର ଶାଖାମାନ ପଞ୍ଚସ୍ତରୀ ଯୋଜନ ବିସ୍ତୃତ ଏବଂ ସ୍ୱୟଂ ଚତୁର୍ଦ୍ଦିଗରେ ସ୍ଥିର ଛାୟା ବିସ୍ତାର କରି ରହିଅଛି, ସେଠାରେ କିଛିମାତ୍ର ସନ୍ତାପ ନାହିଁ, କିମ୍ବା ପକ୍ଷୀମାନଙ୍କର ବାସସ୍ଥାନ ନାହିଁ । ୩୨ ।

ମୁକ୍ତିକାମିମାନଙ୍କର ଆଶ୍ରୟ ସ୍ୱରୂପ ପରମ ଯୋଗକ୍ଷେତ୍ର ସେହି ବଟବୃକ୍ଷ ତଳେ ଉପସ୍ଥିତ ହୋଇ ଦେବତାମାନେ ଦେଖିଲେ ଯେ ସେଠାରେ ଭଗବାନ୍ ଶିବ ଉପବେଶନ କରିଅଛନ୍ତି, ତାହାଙ୍କୁ ଦେଖି ମନେହେଲା-ଯେପରି ସ୍ୱୟଂ ଯମ କ୍ରୋଧଶୂନ୍ୟ ହୋଇ ରହିଅଛନ୍ତି । ୩୩ ।

ଶିବଙ୍କର ତାତ୍କାଳିକ ମୂର୍ତ୍ତି ଅତ୍ୟନ୍ତ ପ୍ରଶାନ୍ତ ଏବଂ ଚତୁର୍ଦ୍ଦିଗରେ ସନନ୍ଦାଦି ଋଷିଗଣ ଏବଂ ଗୁହ୍ୟ ଓ ରକ୍ଷଗଣଙ୍କର ପାଳକ ଓ ସଖା କୁବେର ତାହାଙ୍କର ସ୍ତବ କରୁଅଛନ୍ତି । ୩୪ ।

ସେତେବେଳେ ସେହି ବିଶ୍ୱର ଅଧିଶ୍ୱର ମହେଶ୍ୱର ବିଦ୍ୟା, ତପସ୍ୟା ଓ ସମାଧିପଥ ଆଶ୍ରୟ କରିଥିଲେ ଏବଂ ସେ ବିଶ୍ୱର ସୁହୃତ ସ୍ୱରୂପ ଲୋକସଂଘର ମଙ୍ଗଳବିଧାନାର୍ଥ ତପସ୍ୟାଦି ଅନୁଷ୍ଠାନ କରୁଥିଲେ । ୩୫ ।

---

ଶତେ ଯୋଜନ ଉଚ୍ଚ ଶୋହେ
ସୁନ୍ଦର ରୂପେ ଜନ ମୋହେ
ସେ ବୃକ୍ଷ ଛାୟା ଦେହେ ଲାଗି
ପ୍ରାଣୀ ହୁଅନ୍ତି ସନ୍ତାପତ୍ୟାଗୀ
ଏମନ୍ତ ସର୍ବ ଦେବମାନେ
ମିଳିଲେ ମହାରୁଦ୍ର ସ୍ଥାନେ

ଦେଖନ୍ତି ବଟବୃକ୍ଷ ତଳେ
ଛବିଡ଼ ଆସନ ନିଶ୍ଚଳେ
କୋପ ରହିତ ଯମପ୍ରାୟ
ବିଭୂତି ବିଲେପନ କାୟ ।୩୨,୩୩
ସନକ ଆଦି ସିଦ୍ଧ ମୁନି
ସଙ୍ଗେ ଅନେକ ଶିଷ୍ୟ ଘେନି

ଯକ୍ଷ ଗୁହ୍ୟକଙ୍କ ନାୟକ
ସେ ଭକ୍ତି ଯୋଗେ ଉପାସକ ।୩୪।
ବିଦ୍ୟା ତପସ୍ୟା ଯୋଗଆଦି
ସକଳେ ଖଟନ୍ତି ସବିଧି
ବିଶ୍ୱସୁହୃଦ ଯା ମହିମା
ସର୍ବ ମଙ୍ଗଳ ଏକ ସୀମା ।୩୫।

ଲିଙ୍ଗଞ୍ଚ ତାପସାଭୀଷ୍ଟଂ ଭସ୍ମଦଣ୍ଡଜଟାଜିନମ୍ ।
ଅଙ୍ଗେନ ସନ୍ଧ୍ୟାଭ୍ରରୁଚା ଚନ୍ଦ୍ରଲେଖାଞ୍ଚ ବିଭ୍ରତମ୍ । ୩୭ ।
ଉପବିଷ୍ଟଂ ଦର୍ଭମୟ୍ୟାଂ ବୃଷ୍ୟାଂ ବ୍ରହ୍ମ ସନାତନମ୍ ।
ନାରଦାୟ ପ୍ରବୋଚନ୍ତଂ ପୃଚ୍ଛତେ ଶୃଣ୍ୱତାଂ ସତାମ୍ । ୩୭ ।
କୃତ୍ୱୋରୌ ଦକ୍ଷିଣେ ସବ୍ୟଂ ପାଦପଦ୍ମଞ୍ଚ ଜାନୁନି ।
ବାହୁଂ ପ୍ରକୋଷ୍ଠେଽକ୍ଷମାଲାମାସୀନଂ ତର୍କମୁଦ୍ରୟା । ୩୮ ।

---

ସାନ୍ଧ୍ୟଗଗନର ପ୍ରଭୃତୁଲ୍ୟ ତାହାଙ୍କର ରକ୍ତମାଭ ଅଙ୍ଗରେ ତପସ୍ୱିଜନାଭିଳଷିତ ଚିହ୍ନ, ଭସ୍ମ, ଦଣ୍ଡ, ଜଟା, ଅଜିନାଦି ଏବଂ ଲଲାଟରେ ଚନ୍ଦ୍ରଲେଖା ଶୋଭିତ ହେଉଥିଲା । ବ୍ରତାନ୍ୱିତମାନେ ଯେପରି ଆସନରେ ବସିଥାନ୍ତି ଶିବ ସେହିପରି କୁଶାସନରେ ଉପବେଶନ କରି ଶ୍ରୋତୃମାନଙ୍କ ସମକ୍ଷରେ ଦେବର୍ଷି ନାରଦଙ୍କୁ ସନାତନ ବେଦତତ୍ତ୍ୱ ଉପଦେଶ ପ୍ରଦାନ କରୁଥିଲେ । ୩୬, ୩୭ ।

ତାହାଙ୍କର ବାମପଦ ତାହାଙ୍କର ଦକ୍ଷିଣ ଊରୁ ଉପରେ, ବାମହସ୍ତ ବାମଜାନୁରେ ବିନ୍ୟସ୍ତ ଓ ଅକ୍ଷମାଳା ମଣିବନ୍ଧରେ ଲଗ୍ନ ଥିଲା । ସେ ତର୍କମୁଦ୍ରା ବିଶିଷ୍ଟ ହୋଇ ବୀରାସନରେ ଉପବେଶନ କରିଥିଲେ *। ୩୮ ।

---

ତପସ୍ୱୀ ଅଭିମତ ଅଙ୍ଗ
ଯାର ଶରୀର ସିଦ୍ଧ ଅଙ୍ଗ
ଜଟା ଅଜିନ ଭସ୍ମ ଦଣ୍ଡ
ଶିରେ ରଞ୍ଜିତ ଇନ୍ଦୁଖଣ୍ଡ । ୩୬ ।
କୁଶ ଆସନ ମଧ୍ୟେ ବସି
ପରମବ୍ରହ୍ମ ପରକାଶି

ନାରଦ ମୁଖ ଶୁଣ୍ଟି ଧୀରେ
କହନ୍ତି ବଚନ ମଧୁରେ । ୩୭ ।
ଦକ୍ଷିଣ ଜାନୁର ଉପରେ
ବାମଚରଣ ଥୁପି ଧୀରେ
ବାମ ଜାନୁରେ ବାମକର
ଦକ୍ଷ କରରେ ଅକ୍ଷ ମାଳ

ସ୍ୱଭବେ ତର୍କ ମୁଦ୍ରା କରି
ଯେଉଁପେ ସଂସାର ସଂହାରି ।୩୮।

---

୩୮ * ଏକଂପାଦମଥୈକସ୍ମିନ୍ ବିନ୍ୟସେଦୂରୁସଂସ୍ଥିତଂ । ଇତରସ୍ମିନ୍ ତଥା ବାହୁଂ ବୀରାସନମିଦଂ ମୃତମ୍
ଅର୍ଥ :—ଏକ ଊରୁ ଉପରେ ଅନ୍ୟ ଏକ ଊରୁ ସ୍ଥାପନ କରି ଅନ୍ୟ ଊରୁ ଉପରେ ବାହୁ ସ୍ଥାପନ କରି ବସିବାକୁ ବୀରାସନ ବୋଲାଯାଏ ।

" ତର୍ଜନ୍ୟଙ୍ଗୁଷ୍ଠଯୋରଗ୍ରେ ମିଥଃସଂଯୋଜ୍ୟ ଶୃଙ୍ଖଳା, ପ୍ରସାର୍ଯ୍ୟ ବନ୍ଧନଂ ପ୍ରାହୁସ୍ତର୍କମୁଦ୍ରେତ ତାନ୍ତ୍ରିକାଃ ।
ଅର୍ଥ :—ତର୍ଜନୀ ଅଙ୍ଗୁଳି ଓ ବୃଦ୍ଧାଙ୍ଗୁଳି ଉଭୟର ଅଗ୍ରଭାଗକୁ ଯୋଗ କରି ଅଙ୍ଗୁଳି ପ୍ରସାରଣ କରିବାକୁ ତାନ୍ତ୍ରିକମାନେ ତର୍କ ମୁଦ୍ରା ବୋଲି କହିଥାନ୍ତି " ( ଶ୍ରୀଧର ସ୍ୱାମୀ )

ତଂ ବ୍ରହ୍ମନିର୍ବାଣସମାଧିମାଶ୍ରିତଂ ବ୍ୟୁପାଶ୍ରିତଂ ଗିରିଶଂ ଯୋଗକକ୍ଷାମ୍ ।
ସଲୋକପାଲା ମୁନୟୋ ମନୂନାମାଦ୍ୟଂ ମନୁଂ ପ୍ରାଞ୍ଜଲୟଃ ପ୍ରଣେମୁଃ । ୩୯ ।
ସ ତୂପଲଭ୍ୟାଗତମାତ୍ମଯୋନିଂ ସୁରାସୁରେଶୈରଭିବନ୍ଦିତାଙ୍ଘ୍ରିଃ ।
ଉତ୍‌ଥାୟ ଚକ୍ରେ ଶିରସାଭିବନ୍ଦନମର୍ହତ୍ତମଃ କସ୍ୟ ଯଥୈବ ବିଷ୍ଣୁଃ । ୪୦ ।
ତଥାପରେ ସିଦ୍ଧଗଣା ମହର୍ଷିଭିର୍ଯେ ବୈ ସମନ୍ତାଦନୁ ନୀଲଲୋହିତମ୍ ।
ନମସ୍କୃତଃ ପ୍ରାହ ଶଶାଙ୍କଶେଖରଂ କୃତପ୍ରଣାମଂ ପ୍ରହସନ୍ନିବାତ୍ମଭୂଃ । ୪୧ ।

---

ଯଥାର୍ଥରେ ସେ ଯୋଗାଶ୍ରୟ କରି ବ୍ରହ୍ମାନନ୍ଦ ସମାଧି ଅବଲମ୍ବନ ପୂର୍ବକ ଅବସ୍ଥାନ କରୁଥିଲେ । ଲୋକପାଳଗଣଙ୍କସହ ମୁନିମାନେ ସେଠାକୁ ଗମନ କରି କୃତାଞ୍ଜଳିପୁଟରେ ଅମୃକ୍ଷକମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ମହାଦେବଙ୍କୁ ପ୍ରଣାମ କରିଥିଲେ । ୩୯ ।

ଭଗବାନ୍ ବିଷ୍ଣୁ ବାମନ ଅବତାରରେ ସ୍ୱୟଂ ପରମ ପୂଜ୍ୟ ହେଲେ ମଧ୍ୟ ଯେପରି ପ୍ରଜାପତି କଶ୍ୟପଙ୍କୁ ଅଭିବାଦନ କରିଥିଲେ, ସେହିପରି ଦେବତା ଓ ଦାନବଗଣ ଯାହାଙ୍କର ଚରଣ ବନ୍ଦନା କରିଥାନ୍ତି, ସେହି ମହାଦେବ ବ୍ରହ୍ମା ଆଗମନ କରିଅଛନ୍ତି ବୋଲି ଜାଣିପାରି ଗାତ୍ରୋତ୍ଥାନ ପୂର୍ବକ ଅବନତ ମସ୍ତକରେ ତାହାଙ୍କୁ ପ୍ରାର୍ଥନା କରିଥିଲେ । ୪୦ ।

ସନନ୍ଦ ପ୍ରମୁଖ ଯେଉଁ ସିଦ୍ଧପୁରୁଷମାନେ ମହର୍ଷିମାନଙ୍କ ସହିତ ଚତୁର୍ଦ୍ଦିଗରେ ମହାଦେବଙ୍କୁ ଅନୁବର୍ତ୍ତନ କରୁଥିଲେ ସେମାନେ ମଧ୍ୟ ବ୍ରହ୍ମାଙ୍କୁ ଅବନତ ମସ୍ତକରେ ଅଭିବାଦନ କରିଥିଲେ, ବ୍ରହ୍ମା ଏହିପରି ଅଭିନନ୍ଦିତ ହୋଇ ସହାସ୍ୟ ବଦନରେ ସେହି ଶଙ୍କରଙ୍କୁ କହିଲେ । ୪୧ ।

---

ନିଶ୍ଚଳ ସମାଧି ଧାରଣେ
ଦେଖିଲେ ସର୍ବ ଦେବଗଣେ
ସକଳ ଋଷି ସଙ୍ଗମେଳେ
ଇନ୍ଦ୍ରାଦି ଦଶଦିଗପାଳେ
ବ୍ରହ୍ମା ସହିତେ ସର୍ବଜନ
ଗଲେ ରୁଦ୍ରର ବଦନ
ଜୟ ଶବଦ କରି ତୁଣ୍ଡେ –
ରୁଦ୍ରଚରଣ ନମି ମୁଣ୍ଡେ

ଯେ ହରି ମନୁଙ୍କର ମନୁ
ଭକ୍ତଜନଙ୍କ କାମଧେନୁ
ଉଠି ଚରଣ ତଳେ ଯାଇ
କପୋଳେ ବେଳକର ଦେଇ
ନମିଲେ ବ୍ରହ୍ମାର ଚରଣେ
ବାମନ କଶ୍ୟପରେ ଯେହ୍ନେ
ଦେବ କିନ୍ନର ଋଷିଗଣେ
ନମିଲେ ଈଶ୍ୱର ଚରଣେ

ଆନନ୍ଦେ ବ୍ରହ୍ମା ନାରାୟଣ
ନମିଲେ ରୁଦ୍ରର ଚରଣ
ସ୍ୱଭାବେ ମନ୍ଦ ମନ୍ଦ ହସି
ଅମୃତବାକ୍ୟେ ମନ ତୋଷି
ବ୍ରହ୍ମା କହନ୍ତି କରଯୋଡ଼ି
ଚରଣେ ପୁନ ପୁନ ପଡ଼ି ।୩୯-୪୧।

ଶ୍ରୀବ୍ରହ୍ମୋବାଚ ।

ଜାନେ ତ୍ୱାମୀଶଂ ବିଶ୍ୱସ୍ୟ ଜଗତୋ ଯୋନିବୀଜୟୋଃ ।
ଶକ୍ତେଃ ଶିବସ୍ୟ ଚ ପରଂ ଯତ୍ତଦ୍‌ବ୍ରହ୍ମ ନିରନ୍ତରମ୍ । ୪୨ ।
ତ୍ୱମେବ ଭଗବନ୍ନେତଚ୍ଛିବଶକ୍ତ୍ୟୋଃ ସରୂପୟୋଃ ।
ବିଶ୍ୱଂ ସୃଜସି ପାସ୍ୟତ୍ସି କ୍ରୀଡ଼ନ୍ନୂର୍ଣ୍ଣପଟୋ ଯଥା । ୪୩ ।
ତ୍ୱମେବ ଧର୍ମ୍ମାର୍ଥଦୁଘାଭିପତ୍ତୟେ ଦକ୍ଷେଣ ସୂତ୍ରେଣ ସସର୍ଜ୍ଜିଥାଧ୍ୱରମ୍ ।
ତ୍ୱୟୈବ ଲୋକେଽବସିତାଶ୍ଚ ସେତବୋ ଯାନ୍ ବ୍ରାହ୍ମଣାଃ ଶ୍ରଦ୍ଦଧତେ ଧୃତବ୍ରତାଃ ।୪୪।
ତ୍ୱଂ କର୍ମ୍ମଣାଂ ମଙ୍ଗଳମଙ୍ଗଲାନାଂ କର୍ତ୍ତୁଃ ସ୍ୱଲୋକଂ ତନୁଷେ ସ୍ୱଃ ପରଂ ବା ।
ଅମଙ୍ଗଲାନାଞ୍ଚ ତମିସ୍ରମୁଲ୍ବଣଂ ବିପର୍ଯ୍ୟୟଃ କେନ ତଦେବ କସ୍ୟଚିତ୍ । ୪୫ ॥

---

ଶ୍ରୀବ୍ରହ୍ମା କହିଲେ :—

ହେ ପ୍ରଭୋ ! ଆପଣ ବିଶ୍ୱାଧିପତି, କାରଣ ଜଗତର ଯୋନି ଯେଉଁ ଶକ୍ତି ତାହା ପ୍ରକୃତି ସ୍ୱରୂପା, ଏବଂ ଜଗତର ବୀଜ ଯେ ଶିବ ତାହା ପୁରୁଷ, ଆପଣ ଏହି ଉଭୟର ନିୟନ୍ତା ଏବଂ ଆପଣ ମଧ୍ୟ ନିର୍ବିକାର ବ୍ରହ୍ମ; ଏହା ମୁଁ ଜାଣେ । ୪୨ ।

ହେ ଭଗବନ୍ ! ଆପଣହିଁ ସ୍ୱୀୟ ଅଂଶଭୂତ ପୁରୁଷ ଓ ପ୍ରକୃତିର ଅନ୍ତର୍ଯ୍ୟାମୀ ରୂପେ ଊର୍ଣ୍ଣନାଭି ତୁଲ୍ୟ ଅବିଭକ୍ତ ଶିବ ଓ ଶକ୍ତିରେ କ୍ରୀଡ଼ା କରି ଏହି ବିଶ୍ୱସୃଜନ, ପାଳନ ଏବଂ ସଂହାର କରୁଅଛନ୍ତି ।୪୩।

ହେ ଦେବ ! ଆପଣହିଁ ଧର୍ମାର୍ଥ ପ୍ରସବିନୀ ତ୍ରୟୀ, ଅର୍ଥାତ୍ ଋକ୍, ଯଜୁଃ ଓ ସାମ ରକ୍ଷଣ ନିମିତ୍ତ ଦକ୍ଷଙ୍କୁ ନିମିତ୍ତ ସ୍ୱରୂପ କରି ଯଜ୍ଞାନୁଷ୍ଠାନ କରିଥିଲେ, ଇହଲୋକରେ ବ୍ରାହ୍ମଣଗଣ ବ୍ରତଧାରୀ ହୋଇ ଶ୍ରଦ୍ଧାପୂର୍ବକ ଯେଉଁ ବର୍ଣ୍ଣାଶ୍ରମ ଧର୍ମମାନ ଅନୁଷ୍ଠାନ କରିଥିଲେ, ଆପଣ ତହିଁର ସେତୁ ନିର୍ମାଣ କରିଅଛନ୍ତି । ୪୪ ।

ହେ ମଙ୍ଗଳମୟ ! ଯେଉଁ ବ୍ୟକ୍ତିମାନେ ଶୁଭ କର୍ମାନୁଷ୍ଠାନ କରନ୍ତି, ଆପଣ ସେମାନଙ୍କର ସ୍ୱର୍ଗ ଅଥବା ମୋକ୍ଷ ବିସ୍ତାର କରିଥାନ୍ତି । ଯେଉଁମାନେ ଅଶୁଭ କର୍ମକାରୀ, ଆପଣ ସେମାନଙ୍କ ପକ୍ଷରେ ଭୀଷଣ ନରକ ବିଧାନ କରନ୍ତି କିନ୍ତୁ ଆପଣ କେବେ କେବେ ଏଥିର ବିପର୍ଯ୍ୟୟ କରିଥାନ୍ତି କାହିଁକି ? । ୪୫ ।

---

ଶ୍ରୀବ୍ରହ୍ମୋବାଚ—

ତୁ ନାଥ ଜଗତ ଈଶ୍ୱର
ଜଗତ ତୋର ଖେଳଘର
ତୁ ଏ ଜଗତ ବୀଜ ଯୋନି
ସୃଷ୍ଟି ସଂହରୁ ମାୟା ଘେନି
ତୁ ନାଥ ଜଗତ ଈଶ୍ୱର
ନିର୍ଲେପ ବ୍ରହ୍ମ ନିର୍ବିକାର ।
ତୁ ଶିବ ଶକ୍ତି ରୂପ ଧରୁ
ସଂସାରେ ଖେଳଘର କରୁ
ସର୍ଜ୍ଜି ପାଳଣ କରୁ ଅନ୍ତ
ଏ ବିଶ୍ୱ ଊର୍ଣ୍ଣନାଭିବତ ।୪୨-୪୩।
ଧର୍ମ୍ମାର୍ଥ କାମ ଯହିଁ କ୍ଷରେ
ଯେ ଯଜ୍ଞ ଧେନୁ ରୂପ ଧରେ
ତୁ ତାହା ସର୍ଜ୍ଜିଛୁ ଜଗତେ
ସଂସାର ଭ୍ରମଣ ନିମନ୍ତେ
ସେ ମାୟା ସଂସାର ବନ୍ଧନେ
ଯନ୍ତ୍ରିତ ହୋଇ ମହାଜନେ
କରନ୍ତି ନାନା କର୍ମ୍ମବିଧି
ତୁ ସେ ସକଳ ଫଳ ସିଦ୍ଧି । ୪୪ ।
ମଙ୍ଗଳ କ୍ରିୟା କର୍ମ୍ମ ଫଳ
ତୁ ସେ ଅନାଦି ଆଦିମୂଳ
ଅମଙ୍ଗଳକୁ ତମ ହେଉ
ଧର୍ମ୍ମ ତୁ ସର୍ବକାଳେ ବହୁ
ତୁ ନାଥ ସର୍ବ ଫଳ ଦେଉ
ତୋର ମହିମା କେବା କହୁ ।୪୫।

—

ନବୈ ସତାଂ ତ୍ୱଚ୍ଚରଣାର୍ପିତାତ୍ମନାଂ ଭୂତେଷୁ ସର୍ବେଷ୍ୱଭିପଶ୍ୟତାଂ ତବ ।
ଭୂତାନି ଚାତ୍ମନ୍ୟପୃଥଗ୍‌ଦିଦୃକ୍ଷତାଂ ପ୍ରାୟେଣ ରୋଷୋଽଭିଭବେଦ୍‌ଯଥା ପଶୁମ୍ ।୪୬।
ପୃଥଗ୍‌ଧିୟଃ କର୍ମଦୃଶୋ ଦୁରାଶୟାଃ ପରୋଦୟେନାର୍ପିତହୃଦ୍‌ରୁଜୋଽନିଶମ୍ ।
ପରାନ୍ ଦୁରୁକ୍ତୈର୍ବିତୁଦନ୍ତ୍ୟରୁନ୍ତୁଦାସ୍ତାନ୍ ମାବଧୀଦ୍ଦୈବବଧାନ୍ ଭବଦ୍‌ବିଧଃ । ୪୭ ।
ଯସ୍ମିନ୍ ଯଦା ପୁଷ୍କରନାଭମାୟୟା ଦୁରନ୍ତୟା ସ୍ପୃଷ୍ଟଧିୟଃ ପୃଥଗ୍‌ଦୃଶଃ ।
କୁର୍ବନ୍ତି ତତ୍ର ହ୍ୟନୁକମ୍ପୟା କୃପାଂ ନ ସାଧବୋ ଦୈବବଲାତ୍କୃତେ କ୍ରମମ୍ । ୪୮ ।
ଭବାଂସ୍ତୁ ପୁଂସଃ ପରମସ୍ୟ ମାୟୟା ଦୁରନ୍ତୟାସ୍ପୃଷ୍ଟମତିଃ ସମସ୍ତଦୃକ୍ ।
ତୟା ହତାତ୍ମସ୍ୱନୁକର୍ମଚେତଃସ୍ୱନୁଗ୍ରହଂ କର୍ତ୍ତୁମିହାର୍ହସି ପ୍ରଭୋ । ୪୯ ।

---

ଯେଉଁମାନେ ଆପଣଙ୍କ ଚରଣରେ ଆତ୍ମ ସମର୍ପଣ କରି ସର୍ବଭୂତରେ ଆପଣଙ୍କୁ ଉପଲବ୍ଧି କରିଥାନ୍ତି ଏବଂ ଯେଉଁମାନେ ଆପଣଙ୍କଠାରେ ଅଭିନ୍ନ ରୂପରେ ସର୍ବଭୂତ ଉପଲବ୍ଧି କରିବାକୁ ଯତ୍ନବାନ୍, କ୍ରୋଧ ସେହି ସଜ୍ଜନମାନଙ୍କୁ ଦକ୍ଷତୁଲ୍ୟ ଅଭିଭୂତ କରିବାକୁ ସମର୍ଥ ହୁଏନାହିଁ । ୪୬ ।

ଯେଉଁମାନେ ଭେଦଦର୍ଶୀ, ଯେଉଁମାନଙ୍କର ଆଶୟ ଦୁଷ୍ଟ ଓ ଯେଉଁମାନେ କେବଳ କର୍ମାସକ୍ତ ଓ ଯେଉଁମାନେ ପରର ସୁଖରେ କାତର ସେମାନେ ଦୈବଦ୍ୱାରା ହତ ହୋଇଅଛନ୍ତି, ଆପଣଙ୍କ ତୁଲ୍ୟ ନିରୂପମ ସାଧୁ ପୁରୁଷମାନଙ୍କ ସେମାନଙ୍କୁ ବଧ କରିବା ଉଚିତ ନୁହେଁ । ୪୭ ।

ହେ ପ୍ରଭୋ ! ଦେଶ କାଳ ଅନୁସାରେ ଭଗବାନ୍ ଶ୍ରୀହରିଙ୍କର ଅଲଙ୍ଘ୍ୟମାୟା ପ୍ରଭାବରେ ମୋହିତ ହୋଇ ଯଦି କୌଣସି ବ୍ୟକ୍ତି ଭେଦ ବୁଦ୍ଧି ସମ୍ପନ୍ନ ହୁଏ, କିନ୍ତୁ ସାଧୁମାନେ ପରଦୁଃଖକାତରତା ଗୁଣରେ ସେମାନଙ୍କ ପ୍ରତି କୃପା କରିଥାନ୍ତି, ଦୈବାଧୀନରେ ତାହା ହୋଇଥାଏ, କିନ୍ତୁ ସେମାନେ ଅପରାଧୀ ହେଲେ ମଧ୍ୟ ସେମାନଙ୍କ ବିନାଶାର୍ଥ ପରାକ୍ରମ ପ୍ରକାଶ କରନ୍ତି ନାହିଁ ।୪୮ ।

ହେ ପ୍ରଭୋ ! ଆପଣ ପରମ ପୁରୁଷ ଭଗବାନଙ୍କର ଅଲଙ୍ଘ୍ୟ ମାୟା ଦ୍ୱାରା ବିମୋହିତ ହୁଅନ୍ତି ନାହିଁ, ଆପଣ ସର୍ବଜ୍ଞ । ଅତଏବ ଭଗବତ୍ ମାୟାମୋହିତ ହୋଇ ଯାହାଙ୍କର ଚିତ୍ତ ଧର୍ମରେଆସକ୍ତ, ସେମାନଙ୍କୁ ଅନୁଗ୍ରହ କରିବା ଆପଣଙ୍କର ଯୋଗ୍ୟ । ୪୯ ।

---

ଯେ ସାଧୁଜନେ କର୍ମ କରି
ହରି ପ୍ରଭାବେ ମୋଦ ଭରି
ସେ ଫଳ ତୋତେ ସମର୍ପନ୍ତି
ମାୟା ଉଛନ୍ନ କରିଯାନ୍ତି
ଯେ ଲୋଭବଶେ ତାହା ଚିନ୍ତି
ପଶୁଙ୍କ ପ୍ରାୟ ସେ ଭ୍ରମନ୍ତି

ସେ ତାହିଁ ସମ୍ଭାବେ ତୋତେ
ଏଣୁ ଭ୍ରମନ୍ତି ଏ ଜଗତେ ।୪୬।
ତୋତେ ନ ଜାଣି ପ୍ରଜାପତି
ଦୁର୍ମତି ଲଭିଲି ଦୁର୍ଗତି
ଆମ୍ଭ ଉକତି ହୃଦେ ଧରି
ଏହାକୁ ପ୍ରତିକାର କରି

ଏ ପ୍ରାଣୀ ଯଜ୍ଞଶାଳେ ମଲେ
ସଂସାରେ ଯଶ ତୋ ରହିଲେ
ଏବେ ମୋହରି ବୋଲ କରି
ଏହାର ଯଜ୍ଞ ତୁ ଉଦ୍ଧରି

କୁବଂଧ୍ୱରସ୍ୟୋଦ୍ଧରଣଂ ହତସ୍ୟ ଭୋସ୍ତ୍ୱୟାଽସମାପ୍ତସ୍ୟ ମନୋ ପ୍ରଜାପତେଃ।
ନ ଯତ୍ର ଭାଗଂ ତବ ଭାଗିନୋ ଦଦୁଃ କୁଯାଜିନୋ ଯେନ ମଖୋ ନିନୀୟତେ ।୫୦।
ଜୀବତାଦ୍ୟଜମାନୋଽୟଂ ପ୍ରପଦ୍ୟେତାକ୍ଷିଣୀ ଭଗଃ ।
ଭୃଗୋଃ ଶ୍ମଶ୍ରୂଣି ରୋହନ୍ତୁ ପୂଷ୍ଣୋ ଦନ୍ତାଶ୍ଚ ପୂର୍ବବତ୍ । ୫୧ ।
ଦେବାନାଂ ଭଗ୍ନଗାତ୍ରାଣାମୃତ୍ୱିଜାଂ ଚାୟୁଧାଶ୍ମଭିଃ ।
ଭବତାନୁଗୃହୀତାନାମାଶୁ ମନ୍ୟୋଽସ୍ତ୍ୱନାତୁରମ୍ । ୫୨ ।
ଏଷ ତେ ରୁଦ୍ର ଭାଗୋଽସ୍ତୁ ଯଦୁଚ୍ଛିଷ୍ଟୋଽଧ୍ୱରସ୍ୟ ବୈ ।
ଯଜ୍ଞସ୍ତେ ରୁଦ୍ର ଭାଗେନ କଳ୍ପତାମଦ୍ୟ ଯଜ୍ଞହନ୍ । ୫୩ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ରୁଦ୍ରସାନ୍ତ୍ୱନଂ ନାମ ଷଷ୍ଠୋଽଧ୍ୟାୟଃ । ୬ ।

---

ଆପଣ ଯଜ୍ଞଫଳଦାତା ଏବଂ ଯଜ୍ଞାଂଶ ଭାଗୀ, ଦକ୍ଷ ଯଜ୍ଞରେ କୁଯାଜ୍ଞିକମାନେ ଆପଣଙ୍କୁ ଆପଣଙ୍କ ଅଂଶ ପ୍ରଦାନ ନ କରିବାରୁ ଆପଣଙ୍କ କର୍ତ୍ତୃକ ଦକ୍ଷଯଜ୍ଞ ନଷ୍ଟ ଓ ଅସମାପ୍ତ ହୋଇଅଛି । ଅନୁଗ୍ରହକରି ଆପଣ ସେହି ଯଜ୍ଞ ଉଦ୍ଧାର କରନ୍ତୁ । ୫୦ ।

ଆପଣଙ୍କ କୃପାରେ ଏହି ଯଜମାନ ଦକ୍ଷ ପୁନର୍ବାର ଜୀବିତ ହେଉ, ଭଗଦେବ ତାହାଙ୍କର ଚକ୍ଷୁ ଦ୍ୱୟ ପୁନର୍ବାର ପ୍ରାପ୍ତହେଉନ୍ତୁ । ଭୃଗୁଙ୍କର ଶ୍ମଶ୍ରୁ ଏବଂ ପୂର୍ଯ୍ୟଙ୍କର ଦନ୍ତ ପୁନର୍ବାର ପୂର୍ବପରି ଉତ୍ପନ୍ନ ହେଉ ।୫୧।

ହେ ରୁଦ୍ର ! ଅସ୍ତ୍ରଦ୍ୱାରା ଏବଂ ପ୍ରସ୍ତରାଦି ଆଘାତରେ ଯେଉଁ ଦେବତା ଓ ଯଜ୍ଞ ପୁରୋହିତମାନଙ୍କର ଶରୀର ନଷ୍ଟ ହୋଇଅଛି; ସେମାନେ ଆପଣଙ୍କ ଅନୁଗ୍ରହରେ ଆରୋଗ୍ୟ ଲାଭ କରନ୍ତୁ । ୫୨ ।

ହେ ଦେବ ! ଏହି ଆପଣଙ୍କର ଯଜ୍ଞ ଭାଗ ଗ୍ରହଣ କରନ୍ତୁ, ଅଦ୍ୟାବଧି ଯଜ୍ଞର ଅବଶିଷ୍ଟ ଯାହା ରହିବ ତାହା ଆପଣଙ୍କର ଭାଗରୂପେ ପରିଗଣିତ ହେବ । ଆପଣଙ୍କର ଯଜ୍ଞଭାଗ ଆପଣ ଗ୍ରହଣ କରି ଯଜ୍ଞ ସମାପନ କରନ୍ତୁ । ୫୩ ।

---

ଏ ଯଜ୍ଞେ ତୋ ଭାଗ ନ କଲେ
ଏଣୁ ଏ ଜୀବ ଥାଉଁ ମଲେ
ଏହାଙ୍କୁ ଏ ଦଣ୍ଡ ଉଚିତ
ଯେଣୁ ନିନ୍ଦିଲେ ବିଶ୍ୱନାଥ ।୪୭-୫୦
ଏବେ ତୁ ଏହାକୁ ଜୀଆଅ
ଭଗକୁ ଚକ୍ଷୁଦାନ ଦିଅ
ଭୃଗୁର ଦାଢ଼ି ପୁଣି ଲେପ
ପୂଷାର ଦନ୍ତ ପାଟି ଥାପ ।୫୧।

ତୋହରି ଶସ୍ତ୍ର ବରଷଣେ
ଭଗ୍ନେ ଭାଙ୍ଗିଲେ ଦେବଗଣେ
ତୋ ତ୍ରାସେ ଛିନ୍ନ ଭିନ୍ନ ହୋଇ
ଭୁବନେ ନ ପାରିଲେ ରହି
ଋତ୍ୱିଜଗଣ ସେହି ମତ
ଏହାଙ୍କୁ ରଖ ବିଶ୍ୱନାଥ ।୫୨।
ଯଜ୍ଞେ ତୋ ରୁଦ୍ରଭାଗ ଶେଷେ
ସାଧିବା ମନ୍ତ୍ର ଉପଦେଶେ ।୫୩।

ଏମନ୍ତେ କହି ପଦ୍ମଯୋନି
ନମିଲେ ଦେବଗଣ ଘେନି
ସେ ରୁଦ୍ରଚରଣ-ପଙ୍କଜେ
ବ୍ରାହ୍ମଣ ଜଗନ୍ନାଥ ଭଜେ



## ସ ପ୍ତ ମ ଅ ଧ୍ୟା ୟ ।

ସପ୍ତମେ ବିଷ୍ଣୁରୁଦ୍ରାଭ୍ୟାଂ ସ୍ତୁତୋ ଦକ୍ଷଭବାଦ୍ଦିଭିଃ ।
ଯଜ୍ଞଂ ପ୍ରବର୍ତ୍ତୟାମାସ ଦକ୍ଷେଣେତି ନିରୂପ୍ୟତେ । ୦ । [ଶ୍ରୀଧରସ୍ୱାମୀ]

ଶ୍ରୀମୈତ୍ରେୟ ଉବାଚ ।

ଇତ୍ୟଜେନାନୁନୀତେନ ଭବେନ ପରିତୁଷ୍ୟତା ।
ଅଭ୍ୟଧାୟି ମହାବାହୋ ପ୍ରହସ୍ୟ ଶ୍ରୂୟତାମିତି । ୧ ।

ଶ୍ରୀମହାଦେବ ଉବାଚ ।

ନାଘଂ ପ୍ରଜେଶ ବାଲାନାଂ ବର୍ଣ୍ଣୟେ ନାନୁଚିନ୍ତୟେ ।
ଦେବମାୟାଭିଭୂତାନାଂ ଦଣ୍ଡସ୍ତତ୍ର ଧୃତୋ ମୟା । ୨ ।

---

### ଶ୍ରୀ ବିଷ୍ଣୁଙ୍କ କର୍ତ୍ତୃକ ଯଜ୍ଞ ସମ୍ପାଦନ ।

ସପ୍ତମ ଅଧ୍ୟାୟରେ ଭବ ଓ ଦକ୍ଷ ପ୍ରଭୃତିଙ୍କ ଦ୍ୱାରା ସ୍ତୁତ ହୋଇ ଭଗବାନ୍ ବିଷ୍ଣୁ ଆବିର୍ଭୂତ ହୋଇ ପୁନର୍ବାର ଯଜ୍ଞ ପ୍ରବର୍ତ୍ତନ କରାଇବା ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀ ମୈତ୍ରେୟ କହିଲେ :—

ହେ ମହାବାହୁ ବିଦୁର ! ବ୍ରହ୍ମା ଏହିରୂପେ ମହାଦେବଙ୍କୁ ସ୍ତବ କରିବାରୁ ସେ ତାହାଙ୍କର ଅନୁନୟ ବାକ୍ୟରେ ପରିତୁଷ୍ଟ ହୋଇ ଈଷତ୍ ହାସ୍ୟ ପୂର୍ବକ ଯାହା କହିଲେ ତାହା ତୁମ୍ଭେ ଶ୍ରବଣକର । ୧ ।

ଶ୍ରୀ ମହାଦେବ କହିଲେ :—

ହେ ପ୍ରଜାପାଳକ ! ଭଗବଦ୍ ମାୟାମୁଗ୍ଧ ବାଳକତୁଲ୍ୟ ଅଜ୍ଞ ବ୍ୟକ୍ତିମାନଙ୍କର ମୁଁ ଅପରାଧ କୌଣସି ପ୍ରକାରେ ବର୍ଣ୍ଣନା ବା ଚିନ୍ତା ମଧ୍ୟ କରେ ନାହିଁ । ତଥାପି ଦକ୍ଷଯଜ୍ଞରେ ଲୋକଶିକ୍ଷାର୍ଥ ମୁଁ ଦଣ୍ଡ ବିଧାନ କରିଅଛି । ୨ ।

---

ସପ୍ତମେ ବିଷ୍ଣୁ ଆଜ୍ଞା ଘେନି, ଦକ୍ଷ ଆରମ୍ଭେ ଯଜ୍ଞ ପୁଣି ।୦।

ଶ୍ରୀମୈତ୍ରେୟ ଉବାଚ—
ଏମନ୍ତେ ବ୍ରହ୍ମା ବୋଲ ଶୁଣି
ହସି ବୋଲନ୍ତି ଶୂଳପାଣି । ୧ ।
ଶ୍ରୀମହେଶ୍ୱର ଉବାଚ—
ହେ ବ୍ରହ୍ମା ମୋର ବୋଲ ଶୁଣ
ବର୍ଣ୍ଣିବା କି ବାଳକ ଗୁଣ
ବାଳକ ବୋଲି ଏହା ସହି
ଆନେ ସହିବ କାହା ଦେଖି
ଏ ଦକ୍ଷ କଲା କର୍ମ ଯେତେ
କେ ସହି ପାରିବ ଜଗତେ
ଯେଣୁ ଏ ତୋହର ସନ୍ତତି
ବୋଲାଇ ଦକ୍ଷ ପ୍ରଜାପତି
ତେଣୁ ସହିଲି ଆଜ ମୁହିଁ
ତୋହର ଭାବ ହୃଦେ ବହି
ଯେ ଦେବମାୟାରେ ମୋହିତ
ତାହାକୁ ଦଣ୍ଡ ମୋ ଉଚିତ । ୨ ।

ପ୍ରଜାପତେର୍ଦଗ୍ଧଶୀର୍ଷ୍ଣୋ ଭବତ୍ୱଜମୁଖଂ ଶିରଃ ।
ମିତ୍ରସ୍ୟ ଚକ୍ଷୁଷେକ୍ଷେତ ଭାଗଂ ସ୍ୱଂ ବର୍ହିଷୋ ଭଗଃ । ୩ ।
ପୂଷା ତୁ ଯଜମାନସ୍ୟ ଦଦ୍ଭିର୍ଜକ୍ଷତୁ ପିଷ୍ଟଭୁକ୍ ।
ଦେବାଃ ପ୍ରକୃତସର୍ବାଙ୍ଗା ଯେ ମ ଉଚ୍ଛେଷଣଂ ଦଦୁଃ । ୪ ।
ବାହୁଭ୍ୟାମଶ୍ୱିନୋଃ ପୂଷ୍ଣୋ ହସ୍ତାଭ୍ୟାଂ କୃତବାହବଃ ।
ଭବନ୍ତ୍ୱଧ୍ୱର୍ଯ୍ୟବଶ୍ଚାନ୍ୟେ ବସ୍ତଶ୍ମଶ୍ରୁର୍ଭୃଗୁର୍ଭବେତ୍ । ୫ ।

ଶ୍ରୀମୈତ୍ରେୟ ଉବାଚ ।

ତଦା ସର୍ବାଣି ଭୂତାନି ଶ୍ରୁତ୍ୱା ମିଢୁଷ୍ଟମୋଦିତମ୍ ।
ପରିତୁଷ୍ଟାତ୍ମଭିସ୍ତାତ ସାଧୁ ସାଧ୍ୱିତ୍ୟଥାବ୍ରୁବନ୍ । ୬ ।

---

ପ୍ରଜାପତି ଦକ୍ଷଙ୍କର ଶିର ଦଗ୍ଧ ହୋଇଅଛି, ତାହାଙ୍କର ଛାଗତୁଲ୍ୟ ମୁଖସମ୍ପନ୍ନ ମସ୍ତକ ହେଉ ଏବଂ ଭଗଦେବ ମିତ୍ର ଦେବତାଙ୍କର ଚକ୍ଷୁ ଦ୍ୱାରା ସେ ଯଜ୍ଞଦ୍ରବ୍ୟ ସମୂହ ଦର୍ଶନ କରନ୍ତୁ । ୩ ।

ସୂର୍ଯ୍ୟଦେବ ପିଷ୍ଟଦ୍ରବ୍ୟ ଭୋଜନକାରୀ ହେଉନ୍ତୁ ଅଥବା ଯଜମାନର ଦନ୍ତଦ୍ୱାରା ଭକ୍ଷଣ କରନ୍ତୁ ଏବଂ ଯେଉଁ ଦେବତାମାନେ ମୋତେ ଯଜ୍ଞାବଶିଷ୍ଟ ଉତ୍କୃଷ୍ଟ ଦ୍ରବ୍ୟ ପ୍ରଦାନ କରିବାକୁ ସ୍ୱୀକୃତ ହୋଇଅଛନ୍ତି, ସେମାନେ ସମ୍ୟକ୍‌ରୂପେ ସର୍ବାଙ୍ଗ ସମ୍ପନ୍ନ ହୁଅନ୍ତୁ । ୪ ।

ଅନ୍ୟାନ୍ୟ ଯେଉଁ ଋତ୍ୱିକ୍‌ମାନେ ଅଙ୍ଗହୀନ ହୋଇଅଛନ୍ତି ସେମାନେ ଅଶ୍ୱିନୀକୁମାର ଦ୍ୱୟଙ୍କର ବାହୁଦ୍ୱାରା ବାହୁବଶିଷ୍ଟ ଏବଂ ସୂର୍ଯ୍ୟଙ୍କର ହସ୍ତଦ୍ୱାରା ହସ୍ତଯୁକ୍ତ ହେଉନ୍ତୁ । ଭୃଗୁଙ୍କର ଶ୍ମଶ୍ରୁ, ଛାଗ ଶ୍ମଶ୍ରୁ ହେଉ । ୫ ।

ଶ୍ରୀ ମୈତ୍ରେୟ କହିଲେ :—

ହେ ବତ୍ସ ବିଦୁର ! ତଦନନ୍ତର ମହାଦେବଙ୍କ କଥିତ ବାକ୍ୟ ଶ୍ରବଣକରି ସମସ୍ତେ ସନ୍ତୁଷ୍ଟହୋଇ ସାଧୁ ସାଧୁ କହିବାକୁ ଲାଗିଲେ । ୬ ।

---

ଏବେ ସକଳ ଦେବେ ଯାଅ
ମୋହର ଆଜ୍ଞା ଶିରେ ବହ
ଦକ୍ଷର ଶିର ଯଜ୍ଞକୁଣ୍ଡେ
ଭସ୍ମ ହୋଇଲା ଅତ ଖଣ୍ଡେ
ଛାଗଳ ଶିର ତାର କନ୍ଧେ
ବସାଅ ମନ୍ତ୍ର ଅନୁବନ୍ଧେ
ଭଗର ଏକ ଚକ୍ଷୁ ରହୁ
ମୋର ମହିମା ଶିରେ ବହୁ

ଯଜ୍ଞର ଭାଗ ସେ ଭୁଞ୍ଜିବ
ମିତ୍ରଙ୍କେ ସେବୁ ସଦାଶିବ । ୩ ।
ପୂଷା ଯେ ତାର ଯଜମାନ-
ପାଖରେ ଖାଉ ପିଠାମାନ
ଦେବେ ପାଇବେ ନିଜରୂପ
ଯାହାର ଯେମନ୍ତ ସ୍ୱରୂପ । ୪ ।
ଅଶ୍ୱିନୀକୁମାରଙ୍କ ବାହୁ
ବାହୁଛିଣ୍ଡିଲା ଲୋକ ପାଉ

ପୂଷାର ହସ୍ତ ପାଇ ସେହୁ
ସକଳ କର୍ମ କରୁଥାଉ
ଛାଗଳ ଦାଢ଼ି ଦାଢ଼ି ଖଣ୍ଡେ
ଭୃଗୁର ରହିଥାଉ ତୁଣ୍ଡେ ।୫।

ଶ୍ରୀମୈତ୍ରେୟ ଉବାଚ—

ସମସ୍ତେ ରୁଦ୍ରବାକ୍ୟ ଶୁଣି
ସନ୍ତୋଷେ ସାଧୁ ସାଧୁ ଭଣି ।୬।

ତତୋ ମୀଢ୍ୱାଂସମାମନ୍ତ୍ର୍ୟ ସୁନାସୀରାଃ ସହର୍ଷିଭିଃ ।
ଭୂୟସ୍ତଦ୍ଦେବଯଜନଂ ସମୀଢ୍ୱଦ୍‌ବେଧସୋ ଯଯୁଃ । ୭ ।
ବିଧାୟ କାର୍ତ୍‌ସ୍ନେନ ଚ ତଦ୍‌ଯଦାହ ଭଗବାନ୍ ଭବଃ ।
ସନ୍ଦଧୁଃ କସ୍ୟ କାୟେନ ସବନୀୟପଶୋଃ ଶିରଃ । ୮ ।
ସନ୍ଧୀୟମାନେ ଶିରସି ଦକ୍ଷୋ ରୁଦ୍ରାଭିବୀକ୍ଷିତଃ ।
ସଦ୍ୟଃ ସୁପ୍ତ ଇବୋତ୍ତସ୍ଥୌ ଦଦୃଶେ ଚାଗ୍ରତୋ ମୃଡ଼ମ୍ । ୯ ।
ତଦା ବୃଷଧ୍ୱଜଦ୍ୱେଷକଲିଲାତ୍ମା ପ୍ରଜାପତିଃ ।
ଶିବାବଲୋକାଦଭବଚ୍ଛରଦ୍ଧ୍ରଦ ଇବାମଲଃ । ୧୦ ।
ଭବସ୍ତବାୟ କୃତଧୀର୍ନାଶକ୍ନୋଦନୁରାଗତଃ ।
ଔତ୍‌କଣ୍ଠ୍ୟାଦ୍‌ବାଷ୍ପକଲୟା ସଂପରେତାଂ ସୁତାଂ ସ୍ମରନ୍ । ୧୧ ।

---

ତଦନନ୍ତର ଦେବତାମାନେ ମହାଦେବଙ୍କୁ ଆମନ୍ତ୍ରଣ କରି ଶିବ ଓ ବ୍ରହ୍ମାଙ୍କ ସହିତ ପୁନର୍ବାର ଯଜ୍ଞସ୍ଥାନକୁ ଗମନ କରିଥିଲେ । ୭ ।

ତଦନନ୍ତର ଦେବତାମାନେ ଭଗବାନ୍ ଶିବଙ୍କର କଥା ଅନୁସାରେ ସମସ୍ତ କାର୍ଯ୍ୟ ସମ୍ୟକ୍‌ରୂପେ ସମ୍ପାଦନ କରି, ଦକ୍ଷଙ୍କ ଦେହରେ ଛାଗମୁଣ୍ଡ ଯୋଜନା କରିଥିଲେ । ୮ ।

ଦକ୍ଷଙ୍କର ମସ୍ତକ ସଂଲଗ୍ନ ହୁଅନ୍ତେ ରୁଦ୍ର ତାହାଙ୍କ ପ୍ରତି କୃପାଦୃଷ୍ଟି ନିକ୍ଷେପ କରିଥିଲେ । ରୁଦ୍ରଙ୍କର ଦୃଷ୍ଟିମାତ୍ରେ ଦକ୍ଷ ନିଦ୍ରାରୁ ଉଠିଲାପରି ସମ୍ମୁଖରେ ଭଗବାନ୍ ରୁଦ୍ରଙ୍କୁ ଦେଖିଥିଲେ । ୯ ।

ଦକ୍ଷଙ୍କର ଆତ୍ମା ମହାଦେବଙ୍କ ପ୍ରତି ବିଦ୍ୱେଷ ବଶତଃ ପୂର୍ବରୁ କଳୁଷିତ ହୋଇଥିଲା । କିନ୍ତୁ ମହାଦେବଙ୍କର ଦୃଷ୍ଟି ହେତୁ ତାହା ଶରତ୍‌କାଳୀନ ହ୍ରଦତୁଲ୍ୟ ନିର୍ମଳତା ଲାଭ କରିଥିଲା । ଦକ୍ଷ ଶିବଙ୍କର ସ୍ତବ କରିବାକୁ କୃତ ସଂକଳ୍ପ ହେଲେ, ମାତ୍ର ଆପଣାର ମୃତକନ୍ୟା ବିଷୟ ସ୍ମରଣକରି ଉତ୍କଣ୍ଠା ହେତୁ ତାହାଙ୍କର କଣ୍ଠ ବାଷ୍ପରୁଦ୍ଧ ହୋଇଥିଲା, ସେ ସ୍ତବ କରିବାକୁ ସମର୍ଥ ହେଲେ ନାହିଁ । ୧୦,୧୧ ।

---

ଇନ୍ଦ୍ର ସହିତେ ଋଷିଗଣ
ରୁଦ୍ରଙ୍କୁ କରି ଆମନ୍ତ୍ରଣ
ପୁଣି ଦକ୍ଷର ଯଜ୍ଞେ ମିଳି
ରୁଦ୍ର ସହିତେ ବ୍ରହ୍ମା ଚଳି ।୭।
ରୁଦ୍ରଙ୍କୁ ବସାଇ ଆସନେ
ତକ୍ଷଣେ ଶିବ ସୁପ୍ରସନ୍ନେ
ଦକ୍ଷର କଟେ ଛାଗଶିର
ମେଳନ୍ତ କରାଇଲେ ଶଙ୍କର ।୮।

ତକ୍ଷଣେ ପ୍ରଜାପତି ଅଙ୍ଗେ
ଜୀବ ପଶିଲା ପ୍ରାଣସଙ୍ଗେ
ଯେସନେ ସ୍ୱପନ୍ତୁ ପ୍ରାଣିମାନେ
ଉଠନ୍ତି ନିଦ୍ରା ଅବସାନେ
ଚକ୍ଷୁ ଘଷଇ ବେନି ହସ୍ତେ
ଶିବଙ୍କୁ ଦେଖିଲା ଅଗ୍ରତେ ।୯।
ସେ ଦକ୍ଷ ଶିବଦ୍ୱେଷ କରି
କଳୁଷ ଆତ୍ମା ଥିଲା ଧରି

ରୁଦ୍ର ଚାହାନ୍ତେ ତା ଶରୀର
ତକ୍ଷଣେ ହୋଇଲା ନିର୍ମଳ
ଶରଦ ହ୍ରଦ ପ୍ରାୟେ ଦିଶେ
ରୁଦ୍ରଙ୍କୁ ସ୍ତୁତି ମନତୋଷେ ।୧୦।
ତକ୍ଷଣେ ବେନି କରଯୋଡ଼ି
ଆନନ୍ଦେ ରୁଦ୍ର ପାଦେ ପଡ଼ି
ସ୍ତୁତି କରନ୍ତେ ଶକ୍ୟ ନୋହେ
କଣ୍ଠ ଗଦ୍‌ଗଦ ବାକ୍ୟ କହେ

କୃଚ୍ଛ୍ରାତ୍ ସଂସ୍ତଭ୍ୟ ଚ ମନଃ ପ୍ରେମବହ୍ୱଳିତଃ ସୁଧୀଃ ।
ଶଶଂସ ନିର୍ବ୍ୟଲୀକେନ ଭାବେନେଶଂ ପ୍ରଜାପତିଃ । ୧୨ ।
ଶ୍ରୀଦକ୍ଷ ଉବାଚ ।
ଭୂୟାନନୁଗ୍ରହ ଅହୋ ଭବତା କୃତୋ ମେ ଦଣ୍ଡସ୍ତ୍ୱୟା ମୟି ଭୃତୋ ଯଦପି ପ୍ରଲବ୍ଧଃ ।
ନ ବ୍ରହ୍ମବନ୍ଧୁଷୁ ଚ ବାଂ ଭଗବନ୍ନବଜ୍ଞା ତୁଭ୍ୟଂ ହରେଶ୍ଚ କୁତ ଏବ ଧୃତବ୍ରତେଷୁ ।୧୩।
ବିଦ୍ୟାତପୋବ୍ରତଧରାନ୍ ମୁଖତଃ ସ୍ମ ବିପ୍ରାନ୍ ବ୍ରହ୍ମାତ୍ମତତ୍ତ୍ୱମବିତୁଂ ପ୍ରଥମଂ ତ୍ୱମସ୍ରାକ୍ ।
ତଦ୍‌ବ୍ରାହ୍ମଣାନ୍ ପରମ ସର୍ବବିପତ୍ସୁ ପାସି ପାଲଃ ପଶୂନିବ ବିଭୋ ପ୍ରଗୃହୀତଦଣ୍ଡଃ ।୧୪।
ଯୋଽସୌ ମୟା ବିଦିତତତ୍ତ୍ୱଦୃଶା ସଭାୟାଂ କ୍ଷିପ୍ତୋ ଦୁରୁକ୍ତିବିଶିଖୈର୍ବିଗଣଯ୍ୟ ତନ୍ମାମ୍ ।
ଅର୍ବାକ୍ ପତନ୍ତମର୍ହତ୍ତମନିନ୍ଦୟାପାଦ୍‌ଦୃଷ୍ଟ୍ୟାର୍ଦ୍ରୟା ସ ଭଗବାନ୍ ସ୍ୱକୃତେନ ତୁଷ୍ୟେତ୍ ।୧୫

---

କନ୍ୟା ପ୍ରତି ସ୍ନେହବଶତଃ ତାହାଙ୍କର ଚିତ୍ତ ବ୍ୟାକୁଳହୋଇ ଉଠିଲା । ଅବଶେଷରେ ଦକ୍ଷ ଶୁଦ୍ଧ ବୁଦ୍ଧି ହୋଇ ଯତକଷ୍ଟରେ ଚିତ୍ତ ସଂଯମକରି ନିଷ୍କପଟ ଭାବରେ ମହାଦେବଙ୍କ ନିକଟରେ କ୍ଷମାଭିକ୍ଷା କରିଥିଲେ ।୧୨।

ଶ୍ରୀଦକ୍ଷ କହିଲେ;—

ହେ ଭଗବନ୍ ! ମୁଁ ଆପଣଙ୍କୁ ତିରସ୍କାର କରିଥିଲି, ମାତ୍ର ଆପଣ ମୋ ପ୍ରତି ଯେଉଁ ଦଣ୍ଡବିଧାନ କରିଅଛନ୍ତି, ତଦ୍ଦ୍ୱାରା ମୋ ପ୍ରତି ମହାନୁଗ୍ରହ ପ୍ରକାଶ କରିଅଛନ୍ତି, କାରଣ ଆପଣ ମୋତେ ଉପେକ୍ଷା ନ କରି ଶିକ୍ଷା ଦେଇଅଛନ୍ତି, ଏହା ମଧ୍ୟ ଆପଣଙ୍କର ଉପଯୁକ୍ତ, କାରଣ ଭଗବାନ୍ ଶ୍ରୀହରି ଅଧମ ବ୍ରାହ୍ମଣଙ୍କୁ ଉପେକ୍ଷା କରି ନ ଥାନ୍ତି, ମୋପରି ଯଜ୍ଞ ଦୀକ୍ଷିତ ବ୍ୟକ୍ତି ପ୍ରତି ଉପେକ୍ଷା ପ୍ରଦର୍ଶନ ଆପଣଙ୍କ ପକ୍ଷରେ କିପରି ସମ୍ଭବ ହୁଅନ୍ତା ? ।୧୩।

ହେ ପ୍ରଭୋ ! ଆପଣହିଁ ଅଧ୍ୟାତ୍ମ ବିଦ୍ୟାର ରକ୍ଷାନିମିତ୍ତ ବ୍ରହ୍ମରୂପେ ଅବତୀର୍ଣ୍ଣ ହୋଇ ବିଦ୍ୟା ତପସ୍ୟା ଓ ବ୍ରତସମ୍ପନ୍ନ ବ୍ରାହ୍ମଣମାନଙ୍କୁ ସର୍ବପ୍ରଥମେ ମୁଖରୁ ସୃଜନ କରିଅଛନ୍ତି, ପଶୁପାଳକ ଯେପରି ଦଣ୍ଡଧାରଣ ପୂର୍ବକ ପଶୁମାନଙ୍କୁ ରକ୍ଷାକରେ, ଆପଣ ସେହିପରି ସମସ୍ତ ପ୍ରକାର ବିପଦରୁ ବ୍ରାହ୍ମଣମାନଙ୍କୁ ରକ୍ଷାକରିଥାନ୍ତି ।୧୪।

ମୁଁ ତତ୍ତ୍ୱଜ୍ଞାନ ହୀନ, ସୁତରାଂ ଯଜ୍ଞସଭାରେ ଆପଣଙ୍କ ପ୍ରତି ଦୁର୍ବାକ୍ୟ ପ୍ରୟୋଗ କରିଥିଲି । ଆପଣ ପୂଜ୍ୟବ୍ୟକ୍ତିମାନଙ୍କ ଶ୍ରେଷ୍ଠ, ଆପଣଙ୍କୁ ନିନ୍ଦା କରି ମୁଁ ଅଧଃପତିତ ହୋଇଅଛି କିନ୍ତୁ ଆପଣ ମୋର ଅପରାଧ ସତ୍ତ୍ୱେ ମୋ ପ୍ରତି କୃପାଦୃଷ୍ଟି ନିକ୍ଷେପକରି ମୋତେ ରକ୍ଷା କରିଅଛନ୍ତି । ଭଗବନ୍ ! ଆପଣ ନିଜଗୁଣରେ ପରିତୁଷ୍ଟ ହେଉନ୍ତୁ । ୧୫ ।

---

ଚହିଁଲ ମନ ସ୍ଥିର କରି
ସତୀ ମରଣ କଥା ସ୍ମରି
କର୍ମ୍ମିଳ ଚିତ୍ତ ପ୍ରଜାପତି
ରୁଦ୍ରଙ୍କୁ ସ୍ନେହିକରେସ୍ତୁତି ।୧୧,୧୨।
ଶ୍ରୀଦକ୍ଷଉବାଚ—
ହେ ନାଥ ଶୁଣ ବିଶ୍ୱଦେହ
ତୁ ମତେ କଲୁ ଅନୁଗ୍ରହ
ମୁଁ ଯେ ହୋଇଲି ଜ୍ଞାନହତ
ମୋତେ ଦଣ୍ଡିବା ତୋ ଉଚିତ

ତୋତେ ନିନ୍ଦିଲି ଗର୍ବ ବହି
ମୋର କୁଶଳ ଆଉ କାହିଁ
ଅଭୟ ତୋର ପଦ୍ମପାଦ
ମୁଁ ତହିଁ କଲି ଅପରାଧ ।୧୩।
ବ୍ରାହ୍ମଣ ତୋର ମୁଖୁଁ ଜାତ
ସାଧନ୍ତି ବିଦ୍ୟା ତପ ବ୍ରତ
ତାଙ୍କୁ ବିପଦୁଁ ତୁମ୍ଭେ ରଖ
ଯେମନ୍ତେ ପଶୁଙ୍କୁ ପାଳକ ।୧୪।

ସଭାର ମଧ୍ୟେ ମୁହିଁ ତୋତେ
ନିନ୍ଦା ଯେ କଲି ଦୁଷ୍ଟ ଚିତ୍ତେ
ନିନ୍ଦିତ ବାକ୍ୟବାଣେ ତୋତେ
ପ୍ରହାର କଲି ମୂଢ଼ଚିତ୍ତେ
ସେ ଫଳ ପାଇଲି ପ୍ରତ୍ୟକ୍ଷେ
ଏ ଋଷିଗଣଙ୍କ ସମ୍ମୁଖେ
କୃପା ଦୃଷ୍ଟିରେ ମୋତେ ଚାହିଁ
ଏଥୁଁ ଉଦ୍ଧରି ତୋଷ ହୋଇ ।୧୫।

ଶ୍ରୀମୈତ୍ରେୟ ଉବାଚ ।

କ୍ଷମାପ୍ୟୈବଂ ସ ମୀଢ଼୍‌ବାଂସ ବ୍ରହ୍ମଣା ଚାନୁମନ୍ତ୍ରିତଃ ।
କର୍ମସନ୍ତାନୟାମାସ ସୋପାଧ୍ୟାୟର୍ତ୍ତ୍ୱିଗାଦିଭିଃ । ୧୬ ।
ବୈଷ୍ଣବଂ ଯଜ୍ଞସନ୍ତତ୍ୟୈ ତ୍ରିକପାଲଂ ଦ୍ୱିଜୋତ୍ତମାଃ ।
ପୁରୋଡାଶଂ ନିରବପନ୍ ବୀରସଂସର୍ଗଶୁଦ୍ଧୟେ । ୧୭ ।
ଅଧ୍ୱର୍ୟୁଣାତ୍ତହବିଷା ଯଜମାନୋ ବିଶାଂପତେ ।
ଧିୟା ବିଶୁଦ୍ଧୟା ଦଧ୍ୟୌ ତଥା ପ୍ରାଦୁରଭୂଦ୍ଧରିଃ । ୧୮ ।
ତଦା ସ୍ୱପ୍ରଭୟା ତେଷାଂ ଦ୍ୟୋତୟନ୍ତ୍ୟା ଦିଶୋ ଦଶ ।
ମୁଷ୍ଣଂସ୍ତେଜ ଉପାନୀତସ୍ତାର୍କ୍ଷ୍ୟେଣ ସ୍ତୋତ୍ରବାଜିନା । ୧୯ ।

---

ଶ୍ରୀ ମୈତ୍ରେୟ କହିଲେ :—

ଦକ୍ଷ ଏହିପରି ମହାଦେବଙ୍କୁ ସ୍ତୁତି କରି ବ୍ରହ୍ମାଙ୍କର ଆଦେଶ ଅନୁସାରେ ଉପାଧ୍ୟାୟ ଓ ଋତ୍ୱିକ-ମାନଙ୍କ ସହିତ ପୁନର୍ବାର ଯଜ୍ଞ ଆରମ୍ଭ କରିଥିଲେ । ୧୬ ।

ବ୍ରାହ୍ମଣମାନେ ଯଜ୍ଞ ବିସ୍ତାର ନିମିତ୍ତ ଏବଂ ରୁଦ୍ର ପାର୍ଷଦ ପ୍ରମଥମାନଙ୍କ ସଂସର୍ଗ ହେତୁ ଦୋଷ ଶୁଦ୍ଧି ନିମିତ୍ତ ବିଷ୍ଣୁ ବିଷୟକ ତ୍ରିକପାଳ ଓ ପୁରୋଡ଼ାଶ ଦ୍ୱାରା ହୋମ ସାଧନ କରିଥିଲେ । ୧୭ ।

ହେ ବିଦୁର ! ଯଜମାନ ଦକ୍ଷ ଯଜୁର୍ବେଦୀୟ ପୁରୋହିତମାନଙ୍କ ସହିତ ଯଜ୍ଞ ହବି ଗ୍ରହଣ କରି ବିଶୁଦ୍ଧ ଚିତ୍ତରେ ଧ୍ୟାନସ୍ଥ ହେବା ମାତ୍ରେ ଯେଉଁରୂପ ଧ୍ୟାନ କଲେ, ତାହା ତତ୍‌କ୍ଷଣାତ୍ ପ୍ରାଦୁର୍ଭୂତ ହେଲା । ୧୮

ସେତେବେଳେ ଶ୍ରୀହରିଙ୍କର ଶରୀର ପ୍ରଭା ଦ୍ୱାରା ଦଶଦିଗ ସମୁଜ୍ଜ୍ୱଳ ହୋଇ ଉଠିଲା ଏବଂ ତତ୍ରସ୍ଥ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କର ପ୍ରଭାବ ଖର୍ବୀଭୂତ ହେଲା । ବୃହତ୍ ପକ୍ଷ ବିଶିଷ୍ଟ ଗରୁଡ଼ ପୃଷ୍ଠରେ ଆରୋହଣ କରି ଶ୍ରୀହରି ସେଠାରେ ଉପସ୍ଥିତ ହେଲେ । ୧୯ ।

---

ଶ୍ରୀମୈତ୍ରେୟ ଉବାଚ—

ଏମନ୍ତେ ରୁଦ୍ରେ ସ୍ତୁତି କରି
ପୁଣିହିଁ ଯଜ୍ଞେ ବିପ୍ର ବରି
ବିଷ୍ଣୁ ସନ୍ତୋଷେ ବିପ୍ରଗଣେ
ପୂର୍ବେ କଳ୍ପିତ ବରଣେ

ପୂଜିଲେ ମନ୍ତ୍ରର ବିଶ୍ୱାସେ
ଯେ ପୁରାତନ ଇତିହାସେ
ସକଳ ବସି ଶୁଦ୍ଧ ମନେ
ଅଗ୍ନି ପୂଜିଲେ ସାବଧାନେ ।୧୬,୧୭
ଅନଳରୂପେ ନାରାୟଣ
ସାକ୍ଷାତେ ହୋଇଲେ ପ୍ରସନ୍ନ

ତେଜେ ବିରାଜେ ଦଶ ଦିଶ
ଅନନ୍ତ ହୋଇଲେ ପ୍ରକାଶ
ନିଶ୍ଚଳ ଗରୁଡ଼ ଆସନ
ଶ୍ୟାମ ସୁନ୍ଦର ତନୁ ବର୍ଣ୍ଣ
କିରୀଟ ରବି ତେଜ ଗଞ୍ଜେ
ମକର କୁଣ୍ଡଳ ବିରାଜେ

ଶ୍ୟାମୋ ହିରଣ୍ୟରଶନୋଽର୍କକିରୀଟଜୁଷ୍ଟୋ ନୀଳାଳକଭ୍ରମରମଣ୍ଡିତକୁଣ୍ଡଳାସ୍ୟଃ ।
ଶଙ୍ଖାବ୍‌ଜଚକ୍ରଶରଚାପଗଦାସିଚର୍ମବ୍ୟଗ୍ରୈର୍ହିରଣ୍ମୟଭୁଜୈରିବ କର୍ଣ୍ଣିକାରଃ । ୨୦ ।
ବକ୍ଷସ୍ୟଧିଶ୍ରିତବଧୂର୍ବନମାଲ୍ୟୁଦାରହାସାବଲୋକକଲୟା ରମୟଂଶ୍ଚ ବିଶ୍ୱମ୍ ।
ପାର୍ଶ୍ୱଭ୍ରମଦ୍‌ବ୍ୟଜନଚାମରରାଜହଂସଃ ଶ୍ୱେତାତପତ୍ରଶଶିନୋପରି ରଜ୍ୟମାନଃ ।୨୧।
ତମୁପାଗତମାଲକ୍ଷ୍ୟ ସର୍ବେ ସୁରଗଣାଦୟଃ ।
ପ୍ରଣେମୁଃ ସହସୋତ୍ଥାୟ ବ୍ରହ୍ମେନ୍ଦ୍ରତ୍ର୍ୟକ୍ଷନାୟକାଃ । ୨୨ ।
ତତ୍ତେଜସା ହତରୁଚଃ ସନ୍ନଜିହ୍ୱାଃ ସସାଧ୍ୱସାଃ ।
ମୂର୍ଦ୍ଧ୍ନା ଧୃତାଞ୍ଜଳିପୁଟା ଉପତସ୍ଥୁରଧୋକ୍ଷଜମ୍ । ୨୩ ।
ଅପ୍ୟର୍ବାଗ୍‌ବୃତ୍ତୟୋ ଯସ୍ୟ ମହି ହ୍ୟାତ୍ମଭୁବାଦୟଃ ।
ଯଥାମତି ଗୃଣନ୍ତି ସ୍ମ କୃତାନୁଗ୍ରହବିଗ୍ରହମ୍ । ୨୪ ।

---

ସେହି ଶ୍ରୀହରି ଶ୍ୟାମବର୍ଣ୍ଣ, ତାହାଙ୍କର କଟି ଦେଶରେ ହିରଣ୍ୟ ତୁଲ୍ୟ କାଞ୍ଚିଦାମ ଦୋଦୁଲ୍ୟମାନ, ତାହାଙ୍କର ମସ୍ତକରେ ସୂର୍ଯ୍ୟତୁଲ୍ୟ କିରୀଟ ଶୋଭିତ ଏବଂ ମୁଖମଣ୍ଡଳ କୁଣ୍ଡଳ ମଣ୍ଡିତ ଏବଂ ନୀଳବର୍ଣ୍ଣ ଅଳକାବଳି ତୁଲ୍ୟ ଅଳକକୁଳ ଦ୍ୱାରା ଅଳଂକୃତ, ତାହାଙ୍କର ହିରଣ୍ମୟବାହୁମାନଙ୍କରେ ଭୃତ୍ୟରକ୍ଷଣ ନିମିତ୍ତ ଶଙ୍ଖ, ଚକ୍ର, ଗଦା, ପଦ୍ମ, ଧନୁର୍ବାଣ ଓ ଖଡ଼ଗଚର୍ମ ବିରାଜିତ ହୋଇ ସେ ପ୍ରସ୍ଫୁଟିତ କର୍ଣ୍ଣିକାର ପୁଷ୍ପ ବୃକ୍ଷତୁଲ୍ୟ ଶୋଭା ଧାରଣ କରିଥିଲେ । ୨୦ ।

ତାହାଙ୍କର ବକ୍ଷସ୍ଥଳରେ ସ୍ୱୟଂ ଲକ୍ଷ୍ମୀ ବିରାଜିତା, ସେ ବନମାଳାଧାରୀ ହୋଇ ଉଦାର ହାସ୍ୟ ଏବଂ ଉତ୍କୃଷ୍ଟ କଟାକ୍ଷ ଦ୍ୱାରା ବିଶ୍ୱପ୍ରୀତି ସମ୍ପାଦନ କରୁଥିଲେ, ତାହାଙ୍କର ଉଭୟପାର୍ଶ୍ୱରେ ବ୍ୟଜନ ଏବଂ ଚାମରରାଜହଂସ ତୁଲ୍ୟ ଆନ୍ଦୋଳିତ ହେଉଥିଲା ଏବଂ ତାହାଙ୍କର ମସ୍ତକୋପରି ଚନ୍ଦ୍ରତୁଲ୍ୟ ଶ୍ୱେତଛତ୍ର ଶୋଭା ବୃଦ୍ଧିକରୁଥିଲା ॥

ସେହି ଭଗବାନ୍ ଶ୍ରୀହରିଙ୍କୁ ସମାଗତ ଦେଖି ବ୍ରହ୍ମା, ଇନ୍ଦ୍ର ଓ ଶିବ ପ୍ରମୁଖ ଦେବଗଣ ସସମ୍ଭ୍ରମରେ ଗାତ୍ରୋତ୍ଥାନ କରି ନମସ୍କାର କଲେ । ୨୨ ।

ଶ୍ରୀହରିଙ୍କର ତେଜରେ ସମସ୍ତଙ୍କର ତେଜ ମ୍ଳାନ ହେଲା । ସେମାନେ ମହିମା ଗାମ୍ଭୀର୍ଯ୍ୟରେ ଭୟ ବିହ୍ୱଳ ଚିତ୍ତ ହୋଇ ଗଦ୍‌ଗଦ ବାକ୍ୟରେ କୃତାଞ୍ଜଳିପୁଟରେ ଅଧୋକ୍ଷଜ ଶ୍ରୀଭଗବାନଙ୍କୁ ସ୍ତୁତି କଲେ । ୨୩ ।

ବ୍ରହ୍ମାଦି ଦେବତାମାନେ ଯାହାଙ୍କର ମହିମାରେ କ୍ଷୁଦ୍ରବୃତ୍ତିସମ୍ପନ୍ନ ବୋଲି ପ୍ରତିପନ୍ନ ହୁଅନ୍ତି, ଯେ ଭକ୍ତଗଣଙ୍କୁ ଅନୁଗ୍ରହ କରିବା ନିମିତ୍ତ କୃପାପୂର୍ବକ ନିଜର ବିଗ୍ରହ ପ୍ରକାଶ କରିଥାନ୍ତି, ସେହି ଶ୍ରୀହରିଙ୍କୁ ଦେବତାମାନେ ଯଥାଶକ୍ତି ସ୍ତବ କରିବାକୁ ଲାଗିଲେ । ୨୪ ।

---

ଶଙ୍ଖ କମଳ ଚକ୍ର ବାଣ
ସ୍ୱସ ଖଡ଼ଗ ଗଦା ଚର୍ମ
ହିରଣ୍ୟମୟ ଗଦା ଶୋହେ
ପୁଷ୍ପିତ କର୍ଣ୍ଣିକାରପ୍ରାୟେ ।୧୮,୨୦।
କମଳା ସେବେ ବକ୍ଷଃସ୍ଥଳେ
ସେ ବକ୍ଷ ଶୋଭେ ବନମାଳେ
ବିଶ୍ୱମଙ୍ଗଳ ରୂପ ସାର
ହୃଦେ ଲମ୍ବିଛି ରତ୍ନହାର

ଉପରେ ଶୋହେ ଶ୍ୱେତ ଛତ୍ର
ଦିଶଇ ଶୁଭ୍ର କି ଶୀତାଂଶୁ ।୨୧।
ଏମନ୍ତ ବିଷ୍ଣୁରୂପ ଚାହିଁ
ସକଳେ ଶିରେ କର ଦେଇ
ଉଠିଲେ ପଦ୍ମଯୋନି ହର
ସଙ୍ଗତେ ଘେନି ସୁନାସୀର

ପ୍ରଣାମ କରି ଜଣେ ଜଣେ
ବନ୍ଦିଲେ ବିଷ୍ଣୁର ଚରଣେ ।୨୨।
ବିଷ୍ଣୁର ତେଜେ ତେଜ ହୀନ
ସଭିଏଁ ଥୋକାଏ ମଉନ
କେହୁ ଅଞ୍ଜଳି ଶିରେ ଦେଇ
ସ୍ତୁତି କରନ୍ତି ବିଷ୍ଣୁ ଚାହିଁ ।୨୩,୨୪

ଦକ୍ଷୋ ଗୃହୀତାର୍ହଣସାଦନୋତ୍ତମଂ ଯଜ୍ଞେଶ୍ୱରଂ ବିଶ୍ୱସୃଜାଂ ପରଂ ଗୁରୁମ୍ ।
ସୁନନ୍ଦନନ୍ଦାଦ୍ୟନୁଗୈର୍ବୃତଂ ମୁଦା ଗୃଣନ୍ ପ୍ରପେଦେ ପ୍ରଯତଃ କୃତାଞ୍ଜଳିଃ । ୨୫ ।

ଶ୍ରୀଦକ୍ଷ ଉବାଚ ।

ଶୁଦ୍ଧଂ ସ୍ୱଧାମ୍ନ୍ୟୁପରତାଖିଳବୁଦ୍ଧ୍ୟବସ୍ଥଂ ଚିନ୍ମାତ୍ରମେକମଭୟଂ ପ୍ରତିଷିଧ୍ୟ ମାୟାମ୍ ।
ତିଷ୍ଠଂସ୍ତୟୈବ ପୁରୁଷତ୍ୱମୁପେତ୍ୟ ତସ୍ୟାମାସ୍ତେ ଭବାନପରିଶୁଦ୍ଧ ଇବାତ୍ମତନ୍ତ୍ରଃ ।୨୬।

ଶ୍ରୀଋତ୍ୱିଜ ଊଚୁଃ ।

ତତ୍ତ୍ୱଂ ନ ତେ ବୟମନଞ୍ଜନ ରୁଦ୍ରଶାପାତ୍ କର୍ମଣ୍ୟବଗ୍ରହଧିୟୋ ଭଗବନ୍ ବିଦାମଃ ।
ଧର୍ମୋପଲକ୍ଷଣମିଦଂ ତ୍ରିବୃଦଧ୍ୱରାଖ୍ୟଂ ଜ୍ଞାତଂ ଯଦର୍ଥମଧିଦୈବମଦୋ ବ୍ୟବସ୍ଥାଃ ।୨୭

---

ପ୍ରଜାପତି ଦକ୍ଷ ସଯତଚିତ୍ତରେ କୃତାଞ୍ଜଳି ପୂର୍ବରେ ଉତ୍ତମ ପାତ୍ରରେ ପୂଜା ଦ୍ରବ୍ୟାଦି ଆନୟନ କରି ବିଶ୍ୱସ୍ରଷ୍ଟାମାନଙ୍କର ପରମଗୁରୁ ଓ ସୁନନ୍ଦାଦି ଦେବଗଣ ପରିବୃତ ଭଗବାନ୍ ବିଷ୍ଣୁଙ୍କୁ ଆନନ୍ଦରେ ସ୍ତୁତିକରି ତାହାଙ୍କର ଶରଣାପନ୍ନ ହୋଇଥିଲେ । ୨୫ ।

ଶ୍ରୀ ଦକ୍ଷ କହିଲେ :—

ହେ ଭଗବନ୍ ! ଆପଣ ସ୍ୱୀୟ ସ୍ୱରୂପ ଶକ୍ତି ବିଭବରେ ବୁଦ୍ଧିର ସମସ୍ତ ଅବସ୍ଥାକୁ ଅତିକ୍ରମକରି ଅବସ୍ଥାନ କରିଥାନ୍ତି, ଆପଣ ଶୁଦ୍ଧ ଚୈତନ୍ୟ ସ୍ୱରୂପ, ଆପଣ ଅଦ୍ୱିତୀୟ ଏବଂ ଅଭୟସ୍ୱରୂପ, ଆପଣ ମାୟାକୁ ଅଭିଭୂତକରି ସମ୍ପୂର୍ଣ୍ଣ ସ୍ୱାଧୀନଭାବରେ ଅବସ୍ଥାନ କଲେ ମଧ୍ୟ ପୁରୁଷରୂପେ ପ୍ରକୃତି ଈକ୍ଷଣାଦିରେ ନିଯୁକ୍ତ ଥାନ୍ତି ବୋଲି ପ୍ରାକୃତ ଲୋକରେ ଆପଣ ଶୁଦ୍ଧ ବୋଲି ପ୍ରତୀୟମାନ ହୁଅନ୍ତି । ୨୬ ।

ଋତ୍ୱିକମାନେ କହିଲେ :—

ହେ ନିରଞ୍ଜନ ! ଭଗବାନ୍ ଶିବଙ୍କ ଅଭିଶାପରେ ଆମ୍ଭମାନଙ୍କର ବୁଦ୍ଧି କ୍ରମେ ଲୁପ୍ତ ହେବାରୁ ଆମ୍ଭେମାନେ ଆପଣଙ୍କର ତତ୍ତ୍ୱ ଅବଗତ ନୋହୁଁ । କିନ୍ତୁ ଆମ୍ଭେମାନେ ବେଦ ପ୍ରତିପାଦ୍ୟ ଓ ଧର୍ମର ଉପଲକ୍ଷଣ ଭୂତ ଆପଣଙ୍କର ଯଜ୍ଞ ମୂର୍ତ୍ତିକୁ ବିଶେଷରୂପେ ଅବଗତ ଅଛୁଁ । ଆପଣ ଯଜ୍ଞସିଦ୍ଧି ନିମିତ୍ତ ବିଭିନ୍ନ ଦେବାଧିକାରରେ ଯଥୋଚିତ ଯଜ୍ଞଭାଗାଦି ବ୍ୟବସ୍ଥା କରି ଅଛନ୍ତି । ୨୭ ।

---

ଦକ୍ଷ ମିଳଇ ଅର୍ଘ୍ୟ ଘେନି
ତୁଲେ ଅଶେଷ ବ୍ରହ୍ମମୁନି
ସୁନନ୍ଦ ଆଦି ପାରିଷଦେ
ମିଳିଲେ ଜୟ ଜୟ ନାଦେ
ଦକ୍ଷ ଆନନ୍ଦେ କରଯୋଡ଼ି
ବୋଲଇ ବିଷ୍ଣୁ ପାଦେ ପଡ଼ି ।୨୫

ଶ୍ରୀଦକ୍ଷ ଉବାଚ—

ତୁ ନାଥ ଶୁଦ୍ଧ ଚଇତନ୍ୟ
ନିର୍ମ୍ମଳ ନିତ୍ୟ ନିରଞ୍ଜନ
ଭେଦ ବିହୀନ ତୁ ଅଭୟ
ଏ ବିଶ୍ୱ ପୂର୍ଣ୍ଣ ତୋର ଦେହ
କେ ତୋତେ ଜାଣିବ ସଂସାରେ
ତୁ ଥାଉ ମାୟା ଅତି ଦୂରେ ।୨୬

ଶ୍ରୀଋତ୍ୱିଜା ଊଚୁଃ—

ହେନାଥ ରୁଦ୍ର ଶାପେ ଆମ୍ଭେ
ବୁଝିଲୁ ତୋର ମାୟା ଦମ୍ଭେ
ନିରତେ କର୍ମ୍ମେ ବଶ ହୋଇ
ତୋ ଭାବେ ଆମ୍ଭ ଜ୍ଞାନ ନାହିଁ
ତ୍ରିବୃତ ଧର୍ମ୍ମର ଲକ୍ଷଣ
ଏ ଯଜ୍ଞ କର୍ମ୍ମେ ଆମ୍ଭ ମନ
ଏ ତୋର ରୂପ ଭବଗ୍ରାହୀ
ଆମ୍ଭେ ଜାଣିଲୁଁ ଅବା କାହିଁ ।୨୭

ଶ୍ରୀସଦସ୍ୟା ଊଚୁଃ ।

ଉତ୍ପତ୍ତ୍ୟଧ୍ୱନ୍ୟଶରଣ ଉରୁକ୍ଲେଶଦୁର୍ଗେଽନ୍ତକୋଗ୍ର-
ବ୍ୟାଲାନ୍ୱିଷ୍ଟେ ବିଷୟମୃଗତୃଷ୍ଣ୍ୟାତ୍ମଗେହୋରୁଭାରଃ ।
ଦ୍ୱନ୍ଦ୍ୱଶ୍ୱଭ୍ରେ ଖଲମୃଗଭୟେ ଶୋକଦାବେଽଜ୍ଞସାର୍ଥଃ-
ପାଦୌକସ୍ତେ ଶରଣଦ କଦା ଯାତି କାମୋପସୃଷ୍ଟଃ । ୨୮ ।

ଶ୍ରୀରୁଦ୍ର ଉବାଚ ।

ତବ ବରଦ ବରାଙ୍ଘ୍ରାବାଶିଷେହାଖିଲାର୍ଥେ-
ହ୍ୟପି ମୁନିଭିରସକ୍ତୈରାଦରେଣାର୍ହଣୀୟେ ।
ଯଦି ରଚିତଧିୟଂ ମାବିଦ୍ୟଲୋକୋଽପବିଦ୍ଧଂ-
ଜପତି ନ ଗଣୟେ ତତ୍ ତ୍ୱତ୍ପରାନୁଗ୍ରହେଣ । ୨୯ ।

ସଦସ୍ୟମାନେ କହିଲେ :—

ହେ ଆଶ୍ରୟପ୍ରଦ ! ଏହି ସଂସାରପଥ ଦୁର୍ଗମ, ଏଥିରେ ବିଶ୍ରାମର ସ୍ଥାନ ନାହିଁ, ଘୁରୁତର କ୍ଲେଶ ସ୍ୱରୂପ ଦୁର୍ଗମସ୍ଥାନ ଦ୍ୱାରା ଏହା ସର୍ବଦା ପରିବ୍ୟାପ୍ତ । ଅନ୍ତକସ୍ୱରୂପ ଭୀଷଣ କାଳସର୍ପ ସର୍ବଦା ଏହାପ୍ରତି ଲକ୍ଷ୍ୟ ରଖିଥାଏ, ବିଷୟସ୍ୱରୂପ ଅଗଣ୍ୟ ମୃଗତୃଷ୍ଣା ଏଠାରେ ଜୀବକୁ ସତତ ପ୍ରଲୋଭିତ କରେ, ଏହା ସୁଖ ଦୁଃଖାଦି ଗର୍ତ୍ତଦ୍ୱାରା ପୂର୍ଣ୍ଣ, ସେଥିରେ ପୁଣି ଖଳ ବ୍ୟାଘ୍ରାଦିଭୟ ସର୍ବଦା ବିଦ୍ୟମାନ ଏବଂ ଶୋକଦାବାଗ୍ନି ଏଠାରେ ନିୟତ ପ୍ରଜ୍ୱଳିତ, ଅଜ୍ଞ ବ୍ୟକ୍ତିମାନେ ଜନ୍ମ ମରଣାଦି ଲକ୍ଷଣଯୁକ୍ତ ଏହି ସଂସାର ମାର୍ଗରେ ଦେହ ଓ ଗେହ ସ୍ୱରୂପ ଭୀଷଣତା ଦ୍ୱାରା ଆକ୍ରାନ୍ତ ଏବଂ କାମ ପ୍ରପୀଡ଼ିତ ହୋଇ ବାସ କରନ୍ତି, ଆହା ! ସେମାନେ କେତେଦିନେ ଆପଣଙ୍କର ଚରଣଆଶ୍ରୟ ଲାଭ କରିବେ ? । ୨୮ ।

ଶ୍ରୀରୁଦ୍ର କହିଲେ :—

ହେ ବରଦ ! ଆପଣଙ୍କର ଶ୍ରେଷ୍ଠଚରଣ ପୁରୁଷାର୍ଥସାଧକ,ତେଣୁ ନିଷ୍କାମମୁନିମାନେ ପରମସମାଦରରେ ତାହାଙ୍କର ପୂଜା କରିଥାନ୍ତି, ଆପଣଙ୍କର ସେହି ସର୍ବାଭୀଷ୍ଟପ୍ରଦ ଚରଣରେ ମୋର ଚିତ୍ତ ସଂଲଗ୍ନ ରହିଅଛି, ସେହିକାରଣରୁ ମୂର୍ଖମାନେ ମୋତେ ସଦାଚାରହୀନ ବୋଲି ଜଳ୍ପନା କଲେ ମଧ୍ୟ ମୁଁ ଆପଣଙ୍କ କୃପାରୁ ତାହା ଗ୍ରାହ୍ୟ କରେ ନାହିଁ । ୨୯ ।

ତକ୍ଷଣେ ସଭ୍ୟ ଲୋକେ ଉଠି
ବିଷ୍ଣୁଙ୍କୁ ଦେଇ ତୁଲ୍ୟଦୃଷ୍ଟି

ଶ୍ରୀସଦସ୍ୟା ଊଚୁଃ—

ହେ ନାଥ ତୋର ମାୟାବଳେ
ଏ ଜୀବ ଭ୍ରମେ ଏ ଶୟନେ
ଏ ଦୁଃଖ ସୁଖ ରୂପ ଗର୍ତ୍ତେ
ବିଷୟ ମୃଗତୃଷ୍ଣା ପଥେ
ଶୋକ ଦାବାଗ୍ନି ଦହ୍ୟମାନ
କାମେ ଚେଷ୍ଟିତ ଅନୁକ୍ଷଣ
ନିରତେ ଥିଲେ ଆତ୍ମସୁଖ
ହୁଅଇ ଧର ପଦ୍ମମୁଖ । ୨୮ ।

ଶ୍ରୀରୁଦ୍ର ଉବାଚ—

ତୋହର ଚରଣ ଭଗବାନ
ଆଶିଷଫଳେ ମୁନିଜନ
ଅଖିଳ କାମେ ଅନାସକ୍ତ
ଆଦରେ ପୂଜନ୍ତି ନିରତ
ସେ ପାଦପଦ୍ମ ଚିତ୍ତେ ଧରି
ନ ଗଣେ ଅଜ୍ଞଜନ ଗାଳି
ବର୍ତ୍ତଇ ତୋ ଚରଣ ଆଶେ
ନିରତେ ରହଇ ସନ୍ତୋଷେ ୨୯।

ଶ୍ରୀଭୃଗୁରୁବାଚ ।

ଯନ୍ମାୟୟା ଗହନୟାପହୃତାତ୍ମବୋଧା ବ୍ରହ୍ମାଦୟସ୍ତନୁଭୃତସ୍ତମସି ସ୍ୱପନ୍ତଃ ।
ନାତ୍ମନ୍ ଶ୍ରିତଂ ତବ ବିଦନ୍ତ୍ୟଧୁନାପି ତତ୍ତ୍ୱଂ ସୋଽୟଂ ପ୍ରସୀଦତୁ ଭବାନ୍ ପ୍ରଣତାତ୍ମବନ୍ଧୁଃ ।୩୦

ଶ୍ରୀବ୍ରହ୍ମୋବାଚ ।

ନୈତତ୍ ସ୍ୱରୂପଂ ଭବତୋଽସୌ ପଦାର୍ଥଭେଦଗ୍ରହୈଃ ପୁରୁଷୋ ଯାବଦୀକ୍ଷେତ୍ ।
ଜ୍ଞାନସ୍ୟ ଚାର୍ଥସ୍ୟ ଗୁଣସ୍ୟ ଚାଶ୍ରୟୋ ମାୟାମୟାଦ୍‌ବ୍ୟତିରିକ୍ତୋ ମତସ୍ତ୍ୱମ୍ । ୩୧ ।

ଶ୍ରୀଇନ୍ଦ୍ର ଉବାଚ ।

ଇଦମପ୍ୟଚ୍ୟୁତ ବିଶ୍ୱଭାବନଂ ବପୂରାନନ୍ଦକରଂ ମନୋଦୃଶାମ୍ ।
ସୁରବିଦ୍ୱିଟ୍‌କ୍ଷପଣୈରୁଦାୟୁଧୈର୍ଭୁଜଦଣ୍ଡୈରୁପପନ୍ନମଷ୍ଟଭିଃ । ୩୨ ।

---

ଶ୍ରୀଭୃଗୁ କହିଲେ :—

ଯାହାଙ୍କର ଦୁସ୍ତର ମାୟାଦ୍ୱାରା ତତ୍ତ୍ୱଜ୍ଞାନ ଅପହୃତ ହେବାରୁ ବ୍ରହ୍ମାଦି ଦେହୀଗଣ ମଧ୍ୟ ଅଜ୍ଞାନାନ୍ଧକାରରେ ଶୟନ କରିଥାନ୍ତି ଯାହାଙ୍କର ତତ୍ତ୍ୱ ସେମାନଙ୍କର ଆତ୍ମାର ଅନୁଗତ ହେଲେ ମଧ୍ୟ ବର୍ତ୍ତମାନ ସୁଦ୍ଧା ତାହା ଜାଣି ପାରନ୍ତି ନାହିଁ, ସେହି ପ୍ରଣତ ଜନମାନଙ୍କର ଆତ୍ମା ଓ ବନ୍ଧୁ ଆପଣ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ୩୦ ।

ଶ୍ରୀବ୍ରହ୍ମା କହିଲେ :—

ହେ ପ୍ରଭୋ ! ପଦାର୍ଥର ଭେଦଗ୍ରାହୀ ଇନ୍ଦ୍ରିୟମାନଙ୍କ ଦ୍ୱାରା ପୁରୁଷ ଯାହା ଦର୍ଶନକରେ ତନ୍ମଧ୍ୟରୁ କିଛିହିଁ ଆପଣଙ୍କର ସ୍ୱରୂପ ନୁହେଁ, ଆପଣ ବିଷୟ ଇନ୍ଦ୍ରିୟ ଓ ଜ୍ଞାନର ଆଶ୍ରୟ, ଅତଏବ ଆପଣ ମାୟାମୟ ଅସତ୍ ପଦାର୍ଥରୁ ଭିନ୍ନ, ଏହାହିଁ ସାଧୁମାନଙ୍କର ଅଭିମତ । ୩୧ ।

ଶ୍ରୀଇନ୍ଦ୍ର କହିଲେ :—

ହେ ଅଚ୍ୟୁତ ! ଆପଣଙ୍କର ଏହି ଶରୀର ପ୍ରତ୍ୟକ୍ଷସିଦ୍ଧ, ଏହା ଦେବଦ୍ୱେଷୀ ଅସୁରମାନଙ୍କର ନାଶକାରୀ, ଉଦ୍ୟତାସ୍ତ୍ର ଆଠୋଟି ଭୁଜଦଣ୍ଡରେ ସୁଶୋଭିତ, ଏହା ନୟନ ଓ ମନର ଆନନ୍ଦ ବର୍ଦ୍ଧକ ଏବଂ ବିଶ୍ୱର ସୁଖଦାୟକ । ୩୨ ।

---

ଶ୍ରୀଭୃଗୁରୁବାଚ—

ହେ ନାଥ ତୋ ମାୟା ଗହନେ
ବ୍ରହ୍ମାଦି ଯେତେ ମୁନିଜନେ
ନିଦ୍ରିତ ପ୍ରାୟେ ତମେ ଥାନ୍ତି
ତୋର ମହିମା ନ ଜାଣନ୍ତି
ତୁ ଏବେ ରଖ ମୋର ମନ
ତୋର ଚରଣେ କରି ଲୀନ ।୩୦।

ଶ୍ରୀବ୍ରହ୍ମୋବାଚ—

ପଦାର୍ଥ ଭେଦେ ଭେଦ ଆଖି
କେ ତୋତେ ପାରେ ଉପଲକ୍ଷି
ତୁ ଜ୍ଞାନ ଇନ୍ଦ୍ରି ଅର୍ଥାଶ୍ରୟ
ହେଲେହେଁ ନୋହୁ ମାୟାମୟ
ମାୟାର ବଶେ ଜ୍ଞାନ ଥାଇ
ତୋତେ ଜାଣିବେ ଅବା କାହିଁ ।୩୧

ଶ୍ରୀଇନ୍ଦ୍ରଉବାଚ ।

ତୁ ଯେ ଆନନ୍ଦ ବପୁଧାରୀ
ହେ ବିଶ୍ୱଭବନ ମୁରାରି
ସକଳ ପ୍ରାଣି ମନୋହର
ହେ ନାଥ ତୋହର ଶରୀର
ଏ ଯେ ତୋହର ଅଷ୍ଟକର
ଏ ଦିଗପାଳଙ୍କ ଶରୀର । ୩୨ ।

ଶ୍ରୀପତ୍ନ୍ୟ ଊଚୁଃ ।

ଯଜ୍ଞୋଽୟଂ ତବ ଯଜନାୟ କେନ ସୃଷ୍ଟୋ ବିଧ୍ୱସ୍ତଃ ପଶୁପତିନାଦ୍ୟ ଦକ୍ଷକୋପାତ୍ ।
ତଂ ନସ୍ତ୍ୱଂ ଶବଶୟନାଭ ଶାନ୍ତମେଧଂ ଯଜ୍ଞାତ୍ମନ୍ ନଳିନରୁଚା ଦୃଶା ପୁନୀହି । ୩୩ ।

ଶ୍ରୀଋଷୟ ଊଚୁଃ ।

ଅନନ୍ୱିତଂ ତବ ଭଗବନ୍ ବିଚେଷ୍ଟିତଂ ଯଦାତ୍ମନାଚରସି ହି କର୍ମ ନାଜ୍ୟସେ ।
ବିଭୂତୟେ ଯତ ଉପସେଦୁରୀଶ୍ୱରୀଂ ନ ମନ୍ୟତେ ସ୍ୱୟମନୁବର୍ତ୍ତିନୀଂ ଭବାନ୍ ।୩୪।

ଶ୍ରୀସିଦ୍ଧା ଊଚୁଃ ।

ଅୟଂ ତ୍ୱତ୍‌କଥାମୃଷ୍ଟପୀୟୂଷନଦ୍ୟାଂ ମନୋବାରଣଃ କ୍ଲେଶଦାବାଗ୍ନିଦଗ୍ଧଃ ।
ତୃଷାର୍ତ୍ତୋଽବଗାଢ଼ୋ ନ ସସ୍ମାର ଦାବଂ ନ ନିଷ୍କ୍ରାମତି ବ୍ରହ୍ମସମ୍ପନ୍ନବନ୍ନଃ । ୩୫ ।

---

ଋତ୍ୱିକପତ୍ନୀମାନେ କହିଲେ :—

ହେ ଯଜ୍ଞେଶ୍ୱର ! ଏହି ଯଜ୍ଞ ତୁମ୍ଭ ଅର୍ଚ୍ଚନା ନିମିତ୍ତ ପୂର୍ବେ ବ୍ରହ୍ମା ପ୍ରବର୍ତ୍ତନ କରିଥିଲେ, କିନ୍ତୁ ଦକ୍ଷଙ୍କପ୍ରତି କ୍ରୋଧବଶତଃ ଶିବ ତାହା ନଷ୍ଟ କରିଅଛନ୍ତି । ହେ ପଦ୍ମନାଭ ! ବର୍ତ୍ତମାନ୍ ତାହାଙ୍କର ପଶୁ ହିଂସାଦି ଉପଦ୍ରବ ନିବୃତ୍ତ ହୋଇଅଛି, ସୁତରାଂ ଆପଣ ସ୍ୱୀୟ ପଦ୍ମନେତ୍ର ଦ୍ୱାରା କୃପାଦୃଷ୍ଟି ନିକ୍ଷେପ କରି ତାହା ପବିତ୍ର କରନ୍ତୁ । ୩୩ ।

ଶ୍ରୀଋଷିମାନେ କହିଲେ :—

ହେ ଭଗବନ୍ ! ଆପଣଙ୍କର ଆଚରଣ ଅତ୍ୟନ୍ତ ଅପୂର୍ବ, କାରଣ ଆପଣ ନିଜେ କର୍ମକରି ମଧ୍ୟ ତହିଁରେ ଲିପ୍ତ ହୁଅନ୍ତି ନାହିଁ, ପୁଣି ଅନ୍ୟମାନେ ସମ୍ପଦ ଲଭି ନିମିତ୍ତ ଯେଉଁ ଲକ୍ଷ୍ମୀଦେବୀଙ୍କୁ ଭଜନ କରନ୍ତି ସେହି ଲକ୍ଷ୍ମୀଦେବୀ ସ୍ୱୟଂ ଉପସ୍ଥିତ ହୋଇ ଆପଣଙ୍କର ସେବା ନିମିତ୍ତ ଲାଳାୟିତା ହୁଅନ୍ତି; ତଥାପି ଆପଣ ତାହାଙ୍କୁ ଆଦର କରନ୍ତି ନାହିଁ । ୩୪ ।

ଶ୍ରୀସିଦ୍ଧିଗଣ କହିଲେ :—

ହେ ଦେବ ! ଆମ୍ଭମାନଙ୍କର ମନମାତଙ୍ଗ ସଂସାରଦୁଃଖ ଦାବାନଳରେ ଦଗ୍ଧ ଏବଂ ତୃଷ୍ଣାକାତର ହୋଇଅଛି । ଆମ୍ଭେମାନେ ବର୍ତ୍ତମାନ୍ ଆପଣଙ୍କ କଥାରୂପୀ ଅମୃତନଦୀରେ ସ୍ନାନ କରି ସଂସାର ତାପସ୍ୱରୂପ ଦାବାନଳରୁ ମୁକ୍ତିଲଭିକରି ବ୍ରହ୍ମସହିତ ଏକୀଭୂତ ହୋଇଅଛୁଁ; ସେଠାରୁ ଆଉ ବହିର୍ଗତ ହେଉନାହିଁ ।୩୫।

---

ବ୍ରାହ୍ମଣ ପତ୍ନ୍ୟ ଊଚୁଃ—
ଏ ଯଜ୍ଞ ତୋର ପୂଜା ଅର୍ଥେ
ବ୍ରହ୍ମାର ସର୍ଜନା ଯୁକତେ
କେବଳ ବିଧି ଅବହେଳେ
ରୁଦ୍ର ରୂପରେ ଯଜ୍ଞ ଶାଳେ
ଦକ୍ଷକୁ ଦେଲୁ କର୍ମଫଳ
ତୁ ନାଥ ପରମମଙ୍ଗଳ
ଏବେ ପବିତ୍ର ଏ ଭୁବନ
କରିଲି ତୋର ଦରଶନ ।୩୩।

ଶ୍ରୀଋଷୟ ଊଚୁଃ—
ହେ ନାଥ ତୋର ବିଚେଷ୍ଟିତ
ବିଶ୍ୱ ସଂସାରେ ବିପରୀତ
ଈଶ୍ୱରୀ ମାୟାର ବରୁତ
ଯା ବଳେ ଦେବେ ଭ୍ରମ ହୋନ୍ତି
ନାହିଁ ଆଦର ସେ ଲକ୍ଷ୍ମୀରେ
ତୋ ଚେଷ୍ଟା ଜାଣୁକେ ସଂସାରେ ।୩୪

ଶ୍ରୀସିଦ୍ଧା ଊଚୁଃ—
ତୋ କଥା ସୁଧାତରଙ୍ଗିଣୀ
ଶୀତଳ ଜଳ ପ୍ରାୟ ମଣି
ମନ ବାରଣ ତୃଷାକୁଳେ
ପ୍ରବେଶ ହୋଇ ଶୀତ ଜଳେ
ନ ସ୍ମରେ କ୍ଲେଶ ଦାବାନଳ
ତୋର ପ୍ରସଙ୍ଗେ ଆଦମୂଳ ।୩୫।

ଶ୍ରୀଯଜମାନ୍ୟୁବାଚ ।

ସ୍ୱାଗତଂ ତେ ପ୍ରସୀଦେଶ ତୁଭ୍ୟଂ ନମଃ ଶ୍ରୀନିବାସ ଶ୍ରିୟା କାନ୍ତୟା ତ୍ରାହି ନଃ ।
ତ୍ୱାମୃତେଽଧୀଶ ନାଙ୍ଗୈର୍ମଖଃ ଶୋଭତେ ଶୀର୍ଷହୀନଃ କବନ୍ଧୋ ଯଥା ପୁରୁଷଃ ।୩୬।

ଶ୍ରୀଲୋକପାଳା ଊଚୁଃ ।

ଦୃଷ୍ଟଃ କିଂ ନୋ ଦୃଗ୍‌ଭିରସଦ୍‌ଗ୍ରହୈସ୍ତ୍ୱଂ ପ୍ରତ୍ୟଗ୍‌ଦ୍ରଷ୍ଟା ଦୃଶ୍ୟତେ ଯେନ ବିଶ୍ୱମ୍ ।
ମାୟା ହ୍ୟେଷା ଭବଦୀୟା ହି ଭୂମନ୍ ଯସ୍ତ୍ୱଂ ଷଷ୍ଠଃ ପଞ୍ଚଭିର୍ଭାସି ଭୂତୈଃ ।୩୭।

ଶ୍ରୀଯୋଗେଶ୍ୱରା ଊଚୁଃ ।

ପ୍ରେୟାନ୍ ନ ତେଽନ୍ୟୋଽସ୍ତ୍ୟମୁତସ୍ତ୍ୱୟି ପ୍ରଭୋ ବିଶ୍ୱାତ୍ମନୀକ୍ଷେନ୍ନ ପୃଥଗ୍ ଯ ଆତ୍ମନଃ ।
ଅଥାପି ଭକ୍ତ୍ୟେଶ ତୟୋପଧାବତାମନନ୍ୟବୃତ୍ତ୍ୟାନୁଗୃହାଣ ବତ୍ସଳ । ୩୮ ।

---

ଶ୍ରୀଦକ୍ଷପତ୍ନୀ ପ୍ରସୂତି କହିଲେ :—

ହେ ପ୍ରଭୋ ଶ୍ରୀନିବାସ ! ଆପଣ ସ୍ୱୀୟ ପତ୍ନୀ ଲକ୍ଷ୍ମୀଦେବୀଙ୍କ ସହିତ ଆମ୍ଭମାନଙ୍କୁ ପରିତ୍ରାଣ କରନ୍ତୁ, ହେ ଅଧୀଶ୍ୱର ! ମସ୍ତକ ବିହୀନ କବନ୍ଧପୁରୁଷ ଯେପରି ସୁଶୋଭନ କରଚରଣାଦି ଦ୍ୱାରା ଶୋଭମାନ ହୁଏ ନାହିଁ, ସେହିପରି ଆପଣ ନ ଥିଲେ ଯଜ୍ଞ ଶୋଭା ଶୋଭିତ ହୁଏ ନାହିଁ । ୩୬ ।

ଶ୍ରୀଲୋକପାଳଗଣ କହିଲେ :—

ହେ ଭଗବନ୍ ! ଆପଣ ସର୍ବସାକ୍ଷୀ, ଆପଣ ନିଖିଳ ବିଶ୍ୱ ସର୍ବଦା ପରିଦର୍ଶନ କରୁଛନ୍ତି, ଆମ୍ଭେମାନେ ବିଷୟାଭିଭୂତ ଇନ୍ଦ୍ରିୟଦ୍ୱାରା କିପରି ଆପଣଙ୍କୁ ଦେଖି ପାରିବୁ ? ଆପଣ ପଞ୍ଚଭୂତର ଅତୀତ ଏବଂ ଷଷ୍ଠ ଭୂତରୂପେ କେବଳ ନିଜ ମାୟା ପ୍ରଭାବରେ ପ୍ରକାଶିତ । ୩୭ ।

ଶ୍ରୀଯୋଗେଶ୍ୱର କହିଲେ :—

ହେ ପ୍ରଭୋ ! ନିଖିଳ ଜୀବର ଆତ୍ମସ୍ୱରୂପ ଆପଣଙ୍କଠାରେ ଅବସ୍ଥିତ ଜାଣି ଯେ ଜୀବମାନଙ୍କୁ ପୃଥକ୍‌ରୂପେ ଦର୍ଶନ ନ କରେ, ତାହା ଅପେକ୍ଷା ଆପଣଙ୍କର କେହି ଅଧିକ ପ୍ରିୟ ନୁହେଁ । ତଥାପି ହେ ଭକ୍ତବତ୍ସଳ ! ଆମ୍ଭେମାନେ ଆପଣଙ୍କଠାରେ ଅବ୍ୟଭିଚାରିଣୀ ଭକ୍ତି କରିଥାଉଁ, ଆପଣ ଆମ୍ଭମାନଙ୍କ ପ୍ରତି ଅନୁଗ୍ରହ କରନ୍ତୁ । ୩୮ ।

---

ଶ୍ରୀ ପ୍ରସୂତିରୁବାଚ—
ହେ ନାଥ ତୋର ଆଗମନ
ଆନନ୍ଦ କଲା ମୋର ମନ
ତୁ ଲକ୍ଷ୍ମୀକାନ୍ତ ସୁଧାନିଧି
ସକଳ ସମ୍ପଦ ପ୍ରସିଦ୍ଧି
ତୋ ବିନୁ ଏ ଯେ ଯଜ୍ଞଘର
ହେ ନାଥ ନ ଦିଶେ ସୁନ୍ଦର
କି ଅବା ଦେବା ପଟାନ୍ତର
କବନ୍ଧ ପ୍ରାୟ ଛିନ୍ନଶିର । ୩୬ ।

ଶ୍ରୀ ଲୋକପାଳା ଊଚୁଃ—
ଆମ୍ଭର ଦୁଷ୍ଟ ଗ୍ରହ ଦୋଷେ
ତୋତେ ଦେଖିବୁଁ କାହୁଁ ଦୃଶ୍ୟେ
ଏ ପଞ୍ଚଭୂତ ଇନ୍ଦ୍ରିୟର
ହେ ପ୍ରଭୁ ନୋହୁ ତୁ ଗୋଚର
ତୁ ଷଷ୍ଠ ପଞ୍ଚଭୂତେ ବସୁ
ମାୟା ସ୍ୱରୂପ ତୁ ପ୍ରକାଶୁ ।୩୭।

ଶ୍ରୀ ଯୋଗେଶ୍ୱରା ଊଚୁଃ—
ତୁ ବିଶ୍ୱ ଆତ୍ମା ପରଂବ୍ରହ୍ମ
ଶୁଦ୍ଧ ଚୈତନ୍ୟ ତୋର ଧାମ
ଯେ ତୋତେ ଅଭେଦେ ଦେଖଇ
ତା ଠାରୁଁ ପ୍ରିୟ ତୋର ନାହିଁ

ଜଗଦୁଦ୍ଭବସ୍ଥିତିଲୟେଷୁ ଦୈବତୋ ବହୁଭିଦ୍ୟମାନଗୁଣୟାତ୍ମମାୟୟା ।
ରଚିତାତ୍ମଭେଦମତୟେ ସ୍ୱସଂସ୍ଥୟା ବିନିବର୍ତ୍ତିତଭ୍ରମଗୁଣାତ୍ମନେ ନମଃ । ୩୯ ।

ଶ୍ରୀବ୍ରହ୍ମୋବାଚ ।

ନମସ୍ତେ ଶ୍ରିତସତ୍ତ୍ୱାୟ ଧର୍ମାଦୀନାଞ୍ଚସୂତୟେ ।
ନିର୍ଗୁଣାୟ ଚ ଯତ୍‌କାଷ୍ଠାଂ ନାହଂ ବେଦାପରେଽପି ଚ । ୪୦ ।

ଶ୍ରୀଅଗ୍ନିରୁବାଚ ।

ଯତ୍ତେଜସାହଂ ସୁସମିଦ୍ଧତେଜା ହବ୍ୟଂ ବହେ ସ୍ୱଧ୍ୱର ଆଜ୍ୟସିକ୍ତମ୍ ।
ତଂ ଯଜ୍ଞୀୟଂ ପଞ୍ଚବିଧଞ୍ଚ ପଞ୍ଚଭିଃ ସ୍ୱିଷ୍ଟଂ ଯଜୁର୍ଭିଃ ପ୍ରଣତୋଽସ୍ମି ଯଜ୍ଞମ୍ । ୪୧ ।

---

ଜୀବମାନେ ଅଦୃଷ୍ଟ ବଶରେ ଆପଣାର ମାୟାଗୁଣଗତ ବହୁପ୍ରକାର ବୈଚିତ୍ର୍ୟ ଧାରଣ କରିଥାନ୍ତି । ଆପଣହିଁ ସେହି ମାୟାଦ୍ୱାରା ବିଶ୍ୱର ସୃଷ୍ଟି ସ୍ଥିତି ପ୍ରଳୟ ବିଷୟରେ ଆପଣଙ୍କପ୍ରତି ଜୀବ ହୃଦୟରେ ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇତ୍ୟାଦି ଭେଦବୁଦ୍ଧି ଜନ୍ମାଇ ଥାନ୍ତି । ପୁନଶ୍ଚ ଆପଣହିଁ ନିଜରୂପରେ ଅବସ୍ଥାନ ଦ୍ୱାରା ସେମାନଙ୍କର ଭେଦଜ୍ଞାନ ଓ ତହିଁର କାରଣ ସମୂହ ବିଦୂରିତ କରିଥାନ୍ତି; ଆପଣଙ୍କୁ ଆମ୍ଭେମାନେ ନମସ୍କାର କରୁଅଛୁଁ । ୩୯ ।

ଶ୍ରୀବ୍ରହ୍ମାକହିଲେ :—

ହେ ପ୍ରଭୋ ! ଆପଣହିଁ ସତ୍ତ୍ୱଗୁଣ ସମ୍ପନ୍ନ ହୋଇ ଧର୍ମାଦି ଉତ୍ପାଦନ କରିଥାନ୍ତି । ପୁନଶ୍ଚ ଆପଣହିଁ ନିର୍ଗୁଣ, ଆପଣଙ୍କର ତତ୍ତ୍ୱ ମୁଁ ବୁଝିବାକୁ ଅକ୍ଷମ । ୪୦ ।

ଶ୍ରୀଅଗ୍ନି କହିଲେ :—

ଉତ୍ତମ ଯଜ୍ଞରେ ଯାହାଙ୍କର ତେଜରେ ସମ୍ୟକ୍ ତେଜୀୟାନ୍ ହୋଇ ମୁଁ ଘୃତ ମିଶ୍ରିତ ଚରୁ ପ୍ରଭୃତି ହୋମ ସାମଗ୍ରୀ ଭକ୍ଷଣ କରେ, ଆପଣ ସେହି ଯଜ୍ଞପାଳକ ଯଜ୍ଞରୂପୀ ଭଗବାନ୍ ; ଅଗ୍ନିହୋତ୍ର, ଦର୍ଶ, ପୌର୍ଣ୍ଣମାସ, ଚାତୁର୍ମାସ୍ୟ, ପଶୁସୋମ ଏହି ପଞ୍ଚବିଧ ଯଜ୍ଞ ଆପଣଙ୍କର ସ୍ୱରୂପ, ଏହି ପାଞ୍ଚପ୍ରକାର ଯଜ୍ଞୀୟ ମନ୍ତ୍ରରେ ଆପଣ ସମ୍ୟକ୍‌ରୂପେ ପୂଜିତ ହୋଇ ଥାନ୍ତି; ମୁଁ ଆପଣଙ୍କୁ ପ୍ରଣାମ କରୁଅଛି । ୪୧ ।

---

ଜଗତ ସୃଷ୍ଟି ସ୍ଥିତି ଅନ୍ତ
ନିତ୍ୟଗୁଣେ କରୁ ଆତଯାତ
ନିର୍ଲେପ ଜ୍ଞାନ ସର୍ବବ୍ୟାପୀ
ତୁ ନାଥ ନିରଞ୍ଜନ ରୂପୀ
ତୋହର ମହିମା ଅପାର
ତୋପାଦେ ଆମ୍ଭ ନମସ୍କାର ।୩୮,୩୯ ।

ଶ୍ରୀ ଶବ୍ଦବ୍ରହ୍ମୋବାଚ—
ଆତ୍ମାର ତୁ ଯେ ସତ୍ତ୍ୱଗୁଣ
ଧର୍ମ ପ୍ରକାଶୁ ଭଗବାନ
ତୁହି ନିର୍ଗୁଣ ନିରାକାର
ତୋ ପାଦେ ମୋର ନମସ୍କାର
ଯେଣୁ ତୋ ତତ୍ତ୍ୱ ମୁଁ ନ ଜାଣେ
କାହୁଁ ଜାଣିବେ ଦେବଗଣେ ।୪୦।

ଶ୍ରୀ ଅଗ୍ନିରୁବାଚ—
ଯାହାର ତେଜବଳେ ମୁହିଁ
ଅନଳରୂପେ ଯଜ୍ଞେ ରହି
ଘୃତ ଆହୁତି ପଞ୍ଚବିଧ
ମନ୍ତ୍ରେ ନିବେଦିତ ସମିଧେ
ତୁ ଯଜ୍ଞ ରୂପୀ ଦାମୋଦର
ତୁମ୍ଭଙ୍କୁ ମୋର ନମସ୍କାର । ୪୧

ଶ୍ରୀଦେବା ଊଚୁଃ ।

ପୁରା କଳ୍ପାପାୟେ ସ୍ୱକୃତମୁଦରୀକୃତ୍ୟବକୃତଂ-
ତ୍ୱମେବାଦ୍ୟସ୍ତସ୍ମିନ୍ ସଲିଲ ଉରଗେନ୍ଦ୍ରାଧିଶୟନେ ।
ପୁମାନ୍ ଶେଷେ ସିଦ୍ଧୈର୍ହୃଦି ବିମୃଶିତାଧ୍ୟାତ୍ମପଦବିଃ-
ସ ଏବାଦ୍ୟାକ୍ଷ୍ଣୋର୍ଯଃ ପଥି ଚରସି ଭୃତ୍ୟାନବସି ନଃ । ୪୨ ।

ଶ୍ରୀଗନ୍ଧର୍ବା ଊଚୁଃ ।

ଅଂଶାଂଶାସ୍ତେ ଦେବ ମରୀଚ୍ୟାଦୟ ଏତେ ବ୍ରହ୍ମେନ୍ଦ୍ରାଦ୍ୟା ଦେବଗଣା ରୁଦ୍ରପୁରୋଗାଃ ।
କ୍ରୀଡ଼ାଭାଣ୍ଡଂ ବିଶ୍ୱମିଦଂ ଯସ୍ୟ ବିଭୂମଂସ୍ତସ୍ମୈ ନିତ୍ୟଂ ନାଥ ନମସ୍ତେ କରବାମ ।୪୩।

---

ଶ୍ରୀଦେବଗଣ କହିଲେ :—

ହେ ଦେବ ! ଆପଣ ସମ୍ପ୍ରତି ଆମ୍ଭମାନଙ୍କର ନୟନ ପଥରେ ବିଚରଣ କରି ଭକ୍ତପରାୟଣ ବ୍ୟକ୍ତିମାନଙ୍କୁ ରକ୍ଷା କରୁଅଛନ୍ତି । ଆପଣହିଁ ଆଦିପୁରୁଷ, ପୂର୍ବକଳ୍ପାବସାନରେ ଅର୍ଥାତ୍ ପ୍ରଳୟ କାଳରେ ଆପଣହିଁ ନିଜ ସୃଷ୍ଟି ସମସ୍ତବସ୍ତୁ ନିଜମଧ୍ୟରେ ବିଲୀନ କରି ତତ୍‌କାଳୀନ ବିପୁଳ ଜଳ ରାଶିମଧ୍ୟରେ ଶୟନ କରିଥିଲେ ଏବଂ ସେତେବେଳେ ସତ୍ୟଲୋକାଧିବାସୀ ସିଦ୍ଧପୁରୁଷମାନେ ଏକାନ୍ତ ଚିତ୍ତରେ ଜ୍ଞାନମାର୍ଗରେ ଆପଣଙ୍କୁ ଚିନ୍ତା କରୁଥିଲେ । ୪୨ ।

ଶ୍ରୀଗନ୍ଧର୍ବ ଓ ଅପ୍‌ସରାମାନେ କହିଲେ :—

ହେ ଦେବ ! ମରୀଚି ପ୍ରଭୃତି ଋଷିମାନେ, ରୁଦ୍ର, ବ୍ରହ୍ମା ଏବଂ ଇନ୍ଦ୍ର ପ୍ରଭୃତି ଦେବତାମାନେ ଆପଣଙ୍କର ଅଂଶ ବା ଅଂଶାଂଶ ସ୍ୱରୂପ, ହେ ବିରାଟ ପୁରୁଷ ! ଏହି ସଂସାର ଆପଣଙ୍କର କ୍ରୀଡ଼ାର ସାମଗ୍ରୀ; ଆମ୍ଭେମାନେ ଆପଣଙ୍କୁ ନମସ୍କାର କରୁଅଛୁଁ । ୪୩ ।

---

ଶ୍ରୀ ଦେବା ଊଚୁଃ—

ତୁ ନାଥ ପୂର୍ବକଲ୍ପେ ହରି
ପ୍ରଳୟକାଳେ ଗର୍ଭେଭରି
ସର୍ବ ସଂହରି ବିଶ୍ୱରୂପେ
ଜଳେ ଶୟନ ଅଛିତଲ୍ପେ
ଆମ୍ଭେ ଯେ ତୋର ନିଜ ଭୃତ୍ୟ
ଏ କଥା ଜଗତେ ବିଖ୍ୟାତ
ଆମ୍ଭଙ୍କୁ ସଙ୍କଟ ପଡ଼ିଲେ
ତୁ ନାଥ ରକ୍ଷାକରୁ ଭଲେ ।୪୨।

ଶ୍ରୀ ଗନ୍ଧର୍ବା ଊଚୁଃ—

ହେ ନାଥ ତୋତେ ନମସ୍କାର
ଏବିଶ୍ୱ କ୍ରୀଡ଼ାଭାଣ୍ଡ ତୋର
ଏ ବ୍ରହ୍ମା ରୁଦ୍ର ଆଦି ଯେତେ
ସକଳ ଦେବତା ସମେତେ
ମରୀଚି ଆଦି ସର୍ବଋଷି
ସର୍ବେ ତୋ ଅଂଶରୁ ପ୍ରକାଶି ।୪୩।

ଶ୍ରୀବିଦ୍ୟାଧରା ଊଚୁଃ ।

ତ୍ୱନ୍ମାୟୟା ସ୍ୱାର୍ଥମଭିପଦ୍ୟ କଲେବରେଽସ୍ମିନ୍ କୃତ୍ୱା ମମାହମିତି ଦୁର୍ମତିରୁତ୍ପଥୈଃ ସ୍ୱୈଃ ।
କ୍ଷିପ୍ତୋଽପ୍ୟସଦ୍‌ବିଷୟଲାଲସ ଆତ୍ମମୋହଂ ଯୁଷ୍ମତ୍‌କଥାମୃତନିଷେବକ ଉଦ୍‌ବ୍ୟୁଦସ୍ୟେତ୍ ।୪୪

ଶ୍ରୀବ୍ରାହ୍ମଣା ଊଚୁଃ ।

ତ୍ୱଂ କ୍ରତୁସ୍ତ୍ୱଂ ହବିସ୍ତ୍ୱଂ ହୁତାଶଃ ସ୍ୱୟଂ ତ୍ୱଂ ହି ମନ୍ତ୍ରଃ ସମିଦ୍ଦର୍ଭପାତ୍ରାଣି ଚ ।
ତ୍ୱଂ ସଦସ୍ୟର୍ତ୍ତ୍ୱିଜୋ ଦମ୍ପତୀ ଦେବତା ଅଗ୍ନିହୋତ୍ରଂ ସ୍ୱଧା ସୋମ ଆଜ୍ୟଂ ପଶୁଃ ।୪୫।
ତ୍ୱଂ ପୁରା ଗାଂ ରସାୟା ମହାଶୂକରୋ ଦଂଷ୍ଟ୍ରୟା ପଦ୍ମିନୀଂ ବାରଣେନ୍ଦ୍ରୋ ଯଥା ।
ସ୍ତୂୟମାନୋ ନଦଂଲ୍ଲୀଲୟା ଯୋଗିଭିର୍ବ୍ୟୁଜ୍ଜହର୍ଥ ତ୍ରୟୀଗାତ୍ର ଯଜ୍ଞକ୍ରତୁଃ । ୪୬ ।

---

ଶ୍ରୀବିଦ୍ୟାଧରମାନେ କହିଲେ :—

ପୁରୁଷାର୍ଥ ସାଧନୋପଯୋଗୀ ଦେହଧାରଣ କରି ଆପଣଙ୍କ ମାୟାବଶରେ ସେହି ଦେହରେ ଅହଂଭାବ ବା ବୃଥାଭିମାନ ଗ୍ରସ୍ତହୋଇ ଯେଉଁ ବ୍ୟକ୍ତି ଆପଣଙ୍କର ନାମ ଗୁଣାଦି ପ୍ରସଙ୍ଗ ଶ୍ରବଣ ବା କୀର୍ତ୍ତନରେ ତତ୍ପର ହୁଏ, ସେ ଏହି ଅଭିମାନ ତ୍ୟାଗ କରିବାକୁ ସମର୍ଥ ହୁଏ, କିନ୍ତୁ ଯେଉଁ ଦୁର୍ବୁଦ୍ଧି, ବିପଥଗାମୀ, ପୁତ୍ର କଳତ୍ରାଦି କର୍ତ୍ତୃକ ଲାଞ୍ଛିତହୋଇ ମଧ୍ୟ ତୁଚ୍ଛ ବିଷୟଭୋଗରେ ଆସକ୍ତରହେ ସେ ତାହା କରିପାରେନାହିଁ ।୪୪।

ଶ୍ରୀବ୍ରାହ୍ମଣଗଣ କହିଲେ :—

ଆପଣହିଁ ଯଜ୍ଞ, ଆପଣହିଁ ହବି, ଆପଣହିଁ ଅଗ୍ନି, ଆପଣହିଁ ମନ୍ତ୍ର, ଯଜ୍ଞକାଷ୍ଠ, କୁଶ, ଯଜ୍ଞପାତ୍ର ଏବଂ ସଦସ୍ୟ, ପୁରୋହିତ, ଯଜମାନଦମ୍ପତୀ, ଯଜ୍ଞାଧିପତି, ଅଗ୍ନିହୋତ୍ର, ସ୍ୱଧା, ସୋମରସ, ଘୃତାଦି, ଯଜ୍ଞୀୟପଶୁ ସମସ୍ତ ଆପଣ । ୪୫ ।

ହେ ବେଦମୂର୍ତ୍ତେ ! ସ୍ୱାୟମ୍ଭୁବ ମନ୍ୱନ୍ତରର ପ୍ରଥମଯୁଗରେ ଆପଣ ଯଜ୍ଞବରାହରୂପ ଧାରଣକରି ଗର୍ଜ୍ଜନ ପୂର୍ବକ ମତ୍ତହସ୍ତୀ ଜଳମଧ୍ୟରୁ ଅନାୟାସରେ ପଦ୍ମିନୀ ଉତ୍ତୋଳନ କଲପରି ଅବଲୀଳାକ୍ରମେ ଜଳମଗ୍ନା ପୃଥିବୀକୁ ରସାତଳରୁ ଦନ୍ତଦ୍ୱାରା ଉଦ୍ଧାର କରିଥିଲେ, ସେତେବେଳେ ଯୋଗିମାନେ ଆପଣଙ୍କୁ ସ୍ତବ କରିଥିଲେ । ୪୬ ।

---

ଶ୍ରୀ ବିଦ୍ୟାଧରା ଊଚୁଃ—

ତୁମ୍ଭର ମାୟାବଳେ ପ୍ରାଣୀ
ମୁହିଁ ମୋହର ପରମାଣି
ଉତ୍ପଥଗାମୀ ପୁତ୍ରଗଣେ
କାଢ୍ୟ ସେ ଭୁଞ୍ଜାଇ କଷଣେ
ଏଣୁ ଲାଳସା ଆତ୍ମଦେହେ
ତୋ ଭାବେ କେବେହେଁ ନରହେ
ତୋ କଥା-ଅମୃତ ନ ସେବେ
ଏଣୁ ପଡ଼ଇ ଭବାର୍ଣ୍ଣବେ ।୪୪।

ଶ୍ରୀ ବ୍ରାହ୍ମଣାଊଚୁଃ—

ତୁ ନାଥ ଯଜ୍ଞ ଅଗ୍ନି ସୋମ
ତୁ ନିତ୍ୟାଗ୍ନିର ବିଧିକର୍ମ୍ମ
ସମିଧ ପାତ୍ର ତୁ ଋତ୍ୱିଜ
ଯଜ୍ଞାଦି ଯଜମାନ ଦ୍ୱିଜ
ତୁ ସ୍ୱାହା ସ୍ୱଧା ଯଜ୍ଞ ପଶୁ
ତୁ ଯଜ୍ଞପୁରୁଷ ପ୍ରକାଶୁ
ସଂଗ୍ରାମେ ହିରଣ୍ୟାକ୍ଷ ଜିଣି
ଦନ୍ତେ ଉଦ୍ଧରିଲୁ ଧରଣୀ

ଧରଣୀ ସ୍ଥାପି ମହାଜଳେ
ଯେଣୁ ଏ ରହିଲ କିଷ୍ଟଳେ
ସ୍ୱକର୍ମ୍ମ ଭ୍ରଷ୍ଟ ଆମ୍ଭେ ହୋଇ
ଆମ୍ଭର ଆନ ଗତି ନାହିଁ
ସକଳ କର୍ମ୍ମ ସାକ୍ଷୀ ତୁହି
ହେ ନାଥ ରଖ ଭବଗାହି !

ସ ପ୍ରସୀଦ ତ୍ୱମସ୍ମାକମାକାଙ୍କ୍ଷତାଂ ଦର୍ଶନଂ ତେ ପରିଭ୍ରଷ୍ଟସତ୍‌କର୍ମଣାମ୍ ।
କୀର୍ତ୍ତ୍ୟମାନେ ନୃଭିର୍ନାମ୍ନି ଯଜ୍ଞେଶ ତେ ଯଜ୍ଞବିଘ୍ନାଃ କ୍ଷୟଂ ଯାନ୍ତି ତସ୍ମୈ ନମଃ ।୪୭।

ଶ୍ରୀମୈତ୍ରେୟ ଉବାଚ ।

ଇତି ଦକ୍ଷଃ କବିର୍ଯଜ୍ଞଂ ଭଦ୍ର ରୁଦ୍ରାଭିମର୍ଶିତମ୍ ।
କୀର୍ତ୍ତ୍ୟମାନେ ହୃଷୀକେଶେ ସଂନିନ୍ୟେ ଯଜ୍ଞଭାବନେ । ୪୮ ।
ଭଗବାନ୍ ସ୍ୱେନ ଭାଗେନ ସର୍ବାତ୍ମା ସର୍ବଭାଗଭୁକ୍ ।
ଦକ୍ଷଂ ବଭାଷ ଆଭାଷ୍ୟ ପ୍ରୀୟମାଣ ଇବାନଘ । ୪୯ ।

ଶ୍ରୀଭଗବାନୁବାଚ ।

ଅହଂ ବ୍ରହ୍ମା ଚ ଶର୍ବଶ୍ଚ ଜଗତଃ କାରଣଂ ପରମ୍ ।
ଆତ୍ମେଶ୍ୱର ଉପଦ୍ରଷ୍ଟା ସ୍ୱୟଂ ଦୃଗବିଶେଷଣଃ । ୫୦ ।
ଆତ୍ମମାୟାଂ ସମାବିଶ୍ୟ ସୋଽହଂ ଗୁଣମୟୀଂ ଦ୍ୱିଜ ।
ସୃଜନ୍ ରକ୍ଷନ୍ ହରନ୍ ବିଶ୍ୱଂ ଦଧ୍ରେ ସଂଜ୍ଞାଂ କ୍ରିୟୋଚିତାମ୍ ।୫୧।

---

ହେ ଯଜ୍ଞେଶ ! ଲୋକେ ଆପଣଙ୍କର ନାମ କୀର୍ତ୍ତନ କରିବା ମାତ୍ରେ ଯଜ୍ଞବିଘ୍ନ ବିଦୂରିତ ହୁଏ, ଆପଣଙ୍କୁ ଆମ୍ଭେମାନେ ନମସ୍କାର କରୁଅଛୁଁ, ଆମ୍ଭେମାନେ ଯଜ୍ଞରୂପ ସତ୍‌କର୍ମରୁ ଭ୍ରଷ୍ଟ ହୋଇ ସର୍ବଦା ଆପଣଙ୍କର ଦର୍ଶନ ଆକାଙ୍କ୍ଷା କରୁଥିଲୁ, ଆପଣ ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହୁଅନ୍ତୁ । ୪୭ ।

ଶ୍ରୀମୈତ୍ରେୟ କହିଲେ :—

ଭଦ୍ର ବିଦୁର ! ଏହିପରି ସମସ୍ତେ ଯଜ୍ଞଫଳଦାତା ଶ୍ରୀହରିଙ୍କର ଗୁଣକୀର୍ତ୍ତନ କରିଥିଲେ । ଏହି ସମୟରେ ପ୍ରଜାପତି ଦକ୍ଷ ରୁଦ୍ରକୋପରେ ବିନଷ୍ଟ ଯଜ୍ଞ ପୁନଶ୍ଚ ଆରମ୍ଭ କରିଥିଲେ । ୪୮ ।

ହେ ପୁଣ୍ୟଶୀଳ ବିଦୁର ! ଭଗବାନ୍ ସର୍ବାନ୍ତର୍ଯ୍ୟାମୀ, ସମସ୍ତଙ୍କର ଯଜ୍ଞଭାଗ ସେ ଭୋଗ କରିଥାନ୍ତି, ତଥାପି ତାଙ୍କ ନିମନ୍ତେ ସ୍ୱତନ୍ତ୍ର ଅର୍ପିତ ଯଜ୍ଞଭାଗ ଗ୍ରହଣକରି ସେ ପରିତୁଷ୍ଟ ହେଲେ ଏବଂ ଦକ୍ଷଙ୍କୁ କହିଲେ ।।

ଶ୍ରୀଭଗବାନ୍ କହିଲେ :—

ମୁଁ ଜଗତର ପ୍ରଧାନ କାରଣ, ସର୍ବଜୀବର ସାକ୍ଷୀସ୍ୱରୂପ, ସ୍ୱପ୍ରକାଶ ପରମାତ୍ମାରୂପ ଈଶ୍ୱର, ମୁହିଁ ବ୍ରହ୍ମା, ମୁହିଁ ଶଙ୍କର । ୫୦ ।

ହେ ଦକ୍ଷ ! ମୁଁ ଗୁଣମୟୀ ଆତ୍ମମାୟାକୁ ଆଶ୍ରୟକରି ଏହି ବିଶ୍ୱସୃଷ୍ଟି ସ୍ଥିତି ଓ ଲୟସାଧନ ନିମିତ୍ତ ତତ୍‌କାଳୀନ କାର୍ଯ୍ୟ ଭେଦାନୁସାରେ ବିଭିନ୍ନ ସଂଜ୍ଞା ବା ନାମ ଧାରଣ କରିଥାଏଁ । ୫୧ ।

---

ଯାହାର ନାମ ଉଚ୍ଚାରଣ
କରଇ ବିଘ୍ନ କରଷଣ । ୪୫-୪୭।
ଶ୍ରୀମୈତ୍ରେୟ ଉବାଚ—
ଏମନ୍ତେ କଲେ ସର୍ବେ ସ୍ତୁତି
ଶୁଣି ସନ୍ତୋଷ ଯଜ୍ଞପତି

ଦକ୍ଷଙ୍କୁ ସ୍ୱହିଁ ଚକ୍ରପାଣି
ମେଘ ଗମ୍ଭୀର ମଞ୍ଜୁ ବାଣୀ
ପ୍ରସନ୍ନେ କହନ୍ତି ମୁରାରି
ସନ୍ତୋଷଚିତ୍ତେ ଦଇତ୍ୟାରି ।୪୮,୪୯।

ଶ୍ରୀ ଭଗବାନୁବାଚ
ମୁଁ ବ୍ରହ୍ମା ହର ରୂପଧରି
ଏ ବିଶ୍ୱ ସର୍ଜି ପାଳି ହରି
ଏଣୁ ମୋହର ତିନିଗୁଣ
ସଂସାର ପରମକାରଣ ।୫୦,୫୧।

ତସ୍ମିନ୍ ବ୍ରହ୍ମଣ୍ୟଦ୍ୱିତୀୟେ କେବଲେ ପରମାତ୍ମନି ।
ବ୍ରହ୍ମରୁଦ୍ରୌ ଚ ଭୂତାନି ଭେଦେନାଜ୍ଞୋଽନୁପଶ୍ୟତି । ୫୨ ।
ଯଥା ପୁମାନ୍ ନ ସ୍ୱାଙ୍ଗେଷୁ ଶିରଃପାଣ୍ୟାଦିଷୁ କ୍ୱଚିତ୍ ।
ପାରକ୍ୟବୁଦ୍ଧିଂ କୁରୁତେ ଏବଂ ଭୂତେଷୁ ମତ୍ପରଃ । ୫୩ ।
ତ୍ରୟାଣାମେକଭାବାନାଂ ଯୋ ନ ପଶ୍ୟତି ବୈ ଭିଦାମ୍ ।
ସର୍ବଭୂତାତ୍ମନାଂ ବ୍ରହ୍ମନ୍ ସ ଶାନ୍ତିମଧିଗଚ୍ଛତି । ୫୪ ।
ଶ୍ରୀମୈତ୍ରେୟ ଉବାଚ ।
ଏବଂ ଭଗବତାଦିଷ୍ଟଃ ପ୍ରଜାପତିପତିର୍ହରିମ୍ ।
ଅର୍ଚ୍ଚିତ୍ୱା କ୍ରତୁନା ସ୍ୱେନ ଦେବାନୁଭୟତୋଽଯଜତ୍ । ୫୫ ।

---

ଅଦ୍ୱିତୀୟ ପରଂବ୍ରହ୍ମ ସ୍ୱରୂପ ମୁଁ ହୋଇଲେ ମଧ୍ୟ ଅଜ୍ଞବ୍ୟକ୍ତିମାନେ ବ୍ରହ୍ମା ରୁଦ୍ର ଓ ସାଧାରଣ ଜୀବଙ୍କୁ ବିଭିନ୍ନ ବୋଲି କଳ୍ପନା କରିଥାନ୍ତି । ୫୨ ।

ଲୋକେ ଯେପରି ନିଜର ମସ୍ତକ, ହସ୍ତ, ପଦପ୍ରଭୃତି ବିଭିନ୍ନ ଅବୟବକୁ ନିଜଠାରୁ ବିଭିନ୍ନବୋଲି ମନେ କରନ୍ତି ନାହିଁ, ସେହିପରି ମୋର ପରମ ଭକ୍ତମାନେ କୌଣସି ପ୍ରାଣିଠାରେ ଭେଦବୁଦ୍ଧି କରନ୍ତି ନାହିଁ । ୫୩ ।

ହେ ପ୍ରଜାପତି ଦକ୍ଷ ! ଯେଉଁ ବ୍ୟକ୍ତିମାନେ ପ୍ରାଣିସ୍ୱରୂପ ଏକଭାବାପନ୍ନ ଆମ୍ଭମାନଙ୍କୁ ଅର୍ଥାତ୍ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କୁ ଭେଦଜ୍ଞାନ ନ କରନ୍ତି; ସେମାନେ ଶାନ୍ତିଲାଭ କରନ୍ତି । ୫୪ ।

ଶ୍ରୀମୈତ୍ରେୟ କହିଲେ :—

ଭଗବାନ୍ ଶ୍ରୀହରି ଏହିପରି ଆଦେଶ କଲାପରେ ପ୍ରଜାପତି ମାନଙ୍କ ମଧ୍ୟରେ ଶ୍ରେଷ୍ଠ ଦକ୍ଷ ତ୍ରିକପାଳ ନାମକ ଯଜ୍ଞ ଅନୁଷ୍ଠାନ ଦ୍ୱାରା ଭଗବାନଙ୍କୁ ଅର୍ଚ୍ଚନା କରି ଅଙ୍ଗ ଓ ପ୍ରଧାନ ଏହି ଉଭୟବିଧ ଯଜ୍ଞଦ୍ୱାରା ଦେବତାମାନଙ୍କୁ ଅର୍ଚ୍ଚନା କରିଥିଲେ । ୫୫ ।

---

ନିର୍ଲେପ ନିରଞ୍ଜନ ମୁହିଁ
ସକଳ ଭୂତେ ମୁଁ ବସଇ
ଯାହାକୁ ଯେବା ଶିକ୍ଷା ଦେଇ
ପ୍ରାଣୀ ଛାଡିବେ ତାହା ନାହିଁ
ଜ୍ଞାନିଙ୍କି ମୋ ରୂପ ଗୋଚର ।
ଅଜ୍ଞାନୀ ଜନେ ମୁହିଁ ଦୂର ।୫୨।
ଦେଖ ଏ ଦେହ ମଧ୍ୟ ଗତେ
ଶିର ଚରଣ କର ଯେତେ
ଏହାକୁ ଭିନ୍ନ ପ୍ରାୟେ ମଣେ
ଆତ୍ମାର ଗତି ନ ପ୍ରମାଣେ
ଯେ ହରି ହର ପଦ୍ମଯୋନି
ସର୍ବଭୂତଙ୍କ ଆତ୍ମା ଜାଣି
ବାହ୍ୟ ଅନ୍ତରେ ଦେଖେ ଏକ
ଯାହାର ନିର୍ମଳ ବିବେକ
ଦୂରେ ରହଇ ଆତ୍ମାଭ୍ରାନ୍ତି
ସେପ୍ରାଣୀଲଭେଆତ୍ମାଶାନ୍ତି।୫୩।୫୪

ଶ୍ରୀ ମୈତ୍ରେୟ ଉବାଚ—

ଏମନ୍ତ ବିଷ୍ଣୁ ମୁଖୁଁ ଶୁଣି
ଅମୃତପ୍ରାୟେ ମଞ୍ଜୁ ବାଣୀ
ହରିଙ୍କୁ ଯଜ୍ଞେ ପୂଜା କଲା
ଯେଣୁ ତାହାର ଭାଗ୍ୟ ଥିଲା
ଋଷି ଦେବତା ପୂଜା କରି
ରୁଦ୍ରଙ୍କୁ ରୁଦ୍ରଭାଗେ ବରି

ରୁଦ୍ରଞ୍ଚ ସ୍ୱେନ ଭାଗେନ ହ୍ୟୁପାଧାବତ୍ ସମାହିତଃ ।
କର୍ମ୍ମଣୋଦବସାନେନ ସୋମପାନିତରାନପି ।
ଉଦବସ୍ୟ ସହର୍ତ୍ୱିଗ୍‌ଭିଃ ସସ୍ନାବବଭୃଥଂ ତତଃ । ୫୬ ।
ତସ୍ମା ଅପ୍ୟନୁଭାବେନ ସ୍ୱେନୈବାବାପ୍ତରାଧସେ ।
ଧର୍ମ୍ମ ଏବ ମତିଂ ଦତ୍ୱା ତ୍ରିଦଶାସ୍ତେ ଦିବଂ ଯଯୁଃ । ୫୭ ।
ଏବଂ ଦାକ୍ଷାୟଣୀ ହିତ୍ୱା ସତୀ ପୂର୍ବକଳେବରମ୍ ।
ଜଜ୍ଞେ ହିମବତଃ କ୍ଷେତ୍ରେ ମେନାୟାମିତି ଶୁଶ୍ରୁମ । ୫୮ ।
ତମେବ ଦୟିତଂ ଭୂୟ ଆବୃଙ୍‌କ୍ତେ ପତିମମ୍ବିକା ।
ଅନନ୍ୟଭାବୈକଗତିଂ ଶକ୍ତିଃ ସୁପ୍ତେବ ପୁରୁଷମ୍ । ୫୯ ।
ଏତଦ୍‌ଭଗବତଃ ଶମ୍ଭୋଃ କର୍ମ୍ମଦକ୍ଷାଧ୍ୱରଦ୍ରୁହଃ ।
ଶ୍ରୁତଂ ଭାଗବତାଚ୍ଛିଷ୍ୟାଦୁଦ୍ଧବାନ୍ମେ ବୃହସ୍ପତେଃ । ୬୦ ।

---

ଦକ୍ଷ ଏକାଗ୍ରଚିତ୍ତରେ ଯଜ୍ଞର ଉତ୍ତମଅଂଶ ଦ୍ୱାରା ରୁଦ୍ରଙ୍କୁ ଏବଂ ସମାପ୍ତିକାଳୀନ କର୍ମଦ୍ୱାରା ସୋମପାୟୀ ଅନ୍ୟାନ୍ୟ ଦେବତାମାନଙ୍କୁ ଅର୍ଚ୍ଚନାକରି ଯଜ୍ଞ ଶେଷ କରିଥିଲେ । ତଦନନ୍ତର ପୁରୋହିତମାନଙ୍କ ସହିତ ଅବଭୃଥ ଅର୍ଥାତ୍ ଯଜ୍ଞସମାପନାନନ୍ତର ସ୍ନାନ କରିବାକୁ ଗମନ କରିଥିଲେ । ୫୬ ।

ଦକ୍ଷ ନିଜର ଭଗବଦ୍ ଆରାଧନା ପ୍ରଭାବରୁ ଯଜ୍ଞରେ ସିଦ୍ଧିଲାଭ କରିଥିଲେ ମଧ୍ୟ "ଧର୍ମରେ ମତି ହେଉ" ଏହି ଆଶୀର୍ବାଦ କରି ଦେବତାମାନେ ସ୍ୱର୍ଗକୁ ଗମନ କଲେ । ୫୭ ।

ହେ ବିଦୁର ! ଦକ୍ଷକନ୍ୟା ସତୀ ପୂର୍ବଦେହ ତ୍ୟାଗ କରି ହିମାଳୟ ପତ୍ନୀ ମେନକା ଗର୍ଭରେ ଜାତ ହୋଇଥିଲେ ବୋଲି ଆମ୍ଭେମାନେ ଶୁଣିଅଛୁଁ । ୫୮ ।

ପ୍ରଳୟ କାଳରେ ପରମେଶ୍ୱରଙ୍କଠାରେ ଲୟପ୍ରାପ୍ତ ପ୍ରକୃତି ଯେପରି ପୁନଶ୍ଚ ସେହି ପୁରୁଷଙ୍କୁ ଆଶ୍ରୟ କରିଥାଏ, ସେହିପରି ସତୀ ଜନ୍ମାନ୍ତରରେ ସେହି ମହାଦେବଙ୍କୁ ହିଁ ଜୀବନର ଏକମାତ୍ର ଆଶ୍ରୟ ପ୍ରିୟତମ ପତିରୂପେ ଭଜନ କରିଥିଲେ । ୫୯ ।

ଦକ୍ଷଯଜ୍ଞ ନାଶକାରୀ ଭଗବାନ୍ ଶିବଙ୍କର ଏହି କାର୍ଯ୍ୟାବଳୀ ବୃହସ୍ପତିଙ୍କ ଶିଷ୍ୟ ଭଗବଦ୍‌ଭକ୍ତ ଉଦ୍ଧବଙ୍କଠାରୁ ମୁଁ ଶ୍ରବଣ କରିଥିଲି । ୬୦ ।

---

ଯଜ୍ଞର ଶେଷେ ଭାଗ ଦେଇ
ସେ ଅବଭୃଥ ସ୍ନାନ କଲା ।୫୫,୫୬
ଦକ୍ଷ ରହିଲା ନିଜଘରେ
ଦେବେ ଚଳିଲେ ଯେଝାପୁରେ ।୫୭
ଏବେ ହୋ ଶୁଣ କୁରୁବୀର
ସତୀ ଯେ ଛାଡ଼ିଲେ ଶରୀର

ପୁଣି ସେ ହିମବନ୍ତ ଘରେ
ଜନ୍ମିଲେ ମେନକା ଉଦରେ
ପୁଣି ରୁଦ୍ରଙ୍କୁ ସେ ବରିଲା
ଅମ୍ବିକା ହିମଗିରି ବାଳା । ୫୮-୫୯
ଏମନ୍ତ ରୁଦ୍ରର ଚରିତ
ଯେମନ୍ତେ ଦକ୍ଷ ଯଜ୍ଞ ହତ

ଉଦ୍ଧବ ମୁଖୁଁ ଏହା ଶୁଣି
ତୋତେ କହିଲି ସରମାଣି ।୬୦।

ଇଦଂ ପବିତ୍ରଂ ପରମୀଶଚେଷ୍ଟିତଂ ଯଶସ୍ୟମାୟୁଷ୍ୟମଘୌଘମର୍ଷଣମ୍ ।
ଯୋ ନିତ୍ୟଦାକର୍ଣ୍ଣ୍ୟ ନରୋଽନୁକୀର୍ତ୍ତୟେଦ୍ଧୁନୋତ୍ୟଘଂ କୌରବ ଭକ୍ତିଭାବତଃ ।୬୧।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ଦକ୍ଷଯଜ୍ଞସନ୍ଧାନଂ ନାମ ସପ୍ତମୋଽଧ୍ୟାୟଃ । ୭ ।

---

ହେ ବିଦୁର ! ଏହି ପରମପବିତ୍ର ଯଶସ୍କର ଆୟୁବୃଦ୍ଧିକାରୀ ପାପବିନାଶକ ଶିବଚରିତ୍ରାବଳୀ ଯେଉଁ ବ୍ୟକ୍ତି ଭକ୍ତିସହିକାରେ ଶ୍ରବଣ ଓ କୀର୍ତ୍ତନ କରେ, ସେ ନିଜର ଓ ଶ୍ରୋତୃବର୍ଗଙ୍କର ସଂସାର ଦୁଃଖ ଛେଦନ କରିବାକୁ ସମର୍ଥ ହୁଏ । ୬୧ ।

---

| | | |
|---|---|---|
| ପରମେଶ୍ୱରର ଚରିତ<br>ଭକ୍ତ ତାରଣେ ଭାଗବତ<br>ଭାବେ କହିଲି ତୋ ଅଗ୍ରତେ<br>ଯେଣୁ ତୁ ପଚାରିଲୁ ମୋତେ | ସର୍ବ ସମ୍ପଦ ଏତେଣେ ଲଭେ<br>ଜୀବ ନ ପଡ଼େ ପରାଭବେ ।୬୧।<br>କହଇ ବିପ୍ର ଜଗନ୍ନାଥ<br>ଭକ୍ତଙ୍କ ହିତେ ଭାଗବତ |  |



## ଅ ଷ୍ଟ ମ ଅ ଧ୍ୟା ୟ ।

ଅଷ୍ଟମେ ଗୁରୁଦାରୋକ୍ତିରୋଷମତ୍ସରତଃ ପୁରାତ୍ ।
ନିର୍ଗତେନ ଧ୍ରୁବେଣାହ ତପସା ତୋଷଣଂ ହରେଃ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ସନକାଦ୍ୟା ନାରଦଶ୍ଚ ଋଭୁର୍ହଂସୋଽରୁଣିର୍ଯତିଃ ।
ନୈତେ ଗୃହାନ୍ ବ୍ରହ୍ମସୁତା ହ୍ୟାବସନ୍ନୂର୍ଦ୍ଧ୍ୱରେତସଃ । ୧ ।
ମୃଷାଧର୍ମ୍ମସ୍ୟ ଭାର୍ଯ୍ୟାସୀଦ୍ଦମ୍ଭଂ ମାୟାଞ୍ଚ ଶତ୍ରୁହନ୍ ।
ଅସୂତ ମିଥୁନଂ ତତ୍ତୁ ନିଋତିର୍ଜଗୃହେଽପ୍ରଜାଃ । ୨ ।
ତୟୋଃ ସମଭବଲ୍ଲୋଭୋ ନିକୃତିଶ୍ଚ ମହାମତେ ।
ତାଭ୍ୟାଂ କ୍ରୋଧଶ୍ଚ ହିଂସା ଚ ଯଦ୍ଦୁରୁକ୍ତିଃ ସ୍ୱସା କଲିଃ । ୩ ।

---

ଧ୍ରୁବଚରିତ ।

ଅଷ୍ଟମ ଅଧ୍ୟାୟରେ ବିମାତାଦ୍ୱାରା ଭର୍ତ୍ସିତହୋଇ ଧ୍ରୁବ ଅପମାନରେ ବନଗମନକରି ତପସ୍ୟା ଦ୍ୱାରା ଶ୍ରୀହରିଙ୍କୁ ସନ୍ତୋଷ କରିବା ବିଷୟ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀମୈତ୍ରେୟ କହିଲେ ;—

ସନକାଦି କୁମାର ଚତୁଷ୍ଟୟ, ନାରଦ, ଋଭୁ, ହଂସ, ଅରୁଣି, ଯତି, ବ୍ରହ୍ମାଙ୍କର ଏହି ଊର୍ଦ୍ଧ୍ୱରେତା ପୁତ୍ରଗଣ ଦାରପରିଗ୍ରହ କରି ନ ଥିଲେ । ୧ ।

ହେ ଶତ୍ରୁଦମନ ବିଦୁର ! ଅଧର୍ମଙ୍କର ମିଥ୍ୟାନାମକ ଏକ ଭାର୍ଯ୍ୟା ଥିଲା, ମିଥ୍ୟାଙ୍କର ଦମ୍ଭ ବୋଲି ଏକ ପୁତ୍ର ଥିଲା, ମାୟାନାମ୍ନୀ କନ୍ୟା ଥିଲା । ଏମାନେ ପରେ ଦାମ୍ପତ୍ୟ ଭାବାପନ୍ନ ହୋଇଥିଲେ । ନୈଋତ କୋଣର ଅଧିପତି ନିଋତି ନିଃସନ୍ତାନ ଥିବାରୁ ମାୟା ଓ ଦମ୍ଭଙ୍କୁ ସନ୍ତାନରୂପେ ଗ୍ରହଣ କରିଥିଲେ । ୨ ।

ହେ ମହାମତି ବିଦୁର ! ଦମ୍ଭ ଓ ମାୟାଙ୍କର ଲୋଭନାମକ ଗୋଟିଏ ପୁତ୍ର ନିକୃତି ବା ଶଠତା ନାମରେ ଗୋଟିଏ କନ୍ୟା ଜନ୍ମିଥିଲେ । ଏହି ଉଭୟଙ୍କଠାରୁ କ୍ରୋଧ ଓ ହିଂସା ଜନ୍ମିଲେ, କ୍ରୋଧ ଓ ହିଂସାରୁ କଲି (କଳହ) ଓ ତାହାଙ୍କର ଭଗ୍ନୀ 'ଦୁରୁକ୍ତି' ଜନ୍ମିଥିଲା । ୩ ।

---

ବିମାତା କଟୁବାକ୍ୟେ ରୁଷି, ଧ୍ରୁବହୋଇଲା ବନବାସୀ । ତପେ ତୋଷିଲା ଭଗବାନ, ଅଷ୍ଟମ ଅଧ୍ୟାୟେ କଥନ ॥

ଶ୍ରୀ ମୈତ୍ରେୟ ଉବାଚ—
ନାରଦ ଋଭୁ ସନକାଦି
ଅରୁଣି ଋଷି ଯେ ହଂସାଦି
ବ୍ରହ୍ମାକୁମର ଏତେ ଜଣେ
ରହିଲେ ଊର୍ଦ୍ଧ୍ୱରେତା ପଣେ

ତାଙ୍କର ଗୃହ ବଂଶ ନାହିଁ
ଅଧର୍ମ୍ମ ବଂଶ ଏବେ କହି । ୧ ।
ଧାତା ତନୟ ଯେ ଅଧର୍ମ୍ମ
ମୃଷା ତାହାର ପତ୍ନୀ ନାମ
ତହୁଁ ଜନ୍ମିଲେ ସୁତ ସୁତା
ମାୟା ଯେ ଦମ୍ଭର ବନିତା

ତାଙ୍କର ପୁତ୍ର କନ୍ୟା ହେଲା
ଲୋଭ ନିକୃତି ନାମ ଥିଲା
ତହିଁରୁ ପୁତ୍ର କନ୍ୟା ଜାତ
ଯେ କ୍ରୋଧ ନାମେ ହିଂସା ଖ୍ୟାତ
ତାଙ୍କର ପୁତ୍ର କନ୍ୟା ହେଲା
କଲି ଦୁରୁକ୍ତି ନାମ ଥିଲା ।୨,୩।

ଦୁରୁକ୍ତୌ କଲଗ୍ରଧତ୍ତ ଭୟଂ ମୃତ୍ୟୁଞ୍ଚ ସତ୍ତମ ।
ତୟୋଶ୍ଚ ମିଥ ନଂ ଜଜ୍ଞେ ଯାତନା ନିରୟସ୍ତଥା । ୪ ।
ସଂଗ୍ରହେଣ ମୟାଖ୍ୟାତଃ ପ୍ରତିସର୍ଗସ୍ତବାନଘ ।
ତ୍ରିଃ ଶ୍ରୁତ୍ୱୈତତ୍ ପୁମାନ୍ ପୁଣ୍ୟଂ ବିଧୁନୋତ୍ୟାତ୍ମନୋମଲମ୍ । ୫ ।
ଅଥାତଃ କୀର୍ତ୍ତୟେ ବଂଶଂ ପୁଣ୍ୟକୀର୍ତ୍ତେଃ କୁରୁଦ୍ୱହ ।
ସ୍ୱାୟମ୍ଭୁବସ୍ୟାପି ମନୋର୍ହରେରଂଶାଂଶଜନ୍ମନଃ । ୬ ।
ପ୍ରିୟବ୍ରତୋତ୍ତାନପାଦୌ ଶତରୂପାପତେଃ ସୁତୌ ।
ବାସୁଦେବସ୍ୟ କଲୟା ରକ୍ଷାୟାଂ ଜଗତଃ ସ୍ଥିତୌ । ୭ ।
ଜାୟେ ଉତ୍ତାନପାଦସ୍ୟ ସୁନୀତିଃ ସୁରୁଚିସ୍ତୟୋଃ ।
ସୁରୁଚିଃ ପ୍ରେୟସୀ ପତ୍ୟୁର୍ନେତରା ଯତ୍ସୁତୋ ଧ୍ରୁବଃ । ୮ ।

---

ହେ ସାଧୁଶ୍ରେଷ୍ଠ ବିଦୁର ! କଲି ଦୁରୁକ୍ତିଙ୍କ ଗର୍ଭରେ ଭୀତି ନାମ୍ନୀ କନ୍ୟା ଓ ମୃତ୍ୟୁ ନାମକ ପୁତ୍ର ଉତ୍ପନ୍ନ ହୋଇଥିଲେ । ଏହି ଦୁଇଜଣଙ୍କଠାରୁ ଯାତନା ନାମ୍ନୀ କନ୍ୟା ଓ ନରକ ନାମକ ପୁତ୍ର ଜାତ ହେଲେ, ସେମାନେ ମଧ୍ୟ ଦାମ୍ପତ୍ୟ ଭାବାପନ୍ନ ହେଲେ । ୪ ।

ହେ ନିଷ୍ପାପ ବିଦୁର ! ମୁଁ ପ୍ରଳୟର ହେତୁଭୂତ ଏହି ଅଧର୍ମବଂଶ ତୁମ୍ଭ ନିକଟରେ ବର୍ଣ୍ଣନା କଲି, ଅଧର୍ମ ବଂଶର ଏହି ଆଖ୍ୟାନ ପୁଣ୍ୟମୟ, କାରଣ ଅଧର୍ମ ବର୍ଜନ କଲେ ପୁଣ୍ୟଲାଭ ହୁଏ, ଯେଉଁ ବ୍ୟକ୍ତି ତିନିବାର ଏହା ଶ୍ରବଣ କରେ ତାହାର ଆତ୍ମକଳୁଷ ବିଦୂରିତ ହୁଏ । ୫ ।

ହେ କୁରୁକୁଳ ଚୂଡ଼ାମଣି ବିଦୁର ! ବର୍ତ୍ତମାନ୍ ମୁଁ ପୁଣ୍ୟକୀର୍ତ୍ତି ଶ୍ରୀହରିଙ୍କର ଅଂଶାଂଶ ସ୍ୱାୟମ୍ଭୁବ ମନୁବଂଶ ପ୍ରସଙ୍ଗ କୀର୍ତ୍ତନ କରୁଅଛି ଶ୍ରବଣ କର । ୬ ।

ସ୍ୱାୟମ୍ଭୁବ ମନୁଙ୍କର ଶତରୂପାନାମ୍ନୀ ପତ୍ନୀ ଗର୍ଭରେ ପ୍ରିୟବ୍ରତ ଓ ଉତ୍ତାନପାଦନାମକ ଦୁଇପୁତ୍ର ଭଗବାନ୍ ବାସୁଦେବଙ୍କ ଅଂଶରେ ଜାତହୋଇ ପୃଥିବୀ ପାଳନ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ ।୭

ଉତ୍ତାନପାଦଙ୍କର ସୁରୁଚି ଓ ସୁନୀତି ନାମ୍ନୀ ଦୁଇପତ୍ନୀ ଥିଲେ, ସୁରୁଚି ସ୍ୱାମିଙ୍କର ଅତି ପ୍ରିୟତମା, ଧ୍ରୁବ ସେହି ସୁନୀତିଙ୍କର ପୁତ୍ର । ୮ ।

---

ଭୟ ଯେ ମୃତ୍ୟୁ ତହୁଁ ହୋଇ
ତାଙ୍କର ପୁତ୍ର କନ୍ୟା ଦୁଇ
ନିରୟ ଯାତନା ଏ ବେନି
ଅଧର୍ମ ବଂଶ ଏତେ ଘେନି । ୪ ।
ମନୁ ଅଗ୍ରଜ ବଂଶ ଏହି
ପ୍ରସ୍ତାବ ଛଳେ କହିଲଇ । ୫ ।

ଏବେ କହିବା ସ୍ୱାୟମ୍ଭୁବ
ମନୁର ବଂଶ ଯେ ସମ୍ଭବ । ୬ ।
ସେ ମନୁ ଶତରୂପା ଭୁଲେ
ଯାହାର ଅଙ୍ଗୁ ସମ୍ଭବିଲେ
ବିଷ୍ଣୁ କଳାରେ ଜଣେ ଜଣେ
ପୃଥ୍ୱୀ ପାଳିଲେ ରାଜାପଣେ । ୭ ।

ଉତ୍ତାନପାଦ ରାଜା ସେହି
ତାଙ୍କର ବେନି ମହାଦେଈ
ସୁନୀତି ସୁରୁଚି ଏ ଦୁଇ
ସୁରୁଚି ରାଜାଙ୍କର ସ୍ନେହୀ
ଉତ୍ତମ ସୁରୁଚିର ସୁତ
ସୁନୀତିଠାରୁ ଧ୍ରୁବ ଜାତ । ୮ ।

ଏକଦା ସୁରୁଚେଃ ପୁତ୍ରମଙ୍କମାରୋପ୍ୟ ଲାଲୟନ୍ ।
ଉତ୍ତମଂ ନାରୁରୁକ୍ଷନ୍ତଂ ଧ୍ରୁବଂ ରାଜାଭ୍ୟନନ୍ଦତ । ୯ ।
ତଥା ଚିକୀର୍ଷମାଣଂ ତଂ ସପତ୍ନ୍ୟାସ୍ତନୟଂ ଧ୍ରୁବମ୍ ।
ସୁରୁଚିଃ ଶୃଣ୍ୱତୋ ରାଜ୍ଞଃ ସେର୍ଷ୍ୟମାହାତିଗର୍ବିତା । ୧୦ ।
ନ ବତ୍ସ ନୃପତେର୍ଧିଷ୍ଣ୍ୟଂ ଭବାନାରୋଢୁମର୍ହତି ।
ନ ଗୃହୀତୋ ମୟା ଯତ୍ ତ୍ୱଂ କୁକ୍ଷାବପି ନୃପାତ୍ମଜଃ । ୧୧ ।
ବାଲୋଽସି ବତ ନାତ୍ମାନମନ୍ୟସ୍ତ୍ରୀଗର୍ଭସଂଭୃତମ୍ ।
ନୂନଂ ବେଦ ଭବାନ୍ ଯସ୍ୟ ଦୁର୍ଲଭେଽର୍ଥେ ମନୋରଥଃ । ୧୨ ।

---

ଦିନେ ରାଜା ଉତ୍ତାନପାଦ ସୁରୁଚିପୁତ୍ର ଉତ୍ତମଙ୍କୁ କୋଡ଼ରେ ନେଇ ଗେହ୍ଲା କରୁଥିଲେ । ଏପରି ସମୟରେ ଧ୍ରୁବ ପିତାଙ୍କ କୋଡ଼ରେ ବସିବାକୁ ଇଚ୍ଛା କଲେ, କିନ୍ତୁ ରାଜା ସୁରୁଚିଭୟରେ ଧ୍ରୁବଙ୍କୁ କୋଡ଼ରେ ଗ୍ରହଣ କଲେ ନାହିଁ । ୯ ।

ଏହିପରି ସପତ୍ନୀତନୟ ଧ୍ରୁବଙ୍କୁ ରାଜକୋଡ଼ରେ ବସିବାର ଇଚ୍ଛା ପ୍ରକାଶ କରିବାର ଦେଖି ସୁରୁଚି ଗର୍ବିତା ହୋଇ ରାଜସମ୍ମୁଖରେ ଈର୍ଷାପୂର୍ଣ୍ଣ ହୃଦୟରେ କହିଲେ । ୧୦ ।

ସୁରୁଚି କହିଲେ :—

ବତ୍ସ ଧ୍ରୁବ ! ତୁ ରାଜପୁତ୍ର ହେଲେ ମଧ୍ୟ ମୋ-ଗର୍ଭରେ ଜନ୍ମଗ୍ରହଣ କରିନାହୁଁ, ତେଣୁ ରାଜକୋଡ଼ରେ ବସିବାର ବା ରାଜସିଂହାସନ ଆରୋହଣ କରିବା ଦୁରାଶା ମାତ୍ର । ୧୧ ।

ରେ ବାଳକ ! ତୁ ଅନ୍ୟ ସ୍ତ୍ରୀ ଗର୍ଭରେ ଜନ୍ମଗ୍ରହଣ କରିଅଛୁ; ତାହା ତୁ ଜାଣୁନା, ତାହାହେଲେ ତୁ ଏପରି ଦୁରାଶା କରନ୍ତୁ ନାହିଁ । ୧୨ ।



ସୁରୁଚିଙ୍କ କର୍ତ୍ତୃକ ଧ୍ରୁବଙ୍କର ଅପମାନ

---

ଦିନେକ ସୁରୁଚିକୁମର
କୋଳେ ବସାନ୍ତେ ନୃପବର
ଧ୍ରୁବ ପ୍ରବେଶ ହେଲା ଯାଇ
କୋଳରେ ବସିବା ଇଛାଇ
ରାଜା କରନ୍ତେ ଅନାଦର
ସୁରୁଚି କ୍ରୋଧେ କହୁଛିର ।୯,୧୦।

ହେ ଧ୍ରୁବ ରାଜପୁତ୍ର ହେଉ
ନୃପାସନକୁ ଯୋଗ୍ୟ ନୋହୁ
ମୋର ଗର୍ଭରେ ଜନ୍ମ ନାହିଁ
ରାଜ ଆସନ ଇଛୁ କେହି ।୧୧।
ଅନ୍ୟ ନାରୀର ଗର୍ଭେ ଜାତ
ବାଳକ ନ ଜାଣୁ ବୃତ୍ତାନ୍ତ

ଅଜ୍ଞାନ ପଣ ପୁତ୍ର ଧରୁ
ଦୁର୍ଲଭ ଅର୍ଥେ ବାଞ୍ଛା କରୁ ।୧୨।

ତପସାରାଧ୍ୟ ପୁରୁଷଂ ତସ୍ୟୈବାନୁଗ୍ରହେଣ ମେ ।
ଗର୍ଭେ ତ୍ୱଂ ସାଧୟାତ୍ମାନଂ ଯଦୀଚ୍ଛସି ନୃପାସନମ୍ । ୧୩ ।
ଶ୍ରୀମୈତ୍ରେୟ ଉବାଚ ।
ମାତୁଃ ସପତ୍ନ୍ୟାଃ ସୁଦୁରୁକ୍ତିବିଦ୍ଧଃ ଶ୍ୱସନ୍ ରୁଷା ଦଣ୍ଡହତୋ ଯଥାହିଃ ।
ହିତ୍ୱା ମିଷନ୍ତଂ ପିତରଂ ସନ୍ନବାଚଂ ଜଗାମ ମାତୁଃ ସ ରୁଦନ୍ ସକାଶମ୍ ।୧୪।
ତଂ ନିଶ୍ୱସନ୍ତଂ ସ୍ଫୁରିତାଧରୋଷ୍ଠଂ ସୁନୀତିରୁତ୍ସଙ୍ଗମୁଦୂହ୍ୟ ବାଲମ୍ ।
ନିଶମ୍ୟ ତତ୍ ପୌରମୁଖାନ୍ନିତାନ୍ତଂ ସା ବିବ୍ୟଥେ ଯଦ୍‌ଗଦିତଂ ସପତ୍ନ୍ୟାଃ । ୧୫ ।
ସୋତ୍ସୃଜ୍ୟ ଧୈର୍ଯ୍ୟଂ ବିଲଲାପ ଶୋକଦାବାଗ୍ନିନା ଦାବଲତେବ ବାଳା ।
ବାକ୍ୟଂ ସପତ୍ନ୍ୟାଃ ସ୍ମରତୀ ସରୋଜଶ୍ରିୟା ଦୃଶା ବାଷ୍ପକଲାମୁବାହ । ୧୬ ।

ଯଦି ରାଜ ସିଂହାସନ ଲାଭ କରିବାକୁ ଇଚ୍ଛା କରୁ, ତେବେ ତପସ୍ୟା କର, ଭଗବାନଙ୍କୁ ଆରାଧନା କର, ତାଙ୍କର ଅନୁଗ୍ରହ ଲାଭକରି ମୋ ଗର୍ଭରେ ଜନ୍ମଗ୍ରହଣ କର । ୧୩ ।

ଶ୍ରୀମୈତ୍ରେୟ କହିଲେ :—

ବାଳକ ଧ୍ରୁବ ବିମାତାର ଦୁର୍ବାକ୍ୟ ବାଣବିଦ୍ଧ ହୋଇ ଦଣ୍ଡାହତ ସର୍ପପରି ଦୀର୍ଘନିଶ୍ୱାସ ତ୍ୟାଗ କରୁ କରୁ କାନ୍ଦିବାକୁ ଲାଗିଲେ, ପିତା ଦେଖି ସୁଦ୍ଧା କିଛି କହିଲେ ନାହିଁ, ତାହାଙ୍କର ବାକ୍‌ରୁଦ୍ଧ ହୋଇଗଲା, ଧ୍ରୁବ ପିତାଙ୍କୁ ଛାଡ଼ି କାନ୍ଦି କାନ୍ଦି ମା ନିକଟକୁ ଗମନ କଲେ । ୧୪ ।

ବାଳକ ଘନ ଘନ ଦୀର୍ଘ ନିଶ୍ୱାସ ତ୍ୟାଗ କରୁଅଛି, ଦୁଃଖର ଆବେଗରେ ତାହାର ଅଧର କମ୍ପିତ ହେଉଅଛି, ଏହା ଦେଖି ସୁନୀତି ତାହାକୁ କୋଳକୁ ଟାଣିନେଇଥିଲେ ଓ ସପତ୍ନୀ ତାହାପ୍ରତି ଦୁର୍ବାକ୍ୟ ପ୍ରୟୋଗ କରିଅଛି, ତାହା ଅନ୍ତଃପୁର ଗୃହିଣୀମାନଙ୍କଠାରୁ ଶୁଣି ବ୍ୟଥିତ ହୋଇଥିଲେ । ୧୫ ।

ଦାବାନଳ ଯେପରି ବନଲତା ଦଗ୍‌ଧକରେ, ସେହିପରି ଶୋକ ଦାବାନଳରେ ସୁନୀତିଙ୍କର ହୃଦୟ ଦଗ୍‌ଧୀଭୂତ ହେଲା । ସେ ଆଉ ଧୈର୍ଯ୍ୟ ଧରି ନ ପାରି ବିଳାପ କରିବାକୁ ଲାଗିଲେ, ସପତ୍ନୀର ଦୁର୍ବାକ୍ୟ ସ୍ମରଣ କରି ତାହାଙ୍କର ପଦ୍ମଲୋଚନଦ୍ୱୟ ଅଶ୍ରୁବିନ୍ଦୁରେ ପରିପୂର୍ଣ୍ଣ ହେଲା । ୧୬ ।

ତପରେ ତୋଷି ଭଗବାନ
ମୋର ଉଦରେ ହେବୁ ଜନ୍ମ
ତେବେ ଇଚ୍ଛିବୁ ନୃପାସନ
ଏ ଜନ୍ମେ ନୋହୁ ତୁ ଭାଜନ ।୧୩।

ଶ୍ରୀମୈତ୍ରେୟ ଉବାଚ—

ମାତା ସପତ୍ନୀ ଦୁଷ୍ଟବାଣୀ
ପ୍ରତ୍ୟକ୍ଷେ ଧ୍ରୁବ କର୍ଣ୍ଣେ ଶୁଣି
ହୃଦେ ଭେଦିଲା କି ବା କାଣ୍ଡ
କି ସର୍ପ ଅଙ୍ଗେ ବାଜେ ଦଣ୍ଡ
ଏ ଛଳବାଣୀ ରାଜା ଶୁଣି
କିଛି ନ ବୋଲି ହେଲେ ତୁନି
ତେଣୁ ବଢ଼ିଲା ଧ୍ରୁବକୋପ
ନିଶ୍ୱାସ ଛାଡ଼େ ଯେହ୍ନେ ସର୍ପ
ରାଜା ନିକଟୁଁ ଧ୍ରୁବ ଗଲା
ନିଜ ସଦନେ ସେ ମିଳିଲା ।୧୪।
ରୋଦନ କରି କ୍ରୋଧଭରେ
ମିଳିଲା ମାତାର ଛାମୁରେ
ମାତା ସ୍ୱପୁତ୍ର ମୁଖ ଚାହିଁ
ସମ୍ଭ୍ରମେ କୋଳରେ ବସାଇ
ସର୍ବ ଚରିତ୍ର ପଚାରିଲେ
ଶୁଣି ସେ ବ୍ୟାକୁଳେ କାନ୍ଦିଲେ
ପୁରଜନଙ୍କ ମୁଖୁଁ ଶୁଣି
ସୁନୀତି ସପତ୍ନୀର ବାଣୀ

ଦୀର୍ଘଂ ଶ୍ୱସନ୍ତୀ ବୃଜିନସ୍ୟ ପାରମପଶ୍ୟତୀ ବାଲକମାହ ବାଲା ।
ମାମଙ୍ଗଳଂ ତାତ ପରେଷୁ ମଂସ୍ଥା ଭୁଙ୍କ୍ତେ ଜନୋ ଯତ୍ ପରଦୁଃଖଦସ୍ତତ୍ ।୧୭।
ସତ୍ୟଂ ସୁରୁଚ୍ୟାଭିହିତଂ ଭବାନ୍ ମେ ଯଦ୍ଦୁର୍ଭଗାୟା ଉଦରେ ଗୃହୀତଃ ।
ସ୍ତନ୍ୟେନ ବୃଦ୍ଧଶ୍ଚ ବିଲଜ୍ଜତେ ଯାଂ ଭାର୍ଯ୍ୟେତି ବା ବୋଢୁମିଡସ୍ପତିର୍ମାମ୍ । ୧୮ ।
ଆତିଷ୍ଠ ତତ୍ ତାତ ବିମତ୍ସରସ୍ତ୍ୱମୁକ୍ତଂ ସମାତ୍ରାପି ଯଦବ୍ୟଲୀକମ୍ ।
ଆରାଧୟାଧୋକ୍ଷଜପାଦପଦ୍ମଂ ଯଦୀଚ୍ଛସେଽଧ୍ୟାସନମୁତ୍ତମୋ ଯଥା । ୧୯ ।
ଯସ୍ୟାଙ୍ଘ୍ରିପଦ୍ମଂ ପରିଚର୍ଯ୍ୟ ବିଶ୍ୱବିଭାବନାୟାତ୍ତଗୁଣାଭିପତ୍ତେଃ ।
ଅଜୋଽଧ୍ୟତିଷ୍ଠତ୍ ଖଲୁ ପାରମେଷ୍ଠ୍ୟଂ ପଦଂ ଜିତାତ୍ମଶ୍ୱସନାଭିବନ୍ଦ୍ୟମ୍ । ୨୦ ।

---

ଇହ ଜୀବନରେ ଏ ଦୁଃଖର ଅବସାନ ନାହିଁ, ଏହା ଭାବି ସନ୍ତାନଙ୍କୁ ସମ୍ବୋଧନ କରି କହିଲେ । ବତ୍ସ ! ଅନ୍ୟର ଅପରାଧ ଧର ନାହିଁ, ଯେ ବ୍ୟକ୍ତି ଅନ୍ୟକୁ ଦୁଃଖ ଦିଏ; ସେ ସେହି ଦୁଃଖରେ ଭାଗୀ ହୁଏ ।୧୭

ସୁରୁଚି ସତକଥା କହିଅଛି, କାରଣ ମହାରାଜ ମୋତେ ପତ୍ନୀରୂପେ ଦୂରେଥାଉ ଏପରି କି ଦାସୀରୂପେ ସୁଦ୍ଧା ସ୍ୱୀକାର କରିବାକୁ ଲଜ୍ଜା ବୋଧ କରନ୍ତି । ଏପରି ହତଭାଗିନୀ ମୁଁ, ତୁ ମୋର ଉଦରରେ ଜନ୍ମଗ୍ରହଣ କରିଅଛୁ । ମୋର ସ୍ତନ୍ୟପାନ କରି ବର୍ଦ୍ଧିତ ହୋଇଅଛୁ, ସୁତରାଂ ତୋ ପକ୍ଷରେ ରାଜସିଂହାସନ ଆରୋହଣ କରିବା କଷ୍ଟସାଧ୍ୟ ବିଡମ୍ବନା । ୧୮ ।

ତୋର ବିମାତା 'ଭଗବାନଙ୍କୁ ତପସ୍ୟା କର' ଇତ୍ୟାଦି ଯାହା କହିଅଛି ତାହା ସତ୍ୟ, ଅର୍ଥାତ୍ ତୁ ସେହିପରି ଆଚରଣ କର । ଉତ୍ତମ ତୁଲ୍ୟ ସିଂହାସନ ଆରୋହଣ କରିବାକୁ ହେଲେ ଶ୍ରୀହରିଙ୍କର ପାଦପଦ୍ମ ଆରାଧନା କର । ୧୯ ।

ହେ ବତ୍ସ ! ସେହି ଭଗବାନ୍ ବିଶ୍ୱପାଳନ ନିମିତ୍ତ ସତ୍ତ୍ୱଗୁଣରେ ଅଧିଷ୍ଠାନ କରିଅଛନ୍ତି । ଜିତାନ୍ତଃକରଣ ଜିତାସନ ହୋଇ ଯୋଗୀମାନେ ତାହାଙ୍କର ଶ୍ରୀପାଦପଦ୍ମ ସର୍ବତୋ ଭାବରେ ବନ୍ଦନା କରୁଅଛନ୍ତି; ବ୍ରହ୍ମା ତାହାଙ୍କର ପାଦପଦ୍ମ ଆରାଧନାକରି ପାରମେଷ୍ଠ୍ୟ ପଦ ପ୍ରାପ୍ତ ହୋଇ ଅଛନ୍ତି । ୨୦ ।

---

ଅତ୍ୟନ୍ତ ବ୍ୟଥା ପାଇ ମନେ
ପୁତ୍ରକୁ କହେ ସାବଧାନେ
ହେ ପୁତ୍ର କର୍ମ ଆଦରିବା
ଏ ଦୁଃଖ କା ଆଗେ କହିବା
ପର କଥାକୁ ଅଭିମାନ
ଘେନନ୍ତି ନାହିଁ ସାଧୁଜନ ।୧୬-୧୭
ହେ ପୁତ୍ର ସୁରୁଚି ବଚନ
ତାହାକୁ ସତ୍ୟକରି ଘେନ
ଯାହା ସେ ମୋତେ ଦୁର୍ଭାଗିନୀ
କହିଲା ହିଂସା ଭାବ ଘେନି
ସେ କଥା ସତ୍ୟ ଏଣୁ କଲି
ରାଜାନବୋଲେଭାର୍ଯ୍ୟାବୋଲି ।୧୮
ହେ ବାବୁ ହୃଦୟ ତୋହର
ନିର୍ମ୍ମଳ କରି ବିମତ୍ସର
ଛଳ ବଚନ ମୂଳ କରି
ଶ୍ରୀହରିଚରଣ ସୁମରି
ହୃଦୟେ କରି ଆରାଧନ
ଯେବେ ତୁ ଇଛୁ ନୃପାସନ ।୧୯।
ଯେ ବିଶ୍ୱରକ୍ଷା ଇଚ୍ଛାକରେ
ସଗୁଣେ ସତ୍ତ୍ୱମୂର୍ତ୍ତି ଧରେ
ପୂଜି ତାଙ୍କର ପଦ୍ମପାଦ
ଧାତା ଲଭିଲା ବ୍ରହ୍ମାପଦ । ୨୦ ।

ତଥା ମନୁର୍ବୋ ଭଗବାନ୍ ପିତାମହୋ ଯମେକମତ୍ୟା ପୁରୁଦକ୍ଷିଣୈର୍ମଖୈଃ ।
ଇଷ୍ଟ୍ୱାଭିପେଦେ ଦୁରବାପମନ୍ୟତୋ ଭୌମଂ ସୁଖଂ ଦିବ୍ୟମଥାପବର୍ଗ୍ୟମ୍ ।୨୧।
ତମେବ ବତ୍ସାଶ୍ରୟ ଭୃତ୍ୟବତ୍ସଲଂ ମୁମୁକ୍ଷୁଭିର୍ମୃଗ୍ୟପଦାବ୍ଜପଦ୍ଧତିମ୍ ।
ଅନନ୍ୟଭାବେ ନିଜଧର୍ମଭାବିତେ ମନସ୍ୟବସ୍ଥାପ୍ୟ ଭଜସ୍ୱ ପୂରୁଷମ୍ । ୨୨ ।
ନାନ୍ୟଂ ତତଃ ପଦ୍ମପଲାଶଲୋଚନାଦ୍ଦୁଃଖଚ୍ଛିଦଂ ତେ ମୃଗୟାମି କଞ୍ଚନ ।
ଯୋ ମୃଗ୍ୟତେ ହସ୍ତଗୃହୀତପଦ୍ମୟା ଶ୍ରିୟେତରୈରଙ୍ଗ ବିମୃଗ୍ୟମାଣୟା । ୨୩ ।

ଶ୍ରୀମୈତ୍ରେୟ ଉବାଚ ।

ଏବଂ ସଂଜଲ୍ପିତଂ ମାତୁରାକର୍ଣ୍ୟାର୍ଥାଗମଂ ବଚଃ ।
ସଂନିୟମ୍ୟାତ୍ମନାତ୍ମାନଂ ନିଶ୍ଚକ୍ରାମ ପିତୁଃ ପୁରାତ୍ । ୨୪ ।

---

ବ୍ରହ୍ମାଙ୍କ ତୁଲ୍ୟ ତୋର ପିତାମହ ଭଗବାନ୍ ମନୁ ମଧ୍ୟ ତାହାଙ୍କୁ ସର୍ବାନ୍ତର୍ଯ୍ୟାମୀ ଜାଣି ଏକାନ୍ତ ଭାବରେ ପ୍ରଚୁର ଦକ୍ଷିଣା ବିଶିଷ୍ଟ ଯଜ୍ଞରେ ଅର୍ଚ୍ଚନା କରି ଅନ୍ୟର ଦୁଷ୍ପ୍ରାପ୍ୟ ଐହିକ ପାରତ୍ରିକ ଓ ଅପବର୍ଗ ସୁଖଲାଭ କରିଅଛନ୍ତି । ୨୧ ।

ହେ ବତ୍ସ ! ମୁକ୍ତିକାମୀ ପୁରୁଷମାନେ ଯାହାଙ୍କର ପାଦପଦ୍ମ ଅନୁସରଣ କରି ଅନ୍ୟବସ୍ତୁ ପ୍ରତି ଆସକ୍ତି ପରିତ୍ୟାଗ କରନ୍ତି ଓ ନିଜର ଭକ୍ତି ଧର୍ମ ଶୋଭିତ ଚିତ୍ତ ସେହି ଭକ୍ତବତ୍ସଳଙ୍କ ଠାରେ ଅର୍ପିତ କରନ୍ତି; ସେହିମାନେ ଧନ୍ୟ । ୨୨ ।

ସେହି ପଦ୍ମପଳାଶଲୋଚନ ଶ୍ରୀହରିଙ୍କ ବ୍ୟତୀତ ଅନ୍ୟ କେହି ତୋର ଦୁଃଖ ଦୂର କରି ପାରିବେ ନାହିଁ । କିନ୍ତୁ ତାଙ୍କର ଦର୍ଶନ ଲାଭ ଅତି ଦୁର୍ଲ୍ଲଭ, ବ୍ରହ୍ମାଦି ଦେବଗଣ ଯେଉଁ କମଳାଙ୍କର ଅନୁସରଣ କରନ୍ତି, ସେହି କମଳବାସିନୀ କମଳା ନିଜ ହସ୍ତରେ ଦୀପତୁଲ୍ୟ କମଳଧାରଣ କରି ସର୍ବଦା ତାହାଙ୍କର ଅନୁସନ୍ଧାନ କରୁଅଛନ୍ତି । ୨୩ ।

ଶ୍ରୀ ମୈତ୍ରେୟ କହିଲେ :—

ହେ ବିଦୁର ! ଜନନୀଙ୍କର ଏପରି ବିଳାପ ଏବଂ ଅର୍ଥ ସାଧକ ବାକ୍ୟ ଶ୍ରବଣକରି ଧ୍ରୁବ ମନକୁ ସଂଯମ କରି ପିତୃଗୃହରୁ ବାହାରି ପଡ଼ିଲା । ୨୪ ।

---

ସେ ଭୃତ୍ୟବତ୍ସଳ ପୟର
ହେ ପୁତ୍ର ବେଗେ ଆଶ୍ରେ କର
ସେ ଯେଣୁ ଅଭୟଚରଣ
ଆଶ୍ରେ କରନ୍ତି ମୁନିଗଣ
ତୁ ଏବେ ସର୍ବ ଧର୍ମ୍ମ ତେଜ
ପରମପୁରୁଷଙ୍କୁ ଭଜ

ସେ ପଦ୍ମନେତ୍ର ବିନା କେହି
ଦୁଃଖ ହରନ୍ତା ତୋର ନାହିଁ
ଜଗତ ବନ୍ଦନୀୟା ନାରୀ
ସେ ଲକ୍ଷ୍ମୀ କରେ ପଦ୍ମ ଧରି
ପଦକମଳେ ପରିଗ୍ରସି
ନିତ୍ୟେ କରନ୍ତି ନିଭସ୍ଥଳି

ସେ ପଦ୍ମପାଦେ ଆଶ୍ରେକର
ସମସ୍ତ ତାପ ହେବ ଦୂର ।୨୧-୨୩
ଏମନ୍ତ ମାତାବାକ୍ୟ ଶୁଣି
ଧ୍ରୁବ ଅମୃତ ପ୍ରାୟ ମଣି
ସମସ୍ତ ଭୋଗ ତେଜ୍ୟାକଲା
ତକ୍ଷଣେ ଘରୁ ବାହାରିଲା । ୨୪ ।

ନାରଦସ୍ତଦୁପାକର୍ଣ୍ୟ ଜ୍ଞାତ୍ୱାତସ୍ୟ ଚକୀର୍ଷିତମ୍ ।
ସ୍ପୃଷ୍ଟ୍ୱାମୂର୍ଦ୍ଧନ୍ୟଘଘ୍ନେନ ପାଣିନା ପ୍ରାହ ବିସ୍ମିତଃ । ୨୫ ।
ଅହୋ ତେଜଃ କ୍ଷତ୍ରିୟାଣାଂ ମାନଭଙ୍ଗମମୃଷ୍ୟତାମ୍ ।
ବାଲୋଽପ୍ୟୟଂ ହୃଦା ଧତ୍ତେ ଯତ୍ ସମାତୁରସଦ୍‌ବଚଃ । ୨୬ ।
ଶ୍ରୀନାରଦ ଉବାଚ ।
ନାଧୁନାପ୍ୟବମାନଂ ତେ ସମ୍ମାନଞ୍ଚାପି ପୁତ୍ରକ ।
ଲକ୍ଷୟାମଃ କୁମାରସ୍ୟ ସକ୍ତସ୍ୟ କ୍ରୀଡ଼ନାଦିଷୁ । ୨୭ ।

---

ଦେବର୍ଷି ନାରଦ ଧ୍ରୁବର ଗୃହତ୍ୟାଗ ବିଷୟ ଶ୍ରବଣ କରି ଏବଂ ତାହାର ଅଭିଳାଷ ଜାଣିପାରି ବିସ୍ମିତ ହେଲେ ଏବଂ ତାହାଙ୍କର ପାପ ବିନାଶକ ହସ୍ତଦ୍ୱାରା ଧ୍ରୁବର ମସ୍ତକ ସ୍ପର୍ଶକରି ମନେ ମନେ କହିଲେ । ୨୫ ।

ଅହୋ ! କ୍ଷତ୍ରିୟର କି ତେଜ, କିଞ୍ଚିତ୍‌ମାତ୍ର ମାନଭଙ୍ଗ ସହ୍ୟ କରି ନ ପାରି ଧ୍ରୁବ ବାଳକ ହେଲେ ମଧ୍ୟ ବିମାତାର ବାକ୍ୟ ବାଣ ଅନ୍ତରରେ ଧାରଣ କରି ରଖିଅଛି । ୨୬ ।

ତଦନନ୍ତର ଦେବର୍ଷି ନାରଦ ଧ୍ରୁବଙ୍କୁ କହିଲେ—ବତ୍ସ ଧ୍ରୁବ ! ତୁତ ପାଞ୍ଚିବର୍ଷର ଶିଶୁ, କ୍ରୀଡ଼ାରେ ଆସକ୍ତ, ତୋର ମାନ ସମ୍ମାନ କିଛି ଦେଖିବାର ଶକ୍ତ ନାହିଁ । ୨୭ ।



ଧ୍ରୁବଙ୍କୁ ନାରଦଙ୍କର ଉପଦେଶ ।

---

ଧ୍ରୁବ ଚଳନ୍ତେ ମହାଋଷି
ନାରଦ ପ୍ରବେଶିଲେ ଆସି
ମାର୍ଗରେ ଧ୍ରୁବଙ୍କୁ ଭେଟିଲେ
ସନ୍ତୋଷେ ଆଶୀର୍ବାଦ କଲେ
ଅଘନାଶନ ମୁନିକର
ତକ୍ଷଣେ ଦେଲେ ଧ୍ରୁବ ଶିର
କଲ୍ୟାଣ କରି ମୁନିବର
ବଚନ କହନ୍ତି ମଧୁର । ୨୫ ।

ଶ୍ରୀନାରଦ ଉବାଚ—
ଧନ୍ୟ କ୍ଷତ୍ରିୟଙ୍କ ସ୍ୱଭାବ
କିଞ୍ଚିତେ ଲଭି ମାନ ଭଙ୍ଗ
ବାଳକ ହୃଦ ନ ସହିଲ
ଛଳେ ଯା ବିମାତା କହିଲ । ୨୬ ।
ଏହା ବିଚାରି ମହାଋଷି
ଧ୍ରୁବଙ୍କୁ ମଞ୍ଜୁବାଣୀ ଭାଷି

ହେ ପୁତ୍ର ବାଳୁତେ କି ଜାଣି
ମାନ କି ଅପମାନ ପୁଣି
ବାଳକ ଅବସ୍ଥା ଯେତେକ
ସେ କାଳେ ଖେଳ କଉତୁକ
ବାଳକଙ୍କର ଏହି ଭାବ
ନ ଘେନ ମାନ ପରାଭବ । ୨୭ ।

ବିକଲେଷ୍ୱବିଦ୍ୟମାନେଽପି ନ ହ୍ୟସନ୍ତୋଷହେତବଃ ।
ପୁଂସୋ ମୋହମୃତେ ଭିନ୍ନା ଯଲ୍ଲୋକେ ନିଜକର୍ମଭିଃ । ୨୮ ।
ପରିତୁଷ୍ୟେତ୍ ତତସ୍ତାତ ତାବନ୍ମାତ୍ରେଣ ପୁରୁଷଃ ।
ଦୈବୋପସାଦିତଂ ଯାବଦ୍‌ବୀକ୍ଷେଶ୍ୱରଗତିଂ ବୁଧଃ । ୨୯ ।
ଅଥ ମାତ୍ରୋପଦିଷ୍ଟେନ ଯୋଗେନାବରୁରୁତ୍ସସି ।
ଯତ୍ ପ୍ରସାଦଂ ସ ବୈ ପୁଂସାଂ ଦୁରାରାଧ୍ୟୋ ମତୋ ମମ । ୩୦ ।
ମୁନୟଃ ପଦବୀଂ ଯସ୍ୟ ନିଃସଙ୍ଗେନୋରୁଜନ୍ମଭିଃ ।
ନ ବିଦୁର୍ମୃଗୟନ୍ତୋଽପି ତୀବ୍ରଯୋଗସମାଧିନା । ୩୧ ।
ଅତୋ ନିବର୍ତ୍ତତାମେଷ ନିର୍ବନ୍ଧସ୍ତବ ନିଷ୍ଫଳଃ ।
ଯତିଷ୍ୟତି ଭବାନ୍ କାଲେ ଶ୍ରେୟସାଂ ସମୁପସ୍ଥିତେ । ୩୨ ।
ଯସ୍ୟ ଯଦ୍ଦୈବବିହିତଂ ସ ତେନ ସୁଖଦୁଃଖୟୋଃ ।
ଆତ୍ମାନଂ ତୋଷୟନ୍ ଦେହୀ ତମସଃ ପାରମୃଚ୍ଛତି । ୩୩ ।

---

ଯଦି ତୋର ମାନ ଅପମାନ ଧାରଣା ଜନ୍ମିଥାଏ, ତାହାହେଲେ ଜାଣିବୁ ଅସନ୍ତୋଷର କାରଣ ଅପମାନାଦି ଲୋକର ମୋହଭିନ୍ନ ଆଉ କିଛି ନୁହେଁ, ନିଜର କର୍ମଦ୍ୱାରା ପୃଥକ୍‌ଭାବରେ ମାନ ଅପମାନ ଘଟିଥାଏ ।୨୮

ହେ ବତ୍ସ ! ବିଜ୍ଞବ୍ୟକ୍ତି ପକ୍ଷରେ କର୍ତ୍ତବ୍ୟ ଏକମାତ୍ର ଈଶ୍ୱର ଗତି ଅର୍ଥାତ୍ କର୍ମର ଫଳାଫଳ ସମସ୍ତ ଈଶ୍ୱରଙ୍କ ଇଚ୍ଛାରେ ସମ୍ପାଦିତ, ଏହା ଧାରଣାକରି ଭାଗ୍ୟକୁ ଆଦରି ସନ୍ତୁଷ୍ଟ ରହିବା ଉଚିତ । ୨୯ ।

ତୁ ମାର ଉପଦେଶରେ ଭଗବାନଙ୍କର ଅନୁଗ୍ରହ ପାଇବାକୁ ଅଭିଳାଷ କରିଅଛୁ । ତାହାଙ୍କୁ ଆରାଧନା କରିବା ସହଜ ନୁହେଁ । ୩୦ ।

ମୁନିଗଣ ବହୁ ଜନ୍ମଜନ୍ମାନ୍ତର ନିଷ୍କାମ କଠୋର ଯୋଗସାଧନରେ ତାହାଙ୍କର ମାର୍ଗ ଅନୁସନ୍ଧାନ କରି ପାରି ନାହାନ୍ତି । ୩୧ ।

ଅତଏବ ତୁ ଏହି ବୃଥା ପ୍ରୟାସ ତ୍ୟାଗ କର, ଯେତେବେଳେ ତୋର ମୋକ୍ଷୋପଯୋଗୀ ବୁଦ୍ଧି ଉପସ୍ଥିତ ହେବ ସେତେବେଳେ ଏ ଚେଷ୍ଟା କରିବୁ । ୩୨ ।

ସୁଖ ଦୁଃଖ ମଧ୍ୟରେ ଯାହାର ଯାହା ଭାଗ୍ୟଲିଖନ ତାହା ଉପସ୍ଥିତ ହେବ, ତହିଁରେ ଯଦି ମନକୁ ସନ୍ତୁଷ୍ଟ ରଖିପାରି, ତେବେ ମୋହମୟ ସଂସାରରୁ ସହଜରେ ମୁକ୍ତ ପାଇବ । ୩୩ ।

---

ଈଶ୍ୱର ଲୀଳା ଏ ସଂସାର
କର୍ମ ଅଟଇ ମୂଳ ତାର
ଅଦୃଷ୍ଟ ଦୁଃଖ ସୁଖ ଦିଏ
ଆନେ ଦୂଷିବା ନ ଯୋଗାଏ
କର୍ମ ଆଦରି ସହ ଦୁଃଖ
କେତେ ହେଁ ନୋହିବ ବିମୁଖ ।୨୮,୨୯

ମାତାର ବାକ୍ୟ ଅନୁମତେ
ତୋର ଗମନ ତପ ଅର୍ଥେ
ଅସାଧ୍ୟ ବିଷ୍ଣୁ ଆରାଧନ
କଳ୍ପାନ୍ତେ ଫୁଟି ମୁନିଜନ
ଅଦ୍ୟାପି ନ ପାଇଲେ ଅନ୍ତ
ତୁ କି ଲଭିବୁ ଜଗନ୍ନାଥ ।୩୦,୩୧

ଏବେ ନିବର୍ତ୍ତି ଘରେ ଯାଅ
ନିଷ୍ଫଳେ ଶ୍ରମ ତୁ ନ ପାଅ
ଚତୁର୍ଥ କାଳ ତୋର ହେଲେ
ହରିଙ୍କି ତପେ ତୋଷ ଭଲେ
ଏବେ ତୁ ଯାଅ ନିଜ ଘର
ଆତ୍ମାସନ୍ତୋଷେ କର୍ମ କର ।୩୨,୩୩

ଗୁଣାଧିକାନ୍ମୁଦଂ ଲିପ୍‌ସେଦନୁକ୍ରୋଶଂ ଗୁଣାଧମାତ୍ ।
ମୈତ୍ରୀଂ ସମାନାଦନ୍ୱିଚ୍ଛେନ୍ନ ତାପୈରଭିଭୂୟତେ । ୩୪ ।

ଶ୍ରୀଧ୍ରୁବ ଉବାଚ ।

ସୋଽୟଂ ଶମୋ ଭଗବତା ସୁଖଦୁଃଖହତାତ୍ମନାମ୍ ।
ଦର୍ଶିତଃ କୃପୟା ପୁଂସାଂ ଦୁର୍ଦ୍ଦର୍ଶୋଽସ୍ମଦ୍‌ବିଧୈସ୍ତୁ ଯଃ । ୩୫ ।
ତଥାପି ମେଽବିନୀତସ୍ୟ କ୍ଷାତ୍ତ୍ରଂ ଘୋରମୁପେୟୁଷଃ ।
ସୁରୁଚ୍ୟା ଦୁର୍ବଚୋବାଣୈର୍ନ ଭିନ୍ନେ ଶ୍ରୟତେ ହୃଦି । ୩୬ ।
ପଦଂ ତ୍ରିଭୁବନୋତ୍‌କୃଷ୍ଟଂ ଜିଗୀଷୋଃ ସାଧୁ ବର୍ତ୍ମ ମେ ।
ବ୍ରୂହ୍ୟସ୍ମତ୍‌ପିତୃଭିର୍ବ୍ରହ୍ମନ୍ନନ୍ୟୈରପ୍ୟନଧିଷ୍ଠିତମ୍ । ୩୭ ।
ନୂନଂ ଭବାନ୍ ଭଗବତୋ ଯୋଽଙ୍ଗଜଃ ପରମେଷ୍ଠିନଃ ।
ବିତୁଦନ୍ନଟତେ ବୀଣାଂ ହିତାୟ ଜଗତୋଽର୍କବତ୍ । ୩୮ ।

---

ଯେଉଁ ବ୍ୟକ୍ତି ଅଧିକ ଗୁଣସମ୍ପନ୍ନଲୋକ ପାଇଲେ ପ୍ରୀତିଲାଭ କରେ, ଅଳ୍ପଗୁଣ ଶାଳୀ ଲୋକ ପାଇଲେ ଦୟା ପ୍ରକାଶ କରେ ଏବଂ ତୁଲ୍ୟଗୁଣଶାଳୀ ଲୋକପାଇଲେ ମିତ୍ରତା ସ୍ଥାପନ କରେ; ସେ ବ୍ୟକ୍ତି କଦାପି ଦୁଃଖ ଭାଗୀ ହୁଏନାହିଁ । ୩୪ ।

ଶ୍ରୀଧ୍ରୁବ କହିଲେ :—

ପ୍ରଭୋ ! ସୁଖ ଦୁଃଖରେ ଘାତପ୍ରତିଘାତରେ ଯାହାର ହୃଦୟ ଆନ୍ଦୋଳିତ, ସେହି ଲୋକମାନଙ୍କ ପ୍ରତି କୃପାକରି ଆପଣ ଯେଉଁ ଶମ ଅର୍ଥାତ୍ ବିକ୍ଷିପ୍ତଚିତ୍ତ ନିବୃତ୍ତିର ଉପାୟ ପ୍ରଦର୍ଶନ କଲେ, ତାହା ମୋ ତୁଲ୍ୟ ବ୍ୟକ୍ତି ପକ୍ଷରେ ଦୁର୍ଜ୍ଞେୟ । ୩୫ ।

ଆପଣଙ୍କର ଉପଦେଶ ଅତି ଉପାଦେୟ ହେଲେ ମଧ୍ୟ ଅଦମ୍ୟ କ୍ଷତ୍ରିୟ ସ୍ୱଭାବବଶତଃ ମୁଁ ଅତ୍ୟନ୍ତ ଉଦ୍ଧତ, ସେଥିରେ ପୁଣି ବିମାତାର ଦୁର୍ବାକ୍ୟବାଣରେ ମୋର ହୃଦୟ ବିଦୀର୍ଣ୍ଣ, ସୁତରାଂ ଆପଣଙ୍କର ଉପଦେଶ ଗ୍ରହଣ କରିବାକୁ ମୁଁ ଅକ୍ଷମ । ୩୬ ।

ହେ ଦେବର୍ଷି ! ମୋର ପୂର୍ବପୁରୁଷମାନେ ଅଥବା ଅନ୍ୟ କୌଣସି ବ୍ୟକ୍ତି ଯାହା କଦାପି ଲାଭ କରିନାହାନ୍ତି, ତ୍ରିଭୁବନ ମଧ୍ୟରେ ସର୍ବୋତ୍କୃଷ୍ଟ ସେହି ପାଦ ଲାଭ କରିବାକୁ ମୁଁ ଅଭିଳାଷୀ ଅତଏବ ଆପଣ ତଦୁପଯୋଗି ଉପଦେଶ ଦିଅନ୍ତୁ । ୩୭ ।

ଯେଉଁ ମହର୍ଷି ବୀଣା ବଜାଇ ସର୍ବଦା ସୂର୍ଯ୍ୟ ତୁଲ୍ୟ ଜଗତର ହିତ ସାଧନ ନିମନ୍ତେ ପର୍ଯ୍ୟଟନ କରୁଥାନ୍ତି, ଆପଣ ନିଶ୍ଚୟ ବ୍ରହ୍ମାଙ୍କ ପୁତ୍ର ସେହି ନାରଦ ମୁନି । ୩୮ ।

---

ଗୁଣ ଅଧିକେ ମୋଦଲଭ
ନିକୃଷ୍ଟେ ଅନୁଗ୍ରହୀ ହେବ
ସମାନ ଜନେ ମିତ୍ର ପଣ
ଏହିଟି ଉତ୍ତମ ଲକ୍ଷଣ । ୩୪ ।
ଏମନ୍ତ ମୁନିମୁଖୁଁ ଶୁଣି
ଧ୍ରୁବ କହଇ ଦୈନ୍ୟବାଣୀ

ହେ ମହାଋଷି ତୁମ୍ଭ ବାକ୍ୟ
ଏ ସର୍ବ ସତ୍ୟଟି ପ୍ରତ୍ୟକ୍ଷ
ସୁରୁଚି ବାଣୀ ଶରଘାତ
ବଳେ ମୋ ହୃଦ ବ୍ୟାକୁଳିତ
ତହିଁ ତୁମ୍ଭର ବାକ୍ୟ ସାର
ନ ରହେ ଦୋଷ ନାହିଁ ମୋର

କ୍ଷତ୍ରିୟ କୁଳେ ହୋଇ ଜାତ
କେ ସହୁ କଟୁ ବାକ୍ୟଘାତ ।୩୫,୩୬
ତ୍ରିଲୋକ ପରିତ୍ରାଣ ଅର୍ଥେ
ତୁମ୍ଭ ଭ୍ରମଣ ଏ ଜଗତେ
ସ୍ୱଧର୍ମ୍ମ ଉପଦେଶ ଦେଇ
ହେଋଷିମୋତେକରତ୍ରାହି ।୩୭,୩୮

ଶ୍ରୀମୈତ୍ରେୟ ଉବାଚ ।

ଇତ୍ୟୁଦାହୃତମାକର୍ଣ୍ଣ୍ୟ ଭଗବାନ୍ ନାରଦସ୍ତଦା ।
ପ୍ରୀତଃ ପ୍ରତ୍ୟାହ ତଂ ବାଲଂ ସଦ୍‌ବାକ୍ୟମନୁକମ୍ପୟା । ୩୯ ।

ଶ୍ରୀନାରଦ ଉବାଚ ।

ଜନନ୍ୟାଭିହିତଃ ପନ୍ଥାଃ ସ ବୈ ନିଃଶ୍ରେୟସସ୍ୟ ତେ ।
ଭଗବାନ୍ ବାସୁଦେବସ୍ତଂ ଭଜ ତଂ ପ୍ରବଣାତ୍ମନା । ୪୦ ।
ଧର୍ମାର୍ଥକାମମୋକ୍ଷାଖ୍ୟଂ ଯ ଇଚ୍ଛେଚ୍ଛ୍ରେୟ ଆତ୍ମନଃ ।
ଏକଂ ହ୍ୟେବ ହରେସ୍ତତ୍ର କାରଣଂ ପାଦସେବନମ୍ । ୪୧ ।
ତତ୍ ତାତ ଗଚ୍ଛ ଭଦ୍ରଂ ତେ ଯମୁନାୟାସ୍ତଟଂ ଶୁଚି ।
ପୁଣ୍ୟଂ ମଧୁବନଂ ଯତ୍ର ସାନ୍ନିଧ୍ୟଂ ନିତ୍ୟଦା ହରେଃ । ୪୨ ।

---

ଶ୍ରୀମୈତ୍ରେୟ କହିଲେ :—

ଭଗବାନ୍ ନାରଦ ଧ୍ରୁବର ଏହି ବାକ୍ୟ ଶ୍ରବଣ କରି ସନ୍ତୁଷ୍ଟଚିତ୍ତରେ ଦୟାର୍ଦ୍ର ହୃଦୟରେ ତାହାଙ୍କୁ ଉପଦେଶ ଦେଲେ । ୩୯ ।

ଶ୍ରୀନାରଦ କହିଲେ :—

ତୋର ମାତା ସୁନୀତି ତୋତେ ଅଭିଳଷିତ ସିଦ୍ଧିର ଉପାୟ କହିଦେଇ ଅଛି, ଭଗବାନ୍ ଶ୍ରୀହରିହିଁ ସେହି ସାଧନାର ଏକମାତ୍ର ଉପାୟ, ତୁ ବିନମ୍ର ଚିତ୍ତରେ ତାହାଙ୍କୁ ଆରାଧନା କର । ୪୦ ।

ଯେଉଁ ବ୍ୟକ୍ତି ଧର୍ମ, ଅର୍ଥ, କାମ, ମୋକ୍ଷ ପ୍ରଭୃତି ମଙ୍ଗଳକାମନାକରେ, ଶ୍ରୀହରିଚରଣ ତାହାର ଏକମାତ୍ର ଆଶ୍ରୟ ସ୍ଥଳ । ୪୧ ।

ଅତଏବ ହେ ବତ୍ସ ! ଯମୁନାର ପବିତ୍ର ତୀରବର୍ତ୍ତୀ ମଧୁବନରେ ଯେଉଁ ନିର୍ମଳ ଭୂମି ଅଛି, ତୁ ଶୀଘ୍ର ସେଠାକୁ ଗମନ କରି ସେଠାରେ ଭଗବାନ୍ ଶ୍ରୀହରିଙ୍କଠାରେ ଚିତ୍ତ ନିବେଶକର, ତୋର ମଙ୍ଗଳ ହେଉ । ୪୨

---

ଶ୍ରୀମୈତ୍ରେୟ ଉବାଚ—

ଏମନ୍ତ ଧ୍ରୁବବାକ୍ୟ ଶୁଣି
ତାର ହୃଦୟ ମୂଳ ଜାଣି
କୃପା ଅମୃତ ଆର୍ଦ୍ର ବାଣୀ
ଆନନ୍ଦ ମନେ ଋଷି ଭଣି । ୩୯ ।

ଶ୍ରୀନାରଦ ଉବାଚ—

ଜନନୀବାକ୍ୟ ମାର୍ଗ ତୋର
ନିଶ୍ଚେ ହରିଙ୍କି ଆଶ୍ରେ କର । ୪୦ ।
ଯେ ଧର୍ମ ଅର୍ଥ କାମ ମୋକ୍ଷ
ବାଞ୍ଛା ଯେ କରନ୍ତି ପ୍ରତ୍ୟକ୍ଷ

ତାଙ୍କର ଶ୍ରୀହରିଚରଣ
ବିନୁ ନାହିଁଟି ପରିତ୍ରାଣ । ୪୧ ।
ତେଣୁ ତୁ ଯାଅ ସୁମଙ୍ଗଳେ
ପବିତ୍ର ଯମୁନାର କୂଳେ
ତହିଁ ସୁପୁଣ୍ୟ ମଧୁବନ
ଯହିଁ ବିଜୟ ଭଗବାନ । ୪୨

ସ୍ନାତ୍ୱାନୁସବନଂ ତସ୍ମିନ୍ କାଳିନ୍ଦ୍ୟାଃ ସଲିଲେ ଶିବେ ।
କୃତ୍ୱୋଚିତାନି ନିବସନ୍ନାତ୍ମନଃ କଳ୍ପିତାସନଃ । ୪୩ ।
ପ୍ରାଣାୟାମେନ ତ୍ରିବୃତା ପ୍ରାଣେନ୍ଦ୍ରିୟମନୋମଲମ୍ ।
ଶନୈର୍ବ୍ୟୁଦସ୍ୟାଭିଧ୍ୟାୟେନ୍ମନସା ଗୁରୁଣା ଗୁରୁମ୍ । ୪୪ ।
ପ୍ରସାଦାଭିମୁଖଂ ଶଶ୍ୱତ୍ ପ୍ରସନ୍ନବଦନେକ୍ଷଣମ୍ ।
ସୁନସଂ ସୁଭ୍ରୁବଂ ଚାରୁକପୋଲଂ ସୁରସୁନ୍ଦରମ୍ । ୪୫ ।
ତରୁଣଂ ରମଣୀୟାଙ୍ଗମରୁଣୋଷ୍ଠେକ୍ଷଣାଧରମ୍ ।
ପ୍ରଣତାଶ୍ରୟଣଂ ନୃମ୍ଣଂ ଶରଣ୍ୟଂ କରୁଣାର୍ଣ୍ଣବମ୍ । ୪୬ ।
ଶ୍ରୀବତ୍ସାଙ୍କଂ ଘନଶ୍ୟାମଂ ପୁରୁଷଂ ବନମାଳିନମ୍ ।
ଶଙ୍ଖଚକ୍ରଗଦାପଦ୍ମୈରଭିବ୍ୟକ୍ତଚତୁର୍ଭୁଜମ୍ । ୪୭ ।

---

ସେହି ମଧୁବନରେ ରହି ତ୍ରିସନ୍ଧ୍ୟାରେ ଯମୁନାର ମଙ୍ଗଳୋଦକରେ ସ୍ନାନକରି ଯଥା ବିଧି ଆସନ ରଚନା ପୂର୍ବକ ସ୍ୱସ୍ତିକାଦି କ୍ରମରେ ଉପବେଶନ କରି ତ୍ରିବାର ପ୍ରାଣାୟାମ ଦ୍ୱାରା ଧୀରେ ଧୀରେ ପଞ୍ଚମହାବାୟୁ ଇନ୍ଦ୍ରିୟବର୍ଗ ଓ ମନର ମାଳିନ୍ୟ ଦୂରକରି ହୃଦୟ ମଧ୍ୟରେ ସେହି ପରମାରାଧ୍ୟ ଶ୍ରୀହରିଙ୍କୁ ଧ୍ୟାନ କରି । ୪୩, ୪୪ ।

ସେ ଭକ୍ତପ୍ରତି ଅନୁଗ୍ରହଶୀଳ, ସେ ସର୍ବଦା ପ୍ରସନ୍ନ ନୟନ ଓ ପ୍ରସନ୍ନ ମୁଖ । ତାହାଙ୍କର ନାସିକା ଭ୍ରୂଯୁଗଳ, ଗଣ୍ଡଦ୍ୱୟ ଅତ୍ୟନ୍ତ ମନୋରମ; ସେ ଦେବଗଣଙ୍କ ମଧ୍ୟରେ ସୌନ୍ଦର୍ଯ୍ୟର ଆଧାର ।୪୫।

ସେ ସର୍ବଦା ତରୁଣବୟସ୍କ, ତାହାଙ୍କର ଅବୟବ ଅତ୍ୟନ୍ତ କମନୀୟ, ଅଧର ଓ ନୟନ ଯୁଗଳ ରକ୍ତାଭ । ତାହାଙ୍କର ପାଦଦ୍ୱୟ ଭକ୍ତଜନର ଆଶ୍ରୟସ୍ଥଳ, ସେ ଭକ୍ତର ସୁଖଦାତା, ଶରଣାଗତ ପାଳକ ଓ ଦୟା ସାଗର । ୪୬ ।

ସେ ଶ୍ରୀବତ୍ସଲାଞ୍ଛିତ, ମେଘାଭ, ପୁରୁଷଲକ୍ଷଣଯୁକ୍ତ, ବନମାଳୀ ଏବଂ ତାହାଙ୍କର ହସ୍ତ ଚତୁଷ୍ଟୟ ଶଙ୍ଖ, ଚକ୍ର, ଗଦା, ପଦ୍ମରେ ଶୋଭିତ । ୪୭ ।

---

ତହିଁ ତ୍ରିକାଳ ସ୍ନାନ କରି
କାଳିନ୍ଦୀ ଜଳେ ସନ୍ଧ୍ୟା ସାରି
କରିବୁ ନିଜାସନ ଶୁଦ୍ଧି
ତହିଁରେ ପ୍ରାଣାୟାମ ବିଧି
ପୂରକ କୁମ୍ଭକ ରେଚକ
ବାୟୁ ରୋଧନେ ସୁବିବେକ
ଅଜପ ଅଜପ ସାଧନ
ମନରେ କରି ଗୁରୁ ଧ୍ୟାନ

ହୃଦୟ ନିର୍ମ୍ମଳ କରିବୁ
ମନ ଚଞ୍ଚଳ ନ କରିବୁ ।୪୩, ୪୪।
ଏମନ୍ତ ହୃଦେ କରି ଭାବ
ଧ୍ୟାନ କରିବୁ ବାସୁଦେବ
ପ୍ରସନ୍ନ ସୁମୁଖ ନୟନ
ସୁନ୍ଦର ଭ୍ରୂରୁ ଗଣ୍ଡ କର୍ଣ୍ଣ
ସୁନାସା କପୋଳ ସୁନ୍ଦର
ତରୁଣ ଅପାଙ୍ଗ ମଧୁର

ଅରୁଣ ଓଷ୍ଠ ନେତ୍ର ବେନି
ଶରଣାଗତେ କୃପାଦାନୀ ।୪୫, ୪୬।
ନବୀନ ମେଘ ପ୍ରାୟେ ଆଭା
ଶ୍ରୀବତ୍ସଚିହ୍ନ ହୃଦେ ଶୋଭା
ବନମାଳାଏ ହୃଦେ ଶୋହେ
ପୁରୁଷରୂପେ ମନ ମୋହେ

କିରୀଟିନଂ କୁଣ୍ଡଳିନଂ କେୟୂରବଳୟାନ୍ୱିତମ୍ ।
କୌସ୍ତୁଭାଭରଣଗ୍ରୀବଂ ପୀତକୌଶେୟବାସସମ୍ । ୪୮ ।
କାଞ୍ଚିକଳାପପର୍ଯ୍ୟସ୍ତଂ ଲସତ୍କାଞ୍ଚନନୂପୁରମ୍ ।
ଦର୍ଶନୀୟତମଂ ଶାନ୍ତଂ ମନୋନୟନବର୍ଦ୍ଧନମ୍ । ୪୯ ।
ପଦ୍ଭ୍ୟାଂନଖମଣିଶ୍ରେଣ୍ୟା ବିଲସଦ୍ଭ୍ୟାଂ ସମର୍ଚ୍ଚିତାମ୍ ।
ହୃତ୍ପଦ୍ମକର୍ଣ୍ଣିକାଧିଷ୍ଣ୍ୟମାକ୍ରମ୍ୟାତ୍ମନ୍ୟବସ୍ଥିତମ୍ । ୫୦ ।
ସ୍ମୟମାନମଭିଧ୍ୟାୟେତ୍ ସାନୁରାଗାବଲୋକନମ୍ ।
ନିୟତେନୈକଭୂତେନ ମନସା ବରଦର୍ଷଭମ୍ । ୫୧ ।
ଏବଂ ଭଗବତୋ ରୂପଂ ସୁଭଦ୍ରଂ ଧ୍ୟାୟତୋ ମନଃ
ନିର୍ବୃତ୍ୟା ପରୟା ତୂର୍ଣ୍ଣଂ ସମ୍ପନ୍ନଂ ନ ନିବର୍ତ୍ତତେ ।୫୨।
ଜପଶ୍ଚ ପରମୋଗୁହ୍ୟଃ ଶ୍ରୂୟତାଂ ମେ ନୃପାତ୍ମଜ ।
ଯଂ ସପ୍ତରାତ୍ରଂ ପ୍ରପଠନ୍ ପୁମାନ୍ ପଶ୍ୟତି ଖେଚରାନ୍ ।୫୩।

---

ତାହାଙ୍କର ମସ୍ତକରେ କିରୀଟ, କର୍ଣ୍ଣରେ କୁଣ୍ଡଳ, ବାହୁରେ କେୟୁର, ହସ୍ତରେ ବଳୟ, ଗ୍ରୀବାରେ କୌସ୍ତୁଭମଣି ଶୋଭିତ; ତାହାଙ୍କର ପରିଧାନ ପୀତ କୌଶେୟ ବସନ । ୪୮ ।

ତାହାଙ୍କର ନିତମ୍ବ ଦେଶରେ କାଞ୍ଚିଦାମ ସୁବେଷ୍ଟିତ, ଚରଣରେ ସ୍ୱର୍ଣ୍ଣ ନୂପୁର ବିରାଜିତ, ସେ ଅତ୍ୟନ୍ତ ସୁନ୍ଦର ମୂର୍ତ୍ତି, ଶାନ୍ତ ଏବଂ ମନ ନୟନ ଆନନ୍ଦକାରୀ । ୪୯ ।

ସେ ନିଜର ନଖ ମଣି ଶ୍ରେଣିଦ୍ୱାରା ଦେଦୀପ୍ୟମାନ ଚରଣଯୁଗଳଦ୍ୱାରା ଭଜନକାରୀର ହୃଦୟ ପଦ୍ମ-କର୍ଣ୍ଣିକା ଅର୍ଥାତ୍ ମଧ୍ୟସ୍ଥାନ ସ୍ପର୍ଶକରିଇ ହୃଦୟ ମଧ୍ୟରେ ବିରାଜ କରନ୍ତି । ୫୦ ।

ଏବଂବିଧରୂପକୁ ଧାରଣା କଲେ ମନ ସ୍ଥିର ହେବ, ଏବଂ ଏକାଗ୍ରମନରେ ଈଷତ୍ ହାସ୍ୟଯୁକ୍ତ ପ୍ରୀତିପ୍ରେମ ପୂର୍ଣ୍ଣ—ଦୃଷ୍ଟି ସମ୍ପନ୍ନ, ବରଦ, ତାହାଙ୍କର ଶ୍ରେଷ୍ଠରୂପକୁ ଧ୍ୟାନ କରିବ । ୫୧ ।

ଯେଉଁ ବ୍ୟକ୍ତି ମଙ୍ଗଳମୟ ଭଗବାନଙ୍କୁ ଏହିପରି ଧ୍ୟାନ କରେ, ତାହାର ମନ ଅଚିରେ ପରମଶାନ୍ତି ପ୍ରାପ୍ତ ହୁଏ ଏବଂ ତାହା ଭଗବାନଙ୍କ ଠାରୁ ନିବୃତ୍ତ ହୁଏ ନାହିଁ । ୫୨ ।

ହେ ରାଜପୁତ୍ର ଧ୍ରୁବ ! ତୁମ୍ଭେ ମୋଠାରୁ ଅତି ଗୋପନୀୟ ଉତ୍ତମ ମନ୍ତ୍ର ଶ୍ରବଣ କର, ଯାହା ସପ୍ତରାତ୍ର ଜପ କଲେ ମନୁଷ୍ୟ ଗଗନଚାରୀ ଦେବତାମାନଙ୍କୁ ଦେଖି ପାରିବ । ୫୩ ।

---

କିରୀଟ କୁଣ୍ଡଳ କେୟୁର
ବଳୟ କୌସ୍ତୁଭ ସୁନ୍ଦର
ପୀତ ବସନ ପରିଧାନ
କଟୀ ମେଖଳା ଶୋଭମାନ
ନୂପୁର ରଙ୍ଗପଦେ ଶୋହେ
ଜନ ନୟନ ମନମୋହେ ।୪୮-୪୯

ବେନି ପାଦରେ ନଖଶ୍ରେଣୀ
ଭକ୍ତ ହୃଦୟ ଚିନ୍ତାମଣି
କରୁଣା ମିଶା ଅନୁରାଗ
କଟାକ୍ଷେ ବଦନ ସୁଭଗ
ଅଳପହାସ୍ୟେ ଶୋଭମାନ
ମନ ନିଶ୍ଚଳେ କର ଧ୍ୟାନ ।୫୦, ୫୧

ଏମନ୍ତ ଧ୍ୟାନେ କର ସ୍ଥିର
ଶୁଣ କହିବା ମନ୍ତ୍ର ସାର
ଯେ ମନ୍ତ୍ର ଜପି ସାତ ଦିନେ
ପୁରୁଷ ଦେବତାଙ୍କୁ ଚିହ୍ନେ ।୫୨, ୫୩

"ଓଁ ନମୋ ଭଗବତେ ବାସୁଦେବାୟ"
ମନ୍ତ୍ରେଣାନେନ ଦେବସ୍ୟ କୁର୍ଯ୍ୟାଦ୍ଦ୍ରବ୍ୟମୟୀଂ ବୁଧଃ ।
ସପର୍ଯ୍ୟାଂ ବିବିଧୈର୍ଦ୍ରବ୍ୟୈର୍ଦେଶକାଲବିଭାଗବିତ୍ । ୫୪ ।
ସଲିଳୈଃ ଶୁଚିଭିର୍ମାଲ୍ୟୈର୍ବନ୍ୟୈର୍ମୂଲଫଲାଦିଭିଃ ।
ଶସ୍ତାଙ୍କୁରାଂଶୁକୈଶ୍ଚାର୍ଚ୍ଚେତ୍ ତୁଲସ୍ୟା ପ୍ରିୟୟା ପ୍ରଭୁମ୍ । ୫୫ ।
ଲବ୍ଧ୍ୱା ଦ୍ରବ୍ୟମୟୀମର୍ଚ୍ଚାଂ କ୍ଷିତ୍ୟମ୍ବ୍ୱାଦିଷୁ ବାର୍ଚ୍ଚୟେତ୍ ।
ଆଭୃତାତ୍ମା ମୁନିଃ ଶାନ୍ତୋ ଯତବାଙ୍ମିତବନ୍ୟଭୁକ୍ । ୫୬ ।
ସ୍ୱେଚ୍ଛାବତାରଚରିତୈରଚିନ୍ତ୍ୟନିଜମାୟୟା ।
କରିଷ୍ୟତ୍ୟୁତ୍ତମଶ୍ଳୋକସ୍ତଦ୍ଧ୍ୟାୟେଦ୍ଧୃଦୟଙ୍ଗମମ୍ । ୫୭ ।
ପରିଚର୍ଯ୍ୟା ଭଗବତୋ ଯାବତ୍ୟଃ ପୂର୍ବସେବିତାଃ ।
ତା ମନ୍ତ୍ରହୃଦୟେନୈବ ପ୍ରଯୁଞ୍ଜ୍ୟାନ୍ମନ୍ତ୍ରମୂର୍ତ୍ତୟେ । ୫୮ ।

---

"ଓଁ ନମୋ ଭଗବତେ ବାସୁଦେବାୟ" ଏହି ମନ୍ତ୍ରରେ ଶ୍ରୀନାରଦ ଧ୍ରୁବଙ୍କୁ ଦୀକ୍ଷିତ କରିଥିଲେ । କେଉଁ ସ୍ଥାନରେ କେଉଁ ସମୟରେ କେଉଁ ଉପଚାର ଦ୍ୱାରା ଭଗବାନ୍ ସନ୍ତୁଷ୍ଟ ହୁଅନ୍ତି, ସେହିପରି ଦେଶ କାଳ ଅବଗତ ହୋଇ ବିଜ୍ଞ ସାଧକମାନେ ନାନା ଦ୍ରବ୍ୟରେ ଏହି ମହା ମନ୍ତ୍ରରେ ଭଗବାନଙ୍କର ଦ୍ରବ୍ୟମୟ ପୂଜା ବା ( ବାହ୍ୟପୂଜା ) କରନ୍ତି । ୫୪ ।

ବିଶୁଦ୍ଧ ଜଳ, ମାଲ୍ୟ, ବନ ଫଳମୂଳ, ଦୁର୍ବା, ବସ୍ତ୍ର, ଭଗବାନଙ୍କର ପ୍ରିୟତମ ତୁଳସୀ ଏହି ଦ୍ରବ୍ୟରେ ଶ୍ରୀହରିଙ୍କୁ ପୂଜା କରିବ । ୫୫ ।

ଶାଳଗ୍ରାମ ପ୍ରତିମା ପାଇଲେ ତହିଁରେ ତଦଭାବେ ମୃତ୍ତିକା ବା ଜଳାଦିରେ ଭଗବାନଙ୍କୁ ଅର୍ଚ୍ଚନା କରିବ । ଏହିପରି କ୍ରମଶଃ ମନଃ ସମ୍ୟକ୍ ଏକାଗ୍ର ଓ ବାକ୍ୟ ସଂଯତ ହେବ ଏବଂ ପରିମିତ ବନ୍ୟ ଫଳମୂଳାଦି ଭକ୍ଷଣ କରୁ କରୁ ଶାନ୍ତ ମୁନି ହୋଇ ପାରିବ । ୫୬ ।

ପୁଣ୍ୟକୀର୍ତ୍ତି ଭଗବାନ୍ ସ୍ୱୀୟ ଅଚିନ୍ତ୍ୟ ମାୟାଶକ୍ତିର ଅଧିଷ୍ଠାନରେ ଇଚ୍ଛା ପୂର୍ବକ ଅବତାର ଗ୍ରହଣ କରି ଥାନ୍ତି, ସେହି ଅବତାରମାନ ହୃଦୟ ମଧ୍ୟରେ କଳ୍ପନା କରି ଧ୍ୟାନକରିବ । ୫୭ ।

ପୂର୍ବେ ଭକ୍ତମାନେ ଭଗବାନଙ୍କର ଯେପରି ଅର୍ଚ୍ଚନା କରିଅଛନ୍ତି ସେହି ଉପଚାରମାନ ମନମଧ୍ୟରେ କଳ୍ପନା କରି ପୂର୍ବୋକ୍ତ ମହାମନ୍ତ୍ରରେ ମନ୍ତ୍ରମୂର୍ତ୍ତି ଭଗବାନଙ୍କ ଉଦ୍ଦେଶ୍ୟରେ ସେହିପରି ପୂଜା କରିବ ।୫୮।

---

"ଓଁ ନମୋ ଭଗବତେ ବାସୁଦେବାୟ"

ଏ ମନ୍ତ୍ରେ ଉପଚାର ଦେଇ
ହୃଦରେ ବିଷ୍ଣୁଙ୍କୁ ପୂଜିବ ।୫୪।
ପବିତ୍ର ଜଳ ବନ୍ୟ ଫଳ
ଦୁର୍ବା ତୁଳସୀ ବସ୍ତ୍ର ମାଳ

ଯେବେ ଇଚ୍ଛିବ ଆମ୍ଭାଭିବ
ଶିଳାଦି ପ୍ରତିମା କରିବ
ସମସ୍ତ କରି ନିବେଦନ
କିଞ୍ଚିତ ଶେଷ ଆସ୍ୱାଦନ ।୫୫,୫୬

ଯେ ମନ୍ତ୍ରମୂର୍ତ୍ତି ଭଗବାନ
ନିତ୍ୟେ କରିବ ହୃଦେ ଧ୍ୟାନ
ଏମନ୍ତ କାୟ ବାକ୍ୟ ମନେ
ହରି ପୂଜନ୍ତେ ସମାଧାନେ

ଏବଂ କାୟେନ ମନସା ବଚସା ଚ ମନୋଗତମ୍ ।
ପରିଚର୍ଯ୍ୟମାଣୋ ଭଗବାନ୍ ଭକ୍ତିମତ୍ପରିଚର୍ଯ୍ୟୟା । ୫୯ ।
ପୁଂସାମମାୟିନାଂ ସମ୍ୟଗ୍‌ଭଜତାଂ ଭାବବର୍ଦ୍ଧନଃ ।
ଶ୍ରେୟୋ ଦିଶତ୍ୟଭିମତଂ ଯଦ୍ଧର୍ମାଦିଷୁ ଦେହିନାମ୍ । ୬୦ ।
ବିରକ୍ତଶ୍ଚେନ୍ଦ୍ରିୟରତୌ ଭକ୍ତିଯୋଗେନ ଭୂୟସା ।
ତଂ ନିରନ୍ତରଭାବେନ ଭଜେତାଦ୍ଧା ବିମୁକ୍ତୟେ । ୬୧ ।
ଇତ୍ୟୁକ୍ତସ୍ତଂ ପରିକ୍ରମ୍ୟ ପ୍ରଣମ୍ୟ ଚ ନୃପାର୍ଭକଃ ।
ଯଯୌ ମଧୁବନଂ ପୁଣ୍ୟଂ ହରେଶ୍ଚରଣଚର୍ଚ୍ଚିତମ୍ । ୬୨ ।
ତପୋବନଂ ଗତେ ତସ୍ମିନ୍ ପ୍ରବିଷ୍ଟୋଽନ୍ତଃପୁରଂ ମୁନିଃ ।
ଅର୍ହିତାର୍ହଣକୋ ରାଜ୍ଞା ସୁଖାସୀନ ଉବାଚ ହ । ୬୩ ।

---

ଏହିପରି ଭଗବାନଙ୍କୁ ହୃଦୟମଧ୍ୟରେ ଧ୍ୟାନକରି କାୟମନୋବାକ୍ୟରେ ଭକ୍ତି ପୂର୍ବକ ଅର୍ଚ୍ଚନା କଲେ ଭଗବାନ୍ ସେହି ଅକପଟ ଭଜନାକାରି ବ୍ୟକ୍ତିମାନଙ୍କର ଅନୁରାଗ ବୃଦ୍ଧି କରନ୍ତି ଓ ଧର୍ମ ଅର୍ଥ କାମ ପ୍ରଭୃତି ମଧ୍ୟରେ ଦେହଧାରି ପକ୍ଷରେ ଯାହା ଶ୍ରେୟସ୍କର, ତାହାହିଁ ତାଙ୍କୁ ପ୍ରଦାନ କରନ୍ତି । ୫୯,୬୦ ।

ଯେଉଁ ସାଧକ ଇନ୍ଦ୍ରିୟତୃପ୍ତିକର ବିଷୟରେ ମହାଶୂନ୍ୟ, ସେ ବ୍ୟକ୍ତି ତାହାଙ୍କର ପରମପୁରୁଷାର୍ଥରୂପ ବିଶିଷ୍ଟ ମୂର୍ତ୍ତି ଅଥାତ୍ ଭଗବାନଙ୍କର ଅବଚ୍ଛିନ୍ନ ସେବାଧିକାର ଲଭ ନିମିତ୍ତ ପ୍ରବଳ ଭକ୍ତିଯୋଗ ଅବଲମ୍ବନ ପୂର୍ବକ ତାହାଙ୍କର ଆରାଧନା କରିବ । ୬୧ ।

ରାଜପୁତ୍ର ଧ୍ରୁବ ନାରଦଙ୍କ ନିକଟରୁ ଏହି ଉପଦେଶ ଲଭିକରି ତାହାଙ୍କୁ ପ୍ରଦକ୍ଷିଣ ଓ ପ୍ରଣାମ କରି ଶ୍ରୀହରି ଚରଣାଙ୍କିତ ପବିତ୍ର ମଧୁବନକୁ ଗମନ କରିଥିଲେ । ୬୨ ।

ଧ୍ରୁବ ତପୋବନକୁ ଗମନ କଲାପରେ ଦେବର୍ଷି ନାରଦ ରାଜା ଉତ୍ତାନପାଦଙ୍କର ଅନ୍ତଃପୁରରେ ପ୍ରବେଶ କଲେ, ସେଠାରେ ସୁଖାସୀନ ହୋଇ ଉତ୍ତାନପାଦଙ୍କ କର୍ତ୍ତୃକ ଆଦରରେ ଅର୍ପିତ ପାଦ୍ୟ ଅର୍ଘ୍ୟାଦି ଗ୍ରହଣ କରିଥିଲେ । ୬୩ ।

---

ସେ ଭକ୍ତବତ୍ସଳ ମୁରାରି
ପ୍ରସନ୍ନହୋଇବେଦଇତ୍ୟାରି ।୫୯,୬୦
ଯେତେବେ ଇନ୍ଦ୍ରିୟ ନିବାରିବ
ନିରତେ ହରି ଭାବେ ଥିବ
ବିଶୁଦ୍ଧ ଭାବ ଦେଖି ତାରି
ମିଳନ୍ତି ବ୍ରହ୍ମାଣ୍ଡ ଈଶ୍ୱର ।୬୧।
ଏମନ୍ତ ଋଷି ଉପଦେଶ
ଶ୍ରବଣେ ଧ୍ରୁବ ହୋଇ ତୋଷ
ମୁନିଙ୍କି କରି ପ୍ରଦକ୍ଷିଣ
ବେଗେ ସେ ଗଲା ମଧୁବନ ।୬୨।
ନାରଦ ତତ୍‌କ୍ଷଣେ ଚଳିଲେ
ରାଜାର ପୁରେ ପ୍ରବେଶିଲେ
ନୃପତି ଦେଖିଲେ ନାରଦ
ବେଗେ ପୂଜିଲେ ଋଷିପାଦ ।୬୩।

ଶ୍ରୀନାରଦ ଉବାଚ ।
ରାଜନ୍ କିଂ ଧ୍ୟାୟସେ ଦୀର୍ଘଂ ମୁଖେନ ପରିଶୁଷ୍ୟତା ।
କିଂ ବା ନ ରିଷ୍ୟତେ କାମୋ ଧର୍ମୋ ବାର୍ଥେନ ସଂଯୁତଃ । ୭୪ ।
ଶ୍ରୀରାଜୋବାଚ ।
ସୁତୋ ମେ ବାଲକୋ ବ୍ରହ୍ମନ୍ ସ୍ତ୍ରୈଣେନାକରୁଣାତ୍ମନା ।
ନିର୍ବାସିତଃ ପଞ୍ଚବର୍ଷଃ ସହ ମାତ୍ରା ମହାନ୍ କବିଃ । ୭୫ ।
ଅପ୍ୟନାଥଂ ବନେ ବ୍ରହ୍ମନ୍ ମାସ୍ମାଦନ୍ତ୍ୟର୍ଭକଂ ବୃକାଃ ।
ଶ୍ରାନ୍ତଂ ଶୟାନଂ କ୍ଷୁଧିତଂ ପରିମ୍ଲାନମୁଖାମ୍ବୁଜମ୍ । ୭୬ ।
ଅହୋ ମେ ବତ ଦୌରାତ୍ମ୍ୟଂ ସ୍ତ୍ରୀଜିତସ୍ୟୋପଧାରୟ ।
ଯୋଽଙ୍କଂ ପ୍ରେମ୍ଣାରୁରୁକ୍ଷନ୍ତଂ ନାଭ୍ୟନନ୍ଦମସତ୍ତମଃ । ୭୭ ।

---

ଶ୍ରୀନାରଦ କହିଲେ :—

ମହାରାଜ ! ଆପଣ ଶୁଷ୍କ ବଦନରେ ବହୁକ୍ଷଣଧରି କଅଣ ଚିନ୍ତା କରୁଅଛନ୍ତି ? ଧର୍ମ, ଅର୍ଥ, କାମ, କିଛି ଆପଣଙ୍କର ନଷ୍ଟ ହୋଇ ନାହିଁତ ? । ୭୪ ।

ଶ୍ରୀରାଜା ଉତ୍ତାନପାଦ କହିଲେ :—

ହେ ବ୍ରହ୍ମନ୍ ! ମୁଁ ବଡ଼ ସ୍ତ୍ରୈଣ, ମୋର ହୃଦୟରେ କିଛିମାତ୍ର ଦୟା ନାହିଁ, ମୁଁ ନିଜର ଅତି ବୁଦ୍ଧିମାନ୍ ପଞ୍ଚମ ବର୍ଷୀୟ ଶିଶୁପୁତ୍ରକୁ ତାହାର ମାତା ସହିତ ନିର୍ବାସିତ କରିଅଛି । ୭୫ ।

ହେ ବ୍ରହ୍ମନ୍ ବନମଧ୍ୟରେ ପରିଶ୍ରାନ୍ତ ଓ କ୍ଷୁଧାର୍ତ୍ତ ଅବସ୍ଥାରେ ତାହାର ମୁଖପଦ୍ମ ମଳିନ ହୋଇ ଯାଇଥିବ । ସେ ଶୟନ କରିଥିବାବେଳେ ହୁଏତ ତାକୁ ବ୍ୟାଘ୍ରାଦି ହିଂସ୍ର ଜନ୍ତୁ ଭକ୍ଷଣ କରିଥିବେ । ୭୬ ।

ମୁଁ ଏପରି ସ୍ତ୍ରୈଣ ଯେ ମୋର ନୃଶଂସତା ଏହାଠାରୁ ଅଧିକ କଣ ହୋଇପାରେ ? ଏହି ଶିଶୁପୁତ୍ର ଇଚ୍ଛାରେ ମୋ କୋଳରେ ବସିବାକୁ ଚାହିଁଥିଲା, କିନ୍ତୁ ମୁଁ ଏପରି ହୀନ ଯେ ତାହାମୁଁ ଟିକିଏ ସାମାନ୍ୟ ଆଦର ସୁଦ୍ଧା କଲି ନାହିଁ । ୭୭ ।

---

ନାରଦ ଆସନେ ବସିଲେ
ରାଜାଙ୍କୁ ଚାହିଁ ପଚାରିଲେ
ରାଜନ କିସ କର ଧ୍ୟାନ
ଶୁଖିଛି ତୁମ୍ଭର ବଦନ
କିବା ସଫଳ ନୋହେ ଧର୍ମ୍ମ
କି ଅବା ପୁଣି ଅର୍ଥ କାମ ।୭୪।

ଶ୍ରୀରାଜୋବାଚ—
ରାଜା ବୋଲନ୍ତି ମୁନିଶ୍ରେଷ୍ଠ
ମୋର ହୋଇଛି ପୁତ୍ରକଷ୍ଟ
ବିମାତାବାକ୍ୟ ନ ସହିଲା
ମୋ ପୁତ୍ର ଘରୁ କେଣେ ଗଲା
ମାତା ସହିତେ ନାହିଁ ଘରେ
ତେଣୁ ମୁଁ ବ୍ୟାକୁଳ ମନରେ
ପଞ୍ଚ ବରଷ ବୟ ତାର
ଦେଖି ଡରିବ ବନଘୋର

ପଥଶ୍ରମରେ ବନେ ଯିବ
କ୍ଷୁଧା ଆକୁଳେ ଶୋଇଥିବ
ତାହାକୁ ଦେଖି ବନଜୀବ
ବ୍ୟାଘ୍ରଯେ ନିଶ୍ଚୟ ଭକ୍ଷିବ ।୭୫,୭୬
ମୁଁ ବଡ଼ ଦୁଷ୍ଟପଣ କଲି
ପୁତ୍ରକୁ କୋଳେ ନ ଧରିଲି
ସ୍ତ୍ରୀବଶରେ ଅଜ୍ଞ ହୁଏ
ତେଣୁ ଲଭିଲି ପରାଭବ ।୭୭।

ଶ୍ରୀନାରଦ ଉବାଚ ।
ମା ମା ଶୁଚଃ ସ୍ୱତନୟଂ ଦେବଗୁପ୍ତଂ ବିଶାମ୍ପତେ ।
ତତ୍ ପ୍ରଭାବମବିଜ୍ଞାୟ ପ୍ରାବୃଙ୍‌କ୍ତେ ଯଦ୍‌ଯଶୋ ଜଗତ୍ । ୬୮ ।
ସୁଦୁଷ୍କରଂ କର୍ମ କୃତ୍ୱା ଲୋକପାଲୈରପି ପ୍ରଭୁଃ ।
ଏଷ୍ୟତ୍ୟଚିରତୋ ରାଜନ୍ ଯଶୋ ବିପୁଳୟଂସ୍ତବ । ୬୯ ।
ଶ୍ରୀମୈତ୍ରେୟ ଉବାଚ ।
ଇତି ଦେବର୍ଷିଣା ପ୍ରୋକ୍ତଂ ବିଶ୍ରୁତ୍ୟ ଜଗତୀପତିଃ ।
ରାଜଲକ୍ଷ୍ମୀମନାଦୃତ୍ୟ ପୁତ୍ରମେବାନ୍ୱଚିନ୍ତୟତ୍ । ୭୦ ।
ତତ୍ରାଭିଷିକ୍ତଃ ପ୍ରୟତସ୍ତାମୁପୋଷ୍ୟ ବିଭାବରୀମ୍ ।
ସମାହିତଃ ପର୍ଯ୍ୟଚରଦୃଷ୍ୟାଦେଶେନ ପୂରୁଷମ୍ । ୭୧ ।

---

ଶ୍ରୀନାରଦ କହିଲେ :—

ହେ ରାଜନ୍ ! ତୁମ୍ଭର ପୁତ୍ରକୁ ଦେବତାମାନେ ରକ୍ଷା କରି ଅଛନ୍ତି, ଅବିଳମ୍ବେ ତାର ଯଶରେ ଜଗତ ଯଶସ୍ୱୀ ହେବ, ତୁମ୍ଭେ ତାହାର ମାହାତ୍ମ୍ୟ ନ ବୁଝି ସେହି ପୁତ୍ରପାଇଁ କିଛିମାତ୍ର ଅନୁଶୋଚନା କରନାହିଁ ।୬୮।

ହେ ମହାରାଜ ! ଆପଣଙ୍କର ଏହି ପ୍ରଭାବଶାଳୀ ପୁତ୍ର ଧ୍ରୁବ ଇନ୍ଦ୍ରାଦି ଲୋକପାଳଗଣଙ୍କର ଦୁର୍ଲଭକାର୍ଯ୍ୟ ସମ୍ପାଦନ କରି ଅଚିରେ ଫେରିଆସିବ, ତାହାଦ୍ୱାରା ଆପଣଙ୍କର ଯଶ ବୃଦ୍ଧି ପାଇବ । ୬୯ ।

ଶ୍ରୀମୈତ୍ରେୟ କହିଲେ :—

ଦେବର୍ଷିନାରଦଙ୍କ ମୁଖରୁ ଏହିବାଣୀ ଶ୍ରବଣକରି ରାଜା ଉତ୍ତାନପାଦ ରାଜ୍ୟ ସମ୍ପଦ ପ୍ରତି ଆସକ୍ତିହୀନ ହୋଇ ସର୍ବଦା ପୁତ୍ରଚିନ୍ତାରେ ବ୍ୟାକୁଳ ହେଲେ । ୭୦ ।

ଏଣେ ଧ୍ରୁବ ଦେବର୍ଷିନାରଦଙ୍କ ଉପଦେଶରେ ମଧୁବନରେ ଉପସ୍ଥିତହୋଇ ସ୍ନାନକରି ପବିତ୍ର ଭାବରେ ରାତ୍ରିରେ ଉପବାସ କଲେ ଏବଂ ଏକାଗ୍ରଚିତ୍ତରେ ଭଗବାନ୍ ପୁରୁଷୋତ୍ତମଙ୍କୁ ଧ୍ୟାନକରିବାକୁ ଲାଗିଲେ ।୭୧।

---

ଶ୍ରୀବିଦୁର ଉବାଚ—

ଧ୍ରୁବକୁ ନାରଦ ଭେଟିଲେ
ମାର୍ଗରେ ଉପଦେଶ ଦେଲେ
ମାତା କେମନ୍ତେ ସଙ୍ଗେ ଗଲା
ମୋତେତ ସନ୍ଦେହ ଲାଗିଲା

ଶ୍ରୀମୈତ୍ରେୟ ଉବାଚ—

ଚିନ୍ତାରେ ତୁମର ବଳିଛେ
ସୁନୀତି ଥାଇ ମନେ ଖେଦେ
ଆଲୁଚେ ନିଜ ଘରେ ଥାଇ
ରାଜା ତାହାକୁ ନ ଗଣଇ
ତେଣୁ ବୋଇଲା ଘରେ ନାହିଁ
ଏବେ ରାଜାକୁ ଋଷି କହି ।

ଶ୍ରୀନାରଦ ଉବାଚ—

ହେ ନୃପ ପୁତ୍ରଗଣ ଶୁଣ
ତାକୁ ରଖିବେ ନାରାୟଣ
ତା ଯଶ ସଂସାରେ ପୂରିବ
ତୁହି ନଜାଣୁ ତାର ଭାବ
ଅସାଧ୍ୟ ତପ ସେ କରିବ
ଲୋକପାଳଙ୍କୁ ସେ ଦୁର୍ଲଭ
କରିବ ତୋ ଯଶ ବିସ୍ତାର
ନିକଟେ ଆସିବ ତୁମର ।୬୮,୬୯।

ଶ୍ରୀମୈତ୍ରେୟ ଉବାଚ—

ଏମନ୍ତେ ଦେବଋଷିବାଣୀ
ନୃପତି ସାବଧାନେ ଶୁଣି
ପୁତ୍ରଚିନ୍ତାରେ ଭ୍ରମିଲେ
ନାରଦ ବ୍ରହ୍ମଲୋକ ଗଲେ ।୭୦।
ଧ୍ରୁବ ଯେ ମଧୁବନ ଗଲେ
ତ୍ରିସନ୍ଧ୍ୟା କର୍ମ୍ମ ଆଚରିଲେ
ଋଷିବଚନ ଅନୁସାରେ
ମନ ଲଗେଇଶି କୃଷ୍ଣଠାରେ ।୭୧।

ତ୍ରିରାତ୍ରାନ୍ତେ ତ୍ରିରାତ୍ରାନ୍ତେ କପିତ୍ଥବଦରାଶନଃ ।
ଆତ୍ମବୃତ୍ତ୍ୟନୁସାରେଣ ମାସଂ ନିନ୍ୟେଽର୍ଚ୍ଚୟନ୍ ହରିମ୍ । ୭୨ ।
ଦ୍ୱିତୀୟଂ ଚ ତଥା ମାସଂ ଷଷ୍ଠେ ଷଷ୍ଠେଽର୍ଭକୋ ଦିନେ ।
ତୃଣପର୍ଣ୍ଣାଦିଭିଃ ଶୀର୍ଣ୍ଣୈଃ କୃତାନ୍ନୋଽଭ୍ୟର୍ଚ୍ଚୟନ୍ ବିଭୁମ୍ । ୭୩ ।
ତୃତୀୟଂ ଚାନୟନ୍ ମାସଂ ନବମେ ନବମେଽହନି ।
ଅବ୍‌ଭକ୍ଷ୍ୟ ଉତ୍ତମଶ୍ଳୋକ ମୁପାଧାବତ୍ ସମାଧିନା । ୭୪ ।
ଚତୁର୍ଥମପି ବୈ ମାସଂ ଦ୍ୱାଦଶେ ଦ୍ୱାଦଶେଽହନି ।
ବାୟୁଭକ୍ଷୋ ଜିତଶ୍ୱାସୋ ଧ୍ୟାୟନ୍ ଦେବମଧାରୟତ୍ । ୭୫ ।
ପଞ୍ଚମେ ମାସ୍ୟନୁପ୍ରାପ୍ତେ ଜିତଶ୍ୱାସୋ ନୃପାତ୍ମଜଃ ।
ଧ୍ୟାୟନ୍ ବ୍ରହ୍ମପଦୈକେନ ତସ୍ଥୌ ସ୍ଥାଣୁରିବାଚଳଃ । ୭୬ ।

---

ଧ୍ରୁବ ନିଜର ମାନସିକ ଗତି ଅନୁସାରେ ପ୍ରତି ତିନିଦିନ ଅନ୍ତରରେ କଇଁଥ ବରକୋଳି ଗୋଟିଏ ଲେଖାଏଁ ଭୋଜନ କଲେ, ଏହିପରି ଶ୍ରୀହରି ଭଜନରେ ପ୍ରଥମମାସ ଅତୀତ ହେଲା । ୭୨ ।

ବାଳକ ଧ୍ରୁବ ପ୍ରତି ଷଷ୍ଠଦିନଅନ୍ତରରେ ଜୀର୍ଣ୍ଣତୃଣ ଓ ପତ୍ରାଦିଦ୍ୱାରା କ୍ଷୁଧାନିବାରଣକରି ଶ୍ରୀହରିଙ୍କ ଉପାସନାରେ ଦ୍ୱିତୀୟମାସ ଯାପନ କଲେ । ୭୩ ।

ତୃତୀୟମାସରେ ପ୍ରତି ନବମଦିବସରେ ଗଣ୍ଡୂଷଜଳ ମାତ୍ର ପାନକରି ପ୍ରଗାଢ଼ ଏକାଗ୍ରତା ସହିତ ପୁଣ୍ୟକୀର୍ତ୍ତି ଭଗବାନଙ୍କୁ ଆରାଧନା କଲେ, ଏହି ମାସାବଧି କାଳ ତାହାଙ୍କ ପକ୍ଷରେ ଲବମାତ୍ର ବୋଲି ପ୍ରତୀତହେଲା ।୭୪

ରାଜପୁତ୍ର ଧ୍ରୁବ କ୍ରମେ ଚତୁର୍ଥମାସରେ ପ୍ରତି ଦ୍ୱାଦଶଦିବସରେ କେବଳ ପବନ ଆହାର କରି ପ୍ରାଣାୟାମ ଦ୍ୱାରା ବାୟୁ ସଂଯମ କରି ଧ୍ୟାନମାର୍ଗରେ ଭଗବଦ୍ ଦୃଢ଼ଧାରଣାବଦ୍ଧ ହୋଇଥିଲେ, ସେହି ମାସଟି ନିମେଷପରି ବୋଧ ହେଲା । ୭୫ ।

ପଞ୍ଚମମାସରେ ଧ୍ରୁବ ପୂର୍ବପରି ବାୟୁ ସଂଯମନ କରି ଏକପଦରେ ଦଣ୍ଡାୟମାନ ହୋଇ ପରମବ୍ରହ୍ମ ସ୍ୱରୂପ ଭଗବାନଙ୍କୁ ଧ୍ୟାନକରି ଶାଖାଶୂନ୍ୟ ବୃକ୍ଷତୁଲ୍ୟ ଦଣ୍ଡାୟମାନ ହୋଇଥିଲେ । ୭୬ ।

---

ତ୍ରିରାତ୍ରି କରି ଉପବାସ
ଏକ କପିତ୍ଥ କରି ଗ୍ରାସ
ପୁଣି ତ୍ରିରାତ୍ରି ଅନଶନ
ବଦରି ଫଳେକ ଭୋଜନ ।୭୨।
ଏମନ୍ତେ ଦ୍ୱିତୀୟ ମାସରେ
ଷଷ୍ଠ ଷଷ୍ଠ ଦିନ ଅନ୍ତରେ

ବାଳକ ତୃଣ ପତ୍ର ଗ୍ରାସ
କରନ୍ତି ସମ୍ପୂର୍ଣ୍ଣ ହେଲା ମାସ ।୭୩।
ତୃତୀୟ ମାସ ନବଦିନ
ଅନ୍ତେ କରଇ ଜଳପାନ । ୭୪ ।
ଚତୁର୍ଥ ମାସ ବାର ଦିନେ
ବାୟୁ ଭକ୍ଷଇ କୃଷ୍ଣଧ୍ୟାନେ । ୭୫ ।

ପଞ୍ଚମ ମାସ ପ୍ରବେଶିଲା
ନିଃଶ୍ୱାସ ନିରୋଧି ରହିଲା
ଏକ ପାଦରେ ଉଭା ହୋଇ
ଅଙ୍ଗୁଷ୍ଠ ଅଗ୍ରେ ଭୂମି ଛୁଇଁ ।୭୬।

ସର୍ବତୋ ମନ ଆକୃଷ୍ୟ ହୃଦି ଭୂତେନ୍ଦ୍ରିୟାଶୟମ୍ ।
ଧ୍ୟାୟନ୍ ଭଗବତୋ ରୂପଂ ନାଦ୍ରାକ୍ଷୀତ୍ କିଞ୍ଚନାପରମ୍ । ୭୭ ।
ଆଧାରଂ ମହଦାଦୀନାଂ ପ୍ରଧାନପୁରୁଷେଶ୍ୱରମ୍ ।
ବ୍ରହ୍ମ ଧାରୟମାଣସ୍ୟ ତ୍ରୟୋ ଲୋକାଶ୍ଚକମ୍ପିରେ । ୭୮ ।
ଯଦୈକପାଦେନ ସ ପାର୍ଥିବାତ୍ମଜସ୍ତସ୍ଥୌ ତଦଙ୍ଗୁଷ୍ଠନିପୀଡ଼ିତା ମହୀ ।
ନନାମ ତତ୍ରାର୍ଦ୍ଧମିଭେନ୍ଦ୍ରଧିଷ୍ଠିତା ତରୀବ ସବ୍ୟେତରତଃ ପଦେ ପଦେ । ୭୯ ।
ତସ୍ମିନ୍ନଭିଧ୍ୟାୟତି ବିଶ୍ୱମାତ୍ମନୋ ଦ୍ୱାରଂ ନିରୁଧ୍ୟାସୁମନନ୍ୟୟା ଧିୟା ।
ଲୋକା ନିରୁଚ୍ଛ୍ୱାସନିପୀଡ଼ିତା ଭୃଶଂ ସ ଲୋକପାଲାଃ ଶରଣଂ ଯଯୁର୍ହରିମ୍ ।୮୦।

---

ଶବ୍ଦପ୍ରଭୃତି ସୂକ୍ଷ୍ମଭୂତ ଓ ଚକ୍ଷୁପ୍ରଭୃତି ଇନ୍ଦ୍ରିୟବର୍ଗଙ୍କର ନିୟନ୍ତା ମନକୁ ସମସ୍ତ ବାହ୍ୟବିଷୟରୁ ଅନ୍ତର ମଧ୍ୟକୁ ଆକର୍ଷଣ କରି ଭଗବାନଙ୍କର ସ୍ୱରୂପଚିନ୍ତାରେ ମଗ୍ନହୋଇ ଧ୍ରୁବ ଆଉକିଛି ଅନୁଭବ କରି ପାରିଲେ ନାହିଁ । ୭୭ ।

ମହତ୍ତ୍ୱ ପ୍ରଭୃତି ଚତୁର୍ବିଂଶତତ୍ତ୍ୱର ଯେ ମୂଳାଧାର ଏବଂ ପ୍ରକୃତି ଓ ପୁରୁଷର ଯେ ନିୟନ୍ତା ପରଂବ୍ରହ୍ମସ୍ୱରୂପ ଭଗବାନଙ୍କୁ ଧ୍ରୁବ ଏକାଗ୍ରମନରେ ଧ୍ୟାନ କଲାବେଳେ ତ୍ରିଭୁବନ କମ୍ପିତ ହେବାକୁ ଲାଗିଲା ।୭୮

ରାଜପୁତ୍ର ଧ୍ରୁବ ଯେତେବେଳେ ଏକପାଦରେ ତାର ଅଙ୍ଗୁଷ୍ଠ ଉପରେ ଭର ଦେଇ ତପସ୍ୟା କଲା, ସେତେବେଳେ ତାହାର ଅଙ୍ଗୁଷ୍ଠଭରରେ ପୃଥିବୀ ନିପୀଡ଼ିତା ହୋଇ ତାହାର ଅର୍ଦ୍ଧାଂଶ ଅବନତ ହେଲା । ବୋଧ ହେଲା ଯେପରି ଐରାବତ ଗୋଟିଏ ନୌକା ଉପରେ ଆରୋହଣ କରିଅଛି, ତାହାର ଉଭୟ ପାଦଭରରେ ଅର୍ଦ୍ଧାଂଶ ଅବନତ ହୋଇଅଛି । ୭୯ ।

ଯେତେବେଳେ ଧ୍ରୁବ ପ୍ରାଣକୁ ଘ୍ରାଣଦ୍ୱାର ନିରୋଧକରି ବିଶ୍ୱାତ୍ମା ବିଷ୍ଣୁଙ୍କୁ ଧ୍ୟାନ କରିବାକୁ ଲାଗିଲେ ସେତେବେଳେ ଲୋକପାଳଗଣଙ୍କ ସହିତ ଯାବତୀୟ ଜୀବଜଗତରେ ନିଶ୍ୱାସରୋଧ ହେବାରୁ ସେମାନେ ନିପୀଡ଼ିତ ହୋଇ ଶ୍ରୀହରିଙ୍କ ଶରଣାପନ୍ନ ହେଲେ । ୮୦ ।

---

ମନ ପବନ ଏକ କରି
ଇନ୍ଦ୍ରିୟ ଚେଷ୍ଟା ପରିହରି
ମହଦାଦିଙ୍କର ଆଧାର
ଯେ ପ୍ରଭୁ ପ୍ରଧାନ ଈଶ୍ୱର
ବ୍ରହ୍ମ ଧାରଣା ଆଚରିଲା
ଏ ତିନିଭୁବନ କମ୍ପିଲା ।୭୭,୭୮।

ଧ୍ରୁବ ଅଙ୍ଗୁଷ୍ଠ ଅଗ୍ର ଲାଗି
ମହୀ ହୋଇଲା ଦୁଃଖଭାଗୀ
ହସ୍ତୀର ଭରେ ନାବ ଯେହ୍ନେ
ନିମଗ୍ନ ହୋଇ ଅର୍ଦ୍ଧମାନେ ।୭୯।
ଅତ୍ୟନ୍ତ ଦୃଢ଼େ କରି ଧ୍ୟାନ
ବିଶ୍ୱସ୍ୱରୂପୀ ଭଗବାନ

ତ୍ରିଲୋକ ନିଃଶ୍ୱାସ ରୋଧନେ
ସ୍ୱର୍ଗେ କମ୍ପିଲେ ଦେବଗଣେ
ବିଷ୍ଣୁରେ ପଶିଲେ ଶରଣ
ଆରତେ ଡାକି ନାରାୟଣ ।୮୦।

ଶ୍ରୀଦେବା ଊଚୁଃ ।

ନୈବଂ ବିଦାମୋ ଭଗବନ୍ ପ୍ରାଣରୋଧଂ ଚରାଚରସ୍ୟାଖିଲସତ୍ତ୍ୱଧାମ୍ନଃ ।
ବିଧେହି ତନ୍ନୋ ବୃଜିନାଦ୍‌ବିମୋକ୍ଷଂ ପ୍ରାପ୍ତା ବୟଂ ତ୍ୱାଂ ଶରଣଂ ଶରଣ୍ୟମ୍ ।୮୧।

ଶ୍ରୀଭଗବାନୁବାଚ ।

ମା ଭୈଷ୍ଟ ବାଲଂ ତପସୋ ଦୁରତ୍ୟୟାନ୍ନିବର୍ତ୍ତୟିଷ୍ୟେ ପ୍ରତିଯାତ ସ୍ୱଧାମ ।
ଯତୋ ହି ବଃ ପ୍ରାଣନିରୋଧ ଆସୀଦୌତ୍ତାନପାଦିର୍ମୟି ସଙ୍ଗତାତ୍ମା । ୮୨ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ଧ୍ରୁବଚରିତଂ ନାମ ଅଷ୍ଟମୋଽଧ୍ୟାୟଃ । ୮ ।

---

ଶ୍ରୀଦେବଗଣ କହିଲେ :—

ହେ ଭଗବନ୍ ! ଆମ୍ଭେମାନେ ଚରାଚର ସର୍ବପ୍ରାଣୀଙ୍କର ଶ୍ୱାସରୋଧଜନିତ କଷ୍ଟ ଆଉ ଦେଖି ପାରୁ ନାହୁଁ । ଅତଏବ ଏହି କ୍ଳେଶରୁ ଶୀଘ୍ର ଆମ୍ଭମାନଙ୍କୁ ମୁକ୍ତ କର, କାରଣ ଆପଣ ଶରଣ ରକ୍ଷକ ଏବଂ ଆମ୍ଭେମାନେ ଆପଣଙ୍କର ଶରଣାପନ୍ନ ହେଉଅଛୁ । ୮୧ ।

ଶ୍ରୀଭଗବାନ୍ କହିଲେ :—

ଯେଉଁ ବାଳକଯୋଗେ ତୁମ୍ଭମାନଙ୍କର ଏହି ଶ୍ୱାସ ରୋଧ ହୋଇଅଛି, ଉତ୍ତାନପାଦ ପୁତ୍ର ଧ୍ରୁବ ବିଶ୍ୱାତ୍ମାସ୍ୱରୂପ ମୋଠାରେ ସଂନିବିଷ୍ଟଚିତ୍ତ ହୋଇଅଛି । ମୁଁ ତାହାକୁ ଏହି ଦୁରୂହ ତପସ୍ୟାରୁ ନିବୃତ୍ତ କରାଉ ଅଛି, ତୁମ୍ଭେମାନେ ଭୀତ ହୁଅନାହିଁ, ସ୍ୱଧାମକୁ ଗମନ କର । ୮୨ ।

---

ଶ୍ରୀଦେବାଊଚୁଃ—
ହେ ପ୍ରଭୁ ନ ଜାଣୁଁ କାରଣ
କର୍ପା ନିଶ୍ୱାସ ନିରୋଧନ
ଏଥୁ ସୁରକ୍ଷା ତୁମ୍ଭେ କର
ଶରଣ ଗଲୁଁ ତୋ ସମ୍ଭର ।୮୧।
ଶ୍ରୀଭଗବାନୁବାଚ—
ଭୟ ନ କର ସ୍ୱର୍ଗଲୋକ
ତପସ୍ୟା କରଇ ବାଳକ
ଅତି କଠୋର ତପ କରେ
ମର୍ତ୍ତ୍ୟେ ଯମୁନାନଦୀତୀରେ
ତାହାକୁ ନିବର୍ତ୍ତି କରାଇ
ବାଞ୍ଛିତ ବର ଦେବି ମୁହିଁ ।୮୨।
ଶୁଣି ଶ୍ରୀହରିର ବଚନ
ଦେବେ ଧ୍ରୁବକୁ କଲେ ଧନ୍ୟ
ଉତ୍ତାନପାଦ-ରାଜବଳା
ତପେ ବିଷ୍ଣୁଙ୍କୁ ବଶ କଲା
କହଇ ଦାସ ଜଗନ୍ନାଥ
କୃଷ୍ଣମହିମା ଭାଗବତ
ଧ୍ରୁବ ହୃଦରେ ଥିଲେ ଯାହା
ସେ ପ୍ରଭୁ ମୋତେ ହେବେ ସାହା ।

* ୧୦୪ ପୃଷ୍ଠା ଦେଖ ।





---

ଜଗନ୍ନାଥ ଦାସଙ୍କ ରଚିତ କୌଣସି କୌଣସି ଛପା ଭାଗବତରେ ଓ ତାଳପତ୍ର ପୋଥିରେ ଧ୍ରୁବତପସ୍ୟା ସମ୍ବନ୍ଧୀୟ ଅଧ୍ୟାୟ ଗୁଡିକ ଚଉଦଅକ୍ଷରୀ ଛନ୍ଦରେ ଲିଖିତହୋଇଅଛି । ଜଗନ୍ନାଥଦାସ ସମଗ୍ରଭାଗବତ ନବାକ୍ଷରୀ ଛନ୍ଦରେ ରଚନା କରି ଏହି କେତୋଟି ଅଧ୍ୟାୟ କାହିଁକି ଚଉଦଅକ୍ଷରୀ କଳଶାବାଣୀରେ ରଚନା କଲେ, ତାହା ବୁଝି ହୁଏ ନାହିଁ । ତେଣୁ ଏ ପ୍ରକ୍ଷିପ୍ତ ବୋଲି ମନେହୁଏ, ତଥାପି ପାଠକ ପାଠିକାଙ୍କ କୌତୁହଳ ଦୂରକରିବା ନିମନ୍ତେ ପ୍ରତିଅଧ୍ୟାୟ ଶେଷରେ ଏହି କେତେକ ଅଧ୍ୟାୟ ମଧ୍ୟ ଛପା କରାଗଲା ।

## ଅଷ୍ଟମ ଅଧ୍ୟାୟ ।

### ଧ୍ରୁବ-ଚରିତ ।

( କଳସାବାଣୀରେ ଗାଇବ )

ନମାମି ଅମ୍ବିକା ସୁତ ଚରଣପଙ୍କଜ ।
ସର୍ବ ଦେବଙ୍କ ମଧ୍ୟେ ଯା ନାମ ବିଘ୍ନରାଜ ॥
ଅମ୍ବସ୍ପର୍ଶ ଗିରି ସମୁଦ୍ରର କଳେବର ।
କଣ୍ଠରେ କୁଞ୍ଜରକଣ୍ଠେ ହାର ମନୋହର ॥
ତୁଙ୍ଗ ବକ୍ଷସ୍ଥଳ ଦୀର୍ଘ ଶୋଭେ ଭୁଜଗିର ।
ଅଷ୍ଟହସ୍ତ ଅମୃତ ତୁଣୀ ପାଶାଙ୍କୁଶ ଧାରୀ ॥
ଯାହାର ପ୍ରସନ୍ନ ବଳେ ଜଡ଼ବୁଦ୍ଧି ତୁଟେ ।
ନିର୍ମଳ ବଚନ ଯେ ସ୍ଫୁରଇ କଣ୍ଠତଟେ ॥
ମୋର ଚିତ୍ତେ ସୁପ୍ରସନ୍ନ ହୁଅ ଲମ୍ବୋଦର ।
କହେ ଭାଗବତ ବାଣୀ ସଂସାରରେ ସାର ॥
ଭକ୍ତିଯୋଗ ମଧ୍ୟେ ଯେ ଉତ୍ତମ ଭାଗବତ ।
କହିବି ଚତୁର୍ଥସ୍କନ୍ଧେ ଧ୍ରୁବର ଚରିତ ॥
ସପତ ବରଷ ପୁତ୍ର ଘୋର ତପ କଲା ।
ମାତୃ ସପତ୍ନୀର ବାକ୍ୟ ହରିଙ୍କି ଭଜିଲା ॥
ପିତାଙ୍କାନୁ ଆରୋହଣ ଭଙ୍ଗ ଦୋଷମନେ ।
ସପ୍ତଋଷି ଊର୍ଦ୍ଧ୍ୱେ ଯାଇ ବସିଲା ଗଗନେ ॥
ଯାର ଘୋର ତପ ଦେଖି ଭୃଗୁମନତୋଷେ ।
ଧନ୍ୟ ଧନ୍ୟ ଧ୍ରୁବ ବୋଲି ଋଷିମଧ୍ୟେ ଭାଷେ ॥
ଜନନୀ ସହିତେ ଧ୍ରୁବ ଗମଇ ଆକାଶେ ।
ଦରଶନ ମାତ୍ରେ ନରଙ୍କର ପାପନାଶେ ॥
ଅଧିକେ ଆୟୁଷ ଲଭନ୍ତି ତ୍ରୟୋଦଶ ସମା ।
ଯାର ଭବ ନ ଲଭନ୍ତି ଇନ୍ଦ୍ର ହର ବ୍ରହ୍ମା ॥
ତାହାର ଚରିତ ଯେ ଶୁଣନ୍ତି ସାବଧାନେ ।
ସର୍ବପାପ ହରେ ମନ ରହେ ବିଷ୍ଣୁଧ୍ୟାନେ ॥
ଅଶେଷ ଅମୃତ ବାଣୀ ଧ୍ରୁବର ଚରିତ ।
କହିବି ପ୍ରସନ୍ନ ହୁଅ ମୋତେ ଗଣନାଥ ॥
ପୁଣ୍ୟ କ୍ଷେତ୍ର ବନେ ସରସ୍ୱତୀ ତଟେ ରହି ।
ମଇତ୍ରେୟ ମୁନି ଯେ ବିଦୁର ଆଗେ କହି ॥
ଦୁର୍ଗତି ତାରଣ ପୁଣ୍ୟେ ଅଷ୍ଟ ନିବାରଣ ।
କହେ ବିପ୍ର ଜଗନ୍ନାଥ ସାବଧାନେ ଶୁଣ ॥

ଶ୍ରୀମୈତ୍ରେୟ ଉବାଚ ।

ସର୍ବଶାସ୍ତ୍ର ଜାଣି ଯେ କହଇ ନାନା ମତେ ।
ଧ୍ରୁବଙ୍କ ଚରିତ ବିଷ୍ଣୁଭକ୍ତ ଜନ ହିତେ ॥
ମଇତ୍ରେୟ ଆଗେ ପରାଶର ମୁନି କହି ।
ବିଷ୍ଣୁଜନ ହିତେ ବଇଷ୍ଣବ ଭାବ କହି ॥
ପରମହଂସ ଯେମାନେ ବୈକୁଣ୍ଠକୁ ଯାଆନ୍ତି ।
ବୈଷ୍ଣବ ଅଗ୍ରଣୀ ଶିବ ଉମାର ଅଗ୍ରତେ ॥
ବିଷ୍ଣୁଦୂତେ ହରିକଥା କହିଛନ୍ତି ଯାହା ।
ଭାଷାପ୍ରବନ୍ଧରେ ମୁହିଁ ପ୍ରକାଶିବି ତାହା ॥
ସାଧୁଜନେ ଦୃଢ଼ଚିତ୍ତେ କର ଏଥେ ଭାବ ।
ଏଦୃଢ଼ ବୋଇତେ ଭବ ବାରିଧି ତରିବ ॥
ବିଷ୍ଣୁର ଆଦେଶେ ସୃଷ୍ଟି କାଳେ ପଦ୍ମଯୋନି
ମୈଥୁନ ପ୍ରକାରେ ସେହୁ ଶିବ ଶକ୍ତି ଘେନି ॥
ନିଜ କଳେବର ବ୍ରହ୍ମା ବେନିଖଣ୍ଡ କଲେ ।
ସ୍ୱାୟମ୍ଭୁବ ମନୁ ଶତରୂପା ପ୍ରକାଶିଲେ ॥
ମୈଥୁନ ପ୍ରବନ୍ଧେ ଉପୁଜିଲେ ପୁତ୍ର ବେନି ।
ସୃଷ୍ଟିଅଂଶ ହେତୁ ତିନି କନ୍ୟା ସଙ୍ଗେ ଘେନି ॥
ପ୍ରିୟବ୍ରତ ଉତ୍ତାନପାଦ ନାମ ଆଦ୍ୟର ।
ସୁଗୁଣ ସ୍ୱରୂପରୂପେ ମୋହେ ତିନିପୁର ॥
କନ୍ୟା ଏକ ତହୁଁ ପ୍ରଜାପତିର ସମ୍ଭୂତ ।
ଯେଣୁ ବ୍ରହ୍ମା ଉଆଇ ସର୍ଜିଲା ଏ ଜଗତ ॥
ସୃଷ୍ଟି ପୂର୍ବେ ଆନରୂପେ ବେନି ସହୋଦର ।
ପ୍ରଜାବର୍ଗ ସର୍ଜିଲେ ସେ ଅନେକ ପ୍ରକାର ॥
ଉତ୍ତାନ ପାଦର ସେ ହୋଇଲେ ପତ୍ନୀବେନି ।
ସୁରୁଚି ସୁନୀତି ଯେ ସୁନ୍ଦର ଗୁଣ ଘେନି ॥
ସେ ବେନି ପତ୍ନୀଙ୍କ ମଧ୍ୟେ ସୁରୁଚି ସୁପ୍ରିୟା ।
ଉତ୍ତାନପାଦର ଚିତ୍ତେ ତାରେ ବଡ଼ ଦୟା ॥
ତାହାର ଉଦରେ ଯେଉଁ ବେନିପୁତ୍ର ହୁଏ ।
ରୂପ ଗୁଣ ସୁନ୍ଦରରେ ଜଗଜ୍ଜନ ମୋହେ ॥

ତାର ବଡ଼ ପ୍ରିୟ ଯେ ଉତ୍ତାନପାଦରାଜା ।
ଭୂଷଣ ବସନ ଆଦି କରେ ତାକୁ ପୂଜା ॥
ନିତ୍ୟେ ପ୍ରିୟବଶ ସେ ନିମିଷେ ନ ଛାଡ଼ଇ ।
ସନ୍ନୀ ସୁତ ସ୍ୱଜନେ ଗୌରବ ଭାବ ବହି ॥
ସୁନୀତି ଅପ୍ରିୟତାର ସୁତ ଧ୍ରୁବ ନାମ ।
ରୂପଗୁଣେ ସୁନ୍ଦର ମୋହିତ କୋଟିକାମ ॥
ବେନିସୁତ ବେନିଧାତ୍ରୀ ଘେନି ଥାନ୍ତି ନିତ୍ୟେ ।
ପିତାର ସମୀପେ ଦ୍ୟନ୍ତି ରାଜସେବା ମତେ ॥
ଏକଦିନେ ସୁରୁଚି ଉତ୍ତମ କର ଧରି ।
ନୃପତି ସମୀପେ ମିଳେ ପ୍ରିୟଭାବ କରି ॥
ଉତ୍ତମକୁ କୋଳେ ଦେଇ ରହିଣ ଅନ୍ତରେ ।
ନୃପତି ସଭାର ମଧ୍ୟେ ପ୍ରିୟଭାବଭରେ ॥
ଏମନ୍ତ ସମୟେ ଧାତ୍ରୀ ଧ୍ରୁବ ଘେନି ସଙ୍ଗେ ।
ରାଜାର ସମୀପେ ପ୍ରେମ ପୁତ୍ରଭାବ ରଙ୍ଗେ ॥
ଉତ୍ତମକୁ କୋଳେ ଦେଖି ଧ୍ରୁବ ସ୍ନେହକଲା ।
ପିତାକୋଳେ ବସିବାକୁ ହସ୍ତ ପ୍ରସାରିଲା ॥
ତାହା ଦେଖି କୋପଚିତ୍ତେ ସୁରୁଚି କହଇ ।
ଦୁର୍ଭାଗାତନୟ ତୋ ବଦନେ ଲଜ ନାହିଁ ॥
ଆରୋହଣ କରି ଲୋଡ଼ୁ ନୃପସିଂହାସନ ।
ଯେ ଆସନ ସୁପୂଜିତ ଏତିନି ଭୁବନ ॥
ପୂର୍ବ ତପ ଫଳେ ଦେଖ ଉତ୍ତମ କୁମର ।
ନୃପସିଂହାସନେ ଉପୁଜିଲା ମୋହର ଉଦର ॥
ଏ ଯେ ନୃପସିଂହାସନେ ବସିବାକୁ ଏକ ।
ଏ କଥା ବିଦିତ ଭଲେ ଜାଣନ୍ତି ତ୍ରିଲୋକ ॥
ବିଷ୍ଣୁରେ କଠୋର ତପ ପୂର୍ବେ ଯେ କରଇ ।
ତପବଳେ ଲଭେ ସେ ଦୁର୍ଲ୍ଲଭ ନରଦେହି ॥
ଯେଉଁ ତପେ ଯେତେଭୋଗ କରନ୍ତି ଜଗତେ ।
କହଇ ବାଳକ ପୁତ୍ର ଶୁଣ ଏକ ଚିତ୍ତେ ॥
ଯେଉଁ ତପେ ବସନ୍ତି ଯେ ଏ ରାଜ ଆସନେ ।
କୋଟି ତପେ ପାଇଛନ୍ତି ତ୍ରାସ ରାଜାମାନେ ॥
ଜାଣିଲି ମୁଁ ପୂର୍ବେ ତୋର କିଛି ତପନାହିଁ ।
ଏଣୁ ଅଭାଗିନୀ ଗର୍ଭେ ଉପୁଜିଛୁ ତୁହି ॥

ଏହି ଅନୁମାନେ ତୋର ଅଳ୍ପ ପୁଣ୍ୟ ଜାଣ ।
ଶୁଭାଶୁଭ ଫଳ ଅନୁମାନେ ଏ ପ୍ରମାଣ ॥
ରାଜାର କୁମର ପଣେ ଏ ଜନ୍ମ ତୋହର ।
ନାନା ସୁଖ ଭୋଗେ ତୋର ନାହିଁ ଅଧିକାର ॥
ଦେଖ ଏ କୁମର ମୋର ଗର୍ଭେ ଜାତ ହୋଇ ।
ଏ ନୃପସିଂହାସନକୁ ଯୋଗ୍ୟ ଏ ଅଟଇ ॥
ନୃପାସନେ ବସିବାକୁ ଚିତ୍ତ ଯେବେ ତୋର ।
କିମ୍ପା ଜନ୍ମ ନ ଲଭିଲୁ ମୋହର ଉଦର ॥
ଏମନ୍ତ ସଭାର ମଧ୍ୟେ ସୁରୁଚି ବଚନ ।
ଶୁଣି ଧ୍ରୁବ ଶୋକଚିତ୍ତେ ହୋଇଲା ମଉନ ॥
ଅନ୍ତର୍ଗତେ କମ୍ପଇ ତାହାର ନିଜଦେହି ।
ଅଧୋମୁଖେ ରହିଲା ଭୂମିକି ଦୃଷ୍ଟି ଦେଇ ॥
ଅନୁଚିତ ଉଚିତ ନ କହେ ନୃପବାଣୀ ।
ସଭାମଧ୍ୟେ ଶୁଣି ସେ ସୁରୁଚି ଗର୍ବବାଣୀ ॥
ତାହାର ଗୌରବେ ସେ ଯନ୍ତ୍ରିତ ଚିତ୍ତ ହୋଇ ।
ସଭାମଧ୍ୟେ ଏକବାକ୍ୟ ନ ପାରଇ କହି ॥
ଏମନ୍ତେ ନୃପତି ଗୁଣ ଦେଖି ଧ୍ରୁବ ମନେ ।
ଧାତ୍ରୀସଙ୍ଗେ ନୃପପୁତ୍ର ଗମିଲେ ଭୁବନେ ॥
ମାର୍ଗେ ଯାନ୍ତେ ବ୍ୟାକୁଳେ ନ ଦିଶେ ଦଶଦିଶ ।
ସର୍ପପ୍ରାୟ ପୁଣ ପୁଣ ଛାଡ଼ଇ ନିଶ୍ୱାସ ॥
ମାତାର ସନ୍ନିଧେ ଧ୍ରୁବ ନିଜପୁରେ ଯାଇ ।
ଅଶ୍ରୁ ବହେ ଲୋଚନୁ କମ୍ପଇ ନିଜ ଦେହି ॥
ଅଶ୍ରୁକଣ୍ଠ କୁଣ୍ଠିତ ବଚନ ଗଦଗଦ ।
ନ ସ୍ଫୁରଇ ବାକ୍ୟ ମୁଖୁ ଦୁଃଖ ମନେ ଖେଦ ॥
ଏମନ୍ତେ ପୁତ୍ର ବଦନ ସୁନୀତି ଅନାଇ ।
ଛନ୍ନ ଚିତ୍ତେ ପଚାରଇ ଧାତ୍ରୀମୁଖ ଚାହିଁ ॥
ତୁ ଯେ ପୁତ୍ର ଘେନିଗଲୁ ନୃପତି ସମୀପେ ।
କିମ୍ପା ଏ ରୋଦନ କରେ ଅତି ମନସ୍ତାପେ ॥
ମାତାର ବଚନ ଶୁଣି ନୃପତିନନ୍ଦନ ।
ଊର୍ଦ୍ଧ୍ୱ ମୁଖେ ଚାହିଁ କହେ ବିକଳେ ବଚନ ॥
ଜନନୀ ଜାଣିଲେ ପୁତ୍ର ଅପମାନ ପାଇ ।
ପିତାର ସମୀପେ କିବା ଅପମାନ ବହି ॥

ମୁଖଲକ୍ଷ୍ମୀ ଏହାର ତ ନ ଦିଶେ ସୁନ୍ଦର ।
ଅତିଦୁଃଖେ ବୁଡ଼ିଲା ତ ମୋହର କୁମର ॥
ବେନି କରେ ଆକର୍ଷି ପୁତ୍ରକୁ କୋଳେଧରି ।
ମୂର୍ଦ୍ଧନି ଆଘ୍ରାଣ କରି ନିଃଶ୍ୱାସ ସଂହରି ॥
ଅତି ମ୍ଳାନମୁଖ ଦେଖି ପୁନଃ ପୁନଃ କୋଳେ ।
ଉଦରେ ଲଗାଇ ପୁଛେ ଅତି ସ୍ନେହ ଭରେ ॥
ମୁଖେ ଜଳ ସିଞ୍ଚି ସେ ବଦନୁ ପୋଛେ ଲୁହ ।
କିମ୍ପା ତୁ ରୋଦନ କରୁ ବେଗେ ବତ୍ସ କହ ॥
ରାଜାର କୁମର ତୁ ଦୁର୍ଲ୍ଲଭ ପ୍ରାଣୀଙ୍କର ।
ସ୍ୱଭାବେ ସୁନ୍ଦର ଗୁଣ ନୀତ ମନୋହର ॥
ତୋତେ ଶୋକ ଦେବାକୁ କେ ଅଛଇ ଜଗତେ
କିମ୍ପା ତୁ ରୋଦନ କରୁ କହ ମୋ ଅଗ୍ରତେ ॥
ମାତାର ବଚନ ଶୁଣି ଧ୍ରୁବ ଦୁଃଖ ମନେ ।
ନିଃଶ୍ୱାସ କୁଣ୍ଠିତ କଣ୍ଠୁ ଅଶ୍ରୁ ପୂର୍ଣ୍ଣାନନେ ॥
ଶୁଣ ଗୋ ଜନନୀ କହୁଁ ତୋହର ଅଗ୍ରତେ ।
ରାଜା ମହାଦେଈ ତୁମ୍ଭେ ବୋଲଅ କେମନ୍ତେ ॥
ସୁରୁଚି ସମାନେ ତୋତେ ଜାଣନ୍ତି ଜଗତେ ।
ସେ ରାଜାର ପ୍ରିୟା ତୁମ୍ଭେ ଦୁର୍ଭଗା କେମନ୍ତେ ॥
କେଉଁରୂପେ ଉତ୍ତମ ବୋଲଇ ତାର ସୁଅ ।
ମୁଁ କିମ୍ପା ଅଧମ ମାତା ସତ ମୋତେ କୁହ ॥
ନୃପସିଂହାସନେ ବସିବାକୁ ବେନିଭାଇ ।
ସେକିମ୍ପାହୋଇଲେଯୋଗ୍ୟମୋତେଯୋଗନାହିଁ
ସେ କିମ୍ପା ଉତ୍ତମ ନାମ ବହିଲା ଜଗତେ ।
ତୋର ପୁତ୍ର ହୋଇ ମୁହିଁ ଅଧମ କେମନ୍ତେ ॥
ମୋହର ସୁକୃତ କିମ୍ପା ଏମନ୍ତ ହୋଇଲା ।
ଉତ୍ତମ ଉତ୍ତମ ସୁଖ କେମନ୍ତେ ପାଇଲା ॥
ଏମନ୍ତେ ପୁତ୍ର ବଚନ ଶୁଣିଣ ସୁନୀତି ।
ପୁତ୍ରର ବସ୍ତ୍ରର ପ୍ରଶ୍ନେ ଦୃଢ଼ତର ମତି ॥
ସ୍ତବଧ ରହି ନିଶ୍ୱାସ ଛାଡ଼େ ଧୀରେ ଧୀରେ ।
ଶିଶୁକୋପ ଶାନ୍ତି ଅର୍ଥେ କହଇ ମଧୁରେ ॥
ସ୍ୱଭାବେ ରାଜନୀତି ସେ କହେ ପୁତ୍ରେ ରହି ।
କହିବ ସକଳ ମନୋଦୁଃଖ ଛାଡ଼ ଲୁହ ॥

ଜାଣିଲି ନୃପ ସମୀପେ ଅପମାନ କଥା ।
ଶୁଣ ହେ ସାଧୁନନ୍ଦନ ଛାଡ଼ ମନୋବ୍ୟଥା ॥
ତୁ ଯେତେ କହିଲୁ ବାବୁ ଏ ସତ୍ୟ ପ୍ରତ୍ୟକ୍ଷେ ।
ସୁନୀତି ବଚନ ଶୁଣି ନୃପତିର ପକ୍ଷେ ॥
ସୁନୀତି ସୌଭାଗୀ ସେହି ରାଜପାଟରାଣୀ ।
ସର୍ବରାଜପତ୍ନୀଙ୍କ ଉପରେ ଶିରୋମଣି ॥
ଜନ୍ମାନ୍ତରେ ଯେଣୁ ସେ ଅନେକ ତପକଲା ।
ତପବଳେ ସ୍ୱାମୀର ସେ ସୁଭାଗୀ ହୋଇଲା ॥
ଜାଣିଲି ନିଶ୍ଚୟ ମୋର ପୂର୍ବତପ ନାହିଁ ।
ସେ ଫଳେ ଦୁର୍ଭାଗୀ ମୁହିଁ ରାଜପତ୍ନୀ ହୋଇ ॥
ପୂର୍ବେ ତୋର ଭାଇ ଯେ ଉତ୍ତମ ତପ କଲା ।
ତପବଳେ ନୃପ ସିଂହାସନେ ସେ ବସିଲା ॥
ସୁରୁଚି ସୁଭାଗୀ ତପବଳେ ରାଜରାଣୀ ।
ସର୍ବ ପତ୍ନୀ ମଧ୍ୟେ ସେ ବୋଲଇ ଇଷ୍ଟରାଣୀ ॥
ଉତ୍ତମ ଉତ୍ତମ ପୁତ୍ର ପୁଣ୍ୟ ତା ଉଦର ।
ଜନ୍ମିଲା ଉତ୍ତମ ସିଂହାସନେ ଅଧିକାର ॥
ଶୁଣ ହେ କୁମରମଣି ସ୍ଥିରକରି ମନ ।
ସାବଧାନ ହୋଇ ଶୁଣ ମୋହର ବଚନ ॥
ଯେବା ଭାଗ୍ୟ ପୂର୍ବଜନ୍ମେ ନାନା ତପକରି ।
ନାନାରୂପେ ଭୋଗ ଭୁଞ୍ଜି ନାନା ଦେହ ଧରି ॥
ଚନ୍ଦ୍ରଜ୍ୟୋତି ପାଟଛତ୍ର ଚାମର ସମେତେ ।
ନୃପ ସିଂହାସନେ ବସେ ବାଦ୍ୟନାଦ ଗୀତେ ॥
ସିନ୍ଦୂରେ ମଣ୍ଡିତ ଶିର ଗଜବୃନ୍ଦ ମେଳେ ।
ମନୋଗାମୀ ତୁରଙ୍ଗମ ଚତୁରଙ୍ଗ ବଳେ ॥
ଅନାଦି ବ୍ୟାଧି ଜୀବନେ ଜନ୍ମ ଶତସୀମା ।
ଉତ୍ତମ ପୁଜନେ ତାର ସୂଚିତ ମହିମା ॥
ଶୁଭରାଜ୍ୟ ରାଜପଦ ଲଭେ ଅକଣ୍ଟକ ।
ରାଜା ଯଶଗୁଣେ ପୂରେ ଇହ ପରଲୋକ ॥
ହରିହର ଚରଣେ ସେବଇ ନିତ୍ୟ ନିତ୍ୟ ।
ଦୁଃଖିଜନଙ୍କରେ ଦୟା ବହେ ହୃଦଗତ ॥
ନିର୍ମଳ କଳୁଷ ଜ୍ଞାନ ଯାର ନିତ୍ୟ ଚିତ୍ତେ ।
ସର୍ବଶାସ୍ତ୍ର ଅଭ୍ୟାସ କରଇ ଶୁଦ୍ଧଚିତ୍ତେ ॥

ରିପୁରାଜବର୍ଗ ଜୟ ସତ୍ୟବ୍ରତେ ମତ ।
କାରୁଣ୍ୟ ସମ୍ପୂର୍ଣ୍ଣ ଦୃଷ୍ଟି ବାଣୀ ଶ୍ରଦ୍ଧାକୃତ ॥
ସର୍ବଦା ଯେ ନିରଳସ ଗୁରୁପାଦେ ଭକ୍ତ ।
ସର୍ବଦା ସୁଖ ଯେ ଜାତ ସଂଯୋଗରେ ଶକ୍ତ ॥
ଉପାସନା ମନଃ ଶୁଚି ନିର୍ଦ୍ଦୟ ବଚନ ।
ସଭା ମଧ୍ୟେ ସୁପଣ୍ଡିତ ଅତି ବିଦ୍ୟମାନ ॥
ପ୍ରଜାନ୍ତ ତାରଣ ମଧ୍ୟେ ଅତି ସ୍ୱାରପଣ ।
ଇହ ପରଲୋକେ ହୋଏ ସୁଯଶ ସ୍ମରଣ ॥
ବନ୍ଧୁବର୍ଗ ଧୀରପଣେ ଅନୁବ୍ରତେ ରହେ ।
ବାଣିଜ୍ୟେ ଚତୁରଭାବ ବାକ୍ୟେ ମନ ମୋହେ ॥
ଯୋଷିତେ ପ୍ରୟୋଗେ ମୃଦୁ ବଚନ ଉଚିତ ।
ବ୍ରାହ୍ମଣ ବିଷୟେ ଚିତ୍ତ ଭଜେ ସୁବିନୀତ ॥
ସ୍ୱଧର୍ମ ଜୀବନ ପୋଷେ ନିଜ ବୃତ୍ତି ବହି ।
ବୁଧଙ୍କର ଭାବେ ଯେ ସାତ୍ତ୍ୱିକେ ମନ ଦେଇ ॥
ଭାଗିରଥୀ ତୀରେ ବାସ ସୁତୀର୍ଥେ ମରଣ ।
ଅର୍ଥୀ ଲୋକଗଣେ ମୁଖ୍ୟ ଅତିଥି ତୋଷଣ ॥
ବନ୍ଧୁଜନ ତୁଲେ ଭୋଗକରେ ସମତୁଲେ ।
ଦାନଦକ୍ଷେ ଦିବସ ଯାହାର ଯାଇ ଭଲେ ॥
ନିଜ ବିଦ୍ୟା ବ୍ୟସନେ ବର୍ତ୍ତଇ ନିରନ୍ତରେ ।
ନିତ୍ୟ ସେବା କରେ ତାତ ଜନନୀ ପଦ୍ମରେ ॥
ଯଶ ଧର୍ମ ନିରନ୍ତରେ ସଞ୍ଚେ ଧନ ପ୍ରାୟେ ।
ସ୍ୱର୍ଗ ଅପବର୍ଗ ବୁଦ୍ଧି ଅହଂକାର ବହେ ॥
ନିତ୍ୟେ ମିଳେ ସାଧୁସଙ୍ଗ ମାତ୍ର ସର୍ବଭୂତେ ।
ଇତିହାସ ପୁରାଣାଦି ଶୁଣେ ଶୁଦ୍ଧଚିତ୍ତେ ॥
ବିପଦର କାଳେ ଧୀରଚିତ୍ତ ହୋଇ ଦୃଢେ ।
ସମ୍ପଦ ଆଗମ ବୁଦ୍ଧି ବହେ ଧୀର ଗାଢ଼େ ॥
ବିଦ୍ୟାପତି ଗମ୍ଭୀର ସାଗର ପ୍ରାୟେ ରହେ ।
ପାତ୍ରେ ଦାନ ସମ୍ପଦେ ଉଦାସ ଭାବ ବହେ ॥
ଯଶ ଧର୍ମ ସଞ୍ଚିବାରେ ନିତ୍ୟେ କରେ ମତ ।
ସ୍ୱର୍ଗମୋଦ ଶୁଦ୍ଧଫଳ ସ୍ୱଭାବେ ଯେ କାନ୍ତି ॥
ସାଧୁସଙ୍ଗମେଳ ଦୃଢ଼େ ନିତ୍ୟେ କରେ ଆଶା ।
ପିତୃ ମାତୃ ପ୍ରାୟେ ଜୀବ ଯେବେ କରେ ବାଞ୍ଛ ା ॥

ଇତିହାସ ବାଣୀ ଯେତ୍ତୁ ପୁରାଣ ଶ୍ରବଣେ ।
ଉତ୍କଣ୍ଠା ସ୍ୱଭାବ ନିତ୍ୟ ବହେ ଅନୁକ୍ଷଣେ ॥
ବିପଦ ଆଗମେ ଯେ ଆପଣେ ବଞ୍ଚି ଦିନ ।
ସମ୍ପଦର କାଳେ ଭାସେ ମଧୁର ବଚନେ ॥
ଗମ୍ଭୀର ବଚନ କହେ ବଚନ ବିକାଶେ ।
ଉତ୍ତମ ଉଦାର ବୁଦ୍ଧି ପ୍ରାୟ ଉପଦେଶେ ॥
ସମ ଦମ ମହତ ଯେ ଶାସ୍ତ୍ରେ ଧରଇ ।
ଏତେ ଗୁଣ ବହେ ଯାର ପୂର୍ବଭାଗ୍ୟ ଥାଇ ॥
ଏଣୁ ପୂର୍ବେ ତୋହର ମୋହର ତପ ନାହିଁ ।
ଏ ଜନ୍ମେ ଲୋଡ଼ିଲେ ପୁତ୍ର ପାଇବା ତା କାହିଁ ॥
ମାନ ଅପମାନ ଯେ ସଂଜନଇ କର୍ମବଳେ ।
ଏହାଜାଣି ପ୍ରାଣିଚିତ୍ତ ନ ରହେ ନିଶ୍ଚଳେ ॥
ଆପଣା ଅର୍ଜିଲା କର୍ମ ଆପଣେ ଭୁଞ୍ଜଇ ।
ବିଧାତାର ବଳେ କର୍ମ ଅନ୍ୟଥା ନୁହଇଁ ॥
ଏଣୁ ତୁ ନକର ଶୋକ କର୍ମକୁ ଆଦର ।
ମୋହର ବଚନେ ପୁତ୍ର ଶୋକ ତୁ ସଂହର ॥
ଏମନ୍ତ ମାତାର ବାକ୍ୟ ସାବଧାନେ ଶୁଣି ।
ଧ୍ରୁବହିଁ ପଣ୍ଡିତ ବାକ୍ୟ ମନେ ମନେ ଗୁଣି ॥
ଜନନୀ ବଦନ ଚାହିଁ ବେନି କରଯୋଡ଼ି ।
କହେ ସୁପ୍ରେମାଦ ବାକ୍ୟ ମାତା ପାଦେ ପଡ଼ି

ଶ୍ରୀଧ୍ରୁବ ଉବାଚ ।

କହଇ ମଧୁରବାଣୀ ଜନନୀ ଗୋ ଶୁଣ ।
ମୋତେ ତୁ ବାଳକ ପ୍ରାୟ କେବେହେଁ ନମଣ ॥
ପବିତ୍ର ମନୁବଂଶରେ ଜନ୍ମ ଯେ ମୋହର ।
ଉତ୍ତାନ ପାଦର ବୀର୍ଯ୍ୟେ ତୋହର ଉଦର ॥
ତୁ ଯେ ବୋଲୁ ତପ ସର୍ବ ସମ୍ପଦକାରଣ ।
କହିବି ତୋହର ଆଗେ ସ୍ଥିର ମନେ ଶୁଣ ॥
ସଂସାର ଦୁର୍ଲଭ ପଦ ଯେବା ତପେ ପାଇ ।
ନିଗମ ଦୁର୍ଗମ ବନେ ସାଧିବଇଁ ମୁହିଁ ॥
ଏକମାତ୍ର ଆଜ୍ଞା ମୋତେ ଦିଅ ଶୁଦ୍ଧଚିତ୍ତେ ।
ଆଶୀର୍ବାଦ ଦିଅ ତପ ସାଧଇ ଯେମନ୍ତେ ॥
ଏମନ୍ତେ ନିଷ୍ଠୁରବାଣୀ ଶୁଣି ପୁତ୍ରମୁଖେ ।
ସୁନୀତିକପୋଳେ କର ଦେଇ ମନୋଦୁଃଖେ ॥

ଏମନ୍ତେ ଧ୍ରୁବର ବାଣୀ ଦୃଢ ଶୁଣି ମାତା
ପୁତ୍ର ମୁଖ ଚାହିଁ ମନେ କଲା ଗୁରୁଚିନ୍ତା ॥
ବୋଲଇ ମୋହର ଗର୍ଭଜାତ ଏ କୁମର ।
ରାଜାର ଆତ୍ମା ସମ୍ଭୂତେ ତେଜ ପରଖର ॥
କ୍ଷତ୍ରିୟ ସ୍ୱଭାବ ବହେ ଦୁର୍ଗମ ଚରିତ ।
ତପବନେ ଶ୍ରବଣେ ଦ୍ରବିଲା ଅନ୍ତର୍ଗତ ॥
ତେଜ ବିରାଜଇ ଦେହେ ତପନ ପରାୟେ ।
ଅବଶ୍ୟ ଗମିବ ତପେ ଜାଣିଲି ନିଶ୍ଚୟେ ॥
ଏ କେବେହେଁ ନ ରହିବ ମୋହର ବଚନେ ।
ନ ଜାଣି ମୁଁ ଉପଦେଶ କହିଲି ଅଜ୍ଞାନେ ॥
ଏହାର ସୁନ୍ଦର ମୁଖ ନ ଦେଖି ସମକ୍ଷେ ।
ନିମେଷ କୋଟିଏ ଯୁଗ ହୋଇବ ପ୍ରତ୍ୟକ୍ଷେ ॥
କି ବୁଦ୍ଧି ଉପାୟ କରି କେମନ୍ତେ ରଖିବ ।
ଦୁର୍ଗମ ସଙ୍କଟୁ ଏବେ କେମନ୍ତେ ବର୍ତ୍ତିବ ॥

ଏମନ୍ତ ବିଚାରି ସେ ପୁତ୍ରର ମୁଖ ଚାହିଁ ।
କହଇ ସୁନୀତି ମନୋଦୁଃଖେ ଖେଦବହି ॥
ଶୁଣ ପୁତ୍ର ସାବଧାନେ ମୋହର ବଚନ ।
କେବଳ ଅଟୁ ତୁ ପୁତ୍ର ରାଜାର ନନ୍ଦନ ॥
ତୋତେ ଆଜ୍ଞା ଦେବାରେ ମୋହର ଶକ୍ତି ନାହିଁ ।
ତୁ ତ ସପ୍ତବର୍ଷ ସୁକୁମାର ତୋର ଦେହୀ ॥
ତଥାପି କହିବି ଶୁଣ ସାବଧାନ ଚିତ୍ତେ ।
ରାଜାର ଭୁବନେ ଅଛି ସପତ୍ନୀ ଆଦୃତେ ।
ତାର ବାକ୍ୟ ନିର୍ଘାତେ ମୋହର ଚିତ୍ତ ଦହେ ।
ଗିରିରୁ ସ୍ରବଇ ପ୍ରାୟେ ଅଶ୍ରୁଧାର ବହେ ॥

ଏବେ ତୋର ବନଗତ ଶୁଣି ମୋର ମନ ।
ଅଧିକେ ସ୍ରବଇ ଯେ ଲୋତକ ମୋ ନୟନ ॥
ନଦୀପ୍ରାୟେ ବହେ ବାରି କେବେହେଁ ନ ରହେ
କହ ପୁତ୍ର ଏବେ ମୁଁ କି କରିବି ଉପାୟେ ॥
ସ୍ୱଭାବେ ମୁଁ ଏକପୁତ୍ରୀ ରାଜାର ଭବନେ ।
ପ୍ରାଣ ଦେହ ଧରଇ ତୋହର ଦରଶନେ ॥
ମୋହର ତୁ ଅନ୍ଧଯଷ୍ଟି ତୋର ପଛେ ଥାଇ ।
ବାଡ଼ି ହସ୍ତ ଗଲେ ଅନ୍ଧ କେମନ୍ତେ ବର୍ତ୍ତଇ ॥

ପୁତ୍ର ଜନ୍ମ ନୋହିଲା ମୋହର ମନୋବ୍ୟଥା ।
ତୋର ପ୍ରାପ୍ତିଅର୍ଥେ କେତେ ପୂଜିଲି ଦେବତା ॥
କୃଚ୍ଛ୍ର ଚାନ୍ଦ୍ରାୟଣ ଉପାସିକ ବ୍ରତ କଲି ।
ସେ ତପ ସାଧନେ ପୁତ୍ର ତୋତେ ମୁଁ ପାଇଲି ॥
ତୋର ମୁଖ ଚନ୍ଦ୍ରୋଦୟ ଦେଖି ମୋର ମନ ।
ସମୁଦ୍ରେ ତରଙ୍ଗ ପ୍ରାୟ ଉଲ୍ଲୋଳ ନୟନ ॥
ଆନନ୍ଦେ ପୟ ଯେ ପୂରେ ମୋର ବେନିସ୍ତନ ।
ଗଳିତ ହୁଅଇ ଦେଖି ତୋହର ବଦନ ॥

ତୋର ମୁଖ ନ ଦେଖି ମୋହର ଅଙ୍ଗ ତାପେ ।
ତତ୍‌କ୍ଷଣେ ଶୀତଳ ହୁଏ ମିଳିଲେ ସମୀପେ ॥
ମୋହର ହୃଦରେ ତୁ ନିଦ୍ରିତ ସ୍ତନ୍ୟ ପାନେ ।
ବସ୍ତ୍ର ଆଚ୍ଛାଦିତ ଦୁଗ୍ଧବୋଧିତ ବଦନେ ॥
ତୋହର ଶୀତଳ ବାକ୍ୟ କର୍ଣ୍ଣେ ଶୁଭେ ଯେବେ ।
ସପତ୍ନୀର ବାକ୍ୟ ତାପ ହୃଦରେ ନ ବାଧେ ॥
ବିଳମ୍ବ ତୋହର ନିଦ୍ରା ଦେଖି ମୋର ଚିତ୍ତ ।
ପଦ୍ମ ଯେହ୍ନେ ରହୁଥାଏ ସୂର୍ଯ୍ୟର ଉଦିତ ॥
ବାଳକଙ୍କ ସଙ୍ଗେ କ୍ରୀଡ଼ା କରିବାର ଅର୍ଥେ ॥
ଗୃହରୁ ବାହାର ହୋଇ ମିଳୁ ଯେବେ ପଥେ ॥
ତୋହର ବିଳମ୍ବେ ହୃଦେ ବେନି ସ୍ତନ ମୋର
ତନୁଖେ ଝରଇ ଯେହ୍ନେ ମେଘ ଜଳଧାର ।
ତୁ ମୋର ତପସ୍ୟା ଅର୍ଥେ ଯେବେ ଯିବୁ ହଠେ
ମୋର ପଞ୍ଚ ପ୍ରାଣ ଯେ ମିଳିବ କଣ୍ଠତଟେ ॥

ଅତି ତାପେ ତାପିବି ଯେ ତୋହର ଗମନେ ।
ଏମନ୍ତ କୁମର ଶିଶୁ ଜନନୀ ବଚନେ ॥
ବିଷ୍ଣୁର ପଦ୍ମରେ ହୃଦେ କରି ନମସ୍କାର ।
ମଙ୍ଗଳ ମୁହୂର୍ତ୍ତେ ଧ୍ରୁବ ହୋଇଲା ବାହାର ॥
ଜନନୀର ମନ ଯେ ପୁତ୍ରର ପଛେ ଗଲା ।
ଚଳନ୍ତେ ରାଜାର ପୁରେ କେହି ନ ଦେଖିଲେ ॥
ବାଳକ ବାଳ ଆଦିତ୍ୟ ପ୍ରାୟ ପଥେ ଯାନ୍ତେ ।
ଅନୁକୂଳ ପବନ ବହିଲା ଅକସ୍ମାତେ ॥
ପବନେ ଚଳିତ ବନଲତା ତରୁଗଣ ।
ହସ୍ତ ପ୍ରସାରିଲା ପ୍ରାୟ କରନ୍ତି କଲ୍ୟାଣ ॥

କାନନେ ପଶିଲେ ଧ୍ରୁବ ଗୋବିନ୍ଦ ସୁମରି ।
ଜନନୀ ଚରଣ ଦୁହେଁ ହୃଦଗତେ ଧରି ॥
ଭ୍ରମିକ ଅନାଇଁ ସେ ଅନେକ ଦୂର ଗଲା ।
ଗହନ କାନନେ ରାଜପଥ ନ ଜାଣିଲା ॥
ନ ଭକ୍ଷିଣ ତୃଷିତ ବାଧିତ ଦୁଃଖ ମନେ ।
ବୃକ୍ଷମୂଳେ ବସିଲା ଆଦିତ୍ୟ ଅବସାନେ ॥
ବାଳକ ଭାବଇ ମନେ ଦଶଦିଗ ଚାହିଁ ।
କାହାକୁ ପୁଛିବି ମୋର ସଙ୍ଗେ କେହି ନାହିଁ ॥
ବୋଲି ଚକ୍ଷୁ ବୁଜି ସେ କୃଷ୍ଣଙ୍କୁ ସୁମରଇ ।
ବନଜନ୍ତୁ ଭୟେ ଧ୍ରୁବ ପୁଣିହିଁ ଅନାଇଁ ॥
ତାର ପୂର୍ବ ତପବଳେ ସେ ଘୋରକାନନେ ।
ସାୟଂକାଳେ ସମୀପେ ମିଳିଲେ ମୁନିମାନେ ॥
ପର୍ବତ କାନନେ ଦ୍ରୁମଜଳ ଅଗ୍ନିପଥେ ।
ବାଳ ବୃଦ୍ଧ ବନିତା ଦୁର୍ବଳ ବ୍ୟାଧିଗ୍ରସ୍ତେ ॥
ପୂର୍ବଭାଗ୍ୟ ଥିଲେ ପ୍ରାଣୀ ଦୁସ୍ତରୁ ତରନ୍ତି ।
ଭାଗ୍ୟହୀନେ ଗୃହେ ଯତ୍ନ କରନ୍ତେ ମରନ୍ତି ॥
ଦେଖ ତାର ଭାଗ୍ୟ-ବଳ ସପ୍ତଋଷି ଗଣେ ।
ସମୀପେ ମିଳିଲେ ଆସି ଭାଗ୍ୟଙ୍କର ବନେ ॥
ରାଜାର କୁମର ଅବା କାହିଁ ବନବାସ ।
ଦୈବର ଘଟନ ଦେଖ ଧର୍ମର ବିଶ୍ୱାସ ॥
ଏଣୁ ନିଜକର୍ମକୁ କରିବ ନମସ୍କାର ।
ଯାହାର ଉପରେ ନାହିଁ ପ୍ରଭୁ ଅଧିକାର ॥
ଯାହାର ସେ ଶୁଭାଶୁଭ ପୁଣ୍ୟବଳ ଥାଇ ।
ମନେ ନ କଳିଲେ ଅକସ୍ମାତେ ସେ ମିଳଇ
ଭବିଷ୍ୟତେ ରଜ୍ଜୁବନ୍ଧେ କରି ଆକର୍ଷଣ ।
ନାନାସ୍ଥାନେ କରୁଥାଇ ଭବିଷ୍ୟ କରଣ ॥
ଶରୀର ସମ୍ପଦ ବିତ୍ତ ବିବିଧ ଚେଷ୍ଟିତ ।
ତେଜୋବଳ ଉଦ୍ୟମ ସେ ସହାୟ ପ୍ରମଥ ॥
ପୁଣ୍ୟବଳ ଥିଲେ ସେ ସମସ୍ତ ଫଳ ପାଇ ।
ପୂର୍ବେ ନ ଅର୍ଜିଲେ ଲାଭ ନ ପାଇବ କାହିଁ ॥
ଚକ୍ଷୁମେଲି ଚାହାଁନ୍ତେ ଦେଖିଲା ମୁନିଗଣ ।
ତେଜ ବିରାଜଇ ଯେସନ୍ତେ ସୂର୍ଯ୍ୟର କିରଣ ॥

ଭାଗ୍ୟଜାତ ଆକାଶେ ମିଳିଲେ ସର୍ବମୁନି ।
ଲଲାଟେ ତିଳକ ଦଣ୍ଡପ୍ରାୟ କରେ ଘେନି ॥
କୃଷ୍ଣାଜିନ ପରିଧାନ ପବିତ୍ର ଉରସି ।
ଉନ୍ମୀଳିତଲୋଚନ ଅକ୍ଷସୂତ୍ର ଦଣ୍ଡଧାରୀ ॥
ଅକସ୍ମାତେ ମିଳିଲେ ଅଗାଧ କ୍ଷୀରନିଧି ।
ଆଦିଧାତା ଜାଣି ଜ୍ଞାନ ଗୁଣେ ଯେ ପ୍ରସିଦ୍ଧି ॥
ଅମୃତ ବଚନ କି ବଦନେ ବରଷନ୍ତି ।
କ୍ଷୀରନିଧି ମଧ୍ୟେ ହଂସ ପ୍ରାୟେ ସେ ଦିଶନ୍ତି ॥
ଏମନ୍ତ ମୁନିଙ୍କି ଧ୍ରୁବ ସନ୍ନିଧିରେ ଦେଖି ।
ସମ୍ଭ୍ରମ ଚିତ୍ତେ ଉଠିଲା ଆସନ ଉପେକ୍ଷି ॥
କପାଳେ କରସଂପୁଟ ଦେଇ ହୃଷ୍ଟମନେ ।
ମୁନିଙ୍କି ପ୍ରଣାମ କଲା ହରଷ ବଦନେ ॥
ଆନନ୍ଦେ ମୁନିଙ୍କ ପାଦେ ଧ୍ରୁବ କରଯୋଡ଼ି ।
କହଇ କୋମଳ ବାଣୀ ବିନୟ ଆଦରି ॥
ଉତ୍ତାନପାଦ ବୀର୍ଯ୍ୟରେ ସୁନୀତି ଉଦରେ ।
ଶରୀର ବହିଲି ମୁହିଁ ଏ ଘୋର ସଂସାରେ ॥
ଧ୍ରୁବ ନାମ ବୋଲଇ ଅଧ୍ରୁବ ନାମ ମୋର ।
ନିର୍ମଳ ମାନସେ ମୁହିଁ ମନ୍ଦିରୁ ବାହାର ॥
ଅନାଥ ହୋଇ ମିଳିଲି ଏ ଘୋର କାନନେ ।
ସନାଥ ହୋଇଲି ଏବେ ତୁମ୍ଭ ଦରଶନେ ॥
ନିରାଶ ଶରୀର ମୋର ଏଣେ କାର୍ଯ୍ୟ ନାହିଁ ।
ବଞ୍ଚିତ ହୋଇଲି ନୃପ ସିଂହାସନୁ ମୁହିଁ ॥
ପୂର୍ବେ କୋଟିଜନ୍ମେ ମୁଁ ନ କଲି ତପସ୍ୟା ।
ଏବେ କଲି ଚିତ୍ତ ନୃପ ସିଂହାସନେ ବସି ॥
ଏଣୁ ମୁଁ ନିରାଶଚିତ୍ତେ ପଶିଲି ବନସ୍ତେ ।
ସ୍ଥିରଭାବେ ମନ ମୋ ନ ରହେ ଅନ୍ତର୍ଗତେ ॥
ଏମନ୍ତ ଧ୍ରୁବର ବାଣୀ ଶୁଣି ମୁନିଗଣେ ।
ତାର ମୁଖ ଚାହିଁ ସେ କହନ୍ତି ଜଣେ ଜଣେ ॥
ସ୍ୱଭାବେ ମଧୁରାକୃତି ଦେଖି ତା ବଦନ ।
ସୁଧାରୁ ଅଧିକ କହେ ମଧୁର ବଚନ ॥
ଅତି ଦୟାଚିତ୍ତେ ବସି ଧ୍ରୁବର ସମୀପେ ।
ଦୟାଚିତ୍ତେ ମୁନିଏ ବୋଲନ୍ତି ଏକେ ଏକେ ॥

ଶ୍ରୀଋଷିରୁବାଚ ।

ଆହେ ବାଳ ବଶୀଜାକ୍ଷ ମହାରାଜ ସୁତ ।
ବସ୍ତୁ ନ ପାଇଲୁ ତୋହର ଅନ୍ତର୍ଗତ ॥
ନିର୍ବେଦନ କାରଣ ଆମ୍ଭର ଆଗେ କହ ।
ତୋର ବାକ୍ୟେ ଆମ୍ଭଙ୍କୁହି ଲାଗିଲା ସନ୍ଦେହ ॥
ସ୍ୱଭାବେ ବାଳକ ତୋର ଅର୍ଥ ଚିନ୍ତା ନାହିଁ ।
ରାଜପୁରେ ଜନନୀର ସଙ୍ଗେ ଥାଉ ତୁହି ॥
ଆଧି ବ୍ୟାଧି ନ ଦେଖୁଁତ ତୋହର ଶରୀରେ ।
ନିର୍ବେଦ କାରଣ କହି ଆମ୍ଭର ଆଗରେ ।
ଯୁବାକାଳେ ଭୋଗ ଯେବେ ନ ପାଆନ୍ତି ନରେ
ସ୍ୱଭାବେ ବୈରାଗ୍ୟ ଜନ୍ମ ହୁଅଇ ଶରୀରେ ॥
ସପ୍ତଦ୍ୱୀପ ମଧ୍ୟରେ ତୁ କୁମର ସ୍ୱଭାବେ ।
କି କାରଣେ କାନନେ ପଶିଲୁ ବାଳଭାବେ ॥
ଯୁବାକାଳୋହୁ ବୃଦ୍ଧକାଳୋହୁ ବ୍ୟାଧି ଦେହେ ନାହିଁ ।
ବାଳକାଳେ ଅରଣ୍ୟେ ପଶିଲୁ କାହିଁପାଇଁ ॥
ଏମନ୍ତ ପ୍ରକାରେ ଶୁଣି ମୁନିଙ୍କ ବଚନ ।
ଗଦଗଦ ବାକ୍ୟେ କହେ ନୃପତି ନନ୍ଦନ ॥
ଶୁଣ ହେ ସକଳ ବ୍ରହ୍ମ ମୁନିଗଣ ଧୀରେ ।
ନିର୍ବେଦ କାରଣ କହେ ତୁମ୍ଭର ଛାମୁରେ ॥
ରାଜ ସେବା ଅର୍ଥେ ମୋତେ ଜନନୀ ପେଷିଲା ।
ମୋର ଧାତ୍ରୀ ପିତା ଆଗେ ନେଇ ବସାଇଲା ॥
ପିତାର ଚରଣେ ମୁହିଁ ନମସ୍କାର କରି ।
ଉଭା ହୋଇଅଛି ମୁଁ ଧାତ୍ରୀର ବସ୍ତ୍ରଧରି ।
ମୋର ଭାଇ ଉତ୍ତମଙ୍କୁ ଦେଖି ପିତା କୋଳେ ।
ମୁହିଁ ବସିବାକୁ ଯାଇଁ ଧଇଲି ଅଞ୍ଚଳେ ॥
ତାହା ଦେଖିଣ ସୁରୁଚି ମୋ ମାତା ସପତ୍ନୀ ।
ଅନେକ ଭର୍ତ୍ସନା କଲା ସର୍ବଭୂଷଣୀ ଘେନି ॥
ଆପଣା ପୁତ୍ରକୁ କଲା ଉତ୍ତମ ସ୍ୱଭାବେ ।
ଅନେକ ନିନ୍ଦିଲା ମୋତେ ନିନ୍ଦିତ ପ୍ରସ୍ତାବେ ॥
ଅଭାଗିନୀ ଗର୍ଭେ ହେଲା ଜନମ ତୋହର ।
ଦେଖ ଅତି ଭାଗ୍ୟବନ୍ତ ମୋହର କୁମର ॥
ଏ ଗର୍ଭେ ଜନ୍ମିଲେ ନୃପ ସିଂହାସନ ପାଇ ।
ମୋର ଗର୍ଭେ ଜନ୍ମ କିମ୍ପା ନ ଲଭିଲୁ ତୁହି ॥
ତୋହର ମାତାର ପୂର୍ବେ କିଛି ପୁଣ୍ୟ ନାହିଁ ।
ସେ ଗର୍ଭେ ଜନ୍ମିଲୁ ସୁଖ ଲଭିବୁ ତୁ କାହିଁ ॥
ଦୁର୍ଭାଗୀର ପୁତ୍ର ହୋଇ ନୃପସିଂହାସନେ ।
ତୋର ପୁଣ୍ୟ ନାହିଁ ଏବେ ବସିବୁ କେସନେ ॥
ଏମନ୍ତ ପ୍ରକାରେ ମୋର ମାତା ନିନ୍ଦା କଲା ।
ଧିକ ଧିକ ଜନ୍ମ ବୋଲି ବହୁ ଛିଙ୍ଗାସିଲା ॥
ମୁଁ କାନ୍ଦି କହିଲି ନିଜ ଜନନୀ ଅଗ୍ରତେ ।
ତପ କରିବାକୁ ମାତା ଆଜ୍ଞା ଦେଲେ ମୋତେ ॥
ବୋଇଲେ ସଂସାରେ ସାର ତପସ୍ୟା କରଣ ।
ଉଚ୍ଚ ନୀଚ ମଧ୍ୟ ଦେଖ ସଂସାର ଧାରଣ ॥
ନୃପସିଂହାସନେ ଯେବେ ବାଞ୍ଛା ଅଛି ତୋର ।
ଏବେ ନର ଦେହେ ପୁତ୍ର ତପସିଦ୍ଧ କର ॥
ଏମନ୍ତେ ଜନନୀ ମୁଖୁ ଉପଦେଶ ପାଇ ।
ତପ ସିଦ୍ଧ ଘୋରବନେ ପ୍ରବେଶ ହେଲଇଁ ॥
ନିର୍ବେଦନ କାରଣ କହିଲି ତୁମ୍ଭ ଆଗେ ।
ପଶି ବନେ ଭ୍ରମଇ ମୁଁ ବାଳକ ସ୍ୱଭାବେ ॥
ଏମନ୍ତ ଧ୍ରୁବର ବାକ୍ୟ ମୁନିଗଣେ ଶୁଣି ।
ଅନ୍ୟୋନ୍ୟରେ ଋଷି ସେ କହନ୍ତି ମନେ ଗୁଣି ॥
ଦେଖ ଏ କ୍ଷତ୍ରିୟ ତେଜ ସଂସାରେ ଦୁସ୍ତର ।
ପୁଣି ଧ୍ରୁବ ମୁଖ ଋଷି କହନ୍ତି ମଧୁର ॥
ଆମ୍ଭର କି ସାଧ୍ୟ କର୍ମ ତୋର ଉପକାର ।
ନିର୍ଣ୍ଣୟ କରଣ କହ ଆମ୍ଭର ଆଗର ॥
ତୋର ମନୋରଥ ଆମ୍ଭେ ଜାଣିବୁ କେମନ୍ତେ
ଭ୍ରାନ୍ତି ଛାଡ଼ିକରି କହ ଆମ୍ଭର ଅଗ୍ରତେ ॥
ଶୁଣିମା ହେ ମୁନିଜନେ ମୋର ମନୋରଥ ।
ପିତାର ଦୁର୍ଲ୍ଲଭ ପୁତ୍ର ଉତ୍ତମ ମୋ ଭ୍ରାତ ॥
ପିତାର ସମୀପେ ବସେ ନୃପ ସିଂହାସନେ ।
ତାହାକୁ ମୋହର କିଛି ଆନ ନାହିଁ ମନେ ॥
ତୁମ୍ଭେ ମୋତେ ସାହା ହୁଅ ଏ ଘୋରକାନନେ
ଉପଦେଶ କହ ମୁହିଁ ନିସ୍ତରେ ଯେସନେ ॥

ଶୁଣି ଋଷିମାନଙ୍କ ମୁଖୁ ଏ ସୁନ୍ଦର ବାଣୀ ।
କହିଲ ଧ୍ରୁବର ଆଗେ ଉତ୍ତର ଜାଣିଣି ॥
ମୋର ମନ କହେ ତୁମ୍ଭେ ଶୁଣ ମୁନିଗଣେ ।
ଯେତେବେ ଅହଂକାରେ ମୁଁ ପଶିଲି ଘୋରବନେ ॥
ଯେ ସ୍ଥାନକୁ ପୂର୍ବେ ତପେ କେହି ଲଭିନାହିଁ ।
ଇନ୍ଦ୍ର ଆଦି ଦେବତାଙ୍କୁ ଗୋଚର ନୁହଇ ॥
ତ୍ରିଲୋକ ଉପରେ ସର୍ବ ବନ୍ଦିତ ଯେ ସ୍ଥାନ ।
ତହିଁ ବସିବି ନିଶ୍ଚିନ୍ତେ କହୁଇ ମୋ ମନ ॥
ମୋର ପିତୃ ପିତାମହ ଯାହା ନ ପାଇଲେ ।
କଳ୍ପ କଳ୍ପାନ୍ତରେ ଯାହା ନ ପାଇବେ ଭଲେ ॥
ସେ ଭୁବନେ ଯେଉଁଭାବେ ବସିବଇ ମୁହିଁ ।
ତହିଁର ଉପାୟ ମୋତେ କହ ଭାବ ବହି ॥
ଧନ ରାଜ୍ୟ ଭୋଗ ମୋର ପ୍ରୟୋଜନ ନାହିଁ ।
ଏତେ କହି ମୁନିଙ୍କ ଚରଣେ ପ୍ରଣମଇ ॥
ଧ୍ରୁବର ବଚନ ଶୁଣି ସର୍ବ ମୁନିଗଣେ ।
ଅନ୍ୟୋନ୍ୟରେ ମିଳି ସେ କହନ୍ତି ତୋଷମନେ

ଶ୍ରୀମରୀଚିରୁବାଚ ।

ଶୁଣ ହେ ନୃପନନ୍ଦନ କହୁଁ ତୋର ଆଗେ ।
ଯେ ସର୍ବ ବେଦପୁରାଣ ଶାସ୍ତ୍ର ଅନୁଭବେ ॥
ବିଷ୍ଣୁର ଚରଣେ ସେବା ଯେ କରେ ନିଶ୍ଚୟେ
ଇହ ପରଲୋକେ ଯେ ବାଞ୍ଛିତ ଫଳପାଏ ॥
ଅନ୍ୟଦେବଙ୍କର ବର ଅନୁଭବେ ସରେ ।
ବିଷ୍ଣୁର ପ୍ରସନ୍ନେ ଭୋଗ ଭୁଞ୍ଜି ନିରନ୍ତରେ ॥

ଶ୍ରୀଅତ୍ରିରୁବାଚ ।

ଅତ୍ରି କହେ ଶୁଣବାବୁ ସୁନୀତି କୁମର ।
ନାରାୟଣ ସନ୍ତୋଷେ କର୍ମିଳ ତପକର ॥
ସେ ପରମ ପୁରୁଷ ଯାହାକୁ ତୋଷ ହୋଇ ।
ମନର ବାଞ୍ଛାରୁ ସେ ଅଧିକ ଫଳ ଦେଇ ॥
ଅକ୍ଷୟ ସ୍ଥାନରେ ତୁହୋ ପାଅ ଅଧିକାର ।
ବିଘ୍ନ କରି ନ ପାରନ୍ତି ଶିବସିଦ୍ଧ ସୁର ॥
ଏ ସତ୍ୟ ବଚନ ମୋର କର ହୃଦଧ୍ୟାନ ।
ଅଳ୍ପଦିନେ ଲଭିବୁ ଅକ୍ଷୟ ଦିବ୍ୟସ୍ଥାନ ॥

ଶ୍ରୀଅଙ୍ଗିରାଉବାଚ ।

ଅଙ୍ଗିରା କହନ୍ତି ଶୁଣ ନୃପତି କୁମର ।
ଧ୍ୟେବଣ ଗୋବିନ୍ଦଙ୍କ ଚରଣେ ଆଶ୍ରେକର ॥
ବିଶ୍ୱ ବାହ୍ୟାଭ୍ୟନ୍ତରରେ ଯାହାର ନିବାସ ।
ଆତ୍ମାରୂପେ ସର୍ବଭୂତେ ଯାହାର ଆବାସ ॥
ଅଗ୍ରସ୍ଥାନେ ବସିବାକୁ ଇଚ୍ଛା ଯେବେ ତୋର ।
ସର୍ବଭାବେ ବିଷ୍ଣୁର ଚରଣେ ଆଶ୍ରାକର ॥

ଶ୍ରୀପୁଲହଉବାଚ ।

ପରଂବ୍ରହ୍ମ ପରଂଧାମ ପରାପର ନାହିଁ ।
ବିଶ୍ୱ ବାହ୍ୟ ଅଭ୍ୟନ୍ତରେ ଯାର ବିଶ୍ୱଦେହୀ ॥
ସେ ହରି ଚରଣେ ଆଶ୍ରେ କର ଦୃଢଭାବେ ।
ତ୍ରୈଲୋକ୍ୟ ଦୁର୍ଲ୍ଲଭ ସ୍ଥାନ ଲଭିବୁ ଯେମନ୍ତେ ॥

ଶ୍ରୀ କ୍ରତୁରୁବାଚ ।

କ୍ରତୁ କହେ ଶୁଣ ବୀର ମୋହର ବଚନ ।
ଯେ ଯଜ୍ଞ ପୁରୁଷ ଭୁଞ୍ଜେ ଏ ତିନି ଭୁବନ ॥
ତାହାର ପ୍ରସନ୍ନେ ଯେ ଦୁର୍ଲ୍ଲଭ ଲଭେ ପ୍ରାଣୀ ।
ମୁଁ ଏହା ଜାଣଇ ସର୍ବ ଶାସ୍ତ୍ର ସନ୍ମାଣି ॥

ଶ୍ରୀପୌଲସ୍ତ୍ୟରୁବାଚ ।

ପୌଲସ୍ତ୍ୟ କହନ୍ତି ଧ୍ରୁବ ଶୁଣ ଏକଚିତ୍ତେ ।
ଇନ୍ଦ୍ରାଦି ଦୁର୍ଲ୍ଲଭ ସ୍ଥାନ ଲଭିବୁ ଯେମନ୍ତେ ॥
ଘୋର ତପେ ବିଷ୍ଣୁର ଚରଣେ ଆଶ୍ରେକର ।
ଦୁର୍ଲ୍ଲଭ ଆସନେ ବସି ଭୁଞ୍ଜି ଭୋଗସାର ॥

ଶ୍ରୀବଶିଷ୍ଠଉବାଚ ।

ବଶିଷ୍ଠ କହନ୍ତି ଶୁଣ ନୃପତି ନନ୍ଦନ ।
ତପୋବଳେ ବାସୁଦେବେ କର ଦୃଢଧ୍ୟାନ ॥
ପରମ କୈବଲ୍ୟ ଦାତା ପ୍ରଭୁ ଚକ୍ରଧର ।
ତାହାର ପ୍ରସନ୍ନେ କି ଦୁର୍ଲ୍ଲଭ ଅଗୋଚର ॥

ଶ୍ରୀଧ୍ରୁବଉବାଚ ।

ଶୁଣି ବେନି କର ଧ୍ରୁବ ଶିରେ ଦେଇ ତୋଷେ
ପୁନଃ ପୁନଃ ପ୍ରଣମିଲି ଭକ୍ତିର ବିଶ୍ୱାସେ ॥
ତୁମ୍ଭ ଉପଦେଶେ ଯେବେ ହରିଙ୍କି ଭଜିବି ।
ଉପାୟେ କହିବା ମୋତେ କେମନ୍ତେ ପାଇବି ॥

ସାଂଖ୍ୟ ଯୋଗେ କିବା ଜପ ତପ ମନ୍ତ୍ରଧ୍ୟାନେ ।
ପ୍ରାଣାୟାମ ବଳେ କିବା ନିଶ୍ଚଳ ଆସନେ ॥
କେମନ୍ତେ ପାଇବ ଅଳ୍ପଦିନେ ତପ କରି ।
ସ୍ୱଭାବେ ବାଳକ ମୁହିଁ ଦୁଃଖୀ ବ୍ରହ୍ମଋଷି ॥
ଯେ ଆରାଧନେ ଲଭିବ ବିଷ୍ଣୁର ଚରଣ ।
ପ୍ରସନ୍ନ ବଦନେ ମୋତେ କହ ମୁନିଗଣ ॥
ଋଷିଗଣ ଏମନ୍ତ ବାଳକ ବାକ୍ୟ ଶୁଣି ।
ସପ୍ତଋଷିଗଣେ ଏକତ୍ରରେ ସନ୍ମାନି ॥

ଶ୍ରୀଋଷୟଊଚୁଃ ।

କହନ୍ତି ହେ ଧ୍ରୁବ ଶୁଣ ନିର୍ବାଣ ପ୍ରକାର ।
ଯେଉଁ ଆରାଧନେ ଭବୁ ନିସ୍ତରନ୍ତି ନର ॥
ପ୍ରତ୍ୟାହାର ବିଷୟବଳେ ସେ ଇନ୍ଦ୍ରିୟଗଣ ।
ବାହାର ଭିତର ମନେ କରନ୍ତି ଗମନ ॥
ଇନ୍ଦ୍ରିୟଙ୍କ ବିଷୟେ ମନ ନିଶ୍ଚଳେ ନିରୋଧି ।
ଗୁରୁବାକ୍ୟେ ସାଧନ ବିଧାନ ଏ ପ୍ରସିଦ୍ଧି ॥

ଜାଗ୍ରତ ସ୍ୱପ୍ନ ମଧ୍ୟେ ତୁରୀୟ ଭୂମିସ୍ଥାନେ ।
ପଞ୍ଚପ୍ରାଣ ନିରୋଧନ କର ତତ୍‌କ୍ଷଣେ ॥
ବାହ୍ୟଅନ୍ତେ ଜଳଘଟେ ଗଗନ ଯେସନେ ।
ସେହିଭାବେ ସର୍ବଘଟେ ଦେଖି ଦିବ୍ୟଜ୍ଞାନେ ॥
ନାଭିଚକ୍ର ଊର୍ଦ୍ଧ୍ୱେ ଦେଖ ଦଶହି ଅଙ୍ଗୁଳେ ।
ପୀତବର୍ଣ୍ଣ ପ୍ରାୟ ଦିଶେ ହୃଦୟ କମଳେ ॥
ଦ୍ୱାଦଶ କେଶର ମଧ୍ୟେ ଷଡ଼ ଯେ କେଶର ।
ଅଗ୍ନି ଚନ୍ଦ୍ର ସୂର୍ଯ୍ୟ ଦିଶେ ମଣ୍ଡଳ ଆକାର ॥
ତାର ମଧ୍ୟେ ଧ୍ୟାନକର ଚିନ୍ତ୍ୟଦିବ୍ୟ ରୂପ ।
ସର୍ବଭୂତାଶ୍ରୟ ଯେ ପୁରୁଷୋତ୍ତମ କଳ୍ପ ॥
ସେହି ସ୍ଥାନେ ବସିବୁ ଆସନ ଦୃଢ଼ କରି ।
ନାରାୟଣ ମନ୍ତ୍ର ଯେ ଜପ ତୁ ହୃଦେ ଧରି ॥
ଏହିମନ୍ତ୍ର ପୂର୍ବେ ଜପି ସ୍ୱାୟମ୍ଭୁବ ମନୁ ।
ସୃଷ୍ଟି ହେତୁ ସାଧ୍ୟ କଲେ ବ୍ରହ୍ମା ନିଜ ତନୁ ॥
ସାଧୁଜନେ ଏହିଭାବେ କର ଦୃଢ଼ଚିତ୍ତ ।
ସଂସାର ନିସ୍ତାରେ କହେ ବିପ୍ର ଜଗନ୍ନାଥ ॥

ଇତିଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ

ଧ୍ରୁବଚରିତଂ ନାମ ଅଷ୍ଟମୋଽଧ୍ୟାୟଃ ।



## ନ ବ ମ ଅ ଧ୍ୟା ୟ ।

ନବମେ ତୁ ହରିଂ ସ୍ତୁତ୍ୱା ଲବ୍‌ଧ୍ୱା ତସ୍ମାଦ୍‌ବରାନ୍ ଧ୍ରୁବଃ ।
ପ୍ରତ୍ୟାଗତ୍ୟାକରୋଦ୍ରାଜ୍ୟଂ ପିତ୍ରା ଦତ୍ତମିତୀର୍ଯ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ତ ଏବମୁତ୍ସନ୍ନଭୟା ଉରୁକ୍ରମେ କୃତାବନାମାଃ ପ୍ରୟଯୁସ୍ତ୍ରିପିଷ୍ଟପଂ ।
ସହସ୍ରଶୀର୍ଷାପି ତତୋ ଗରୁତ୍ମତା ମଧୋର୍ବନଂ ଭୃତ୍ୟଦିଦୃକ୍ଷୟା ଗତଃ । ୧ ।
ସ ବୈ ଧିୟା ଯୋଗବିପାକତୀବ୍ରୟା ହୃତ୍‌ପଦ୍ମକୋଷେ ସ୍ଫୁରିତଂ ତଡ଼ିତ୍‌ପ୍ରଭମ୍ ।
ତିରୋହିତଂ ସହସୈବୋପଲକ୍ଷ୍ୟ ବହିଃ ସ୍ଥିତଂ ତଦବସ୍ଥଂ ଦଦର୍ଶ । ୨ ।

---

## ଧ୍ରୁବଙ୍କର ବରଲାଭ ।

ନବମ ଅଧ୍ୟାୟରେ ଧ୍ରୁବ ଶ୍ରୀହରିଙ୍କଠାରୁ ବର ପାଇ ପିତୃରାଜ୍ୟରେ ରାଜାହୋଇ
ଅନ୍ତିମକାଳରେ ଧ୍ରୁବଲୋକ ପ୍ରାପ୍ତ ହୋଇ ଥିବା ପ୍ରସଙ୍ଗ ବର୍ଣ୍ଣିତ । ୦ ।

ଶ୍ରୀମୈତ୍ରେୟ କହିଲେ :—

ଭଗବାନଙ୍କର ଏହିପରି ଆଶ୍ୱାସନାବାକ୍ୟ ଶ୍ରବଣକରି ଦେବତାମାନଙ୍କର ଭୟ ଦୂରୀଭୂତ ହେଲା, ସେମାନେ ଭଗବାନଙ୍କୁ ପ୍ରଣାମକରି ସ୍ୱର୍ଗକୁ ପ୍ରତ୍ୟାଗମନ କଲେ, ତଦନନ୍ତର ବିରାଟମୂର୍ତ୍ତି ଭଗବାନ୍ ଗରୁଡ଼ ଉପରେ ଆରୋହଣକରି ଧ୍ରୁବଙ୍କୁ ଦର୍ଶନ ଦେବାଲାଗି ମଧୁବନକୁ ଗମନ କଲେ । ୧ ।

ଧ୍ରୁବ ସୁଦୃଢ଼ ଯୋଗସିଦ୍ଧହୋଇ ସ୍ଥିର ଚିତ୍ତରେ ହୃତ୍‌ପଦ୍ମମଧ୍ୟରେ ଦେଦୀପ୍ୟମାନ ବିଦ୍ୟୁତ୍‌ପ୍ରଭାସମ ଶ୍ରୀହରିଙ୍କର ରୂପ ଶ୍ରୀଦର୍ଶନ କରୁଥିଲେ କିନ୍ତୁ ହଠାତ୍ ସେହିରୂପ ତିରୋହିତ ହୋଇଗଲା । ସେ ଚକ୍ଷୁରୁନ୍ମୀଳନ କରି ଅନ୍ତର ମଧ୍ୟରେ ଯେଉଁ ଭଗବାନଙ୍କୁ ଦର୍ଶନ କରୁଥିଲେ ବହିର୍ଦ୍ଦେଶରେ ତାହାଙ୍କୁହିଁ ଦର୍ଶନ କଲେ ।୨।

---

ହରିଙ୍କୁ ତୋଷି ବର ପାଇ, ପିତୃ ରାଜ୍ୟରେ ରାଜାହୋଇ । ଧ୍ରୁବପାଇଲା ଧ୍ରୁବପଦ, ନବମଅଧ୍ୟାରେ ସମ୍ବାଦ

ଶ୍ରୀମୈତ୍ରେୟ ଉବାଚ—

ସେ ଦେବଗଣେ ହରିପାଦେ
ନମି ଚଳିଲେ ନିଜପଦେ
ଦେବଙ୍କୁ ତୋଷି ଚତୁର୍ଭୁଜ ହରି
ଗରୁଡ଼ପୃଷ୍ଠେ ବିଜେ କରି
ଭୃତ୍ୟଙ୍କୁ ଦେଖିବାର ଆଶେ
ଚଳିଲେ ମଧୁବନ ଦେଶେ । ୧ ।
ଧ୍ରୁବ ସମ୍ପୂର୍ଣ୍ଣ ଯୋଗବଳେ
ଦେଖିଲା ହୃଦସ୍ଥ କମଳେ
ବିଜୁଳି ପ୍ରାୟେ ପରକାଶି
ଅନ୍ତର ହେଲେ ହୃଷୀକେଶି
ଭିତରେ ଦେଖି ନ ଦେଖିଲା
ବାହାରେ ଦୃଷ୍ଟି ପ୍ରକାଶିଲା । ୨ ।

ତଦ୍ଦର୍ଶନେନାଗତସାଧ୍ୱସଃ କ୍ଷିତାବବନ୍ଦତାଙ୍ଗଂ ବିନମଯ୍ୟ ଦଣ୍ଡବତ୍ ।
ଦୃଗ୍‌ଭ୍ୟାଂ ପ୍ରପଶ୍ୟନ୍ ପ୍ରପିବନ୍ନିବାର୍ଭକଶ୍ଚୁମ୍ବନ୍ନିବାସ୍ୟେନ ଭୁଜୈରିବାଶ୍ଳିଷନ୍ ।୩।
ସ ତଂ ବିବକ୍ଷନ୍ତମତଦ୍‌ବିଦଂ ହରିର୍ଜ୍ଞାତ୍ୱାସ୍ୟ ସର୍ବସ୍ୟ ଚ ହୃଦ୍ୟବସ୍ଥିତଃ ।
କୃତାଞ୍ଜଳିଂ ବ୍ରହ୍ମମୟେନ କମ୍ବୁନା ପସ୍ପର୍ଶ ବାଲଂ କୃପୟା କପୋଲେ । ୪ ।
ସ ବୈ ତଦୈବ ପ୍ରତିପାଦିତାଂ ଗିରଂ ଦୈବୀଂ ପରିଜ୍ଞାତ ପରାତ୍ମନିର୍ଣ୍ଣୟଃ ।
ତଂ ଭକ୍ତିଭାବୋଽଭ୍ୟଗୃଣାଦସତ୍ୱରଂ ପରିଶ୍ରୁତୋରୁଶ୍ରବସଂ ଧ୍ରୁବକ୍ଷିତିଃ । ୫ ।

---

ତାହାଙ୍କର ଦର୍ଶନରେ ଧ୍ରୁବଙ୍କର ଆନନ୍ଦ ଜନ୍ମିଲା, ସେ ନିଜର ଅଙ୍ଗ ଅବନତକରି ଭୂମିରେ ସାଷ୍ଟାଙ୍ଗ ପ୍ରଣିପାତ କଲେ, ଅନନ୍ତର ସେହି ବାଳକ ଭଗବାନଙ୍କୁ ଚକ୍ଷୁଦ୍ୱାରା ପାନ, ମୁଖ ଦ୍ୱାରା ଚୁମ୍ବନ ବାହୁଦ୍ୱାରା ଆଲିଙ୍ଗନ କରୁଅଛନ୍ତି ବୋଲି ଜଣାଗଲା । ୩ ।

ଭଗବାନ୍ ଶ୍ରୀହରି ତାହାଙ୍କର ଏବଂ ସମସ୍ତଙ୍କର ଅନ୍ତର୍ଯ୍ୟାମୀ, ତେଣୁ ସେ ବୁଝି ପାରିଲେ ଯେ ଧ୍ରୁବ ତାହାଙ୍କୁ ସ୍ତବକରିବାକୁ ଅଭିଳାଷ କରି ଅଛି କିନ୍ତୁ କିପରି ସ୍ତବ କରିବ ତାହା ସେ ଜାଣେ ନାହିଁ । କେବଳ ବଦ୍ଧାଞ୍ଜଳି ହୋଇ ରହିଅଛି, ଶ୍ରୀହରି ତାହାପ୍ରତି କୃପା ପରବଶ ହୋଇ 'ବେଦମୟ' ଶଙ୍ଖଦ୍ୱାରା ତାହାର କପୋଳଦେଶ ସ୍ପର୍ଶ କଲେ । ୪ ।

ଧ୍ରୁବ ସେତେବେଳେ ଜୀବ ଓ ଈଶ୍ୱରତତ୍ତ୍ୱ ଜାଣିପାରିଲେ ଏବଂ ତାହାଙ୍କର ଭଗବଦ୍‌ବିଷୟିଣୀ ବାକ୍‌ଶକ୍ତି ଉଦୟ ହେବାରୁ ଭକ୍ତିଜନିତ ପ୍ରେମରେ ସେ ଗଦ୍‌ଗଦ ହୋଇ ବିପୁଳ କୀର୍ତ୍ତି ଭଗବାନଙ୍କର ଧୀରେ ଧୀରେ ସ୍ତବ କରିବାକୁ ଲାଗିଲେ, ଏହି ସ୍ତବଦ୍ୱାରା ଧ୍ରୁବର ଧ୍ରୁବଲୋକପ୍ରାପ୍ତି ହେଲା । ୫ ।

---

ଧ୍ୟାନମଙ୍ଗଳ ରୂପ ଦେଖି
ପିଛାଡ଼ି ନ ପାରଇ ଆଖି
ଦେଖି ସମ୍ଭ୍ରମେ ରାଜବାଳା
ସାଷ୍ଟାଙ୍ଗ ବିଧିରେ ନମିଲା
ଅତ୍ୟନ୍ତ ତୃଷିତ ନୟନ
ଲାବଣ୍ୟାମୃତ କଲା ପାନ
ମୁଖେ କି କରଇ ଚୁମ୍ବନ
ଭୁଜେ କି କଲା ଆଲିଙ୍ଗନ । ୩ ।

କୃଷ୍ଣଦର୍ଶନମାତ୍ରେ ତାର
ହୃଦେ ପ୍ରକାଶେ ଜ୍ଞାନ ସାର
ବର୍ଣ୍ଣିବେ ଅଦ୍ଭୁତ ବିଷୟ
ଜୀବ ପରମର ନିର୍ଣ୍ଣୟ
ଶ୍ରୀକୃଷ୍ଣ ତାର ଶିରେ ନେଇ
ତ୍ରିବେଦମୟ ଶଙ୍ଖ ଛୁଇଁ
କଲ୍ୟାଣ କଲେ "ହୃଦେ ତୋର
ପ୍ରକାଶୁ ବାଞ୍ଛିତ ଯେ ଗିର" ।୪।

ଏମନ୍ତ ପ୍ରଭୁ ଆଜ୍ଞା ଶଙ୍ଖେ
ସ୍ତୁତି ସ୍ଫୁରିଲା ଧ୍ରୁବମୁଖେ
ଶ୍ରୀହରି ଅନୁଗ୍ରହେ ଧ୍ୟାନ
ଧ୍ରୁବ ହୃଦରେ କଲା ସ୍ଥାନ
ଦ୍ୱାଦଶ ଆଦିତ୍ୟ କି ଜାଣି
ଦ୍ୱାଦଶ ଶ୍ଳୋକ ସ୍ତୁତି ଭଣି । ୫ ।

ଶ୍ରୀଧ୍ରୁବ ଉବାଚ ।

**ଯୋଽନ୍ତଃ ପ୍ରବିଶ୍ୟ ମମବାଚମିମାଂ ପ୍ରସୁପ୍ତାଂ ସଞ୍ଜୀବୟତ୍ୟଖିଲଶକ୍ତିଧରଃ ସ୍ୱଧାମ୍ନା ।**
**ଅନ୍ୟାଂଶ୍ଚ ହସ୍ତଚରଣଶ୍ରବଣତ୍ୱଗାଦୀନ୍‌ପ୍ରାଣାନ୍ନମୋ ଭଗବତେ ପୁରୁଷାୟତୁଭ୍ୟମ୍ ।୬।**
**ଏକସ୍ତ୍ୱମେବ ଭଗବନ୍ନିଦମାତ୍ମଶକ୍ତ୍ୟା ମାୟାଖ୍ୟୟୋରୁଗୁଣୟା ମହଦାଦ୍ୟଶେଷମ୍ ।**
**ସୃଷ୍ଟ୍ୱାନୁବିଶ୍ୟ ପୁରୁଷସ୍ତଦସଦ୍‌ଗୁଣେଷୁ ନାନେବ ଦାରୁଷୁ ବିଭାବସୁବଦ୍‌ବିଭାସି । ୭ ।**
**ତ୍ୱଦ୍ଦତ୍ତୟା ବୟୁନୟେଦମଚଷ୍ଟ ବିଶ୍ୱଂ ସୁପ୍ତ ପ୍ରବୁଦ୍ଧ ଇବ ନାଥ ଭବତ୍ପ୍ରପନ୍ନଃ ।**
**ତସ୍ୟାପବର୍ଗ୍ୟଶରଣଂ ତବ ପାଦମୂଳଂ ବିସ୍ମର୍ଯ୍ୟତେ କୃତବିଦା କଥମାର୍ତ୍ତବନ୍ଧୋ । ୮ ।**

---

ଶ୍ରୀଧ୍ରୁବ କହିଲେ :—

ଯେଉଁ ପୁରୁଷ ଯାବତୀୟ ଶକ୍ତି ଆଦି ଜ୍ଞାନଶକ୍ତି ଧାରଣ କରନ୍ତି ସୁତରାଂ ଯେ ମୋର ଅନ୍ତଃକରଣ ମଧ୍ୟରେ ପ୍ରବେଶ କରି ମୋର ପ୍ରସୁପ୍ତବାକ୍‌ଶକ୍ତିକୁ ଏବଂ କରଚରଣ କର୍ଣ୍ଣତ୍ୱକ୍ ପ୍ରଭୃତି ଅନ୍ୟାନ୍ୟ ଇନ୍ଦ୍ରିୟମାନଙ୍କୁ ସଞ୍ଜୀବିତ କରିଅଛନ୍ତି, ଆପଣ ସେହି ପରମପୁରୁଷ ଭଗବାନ୍, ଆପଣଙ୍କୁ ମୁଁ ନମସ୍କାର କରୁଅଛି । ୬ ।

ହେ ଭଗବାନ ! ଅଗ୍ନି ଯେପରି ଏକ ହେଲେ ମଧ୍ୟ ବିଭିନ୍ନ କାଷ୍ଠରେ ବିଭିନ୍ନ ରୂପେ ପ୍ରକାଶିତ ହୁଏ, ସେହିପରି ଆପଣ ଏକମାତ୍ର ପୁରୁଷ ହୋଇ ସୁଦ୍ଧା ନିଜର ବହୁ ଗୁଣଶାଳିନୀ ମାୟାଶକ୍ତି ଦ୍ୱାରା ମହଦାଦି ଅଶେଷ ବିଶ୍ୱ ସୃଷ୍ଟିକରି ତହିଁର ଅଭ୍ୟନ୍ତରରେ ଅନ୍ତର୍ଯ୍ୟାମୀରୂପେ ପ୍ରବେଶ କରି ସେହି ମାୟାକୁ ନାନାପ୍ରକାରେ ଅସଦ୍‌ଗୁଣରେ ପ୍ରକାଶ କରିଥାନ୍ତି । ୭ ।

ହେ ଆର୍ତ୍ତବନ୍ଧୋ ! ବ୍ରହ୍ମା ପ୍ରଭୃତିଦେବଗଣସୁଦ୍ଧା ଆପଣଙ୍କର ଶରଣାଗତ ହୋଇ ଆପଣଙ୍କ ପ୍ରଦତ୍ତ ଜ୍ଞାନ ବଳରେ ସୁପ୍ତୋତ୍ଥିତ ବ୍ୟକ୍ତିତୁଲ୍ୟ ଏହି ବିଶ୍ୱକୁ ଅବଲୋକନ କରିଥିଲେ । ଯେଉଁ ବ୍ୟକ୍ତି ଆପଣଙ୍କକୃତ ଉପକାର ଅବଗତ ହୋଇଅଛି, ସେ କପରି ଆପଣଙ୍କର ଚରଣକୁ ଭୁଲି ପାରିବ ? ସେହି ଚରଣ ମୋକ୍ଷତତ୍ତ୍ୱ ଜିଜ୍ଞାସୁ ବ୍ୟକ୍ତିମାନଙ୍କର ଏକମାତ୍ର ଆଶ୍ରୟ ସ୍ଥଳ । ୮ ।

---

ଶ୍ରୀଧ୍ରୁବ ଉବାଚ—

ନମସ୍ତେ ପ୍ରଭୁ ଭଗବାନ
ବ୍ରହ୍ମ ପୁରୁଷ ତୋର ନାମ
ମୋର ଅଜ୍ଞାନହୃଦେ ପଶି
ଚେତନା ଦେଲୁ ହୃଷୀକେଶି
ହେ ପ୍ରଭୁ ନିଜ ତେଜ ତୋର
ଅନନ୍ତ ଶକ୍ତି ଅଗୋଚର
ଯେ କର୍ମ୍ମ ଜ୍ଞାନ ଇନ୍ଦ୍ରି ଦଶ
ତୋ ଶକ୍ତିବଳେ ପରକାଶ । ୬ ।
ତୁ ଏକ ପ୍ରଭୁ ଭଗବାନ
ତୋ ଶକ୍ତି ଅନେକ ବିଧାନ
ତୋର ମାୟାରୁ ମହତତ୍ତ୍ୱ
ମହତୁଁ ଅଶେଷ ଜଗତ
ଏମନ୍ତେ ପ୍ରକାଶ କରାଇ
ଅଂଶେ ପ୍ରବେଶ ତହିଁ ହୋଇ
ସଗୁଣ ପ୍ରାୟେ ତୁ ପ୍ରକାଶୁ
ଯେସନେ କାଷ୍ଠେ ବିଭାବସୁ । ୭ ।
ବ୍ରହ୍ମା ଯେ ଜଡ଼ରୂପେ ଥିଲା
ତୋ ପାଦେ ଶରଣ ପଶିଲା
ତୋ ଠାରୁ ଲଭି ଉପଦେଶ
ଦେଖିଲା ତୋ ରୂପ ଅଶେଷ
ଧର୍ମ୍ମାର୍ଥ କାମ ମୋକ୍ଷ ଫଳ
ତୋହର ଚରଣକମଳ

ନୂନଂ ବିମୁଷ୍ଟମତୟସ୍ତବ ମାୟୟା ତେ ଯେ ତ୍ୱାଂ  ଭବାପ୍ୟୟବିମୋକ୍ଷଣମନ୍ୟହେତୋଃ ।
ଅର୍ଚ୍ଚନ୍ତି କଳ୍ପକତରୁଂ କୁଣପୋପଭୋଗ୍ୟମିଚ୍ଛନ୍ତି ଯତ୍ ସ୍ପର୍ଶଜଂ ନରକେଽପି ନୃଣାମ୍ ।୯।
ଯା ନିର୍ବୃତିସ୍ତନୁଭୃତାଂ ତବ ପାଦପଦ୍ମଧ୍ୟାନାଦ୍‌ଭବଜ୍ଜନକଥାଶ୍ରବଣେନ ବା ସ୍ୟାତ୍ ।
ସା ବ୍ରହ୍ମଣି ସ୍ୱମହିମନ୍ୟପି ନାଥ ମାଭୂତ୍ କିନ୍ତ୍ୱନ୍ତକାସିଲୁଳିତାତ୍ ପତତାଂ ବିମାନାତ୍ ।୧୦।
ଭକ୍ତିଂ ମୁହୁଃ ପ୍ରବହତାଂ ତ୍ୱୟି ମେ ପ୍ରସଙ୍ଗୋ ଭୂୟାଦନନ୍ତ ମହତାମମଲାଶୟାନାମ୍ ।
ଯେନାଞ୍ଜସୋଲ୍ଵଣମୁରୁବ୍ୟସନଂ ଭବାବ୍ଧିଂ ନେଷ୍ୟେ ଭବଦ୍‌ଗୁଣକଥାମୃତପାନମତ୍ତଃ ।୧୧।

---

ଆପଣ ଜନ୍ମ ମୃତ୍ୟୁବନ୍ଧନର ମୁକ୍ତିକାରଣ, ଭକ୍ତମାନଙ୍କର ଆପଣ ବାଞ୍ଛା କଳ୍ପତରୁ, ଯେଉଁମାନେ ଆପଣଙ୍କୁ ଅନ୍ୟଫଳ କାମନାରେ ଆରାଧନା କରନ୍ତି, ସେମାନଙ୍କର ଚିତ୍ତ ଆପଣଙ୍କ ମାୟାଶକ୍ତି ଦ୍ୱାରା ପ୍ରତାରିତ କାରଣ ସେମାନେ ଶବତୁଲ୍ୟ ଜଡ଼ଦେହର ଭୋଗ୍ୟ ଫଳକାମନା କରିଥାନ୍ତି । ବିଷୟ ଓ ଇନ୍ଦ୍ରିୟ ସମ୍ବନ୍ଧ ଜନିତ ସେହି ଫଳ ଜୀବମାନଙ୍କୁ ନରକକୁ ନେଇଯାଏ । ୯ ।

ହେ ନାଥ ! ଆପଣଙ୍କର ପାଦପଦ୍ମଧ୍ୟାନ ଓ ଆପଣଙ୍କର ଭକ୍ତଜନମାନଙ୍କର କଥା ଶ୍ରବଣ କଲେ ଯେଉଁ ଆନନ୍ଦ ଲାଭ ହୁଏ, ଆପଣଙ୍କର ସ୍ୱକୀୟ ମହିମାସ୍ୱରୂପ ବ୍ରହ୍ମସାକ୍ଷାତ୍‌କାରରେ ସୁଦ୍ଧା ତାହା ହୁଏ ନାହିଁ, ସୁତରାଂ ସ୍ୱର୍ଗସୁଖ ଅତିତୁଚ୍ଛ, କାରଣ କାଳସ୍ୱରୂପ ଖଡ଼୍‌ଗଦ୍ୱାରା ସ୍ୱର୍ଗାରୋହଣ ଯାନ ଖଣ୍ଡିତ ହେଲେ ମଧ୍ୟ ଦେବତାମାନେ ସୁଦ୍ଧା ମର୍ତ୍ତ୍ୟ ଲୋକରେ ପତିତ ହୋଇଥାନ୍ତି, ସୁତରାଂ ସେମାନଙ୍କ କଥା ବା କଣ କହିବି ? ।୧୦

ହେ ଅନନ୍ତ ! ଯେଉଁ ନିର୍ମଳଚିତ୍ତ ମହାପୁରୁଷମାନେ ଆପଣଙ୍କ ପ୍ରତି ଅବିଚ୍ଛିନ୍ନ ଭକ୍ତିପରାୟଣ, ମୁଁ ଯେପରି ସେମାନଙ୍କର ସଙ୍ଗଲାଭ କରିପାରେ, ଏହି ସାଧୁମାନଙ୍କର ସଙ୍ଗଗୁଣରେ ଆପଣଙ୍କର ଗୁଣଗାଥା ସ୍ୱରୂପ ଅମୃତପାନରେ ମତ୍ତହୋଇ ବହୁବିପତ୍ତି ଫଳକୁ ଏହି ଘୋର ସଂସାର ସାଗର ମୁଁ ଅନାୟାସରେ ଉତ୍ତୀର୍ଣ୍ଣ ହୋଇ ପାରିବି । ୧୧ ।

---

ହେ ଆର୍ତ୍ତବନ୍ଧୁ ତୋତେ ପୂଜି
ସକାମ କର୍ମ୍ମେ ଯେହୁ ମଜ୍ଜି
ତୋର ମହିମା ସେ ପାସୋରେ
ସ୍ୱଭୋଗ ଅର୍ଥେ କର୍ମ୍ମ କରେ
ଛାଡ଼ଇ ଅଭୟଚରଣ
ଯେ ଜନ୍ମ ମୃତ୍ୟୁ ନିବାରଣ
କଳ୍ପପାଦପ ମୂଳେ ବସି
ଅନିତ୍ୟ ଦେହସୁଖ ଇଚ୍ଛି
ବିଷୟ ଭୋଗେ ମଗ୍ନ ହୋଇ
ଅନ୍ତେ ନରକ ଲଭେ ସେହି ।୮,୯

ଯେ ସାଧୁ ସଙ୍ଗେ ଅନୁସରେ
ତୋ କଥାମୃତ ପାନକରେ
ତୋହର ଅଭୟ ଚରଣ
ହୃଦେ କରଇ ନିତ୍ୟ ଧ୍ୟାନ
ସେ ସୁଖ ବ୍ରହ୍ମପଦେ ନାହିଁ
ସ୍ୱର୍ଗଭୋଗ ତା ତୁଲେ କାହିଁ
ଯମର ହସ୍ତୁଁ ନେତେ ବଳେ
ବିମାନୁଁ ଖସି ପଡ଼େ ତଳେ ।୧୦।
ଏଣୁ ତୋ ଅଭୟ ଚରଣେ
ଆଶ୍ରିତ ଯେତେ ସାଧୁଗଣେ

ତାଙ୍କଚରଣ ସେବା ମୋତେ
ଦିଅ ଅନନ୍ତ ଅବିରତେ
ଭକ୍ତଙ୍କ ମୁଖ ପଦ୍ମ ପ୍ରାନ୍ତେ
ତୋ କଥା ମଧୁ ଧାରା ବହେ
ଲୋଭେ ମୁଁ ହେଲେ ମଧୁକର
ଈଷିତେ ତରିବି ସଂସାର । ୧୧ ।

**ତେନ ସ୍ମରନ୍ତ୍ୟତତରାଂ ପ୍ରିୟମୀଶମର୍ତ୍ତ୍ୟଂ ଯେ ଚାନ୍ୱଦଃ ସୁତସୁହୃଦ୍‌ଗୃହବିତ୍ତଦାରାଃ ।**
**ଯେ ତ୍ୱବ୍ଜନାଭ ଭବଦୀୟପଦାରବିନ୍ଦସୌଗନ୍ଧ୍ୟଲୁବ୍‌ଧହୃଦୟେଷୁ କୃତପ୍ରସଙ୍ଗାଃ ।୧୨।**
**ତିର୍ଯ୍ୟଙ୍ନଗଦ୍ୱିଜସରୀସୃପଦେବଦୈତ୍ୟମର୍ତ୍ତ୍ୟାଦିଭିଃ ପରିଚିତଂ ସଦସଦ୍‌ବିଶେଷମ୍ ।**
**ରୂପଂ ସ୍ଥବିଷ୍ଠମଜ ତେ ମହଦାଦ୍ୟନେକଂ ନାତଃପରଂ ପରମ ବେଦ୍ମି ନ ଯତ୍ର ବାଦଃ ।୧୩**
**କଳ୍ପାନ୍ତ ଏତଦଖିଳଂ ଜଠରେଣ ଗୃହ୍ଣନ୍ ଶେତେ ପୁମାନ୍ ସ୍ୱଦୃଗନନ୍ତସଖସ୍ତଦଙ୍କେ ।**
**ଯନ୍ନାଭିସିନ୍ଧୁରୁହକାଞ୍ଚନଲୋକପଦ୍ମଗର୍ଭେ ଦ୍ୟୁମାନ୍ ଭଗବତେ ପ୍ରଣତୋଽସ୍ମି ତସ୍ମୈ ।୧୪।**

---

ହେ ପଦ୍ମନାଭ ! ଆପଣଙ୍କର ପାଦପଦ୍ମର ସୌରଭ ଆଘ୍ରାଣ କରିବା ନିମିତ୍ତ ଯେଉଁମାନଙ୍କର ଚିତ୍ତ ଲୋଲୁପ ସେହି ଭକ୍ତମାନଙ୍କର ସଙ୍ଗ ଯେ ଲାଭ କରିଅଛି ସେ ଏହି ନଶ୍ୱର ଦେହ ଏବଂ ତଦନୁବର୍ତ୍ତୀ ପୁତ୍ର, ମିତ୍ର, ଗୃହ, ବିତ୍ତ ପତ୍ନୀ କିଛିହେଁ ଚିନ୍ତା କରି ନ ପାରେ । ୧୨ ।

ହେ ନିତ୍ୟ ପରମପୁରୁଷ ! ହେ ଅଜ ! ଆପଣଙ୍କର ଏ ବିରାଟରୂପ ପଶୁ, ବୃକ୍ଷ, ପର୍ବତ, ପକ୍ଷୀ, ସର୍ପ, ଦେବ, ଦୈତ୍ୟ, ମାନବପ୍ରଭୃତି ଦ୍ୱାରା ପରିବେଷ୍ଟିତ, ସତ୍ ଓ ଅସତ୍ ଏହି ଉଭୟାତ୍ମକ ଯେ ବିରାଟ ସ୍ୱରୂପ ମହତତ୍ତ୍ୱ ପ୍ରଭୃତି ବିବିଧକାରଣ ଦ୍ୱାରା ସମ୍ପାଦିତ ସେହି ସ୍ଥୂଳତମ ସ୍ୱରୂପ ମାତ୍ର ମୁଁ ଅବଗତ ହୋଇ ଅଛି, କିନ୍ତୁ ତହିଁଉତ୍ତାରୁ ଯେଉଁ ଈଶ୍ୱରରୂପ ଅର୍ଥାତ୍ ଯାହା ବାଦବିବାଦ, ତର୍କ ଓ ବିତର୍କର ଅତୀତ ଓ ପରଂବ୍ରହ୍ମସ୍ୱରୂପ ତାହା ମୁଁ କିଛିମାତ୍ର ଅବଗତ ନୁହେଁ । ୧୩ ।

ଯେଉଁ ପରମପୁରୁଷ ପ୍ରଳୟକାଳରେ ସମଗ୍ର ବିଶ୍ୱକୁ ନିଜର ଉଦରମଧ୍ୟରେ ଗ୍ରହଣ କରି ଯୋଗନିଦ୍ରା ଅବଲମ୍ବନ ପୂର୍ବକ ଅନନ୍ତନାଗଙ୍କୁ ସହାୟ କରି ତାହାଙ୍କର କ୍ରୋଡ଼ରେ ଶୟନ କରିଥିଲେ ଏବଂ ଯାହାଙ୍କର ନାଭି ସମୁଦ୍ର ମଧ୍ୟରୁ ଉତ୍ପନ୍ନ ସ୍ୱର୍ଣ୍ଣମୟ ଲୋକାତ୍ମକ ପଦ୍ମମଧ୍ୟରେ ତେଜସ୍ୱୀ ବ୍ରହ୍ମା ଆବିର୍ଭୂତ ହୋଇଥିଲେ, ସେହି ଭଗବତ୍ ସ୍ୱରୂପ ଆପଣଙ୍କୁ ମୁଁ ନମସ୍କାର କରେ । ୧୪ ।

---

ତୋହର ପାଦଅରବିନ୍ଦ
ବ୍ରହ୍ମାଣ୍ଡେ ପୂରିଛି ସୁଗନ୍ଧ
ତହିଁରେ ମଧୁଲିଟପରି—
ପ୍ରାୟେ ସାଧବେ ଯେତେ ଥାନ୍ତି
ତାହାଙ୍କ ସେବା ଯେହୁ ପାଇ
ସୁତ ଦାରାଦି ପାସୋରଇ
ନ କରେ ନିଜଦେହେ ଭାବ
ଧନ୍ୟ ମହିମା ପଦ୍ମନାଭ ।୧୨।

ତ୍ରିଗୁଣ ସହିତ ଅହଂକାରେ
ଯେ ସ୍ଥୂଳ ସୂକ୍ଷ୍ମାଦି ଭେଦରେ
ବିରାଟ ସ୍ଥୂଳରୂପ ତୋର
ଜାଣନ୍ତି ଶାସ୍ତ୍ରବଳେ ନର
ତୋ ନିଜ ବ୍ରହ୍ମ ରୂପ ଜାଣ
ବେଦାନ୍ତେ ନୁହଇ ପ୍ରମାଣ
ତାହା ଜାଣେ ଯେ ଭକ୍ତଜନ
ନିବର୍ତ୍ତି ହେଲେ ଅଭିମାନ

ତୋ କୃପାବଳେ ମହାବାହୁ
ଏ ବେନି ରୂପ ଜାଣେ ସେହୁ ।୧୩
କଳ୍ପାନ୍ତେ ଅଖିଳ ଭୁବନ
ତୁ ଗର୍ଭେ ରଖି ଭଗବାନ
ଅନନ୍ତଶ୍ୟାରେ ନିଦ୍ରିତ
ନାଭିରୁ ସ୍ୱର୍ଣ୍ଣପଦ୍ମ ଜାତ
ସେ ପଦ୍ମେ ବ୍ରହ୍ମାର ସମ୍ଭବ
ନମସ୍ତେ ନାରାୟଣ ଦେବ ।୧୪।

ତ୍ୱଂ ନିତ୍ୟମୁକ୍ତପରିଶୁଦ୍ଧବିବୁଦ୍ଧ ଆତ୍ମା କୂଟସ୍ଥ ଆଦିପୁରୁଷୋ ଭଗବାଂସ୍ତ୍ର୍ୟଧୀଶଃ ।
ଯଦ୍‌ବୁଦ୍ଧ୍ୟବସ୍ଥିତିମଖଣ୍ଡିତୟା ସ୍ୱଦୃଷ୍ଟ୍ୟା ଦ୍ରଷ୍ଟା ସ୍ଥିତାବଧିମଖୋ ବ୍ୟତିରିକ୍ତ ଆସ୍‌ସେ ।୧୫
ଯସ୍ମିନ୍ ବିରୁଦ୍ଧଗତୟୋ ହ୍ୟନିଶଂ ପତନ୍ତି ବିଦ୍ୟାଦୟୋ ବିବିଧଶକ୍ତୟ ଆନୁପୂର୍ବ୍ୟା ।
ତଦ୍‌ବ୍ରହ୍ମ ବିଶ୍ୱଭବମେକମନନ୍ତମାଦ୍ୟମାନନ୍ଦମାତ୍ରମବିକାରମହଂ ପ୍ରପଦ୍ୟେ । ୧୬ ।
ସତ୍ୟାଶିଷୋ ହି ଭଗବଂସ୍ତବ ପାଦପଦ୍ମମାଶୀସ୍ତଥାନୁଭଜତଃ ପୁରୁଷାର୍ଥମୂର୍ତ୍ତେଃ ।
ଅପ୍ୟେବମର୍ଯ୍ୟ ଭଗବାନ୍ ପରିପାତି ଦୀନାନ୍ ବାଶ୍ରେବ ବତ୍ସକମନୁଗ୍ରହକାତରୋଽସ୍ମାନ୍ ।୧୭।

ଶ୍ରୀମୈତ୍ରେୟ ଉବାଚ ।

ଅଥାଭିଷ୍ଟୁତ ଏବଂ ବୈ ସତ୍‌ସଂକଲ୍ପେନ ଧୀମତା ।
ଭୃତ୍ୟାନୁରକ୍ତୋ ଭଗବାନ୍ ପ୍ରତିନନ୍ଦ୍ୟେଦମବ୍ରବୀତ୍ । ୧୮ ।

---

ଆପଣ ନିତ୍ୟ ମୁକ୍ତ, ଆପଣ ସର୍ବତୋଭାବରେ ଶୁଦ୍ଧ, ଆପଣ ସର୍ବଜ୍ଞ, ଆପଣ ପରମାତ୍ମା, ଆପଣ କୂଟସ୍ଥ ଅର୍ଥାତ୍ ନିର୍ବିକାର, ଆଦିପୁରୁଷ, ତ୍ରିଗୁଣାତୀତ ଭଗବାନ୍, ସୁତରାଂ ଆପଣ ଜୀବଠାରୁ ଭିନ୍ନ ଭାବରେ ବିରାଜିତ, ତାହା ହୋଇ ମଧ୍ୟ ଆପଣ ବିଶ୍ୱପାଳନ ଯଜ୍ଞର ଅଧିଷ୍ଠାତା ବିଷ୍ଣୁ । ୧୫ ।

ପରସ୍ପର ବିରୁଦ୍ଧଭାବାପନ୍ନ ବିଦ୍ୟା ଓ ଅବିଦ୍ୟା ପ୍ରଭୃତି ବିବିଧଶକ୍ତି ସର୍ବଦା ଧାରାବାହିକରୂପେ ଯାହାଙ୍କଠାରେ ପ୍ରତୀୟମାନ ହୋଇଥାଏ, ବିଶ୍ୱର କାରଣ, ଅନାଦି, ଅଦ୍ୱିତୀୟ, ଅନନ୍ତ ଆନନ୍ଦମୟ, ନିର୍ବିକାର ପରଂବ୍ରହ୍ମ ସ୍ୱରୂପ, ଆପଣଙ୍କ ନିକଟରେ ମୁଁ ଶରଣାପନ୍ନ ହେଉଅଛି । ୧୬ ।

ହେ ଭଗବନ୍ ! ଯେଉଁ ବ୍ୟକ୍ତିମାନେ ଆପଣଙ୍କ ପରମାନନ୍ଦ ସ୍ୱରୂପ ଜାଣି ଭଜନ କରନ୍ତି ସେମାନଙ୍କ ପକ୍ଷରେ ଆପଣଙ୍କର ପାଦପଦ୍ମହିଁ ରାଜ୍ୟ ଲାଭାଦି ସମସ୍ତ କାମ୍ୟଫଳ ଅପେକ୍ଷା ପରମ ଶ୍ରେଷ୍ଠ । ହେ ପ୍ରଭୋ ! ତଥାପି ଧେନୁ ଯେପରି କ୍ଷୁଦ୍ରବତ୍ସାକୁ ରକ୍ଷା କରେ; ଆପଣ ମଧ୍ୟ ସେହିପରି ମୋପରି ଆର୍ତ୍ତ, ସକାମବ୍ୟକ୍ତିକୁ ରକ୍ଷା କରିଥାନ୍ତି । ୧୭ ।

ଶ୍ରୀମୈତ୍ରେୟ କହିଲେ :—

ଅନନ୍ତର ସତ୍‌ସଂକଳ୍ପସମ୍ପନ୍ନ ପ୍ରଶସ୍ତମତି ଧ୍ରୁବ ଏହିପରି ସ୍ତବକରିବାରୁ ଭକ୍ତବତ୍ସଳ ଭଗବାନ୍ ଧ୍ରୁବର ପ୍ରାର୍ଥନା ଅନୁମୋଦନକରି କହିଲେ । ୧୮ ।

---

ତୁ ନିତ୍ୟମୁକ୍ତ ଶୁଦ୍ଧରୂପୀ
ଆତ୍ମା ପୁରୁଷ ସର୍ବ-ବ୍ୟାପୀ
ତୁ ତିନିଗୁଣ ଅଧୀଶ୍ୱର
ଆଦି ପୁରୁଷ ନିର୍ବିକାର
ତୁ ବୁଦ୍ଧିସାକ୍ଷୀ ନିରଞ୍ଜନ
ସକଳ ଯଜ୍ଞଅଧିଷ୍ଠାନ
ସୃଷ୍ଟି ପାଳନ ସଂହାରଣ
ଜୀବ ତୋଠାରୁ ବିଲକ୍ଷଣ ।୧୫।

ବେଦ ପୁରାଣ ଇତିହାସ
ଅନ୍ତେ ତୋ ଦେହେ ପରବେଶ
ଅଖିଳ ଶକ୍ତି ବିଶ୍ୱପନ୍ତି
ଉଦ୍ଭବ ତୋଠାରୁ ହୁଅନ୍ତି ।୧୬।
ମୁଁ ତୋର ପଦ୍ମପାଦେ ଭଜି
ସଂସାର ବେଗେ ପୁଣି ମଜ୍ଜି
ସେ ଅନୁଗ୍ରହେ ମୋତେ ତାର
ବାଳକ ପ୍ରାୟେ ରକ୍ଷା କର ।୧୭।

ଶ୍ରୀମୈତ୍ରେୟଉବାଚ—

ଏମନ୍ତେ ବହୁବିଧ ସ୍ତୁତି
ସଂକଳ୍ପି କରନ୍ତେ ଧ୍ରୁବ ଚିନ୍ତି
ନିବିଡ଼ ଭକ୍ତି ଭାବେ ପୁଣି
ଦର୍ଶନ କରି ହେଲା ତୁନି
ତା ଭକ୍ତି ଭାବ ସ୍ତୁତି ଶୁଣି
ହସି ବୋଲନ୍ତି ଚକ୍ରପାଣି । ୧୮ ।

ଶ୍ରୀଭଗବାନୁବାଚ ।

ବେଦାହଂ ତେ ବ୍ୟବସିତଂ ହୃଦି ରାଜନ୍ୟବାଲକ ।
ତତ୍ପ୍ରୟଚ୍ଛାମି ଭଦ୍ରଂ ତେ ଦୁରାପମପି ସୁବ୍ରତ । ୧୯ ।
ନାନ୍ୟୈରଧିଷ୍ଠିତଂ ଭଦ୍ର ଯଦ୍ ଭ୍ରାଜିଷ୍ଣୁ ଧ୍ରୁବ କ୍ଷିତ ।
ଯତ୍ର ଗ୍ରହର୍କ୍ଷତାରାଣାଂ ଜ୍ୟୋତିଷାଂ ଚକ୍ରମାହିତମ୍ ।
ମେଢ୍ୟାଂ ଗୋଚକ୍ରବତ୍ ସ୍ଥାସ୍ନୁ ପରସ୍ତାତ୍ କଳ୍ପବାସିନାମ୍ । ୨୦ ।
ଧର୍ମୋଽଗ୍ନିଃ କଶ୍ୟପଃ ଶକ୍ରୋ ମୁନୟୋ ଯେ ବନୌକସଃ ।
ଚରନ୍ତି ଦକ୍ଷିଣୀକୃତ୍ୟ ଭ୍ରମନ୍ତୋ ଯତ୍ ସତାରକାଃ । ୨୧ ।
ପ୍ରସ୍ଥିତେ ତୁ ବନଂ ପିତ୍ରା ଦତ୍ତ୍ୱା ଗାଂ ଧର୍ମସଂଶ୍ରୟଃ ।
ଷଟ୍‌ତ୍ରିଂଶଦ୍‌ବର୍ଷସାହସ୍ରଂ ରକ୍ଷିତା ବ୍ୟାହତେନ୍ଦ୍ରିୟଃ । ୨୨ ।

---

ଶ୍ରୀଭଗବାନ୍ କହିଲେ :—

ହେ କ୍ଷତ୍ରିୟକୁମାର ! ତୋର ମନୋରଥ ଅଭିପ୍ରାୟ ମୁଁ ବୁଝି ପାରିଅଛି, ହେ କର୍ତ୍ତବ୍ୟନିଷ୍ଠ ବାଳକ ! ପରମପୁରୁଷାର୍ଥରୂପ ଯଥାର୍ଥ ମଙ୍ଗଳମୟ ଫଳ ତୋର ସଂକଳ୍ପ ଅନୁସାରେ ଦୁର୍ଲ୍ଲଭ ହେଲେ ମଧ୍ୟ ମୁଁ ତହିଁର ବିଧାନ କରୁଅଛି । ୧୯ ।

ହେ ମଙ୍ଗଳାସ୍ପଦ ଧ୍ରୁବ ! ଯେଉଁ ସ୍ଥାନରେ ଅନ୍ୟ କେହି କେବେହେଁ ଅଧିଷ୍ଠାନ କରି ପାରି ନାହିଁ, ଏବଂ ଯେଉଁ ସ୍ଥାନରେ ଗ୍ରହ ନକ୍ଷତ୍ରାଦି ଜ୍ୟୋତିଷ୍କମାନେ ଘୂର୍ଣ୍ଣାୟମାନ, ଗୋ-ସମୂହ ଯେପରି ବନ୍ଧନସ୍ତମ୍ଭରେ ଅବସ୍ଥାନ କରନ୍ତି, ସେହିପରି ଅବିରାମ ଜ୍ୟୋତି ପାଉଅଛନ୍ତି ଏବଂ ଯାହା କଳ୍ପାନ୍ତପରେ ସୁଦ୍ଧା ବିନଷ୍ଟ ହେବ ନାହିଁ । ଧର୍ମ, ଅଗ୍ନି, କଶ୍ୟପ, ଇନ୍ଦ୍ର ପ୍ରଭୃତି ସପ୍ତର୍ଷିମାନଙ୍କ ସହିତ ଏହିସ୍ଥାନରେ ଭ୍ରମଣ କରୁଅଛନ୍ତି, ସେହି ଉତ୍କୃଷ୍ଟ ସ୍ଥାନ ମୁଁ ତୁମ୍ଭଲାଗି ବ୍ୟବସ୍ଥା କରିଅଛି । ୨୦,୨୧ ।

ତୋହର ପିତା ଉତ୍ତାନପାଦ, ତୋ ହସ୍ତରେ ପୃଥିବୀ ଭାର ଅର୍ପଣ କରି ବନଗାମୀ ହେଲେ ତୁ ଧର୍ମପଥ ଅବଲମ୍ବନ କରି ସମସ୍ତ ଇନ୍ଦ୍ରିୟଶକ୍ତି ପୂର୍ଣ୍ଣ, କ୍ରିୟାଶୀଳ ହିବରେ ଛତ୍ରିଂଶହଜାର ବର୍ଷ ପୃଥିବୀ ପାଳନ କରିବୁ । ୨୨ ।

---

ଶ୍ରୀ ଭଗବାନୁବାଚ—

ଧ୍ରୁବ ତୋହର ସଂକଳ୍ପିତ
ଯାହା ମୁଁ ଜାଣେ ତୋର ଚିତ୍ତ
ତୋତେ ମୁଁ ଦେବି ଏହିବର
ବ୍ରହ୍ମା ଇନ୍ଦ୍ରଙ୍କୁ ଅଗୋଚର
ଗ୍ରହ ନକ୍ଷତ୍ରଚକ୍ର ସନ୍ତି
ଜ୍ୟୋତିଷଚକ୍ର ପରେ ସ୍ଥିତି
ଯେମନ୍ତ ବଳବର୍ଦ୍ଧଗଣ
ମେଢ଼ିରେ ଛୁଅନ୍ତି ବନ୍ଧନ
ତେହ୍ନେ ଜ୍ୟୋତିଷ ଚକ୍ରେ ବସି
ଭ୍ରମୁ ଅଛନ୍ତି କଳ୍ପବାସୀ
ତ୍ରୈଲୋକ୍ୟ ପ୍ରଳୟର କାଳେ
ସେ ସ୍ଥାନ ରହେ ସୁକୁଶଳେ
କଶ୍ୟପ ଧର୍ମ୍ମ ଯେ ପାବକ
ଇନ୍ଦ୍ର ଯେ ସପ୍ତଋଷି ଲୋକ
ଯେ ନବଗ୍ରହ ତାରାଗଣ
ଭ୍ରମନ୍ତି କରି ପ୍ରଦକ୍ଷିଣ
ସେ ଧ୍ରୁବଲୋକ ଦେଲି ତୋତେ
ତହିଁ ତୁ ବସିବୁ ନିଶ୍ଚିନ୍ତେ
ଜରା ମରଣ ତୃଷା କ୍ଷୁଧା
ତହିଁରେ ନାହିଁ ଭବବାଧା ।୧୯-୨୨

ତ୍ୱଦ୍ଭ୍ରାତର୍ଯ୍ୟୁତ୍ତମେ ନଷ୍ଟେ ମୃଗୟାୟାନ୍ତୁ ତନ୍ମନାଃ ।
ଅନ୍ୱେଷନ୍ତୀ ବନଂ ମାତା ଦାବାଗ୍ନିଂ ସା ପ୍ରବେକ୍ଷ୍ୟତି । ୨୩ ।
ଇଷ୍ଟ୍ୱା ମା ଯଜ୍ଞହୃଦୟଂ ଯଜ୍ଞୈଃ ପୁଷ୍କଳଦକ୍ଷିଣୈଃ ।
ଭୁକ୍ତ୍ୱା ଚେହାଶିଷଃ ସତ୍ୟା ଅନ୍ତେ ମାଂ ସଂସ୍ମରିଷ୍ୟସି । ୨୪ ।
ତତୋ ଗନ୍ତାସି ମତ୍‌ସ୍ଥାନଂ ସର୍ବଲୋକନମସ୍କୃତମ୍ ।
ଉପରିଷ୍ଟାଦୃଷିଭ୍ୟସ୍ତ୍ୱଂ ଯତୋ ନାବର୍ତ୍ତତେ ଗତଃ । ୨୫ ।

ଶ୍ରୀମୈତ୍ରେୟ ଉବାଚ ।

ଇତ୍ୟର୍ଚ୍ଚିତଃ ସ ଭଗବାନତିଦିଶ୍ୟାତ୍ମନଃ ପଦମ୍ ।
ବାଲସ୍ୟ ପଶ୍ୟତୋ ଧାମ ସ୍ୱମଗାଦ୍‌ଗରୁଡ଼ଧ୍ୱଜଃ । ୨୬ ।

---

ତୋର ଭ୍ରାତା ଉତ୍ତମ ମୃଗୟା କରିବାକୁ ଯାଇଁ କାନ୍ତୁଦିଷ୍ଟ ହେବ ଏବଂ ତାହାର ସ୍ନେହମୟୀ ମାତା ପୁତ୍ରର ତାହାକୁ ଅନ୍ୱେଷଣ କରୁ କରୁ ବନମଧ୍ୟରେ ଦାବାନଳରେ ପ୍ରବେଶ କରିବ । ୨୩ ।

ହେ ବତ୍ସ ! ଯଜ୍ଞହିଁ ମୋର ପ୍ରିୟମୂର୍ତ୍ତି, ତୁ ପ୍ରଚୁର ଦକ୍ଷିଣା ସମ୍ପନ୍ନ ବହୁ ଯଜ୍ଞାନୁଷ୍ଠାନ ଦ୍ୱାରା ମୋର ଆରାଧନା କରି ମୋହର କୃପାରେ ଇହ ଲୋକରେ ନାନାପ୍ରକାର କାମ୍ୟଫଳ ଉପଭୋଗ କରି ଅନ୍ତକାଳରେ ମୋତେ ସ୍ମରଣ କରିବୁ । ୨୪ ।

ତଦନନ୍ତର ସର୍ବଲୋକ ପୂଜ୍ୟ ମୋ ପ୍ରଦତ୍ତ ସ୍ଥାନ ଧ୍ରୁବଲୋକକୁ ଗମନ କରିବୁ । ଏହିସ୍ଥାନ ଋଷିଲୋକ ଅପେକ୍ଷା ଶ୍ରେଷ୍ଠ, ସଙ୍କ୍ରମଶୀଳ ସାଧକ ସେଠାକୁ ଗମନକଲେ ଆଉ ସେଠାରୁ ଫେରିଆସେ ନାହିଁ । ୨୫

ଶ୍ରୀମୈତ୍ରେୟ କହିଲେ ;—

ଭଗବାନ ଗରୁଡ଼ ବାହନ ଏହି ବାଳକ କର୍ତ୍ତୃକ ସମ୍ୟକ୍‌ରୂପେ ଅର୍ଚ୍ଚିତ ହୋଇ ତାହାକୁ ଧ୍ରୁବଲୋକ ପ୍ରାପ୍ତି ଅନୁମତି କରି ତାହାର ସମ୍ମୁଖରେ ନିଜସ୍ଥାନକୁ ଗମନ କଲେ । ୨୬ ।

---

ତୋ ତାତ ଯେବେ ଯିବ ବନେ
ବସିବୁ ନୃପତିଆସନେ
ତୋହର ସୁଦୀର୍ଘ ଆୟୁଷ
ଛତିଶ ସହସ୍ର ବରଷ
ନାନାଭୋଗ ଦେହେଁ ଭୋଗ ଭୁଞ୍ଜି
ସ୍ୱତେଜେ ରିପୁବଳ ଗଞ୍ଜି ।୨୩।
ଉତ୍ତମ ତୋର ସାନ ଭାଇ
ଜୀବନଶୂନ୍ୟ ବନେ ହୋଇ
ମୃଗୟା କରି ଘୋରବନେ
ମିଳିବ କୁବେର ଭୁବନେ
ଗୁହ୍ୟକଗଣସଙ୍ଗେ ମିଳି
ଯୁଦ୍ଧେ ହାରିବ ମହାବଳୀ
ତହିଁ ହୋଇବ ପ୍ରାଣେ ହତ
ତା ଶୁଣି ତାର ନିଜ ମାତ
ସେ ପୁତ୍ରଶୋକର ବିକଳେ
ବନେ ମରିବ ଦାବାନଳେ ।୨୪।
ତୁ ମୋତେ ଯଜ୍ଞେ କରି ପୂଜା
ଦେବଙ୍କୁ ଦେଇ ବଳି ଭୋଜା
ବିପ୍ରଙ୍କୁ କରି ତୋଷ ମନ
ଦେଇ ଦକ୍ଷିଣା ଧନ ଅନ୍ନ
ବିପ୍ରଙ୍କ କଲ୍ୟାଣର ଫଳେ
ମୋତେ ସ୍ମରିବୁ ଅନ୍ତକାଳେ ।୨୫।
ମୋହର ଧ୍ୟାନେ ସ୍ୱର୍ଗ ପଥେ
ଗମିବୁ ଜନନୀ ସହିତେ
ସପ୍ତ ଋଷିଙ୍କ ଊର୍ଦ୍ଧ୍ୱପଥେ
ଜନନୀ ସଙ୍ଗେ ଦିବ୍ୟରଥେ
ବସିବୁ ଶିଶୁମାର ପଛେ
ଉତ୍ତର ଦିଗେ ତୁ ପ୍ରତ୍ୟକ୍ଷେ ।୨୬।

ସୋଽପି ସଙ୍କଳ୍ପଜଂ ବିଷ୍ଣୋଃ ପାଦସେବୋପସାଦିତମ୍ ।
ପ୍ରାପ୍ୟ ସଂକଳ୍ପନିର୍ବାଣଂ ନାତିପ୍ରୀତୋଽଭ୍ୟଗାତ୍ ପୁରମ୍ । ୨୭ ।

ଶ୍ରୀବିଦୁର ଉବାଚ ।

ସୁଦୁର୍ଲଭଂ ଯତ୍ ପରମଂ ପଦଂ ହରେର୍ମାୟାବିନସ୍ତଚ୍ଚରଣାର୍ଚ୍ଚନାର୍ଜ୍ଜିତମ୍ ।
ଲବ୍ଧ୍ୱାପ୍ୟସିଦ୍ଧାର୍ଥମିବୈକଜନ୍ମନା କଥଂ ସ୍ୱମାତ୍ମାନମମନ୍ୟତାର୍ଥବିତ୍ । ୨୮ ।

ଶ୍ରୀମୈତ୍ରେୟ ଉବାଚ ।

ମାତୁଃ ସପତ୍ନ୍ୟା ବାଗ୍‌ବାଣୈର୍ହୃଦି ବିଦ୍ଧସ୍ତୁ ତାନ୍ ସ୍ମରନ୍ ।
ନୈଚ୍ଛନ୍ମୁକ୍ତିପତେର୍ମୁକ୍ତିଂ ପଶ୍ଚାତ୍ତାପମୁପେୟିବାନ୍ । ୨୯ ।

---

ଧ୍ରୁବ ଶ୍ରୀହରିଙ୍କର ପାଦପଦ୍ମ ସେବାଦ୍ୱାରା ନିଜର ଅଭୀଷ୍ଟ ବର ପ୍ରାପ୍ତ ହୋଇ ପିତୃଭବନକୁ ପ୍ରତ୍ୟାବର୍ତ୍ତନ କଲେ ମଧ୍ୟ ତାହାଙ୍କର ହୃଦୟ ଶ୍ରୀକୃଷ୍ଣ ଚରଣାରବିନ୍ଦରେ ନିବିଷ୍ଟ ରହିଥିଲା । ୨୭ ।

ବିଦୁର କହିଲେ :—

ଭଗବାନ୍ ଶ୍ରୀହରିଙ୍କ ପରମପଦ ଧ୍ରୁବଲୋକ ସକାମବ୍ୟକ୍ତି ପକ୍ଷରେ ଅତ୍ୟନ୍ତ ଦୁର୍ଲଭ ହେଲେ ମଧ୍ୟ ଧ୍ରୁବ ଗୋଟିଏ ଜନ୍ମରେ ଶ୍ରୀଭଗବତ୍ ଚରଣ ସେବାଫଳରେ ତାହା ଲାଭ କରିଥିଲେ ଏବଂ ସାର ଅସାର ବୁଝିବାକୁ ଅକ୍ଷମ ହୋଇ ନିଜକୁ କୃତାର୍ଥ ମଣିଥିଲେ । ୨୮ ।

ଶ୍ରୀ ମୈତ୍ରେୟ କହିଲେ :—

ବିମାତାର ବାକ୍ୟବାଣରେ ଧ୍ରୁବଙ୍କର ହୃଦୟ ଅତ୍ୟନ୍ତ ବ୍ୟଥିତ ହୋଇଥିଲା, ତାହା ସ୍ମରଣଥିବା ପର୍ଯ୍ୟନ୍ତ ସେ ମୁକ୍ତିଦାତା ଭଗବାନଙ୍କ ନିକଟରେ ମୁକ୍ତି ବା ତାହାଙ୍କର ଅନୁଚରତ୍ୱ ସ୍ୱରୂପ ପରମାର୍ଥ କାମନା କରି ନାହାନ୍ତି କିନ୍ତୁ ଯେତେବେଳେ ଭଗବାନ୍‌ଙ୍କର ସାକ୍ଷାତ୍ ଲାଭ କଲେ ଏବଂ ନିଜର ସକଳ ଦୁଃଖ ଦୂରୀଭୂତ ହେଲା, ସେତେବେଳେ ସେ ନିଜର ତୁଚ୍ଛ କାମନା ପାଇଁ ଅନୁତପ୍ତ ହୋଇଥିଲେ । ୨୯ ।

---

ଶ୍ରୀମୈତ୍ରେୟଉବାଚ—

ଏମନ୍ତ କହି ଭଗବାନ
ବନେ ହୋଇଲେ ଅନ୍ତର୍ଦ୍ଧାନ
ବିଷ୍ଣୁ ନ ଦେଖି ବୃନ୍ଦାବନେ
ଧ୍ରୁବ ଚିନ୍ତଇ ମନେ ମନେ
ତପେ ତୋଷିଲି ଚକ୍ରଧର
ଦେଖ ଅଭାଗ୍ୟ କର୍ମ ମୋର

ଜନନୀ ସପତ୍ନୀ ବୋଲେ
ମୋକ୍ଷ ନ ମାଗି ବିଷ୍ଣୁ ଭୁଲେ
ଲଭିଲି ଧ୍ରୁବଅଧିକାର
ଧିକ୍କ ଏ ଜୀବନ ମୋହର
ଏମନ୍ତ ମନେ ବିଚାରିଲା
ତକ୍ଷଣେ ନିଜପୁରେ ଗଲା । ୨୭,୨୮

ଶ୍ରୀବିଦୁରଉବାଚ—

ଯେ ହରି ପରମ ଦୁର୍ଲଭ
ଲଭି ନ ପାରେ ବ୍ରହ୍ମା ଶିବ
ସେ ହରିଠାରୁଁ ବର ପାଇ
ଘୋର ମାୟାରେ ମନ ମୋହି
ଆତ୍ମାର ଗତି ନ ମାଗିଲା
ମୋତେତ ସନ୍ଦେହ ଲାଗିଲା । ୨୯।

ଶ୍ରୀଧ୍ରୁବ ଉବାଚ ।

ସମାଧିନା ନୈକଭବେନ ଯତ୍ପଦଂ ବିଦୁଃ ସନନ୍ଦାଦୟ ଊର୍ଦ୍ଧ୍ୱରେତସଃ ।
ମାସୈରହଂ ଷଡ଼ଭିରମୁଷ୍ୟ ପାଦୟୋଶ୍ଛାୟାମୁପେତ୍ୟାପଗତଃ ପୃଥଙ୍ମତଃ ।୩୦।
ଅହୋ ବତ ମମାନାତ୍ମ୍ୟଂ ମନ୍ଦଭାଗ୍ୟସ୍ୟ ପଶ୍ୟତଃ ।
ଭବଚ୍ଛିଦଃ ପାଦମୂଲଂ ଗତ୍ୱା ଯାଚେ ଯଦନ୍ତବତ୍ । ୩୧ ।
ମତିର୍ବିଦୂଷିତା ଦେବୈଃ ପତଦ୍ଭିରସହିଷ୍ଣୁଭିଃ ।
ଯୋ ନାରଦବଚସ୍ତଥ୍ୟଂ ନାଗ୍ରାହିଷମସତ୍ତମଃ । ୩୨ ।
ଦୈବୀଂ ମାୟାମୁପାଶ୍ରିତ୍ୟ ପ୍ରସୁପ୍ତ ଇବ ଭିନ୍ନଦୃକ୍ ।
ତପେ୍ୟ ଦ୍ୱିତୀୟେଽପ୍ୟସତି ଭ୍ରାତୃଭ୍ରାତୃବ୍ୟହୃଦ୍ରୁଜା । ୩୩ ।
ମୟୈତତ୍ ପ୍ରାର୍ଥିତଂ ବ୍ୟର୍ଥଂ ଚିକିତ୍ସେବ ଗତାୟୁଷି ।
ପ୍ରସାଦ୍ୟ ଜଗଦାତ୍ମାନଂ ତପସା ଦୁଷ୍ପ୍ରସାଦନମ୍ ।
ଭବଚ୍ଛିଦମାଯାଚେଽହଂ ଭବଂ ଭାଗ୍ୟବିବର୍ଜ୍ଜିତଃ । ୩୪ ।

ଶ୍ରୀଧ୍ରୁବ କହିଲେ :—

ସନନ୍ଦ ପ୍ରଭୃତି ଊର୍ଦ୍ଧ୍ୱରେତା ମୁନିମାନେ ବହୁଜନ୍ମାବଧି ଅଭ୍ୟନ୍ତର ସମାଧି ଫଳରେ ଯାହା ଜାଣିବାକୁ ସମର୍ଥ ହୋଇ ନ ଥିଲେ, ମୁଁ ଶ୍ରୀହରି ଚରଣ ଛାୟାତଳେ ଛ'ମାସମଧ୍ୟରେ ଉପସ୍ଥିତ ହୋଇଥିଲେ ମଧ୍ୟ ଭେଦବୁଦ୍ଧି ବଶତଃ ମୋର ଅଧଃ ପତନ ହେଲା । ୩୦ ।

ଓହୋ ! ମୁଁ କେଡ଼େ ହତଭାଗ୍ୟ ! ମୋର କି ମୂର୍ଖତା ! ଭବଦୁଃଖହାରୀ ଶ୍ରୀହରି ଚରଣାରବିନ୍ଦରେ ଆଶ୍ରୟ ନେଇ ସୁଦ୍ଧା ମୁଁ ତୁଚ୍ଛ ପଦଗୌରବାଦି ଫଳ କାମନା କରିଅଛି । ୩୧ ।

ମୁଁ ଏଡ଼େ ଅସତ୍ ଯେ ଦେବର୍ଷି ନାରଦଙ୍କର ସାରଗର୍ଭ ଉପଦେଶ ବାକ୍ୟାବଳି ପାଳନ କରି ନାହିଁ, ତା ନ ହେଲେ ଦେବତାମାନେ ମୋ ଅପେକ୍ଷା ନୀଚ ଏହିକଥା ଈର୍ଷାବଶତଃ ଭାବି ଅସହିଷ୍ଣୁ ହୋଇ ବୁଦ୍ଧି-ବିକୃତ ହୋଇ ନଥାନ୍ତି । ୩୨ ।

ଏ ଜଗତରେ କେହି କାହାରି ଅପେକ୍ଷା ଭିନ୍ନ ନୁହେଁ ତଥାପି ଶ୍ରୀ ଭଗବାନଙ୍କର ମାୟାଶକ୍ତିଦ୍ୱାରା ମୁଗ୍ଧ ହୋଇ ମୁଁ ନିଦ୍ରିତବ୍ୟକ୍ତି ସ୍ୱପ୍ନ ଦର୍ଶନ କଲାପରି ଭାଇକୁ ଶତ୍ରୁଜ୍ଞାନ କରି ବୃଥା ମନଃପୀଡ଼ାରେ କ୍ଷୁଣ୍ଣ ହୋଇ ନ ଥାନ୍ତି । ୩୩ ।

ଜଗତର ଆତ୍ମାସ୍ୱରୂପ ସଂସାର ବନ୍ଧନ ନାଶକାରୀ ଯେଉଁ ଭଗବାନଙ୍କୁ ପ୍ରସନ୍ନ କରିବା ଦୁଃସାଧ୍ୟ, ମୁଁ ତାହାଙ୍କୁ ପ୍ରସନ୍ନ କରି ସୁଦ୍ଧା ସେହି ଭବବନ୍ଧନ ହିଁ ପ୍ରାର୍ଥନା କରିଅଛି । ଗତାୟୁ ବ୍ୟକ୍ତି ଚିକିତ୍ସା କରାଇଲେ ତାହା ଯେପରି ନିଷ୍ଫଳ ହୁଏ, ମୋର ପ୍ରାର୍ଥିତବିଷୟ ସେହିପରି ନିରର୍ଥକ ହୋଇଅଛି ।୩୪।

| ଶ୍ରୀ ମୈତ୍ରେୟଉବାଚ— | | ଶ୍ରୀଧ୍ରୁବ ଉବାଚ— |
|---|---|---|
| ମାତୃ ସପତ୍ନୀର ବାକ୍ୟଶରେ | ମୁକ୍ତି ନ ମାଗି ବିଷ୍ଣୁପାଶେ | ସନନ୍ଦ ଆଦି ଯୋଗୀଜନେ |
| ମର୍ମ୍ମ ଭେଦିଲା ତା ହୃଦରେ | ପଛେ ତାପିଲା ଦୁଃଖ ତ୍ରାସେ ।୩୦। | ଅଷ୍ଟାଙ୍ଗ ଯୋଗ ଅଭ୍ୟାସନେ |

ସ୍ୱାରାଜ୍ୟଂ ଯଚ୍ଛତୋ ମୌଢ୍ୟାନ୍ମନୋ ମେ ଭିକ୍ଷିତୋ ବତ ।
ଈଶ୍ୱରାତ୍ କ୍ଷୀଣପୁଣ୍ୟେନ ଫଲୀକାରାନିବାଧନଃ ।୩୫।

ଶ୍ରୀମୈତ୍ରେୟ ଉବାଚ ।

ନ ବୈ ମୁକୁନ୍ଦସ୍ୟ ପଦାରବିନ୍ଦୟୋରଜୋଜୁଷସ୍ତାତ ଭବାଦୃଶା ଜନାଃ ।
ବାଞ୍ଛନ୍ତି ତଦ୍ଦାସ୍ୟମୃତେଽର୍ଥମାତ୍ମନୋ ଯଦୃଚ୍ଛୟା ଲବ୍ଧମନଃସମୃଦ୍ଧୟଃ । ୩୬ ।
ଆକର୍ଣ୍ଣ୍ୟାତ୍ମଜମାୟାନ୍ତଂ ସମ୍ପରେତ୍ୟ ଯଥାଗତମ୍ ।
ରାଜା ନ ଶ୍ରଦ୍ଦଧେ ଭଦ୍ରମଭଦ୍ରସ୍ୟ କୁତୋ ମମ । ୩୭ ।
ଶ୍ରଦ୍ଧାୟ ବାକ୍ୟଂ ଦେବର୍ଷେର୍ହର୍ଷବେଗେନ ଧର୍ଷିତଃ ।
ବାର୍ତ୍ତାହର୍ତ୍ତୁରତପ୍ରୀତୋ ହାରଂ ପ୍ରାଦାନ୍ମହାଧନମ୍ । ୩୮ ।

---

ନିର୍ଦ୍ଧନବ୍ୟକ୍ତି ରାଜଚକ୍ରବର୍ତ୍ତୀଙ୍କ ନିକଟରେ ଉପସ୍ଥିତ ହୋଇ ଯେପରି ତୁଷ ଯୁକ୍ତ ତଣ୍ଡୁଳକଣା ପ୍ରାର୍ଥନା କରିଥାଏ, ମୋର ସେହି ଅବସ୍ଥା ଘଟିଅଛି । ମୁଁ ଦୁର୍ଭାଗ୍ୟବଶତଃ ତାହାଙ୍କ ନିକଟରେ ଅଭିମାନ ଜନ୍ୟ ବସ୍ତୁ ଉଚ୍ଚପଦାଦି ପ୍ରାର୍ଥନା କରିଅଛି । ୩୫ ।

ଶ୍ରୀମୈତ୍ରେୟ କହିଲେ :—

ବତ୍ସ ! ବିଦୁର ! ତୁମ୍ଭପରି ଯେଉଁ ବ୍ୟକ୍ତିମାନେ ମୁକୁନ୍ଦପାଦପଦ୍ମ ପରାୟଣ ହୋଇ ସେହି ପଦଯୁଗଳର ମାଧୁର୍ଯ୍ୟ ଉପଲବ୍ଧି କରିଅଛନ୍ତି ଓ ଅନାୟାସରେ ଯେତେବେଳେ ଯେଉଁ ଅବସ୍ଥା ଉପସ୍ଥିତ ହୁଏ, ସେଥିରେ ସନ୍ତୋଷ ଲାଭ କରନ୍ତି, ସେମାନେ ଭଗବାନଙ୍କର ଦାସତ୍ୱ ଭିନ୍ନ ଅନ୍ୟ କିଛି କାମନା କରନ୍ତି ନାହିଁ ।୩୬।

ରାଜା ଉତ୍ତାନପାଦ ଶୁଣିଲେ ପୁତ୍ର ଧ୍ରୁବ ଫେରି ଆସିଅଛି, ମାତ୍ର ମୃତବ୍ୟକ୍ତି ଫେରିଲେ ଯେପରି କେହି ବିଶ୍ୱାସ କରନ୍ତି ନାହିଁ, ସେହିପରି ଧ୍ରୁବଙ୍କର ଆଗମନ ବାର୍ତ୍ତା ରାଜାଙ୍କ ମନରେ ବିଶ୍ୱାସ ଜନ୍ମାଇ ପାରିଲା ନାହିଁ, ସେ ଭାବିଲେ ମୋପରି ହତଭାଗ୍ୟ ବ୍ୟକ୍ତି ପକ୍ଷରେ ଏ ସୌଭାଗ୍ୟୋଦୟ ସମ୍ଭବ କି ? ।୩୭ ।

ଦେବର୍ଷି ନାରଦଙ୍କ ବାଣୀ—ତୁମ୍ଭର ପୁତ୍ର ଅଚିରେ କୃତକାର୍ଯ୍ୟ ହୋଇ ଫେରି ଆସିବ । ଏହିକଥା ହଠାତ୍ ରାଜାଙ୍କର ମନେ ପଡ଼ିଲା । ସେ ତହିଁରେ ବିଶ୍ୱାସକରି ଆନନ୍ଦବେଗରେ ଅଧୀର ହେଲେ ଏବଂ ସମ୍ବାଦଦାତା ପ୍ରତି ଅତ୍ୟନ୍ତ ପ୍ରୀତ ହୋଇ ବହୁମୂଲ୍ୟ ମାଳା ଅର୍ପଣ କଲେ । ୩୮ ।

---

ଜ୍ଞାନୀଙ୍କ ଧ୍ୟାନେ ନିତ୍ୟେ ଚିନ୍ତି
ଯେ ପଦ ଲଭି ନ ପାରନ୍ତି
ସେ ପଦ ହସ୍ତୁଁ ପକାଇଲି
ଦେଖ ଅଭାଗ୍ୟ କର୍ମ୍ମ କଲି
କଳ୍ପ ପାଦପ ଛାୟା ତେଜି
ନିମ୍ବଣ ପଥ ଚମ୍ବୁ ବୃକ୍ଷ
ଧାଇଁଲି ଭୁଷିତ ବଦନେ
ଧିକ ଏମୋହରଜୀବନେ ।୩୧-୩୭

ଶ୍ରୀମୈତ୍ରେୟଉବାଚ—

ଏମନ୍ତ ଦୁଃଖ ମନେ କରି
ଧ୍ରୁବ ମିଳିଲା ନିଜ ପୁରୀ
ପଥେ ଧ୍ରୁବଙ୍କୁ ଦେଖି ଜନେ
ମିଳିଲେ ରାଜା ସନ୍ନିଧାନେ
କେତେହେଁ ଜନ ବେଗେ ଧାଇଁ
କହିଲେ ରାଜା ଆଗେ ଯାଇଁ

ହେ ନାଥ ଶୁଣ ସାବଧାନେ
ଧ୍ରୁବ ମିଳିଲେ ଉପବନେ
ନିଧି ପ୍ରାପତ ପ୍ରାୟ ମଣି
ସମ୍ଭ୍ରମ ଚିତ୍ତେ ନୃପମଣି
ତକ୍ଷଣେ ଆସନୁଁ ଉଠିଲା
ଆନନ୍ଦ ସାଗରେ ବୁଡ଼ିଲା

ସଦଶ୍ୱଂ ରଥମାରୁହ୍ୟ କାର୍ତ୍ତସ୍ୱରପରିଷ୍କୃତମ୍ ।
ବ୍ରାହ୍ମଣୈଃ କୁଳବୃଦ୍ଧୈଶ୍ଚ ପର୍ଯ୍ୟସ୍ତୋଽମାତ୍ୟବନ୍ଧୁଭିଃ । ୩୯ ।
ଶଙ୍ଖଦୁନ୍ଦୁଭିନାଦେନ ବ୍ରହ୍ମଘୋଷେଣ ବେଣୁଭିଃ ।
ନିଶ୍ଚକ୍ରାମ ପୁରାତ୍ତୂର୍ଣ୍ଣମାତ୍ମଜାବେକ୍ଷଣୋତ୍ସୁକଃ । ୪୦ ।
ସୁନୀତିଃ ସୁରୁଚିଶ୍ଚାସ୍ୟ ମହିଷ୍ୟୌ ରୁକ୍ମଭୂଷିତେ ।
ଆରୁହ୍ୟ ଶିବିକାଂ ସାର୍ଦ୍ଧମୁତ୍ତମେନାଭିଜଗ୍ମତୁଃ । ୪୧ ।
ତଂ ଦୃଷ୍ଟ୍ୱୋପବନାଭ୍ୟାସେ ଆୟାନ୍ତଂ ତରସା ରଥାତ୍ ।
ଅବରୁହ୍ୟ ନୃପସ୍ତୂର୍ଣ୍ଣମାସାଦ୍ୟ ପ୍ରେମବିହ୍ୱଳଃ । ୪୨ ।
ପରିରେଭେଽଙ୍ଗଜଂ ଦୋର୍ଭ୍ୟାଂ ଦୀର୍ଘୋତ୍କଣ୍ଠମନାଃ ଶ୍ୱସନ୍ ।
ବିଷ୍ୱକ୍‌ସେନାଙ୍ଘ୍ରିସଂସ୍ପର୍ଶହତାଶେଷାଘବନ୍ଧନମ୍ । ୪୩ ।
ଅଥାଜିଘ୍ରନ୍ ମୁହୁର୍ମୂର୍ଦ୍ଧ୍ନି ଶୀତୈର୍ନୟନବାରିଭିଃ ।
ସ୍ନାପୟାମାସ ତନୟଂ ଜାତୋଦ୍ଦାମମନୋରଥମ୍ । ୪୪ ।

---

ରାଜା ଉତ୍ତାନପାଦ ଉତ୍ତମ ଅଶ୍ୱଯୁକ୍ତ ସ୍ୱର୍ଣ୍ଣବିଭୂଷିତ ରଥରେ ଆରୋହଣ କରି ବ୍ରାହ୍ମଣ, କୁଳବୃଦ୍ଧ, ଅମାତ୍ୟ, ଓ ବନ୍ଧୁବର୍ଗ ସମଭିବ୍ୟାହାରରେ ଶଙ୍ଖ, ଦୁନ୍ଦୁଭି, ବେଣୁ ପ୍ରଭୃତି ବାଦ୍ୟସହ ଏବଂ ଉଚ୍ଚୈଃସ୍ୱରରେ ବେଦଧ୍ୱନି କରୁ କରୁ ପୁତ୍ର ଦର୍ଶନ ନିମିତ୍ତ ଉତ୍ସୁକ ହୋଇ ଦ୍ରୁତଗତିରେ ପୁର ମଧ୍ୟରୁ ବହିଷ୍କୃତ ହେଲେ । ୩୯, ୪୦ ।

ସ୍ୱର୍ଣ୍ଣାଳଙ୍କାର ବିଭୂଷିତା ସୁନୀତି ଓ ସୁରୁଚି ରାଜମହିଷୀ ଦୁହେଁ ଶିବିକାରେ ଆରୋହଣ କରି ଏବଂ ଉତ୍ତମକୁ ସଙ୍ଗରେ ଘେନି ଧ୍ରୁବଙ୍କୁ ଦର୍ଶନ କରିବା ନିମନ୍ତେ ଗମନ କରିଥିଲେ, ଉତ୍ତାନପାଦ କ୍ରମେ ଦେଖିଲେ ପୁତ୍ର ଉପବନ ନିକଟବର୍ତ୍ତୀ ହୋଇଅଛି, ଶ୍ରୀହରିଚରଣସ୍ପର୍ଶକରି ଯାହାର ସମସ୍ତ ପାପବନ୍ଧନ ବିନଷ୍ଟ ହୋଇଅଛି, ସେହି ପୁତ୍ର ଧ୍ରୁବ ଆସୁଥିବାର ଦେଖି ସେ ଅବିଳମ୍ବେ ରଥରୁ ଅବତୀର୍ଣ୍ଣ ହୋଇ ପ୍ରୀତି ହେତୁ ଘନ ଘନ ନିଃଶ୍ୱାସ କ୍ଷେପଣ କରିଥିଲେ ଏବଂ ପୁତ୍ରକୁ ବାହୁଯୁଗଳଦ୍ୱାରା ବେଷ୍ଟନକରି ଆଲିଙ୍ଗନ କରିଥିଲେ । ୪୧-୪୩

ଧ୍ରୁବ-ଅଯୁତ ମନୋବାସନା ପୂର୍ଣ୍ଣକରି ଫେରି ଆସିଅଛନ୍ତି, ରାଜା ତାହାଙ୍କୁ ପାଇ ବାରମ୍ବାର ତାହାଙ୍କ ମସ୍ତକ ଆଘ୍ରାଣ କରିବାକୁ ଲାଗିଲେ ଏବଂ ଆନନ୍ଦାଶ୍ରୁ ଜଳରେ ତାହାଙ୍କୁ ସ୍ନାନ କରାଇଥିଲେ ।୪୪।

---

ନାରଦ ବାକ୍ୟ ସୁମରିଲି
ସ୍ୱରକଣ୍ଠରେ ହାରଦେଲି ।୩୭-୩୯
ସୁବର୍ଣ୍ଣ ସରଛନ୍ଦ ରଥେ
ବେଗେ ମିଳିଲି ରାଜପଥେ
ସଙ୍ଗେ ବ୍ରାହ୍ମଣ କୁଳବୃଦ୍ଧ
ଯେ ଜ୍ଞାତି କୁଟୁମ୍ବ ସୁହୃଦ

ଅମାତ୍ୟ ମନ୍ତ୍ରୀ କୁଳ ଯେତେ
ଚଳିଲେ ବାଦ୍ୟନାଦଗୀତେ ।୪୦,୪୧
ସୁରୁଚି ସୁନୀତି ସମେତେ
ନାନା ଅଳଙ୍କାର ଭୂଷିତେ
ସୁବର୍ଣ୍ଣ ଶିବିକା ଆରୋହି
ଉତ୍ତମ ପୁତ୍ରେ ସଙ୍ଗେ ଲଈ ।୪୨।

ଧ୍ରୁବକୁ ଦେଖି ଉପବନେ
ଆନନ୍ଦେ ବିସ୍ମିତ ମନେ
ପୁତ୍ରକୁ ଆଲିଙ୍ଗନ କଲି
ଯେଣୁ ଅଶେଷ ପୁଣ୍ୟ ଥିଲି
ଯେ ଧ୍ରୁବ ବିଷ୍ଣୁ ଅଙ୍ଗ ସଙ୍ଗେ
ଅଶେଷ ତୀର୍ଥ ଯାର ଅଙ୍ଗେ

ଅଭିବନ୍ଦ୍ୟ ପିତୁଃ ପାଦାବାଶୀର୍ଭିଶ୍ଚାଭିମନ୍ତ୍ରିତଃ ।
ନନାମ ମାତରୌ ଶୀର୍ଷ୍ଣା ସତ୍କୃତଃ ସଜ୍ଜନାଗ୍ରଣୀଃ । ୪୫ ।
ସୁରୁଚିସ୍ତଂ ସମୁତ୍ଥାପ୍ୟ ପାଦାବନତମର୍ଭକମ୍ ।
ପରିଷ୍ୱଜ୍ୟାହ ଜୀବେତି ବାଷ୍ପଗଦ୍‌ଗଦୟା ଗିରା । ୪୬ ।
ଯସ୍ୟ ପ୍ରସନ୍ନୋ ଭଗବାନ୍ ଗୁଣୈର୍ମୈତ୍ର୍ୟାଦିଭିର୍ହରିଃ ।
ତସ୍ମୈ ନମନ୍ତି ଭୂତାନି ନିମ୍ନମାପ ଇବ ସ୍ୱୟମ୍ । ୪୭ ।
ଉତ୍ତମଶ୍ଚ ଧ୍ରୁବଶ୍ଚୋଭାବନ୍ୟୋଽନ୍ୟଂ ପ୍ରେମବିହ୍ୱଳୌ ।
ଅଙ୍ଗସଙ୍ଗାଦୁତ୍ପୁଲକାବସ୍ରୌଘଂ ମୁହୁରୂହତୁଃ । ୪୮ ।
ସୁନୀତିରସ୍ୟ ଜନନୀ ପ୍ରାଣେଭ୍ୟୋଽପି ପ୍ରିୟଂ ସୁତମ୍ ।
ଉପଗୁହ୍ୟ ଜହାବାଧିଂ ତଦଙ୍ଗସ୍ପର୍ଶନିର୍ବୃତା । ୪୯ ।
ପୟଃ ସ୍ତନାଭ୍ୟାଂ ସୁସ୍ରାବ ନେତ୍ରଜୈଃ ସଲିଲୈଃ ଶିବୈଃ ।
ତଦାଭିଷିଚ୍ୟମାନାଭ୍ୟାଂ ବୀର ବୀରସୁବୋ ମୁହୁଃ । ୫୦ ।

---

ସାଧୁଜନାଗ୍ରଗଣ୍ୟ ଧ୍ରୁବ ମଧ୍ୟ ପିତାଙ୍କର ଚରଣଯୁଗଳ ବନ୍ଦନା କରିଥିଲେ, ଉତ୍ତାନପାଦ ଆଶୀର୍ବାଦ କରିଥିଲେ ଏବଂ କୁଶଳପ୍ରଶ୍ନ ଦ୍ୱାରା ପୁତ୍ରକୁ ସମ୍ଭାଷଣ କରିଥିଲେ, ଧ୍ରୁବ ତଦନନ୍ତର ମାତୃଦ୍ୱୟଙ୍କର ଚରଣ ବନ୍ଦନା କରିଥିଲେ । ୪୫ ।

ସୁରୁଚି ତାହାଙ୍କର ଚରଣରେ ପତିତ ଧ୍ରୁବଙ୍କୁ ପ୍ରୀତିପୂର୍ବକ ଉତ୍ତୋଳନ କରି ଆଲିଙ୍ଗନ କରିଥିଲେ ଏବଂ ବାଷ୍ପଗଦ୍‌ଗଦ କଣ୍ଠରେ କହିଲେ ଦୀର୍ଘଜୀବୀ ହୁଅ ବତ୍ସ ! । ୪୬ ।

ଭଗବାନ୍ ଶ୍ରୀହରି ଯାହାର ମୈତ୍ରିପ୍ରଭୃତି ଗୁଣରେ ପ୍ରସନ୍ନ, ଜଳ ଯେପରି ନିମ୍ନଦେଶଗାମୀ ହୁଏ, ସେହିପରି ନିଖିଳ ଜୀବଜଗତ୍ ତାହା ନିକଟରେ ଅବନତ ହୋଇଥାନ୍ତି । ୪୭ ।

ତଦନନ୍ତର ଉତ୍ତମ ଓ ଧ୍ରୁବ ଉଭୟଭ୍ରାତା ପରସ୍ପର ପ୍ରେମାଲିଙ୍ଗନ କରି ପୁଲକିତ ହୋଇଥିଲେ ଏବଂ ଉଭୟ ଅବିରତ ଆନନ୍ଦାଶ୍ରୁ ବିସର୍ଜନ କରିଥିଲେ । ୪୮ ।

ଧ୍ରୁବଙ୍କର ଜନନୀ ପ୍ରାଣାଧିକ ପ୍ରିୟତମ ପୁତ୍ର ଧ୍ରୁବଙ୍କୁ କୋଳକୁ ନେଇ ତାହାର ଅଙ୍ଗ ସ୍ପର୍ଶକରି ମାନସିକ ସନ୍ତାପ ଦୂରକରିଥିଲେ ଏବଂ ପରମସୁଖ ଅନୁଭବ କରିଥିଲେ । ୪୯ ।

ହେ ବୀର ବିଦୁର ! ସେତେବେଳେ ବୀରପ୍ରସବିନୀ ସୁନୀତିଙ୍କର ପବିତ୍ର ନୟନବାରିଦ୍ୱାରା ବିଧୌତ ସ୍ତନଦ୍ୱୟରୁ ବାରମ୍ବାର ଦୁଗ୍ଧ ସ୍ରବିଥିଲା । ୫୦ ।

---

| | | |
|---|---|---|
| ଆଘ୍ରାଣ କରି ଶିର ଦେଶେ | ପିତା ଚରଣେ ଧ୍ରୁବ ନମି | ସୁରୁଚି ଧ୍ରୁବେ ଧରି କୋଳେ |
| ହୃଦେ ଲଗାଇ ଅତି ତୋଷେ | ବାଳ ସ୍ୱଭାବେ ପଥଶ୍ରମୀ | ଚୁମ୍ବନ ଦେଲା ସୁଖ ଭୋଳେ |
| ମୁଣ୍ଡେ ସିଞ୍ଚିଲା ଅଶ୍ରୁ ବାରି | ସୁନୀତି ସୁରୁଚି ଚରଣେ | ସୁନୀତି ପୁତ୍ର କୋଳେ ଧରି |
| ହୃଦୟେ ପୁଣ ପୁଣ ଧରି ।୪୩-୪୫ | ଧ୍ରୁବ ନମିଲା ତତକ୍ଷଣେ । ୪୬ । | ହୃଦରେ ବହେ କ୍ଷୀର ବାରି |

ତାଂ ଶଶଂସୁର୍ଜନା ରାଜ୍ଞୀଂ ଦିଷ୍ଟ୍ୟା ତେ ପୁତ୍ର ଆର୍ତ୍ତିହା ।
ପ୍ରତିଲବ୍ଧଶ୍ଚିରଂ ନଷ୍ଟୋ ରକ୍ଷିତା ମଣ୍ଡଳଂ ଭୁବଃ । ୫୧ ।
ଅଭ୍ୟର୍ଚ୍ଚିତସ୍ତ୍ୱୟା ନୂନଂ ଭଗବାନ୍ ପ୍ରଣତାର୍ତ୍ତିହା ।
ଯଦନୁଧ୍ୟାୟିନୋ ଧୀରା ମୃତ୍ୟୁଂ ଜିଗ୍ୟୁଃ ସୁଦୁର୍ଜ୍ଜୟମ୍ । ୫୨ ।
ଲାଲ୍ୟମାନଂ ଜନୈରେବଂ ଧ୍ରୁବଂ ସଭ୍ରାତରଂ ନୃପମ୍ ।
ଆରୋପ୍ୟ କରିଣୀଂ ହୃଷ୍ଟଃ ସ୍ତୂୟମାନୋଽବିଶତ୍ ପୁରମ୍ ।୫୩।
ତତ୍ର ତତ୍ରୋପସଂକ୍ଲୃପ୍ତୈର୍ଲସନ୍ମକରତୋରଣୈଃ ।
ସବୃନ୍ଦୈଃ କଦଳୀସ୍ତମ୍ଭୈଃ ପୂଗପୋତୈଶ୍ଚ ତଦ୍ବିଧୈଃ । ୫୪ ।
ଚୂତପଲ୍ଲବବାସଃସ୍ରଙ୍ମୁକ୍ତାଦାମବିଲମ୍ବିଭିଃ ।
ଉପସ୍କୃତଂ ପ୍ରତିଦ୍ୱାରମପାଂ କୁମ୍ଭୈଃ ସଦୀପକୈଃ । ୫୫ ।
ପ୍ରାକାରୈର୍ଗୋପୁରାଗାରୈଃ ଶାତକୁମ୍ଭପରିଚ୍ଛଦୈଃ ।
ସର୍ବତୋଽଲଙ୍କୃତଂ ଶ୍ରୀମଦ୍ବିମାନଶିଖରଦ୍ୟୁଭିଃ । ୫୬ ।

---

ଏହିସମୟରେ ସେଠାରେ ଉପସ୍ଥିତ ବ୍ୟକ୍ତିମାନେ ରାଜ୍ଞୀ ସୁନୀତିଙ୍କୁ କହିଲେ, ହେ ରାଜ୍ଞି ! ଆପଣଙ୍କର ଏହି ପୁତ୍ର ବହୁକାଳ ଅଦର୍ଶନ ପରେ ବହୁ ସୁକୃତ ଫଳରୁ ଫେରି ଆସିଅଛନ୍ତି ଏବଂ ଆମ୍ଭମାନଙ୍କର ସନ୍ତାପହାରୀ ଏହି ପୁତ୍ରଙ୍କୁ ଆପଣ ପୁନର୍ବାର ପ୍ରାପ୍ତହୋଇ ଅଛନ୍ତି, ଆପଣଙ୍କର ଏହି ପୁତ୍ର ପୃଥିବୀ ପାଳନ କରିବେ ।୫୧।

ଜ୍ଞାନୀମାନେ ଯେଉଁ ଭଗବାନଙ୍କୁ ଧ୍ୟାନକରି ଦୁର୍ଜ୍ଜୟ ମୃତ୍ୟୁକୁ ସୁଧା ଜୟକରିଥାନ୍ତି, ଆପଣ ସେହି ପ୍ରଣତଜନ କ୍ଳେଶହାରୀ ଭଗବାନଙ୍କୁ ବିଶେଷରୂପେ ଆରାଧନା କରିଥିଲେ, ଆମ୍ଭେମାନେ ମନେ କରୁଅଛୁଁ ।୫୨।

ଏହିପରି ପୌରଜନମାନଙ୍କ କର୍ତ୍ତୃକ ସମାଦୃତ ଧ୍ରୁବଙ୍କୁ ଭ୍ରାତା ଉତ୍ତମଙ୍କ ସହିତ ହସ୍ତୀ ପୃଷ୍ଠରେ ଆରୋହଣ କରାଇ ରାଜା ଉତ୍ତାନପାଦ ସାନନ୍ଦଚିତ୍ତରେ ଗୃହାଭିମୁଖରେ ଯାତ୍ରା କରିଥିଲେ, ସେତେବେଳେ ତତ୍ରତ୍ୟ ସମସ୍ତଲୋକେ ତାହାଙ୍କର ସ୍ତୁତିଗାନ କରିବାକୁ ଲାଗିଲେ । ୫୩ ।

ପୁର ମଧ୍ୟସ୍ଥ ପ୍ରତ୍ୟେକ ପ୍ରାସାଦ ଦ୍ୱାରରେ ଉଚିତ ଯଥାଯୋଗ୍ୟ ସ୍ଥାନରେ ଫଳମଞ୍ଜରୀଯୁକ୍ତ ସ୍ତମ୍ଭାକୃତି କଦଳୀ ବୃକ୍ଷ ଓ ନବୀନ ଗୁବାକବୃକ୍ଷ ସମୂହ ଏପରି ଭାବରେ ବିନ୍ୟସ୍ତ ହୋଇ ଥିଲା ଯେ ତଦ୍ଦ୍ୱାରା ମକରାକୃତି ଦ୍ୱାରଦେଶମାନ ଅତ୍ୟନ୍ତ ଶୋଭା ସମ୍ପନ୍ନ ହୋଇଥିଲେ । ୫୪ ।

ଆମ୍ରପଲ୍ଲବ, ନୂତନବସ୍ତ୍ର, ମାଲ୍ୟ, ମୁକ୍ତା ସମୂହ ଦ୍ୱାରା ଏବଂ ବିବିଧ ପ୍ରଦୀପ ଯୁକ୍ତ ପୂର୍ଣ୍ଣକୁମ୍ଭ ଦ୍ୱାରା ସେହି ପୁରର ପ୍ରତ୍ୟେକ ଦ୍ୱାର ସୁସଜ୍ଜିତ ହୋଇଥିଲା । ୫୫ ।

ରାଜପୁରୀର ପ୍ରାଚୀରମାନ ବହିର୍ଦ୍ୱାର ଓ ଗୃହସମୂହ ଅଳଂକୃତ ହୋଇଥିଲା, ସେ ଗୁଡିକ ସ୍ୱର୍ଣ୍ଣମୟ ପରିଚ୍ଛଦରେ ପରିଶୋଭିତ ହୋଇ ତହିଁର ଚୂଡାମାନ ଉତ୍ତମ ରଥଚୂଡାତୁଲ୍ୟ କାନ୍ତି ସମ୍ପନ୍ନ ହୋଇଥିଲା ।୫୬।

---

ଜୟେ କରନ୍ତି ଜୟ ବାଣୀ
ଧ୍ରୁବଙ୍କୁ ଘେନି ନୃପମଣି
ମିଳିଲେ ନିଜପୁରେ ଆସି
ଧ୍ରୁବ ମହିମା ପରଶଂସି । ୪୭-୫୪

ଧ୍ରୁବ ପ୍ରବେଶେ ପୁରଜନେ
ଆନନ୍ଦେ ଯେ ଯାହା ଭୁବନେ
ଉତ୍ସବ ଅନେକ ପ୍ରକାରେ
ପ୍ରଦୀପ ପୂର୍ଣ୍ଣକୁମ୍ଭ ଦ୍ୱାରେ

ପ୍ରାଚୀର ଅଟ୍ଟାଳି ସମେତେ
ରଚି ପ୍ରତିମା ରତ୍ନକାନ୍ତେ

ମୃଷ୍ଟଚତ୍ୱରରଥ୍ୟାଟ୍ଟମାର୍ଗଂ ଚନ୍ଦନଚର୍ଚ୍ଚିତମ୍ ।
ଲାଜାକ୍ଷତୈଃ ପୁଷ୍ପଫଲୈସ୍ତଣ୍ଡୁଲୈର୍ବଲିଭିର୍ଯୁତମ୍ । ୫୭ ।
ଧ୍ରୁବାୟ ପଥି ଦୃଷ୍ଟାୟ ତତ୍ର ତତ୍ର ପୁରସ୍ତ୍ରିୟଃ-
ସିଦ୍ଧାର୍ଥାକ୍ଷତଦଧ୍ୟମ୍ବୁଦୁର୍ବାପୁଷ୍ପଫଲାନି ଚ ।
ଉପଜହ୍ରୁଃ ପ୍ରଯୁଞ୍ଜାନା ବାତ୍ସଲ୍ୟାଦାଶିଷଃ ସତୀଃ । ୫୮ ।
ଶୃଣ୍ୱଂସ୍ତଦ୍‌ଗୁଣଗୀତାନି ପ୍ରାବିଶଦ୍‌ଭବନଂ ପିତୁଃ । ୫୯ ।
ମହାମଣିବ୍ରାତମୟେ ସ ତସ୍ମିନ୍ ଭବନୋତ୍ତମେ ।
ଲାଳିତୋ ନିତରାଂ ପିତ୍ରା ନ୍ୟବସଦ୍ଦିବି ଦେବବତ୍ । ୬୦ ।
ପୟଃଫେନନିଭାଃ ଶଯ୍ୟା ଦାନ୍ତା ରୁକ୍ମପରିଚ୍ଛଦାଃ ।
ଆସନାନି ମହାର୍ହାଣି ଯତ୍ର ରୌକ୍ମା ଉପସ୍କରାଃ । ୬୧ ।
ଯତ୍ର ସ୍ଫଟିକକୁଡ୍ୟେଷୁ ମହାମାରକତେଷୁ ଚ ।
ମଣିପ୍ରଦୀପା ଆଭାନ୍ତି ଲଲନାରତ୍ନସଂଯୁତାଃ । ୬୨ ।

---

ସେହି ପୁରର ଅଙ୍ଗନ, ରାଜପଥ, ଉଚ୍ଚପ୍ରାସାଦ ଉପରେ ନିର୍ମିତ ରମ୍ୟ ଭୂମିକାମାନ ସମ୍ମାର୍ଜ୍ଜିତ ଏବଂ ଚନ୍ଦନ ଚର୍ଚ୍ଚିତ ହୋଇଥିଲା । ସେଠାରେ ଲଜା (ଖଇ) ଅକ୍ଷତ, ପୁଷ୍ପ, ଫଳ, ତଣ୍ଡୁଳ ଓ ବିବିଧ ପୂଜାସାମଗ୍ରୀ ସୁସଜ୍ଜିତ ହୋଇଥିଲା । ୫୭ ।

ପୁରସ୍ତ୍ରୀଗଣ ପଥମଧ୍ୟରେ ଧ୍ରୁବଙ୍କର ଆଗମନ ଦେଖି ହୃଷ୍ଟ ଚିତ୍ତରେ ଆଶୀର୍ବାଦ କରୁ କରୁ ଶ୍ୱେତଶୋରିଷ, ଯବ, ଦଧି ଦୁର୍ବା, ପୁଷ୍ପ ଫଳପ୍ରଭୃତି ବର୍ଷଣ କରିବାକୁ ଲାଗିଲେ । ଧ୍ରୁବ ସେହି ଗାନ ଶ୍ରବଣ କରୁକରୁ ସ୍ୱୀୟ ପିତୃଭବନରେ ପ୍ରବେଶ କଲେ । ୫୮, ୫୯ ।

ଧ୍ରୁବ ସେହି ମହାମୂଲ୍ୟ ମଣିସମୂହ ଦ୍ୱାରା ଖଚିତ ଅତ୍ୟୁତ୍ତମ ଗୃହମଧ୍ୟରେ ପିତା ଉତ୍ତାନପାଦଙ୍କ କର୍ତ୍ତୃକ ଲାଳିତ ପାଳିତ ହୋଇ ଦେବତାମାନେ ସ୍ୱର୍ଗବାସ କଲପରି ପରମ ସୁଖରେ ବାସ କରିଥିଲେ ।୬୦।

ସେହି ଗୃହ ମଧ୍ୟରେ ଗଜଦନ୍ତ ନିର୍ମିତ ପଲ୍ୟଙ୍କରେ ଦୁଗ୍ଧଫେନନିଭ ଶଯ୍ୟା, ସ୍ୱର୍ଣ୍ଣମୟ ପରିଚ୍ଛଦ, ମହାମୂଲ୍ୟ ଆସନ ଏବଂ ସ୍ୱର୍ଣ୍ଣମୟ ସମ୍ମାର୍ଜ୍ଜନ ବିରାଜିତ ହେଉଥିଲା । ୬୧ ।

ସେଠାରେ ଇନ୍ଦ୍ରନୀଳମଣି ଖଚିତ ସ୍ଫଟିକମୟ ପ୍ରାଚୀର ଦେହରେ ପ୍ରତିଫଳିତ ସ୍ତ୍ରୀରତ୍ନମାନଙ୍କ କର୍ତ୍ତୃକ ଧୃତ ମଣିମୟ ପ୍ରଦୀପମାନ ଜାଜ୍ଜ୍ୱଲ୍ୟମାନ ହେଉଥିଲା । ୬୨ ।

---

ଶ୍ରେଣୀ ଲମ୍ବାଇ ଗୃହ ମଣ୍ଡେ
ଚନ୍ଦନ ଛେରି ରାଜଦାଣ୍ଡେ
ସ୍ୱଭାବେ ପ୍ରିୟବ୍ରତପୁର
କଅବା ଦେବା ପଟାନ୍ତର ।୫୫-୫୮
ସକଳ ପୁରନାରୀ ବୃନ୍ଦେ
ଧ୍ରୁବଙ୍କୁ ଦେଖିଣ ଆନନ୍ଦେ

ଗନ୍ଧ ଚନ୍ଦନ ବାସ ପାଣି
ଦୂର୍ବା ଅକ୍ଷତ ପୁଷ୍ପ ଆଣି
ଅକ୍ଷତ ଦେଇ ଧ୍ରୁବମୁଣ୍ଡେ
ଜୟ ଶବଦ କରି ତୁଣ୍ଡେ
ଏମନ୍ତେ ମଙ୍ଗଳ ଉତ୍ସବ
ସକଳ ଜନେ ପ୍ରିୟ ଧ୍ରୁବ

ଧ୍ରୁବ ପ୍ରବେଶ ନିଜ ପୁରେ
କାମିନୀଗଣେ ପୂଜା କଲେ
ପୁରେ ପ୍ରବେଶ ରାଜା ସୁତ
ଦେଖି ସକଳେ କୃତକୃତ୍ୟ
ଶଙ୍ଖ ଦୁନ୍ଦୁଭି ଗୀତ ସ୍ୱରେ
ମଙ୍ଗଳ ନାଦ ବାଦ୍ୟ ପୁରେ

ଉଦ୍ୟାନାନି ଚ ରମ୍ୟାଣି ବିଚିତ୍ରୈରମରଦ୍ରୁମୈଃ ।
କୂଜଦ୍‌ବିହଙ୍ଗମିଥୁନୈର୍ଗାୟନ୍ମତ୍ତମଧୁବ୍ରତୈଃ । ୬୩ ।
ବାପ୍ୟୋ ବୈଦୂର୍ଯ୍ୟସୋପାନାଃ ପଦ୍ମୋତ୍ପଲକୁମୁଦ୍‌ବତୀଃ ।
ହଂସକାରଣ୍ଡବକୁଲୈର୍ଜୁଷ୍ଟାଶ୍ଚକ୍ରାହ୍ୱସାରସୈଃ । ୬୪ ।
ଉତ୍ତାନପାଦୋ ରାଜର୍ଷିଃ ପ୍ରଭାବଂ ତନୟସ୍ୟ ତମ୍ ।
ଶ୍ରୁତ୍ୱା ଦୃଷ୍ଟ୍ୱାଦ୍‌ଭୁତତମଂ ପ୍ରପେଦେ ବିସ୍ମୟଂ ପରମ୍ । ୬୫ ।
ବୀକ୍ଷ୍ୟୋଢ଼ବୟସଂ ପୁତ୍ରଂ ପ୍ରକୃତୀନାଞ୍ଚ ସମ୍ମତମ୍ ।
ଅନୁରକ୍ତପ୍ରଜଂ ରାଜା ଧ୍ରୁବଂ ଚକ୍ରେ ଭୁବଃ ପତିମ୍ । ୬୬ ।
ଆତ୍ମାନଞ୍ଚ ପ୍ରବୟସମାକଳଯ୍ୟ ବିଶାଂପତିଃ ।
ବନଂ ବିରକ୍ତଃ ପ୍ରାତିଷ୍ଠଦ୍‌ବିମୃଶନ୍ନାତ୍ମନୋ ଗତିମ୍ । ୬୭ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ଧ୍ରୁବଚରିତେ ନବମୋଽଧ୍ୟାୟଃ । ୯ ।

---

ସେହି ପ୍ରାସାଦ ନିକଟସ୍ଥ ମନୋରମ ଉଦ୍ୟାନ ସମୂହ ବିବିଧ ଦେବତରୁ ଦ୍ୱାରା ଶୋଭା ବର୍ଦ୍ଧନ କରୁଥିଲେ । ସେହି ବୃକ୍ଷୋପରି ବିହଙ୍ଗ ମିଥୁନ ମଧୁର ସ୍ୱରରେ ଆଳାପ କରୁଥିଲେ ଏବଂ ମଧୁକରମାନେ ଗୁଣୁ ଗୁଣୁ ସ୍ୱରରେ ଗାନ କରୁଥିଲେ । ୬୩ ।

ସେହି ଉଦ୍ୟାନ ମଧ୍ୟସ୍ଥ ତଡ଼ାଗ ସମୂହ ବୈଡ଼ୂର୍ଯ୍ୟ ମଣି ନିର୍ମିତ ସୋପାନରେ ଶୋଭିତ ହୋଇଥିଲା । ସେଠାରେ ପଦ୍ମ, କଇଁ, ନୀଳୋତ୍ପଳ ପ୍ରଭୃତି ଶୋଭା ବର୍ଦ୍ଧନ କରୁଥିଲେ । ହଂସ, ସାରସ, ଚକ୍ରବାକ, କାରଣ୍ଡବ ପ୍ରଭୃତି ଜଳଚର ପ୍ରାଣିମାନେ କ୍ରୀଡ଼ାରତ ଥିଲେ । ୬୪ ।

ରାଜା ଉତ୍ତାନପାଦ ପୁତ୍ରର ଆଶ୍ଚର୍ଯ୍ୟ ପ୍ରଭାବ ଦର୍ଶନ ଓ ଶ୍ରବଣ କରି ବିସ୍ମୟାବିଷ୍ଟ ହୋଇଥିଲେ ।୬୫।

ସେ ଧ୍ରୁବଙ୍କୁ ପ୍ରାପ୍ତଯୌବନ ହେବାର ଦେଖି ମନ୍ତ୍ରୀ ଓ ପ୍ରଜାବୃନ୍ଦଙ୍କ ଅନୁମତି ଗ୍ରହଣକରି ତାହାଙ୍କୁ ପ୍ରଜାନୁରକ୍ତ ଜାଣିପାରି ପୃଥିବୀର ଅଧୀଶ୍ୱର କରିଥିଲେ । ୬୬ ।

ଅବଶେଷରେ ରାଜା ନିଜର ବାର୍ଦ୍ଧକ୍ୟ ଉପସ୍ଥିତ ହେବାର ଦେଖି ପରିଣାମ ବିଷୟ ବିଚାର କରି ବିଷୟ ବାସନା ପରିତ୍ୟାଗ ପୂର୍ବକ ବାନପ୍ରସ୍ଥ ଅବଲମ୍ବନ କରିଥିଲେ । ୬୭ ।

---

ସେ ଧ୍ରୁବ ହରି ଅଙ୍ଗ ସଙ୍ଗେ
ଅଶେଷ ଲକ୍ଷ୍ମୀ ଯାର ଅଙ୍ଗେ
ଉତ୍ତାନପାଦ ଧ୍ରୁବ ଦେଖି
ସଜଳ କଲେ ଚର୍ମ୍ମ ଆଖି
ଧ୍ରୁବ ଶରୀର ତେଜ ସହି
ବାନ୍ଧବ ସୁହୃଦ ବସାଇ
ସର୍ବ ସ୍ୱୀକାରେ ଜନ ପ୍ରଜା
ରାଜ୍ୟେ ପୁତ୍ରଙ୍କୁ କଲେ ରାଜା

ସ୍ୱଭାବେ ବିଷ୍ଣୁ ତେଜ ବଳ
ଭାବେ ନିମନ୍ତ୍ରି ଦିଗପାଳ
ଏ ଭୂମି ତଳେ ଯେତେ ରାଜା
ଧ୍ରୁବଚରଣେ କଲେ ପୂଜା
ବୈରାଗ୍ୟ ବଧି ଉତ୍ତ୍ର ମନେ
ରାଜା ତକ୍ଷଣେ ଗଲେ ବନେ ।୬୯-୬୭
ଧ୍ରୁବର ଚରଣ କମଳେ
ପୂଜନେ ନମ ଧ୍ୟାନବଳେ

ଯାର ସ୍ମରଣେ ତାପ ନାଶେ
ନିର୍ମ୍ମଳ ଜ୍ଞାନ ପରକାଶେ
ଚତୁର୍ଥସ୍କନ୍ଧେ ଭାଗବତ
କହିଲ ବିପ୍ର ଜଗନ୍ନାଥ ।



# ନ ବ ମ ଅ ଧ୍ୟା ୟ ।

## ଧ୍ରୁବର ବରଲାଭ ।

ଶ୍ରୀ ସୂତଉବାଚ—

ଘୋରବନେ ରାତ୍ରିକାଳେ ଯାଜନ୍ତ ମୁନିଜନେ ।
ଅନ୍ତରୀକ୍ଷ ବାଣୀ ତାଙ୍କୁ ଶୁଭିଲା ଗଗନେ ॥
ମଧୁବନ କାଳିନ୍ଦୀ ଦକ୍ଷିଣ ତଟେ ରହି ।
ନିଷ୍ଠୁଳ ଆସନେ ତପ ସାଧ କର ତୁହି ॥
ଅନ୍ତରୀକ୍ଷ ବଚନ ଶୁଣିଲା ଯହୁଁ ଉଚ୍ଚେ ।
ତତ୍‌କ୍ଷଣେ ନମିଲା ସେ ମୁନିଙ୍କ ପାଦଗତେ ॥
କୃତକୃତ୍ୟ ହୋଇ ସେ ବାଳକ ଅରକ୍ଷିତ ।
ସେ ବନୁ ଚଳିଲା ଦୃଢଚିତ୍ତେ ଦୂର ପଥ ॥
ମନୁ ସଙ୍ଗବନେ ଯେ ଯମୁନା ତଟେ ଯାଇ ।
ଅନ୍ତରୀକ୍ଷ ବାଣୀ ଉଚ୍ଚେ ଗଗନକୁ ଚାହିଁ ॥
ମଧୁନାମେ ଦୈତ୍ୟ ଅଧିଷ୍ଠିତ ପୂର୍ବେ ଥିଲା ।
ସେ କାରଣୁ ମଧୁବନ ନାମ ସେ ପାଇଲା ॥
ବିଷ୍ଣୁ ସମ ଧାମ ସେ ବୋଲାଇ ଯୁଗେ ଯୁଗେ ।
ତାର ପୁତ୍ର ଲବଣ ଯେ ଥିଲା ବନ ଭାଗେ ॥
ଶତ୍ରୁଘନରୂପେ ତାକୁ ମାରି ଚକ୍ରଧର ।
ଗ୍ରାମ ବସାଇଲେ ନାମ ମଥୁରା ନଗର ॥
ସର୍ବପାପ ହରଇ ଯମୁନା ଜଳ ଯହିଁ ।
ତାର ତୀରେ ବସିଲା ନିଷ୍ଠୁଳେ ଧ୍ରୁବ ଯାଇ ॥
ମୁନିଙ୍କର ଉପଦେଶ ସ୍ମରଇ ନିଷ୍ଠୁଳେ ।
ଯମୁନାର ତୀରେ ସେ କଦମ୍ବ ତରୁତଳେ ॥
ନିଷ୍ଠୁଳ ଆସନେ ବସି ପ୍ରତ୍ୟାହାର କଲା ।
ହରି ଅନୁଗ୍ରହେ ମନ ନିଷ୍ଠୁଳେ ରହିଲା ॥
ଅଶେଷ ଦେବ ଈଶ୍ୱର ବିଷ୍ଣୁ ତା ହୃଦୟେ ।
ପ୍ରକାଶ ହୋଇଲେ ପୂର୍ବଭାଗ୍ୟର ଉଦୟେ ॥
ସର୍ବଭୂତ ଦେହେ ବସେ ଆକାଶର ପ୍ରାୟେ ।
ସର୍ବଗତେ ସର୍ବଭାବେ ସର୍ବଜୀବମୟେ ॥
ଦ୍ୱାଦଶ ଅକ୍ଷର ମନ୍ତ୍ର ହୃଦରେ ସୁମରି ।
ବିଷ୍ଣୁର ଚରଣ ଉଚ୍ଚେ ଅତି ଦୃଢେ ଧରି ॥

ମନେ ବିଚାରଇ ଏ ଆସନେ କାର୍ଯ୍ୟ ନାହିଁ ।
ଊର୍ଦ୍ଧ୍ୱମୁଖେ ଊର୍ଦ୍ଧ୍ୱବାହୁ ତପ ସାଧିବଇଁ ॥
ଏମନ୍ତ ବିଚାରି ସେ ଆସନୁ ଉଠିଲା ।
ଦକ୍ଷିଣ ଚରଣ ସେ ମେଦିନୀ ପୃଷ୍ଠେ ଦେଲା ॥
ସମସ୍ତ ଧରିତ୍ରୀ କମ୍ପେ ଧ୍ରୁବ ପାଦଭରେ ।
ବନ ଗିରି ଜଳଧି ସହିତେ ଯା ଶରୀରେ ॥
ବାମ ପାଦଭରେ ଊର୍ଦ୍ଧ୍ୱେ ନମିଲା ଧରଣୀ ।
ପୁଣି ଧ୍ରୁବ ଦ୍ୱିତୀୟ ଚରଣ ସ୍ଥାପେ ଆଣି ॥
ବାମପାଦ ଅଙ୍ଗୁଷ୍ଠି ଅଗ୍ରରେ ଭରଦେଇ ।
ବାମଜାନୁ ଉପରେ ଦକ୍ଷିଣ ପାଦଥୋଇ ॥
ପାଦ ଅଙ୍ଗୁଷ୍ଠିରେ ଧ୍ରୁବ ନିଶ୍ଚଳେ ରହିଲା ।
ଧ୍ରୁବର ଚରଣ ଭରେ ଅବନୀ କମ୍ପିଲା ॥
ପର୍ବତ ଆଦି ଯେ ବନ ଜଳଧି ସହିତେ ।
କମ୍ପଇ ଧରଣୀ ରମ୍ଭାବୃକ୍ଷ ଯେହ୍ନେ ବାତେ ॥
ଦଶଦିଗ କମ୍ପିଲା କମ୍ପିଲେ ଦିଗପାଳେ ।
ବିଚାରିଲେ ଧ୍ରୁବର ତପସ୍ୟା ଭଙ୍ଗ ଫଳେ ॥
ତେବେ ନିଜ ଅଧିକାରେ ରହିବୁ ସକଳେ ।
ଯଦ୍ୟପି ଏହାର ତପ ରହିବ ନିଶ୍ଚଳେ ॥
ଚତୁର୍ଦ୍ଦଶ ଲୋକ ଯହିଁ ଏହାରେ କମ୍ପିଲେ ।
ଧ୍ରୁବ ତପଭଗ୍ନ ଯିବ କି ଉପାୟ କଲେ ॥
ମହାଘୋର ତପ କରୁ ସୁନୀତିର ବାଳେ ।
ଦେବଙ୍କର ମାନସ କମ୍ପିଲା ଅନ୍ତରାଳେ ॥
ଯମ ଆଦି ଦେବଗଣେ ପରମ ଆକୁଳେ ।
ଇନ୍ଦ୍ରର ସଙ୍ଗତେ ବସି ଭାଳିଲେ ସକଳେ ॥
ଏମନ୍ତ ବିଶ୍ୱରି ଦେବେ ରହିଲେ ଚକିତେ ।
ଧ୍ରୁବର ନିଶ୍ଚଳ ତପ ବିଷ୍ଣୁ ପାଦଗତେ ॥
ପରଂବ୍ରହ୍ମ ଅନାମୟ ବାସୁଦେବ ଯନ୍ତ୍ରେ ।
ଆଗମ ନିଗମ ପଥ ଯଥା ତନ୍ତ୍ର ମନ୍ତ୍ରେ ॥
ବାସୁଦେବ ପ୍ରାୟେ ସେ ଯେ ଜଗତ ଦେଖଇ ।
ଉନ୍ମୀଳ ଲୋଚନେ ଧ୍ରୁବ ପରିଭବ ସହି ॥

ସର୍ବଘଟେ ସର୍ବଭାବେ ଦେଖେ ହରିରୂପ ।
ସର୍ବଜଗେ ଅନଳ ପବନ ସର୍ବଘଟ ॥
ବନ ଗିରି କନ୍ଦରେ ଯେତେକ ପଶୁଯୂଥ ।
ବରୁଣଭୁବନେ ଜଳଯନ୍ତ୍ର ଯେ ସମସ୍ତ ॥
ଅଶ୍ୱ ଗଜ ସହିତେ ରାଜନ ପୁରେ ଯେତେ ।
ବିଷ୍ଣୁର ସ୍ୱରୂପେ ରୂପ ଦେଖଇ ସମସ୍ତେ ॥
ପାତାଳେ ଅନନ୍ତରୂପ ଗଗନେ ଅନନ୍ତ ।
ଏକରୂପେ ରୂପଭେଦ କେ କରିବ ଅନ୍ତ ॥
ଜୀବଙ୍କର ଦେହେ ନିତ୍ୟ ଯେ ଦେବ ବସନ୍ତି
ତାର ନିଜ ଦେହରେ ସେ ଦେବଙ୍କ ବସତି ॥
ବିଶ୍ୱବ୍ୟାପୀ ଯାତାର ଗୋଚର ଅର୍ଥେ ଯେହୁ ।
ଏଣୁ ବ୍ୟାପି ଅଛନ୍ତି ମହିମା କେବା କହୁ ॥
ଏହି ଅର୍ଥେ ମନ ଯାର ବିଷ୍ଣୁ ଉଚ୍ଚାରନ୍ତି ।
ସର୍ବଭୂତେ ପୂରିଛନ୍ତି କେହି ନ ଜାଣନ୍ତି ॥
ସର୍ବଜନ୍ତୁ ହୃଦଗତେ ରବିପ୍ରାୟ ଦିଶେ ।
ଇନ୍ଦ୍ରିୟଙ୍କ ଈଶ୍ୱର ଯେ ହୃଷୀକେଶ ଘୋଷେ ॥
ଯାହାର ଯେ ଭକ୍ତଜନ ପ୍ରଳୟେ ନ ମିଶେ ।
ଏଣୁ ଏ ଅଚ୍ୟୁତନାମ ସର୍ବବେଦେ ଘୋଷେ ॥
ଚରାଚର ବିଶ୍ୱଭାବ ହୋଇ ସେ ବିନାଶ ।
ଏଣୁ ବିଶ୍ୱଭାବ ନାମ ସର୍ବ ଉପଦେଶ ॥
ଧ୍ରୁବର ଲୋଚନ ବିଷ୍ଣୁପାଦେ ଲୀନ ହେଲ ।
କର୍ଣ୍ଣଯୁଗ ବିଷ୍ଣୁର ଶବଦ ଆଚ୍ଛେ କଲ ॥
ବଚନ ରହିଲ ବିଷ୍ଣୁ ଚରିତ ବର୍ଣ୍ଣନେ ।
ବିଷ୍ଣୁ ପାଦପଦ୍ମଗନ୍ଧ ନାସାରନ୍ଧ୍ର ଜାଣେ ॥
ହସ୍ତ ବେନି ସେ ଭାବେ ଯେ ହୋଇଲେ ଅର୍ଚ୍ଚିତ
ପାଦ ବେନି ଗୋବିନ୍ଦ ଭୁବନେ ଉପଗତ ॥
କର୍ମେନ୍ଦ୍ରିୟ ପସିଲ ପରମ ବ୍ରହ୍ମରସେ ।
ଶୀତ ଘର୍ମ ନ ଲଗିଲ ବିଷ୍ଣୁ ଉପଦେଶେ ॥
ଶବ୍ଦ ସ୍ପର୍ଶ ରସ ରୂପ ଗନ୍ଧ ଆଦି ଯେତେ ।
ବିଷ୍ଣୁରଚରଣେ ଲୀନ ହୋଇଲେ ସମସ୍ତେ ॥
ବାକ୍ୟ ପାଣି ପାଦ ଲିଙ୍ଗ ମୂଳାଧାର ଆଦି ।
ବିଷ୍ଣୁକେ ରହିଲେ ଧ୍ରୁବ ଯୋଗର ସନ୍ନିଧି ॥

ତାର ଘୋର ତପ ତେଜେ ସର୍ବତପ ଲୀନ ।
ଅଗ୍ନି ସୁଧାକର ବାୟୁ ଆକାଶ ତପନ ॥
ଧ୍ରୁବର ତପରେ ଧରା ହୁଏ ରସାଗତ ।
ତପଯଜ୍ଞ ଶରୀରେ ଉଦିତ ସମସ୍ତ ॥
ନିର୍ମଳ ଶୀତଳ ସ୍ୱାଦି ରସ ଯେ ବହନ୍ତି ।
ସୁଗନ୍ଧ ସମୀର ବହେ ଶବ୍ଦଦ୍ୱାରେ ଯାନ୍ତି ॥
ଯେତେରୂପ ଗୁଣ ଯେତେ ସୁନ୍ଦରଇନ୍ଦ୍ରିୟେ
ସର୍ବେ ଲୀନ ହୋଇଲେ ସୁନୀତପୁତ୍ର ପାଶେ ।
ସମୀର ବହଇ ଯେ ଧ୍ରୁବର ଦେହେ ଲାଗି ।
ସେ ବାୟୁର ସ୍ପର୍ଶେ ସର୍ବଜଗ ସୁଖ ଭୋଗୀ ॥
ଅଶେଷ ଶବଦ ଯେଣେ ଗଗନ ନିଶ୍ଚଳେ ।
ଆଚ୍ଛନ୍ନ କରି ରହିଲେ ଧ୍ରୁବର କର୍ଣ୍ଣମୂଳେ ॥
ଧ୍ରୁବ ତପ ଦେଖି ଯେ ପବନ ବିଚାରଇ ।
ମୋର ଲୋକ ତପବଳେ ସଂହରିବ ଏହି ॥
ଏହାର ତପସ୍ୟା ବଳେ ମୁହିଁ କ୍ଷମ ନୁହେଁ ।
ଏଣୁ ଏ ଧ୍ରୁବର ଅଙ୍ଗେ ଶୀତଳଭାବେ ବହେ ॥
ଅପସରାଗଣେ ରହି ପାରିବୁ ସମାଧି ।
ଏହିପରି ଭାବନା ସେ କରନ୍ତି ଆରାଧି ॥
କାମକ୍ରୋଧ ଅଛନ୍ତି ଯେ ଆମ୍ଭର ସଙ୍ଗତେ ।
କେହି ନ ପାରିବେ ପଶି ଏ ବାଳକ ଚିତ୍ତେ ॥
ଏମନ୍ତେ ସମସ୍ତ ଦେବେ ଇନ୍ଦ୍ରମୁଖ ରହି ।
କହନ୍ତି ସମ୍ଭ୍ରମ ଚିତ୍ତେ ଶିରେ କର ଦେଇ ॥
କି ବୁଦ୍ଧି କରିବା ଏବେ ଶୁଣ ଦେବରାୟ ।
ଧ୍ରୁବର ତପସ୍ୟା ଭଗ୍ନେ କି ଅଛି ଉପାୟ ॥
ମୁହୂର୍ତ୍ତେ ରହିଲେ ଇନ୍ଦ୍ର ଦେବବାକ୍ୟ ଶୁଣି ।
ତପଭଗ୍ନ ନିମନ୍ତେ ଉପାୟ ମନେ ଗୁଣି ।
ବୋଇଲେ ସ୍ୱଭାବେ ଏ ବାଳକ ଦେହ ଧରେ
ଭୟଙ୍କର ଭୂତଗଣ ଦେଖି ଅବା ଡରେ ॥
ଭୟଙ୍କର ରୂପ ଦେଖି ବାଳକେ ଡରନ୍ତି ।
ଅନ୍ୟ କିଛି ପ୍ରକାରେ ଏହାର ନାହିଁ ଭୀତ ॥
ଅସୁରୀ ମାୟାରେ ଯଦି ଭଗ୍ନ କରିପାର ।
ନିଶ୍ଚୟେ ଭୁଞ୍ଜିବ ତୁମ୍ଭେ ଯେତେ ଅଧିକାର ॥

ଅନ୍ୟଥା ଉପାୟ ନାହିଁ ସେ ତପର ଭଙ୍ଗେ ।
ଧ୍ରୁବର ତପସ୍ୟା ଯେବେ ଭଗ୍ନ ପ୍ରତ୍ୟୁହନେ ॥
ଇନ୍ଦ୍ରର ସଙ୍ଗତେ ଦେବେ ଏମନ୍ତ ବିଗ୍ରହ ।
ଭୂତଗଣେ ଧାଇଁଲେ ଭୀଷଣ ରୂପ ଧରି ॥
ଉଲ୍ଲୂକ ଆକାର ଉଷ୍ଟ୍ର ଖଗରୂପ ଧରି ।
ଲମ୍ବଗ୍ରୀବ ଶିରୋଧର ବଦନ ବିସ୍ତାରି ॥
ଭୁଜଦଣ୍ଡ ଘାତେ ତରୁଭଗ୍ନ ଯେ କରନ୍ତି ।
ଅତିବେଗବନ୍ତେ ଧ୍ରୁବ ନିକଟେ ମିଳନ୍ତି ॥
ବୃଷଭ ଆକାରେ ତୀକ୍ଷ୍ଣଶୃଙ୍ଗେ ଭୂବିଦାରି ।
ମନୋଜବେ ଧାବନ୍ତି ଉନ୍ମତ୍ତ ରୂପ ଧରି ॥
ସର୍ପରୂପ ଧରି ଫଣା ଉଦ୍ଧରନ୍ତି ବନେ ।
ଲେଳି କରନ୍ତି ଲେଳି ଜିହ୍ୱା ବିଜୁଳି ଚଳିଁନେ ॥
ଉଦ୍‌ଗାରନ୍ତି ବିଷକଣା ଜଳବୃଷ୍ଟି ପ୍ରାୟେ ।
ଏରୂପେ ଧ୍ରୁବ ସମୀପେ ମିଳିଲେ ଥୋକାଏ ॥
ମହିଷ ଆକାରେ ଗିରିଶୃଙ୍ଗ ଅଗ୍ରେ ଧରି ।
ଉପାଡ଼ନ୍ତି କୋପଭରେ ଲାଙ୍ଗୁଳ ଉଦ୍ଧରି ॥
ଭୂତଗଣେ ଧାମନ୍ତି ବିସ୍ତାରି ମହାକାୟ ।
ବେଳପାଦ ହୋଇ ଖର୍ଜୁର ବୃକ୍ଷ ପ୍ରାୟ ॥
ମୁଖ ବିସ୍ତାରନ୍ତି କିବା ଭକ୍ଷିବେ ଗଗନ ।
ନାସା ଅଗ୍ରେ ବହଇ ଅଗ୍ନିଶ୍ୱାସ ପବନ ॥
ଉଲ୍ଲୂକ ଆକାରେ ପୁଣି ଫୁତ୍କାରନାଦ କରି ।
ହୃଦୟ କମ୍ପନେ ଧ୍ରୁବ ନିକଟରେ ମିଳି ॥
ଯକ୍ଷିଣୀ ମିଳିଲା ଯେ ହୁଁକାର ନାଦ କରି ।
ରୋଦନ କରଇ ଶିଶୁ ବେଳପାଦ ଧରି ॥
ଧ୍ରୁବର ନିକଟେ ଅତିକୋପେ ସେ ମିଳିଲା ।
ମୃଣାଳ ପ୍ରାୟେକ ଶିଶୁ ମୁଣ୍ଡ ଗ୍ରେବାଇଲା ॥
ଅଧର ବିସ୍ତାରି ସେ ରୁଧିର ପାନ କରି ।
ଧ୍ରୁବର ବଦନ ଚାହିଁ ବୋଲେ ମାୟାଧାରୀ ॥
ସୁଲଳିତ ପ୍ରାଣ ତୋର ଶୁଣ ରେ କୁମର ।
ସନ୍ତୋଷେ ରୁଧିର ପାନ କରିବି ତୋହର ॥
ମୃଣାଳ ପ୍ରାୟେକ ଅସ୍ଥି କରିବି ଆହାର ।
ଦଣ୍ଡେ ଯେବେ ରହ ପାଶ୍ଚୁ ମୋହର ଆଗର ॥

ଏମନ୍ତେ କହନ୍ତେ ପୁଣି ଗୁହ୍ୟକ ମିଳିଲେ ।
ଧ୍ରୁବ ଚାରିପାଖେ ଶୁଷ୍କକାଷ୍ଠ ରୁଣ୍ଡ କଲେ ॥
ଦାବାଗ୍ନି ସେ ଲଗାଇ ବଢ଼ିଁନ୍ତେ କରପତ୍ର ।
ବୃଷ୍ଟି ପ୍ରାୟ ଅଗ୍ନିକଣା ପଡ଼େ ଧ୍ରୁବଗାତ୍ର ॥
ମଣ୍ଡପ ଅପୂର୍ଣ୍ଣାକାରେ ବୃକ୍ଷ ଉପାଡ଼ନ୍ତି ।
ଧ୍ରୁବର ସମୀପେ ରହି ଶବଦେ ଗର୍ଜନ୍ତି ॥
ଗଗନେ ଯପନ୍ତି ତରୁଲତା କୋଟି କୋଟି ।
ଅନ୍ୟାନ୍ୟ ବୃକ୍ଷ ଘେନିଣ ଧାମନ୍ତି ତରସ୍ତି ॥
ଶତ ଶତ ଶୃଗାଳ ଶବଦ ଶୁଭେ ଶୂନ୍ୟେ ।
ଧ୍ରୁବପାଶେ ମିଳନ୍ତି ଯେ କୁତ୍ସିତ ବଦନେ ॥
ପୁଣି ଏକ ରାକ୍ଷସୀ ସୁନୀତି ରୂପ ଧରି ।
ଧ୍ରୁବର ସମୀପେ ବସେ ମାତୃ ମାୟା କରି ॥
ହା ହାପୁତ୍ର ବୋଲି ଲେଳି କରି ହୃଦେ ତାଡ଼ି
କେଶବାସ ଅସମ୍ଭାଳ ପୁଣ ପୁଣ ପଡ଼ି ॥
ବହୁମାୟା ବିନିର୍ମିତ ଗୂଢ଼ବାକ୍ୟ କହେ ।
ଜନନୀ ବାଳକ ମଧ୍ୟେ କେହୁ ବା ତା ସହେ ॥
ଅତ୍ୟନ୍ତ କାରୁଣ୍ୟେ ପୁତ୍ର ସ୍ନେହେ ସେ ରୋଦନ
ପୁଣି ସ୍ଥିର କରି ଚାହେଁ ଧ୍ରୁବର ବଦନ ॥
ତୁହି ଏକପୁତ୍ର ମୋର ସଙ୍ଗେ କେହି ନାହିଁ ।
କେବଳ ତୋହର ଧ୍ୟାନେ ପ୍ରାଣ ମୁଁ ରଖଇ ॥
ତୁହି ମୋ ରକ୍ଷକ ତୋର ତହୁଁ ଆନ ନାହିଁ ।
ତୋର ବନଗମନେ ଅଜ୍ଞାନ ମୋର ଦେହୀ ॥
ତୋର ବିନୁ ମରଣ ନିକଟେ ମୋର ମିଳେ ।
କାଳସର୍ପ ପ୍ରାୟେ ନିତ୍ୟେ ନିତ୍ୟେ ଡାକେ ॥
ତୋହର ଉଦ୍ଦେଶ୍ୟେ ମୁଁ ଅନେକ ଗ୍ରାମପୁରେ
ଖୋଜି ନ ପାଇଲି ବନ ଅନେକ ପ୍ରକାରେ ॥
ବନଗିରି ପାଟଣା ଅନେକ ପୁରେ ଖୋଜି ।
ପ୍ରାଣ ରକ୍ଷା କରଇ ଉଦକ ପତ୍ର ଭୁଞ୍ଜି ॥
ଯେଉଁ ଦିନୁ ମୋର ପୁତ୍ର ହୋଇଲୁ ବାହାର ।
ନିତ୍ୟେ ଶବଦ ଉଚ୍ଛୁଳେ କଣ୍ଠେ ହାହାକାର ॥
ଯେତେଦିନ ତୋହର ବିହୀନେ ଥିଲି ମୁହିଁ ।
ସପତ୍ନୀର ବାଣୀ ମୁହିଁ ସହି ନ ପାରଇ ॥

ଦାବାଗ୍ନି ବନକୁ ଯେସନ୍ତେ ଦହଇ ଗ୍ରୀଷ୍ମକାଳେ
ସପତ୍ନୀ ବଚନାନଳ ଦହଇ ଅତ ବଳେ ॥
ନିଦ୍ରା ଭୋକ ଶୋଷ ମୁହିଁ ନ ଜାଣଇ କିଛି ।
ଶୟନ ଭୋଜନ ମାନ ନ କରଇ କିଛି ॥
ତପର ଯୋଗିନୀ ଯୋଗୀ ପ୍ରାୟେ କର ଧ୍ୟାନ ।
ସ୍ୱପ୍ନରେହିଁ ନ ଦେଖଇ ତୋହର ବଦନ ॥
ତୋହର ବଦନ ମୁହିଁ ପ୍ରତ୍ୟକ୍ଷେ ଦେଖି ।
ତୋର ମୁଖ ଧ୍ୟାନେ ମୋର ଶ୍ରବେ ବେନି ଆଖି ॥
ଅନେକ ପ୍ରକାରେ ମାତୃ ବଚନହିଁ ଶୁଣି ।
ସମାଧି ସଂଯୋଗେ ଧ୍ରୁବ ମନେ ମନେ ଗୁଣି ॥
ବିସ୍ମରଇ ଜନନୀ ଏ ନୁହଇ ମୋହର ।
ସର୍ବଥା ଜାଣଇ ଏ ଆସୁରୀ ମାୟାଘୋର ॥
ଏମନ୍ତ ବିସ୍ମରି ମନେ ନିଶ୍ଚଳେ ରହିଲ ।
ରଖ ହେ ଗୋବିନ୍ଦ ବୋଲି ଶରଣ ପଶିଲ ॥
ଏମନ୍ତେ ଆସୁରୀ ମାୟା ଇନ୍ଦ୍ରର ବଚନେ ।
ଯେତେ ମାୟା ପ୍ରକାଶିଲେ ଧ୍ରୁବ ସନ୍ନିଧାନେ ॥
ଧ୍ରୁବ ତପୋଭଙ୍ଗେ କେହି ସମର୍ଥ ନୋହିଲେ ।
ବିଷ୍ଣୁଚକ୍ର ତେଜ ଧ୍ରୁବ ନିକଟେ ଦେଖିଲେ ॥
ସକଳଙ୍କ ଝଳଝଳ ତେଜ ଦେଖି ଧ୍ରୁବ ଦେହେ ।
ଛନ୍ତି ଅନ୍ଧକାର ଯେସନ୍ତେ ତପନ ଉଦୟେ ॥
ସର୍ବ ଭୂତାବଳି ଧ୍ରୁବ ଚରଣେ ନମିଲେ ।
ବ୍ୟର୍ଥ ମନୋରଥେ ନିଜ ମନ୍ଦିରେ ଚଳିଲେ ॥
ଇନ୍ଦ୍ର ଆଦି ଦିଗପାଳଙ୍କ ଭୂତବଳ ଭଗ୍ନେ ।
ପୁଣି ବିସ୍ମରନ୍ତ ବସି ବିଘ୍ନ ଅନୁମାନେ ॥
ବିସ୍ମରି ନ ପାରି ଦୁଃଖମନେ ଦେବଗଣେ ।
ଶରଣ ପଶିଲେ ଯାଇ ବ୍ରହ୍ମାର ଚରଣେ ॥
ପିତାମହ ଚରଣେ ନମିଲେ ଦେବଗଣ ।
ଦେଖି ବ୍ରହ୍ମା ପଚାରିଲେ ଆଗମ କାରଣ ॥
ଧାତାର ବଚନ ଶୁଣି ଶିରେ କରଯୋଡ଼ି ।
ଦେବଗଣେ କହନ୍ତି ଚରଣ ତଳେ ପଡ଼ି ॥
ଉତ୍ତାନପାଦର ପୁତ୍ର ଧ୍ରୁବ ତପ ତେଜେ ।
ଧରଣୀ କମ୍ପିଲା ଗିରି ସମୁଦ୍ର ସମାଜେ ॥
ଆମ୍ଭେ ରହି ନ ପାରିଲୁ ଗଗନ ମଣ୍ଡଳେ ।
ତାର ତପେ କମ୍ପିଲୁ ସକଳ ଦିଗପାଳେ ॥
ତ୍ରୈଲୋକ୍ୟେ ସକଳେ କେହି ନ ପାରିଲୁ ରହି
ନ ଜାଣୁ କାହାର ପଦ ମନେ ସେ ବାଞ୍ଛଇ ॥
ଏମନ୍ତ ବଚନ ସେ ଦେବଙ୍କ ମୁଖୁ ଶୁଣି ।
ଊର୍ଦ୍ଧ୍ୱମୁଖେ କ୍ଷଣକେ ରହିଲେ କୁଶପାଣି ॥
ଧ୍ରୁବ ତପ ଦେଖି କମ୍ପା ଭୟ ଦେବଗଣ ।
ହରଷେ କହନ୍ତି ଧ୍ରୁବ ତପର କାରଣ ॥

ଶ୍ରୀବ୍ରହ୍ମୋବାଚ ।

କହନ୍ତି ଚତୁରାନନ ଶୁଣ ଦେବଗଣେ ।
ଯେ ନିମନ୍ତେ ଧ୍ରୁବ ତପ କରେ ଘୋର ବନେ ॥
ଘୋର ତପଫଳେ ତାକୁ ବିଷ୍ଣୁ ବର ଦେବେ ।
ତ୍ରୈଲୋକ୍ୟ ଉପରେ ଧ୍ରୁବପୁରେ ବସାଇବେ ॥
ତୁମ୍ଭ ଅଧିକାରେ ପ୍ରୟୋଜନ ନାହିଁ ତାର ।
ନିଶ୍ଚିନ୍ତେ ଗମନ କର ଦେବେ ନିଜପୁର ॥
ବିଷ୍ଣୁଭକ୍ତ ପ୍ରାଣୀ ବିଷ୍ଣୁ ପ୍ରାୟ ଦେଖେ ସର୍ବ ।
କେବେହେଁ ତପରବଳେ ନ କରେ ସେ ଗର୍ବ ॥
କେବେହେଁ ପରକୁ ପୀଡ଼ା ନ କରନ୍ତି ଭଟେ
ନିରନ୍ତରେ ରହେ ସର୍ବ ଜନଙ୍କର ହିତେ ॥
ବିଷ୍ଣୁର ଆଦେଶେ ଧ୍ରୁବ ଆସନେ ବସିବ ।
ତୁମ୍ଭ ଦିଗପାଳ ପଦ ନିଶ୍ଚଳେ ସ୍ଥାପିବ ॥
ଏମନ୍ତ ବ୍ରହ୍ମାର ବାକ୍ୟ ଶୁଣି ସାବଧାନେ ।
ନିଜପୁରେ ଦେବତାଏ ଗଲେ ତୋଷମନେ ॥
ଶୁକ କହେ ଶୁଣ ପରୀକ୍ଷିତ ନୃପମଣି ।
ଧ୍ରୁବତପେ ତାରେ ଦୟା କଲେ ଚକ୍ରପାଣି ॥
ଗରୁଡ଼ ଆସନେ ବସି ଚତୁର୍ଭୁଜ ରୂପେ ।
କାଳିନ୍ଦୀ ତଟେ ମିଳିଲେ ଧ୍ରୁବର ସମୀପେ ॥
ଅମୃତ ବରଷେ କିବା ମଧୁବନ ବନେ ।
ଧ୍ରୁବକୁ ଅନାଇ ହରି ପ୍ରସନ୍ନ ବଦନେ ॥
ତପ ତେଜ ଶାନ୍ତ କରି ଅମୃତ ବଚନେ ।
ତପ ଶାନ୍ତ କଲା ଧ୍ରୁବ ବିଷ୍ଣୁ ଦରଶନେ ॥

ଶ୍ରୀଭଗବାନୁବାଚ

ବରମାଗ ପ୍ରସନ୍ନ ହୋଇଲି ମୁହିଁ ତୋତେ ।
ଋଷିଗଣେ ଶ୍ରେଷ୍ଠ ତୁ ହୋଇଲୁ ସର୍ବମତେ ॥
ବାଳକ ବୟସ ତୋର ଅତି ସୁକୁମାର ।
କାହିଁ ଘୋର ତପବନେ ସାଧନେ କଠୋର
ଏମନ୍ତ ବଚନ ବିଷ୍ଣୁ ତହୁଁ ଶୁଣି ଧ୍ରୁବ ।
କଠୋର ସମାଧି ଛାଡ଼ି କହେ ମୃଦୁସ୍ୱର ॥
ଅମୃତ ସମାନେ ବିଷ୍ଣୁ ବଚନ ଶୁଣିଲା ।
ଉନ୍ମୀଳନେତ୍ରେ ଊର୍ଦ୍ଧ୍ୱମୁଖେ ଅନାଇଲା ॥
ଇନ୍ଦ୍ରନୀଳମଣି ପ୍ରାୟ ଗଗନେ ପ୍ରକାଶେ।
ନୀଳୋତ୍ପଳ ସମୂହକ ଦିଶେ ଦଶଦିଶେ ॥

ଗଗନ ମଣ୍ଡଳ ସରୋବର ପ୍ରାୟ ହୋଇ ।
ଲକ୍ଷ୍ମୀଦେବୀ କଟାକ୍ଷେ କି ଜଗତ ମୋହଇ ॥
ପୁତ୍ର ଦୁଃଖ ଦେଖି ଯେହ୍ନେ ପିତା ଦୟା କରେ
ଧ୍ରୁବକୁ ଧଇଲେ କୋଳେ ତୋଳି ବେନିକରେ
ଧୂଳିରେ ଧୂସର ତନୁ ଝାଡ଼ି ସ୍ନେହଭରେ ।
ବାମଭୁଜେ ଆଲିଙ୍ଗନ ପୁଲକ ଶରୀରେ ॥
କୃଷ୍ଣ କରଲାଗି ଧ୍ରୁବ ତପ ଦୁଃଖ ଗଲା ।
କୋଟିଏ ବ୍ରହ୍ମାର ବୁଦ୍ଧି ହୃଦେ ପ୍ରକାଶିଲା ॥
ସେ ହରି ଚରଣ ଯୁଗ ହୃଦେ କରି ଧ୍ୟାନ ।
ବିପ୍ର ଜଗନ୍ନାଥ କହେ ଶୁଣ ହେ ସୁଜନ ॥



ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ଚତୁର୍ଥସ୍କନ୍ଧେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ

ଧ୍ରୁବବିଷ୍ଣୁପ୍ରସଙ୍ଗୋ ନାମ ନବମୋଽଧ୍ୟାୟଃ ।



## ଦ ଶ ମ ଅ ଧ୍ୟା ୟ ।

ଦଶମେ ଭ୍ରାତୃହନ୍ତୄଣାଂ ଯକ୍ଷାଣାମକରୋଦ୍‌ବଧମ୍ ।
ଏକ ଏବାଲକାଂ ଗତ୍ୱୈତ୍ୟସ୍ୟ ବିକ୍ରମ ଉଚ୍ୟତେ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀମୈତ୍ରେୟ ଉବାଚ ।

ପ୍ରଜାପତେର୍ଦୁହିତରଂ ଶିଶୁମାରସ୍ୟ ବୈ ଧ୍ରୁବଃ ।
ଉପଯେମେ ଭ୍ରମିଂ ନାମ ତତ୍‌ସୁତୌ କଳ୍ପବତ୍‌ସରୌ । ୧ ।
ଇଳାୟାମପି ଭାର୍ଯ୍ୟାୟାଂ ବାୟୋଃ ପୁତ୍ର୍ୟାଂ ମହାବଳଃ ।
ପୁତ୍ରମୁତ୍କଳନାମାନଂ ଯୋଷିଦ୍ରତ୍ନମଜୀଜନତ୍ । ୨ ।

---

## ଧ୍ରୁବ ଓ ଯକ୍ଷମାନଙ୍କର ଯୁଦ୍ଧ ।

ଦଶମ ଅଧ୍ୟାୟରେ ଯକ୍ଷଙ୍କ କର୍ତ୍ତୃକ ଧ୍ରୁବଙ୍କର କନିଷ୍ଠଭାଇ ଉତ୍ତମ ନିହତ ହୁଅନ୍ତେ କ୍ରୋଧରେ ଧ୍ରୁବ ଅଳକାପୁରକୁ ଯାଇ ସେହି ଯକ୍ଷଙ୍କୁ ଯୁଦ୍ଧରେ ନିହତ କରିବା ବିଷୟ ବର୍ଣ୍ଣିତ ହୋଇଅଛି ।୦।

ଶ୍ରୀମୈତ୍ରେୟ କହିଲେ :—

ଧ୍ରୁବ ପ୍ରଜାପତି ଶିଶୁମାରଙ୍କ କନ୍ୟା ଭ୍ରମିଙ୍କୁ ବିବାହ କରିଥିଲେ, ଭ୍ରମିଙ୍କର କଳ୍ପ ଓ ବତ୍ସର ନାମକ ଦୁଇଟି ପୁତ୍ର ଜାତ ହୋଇଥିଲେ । ୧ ।

ମହାବଳଶାଳୀ ଧ୍ରୁବଙ୍କର ଅନ୍ୟଭାର୍ଯ୍ୟା ବାୟୁପୁତ୍ରୀ ଇଳା ଗର୍ଭରେ ଉତ୍କଳ ନାମକ ପୁତ୍ର ଓ ନାରୀକୁଳର ରତ୍ନ ସ୍ୱରୂପା ଗୋଟିଏ କନ୍ୟା ଜାତ ହୋଇଥିଲେ । ୨ ।

---

ଯକ୍ଷ ମାରନ୍ତେ ନିଜଭାଇ, ଧ୍ରୁବ ଅଳକାପୁରେ ଯାଇ । ରଣେ ତାହାଙ୍କୁ କଲ ହତ, ଦଶମ ଅଧ୍ୟାର ଚରିତ ।

ଶ୍ରୀମୈତ୍ରେୟଉବାଚ—

ଶୁଣ ବିଦୁର କୃଷ୍ଣକଥା
ଯେସନେ ଖଣ୍ଡିବ ଭବବ୍ୟଥା
ଯେ ଶିଶୁମାର ପ୍ରଜାପତି
ତା କନ୍ୟା ଭ୍ରମି ଗୁଣବତୀ
ରୂପେ କମଳା ସମ ସରି
ବିଭାହେ କନ୍ୟା ଧ୍ରୁବେ ବରି
ଅଶେଷ ଅଳଙ୍କାର ଶୋଭି
ସେ କନ୍ୟା ଧ୍ରୁବେ କଲ ବିଭି
ସେ କନ୍ୟା ଗର୍ଭେ ପୁତ୍ର ଦୁଇ
କଳ୍ପ ବତ୍ସର ବେନି ଭାଇ । ୧ ।
ଦ୍ୱିତୀୟ ଭାର୍ଯ୍ୟା ଇଳା ନାମ
ରୂପେ ଗଞ୍ଜାଇ ସୂର୍ଯ୍ୟ ସୋମ
ସ୍ୱଭାବେ ସମୀରଣସୁତା
ସେ କନ୍ୟା ଅଟଇ ପତିବ୍ରତା
ତାର ଉଦରେ ଧ୍ରୁବ ବୀର୍ଯ୍ୟେ
ପୁତ୍ରେ ଉପୁଜେ ମହାତେଜେ
ଉତ୍କଳ ନାମ ସେ କୁମର
କନ୍ୟାଏ ଅତି ମନୋହର । ୨ ।

ଉତ୍ତମସ୍ତ୍ୱକୃତୋଦ୍‌ବାହୋ ମୃଗୟାୟାଂ ବଲୀୟସା ।
ହତଃ ପୁଣ୍ୟଜନେନାଦ୍ରୌ ତନ୍‌ମାତାସ୍ୟ ଗତିଂ ଗତା । ୩ ।
ଧ୍ରୁବୋ ଭ୍ରାତୃବଧଂ ଶ୍ରୁତ୍ୱା କୋପାମର୍ଷଶୁଚାର୍ପିତଃ ।
ଜୈତ୍ରଂ ସ୍ୟନ୍ଦନମାସ୍ଥାୟ ଗତଃ ପୁଣ୍ୟଜନାଲୟମ୍ । ୪ ।
ଗତ୍ୱୋଦୀଚୀଂ ଦିଶଂ ରାଜା ରୁଦ୍ରାନୁଚରସେବିତାମ୍ ।
ଦଦର୍ଶ ହିମବଦ୍ଦ୍ରୋଣ୍ୟାଂ ପୁରୀଂ ଗୁହ୍ୟକସଙ୍କୁଳାମ୍ । ୫ ।
ଦଧ୍ମୌ ଶଙ୍ଖଂ ବୃହଦ୍‌ବାହୁଃ ଖଂ ଦିଶଶ୍ଚାନୁନାଦୟନ୍ ।
ଯେନୋଦ୍‌ବିଗ୍ନଦୃଶଃ କ୍ଷତ୍ତରୁପଦେବ୍ୟୋଽତ୍ରସନ୍ ଭୃଶମ୍ । ୬ ।

---

ଉତ୍ତମ ଦାର ପରିଗ୍ରହ କରି ନ ଥିଲେ, ସେ ମୃଗୟା କରିବାକୁ ହିମାଚଳ ପର୍ବତକୁ ଗମନ କରିଥିଲେ, ସେଠାରେ ସେ ଗୋଟିଏ ବଳବାନ୍ ଯକ୍ଷ କର୍ତ୍ତୃକ ନିହତ ହୋଇଥିଲେ । ତାହାଙ୍କର ମାତା ମଧ୍ୟ ତାହାଙ୍କ ଅନୁସନ୍ଧାନରେ ଗମନକରି ତାହାଙ୍କ ଦଶା ପ୍ରାପ୍ତ ହୋଇଥିଲେ । ୩ ।

ଭ୍ରାତାର ମୃତ୍ୟୁ ସମ୍ବାଦ ଶ୍ରବଣକରି ଧ୍ରୁବ କ୍ରୋଧ ଓ ଶୋକରେ ଅଧୀର ହୋଇ ଜୟଶୀଳରଥରେ ଆରୋହଣ କରି ଯକ୍ଷମାନଙ୍କର ଆବାସଭୂମି ଅଳକାପୁରୀକୁ ଯାତ୍ରା କରିଥିଲେ । ୪ ।

ରାଜା ଧ୍ରୁବ ଉତ୍ତର ଦିଗକୁ ଗମନ କରି ରୁଦ୍ରାନୁଚରଗଣ ସେବିତ ହିମାଳୟ ପର୍ବତର ସାନୁଦେଶରେ ଗୁହ୍ୟକଗଣଙ୍କ ଦ୍ୱାରା ପରିବ୍ୟାପ୍ତ ଅଳକାପୁରୀ ଦେଖିଲେ । ୫ ।

ହେ ବିଦୁର ! ପ୍ରବଳ ପରାକ୍ରମଶାଳୀ ଧ୍ରୁବ ଏହି ପୁର ନିକଟରେ ସମସ୍ତ ଦିଙ୍‌ମଣ୍ଡଳ ପ୍ରତିଧ୍ୱନିତ କରି ଶଙ୍ଖଧ୍ୱନି କରିବାକୁ ଲାଗିଲେ । ଯକ୍ଷ ରମଣୀମାନେ ଏଥିରେ ଅତ୍ୟନ୍ତ ଭୀତ ହୋଇଥିଲେ । ୬ ।

---

ଧ୍ରୁବର କନିଷ୍ଠ ଉତ୍ତମ
ରୂପେ ଭୁବନେ ନାହିଁ ସମ
ସ୍ୱଭାବେ ବୟସ କିଶୋର
ବିବାହ ନୋହିଥିଲା ତାର
ସେ ଏକ ଦିନେ ଅଶ୍ୱେ ବସି
ମୃଗୟାଅର୍ଥେ ବନେ ପଶି
ମିଳିଲା କୁବେରଭୁବନେ
ତାହାକୁ ଦେଖି ଗୁହ୍ୟଗଣେ
ବଳେ ଭିଡିଲେ ଯୁଦ୍ଧ କରି
ଅସ୍ତ୍ର ଘେନିଲେ ତାକୁ ମାରି

ତା ଶୁଣି ତାହାର ଜନନୀ
ବିକଳେ ପୁତ୍ର କଷ୍ଟ ଘେନି
ବନେ ଅନଳେ ଦେହ ଦେଲା
ପୁତ୍ରବିଯୋଗ-ଦୁଃଖେ ମଲା ।୩।
ସେ କଥା ଶୁଣି ଧ୍ରୁବ ଶୋକେ
କମ୍ପିଲା ମାତା ଭ୍ରାତା ଦୁଃଖେ
ଜଇତ୍ର ନାମ ରଥେ ବସି
ସ୍ୱଭାବେ ଶୋହେ ରୂପ ରାଶି
ଶୋକ ଅନଳ କୋପଭରେ
କଠୋର ଧନୁ ଧରି କରେ

କୁବେରକାନନେ ମିଳିଲା
ଉଦ୍‌ଦଣ୍ଡେ ଶଙ୍ଖନାଦ କଲା
ଯେ ବନେ ରୁଦ୍ର ଅନୁଚରେ
ଗୁହ୍ୟକ ବସନ୍ତି ସକଳେ
ହିମପର୍ବତ ଦ୍ରୋଣୀ ମଧ୍ୟେ
ସ୍ୱଚ୍ଛନ୍ଦେ ବସନ୍ତି ଆନନ୍ଦେ
ସେ ବନେ ପଶି ବଳେ ଧ୍ରୁବ
ଉଦ୍‌ଦଣ୍ଡେ କଲା ଶଙ୍ଖ ରବ
ଶବଦ ପୂରିଲା ଆକାଶେ
ଭୂମି ପର୍ବତ ଦଶଦିଶେ ।୪-୬।

ତତୋ ନିଷ୍କ୍ରମ୍ୟ ବଲିନ ଉପଦେବମହାଭଟାଃ ।
ଅସହନ୍ତସ୍ତନ୍ନିନାଦମଭିପେତୁରୁଦାୟୁଧାଃ । ୭ ।
ସ ତାନାପତତୋ ବୀରଉଗ୍ରଧନ୍ୱା ମହାରଥଃ ।
ଏକୈକଂ ଯୁଗପତ୍ ସର୍ବାନହନ୍ ବାଣୈସ୍ତ୍ରିଭିସ୍ତ୍ରିଭିଃ । ୮ ।
ତେ ବୈ ଲଲାଟଲଗ୍ନୈସ୍ତୈରିଷୁଭିଃ ସର୍ବ ଏବ ହି ।
ମତ୍ୱା ନିରସ୍ତମାତ୍ମାନମାଶଂସନ୍ କର୍ମ୍ମ ତସ୍ୟ ତତ୍ । ୯ ।
ତେଽପି ଚାମୁମମୃଷ୍ୟନ୍ତଃ ପାଦସ୍ପର୍ଶମିବୋରଗାଃ ।
ଶରୈରବିଧ୍ୟନ୍ ଯୁଗପଦ୍ ଦ୍ୱିଗୁଣଂ ପ୍ରଚିକୀର୍ଷବଃ । ୧୦ ।
ତତଃ ପରିଘନିସ୍ତ୍ରିଂଶୈଃ ପ୍ରାସଶୂଳପରଶ୍ୱଧୈଃ ।
ଶକ୍ତ୍ୟୃଷ୍ଟିଭିର୍ଭୁଶୁଣ୍ଡୀଭିଶ୍ଚିତ୍ରବାଜୈଃ ଶରୈରପି । ୧୧ ।

---

ପ୍ରବଳପରାକ୍ରମୀ କୁବେରସୈନ୍ୟଗଣ ସେହି ଶଙ୍ଖଧ୍ୱନି ସହ୍ୟ କରି ନ ପାରି ଅସ୍ତ୍ର ଶସ୍ତ୍ର ଉତ୍ତୋଳନ କରି ପୁରୀରୁ ବହିର୍ଗତ ହୋଇ ଧ୍ରୁବଙ୍କ ଆଡ଼କୁ ଧାବମାନ ହୋଇଥିଲେ । ୭ ।

ମହାଧନୁର୍ଦ୍ଧାରୀ ମହାରଥ ଧ୍ରୁବ ସେମାନଙ୍କର ଆଗମନ ଦେଖି ପ୍ରତ୍ୟେକ ଉପରକୁ ତିନିଗୋଟି କରି ବାଣ ନିକ୍ଷେପ କରି ସେମାନଙ୍କୁ ଶରାହତ କରିଥିଲେ । ୮ ।

ନିଜ ନିଜର ଲଲାଟଦେଶରେ ବାଣବିଦ୍ଧ ହେତୁ ନିଜକୁ ପରାଜିତ ଭାବି ଧ୍ରୁବଙ୍କ ଶକ୍ତିର ପ୍ରଶଂସା କରିବାକୁ ଲାଗିଲେ । ୯ ।

ସର୍ପମାନେ ଯେପରି କାହାରି ପଦସ୍ପର୍ଶ ସହ୍ୟକରି ନ ପାରନ୍ତି ସେହିପରି ସେହି ଯକ୍ଷବୀରମାନେ ଧ୍ରୁବର ପ୍ରହାର ସହ୍ୟ କରି ପାରିଲେ ନାହିଁ । ସେମାନେ ଦ୍ୱିଗୁଣ ପ୍ରତିବିଧାନ ଇଚ୍ଛାରେ ଧ୍ରୁବକୁ ଛଅଟି ବାଣଦ୍ୱାରା ବିଦ୍ଧ କଲେ । ୧୦ ।

ଅନନ୍ତର ତ୍ରୟୋଦଶ ଅୟୁତ ଯକ୍ଷବୀର ଅତ୍ୟନ୍ତ କୁପିତ ହୋଇ ଧ୍ରୁବଙ୍କର ଅଦ୍ଭୁତକର୍ମର ପ୍ରତିବିଧାନ

---

ସେ ନାଦ ଶୁଣି ଦଶଦିଗେ
ଗୁହ୍ୟକଗଣ ମହାବେଗେ
ଧାଇଁଲେ ନାନା ଶସ୍ତ୍ର ଧରି
ଚଳନ୍ତେ କମ୍ପେ ବସୁନ୍ଧରୀ । ୭ ।
ଗୁହ୍ୟକଗଣେ ଧ୍ରୁବ ଚାହିଁ
ନିଜ କୋଦଣ୍ଡେ ଗୁଣ ଦେଇ
ଆକର୍ଣ୍ଣ ଯାଏ ଟାଣି ଗୁଣ
ବିନ୍ଧିଲା ତିନି ତିନି ବାଣ
ଧ୍ରୁବର ତୀକ୍ଷ୍ଣ ବାଣବଳେ
ପଡ଼ିଲେ ଗୁହ୍ୟକ ସକଳେ

ଗୁହ୍ୟକଗଣ ଦେଖି ତ୍ରାସେ
ରଣେ ତ୍ୟଜିଲେ ଦଶଦିଶେ
ଅଦ୍ଭୁତ କର୍ମ୍ମ ଦେଖି ତାର
ବିସ୍ମୟ ତେଜେ ବଳାତ୍କାର
କରନ୍ତି ଧନ୍ୟ ଧନ୍ୟ ବାଣୀ
ଆନନ୍ଦେ ଦେବଲୋକେ ଶୁଣି । ୮,୯ ।
ସେ ବାଣ ସହି ଗୁହ୍ୟଗଣେ
ପୁଣି ମିଳିଲେ ଘୋରରଣେ
ପାଦ ମାରନ୍ତେ ଅହି ଯେସନ୍ତେ
ଧ୍ରୁବକୁ ଦେଖି କୋପମନେ

ଧ୍ରୁବର ରଥ ବେଗେ ରୁନ୍ଧି
ଦ୍ୱିଗୁଣେ ତୀକ୍ଷ୍ଣବାଣ ବିନ୍ଧି । ୧୦ ।
ପରିଘ ଖଡ୍ଗ ଆୟୁଧ
ପ୍ରାସ ତୋମର ଶର ଯୁଦ୍ଧ
ଶକ୍ତି ଋଷ୍ଟି ଭୁଶୁଣ୍ଡୀ ଜାଣ
ବେଗେ ରୁନ୍ଧିଲେ ଶତ୍ରୁ ଟାଣ
କୋପେ ରୁନ୍ଧିଲେ ଅତି ରୁଷ୍ଟେ
ରଥୀ ସାରଥି ଅଶ୍ୱପୃଷ୍ଠେ

ଅଭ୍ୟବର୍ଷନ୍ ପ୍ରକୁପିତାଃ ସରଥଂ ସହ ସାରଥିମ୍ ।
ଇଚ୍ଛନ୍ତସ୍ତତ୍ ପ୍ରତୀକର୍ତ୍ତୁମୟୁତାନାଂ ତ୍ରୟୋଦଶ । ୧୨ ।
ଔତ୍ତାନପାଦିଃ ସ ତଦା ଶସ୍ତ୍ରବର୍ଷେଣ ଭୂରିଣା ।
ନୋ ଏବାଦୃଶ୍ୟତାଚ୍ଛନ୍ନ ଆସାରେଣ ଯଥା ଗିରିଃ । ୧୩ ।
ହାହାକାରସ୍ତଦୈବାସୀତ୍ ସିଦ୍ଧାନାଂ ଦିବପଶ୍ୟତାମ୍ ।
ହତୋଽୟଂ ମାନବଃ ସୂର୍ଯ୍ୟୋ ମଗ୍ନଃ ପୁଣ୍ୟଜନାର୍ଣ୍ଣବେ । ୧୪ ।
ନଦତ୍ସୁ ଯାତୁଧାନେଷୁ ଜୟକାଶିଷ୍ୱଥୋ ମୃଧେ ।
ଉଦତିଷ୍ଠଦ୍ରଥସ୍ତସ୍ୟ ନୀହାରାଦିବ ଭାସ୍କରଃ । ୧୫ ।
ଧନୁର୍ବିସ୍ଫୂର୍ଜୟନ୍ନୁଗ୍ରଂ ଦ୍ୱିଷତାଂ ଖେଦମୁଦ୍ୱହନ୍ ।
ଅସ୍ତ୍ରୌଘଂ ବ୍ୟଧମଦ୍ବାଣୈର୍ଘନାନୀକମିବାନିଲଃ । ୧୬ ।.

---

କ୍ରମରେ ଧ୍ରୁବଙ୍କ ଉପରକୁ ପରିଘ, ନିସ୍ତ୍ରିଂଶ, ପ୍ରାସ, ଶୂଳ, ପରଶ୍ୱଧ, ଶକ୍ତି, ଋଷ୍ଟି, ଭୁଷଣ୍ଡୀ ଓ ବିଚିତ୍ର ପକ୍ଷ ବିଶିଷ୍ଟ ବିବିଧଶର ନିକ୍ଷେପ କରିଥିଲେ । ୧୧, ୧୨ ।

ବାରିଧାରା ବର୍ଷଣ ହେତୁ ପର୍ବତ ଯେପରି ଆଚ୍ଛାଦିତ ହୋଇ ଦୃଷ୍ଟିର ଅଗୋଚର ହୁଏ, ଉତ୍ତାନପାଦ ନନ୍ଦନ ଧ୍ରୁବ ଅସଂଖ୍ୟ ଶର ସମ୍ପାତ ହେତୁ ଆଚ୍ଛନ୍ନ ହୋଇ ପଡ଼ିଥିଲେ । ୧୩ ।

ସେତେବେଳେ ଯେଉଁ ସିଦ୍ଧଗଣ ସ୍ୱର୍ଗରୁ ଯୁଦ୍ଧ ଦେଖୁଥିଲେ, ସେମାନେ ସହସା ହାହାକାର କରି କହିଲେ "ଆହା ! ମନୁପୌତ୍ର ସୂର୍ଯ୍ୟସମ ତେଜସ୍ୱୀ ଧ୍ରୁବ ଯକ୍ଷ ସାଗରରେ ମଗ୍ନ ହେଲେ !" । ୧୪ ।

ତଦନନ୍ତର ରାକ୍ଷସମାନେ ଯୁଦ୍ଧରେ ବିଜୟୀ ହେଲେ ବୋଲି କୋଳାହଳ କରନ୍ତେ ତୁଷାରମଧ୍ୟରୁ ସମୁଦିତ ସୂର୍ଯ୍ୟ ତୁଲ୍ୟ ଧ୍ରୁବଙ୍କର ରଥ ରଣଭୂମିରେ ପ୍ରକାଶିତ ହେଲା । ୧୫ ।

ଧ୍ରୁବ ସ୍ୱୀୟ ଭୀଷଣ ଧନୁରେ ଟଙ୍କାର ଧ୍ୱନିକରି ଶତ୍ରୁମାନଙ୍କର ଦୁଃଖ ଜନ୍ମାଇଥିଲେ, ଯେପରି ବାୟୁ ମେଘମାଳାକୁ ଛିନ୍ନ ଭିନ୍ନ କରି ପକାଏ ସେହିପରି ସେ ଶତ୍ରୁମାନଙ୍କ ଅସ୍ତ୍ର ଶସ୍ତ୍ର ସମୂହକୁ ନିଜର ବାଣଦ୍ୱାରା ଖଣ୍ଡ ଖଣ୍ଡ କରି ପକାଇଲେ । ୧୬ ।

---

ଅଯୁତ ତ୍ରୟୋଦଶ ମିଳି
ଶବଦେ ବ୍ରହ୍ମାଣ୍ଡ ଉଛୁଳି
ବେଢ଼ିଲେ ଅତି ଅନାୟୁରି
ଛନ୍ନେ ନଦିଶେ ଧ୍ରୁବରଥ।୧୧-୧୩
ଗଗନେ ମିଳି ଦେବଲୋକେ
କହନ୍ତି ଏକକୁ ଆରକେ
ଶ୍ରବଇ ହାହାକାର ବାଣୀ
ଦେବେ ବୋଲନ୍ତି ତାହା ଶୁଣି
ଦେଖ ଏ ମନୁବଂଶ ସୁତ
ପ୍ରଚଣ୍ଡ ଯେସନେ ଆଦିତ୍ୟ

ଗୁହ୍ୟକ ସମୁଦ୍ରେ ବୁଡ଼ିଲା .
ଧ୍ରୁବ ନିଶ୍ଚୟ ନାଶ ଗଲା । ୧୪ ।
ଗର୍ଜିଲେ ଯାତୁଧାନଗଣେ
ଧ୍ରୁବ ତା ଶୁଣିଲା ଶ୍ରବଣେ
ସାରଥି ଗ୍ଧହି ପୁଣ୍ୟଦେହା
ବୋଲେ ଆକାଶେ ରଥ ବାହା
ଶୁଣି ସ.ରଥି ଅତି ବେଗେ
ରଥ ବାହିଲା ଶୂନ୍ୟମାର୍ଗେ
ନୀହାର ଭେଦି ସୂର୍ଯ୍ୟ ଯେହ୍ନେ
ତେମନ୍ତ ଦିଶଇ ଗଗନେ । ୧୫ ।

ଗଗନେ ରହି ମନୁସୁତ
ବାଣ ବରଷେ ଅପ୍ରମିତ
ଗୁହ୍ୟକ ବାଣବୃଷ୍ଟି ନାଶେ
ନୀହାର ଯେହ୍ନେ ଚଣ୍ଡ ତ୍ରାସେ
ପବନ ଯୋଗେ ମେଘମାଳେ
ଯେହ୍ନେ ଉଡ଼ନ୍ତି ଅନ୍ତରାଳେ ।୧୬।

ତସ୍ୟ ତେ ଚାପନିର୍ମୁକ୍ତା ଭିତ୍ତ୍ୱା ବର୍ମାଣି ରକ୍ଷସାମ୍ ।
କାୟାନାବିବିଶୁସ୍ତିଗ୍ମା ଗିରୀନଶନୟୋ ଯଥା । ୧୭ ।
ଭଲ୍ଲୈଃ ସଂଛିଦ୍ୟମାନାନାଂ ଶିରୋଭିଶ୍ଚାରୁକୁଣ୍ଡଳୈଃ ।
ଉରୁଭିର୍ହେମତାଲାଭୈର୍ଦୋର୍ଭିର୍ବଳୟବଲ୍‌ଗୁଭିଃ । ୧୮ ।
ହାରକେୟୁରମୁକୁଟୈରୁଷ୍ଣୀଷୈଶ୍ଚ ମହାଧନୈଃ ।
ଆସ୍ତୃତାସ୍ତା ରଣଭୁବୋ ରେଜୁର୍ବୀରମନୋହରାଃ । ୧୯ ।
ହତାବଶିଷ୍ଟା ଇତରେ ରଣାଜିରାଦ୍ରକ୍ଷୋଗଣାଃ କ୍ଷତ୍ରିୟବର୍ଯ୍ୟସାୟକୈଃ ।
ପ୍ରାୟୋ ବିବୃକ୍‌ଣାବୟବା ବିଦୁଦ୍ରୁବୁର୍ମୃଗେନ୍ଦ୍ରବିକ୍ରୀଡିତଯୂଥପା ଇବ । ୨୦ ।
ଅପଶ୍ୟମାନଃ ସ ତଦାତତାୟିନଂ ମହାମୃଧେ କଞ୍ଚନ ମାନବୋତ୍ତମଃ ।
ପୁରୀଂ ଦିଦୃକ୍ଷନ୍ନପି ନାବିଶଦ୍ଦ୍ୱିଷାଂ ନ ମାୟିନାଂ ବେଦ ଚିକୀର୍ଷିତଂ ଜନଃ ।୨୧।

---

ତାହାଙ୍କ ଧନୁରୁ ବାହାରି ସୁତୀକ୍ଷ୍ଣଶରମାନ, ବଜ୍ର ପର୍ବତ ବିଦୀର୍ଣ୍ଣ କଲପରି, ରାକ୍ଷସମାନଙ୍କର କବଚ ଭେଦକରି ସେମାନଙ୍କର ଶରୀରରେ ପ୍ରବେଶ କରିଥିଲା । ୧୭ ।

ହେ ବୀର (ବିଦୁର) ! ଭଲ୍ଲାସ୍ତ୍ରଦ୍ୱାରା ଛିନ୍ନ ଯକ୍ଷମାନଙ୍କର ସୁନ୍ଦର କୁଣ୍ଡଳାଲଂକୃତ ମସ୍ତକ, ସ୍ୱର୍ଣ୍ଣମୟ ତାଳବୃକ୍ଷ ତୁଲ୍ୟ ଉରୁଦେଶ, ବଳୟଶୋଭିତ ମନୋହର ବାହୁ, ଏବଂ ମହାମୂଲ୍ୟ ହାର, କେୟୂର ମୁକୁଟ ଓ ଉଷ୍ଣୀଷ ଦ୍ୱାରା ପରିବ୍ୟାପ୍ତ ହୋଇ ସେହି ରଣଭୂମି ମନୋହର ଶୋଭା ଧାରଣ କରିଥିଲା । ୧୮,୧୯ ।

ହତାବଶିଷ୍ଟ ରକ୍ଷମାନେ ସେହି କ୍ଷତ୍ରୀୟ ଶ୍ରେଷ୍ଠ ଧ୍ରୁବଙ୍କ ବାଣରେ ବହୁପରିମାଣରେ ବିକଳାଙ୍ଗ ହୋଇ, ସିଂହତାଡିତ ଗଜତୁଲ୍ୟ, ରଣଭୂମିରୁ ପଳାୟନ କରିଥିଲେ । ୨୦ ।

ଶ୍ରେଷ୍ଠମାନବ ଧ୍ରୁବ ଯୁଦ୍ଧକ୍ଷେତ୍ରରେ ସଶସ୍ତ୍ର କୌଣସି ବ୍ୟକ୍ତି ନ ଦେଖି, ଅଳକାପୁରୀକୁ ଯାଇ ଶତ୍ରୁ ମାନଙ୍କୁ ଅନ୍ୱେଷଣ କରିବାର ଇଚ୍ଛା କରିଥିଲେ ମଧ୍ୟ ସେଠାକୁ ଗଲେ ନାହିଁ; କାରଣ ଲୋକେ ମାୟାବୀ ମାନଙ୍କ ଅଭିପ୍ରାୟ ସହଜରେ ଜାଣି ପାରନ୍ତି ନାହିଁ । ୨୧ ।

---

ଧ୍ରୁବ ନାରାଚ ତୀକ୍ଷ୍ଣମୁନେ
ପଡ଼ିଲେ ଗୁହ୍ୟକର ସୈନ୍ୟେ
ଗୁହ୍ୟକ ଦେହେ ବାଣ ପଡ଼ି
ଶୁଭେ କି ମେଘ ଘଡ଼ଘଡ଼ି
ସର୍ବେ ପଡ଼ିଲେ ଭୂମିଗତେ
ପର୍ବତ ଯେହ୍ନେ ବଜ୍ରଘାତେ ।୧୭।
ଶିରେ ଭେଦିଲା ଭଲ୍ଲ ଶସ୍ତ୍ର
ବାଣେ ଛିନ୍ଧିତ ନିଜ ଗାତ୍ର
ଶିର ପଡ଼ିଲା ଭୂମି ତଳେ
ବିରାଜେ କିରୀଟ କୁଣ୍ଡଳେ
ହୃଦେ ଲମ୍ବିତ ହେମ ହାର
ବିରାଜେ ଉଷ୍ଣୀଷ କେୟୂର
ଶସ୍ତ୍ର ସମୂହେ ଶଯ୍ୟା କରି
ବୀରେଶୋଇଲେପ୍ରାଣହାରି।୧୮,୧୯
ଯେବା ଉବୁରି ଗଲେ ରଣେ
ଭୟେ ଲୁଚିଲେ ଘୋର ବନେ
ସିଂହର ତ୍ରାସେ ଯେହ୍ନେ ମୃଗେ
ଭୟେ ଭାଜିଲେ ଦଶଦିଗେ ।୨୦।
ଧ୍ରୁବ ଯେ ଦଶଦିଗେ ଚାହିଁ
ଦେଖଇ ରଣେ କେହି ନାହିଁ
ବୋଲେ ସାରଥିମୁଖ ଚାହିଁ
ଏ ପୁରେ ପଶ ରଥ ବାହି
ଦହନ କରିବି ଅନଳେ
ଯେବା ଅଛନ୍ତି ଗୁହ୍ୟକଳେ

ଇତ ବ୍ରୁବଂଶ୍ଚିତ୍ରରଥଂ ସ୍ୱସାରଥିଂ ଯତ୍ତଃ ପରେଷାଂ ପ୍ରତିଯୋଗଶଙ୍କିତଃ ।
ଶୁଶ୍ରାବ ଶବ୍ଦଂ ଜଲଧେରିବେରିତଂ ନଭସ୍ୱତୋ ଦିକ୍ଷୁ ରଜୋଽନ୍ୱଦୃଶ୍ୟତ ।୨୨।
କ୍ଷଣେନାଚ୍ଛାଦିତଂ ବ୍ୟୋମଘନାନୀକେନ ସର୍ବତଃ ।
ବିସ୍ଫୁରତ୍ତଡ଼ିତା ଦିକ୍ଷୁ ତ୍ରାସୟତ୍ ସ୍ତନୟିତ୍ନୁନା । ୨୩ ।
ବବୃଷୁରୁଧିରୌଘାସୃକ୍‌ପୂୟବିଣ୍ମୂତ୍ରମେଦସଃ ।
ନିପେତୁର୍ଗଗନାଦସ୍ୟ କବନ୍ଧାନ୍ୟଗ୍ରତୋଽନଘ । ୨୪ ।
ତତଃ ଖେଽଦୃଶ୍ୟତ ଗିରିର୍ନିପେତୁଃ ସର୍ବତୋ ଦିଶମ୍ ।
ଗଦାପରିଘନିସ୍ତ୍ରିଂଶମୁଷଲାଃ ସାଶ୍ମବର୍ଷିଣଃ । ୨୫ ।
ଅହୟୋଽଶନିନିଶ୍ୱାସା ବମନ୍ତୋଽଗ୍ନିଂ ରୁଷାକ୍ଷିଭିଃ ।
ଅଭ୍ୟଧାବନ୍ ଗଜା ମତ୍ତାଃ ସିଂହବ୍ୟାଘ୍ରାଶ୍ଚ ଯୂଥଶଃ । ୨୬ ।

---

ବିଚିତ୍ର ରଥଶାଳୀ ଧ୍ରୁବ ସାରଥିଙ୍କୁ ଏହିପରି କହି ଶତ୍ରୁମାନଙ୍କର ପୁନର୍ବାର ଆକ୍ରମଣ ଆଶଙ୍କାରେ ଅପେକ୍ଷା କରୁଥିଲେ, ଏହି ସମୟରେ ସମୁଦ୍ର ଗର୍ଜନତୁଲ୍ୟ ଏକ ଶବ୍ଦ ଶୁଣିଲେ, ପରମୁହୂର୍ତ୍ତରେ ଦେଖିଲେ ଯେ ପ୍ରଚଣ୍ଡ ବାୟୁ ବେଗରେ ଚତୁର୍ଦ୍ଦିଗରେ ଧୂଳିରାଶି ସମୁତ୍‌ଥିତ ହେଲା । ୨୨ ।

କ୍ଷଣକାଳ ମଧ୍ୟରେ ଆକାଶ ମେଘାଚ୍ଛନ୍ନ ହେଲା, ଘନ ଘନ ବିଦ୍ୟୁତ୍ ଚମକିତ ହେଲା, ଏବଂ ଭୀଷଣ ବଜ୍ରନାଦରେ ପ୍ରାଣୀମାନଙ୍କ ହୃଦୟରେ ଭୀତି ସଞ୍ଚାରିତ ହେଲା । ୨୩ ।

ହେ ଅନଘ (ପାପଶୂନ୍ୟ) ବିଦୁର ! ସେତେବେଳେ ଧ୍ରୁବଙ୍କ ସମକ୍ଷରେ ଆକାଶରୁ ରକ୍ତ, ଶ୍ଳେଷ୍ମା, ପୂଜ, ବିଷ୍ଠା, ମୂତ୍ର, ମେଦ ପ୍ରଭୃତି ବୃଷ୍ଟି ହେଲା, ଏବଂ ଶିର ବିହୀନ ବହୁ ଦେହ ପତିତ ହେଲା । ୨୪ ।

ତହିଁ ଉତ୍ତାରୁ ଆକାଶରେ ଗୋଟିଏ ପର୍ବତ ଦୃଷ୍ଟ ହେଲା, ତହିଁରୁ ଚତୁର୍ଦ୍ଦିଗରେ ପ୍ରସ୍ତର ବର୍ଷୀ ଗଦା ପରିଘ, ନିସ୍ତ୍ରିଂଶ ମୁଷଳାଦି ବୃଷ୍ଟି ହେଲା । ୨୫ ।

ଭୀଷଣାକୃତି ସର୍ପମାନେ କ୍ରୋଧରେ ବଜ୍ରଗର୍ଜନ ତୁଲ୍ୟ ନିଶ୍ୱାସ କ୍ଷେପଣକରି ନୟନରୁ ଅଗ୍ନି ଉଦ୍‌ଗୀରଣ କଲେ, ଏବଂ ସିଂହ ବ୍ୟାଘ୍ର ଏବଂ ମଦମତ୍ତ ହସ୍ତିଗଣ ଦଳେ ଦଳେ ଧ୍ରୁବଙ୍କ ଆଡ଼କୁ ଧାବମାନ ହେଲେ ।୨୬।

---

ସର୍ବ ମାରିବ ଭାବି ଛଡ଼ନ୍ତି
ଏବେ ତୁ ରଥ ବାହି ବଢ଼ନ୍ତି
ଏମନ୍ତ ଧ୍ରୁବବାକ୍ୟ ଶୁଣି
ସାରଥି ମନେ ମନେ ଗୁଣି
ଗୁହ୍ୟକ ମାୟାର ପ୍ରମାଣେ
ଏମନ୍ତ ଘୋର ନାଦ ଶୁଣେ
ପ୍ରଳୟ କାଳ ସିନ୍ଧୁ ଯେହ୍ନେ
ଲହରୀ ଉଛୁଳେ ଗଗନେ
ପୁଣି ଦେଖଇ ସ୍ୱର ଦିଗ
ଧୂଳି ଉଡ଼ଇ ଶୂନ୍ୟ ମାର୍ଗେ

କ୍ଷଣକେ ଘୋର ନାଦ କରି
ମେଘ ସମୂହେ ଶୂନ୍ୟେ ପୂରି
ବିଜୁଳି ଦିଶେ ଦଶଦିଗେ
ବଜ୍ର ଶବଦ ସଙ୍ଗେ ମିଶେ
ଉଲ୍କା ପଡ଼ଇ କୋଟି କୋଟି
ରୁଧିର ସଙ୍ଗେ ପୂଯ ବୃଷ୍ଟି
ମୂତ୍ର ପୁରୀଷ ରେତ ତୁଲେ
ଦୁର୍ଗନ୍ଧେ ଧରଣୀ ପୂରିଲେ
କବନ୍ଧେ ପଡ଼ିଲେ ଆକାଶୁଁ
ଦିଗ ପୂରିଲା ଘୋର ପାଂଶୁ

ନିର୍ଘାତେ ଗଗନୁ ପଡ଼ନ୍ତି
ଗଦା ପରିଘ ପଲ୍ଲ ପନ୍ତି
ମୂଷଳ ସଙ୍ଗେ ବଜ୍ର ପଡ଼ି
ଘୋର ଶବଦ ଘଡ଼ଘଡ଼ି
ସର୍ପେ ଧାମନ୍ତି ହୁ ହୁ କରି
ଅନଳ ପ୍ରାୟ ଚକ୍ଷୁ ଧରି
ଗଜେ ଧାମନ୍ତି ଶୁଣ୍ଢ ଟେକି
ସିଂହ ଶାର୍ଦ୍ଦୂଳ ସଙ୍ଗେ ମିଳି
ତକ୍ଷଣେ ସିନ୍ଧୁ ଉଛୁଳିଲା
ଲହରୀ ଗଗନେ ଲାଗିଲା

ସମୁଦ୍ର ଊର୍ମିଭିର୍ଭୀମଃ ପ୍ଲାବୟନ୍ ସର୍ବତୋ ଭୁବମ୍ ।
ଆସାସାଦ ମହାହ୍ରାଦଃ କଳ୍ପାନ୍ତ ଇବ ଭୀଷଣଃ । ୨୭ ।
ଏବଂବିଧାନ୍ୟନେକାନି ତ୍ରାସନାନ୍ୟମନସ୍ୱିନାମ୍ ।
ସସୃଜୁସ୍ତୀଗ୍ମଗତୟ ଆସୁର୍ଯ୍ୟା ମାୟୟାସୁରାଃ । ୨୮ ।
ଧ୍ରୁବେ ପ୍ରଯୁକ୍ତାମସୁରୈସ୍ତାଂ ମାୟାମତିଦୁସ୍ତରାମ୍ ।
ନିଶମ୍ୟ ତସ୍ୟ ମୁନୟଃ ଶମାଶଂସନ୍ ସମାଗତାଃ । ୨୯ ।
ଶ୍ରୀମୁନୟଊଚୁଃ ।
ଔତ୍ତାନପାଦ ଭଗବାଂସ୍ତବ ଶାର୍ଙ୍ଗଧନ୍ୱା ଦେବଃ କ୍ଷିଣୋତ୍ୱବନତାର୍ତ୍ତିହରୋ ବିପକ୍ଷାନ୍ ।
ଯନ୍ନାମଧେୟମଭିଧାୟ ନିଶମ୍ୟ ଚାଦ୍ଧା ଲୋକୋଽଞ୍ଜସା ତରତି ଦୁସ୍ତ୍ୟଜମଙ୍ଗ ମୃତ୍ୟୁମ୍ ।୩୦।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଧ୍ରୁବଚରିତେ ଯକ୍ଷମାୟାଧାନଂ ନାମ ଦଶମୋଽଧ୍ୟାୟଃ । ୧୦ ।

---

ଝଞ୍ଜାବୃତ ସାଗର ଯେପରି ପ୍ରଳୟକାଳରେ ମହାଭୟଙ୍କରତା ଧାରଣ କରେ ଏବଂ ତରଙ୍ଗମାଳା ସାହାଯ୍ୟରେ ଅଖିଳ ବ୍ରହ୍ମାଣ୍ଡ ପ୍ଲାବନ କରେ; ସେହିପରି ଗର୍ଜନ କରିବାକୁ ଲାଗିଲେ । ୨୭ ।

ନିଷ୍ଠୁର ପ୍ରକୃତି ଯକ୍ଷମାନେ ଆସୁରୀମାୟା ଦ୍ୱାରା ଶୌର୍ଯ୍ୟଶୂନ୍ୟ ବ୍ୟକ୍ତିମାନଙ୍କ ପ୍ରତି ଭୀତିପ୍ରଦ ଏପରି ବହୁ ବ୍ୟାପାର ସୃଷ୍ଟି କଲେ । ୨୮ ।

ଅସୁରମାନେ ଧ୍ରୁବଙ୍କ ପ୍ରତି ଏପରି ମାୟା ବିସ୍ତାର କରୁଥିବାର ଜାଣିପାରି ମୁନିମାନେ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ତାଙ୍କର କଲ୍ୟାଣ କାମନା କରିଥିଲେ । ୨୯ ।

ଶ୍ରୀମୁନିଗଣ କହିଲେ ;—

"ହେ ଉତ୍ତାନପାଦ ତନୟ ବତ୍ସ ଧ୍ରୁବ ! ଯାହାଙ୍କର ନାମ ଉଚ୍ଚାରଣ ବା ଶ୍ରବଣ ମାତ୍ରେ ଜୀବ ତତ୍‌କ୍ଷଣାତ୍ ଅନାୟାସରେ ଦୁର୍ନିବାର ମୃତ୍ୟୁକୁସୁଦ୍ଧା ଏଡ଼ାଇଦେଇ ପାରେ,ସେହି ପ୍ରଣତଜନ ଆର୍ତ୍ତିହାରୀ ଶାର୍ଙ୍ଗଧନ୍ୱା ଭଗବାନ୍ ତୁମ୍ଭର ଶତ୍ରୁ ସମୂହଙ୍କର ବିନାଶ ସାଧନ କରନ୍ତୁ । ୩୦ ।

---

ଭୂମି ପୂରିଲା ମହାଜଳେ
ପ୍ରଚଣ୍ଡ ପବନ ଉଚ୍ଛୁଳେ
କଳ୍ପାନ୍ତେ ଘୋର ନାଦ ଯେହ୍ନେ
ଶବଦ ପୂରିଲା ଗଗନେ
ଏମନ୍ତେ ନାନା ମାୟା କରି
ଗୁହ୍ୟକ ସମର ଆବୋରି
ମିଳିଲେ ନାନା ଶସ୍ତ୍ର ଘେନି
ଶବଦେ କମ୍ପଇ ମେଦିନୀ
ଧ୍ରୁବ ଉପରେ ମାୟା କରି
ଗୁହ୍ୟକେସନ୍ଧିଲେଆବୋରି।୨୧-୨୮

ଗୁହ୍ୟକ ମାୟା ଦେଖି ବେଗେ
ମୁନି ମିଳିଲେ ଧ୍ରୁବ ଆଗେ
କଲ୍ୟାଣ ହେଉ ଆଗେ ରହି
ବୋଲନ୍ତି ଧ୍ରୁବ ମୁଖ ଚାହିଁ ।୨୯।

ମୁନୟ ଊଚୁଃ—

ଶୁଣ ହେ ଉତ୍ତାନକୁମର
ତୋତେ ପ୍ରସନ୍ନ ଚକ୍ରଧର
ଯେ ହରି ସର୍ବ ଭୟ ନାଶେ
ଆମ୍ଭେ ତା ଦେଖୁଁ ତୋର ପାଶେ

ଯା ନାମ ସ୍ମରି ଅନ୍ତକାଳେ
ମୃତ୍ୟୁ ତରନ୍ତି ପ୍ରାଣୀ ହେଳେ
ସେ ହରି ଗୁମର ହୃଦର
ଗୁହ୍ୟକ ମାୟାକୁ ସଂହର ।୩୦।
ଏମନ୍ତେ ମୁନିଙ୍କର ବୋଲେ
ରଥ ତୋଳିଲା ଅନ୍ତରାଳେ
ଶୁଣ ସୁଜନେ ହରିକଥା
ହରି ନ ସହେ ଭୃତ୍ୟ ବ୍ୟଥା
ସେ ହରି ଯଶ ହୃଦେ ଚିନ୍ତି
କହଇ ଦାସ ଜଗନ୍ନାଥ ।

# ଦ ଶ ମ ଅ ଧ୍ୟା ୟ ।

## ଧ୍ରୁବ ତପସ୍ୟା ।

ବିଷ୍ଣୁର ଚରଣେ ଧ୍ରୁବ କରି ଧୀରମତି ।
ଶ୍ରୀକୃଷ୍ଣଚରଣ ଧ୍ୟାଇଁ ଆରମ୍ଭିଲା ସ୍ତୁତି ॥
ହିରଣ୍ମୟ ବ୍ରହ୍ମା ଯା ଶରୀରୁ ଜାତ ହୋଇ ।
ସର୍ବସୃଷ୍ଟି ବିଧାନ କରଇ ଆଜ୍ଞା ବହି ॥
ଏଣୁ ସେ ହିରଣ୍ୟରେତା ସୁହିରଣ୍ୟଦାତା ।
ନମସ୍ତେ ହିରଣ୍ୟରୂପ ସୃଷ୍ଟି ପିତା ମାତା ॥
ହିରଣ୍ୟକ ରୂପ ତୋର ସୃଷ୍ଟି ସଂହାରଣେ ।
ମହାଭୂତଙ୍କର ଆତ୍ମା ବହୁ ତୁ କାରଣେ ॥
ଏଣୁ ଭୂତଙ୍କର ଗତି ପତି ରୂପ ହୋଇ ।
କ୍ଷିତିରୂପେ ବିଷ୍ଣୁଗର୍ଭ ବିଷ୍ଣୁ ଗର୍ବ ଦେହି ॥
ସୃଷ୍ଟି ସଂହାରଣେ କୃଷ୍ଣରୂପ ଯେ ତୋହର ।
ମହାଭାର ସହି ବିଷ୍ଣୁ କୂର୍ମରୂପ ଧର ॥
ଅସୁର ଅରଣ୍ୟେ ମହା ଦାବାଗ୍ନି ସ୍ୱରୂପ ।
ଦୈତ୍ୟ ତମୋଛେଦନେ କୁଠାର ବହୁ ଦର୍ପ ॥
ଶାରଙ୍ଗ ଧନୁ ଧରଣ ରିପୁବଳ ନାଶି ।
କୌମୋଦକୀ ଗଦା ତେଜେ ଦୈତ୍ୟବଳ ଧ୍ୱଂସି
ମହାଦୈତ୍ୟ ନାଶନେ ସେ ନନ୍ଦକଧାରଣ ।
ନମୋ ଲକ୍ଷ୍ମୀପତେ ଦୈତ୍ୟଙ୍କର ନିସୂଦନ ॥
ବାସୁଦେବ ନମସ୍ତୁଭ୍ୟଂ ଦେବକୀ ନନ୍ଦନ ।
ପ୍ରଦ୍ୟୁମ୍ନାଦି ଅନିରୁଦ୍ଧ ଅବ୍ୟକ୍ତ କାରଣ ॥
କଂସକେଶୀ ଧେନୁର ପୂତନା ଦର୍ପହର ।
ନିଗୁଢ଼ ବନ୍ଧନୁ ପିତାମାତାଙ୍କୁ ଉଦ୍ଧର ॥
ଦାମୋଦର ହୃଷୀକେଶ ଗୋବିନ୍ଦ ଅଚ୍ୟୁତ ।
ହେ ମାଧବ ଅନନ୍ତ ଦୈତ୍ୟଙ୍କ ପ୍ରାଣ ହୃତ ॥
ନାରାୟଣ ନରକ ନାଶନ ପାପହାରୀ ।
ବାମନାୟ ନମସ୍ତୁଭ୍ୟଂ ନମୋ ନରହରି ॥
ଅନନ୍ତାୟ ଅନନ୍ତଶୟନ ବନମାଳୀ ।
ରୁକ୍ମିଣୀବଲ୍ଲଭ ରୁକ୍ମ ଗର୍ବ ହେଲେ ଦଳି ॥
ଶିଶୁପାଳ ପ୍ରାଣ ହର ଅସୁର ଦଳନ ।
ଦାନବାନ୍ତକ ଶ୍ରୀକୃଷ୍ଣ ଜୟ ନାରାୟଣ ॥
ମୁକୁନ୍ଦ ପରମାନନ୍ଦ ଜୟ ନନ୍ଦବାଳ ।
ନମସ୍ତେ ପୁଣ୍ଡରୀକାକ୍ଷ ଦନୁଜେନ୍ଦ୍ର କାଳ ॥
ନମସ୍ତେ ଗୋପାଳରୂପ ବେଣୁ ବାଦ୍ୟକାରୀ ।
ରାମ ରଘୁନାଥ ଯେ ରାବଣ ପ୍ରାଣହାରୀ ॥
ବଳେ ବଳଭଦ୍ର ନାମ ବଳରାମ ପ୍ରିୟ ।
ବଳିଯଜ୍ଞ ଭଞ୍ଜନ ଯେ ଭକ୍ତଜନୋ ଦୟ ॥
ରଣପ୍ରିୟ ହିରଣ୍ୟକଶିପୁ ବିଦାରଣ ।
ନମୋ ବ୍ରହ୍ମଣ୍ୟଦେବାୟ ରକ୍ଷ ଗୋ ବ୍ରାହ୍ମଣ ॥
ସତ୍ୟଯୁଗେ ବ୍ରହ୍ମରୂପ ଧର୍ମ ଅନ୍ତରୀକ୍ଷେ ।
ସକଳ ଜଗତ ଜୀବ ପାତ୍ର ତୁ ପ୍ରତ୍ୟକ୍ଷେ ॥
ସହସ୍ର ଶିର ସେ ନମୋ ସହସ୍ର ବଦନ ।
ସହସ୍ର ବାହୁ ନାସିକା ସହସ୍ର ଶ୍ରବଣ ॥
ବିଷ୍ଣୁର ଶ୍ରବସେ ନମୋ ଗରୁଡ଼ ବାହନ ।
ବିଶ୍ୱକ୍‌ସେନ ନମୋ ଜଗନ୍ନାଥ ଜନାର୍ଦ୍ଦନ ॥
ତ୍ରିବିକ୍ରମ ସତ୍ୟ ନମୋନମ ସତ୍ୟ ପ୍ରିୟ ।
ଅନେକ ପ୍ରକାରେ ଧ୍ରୁବ କରେ ସ୍ତୁତିଚୟ ॥
ବହୁ ସ୍ତୁତି କରି ଧ୍ରୁବ ମଉନେ ରହିଲା ।
ନିଷ୍ଠେ ଗୋବିନ୍ଦପାଦେ ଚିତ୍ତ ସମର୍ପିଲା ॥
ଏମନ୍ତ ତା ଭକ୍ତିଭାବ ଗୋବିନ୍ଦ ଜାଣିଲେ ।
ଗରୁଡ଼ୁଁ ଓହ୍ଲାଇ ଧ୍ରୁବ ସମୀପେ ମିଳିଲେ ॥
ଧ୍ରୁବକୁ ଲଗାଇ ହୃଦେ କମଳାରମଣ ।
ଜଳଦ ଗମ୍ଭୀର ବାକ୍ୟେ ପ୍ରଭୁ ନାରାୟଣ ॥

ଶ୍ରୀ ଭଗବାନୁବାଚ—

ଶୁଣ ରେ ବାଳକ ମୁଁ ଜାଣଇ ତୋର ମନ ।
ଘୋର ତପ କଲୁ ତୁରେ ଜନନୀ ବୋଲେଣ ॥

ତୋହର ମନ ବାଞ୍ଛିତ ଜାଣଇ ମୁଁ ଭଲେ ।
ଧ୍ରୁବଲୋକେ ବସାଇବି ଜନନୀର ତୁଲେ ॥
ଧ୍ରୁବଲୋକେ ଅଧିକାର ତୋହର ହୋଇଲା ।
କୋଟି କଳ୍ପାନ୍ତରେ ଯାହା କେହି ନ ପାଇଲା ॥
ତୋର ପିତୃପିତାମହେ ଅଗୋଚର ସ୍ଥାନ ।
ସେ ପଦକୁ ଭୁଞ୍ଜି ନିତ୍ୟେ ବସ ତୁ ଆସନ ॥
ସ୍ୱର୍ଗଲୋକ ଊର୍ଦ୍ଧ୍ୱଗତେ ମର୍ତ୍ତ୍ୟଲୋକ ତଳେ ।
ତ୍ରୈଲୋକ୍ୟ ପ୍ରଳୟକାଳେ ନ ଦହେ ଅନଳେ ॥
ଶୁଶୁମାରଚକ୍ରେ ବସ ଧ୍ରୁବ ଅଧିକାରେ ।
ଯେ ଚକ୍ରଭ୍ରମରେ ଭ୍ରମେ ଶଶୀ ଦିବାକରେ ॥
ଗ୍ରହ ଋକ୍ଷ ଋଷି ଯୋଗୀ ଗଗନ ସହିତେ ।
ଧ୍ୟାନ ନିବନ୍ଧନେ ଛନ୍ତି ସମୀରଣ ଯନ୍ତ୍ରେ ॥
ସେହି ସ୍ଥାନେ ବସ ଗ୍ରହ ଚକ୍ର ତୁ ପ୍ରତ୍ୟକ୍ଷେ ।
ହେଉଛ ରହି ମନୋରଥ ପୂର୍ଣ୍ଣ କଳ୍ପ ଲକ୍ଷେ ॥
ପୂର୍ବେ ମହାଦେବ ବରେ ସେ ସ୍ଥାନ ମୋହର ।
ମୁହିଁ ଦେଲି ଧ୍ରୁବ ତୁ ନିଶ୍ଚଳେ ଭୋଗ କର ॥
ମନୁ ଯାହା ନ ପାଇଲେ କେ ଅନ୍ୟ ମାନବେ ।
ଜନନୀ ସହିତେ ବାଳ ସୁଖ ଭୁଞ୍ଜ ଏବେ ॥
ପୂର୍ବେ ତୁହି ବ୍ରହ୍ମପୁତ୍ର ରାଜପୁତ୍ର ସଙ୍ଗେ ।
ମାତୃ ବୋଲ ଶୁଣି ଚିତ୍ତ କଲିଅଛୁ ଯୋଗେ ॥
ଏ ପୁଣ୍ୟ ସ୍ୱଭାବେ ରାଜାକୁଳେ ହୋଇ ଜନ୍ମ ।
ଏବେ ତପୋବଳେ ଭୁଞ୍ଜ ସମ୍ପାଦିଲୁ କର୍ମ ॥
ଶୁଣ ଅବହିତ ଚିତ୍ତେ ମୁଁ କହିଲି ତୋତେ ।
ତପ ସ୍ଥାନେ ରହି ସ୍ତୁତି କଲୁ ଯେତେ ମୋତେ ॥
ସର୍ବସ୍ତୋତ୍ର ମାନଙ୍କର ରାଜା ଏ ପ୍ରତ୍ୟକ୍ଷେ ।
ଯେ ନର ଏ ସ୍ତୁତି କରେ ମୋହର ସମ୍ମୁଖେ ॥
ତ୍ରିସନ୍ଧ୍ୟା ପଢନ୍ତି ଯେବା ଏହା ଇଷ୍ଟ କରି ।
ତ୍ରିବିଧ ପାତକ ମୁଖୁ ବେଗେ ଯାନ୍ତି ତରି ॥
ତାହାର ଭୁବନୁ ଲକ୍ଷ୍ମୀ କେବେହେଁ ନ ତେଜେ
ଜନନୀ ବନ୍ଧୁ ବିଯୋଗ କେବେହେଁ ନ ଭଜେ ॥

ଏ ତୋହର ସ୍ତୁତି ପୁଣ୍ୟ ପାପ ବିନାଶିନୀ ।
ବ୍ରହ୍ମହତ୍ୟା ଦୋଷ ହରେ ମୋର ଆଜ୍ଞାଘେନି ॥
ଶ୍ରଦ୍ଧାଯୁକ୍ତେ ମୋର ସ୍ତବେ ନିତ୍ୟ ଯେବା ପଢେ
ସୁଖେ ମୋହଜନ୍ତୁଁ ତରେ କେବେହେଁ ନ ବୁଡେ ॥
ଏମନ୍ତ ପ୍ରସନ୍ନେ କହି ପ୍ରଭୁ ଚକ୍ରଧର ।
ସନ୍ତୋଷେ ଧ୍ରୁବଙ୍କୁ ଗ୍ରହିଁ ଧରି ବେନି କର ॥
କହନ୍ତି ମନୁର ବଂଶେ ଜନ୍ମ ତୋ ଶରୀର ।
ନର ନାରାୟଣ ଦେବତାଙ୍କୁ ଅଗୋଚର ॥
ଏ ଶରୀର ଭୋଗେ ତୁ ଆମୃତୁ କର ଭୋଗ ।
ଆଧି ବ୍ୟାଧି ବର୍ଜିତ ଜୀବ ତୁ ସତ୍ୟଯୁଗ ॥
ଶରୀର ଅନ୍ତରେ ଧ୍ରୁବଲୋକେ ବସ ତୁହି ।
କଳ୍ପ ସଂଖ୍ୟା ପ୍ରମାଣେ ଜନନୀ ସଙ୍ଗେ ନେଇ ॥
ଏମନ୍ତ ଧ୍ରୁବକୁ ବର ଦେଇ ଜନାର୍ଦ୍ଦନ ।
ଗରୁଡ ବାହନେ ସେ ହୋଇଲେ ଅନ୍ତର୍ଦ୍ଧାନ ॥
ବିଷ୍ଣୁ ବର ପାଇ ସେ ଉତ୍ତାନପାଦବାଳା ।
ଦିବ୍ୟରୂପ ନିଜେ ଧରି ସଦନେ ଗମିଲା ॥
ଜନନୀ ଚରଣେ ସେବା କଲା ଅନୁକ୍ଷଣେ ।
ଅନୁଭବ ଦୁଃଖ ଗଲା ଯେତେ ଥିଲା ମନେ ॥
ପିତାର ବଚନେ ଦିନେ ଦିନେ ସେ ବଢଇ ।
ଧ୍ରୁବର ମହିମା ଅବା କେ ସଂଖିବ କହି ॥
ଏମନ୍ତେ ବିଦୁର ଆଗେ ମୈତ୍ରେୟ ମୁନି ।
କହିଲେ ଧ୍ରୁବର କଥା ହରଷିବ ଘେନି ॥
ବିଷ୍ଣୁପଦୀ ତୀରେ ରହି ସମ୍ମିଳିତ ଆଗେ ।
ଭବଭକ୍ତି ଯୋଗେ ସେ କହିଲେ ଅନୁରାଗେ ॥
ସାନନ୍ଦ ମନେ କହିଲେ ବ୍ୟାସଙ୍କର ଶିଷ୍ୟ ।
ସେ ଚରିତ କଥା ଯେ ପବିତ୍ର ପୁଣ୍ୟ ରସ ॥
ସାଧୁଜନ ହିତେ ମୁହିଁ କଲଇଁ ପ୍ରକାଶ ।
ଭାଗବତ କହେ ବିପ୍ର ଜଗନ୍ନାଥ ଦାସ ॥



ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଧ୍ରୁବ ତପସ୍ୟାକରଣେ ଭଗବତ୍‌ପ୍ରସନ୍ନୋ ନାମ ଦଶମୋଽଧ୍ୟାୟଃ ।

## ଏ କା ଦ ଶ ଅ ଧ୍ୟା ୟ ।

ଏକାଦଶେ ତୁ ଯକ୍ଷାଣାଂ କ୍ଷୟଂ ଦୃଷ୍ଟ୍ବା ମନୁଃ ସ୍ୱୟମ୍ ।
ଆଗତ୍ୟ ବାରୟାମାସ ଧ୍ରୁବଂ ତତ୍ତ୍ୱୋପଦେଶତଃ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ନିଶମ୍ୟ ଗଦତାମେବମୃଷୀଣାଂ ଧନୁଷି ଧ୍ରୁବଃ ।
ସନ୍ଦଧେଽସ୍ତ୍ରମୁପସ୍ପୃଶ୍ୟ ଯନ୍ନାରାୟଣନିର୍ମିତମ୍ । ୧ ।
ସନ୍ଧୀୟମାନ ଏତସ୍ମିନ୍ ମାୟା ଗୁହ୍ୟକନିର୍ମିତାଃ ।
କ୍ଷିପ୍ରଂ ବିନେଶୁର୍ବିଦୁର କ୍ଲେଶା ଜ୍ଞାନୋଦୟେ ଯଥା । ୨ ।

---

### ମନୁଙ୍କର ତତ୍ତ୍ୱୋପଦେଶ ଏବଂ ଧ୍ରୁବଙ୍କର ରଣନିବୃତ୍ତି ।

ମନୁ ଯକ୍ଷମାନଙ୍କର ବିନାଶ ଦେଖି ନିଜେ ଆସି ତତ୍ତ୍ୱ ଉପଦେଶ ଦ୍ୱାରା ଧ୍ରୁବଙ୍କୁ ଯୁଦ୍ଧରୁ ନିବୃତ୍ତ କରାଇ ଥିଲେ । ୦ ।

ଶ୍ରୀମୈତ୍ରେୟ କହିଲେ :—

ଋଷିମାନଙ୍କର ଏବଂବିଧ ବାକ୍ୟ ଶ୍ରବଣକରି ଧ୍ରୁବ ଆଚମନ ପୂର୍ବକ ସ୍ୱୀୟ ଧନୁରେ ନାରାୟଣାସ୍ତ୍ର ପ୍ରୟୋଗ କରିଥିଲେ । ୧ ।

ଜ୍ଞାନୋଦୟ ହେଲେ ରାଗାଦି ଦୁଃଖ ଯେପରି ବିନଷ୍ଟ ହୁଏ, ତାହାଙ୍କର ଶରସନ୍ଧାନମାତ୍ରେ ଯକ୍ଷମାନଙ୍କ ଦ୍ୱାରା ସୃଷ୍ଟ ମାୟାଜାଲ ଅଚିରେ ବିନଷ୍ଟ ହେଲା । ୨ ।

---

ମନୁଦେଖିଣ ଯକ୍ଷନାଶ, ଧ୍ରୁବକୁ ତତ୍ତ୍ୱ ଉପଦେଶ । ଦେଇ ଯୁଦ୍ଧରୁ ନିବାରିଲେ, ଏମନ୍ତେ ଏକାଦଶେ ବୋଲେ

ଶ୍ରୀମୈତ୍ରେୟଉବାଚ—

ଏମନ୍ତ ମୁନିବାକ୍ୟ ଶୁଣି
ଧ୍ରୁବ ଆନନ୍ଦ ମନେ ଗୁଣି
ଯୁକତିକେ କରି ଆଚମନ
ସୁମରି ଅସ୍ତ୍ର ନାରାୟଣ
ସନ୍ଧାନ ଧନୁ ଗୁଣେ କଲା
ତା ଦେଖି ମାୟା ଭସ୍ମ ହେଲା
ଗୁହ୍ୟକ ହୋଇଲେ ଅଦୃଶ୍ୟ
ଦିଶିଲା ଧରଣୀ ଆକାଶ
ଜ୍ଞାନ ଉଦୟେ କ୍ଲେଶ ଯେସନ୍ତେ
ଦେବେ ଦେଖନ୍ତି ରହି ଶୂନ୍ୟେ । ୧,୨

ତସ୍ୟାର୍ଷାସ୍ତ୍ରଂ ଧନୁଷି ପ୍ରଯୁଞ୍ଜତଃ ସୁବର୍ଣ୍ଣପୁଂଖାଃ କଲହଂସବାସସଃ ।
ବିନିଃସୃତା ଆବିବିଶୁର୍ଦ୍ୱିଷଦ୍‌ବଲଂ ଯଥା ବନଂ ଭୀମରବାଃ ଶିଖଣ୍ଡିନଃ । ୩ ।
ତୈସ୍ତିଗ୍ମଧାରୈଃ ପ୍ରଧନେ ଶିଲୀମୁଖୈରିତସ୍ତତଃ ପୁଣ୍ୟଜନା ଉପଦ୍ରୁତାଃ ।
ତମଭ୍ୟଧାବନ୍ କୁପିତା ଉଦାୟୁଧାଃ ସୁପର୍ଣ୍ଣମୁନ୍ନଦ୍ଧଫଣା ଇବାହୟଃ । ୪ ।
ସ ତାନ୍ ପୃଷତ୍କୈରଭିଧାବତୋ ମୃଧେ ନିକୃତ୍ତବାହୂରୁଶିରୋଧରୋଦରାନ୍ ।
ନିନାୟ ଲୋକଂ ପରମର୍କମଣ୍ଡଳଂ ବ୍ରଜନ୍ତି ନିର୍ଭିଦ୍ୟ ଯମୂର୍ଦ୍ଧ୍ୱରେତସଃ । ୫ ।
ତାନ୍ ହନ୍ୟମାନାନଭିବୀକ୍ଷ୍ୟ ଗୁହ୍ୟକାନନାଗସଶ୍ଚିତ୍ରରଥେନ ଭୂରିଶଃ ।
ଔତ୍ତାନପାଦିଂ କୃପୟା ପିତାମହୋ ମନୁର୍ଜଗାଦୋପଗତଃ ସହର୍ଷିଭିଃ । ୬ ।

---

ଧ୍ରୁବଙ୍କ ଧନୁରେ ସେହି ନାରାୟଣାସ୍ତ୍ର ଯୋଜିତ ହୁଅନ୍ତେ ତହିଁରୁ ବହୁ ସଂଖ୍ୟକ ବାଣ ନିର୍ଗତ ହୋଇ, ମୟୂରମାନେ ଭୟରେ ଯେପରି ଭୀଷଣଶବ୍ଦ କରି କରି ବନମଧ୍ୟରେ ପ୍ରବେଶ କରନ୍ତି, ସେହିପରି ଭୟଙ୍କର ଶବ୍ଦ କରି କରି ଶତ୍ରୁ ସୈନ୍ୟଦଳ ମଧ୍ୟରେ ପ୍ରବେଶ କଲେ । ଏହି ବାଣ ଗୁଡ଼ିକର ମୂଳ ଦେଶ ସୁବର୍ଣ୍ଣ ମଣ୍ଡିତ ଏବଂ କଳହଂସ ପକ୍ଷ ଖଚିତ ହୋଇଥିଲା । ୩ ।

ଯୁଦ୍ଧ କ୍ଷେତ୍ରରେ ଧ୍ରୁବଙ୍କର ସେହି ବାଣାଘାତରେ ଯକ୍ଷମାନେ ସର୍ବତୋଭାବରେ ପ୍ରପୀଡ଼ିତ ହୋଇ କ୍ରୋଧବଶତଃ ସ୍ୱ ସ୍ୱ ଅସ୍ତ୍ରଉତ୍ତୋଳନ ପୂର୍ବକ ସର୍ପମାନେ ଯେପରି ଫଣାଟେକି ଗରୁଡ଼ ଅଭିମୁଖରେ ଧାବିତ ହୁଅନ୍ତି; ସେହିପରି ସେମାନେ ଧ୍ରୁବଙ୍କ ଅଭିମୁଖରେ ଧାବିତ ହୋଇଥିଲେ । ୪ ।

ଯକ୍ଷମାନେ ଯେତେବେଳେ ଧ୍ରୁବଙ୍କ ଆଡ଼କୁ ଧାବିତ ହେଲେ ସେତେବେଳେ ଧ୍ରୁବ ବାଣଦ୍ୱାରା ସେମାନଙ୍କର ବାହୁ, ଉରୁ, ଗ୍ରୀବା, ଉଦର ପ୍ରଭୃତି ଛେଦନ କରି ଊର୍ଦ୍ଧ୍ୱରେତା ସନ୍ନ୍ୟାସୀମାନେ ସୂର୍ଯ୍ୟମଣ୍ଡଳ ଭେଦକରି ଯେଉଁ ଲୋକକୁ ଗମନକରନ୍ତି, ସେମାନଙ୍କୁ ସେହି ସତ୍ୟଲୋକକୁ ପ୍ରେରଣ କରିଥିଲେ । ୫ ।

ଚିତ୍ରରଥଶାଳୀ ଧ୍ରୁବଙ୍କୁ ବହୁ ନିରପରାଧ ଯକ୍ଷଙ୍କୁ ବଧ କରିବାର ଦେଖି ପିତାମହ ମନୁ ଦୟାପରବଶ ହୋଇ ଋଷିମାନଙ୍କ ସହ ସେଠାରେ ଉପସ୍ଥିତ ହୋଇ ଉତ୍ତାନପାଦ ତନୟ (ଧ୍ରୁବ)ଙ୍କୁ କହିଲେ । ୬ ।

---

ଧ୍ରୁବ ଆମର୍ଷି ଧନୁ ଗୁଣ
ଯୋଚେ ସୁବର୍ଣ୍ଣପୁଙ୍ଖ ବାଣ
ବାଣର ପକ୍ଷ କଳହଂସ
ଦେଖି କମ୍ପିଲେ ଦଶଦିଶ
ସେ ବାଣ ରିପୁ ବଳେ ପଶି
ଅନଳ ପ୍ରାୟ ତେଜ ଦିଶି
ମୟୂର ଯେହ୍ନେ ନାଦ କରି
ଆନନ୍ଦେ ବନସ୍ତେ ବିହରି । ୩ ।
ଏମନ୍ତ ତୀକ୍ଷ୍ଣ ବାଣ ଭେଦି
ଗୁହ୍ୟକ ମାୟା ପୁଣ ଛେଦି

ନିଶସ୍ତ୍ର ହୋଇ ଅନାୟୁରେ
ଧାଇଁଲେ ଶସ୍ତ୍ର ଘେନି ହସ୍ତେ
ଯେସନେ ସର୍ପ ଫଣା ଧରି
ଗରୁଡ଼େ ଧାଏଁ କୋପ ଭରି । ୪ ।
ତାହାଙ୍କୁ ଦେଖି ରଣଦେଶେ
ନାରାଚ ପୁଣି ଧରି ରୋଷେ
ବନ୍ଧଇ ଗୁହ୍ୟକ ଶରୀରେ
ଭେଦିଲା ବାହୁ ଉରୁ ଶିରେ
ତକ୍ଷଣେ ଗଲେ ଛିନ୍ନ ଭିନ୍ନେ
ସଂଗ୍ରାମେ ଶମନ ଭୁବନେ । ୫ ।

ଗୁହ୍ୟକ ବଳ ନାଶ ଦେଖି
ମନୁ ଯେ ଭୁବନ ଉପେକ୍ଷି
ଉତ୍ତମ ଚିତ୍ର-ରଥେ ବସି
ମିଳିଲେ ରଣମଧ୍ୟେ ଆସି
ସଙ୍ଗେ ଅନେକ ମୁନି ଜନେ
ଧ୍ରୁବକୁ ଦେଖି ତୋଷମନେ
ଗୁହ୍ୟକ ଗଣେ ଦୟା ବହି
ବୋଲନ୍ତି ଧ୍ରୁବ ମୁଖ ଚାହିଁ । ୬ ।

ଶ୍ରୀମନୁ ରୁବାଚ ।

ଅଲଂ ବତ୍ସାତିରୋଷେଣ ତମୋଦ୍ୱାରେଣ ପାପ୍ମନା ।
ଯେନ ପୁଣ୍ୟଜନାନେତାନବଧୀସ୍ତ୍ୱମନାଗସଃ । ୭ ।
ନାସ୍ମତ୍କୁଲୋଚିତଂ ତାତ କର୍ମୈତତ୍ ସଦ୍ୱିଗର୍ହିତମ୍ ।
ବଧୋ ଯଦୁପଦେବାନାମାରବ୍ଧସ୍ତେଽକୃତୈନସାମ୍ । ୮ ।
ନନ୍ୱେକସ୍ୟାପରାଧେନ ପ୍ରସଙ୍ଗାଦ୍ବହବୋ ହତାଃ ।
ଭ୍ରାତୁର୍ବଧାଭିତପ୍ତେନ ତ୍ୱୟାଙ୍ଗ ଭ୍ରାତୃବତ୍ସଲ । ୯ ।
ନାୟଂ ମାର୍ଗୋ ହି ସାଧୂନାଂ ହୃଷୀକେଶାନୁବର୍ତ୍ତିନାମ୍ ।
ଯଦାତ୍ମାନଂ ପରାଗ୍‌ଗୃହ୍ୟ ପଶୁବଦ୍ଭୂତବୈଶସମ୍ । ୧୦ ।
ସର୍ବଭୂତାତ୍ମଭାବେନ ଭୂତାବାସଂ ହରିଂ ଭବାନ୍ ।
ଆରାଧ୍ୟାପ ଦୁରାରାଧ୍ୟଂ ବିଷ୍ଣୋସ୍ତତ୍ ପରମଂ ପଦମ୍ । ୧୧ ।

ଶ୍ରୀମନୁ କହିଲେ :—

ବତ୍ସ ! ତୁମ୍ଭେ ଯେ କ୍ରୋଧ ପରବଶହୋଇ ଏହି ନିରପରାଧ ଯକ୍ଷମାନଙ୍କୁ ବଧକଲ, ଏପରି କ୍ରୋଧ ଉଚିତ ନୁହେଁ, କ୍ରୋଧ ଅତି ପାପମୟ ଏବଂ ନରକର ଦ୍ୱାର ସ୍ୱରୂପ । ୭ ।

ତୁମ୍ଭେ ଯେ ଏହି ନିରପରାଧ ଯକ୍ଷମାନଙ୍କୁ ବଧ କରିବାକୁ ଆରମ୍ଭ କରିଅଛ, ତାହା ସଜ୍ଜନ ବିନିନ୍ଦିତ ଏବଂ ଏହା ଆମ୍ଭମାନଙ୍କର କୁଳୋଚିତ ନୁହେଁ । ୮ ।

ହେ ଅଙ୍ଗ (ଭ୍ରାତୃବତ୍ସଳ) ! ତୁମ୍ଭେ ଭ୍ରାତାର (ଉତ୍ତମର) ବିନାଶ ହେତୁ ଅତ୍ୟନ୍ତ ଦୁଃଖିତ ହୋଇ ଜଣକର ଅପରାଧ ହେତୁ ତତ୍‌ସଙ୍ଗୀ ଅନ୍ୟ ବହୁଯକ୍ଷଙ୍କୁ ବିନାଶ କରୁଅଛ । ୯ ।

ଆତ୍ମାକୁ ଏହିପ୍ରତ୍ୟକ୍ଷୀଭୂତ ଶରୀର ବୋଲି ମନେକରି ପଶୁତୁଲ୍ୟ ଯେ ପ୍ରାଣୀ ହିଂସା ଆରମ୍ଭ କରିଅଛ, ତାହା ଭଗବତ୍ ସେବୀ ସାଧୁଜନ ପକ୍ଷରେ ସମୁଚିତ ମାର୍ଗ ନୁହେଁ । ୧୦ ।

ତୁମ୍ଭେ ସର୍ବପ୍ରାଣୀଙ୍କର ଆବାସ ଭୂମି ସ୍ୱରୂପ ( ସର୍ବଭୂତମୟ ) ଦୁରାରାଧ୍ୟ ( ଦୁର୍ଲଭ ) ଭଗବାନ୍ ଶ୍ରୀହରିଙ୍କୁ ଆରାଧନା କରି ତାହାଙ୍କର ପରମପଦ ଲାଭ କରିଅଛ । ୧୧ ।

ଶ୍ରୀମନୁରୁବାଚ—
ଶୁଣ ତୁ ମୋର ଉପଦେଶ
ହେ ବତ୍ସ ! ଛାଡ଼ ମନୁ ରୋଷ
ଏ ରୋଷ ଘୋର ତମଦ୍ୱାର
ଏ ନୋହେ ଉତ୍ତମ ବେହାର
ଯେ ରୋଷବଶେ ଜ୍ଞାନ ହାରି
ନିର୍ଦ୍ଦୋଷ ପୁଣ୍ୟଜନ ମାରି ।୭।
ଏ ଆମ୍ଭ କୁଳଧର୍ମ୍ମ ନୋହେ
ସାଧୁଙ୍କ ମଧ୍ୟେ ଦୋଷ ବହେ ।୮।

ଏକଇ ଜନ ଅପରାଧେ
ଅନେକ ମାରୁ କର୍ଷି ଯୁଦ୍ଧେ
ତୁ ଭ୍ରାତ ବଧେ କ୍ରୋଧ ବହି
ସାଧୁଙ୍କ ମାର୍ଗ ଏ ନୁହଇ
ବସ୍ତୁରି ଭାବ ଯାର ଦେହେ
ପ୍ରାଣିଙ୍କି ହୃଦେ ଦୟା ବହେ
ସମଦୃଷ୍ଟେ ସର୍ବଭୂତେ ଦେଖେ
ତାହାଙ୍କୁ ନାରାୟଣ ରଖେ

ହରି ପ୍ରସନ୍ନେ ପ୍ରାଣୀ ଦେହେ
ହିଂସକ ପ୍ରକୃତ ନ ବହେ
ନ ଲାଗେ ତ୍ରିଗୁଣ ବନ୍ଧନ
ଅନ୍ତେ ଲଭଇ ନିରଞ୍ଜନ
ତୁ ହରି ଭକ୍ତ ଶିରୋମଣି
ସର୍ବ ସମ୍ମତେ ପରମାଣି
ସାଧୁଜନଙ୍କ ବ୍ରତ କରି
କେପାରେ ଅଧର୍ମ୍ମ ଆଚରି ।୯-୧୧।

ସ ତ୍ୱଂ ହରେରନୁଧ୍ୟାତସ୍ତତ୍‌ପୁଂସାମପି ସମ୍ମତଃ ।
କଥଂ ତ୍ୱବଦ୍ୟଂ କୃତବାନନୁଶିକ୍ଷନ୍ ସତାଂ ବ୍ରତମ୍ । ୧୨ ।
ତିତିକ୍ଷୟା କରୁଣୟା ମୈତ୍ର୍ୟା ଚାଖିଳଜନ୍ତୁଷୁ ।
ସମତ୍ୱେନ ଚ ସର୍ବାତ୍ମା ଭଗବାନ୍ ସମ୍ପ୍ରସୀଦତି । ୧୩ ।
ସମ୍ପ୍ରସନ୍ନେ ଭଗବତି ପୁରୁଷଃ ପ୍ରାକୃତୈର୍ଗୁଣୈଃ ।
ବିମୁକ୍ତୋ ଜୀବନିର୍ମୁକ୍ତୋ ବ୍ରହ୍ମନିର୍ବାଣମୃଚ୍ଛତି । ୧୪ ।
ଭୂତୈଃ ପଞ୍ଚଭିରାରବ୍ଧୈର୍ଯୋଷିତ୍ ପୁରୁଷ ଏବ ହି ।
ତୟୋର୍ବ୍ୟବାୟାତ୍ ସଂଭୂତିର୍ଯୋଷିତ୍‌ପୁରୁଷୟୋରିହ । ୧୫ ।
ଏବଂ ପ୍ରବର୍ତ୍ତତେ ସର୍ଗଃ ସ୍ଥିତିଃ ସଂଯମ ଏବ ଚ ।
ଗୁଣବ୍ୟତିକରାଦ୍‌ରାଜନ୍ ମାୟୟା ପରମାତ୍ମନଃ । ୧୬ ।

ତୁମ୍ଭେ ନିରନ୍ତର ଶ୍ରୀହରିଙ୍କ ହୃଦୟରେ ଅବସ୍ଥାନ କରୁଅଛ, ଏବଂ ହରିଭକ୍ତମାନେ ତୁମ୍ଭଙ୍କୁ ସାଧୁ ବୋଲି ମାନୁ ଅଛନ୍ତି, ତୁମ୍ଭେ ସାଧୁମାନଙ୍କର ଆଚରଣ ଶିକ୍ଷାକରି କପରି ଏପ୍ରକାର ନିନ୍ଦନୀୟ କର୍ମରେ ପ୍ରବୃତ୍ତ ହେଲ ? । ୧୨ ।

ଯେ ମହତ୍ ବ୍ୟକ୍ତିଙ୍କ ପ୍ରତି ତିତିକ୍ଷା ( ସହନଶୀଳତା ),ଅଧମଜନ ପ୍ରତିକରୁଣା, ସମାନ ବ୍ୟକ୍ତି ପ୍ରତି ମିତ୍ରତା ଏବଂ ସର୍ବପ୍ରାଣୀଙ୍କୁ ସମାନ ଭାବରେ ଦର୍ଶନ କରେ, ସର୍ବାନ୍ତର୍ଯାମୀ ଭଗବାନ୍ ତାହାପ୍ରତି ପ୍ରସନ୍ନ ହୋଇଥାନ୍ତି । ୧୩ ।

ଭଗବାନ୍ ସୁପ୍ରସନ୍ନ ହେଲେ ପୁରୁଷ ପ୍ରକୃତିଜାତ ଅହଂକାରାଦି ଗୁଣରୁ ମୁକ୍ତ ହୁଏ, ଯୁତରାଂ ଗୁଣର କାର୍ଯ୍ୟ ସ୍ୱରୂପ ଲିଙ୍ଗ ଦେହରୁ ମୁକ୍ତ ହୋଇ ସୁକ୍ଷ୍ମାତ୍ମକ ବ୍ରହ୍ମପଦ ସେ ପ୍ରାପ୍ତ ହୁଏ । ୧୪ ।

ପଞ୍ଚଭୂତ (କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ) ଦେହାକାରରେ ପରିଣତ ହୋଇ ସ୍ତ୍ରୀ ଓ ପୁରୁଷ ହୁଏ, ସ୍ତ୍ରୀ ପୁରୁଷଙ୍କର ସମ୍ମିଳନରେ ଏ ସଂସାରରେ ଅନ୍ୟ ସ୍ତ୍ରୀ ପୁରୁଷ ଉତ୍ପନ୍ନ ହୁଅନ୍ତି । ୧୫ ।

ହେ ରାଜନ୍ ! ଭଗବାନଙ୍କର ମାୟାଶକ୍ତିଗତ ସତ୍ତ୍ୱାଦିଗୁଣତ୍ରୟର ବିଭିନ୍ନ ପରିଣାମ ଅନୁସାରେ ପଞ୍ଚଭୂତଦ୍ୱାରା ଯେପରି ସୃଷ୍ଟିହୁଏ, ସେହିପରି ପାଳନ ଓ ଲୟ ମଧ୍ୟ ହୋଇଥାଏ । ୧୬ ।

ଯେ ପ୍ରାଣୀ ଆତ୍ମାଭାବେ ସୁଖୀ
ହରିଙ୍କି ସର୍ବଭୂତେ ଦେଖି
ବିଷ୍ଣୁର ଭକ୍ତି ହୃଦେ ଧରି
ଦୟା ତିତିକ୍ଷା ଜୀବେ କରି
ମଇତ୍ର ଭାବେ ଯାର ମନ
ତାହାକୁ ରକ୍ଷେ ଭଗବାନ
ହରି ପ୍ରସନ୍ନ ପୁରୁଷର
ପ୍ରକୃତି ବନ୍ଧ ହୋଏ ଦୂର
ଜୀବ ବନ୍ଧନୁଁ ମୁକ୍ତ ହୋଇ
ନିର୍ବାଣ ପଦେ ପଶେ ଯାଇଁ ।୧୪
ଏ ପଞ୍ଚଭୂତେ ଦେହ ବହି
ସ୍ତ୍ରିୟ ପୁରୁଷ ରୂପ ହୋଇ
ଏ ବେନି ସଙ୍ଗମରୁ କାଳେ
ରଜର ସଙ୍ଗେ ବୀର୍ଯ୍ୟ ମିଳେ
ସ୍ତ୍ରିୟ ପୁରୁଷ ଦେହ ବହି
ଇହ ସଂସାରେ ଜନମଇ
ଏମନ୍ତେ ସୃଷ୍ଟି ସ୍ଥିତି ନାଶ
ବିଷ୍ଣୁର ମାୟା ପରକାଶ ।୧୫।
ତହିଁ ନିମିତ୍ତ ମାତ୍ର ହୋଇ
ପରମ ଜୀବକୁ ଭଆଇ

ନିମିତ୍ତମାତ୍ରଂ ତତ୍ରାସୀନ୍ନିର୍ଗୁଣଃ ପୁରୁଷର୍ଷଭଃ ।
ବ୍ୟକ୍ତାବ୍ୟକ୍ତମିଦଂ ବିଶ୍ୱଂ ଯତ୍ର ଭ୍ରମତି ଲୌହବତ୍ । ୧୭ ।
ସ ଖଲ୍ୱିଦଂ ଭଗବାନ୍ କାଲଶକ୍ତ୍ୟା ଗୁଣପ୍ରବାହେଣ ବିଭକ୍ତବୀର୍ଯ୍ୟଃ ।
କରୋତ୍ୟକର୍ତ୍ତୈବ ନିହନ୍ତ୍ୟହନ୍ତା ଚେଷ୍ଟା ବିଭୂମ୍ନଃ ଖଲୁ ଦୁର୍ବିଭାବ୍ୟା । ୧୮ ।
ସୋଽନନ୍ତୋଽନ୍ତକରଃ କାଲୋଽନାଦିରାଦିକୃଦବ୍ୟୟଃ ।
ଜନଂ ଜନେନ ଜନୟନ୍ ମାରୟନ୍ ମୃତ୍ୟୁନାନ୍ତକମ୍ । ୧୯ ।
ନ ବୈ ସ୍ୱପକ୍ଷୋଽସ୍ୟ ବିପକ୍ଷ ଏବ ବା ପରସ୍ୟ ମୃତ୍ୟୋର୍ବିଶତଃ ସମଂ ପ୍ରଜାଃ ।
ତଂ ଧାବମାନମନୁଧାବନ୍ତ୍ୟନୀଶା ଯଥା ରଜାଂସ୍ୟନିଲଂ ଭୂତସଙ୍ଘାଃ । ୨୦ ।

---

ସୃଷ୍ଟି ପ୍ରଭୃତି କାର୍ଯ୍ୟରେ ସେହି ନିର୍ଗୁଣ ପୁରୁଷଶ୍ରେଷ୍ଠ ନିମିତ୍ତସ୍ୱରୂପ ଅଧିଷ୍ଠିତ, ଅୟସ୍କାନ୍ତ ମଣି ନିକଟରେ ଲୌହଯେପରି କ୍ରିୟାଶୀଳ ହୁଏ, ସେହିପରି ସମଗ୍ର ବିଶ୍ୱ ଭଗବାନଙ୍କ ଦ୍ୱାରା କ୍ରିୟାଶୀଳ ହୁଏ । ୧୭

( ଜଡ଼ାଦି ଦେହମାନଙ୍କରେ କିପରି ଗୁଣ ସମ୍ଭବ ହୁଏ ? ସେହି ପୁରୁଷଶ୍ରେଷ୍ଠ ଈଶ୍ୱର ନିମିତ୍ତ ସ୍ୱରୂପ ହେବାରୁ ଯେପରି ଅୟସ୍କାନ୍ତ ନିମିତ୍ତ ହେବାରୁ ଲୌହର ପରିବର୍ତ୍ତନ ଘଟେ, ସେହିପରି ତାଙ୍କର ନିମିତ୍ତ ହେତୁରୁ କାର୍ଯ୍ୟ କାରଣାତ୍ମକ ବିଶ୍ୱ ଭ୍ରମଣକରେ )—"ଶ୍ରୀଧରସ୍ୱାମୀ"

କାଳଶକ୍ତି ପ୍ରଭାବରେ ଗୁଣ ପ୍ରବାହରେ ଭଗବାନଙ୍କର ସୃଷ୍ଟ୍ୟାଦିଶକ୍ତି ବିଭକ୍ତ ହେବାରୁ ସେହିସର୍ବ ଶକ୍ତିମାନ୍ ଭଗବାନ୍ ଅକର୍ତ୍ତା ହୋଇ ମଧ୍ୟ ସେହି ବିଶ୍ୱାଦି ସୃଷ୍ଟି କରିଥାନ୍ତି, ଏବଂ ହନ୍ତା ନ ହୋଇ ମଧ୍ୟ ବିନାଶ କରିଥାନ୍ତି, ସେହି ବିଶ୍ୱରୂପୀ ଭଗବାନଙ୍କର କାଳଶକ୍ତି ଅତ୍ୟନ୍ତ ଅଚିନ୍ତ୍ୟନୀୟ । ୧୮ ।

ନିତ୍ୟ ପୁରୁଷ ଭଗବାନ୍ ସ୍ୱୟଂ ଅନାଦି (ଜନ୍ମରହିତ) ଅନନ୍ତ (ବିନାଶରହିତ) ଏବଂ ଅବ୍ୟୟ (କ୍ଷୟ ରହିତ ) ହେଲେହେଁ ପିତ୍ରାଦିଦ୍ୱାରା ପୁତ୍ରାଦିଙ୍କୁ ଜନ୍ମାଇ ସୃଷ୍ଟିକର୍ତ୍ତା ରୂପେ ପରିଚିତ । ସେ ମୃତ୍ୟୁଦ୍ୱାରା ଚୌରାଦିମାନଙ୍କୁ ବିନାଶକରି ନାଶକର୍ତ୍ତା ବୋଲନ୍ତି । ୧୯ ।

ମୃତ୍ୟୁତୁଲ୍ୟ ସେହି ଭଗବାନଙ୍କର ସ୍ୱପକ୍ଷ ବା ବିପକ୍ଷ କେହି ନାହିଁ । ସେ ସମାନଭାବରେ ସର୍ବ ଜୀବରେ ପ୍ରବେଶ କରିଥାନ୍ତି । ଧୂଳିକଣାମାନ ଯେପରି ପ୍ରବହମାନ ବାୟୁର ଅନୁଗାମୀ ହୁଏ,ସେହିପରି ଜୀବ ସମୂହ ମଧ୍ୟ ଭଗବାନଙ୍କର ଅନୁଗାମୀ ହୋଇଥାନ୍ତି । ୨୦ ।

---

ମାୟାରେ ଭ୍ରମାଏ ଜଗତ
ଲୌହକୁ ଯେହ୍ନେ ଅୟସ୍କାନ୍ତ ।୧୭
ସେ ହରି କାଳ ଶକ୍ତି ରୂପୀ
ନିଜ ମାୟାରେ ବିଶ୍ୱବ୍ୟାପୀ
ସର୍ବ କରଇ ସର୍ବ ହରେ
ଅକର୍ତ୍ତାରୂପେ ସେ ବିହରେ
ପ୍ରବାହେ ଯେହ୍ନେ ବୃକ୍ଷରାଶି
ଜଳର ବଳେ ଯାନ୍ତି ଭାସି

ଏମନ୍ତ କାଳ ଚେଷ୍ଟା ବଳେ
ପ୍ରାଣୀ ଭ୍ରମନ୍ତି ଅବହେଳେ ।୧୮।
ସେ କାଳ ଅନାଦି ଅନନ୍ତ
ଅବ୍ୟୟ, କରେ ଆଦି ଅନ୍ତ
ଜନେ ଜନଙ୍କୁ ଜନମାଇ
ମରଣେ ତାହାଙ୍କୁ ମାରଇ ।୧୯।
ସପକ୍ଷ ବିପକ୍ଷ ଏ ଦୁଇ
ତାର ସ୍ୱଭାବେ ନ ଘଟଇ

ପ୍ରଜାଏ ତାହାରଆୟତରେ
ସମେ ବସନ୍ତି ଏ ଜଗତେ
ଧୂଳିଏ ଯେହ୍ନେ ବାତ ବଳେ
ଉଡ଼ି ପଶନ୍ତି ଅନ୍ତରାଳେ
କର୍ମ୍ମ ଅଧୀନ ପ୍ରାଣୀମାନେ
ତା ପଛେ ଧାମନ୍ତି ତେସନେ ।୨୦।

ଆୟୁଷୋଽପଚୟଂ ଜନ୍ତୋସ୍ତଥୈବୋପଚୟଂ ବିଭୁଃ ।
ଉଭାଭ୍ୟାଂ ରହିତଃ ସ୍ୱସ୍ଥୋ ଦୁଃସ୍ଥସ୍ୟ ବିଦଧାତ୍ୟସୌ । ୨୧ ।
କେଚିତ୍‌କର୍ମ ବଦନ୍ତ୍ୟେନଂ ସ୍ୱଭାବମପରେ ନୃପ ।
ଏକେ କାଳଂ ପରେ ଦୈବଂ ପୁଂସଃ କାମମୁତାପରେ । ୨୨ ।
ଅବ୍ୟକ୍ତସ୍ୟାପ୍ରମେୟସ୍ୟ ନାନାଶକ୍ତ୍ୟୁଦୟସ୍ୟ ଚ ।
ନ ବୈ ଚିକୀର୍ଷିତଂ ତାତ କୋ ବେଦାଥ ସ୍ୱସମ୍ଭବମ୍ । ୨୩ ।
ନ ଚୈତେ ପୁତ୍ରକ ଭ୍ରାତୁର୍ହନ୍ତାରୋ ଧନଦାନୁଗାଃ ।
ବିସର୍ଗାଦାନୟୋସ୍ତାତ ପୁଂସୋ ଦୈବଂ ହି କାରଣମ୍ । ୨୪ ।
ସ ଏବ ବିଶ୍ୱଂ ସୃଜତି ସ ଏବାବତି ହନ୍ତି ଚ ।
ତଥାପି ହ୍ୟନହଂକାରୋ ନାଜ୍ୟତେ ଗୁଣକର୍ମଭିଃ । ୨୫ ।

---

ସର୍ବଶକ୍ତିମାନ କାଳ ଅପଚୟ ବା ଉପଚୟ ବର୍ଜ୍ଜିତହୋଇ ନିଜଠାରେ ଅବସ୍ଥାନ କରି କର୍ମାଧୀନ ଜୀବଗଣଙ୍କର ଅକାଳମୃତ୍ୟୁ କରୁଅଛନ୍ତି; ଏବଂ କାହାକୁ ମଧ୍ୟ କାଳମୃତ୍ୟୁରୁ ରକ୍ଷା କରୁଅଛନ୍ତି ।୨୧।

ହେ ନୃପ ! ମୀମାଂସକଗଣ ଏହି କାଳକୁ 'କର୍ମ' ସ୍ୱରୂପ ବୋଲି କହନ୍ତି, କେହି କେହି (ଚାର୍ବାକପ୍ରଭୃତି) ଏହାକୁ 'ସ୍ୱଭାବ' ବୋଲି କହନ୍ତି, କେହି (ଜ୍ୟୋତିର୍ବିଦ୍‌ମାନେ) ଏହାକୁ ଗ୍ରହାଦି ଦେବତା ବୋଲି, ଅନ୍ୟ କେହି (ବାତ୍ସାୟନ ପ୍ରଭୃତି) କାମରୂପ ବୋଲି ଅଭିହିତ କରନ୍ତି । ୨୨ ।

ହେ ବତ୍ସ (ଧ୍ରୁବ) ! ଈଶ୍ୱର ଅବ୍ୟକ୍ତ (ଇନ୍ଦ୍ରିୟାଦିଅଗୋଚର), ଅପ୍ରମେୟ (ଅଭ୍ରାନ୍ତରୂପେ ନିର୍ଣ୍ଣିତ ହେବାର ଅଯୋଗ୍ୟ ), ଏବଂ କାଳ ପ୍ରଭୃତି ବିବିଧ ଶକ୍ତିର ପ୍ରକାଶକ । ତାଙ୍କର କଣ କରିବାକୁ ଇଚ୍ଛା, ତାହା କେହି ଅନୁଭବ କରି ନ ପାରେ । ସୁତରାଂ ନିଜର ଅଭିଳଷିତ କାର୍ଯ୍ୟର ମୂଳକାରଣ ସ୍ୱରୂପ ଈଶ୍ୱରଙ୍କୁ ଯଥାର୍ଥରୂପେ କିଏ ଜାଣି ପାରିବ ? । ୨୩ ।

ହେ ପୁତ୍ରକ (ବାତ୍ସଲ୍ୟ ସ୍ନେହାସ୍ପଦ) ! ଏହି କୁବେରାନୁଚର ଯକ୍ଷଗଣ ତୁମ୍ଭର ଭ୍ରାତୃହନ୍ତା ନୁହନ୍ତି, ଜୀବର ସୃଷ୍ଟି ସମ୍ବନ୍ଧେ ଏକମାତ୍ର ଈଶ୍ୱରହିଁ କାରଣ । ୨୪ ।

ଭଗବାନ୍ ବିଶ୍ୱର ସୃଷ୍ଟି, ସ୍ଥିତି ଓ ଲୟ କରୁଅଛନ୍ତି ସତ୍ୟ କିନ୍ତୁ ତାଙ୍କର କୌଣସି ଅହଂକାର ନ ଥିବାରୁ ସେ ଗୁଣ ଓ କର୍ମଦ୍ୱାରା ଲିପ୍ତ ନୁହନ୍ତି । ୨୫ ।

---

ଜନ୍ତୁ ଆୟୁଷ ହାନି ଲାଭ
ଏ ଦୁଇ ତାହାର ସ୍ୱଭାବ ।୨୧।
କେହି ବୋଲନ୍ତି ଏ ଜଗତ
ଅଟଇ କର୍ମ୍ମର ଆୟତ୍ତ
କେ ବୋଲେ ସ୍ୱଭାବ ଏହାର
କେ ବୋଲେ କାଳର ସଞ୍ଚାର
ଅପରେ ଦଇବ କେ କହି
କେ କହେ କାମରୂପ ହୋଇ

ଅବିଦ୍ୟା କାମ ସଙ୍ଗେ ଜଡ଼ି
ଘୋର ଅନ୍ଧାରେ ପ୍ରାଣୀ ପଡ଼ି
ଭ୍ରମନ୍ତି କାଳ ବାୟୁ ବଳେ
କଲ୍ଲୋଳ ଯେହ୍ନେ ସିନ୍ଧୁ ଜଳେ
ଅବ୍ୟକ୍ତ ଅପ୍ରମେୟ ସୀମା
କେଜାଣିପାରେତାମହିମା ।୨୨।୨୩
ଏଣୁ ତୋ ଭ୍ରାତର ମରଣ
ଗୁହ୍ୟକ ନୁହନ୍ତି କାରଣ

ଦଇବବଳ ସେ ପ୍ରମାଣ
ଏ କଥା ନିଶ୍ଚୟ ତୁ ଜାଣ ।୨୪
ସ୍ୱମାୟା ଶକ୍ତିଯୁକ୍ତେ ସେହି
ସର୍ଜ୍ଜଇ ପାଳଇ ହରଇ

ଏଷ ଭୂତାନି ଭୂତାତ୍ମା ଭୂତେଶୋ ଭୂତଭାବନଃ ।
ସ୍ୱଶକ୍ତ୍ୟା ମାୟୟା ଯୁକ୍ତଃ ସୃଜତ୍ୟତ୍ତି ଚ ପାତି ଚ । ୨୬ ।
ତମେବ ମୃତ୍ୟୁମମୃତଂ ତାତ ଦୈବଂ ସର୍ବାତ୍ମନୋପେହି ଜଗତ୍ ପରାୟଣମ୍ ।
ଯସ୍ମୈ ବଳିଂ ବିଶ୍ୱସୃଜୋ ହରନ୍ତି ଗାବୋ ଯଥୋତା ନସି ଦାମଯନ୍ତ୍ରିତାଃ । ୨୭ ।
ଯଃ ପଞ୍ଚବର୍ଷୋ ଜନନୀଂ ତ୍ୱଂ ବିହାୟ ମାତୁଃ ସପତ୍ନ୍ୟା ବଚସା ଭିନ୍ନମର୍ମା ।
ବନଂ ଗତସ୍ତପସା ପ୍ରତ୍ୟଗକ୍ଷମାରାଧ୍ୟ ଲେଭେ ମୂର୍ଦ୍ଧ୍ନି ପଦଂ ତ୍ରିଲୋକ୍ୟାଃ । ୨୮ ।
ତମେନମଙ୍ଗାତ୍ମନି ମୁକ୍ତବିଗ୍ରହେ ବ୍ୟପାଶ୍ରିତଂ ନିର୍ଗୁଣମେକମକ୍ଷରମ୍ ।
ଆତ୍ମାନମନ୍ୱିଚ୍ଛ ବିମୁକ୍ତମାତ୍ମଦୃଗ୍ୟସ୍ମିନ୍ନିଦଂ ଭେଦମସତ୍ ପ୍ରତୀୟତେ । ୨୯ ।

---

ଭଗବାନ୍ ସର୍ବ ପ୍ରାଣୀଙ୍କର ଅନ୍ତର୍ଯ୍ୟାମୀ, ସର୍ବଭୂତର ନିୟନ୍ତା, ଭୂତ ଭାବନ ( ଭୂତୋତ୍ପାଦକ ); ସେ ନିଜ ଶକ୍ତିଦ୍ୱାରା ମାୟାକୁ ଆଶ୍ରୟକରି ସୃଷ୍ଟି ପାଳନ, ଓ ସଂହାର କରିଥାନ୍ତି । ୨୬ ।

ହେ ବତ୍ସ ! ବ୍ରହ୍ମାଦି ପ୍ରଜାପତିଗଣ ନାସିକାରେ ରଜ୍ଜୁ ବନ୍ଧନ ହୋଇ ଚାଳିତ ହେଉଥିବା ଗୋତୁଲ୍ୟ ଯାହାଙ୍କର ନାମ ଗୁଣରେ ଆକୃଷ୍ଟ ହୋଇ ଯାହାଙ୍କୁ ପୂଜୋପହାର ଅର୍ପଣ କରିଥାନ୍ତି, ସେହିଭଗବାନ୍ ଅଭକ୍ତମାନଙ୍କ ପ୍ରତି ଯମସ୍ୱରୂପ ହେଲେ ମଧ୍ୟ ଭକ୍ତମାନଙ୍କ ପକ୍ଷରେ ଅମୃତ ତୁଲ୍ୟ, ଅତଏବ ଏ ବ୍ରହ୍ମାଣ୍ଡର ଏକମାତ୍ର ଶ୍ରେଷ୍ଠ ଆଶ୍ରୟ ସ୍ୱରୂପ ସେହି ଶ୍ରେଷ୍ଠଦେବଙ୍କୁ ସର୍ବାନ୍ତକରଣରେ ଭଜନ କର । ୨୭ ।

ତୁମ୍ଭେ ପାଞ୍ଚବର୍ଷ ବୟଃକ୍ରମ କାଳରେ ବିମାତାର ବାକ୍ୟବାଣରେ ବିଦ୍ଧ ହୋଇ ନିଜର ମାତା ସୁନୀତିଙ୍କୁ ସୁଦ୍ଧା ପରିତ୍ୟାଗ କରି ବନଗମନ ପୂର୍ବକ ତପସ୍ୟା ଦ୍ୱାରା, ( ଯାହାଙ୍କ କୃପାରେ ସାଧକର ଇନ୍ଦ୍ରିୟମାନ ଆତ୍ମାଭିମୁଖୀ ହୁଏ, ) ସେହି ଭଗବାନଙ୍କୁ ଆରାଧନା କରି ତ୍ରିଜଗତର ମସ୍ତକୋପରି ବା ସର୍ବଶ୍ରେଷ୍ଠ ଲୋକରେ ସ୍ଥାନ ଲାଭକରିବାର ଅଧିକାରୀ ହୋଇଅଛ, ତୁମ୍ଭେ ଭଗବାନଙ୍କୁ ଆଶ୍ରୟକର ।୨୮।

ହେ ଅଙ୍ଗ (ଧ୍ରୁବ) ! ଯେଉଁ ଭଗବାନଙ୍କୁ ଲାଭ କରିପାରିଲେ ଏହି ଶତ୍ରୁ ମିତ୍ରାଦି ସଙ୍କୁଳ ଜଗତ ନିତାନ୍ତ ଅସତ୍ ବୋଲି ପ୍ରତୀୟମାନ ହୁଏ, ତୁମ୍ଭେ ଆତ୍ମଦୃଷ୍ଟିପରାୟଣ ହୋଇ ସେହି ନିର୍ଗୁଣ ନିତ୍ୟମୁକ୍ତ ଅଦ୍ୱିତୀୟ ଭଗବାନଙ୍କୁ ଆଶ୍ରୟ କର । ଯେତେବେଳେ ତୁମ୍ଭର ଅନ୍ତରରେ କୌଣସି ବିରୋଧ ନଥିଲା, ସେତେବେଳେ ଅତିଶୟ ବାତ୍ସଲ୍ୟ ବଶତଃ ସେ ତହିଁରେ ଅଧିଷ୍ଠାନ କରୁଥିଲେ । ୨୯ ।

---

ଏଣୁ ସକଳ ଭୂତଙ୍କର
ଭୂତଭାବନ ଚକ୍ରଧର ।୨୫,୨୬।
ଏଣୁ ସେ କାଳମଧ୍ୟେ ଥାଇ
ଦେବେ ପୂଜନ୍ତି ବଳି ଦେଇ
ନାସାଭେଦିତ ଗାବ ଯେହ୍ନେ
ଭ୍ରମନ୍ତି ଦାମିନୀ ବନ୍ଧନେ
ହେ ତାତ ତାହାକୁ ଶରଣ
ପଶ ତୁ ହୋଇ ଏକ ମନ । ୨୭।

ଜନନୀ ସପତ୍ନୀ ବଚନେ
ମର୍ମ୍ମଭେଦିଲା ତୋର ମନେ
ବନେ ପଶିଲୁ ତପ ଆଶେ
ସ୍ୱଭାବେ ତୁ ପାଞ୍ଚ ବରଷେ
ବିଷ୍ଣୁ ଆରାଧି ତପବଳେ
ବସିବୁ ଗଗନମଣ୍ଡଳେ
ତ୍ରୈଲୋକ୍ୟ ଊର୍ଦ୍ଧ୍ୱପଦ ଗତେ
ବସିବୁ କଳ୍ପ ପରିଯନ୍ତେ । ୨୮।

ଏ ମାୟାମୟ ମୋହପାଶ
ଛେଦନ୍ତି ଭବବନ୍ଧ ତ୍ରାସ
ଏ ବର ଯା ତହୁଁ ଲଭିଲୁ
ପ୍ରତ୍ୟକ୍ଷେ ବିଷ୍ଣୁଙ୍କୁ ଦେଖିଲୁ
ଶତ୍ରୁ ତାହାଙ୍କୁ ଏବେ ଭଜ
ଏ ଘୋରତମ ବେଗେ ତେଜ
ଯାହାକୁ ଦେଖି ପ୍ରାଣୀ ଡରେ
ସେ ପ୍ରାଣୀ ଜୀବଥାଉଁ ମରେ

ତ୍ୱଂ ପ୍ରତ୍ୟଗାତ୍ମନି ତଦା ଭଗବତ୍ୟନନ୍ତ ଆନନ୍ଦମାତ୍ର ଉପପନ୍ନସମସ୍ତଶକ୍ତୌ ।
ଭକ୍ତିଂ ବିଧାୟ ପରମାଂ ଶନକୈରବିଦ୍ୟାଗ୍ରନ୍ଥିଂ ବିଭେତ୍ସ୍ୟସି ମମାହମିତି ପ୍ରରୂଢମ୍ ।୩୦।

ସଂଯଚ୍ଛ ରୋଷଂ ଭଦ୍ରଂ ତେ ପ୍ରତୀପଂ ଶ୍ରେୟସାଂ ପରମ୍ ।
ଶ୍ରୁତେନ ଭୂୟସା ରାଜନ୍ନଗଦେନ ଯଥାମୟମ୍ । ୩୧ ।
ଯେନୋପସୃଷ୍ଟାତ୍ ପୁରୁଷାଲ୍ଲୋକ ଉଦ୍‌ୱିଜତେ ଭୃଶମ୍ ।
ନ ବୁଧସ୍ତଦ୍‌ୱଶଂ ଗଚ୍ଛେଦିଚ୍ଛନ୍ନଭୟମାତ୍ମନଃ । ୩୨ ।
ହେଳନଂ ଗିରିଶଭ୍ରାତୁର୍ଧନଦସ୍ୟ ତ୍ୱୟା କୃତମ୍ ।
ଯଜ୍ଜଘ୍ନିବାନ୍ ପୁଣ୍ୟଜନାନ୍ ଭ୍ରାତୃଘ୍ନାନିତ୍ୟମର୍ଷିତଃ । ୩୩ ।
ତଂ ପ୍ରସାଦୟ ବତ୍ସାଶୁ ସନ୍ନତ୍ୟା ପ୍ରଶ୍ରୟୋକ୍ତିଭିଃ ।
ନ ଯାବନ୍ମହତାଂ ତେଜଃ କୁଲଂ ନୋଽଭିଭବିଷ୍ୟତି । ୩୪ ।

---

ସର୍ବାନ୍ତର୍ଯ୍ୟାମୀ ଶୁଦ୍ଧ ଆନନ୍ଦସ୍ୱରୂପ ସର୍ବଶକ୍ତିମାନ୍ ଭଗବାନ୍ ଶ୍ରୀହରିଙ୍କ ପ୍ରତି ଐକାନ୍ତିକ ଭକ୍ତିକଲେ ତୁମ୍ଭେ ତତ୍‌କ୍ଷଣାତ୍ 'ଅହଂଭାବ' ଦ୍ୱାରା ପ୍ରକାଶିତ ମୋହବନ୍ଧନଙ୍କୁ ଛେଦନ କରିପାରିବ । ୩୦ ।

ହେ ରାଜନ୍ ! ଯେପରି ଔଷଧ ଦ୍ୱାରା ରୋଗ ପ୍ରଶମିତ ହୁଏ, ସେହିପରି ମୋର ଉପଦେଶ ବାକ୍ୟ ଦ୍ୱାରା ତୁମର କ୍ରୋଧ ସଂଯମନ ହୁଏ, କାରଣ କ୍ରୋଧ ମଙ୍ଗଳ ଲାଭ ପକ୍ଷରେ ଅତ୍ୟନ୍ତ ପ୍ରତିକୂଳ; ତୁମର ମଙ୍ଗଳ ହେଉ । ୩୧ ।

କ୍ରୋଧ ପରିବ୍ୟାପ୍ତ ବ୍ୟକ୍ତିକୁ ଲୋକ ଅତ୍ୟନ୍ତ ଭୟ କରେ, ଅତଏବ ଯେଉଁ ବ୍ୟକ୍ତି ଇଚ୍ଛାକରେ 'ମୋଦ୍ୱାରା କେହି ଭୀତ ନ ହୁଅନ୍ତୁ'—(ଏହିପରି ନିଜର ମଙ୍ଗଳ ଇଚ୍ଛାକରେ), ସେପରି ବିଜ୍ଞବ୍ୟକ୍ତି ପକ୍ଷରେ କ୍ରୋଧପରବଶ ହେବା ଉଚିତ ନୁହେଁ । ୩୨ ।

ତୁମ୍ଭେ ଶିବଭ୍ରାତା କୁବେରଙ୍କୁ ଅବଜ୍ଞା କରିଅଛ, କାରଣ ଯକ୍ଷମାନଙ୍କୁ ଭ୍ରାତୃହନ୍ତା ମନେକରି କ୍ରୋଧବଶତଃ ସେମାନଙ୍କୁ ବଧ କରିଅଛ । ୩୩ । *

ହେ ବତ୍ସ ତୁମ୍ଭେ ଶୀଘ୍ର କୁବେରଙ୍କୁ ସମ୍ୟକପ୍ରକାର ପ୍ରଣତି ପୂର୍ବକ ପ୍ରୀତିସମ୍ଭାଷଣ ଦ୍ୱାରା ପ୍ରସନ୍ନ କର, ଯେପରି ତାଙ୍କ ତେଜରେ ଆମ୍ଭମାନଙ୍କର ବଂଶ କୌଣସିପ୍ରକାରେ ହାନିଯୁକ୍ତ ନ ହୁଅନ୍ତି । ୩୪ ।

| | | |
|---|---|---|
| ଈଶ୍ୱର ମିତ୍ର ଏ କୁବେର | ଏହାର ସ୍ୱଜନଙ୍କୁ ମାରି | ଏବେ ଏହାକୁ ପ୍ରୀତି କର |
| ଏହାକୁ ଅବଜ୍ଞା ତୋହର | ଅନ୍ୟାୟ ପଥକୁ ଆଚରି | ଯେବେ ହୋ କୁଳଭୟ ତୋର ।୩୪ |

* । କୁବେର ଶିବଙ୍କର ଭ୍ରାତା ହେଲେ କିପରି ? ସାକ୍ଷାତ୍‌ଭାବରେ ଏମାନଙ୍କ ମଧ୍ୟରେ ଭ୍ରାତୃ ସମ୍ବନ୍ଧ ନ ଥିଲା, କିନ୍ତୁ ନିମ୍ନପ୍ରକାରେ ସେମାନଙ୍କ ମଧ୍ୟରେ ଭ୍ରାତୃସମ୍ବନ୍ଧ ସ୍ଥାପିତ ହୋଇଥିଲା । ବ୍ରହ୍ମାଙ୍କ ପୁତ୍ର ପୁଲସ୍ତ୍ୟ, ପୁଲସ୍ତ୍ୟଙ୍କର ପୁତ୍ର ବିଶ୍ରବା, ତାହାଙ୍କ ପୁତ୍ର କୁବେର । ବ୍ରହ୍ମାଙ୍କପୁତ୍ର ଦକ୍ଷ, ଦକ୍ଷଙ୍କ କନ୍ୟା ଅଦିତି, ଅଦିତିଙ୍କ ଗର୍ଭରେ ଦେବତାମାନେ ଜନ୍ମଗ୍ରହଣ କରିଥିଲେ । ସୁତରାଂ ମହାଦେବ ଅଦିତିଙ୍କ ପୁତ୍ରରୂପେ ଜନ୍ମ ଗ୍ରହଣ କରିଥିଲେ, ଏହି ପ୍ରକାରେ ଶିବ ଓ କୁବେର ଉଭୟ ଭ୍ରାତା ।

ଏବଂ ସ୍ୱାୟମ୍ଭୁବଃ ପୌତ୍ରମନୁଶାସ୍ୟ ମନୁର୍ଦ୍ଧ୍ରୁବମ୍ ।
ତେନାଭିବନ୍ଦିତଃ ସାକମୃଷିଭିଃ ସ୍ୱପୁରଂ ଯଯୌ । ୩୫ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଧ୍ରୁବଚରିତେ ମନୁବାକ୍ୟଂ ନାମୈକାଦଶୋଽଧ୍ୟାୟଃ । ୧୧ ।

---

ସ୍ୱାୟମ୍ଭୁବମନୁ ପୌତ୍ର ଧ୍ରୁବଙ୍କୁ ପୂର୍ବୋକ୍ତରୂପେ ଉପଦେଶ ପ୍ରଦାନକରି ଧ୍ରୁବଙ୍କ କର୍ତ୍ତୃକ ଅଭିନନ୍ଦିତ ହୋଇ ମୁନିମାନଙ୍କ ସହିତ ନିଜଭବନକୁ ପ୍ରସ୍ଥାନ କରିଥିଲେ । ୩୫ ।

---

ଶ୍ରୀମୈତ୍ରେୟ ଉବାଚ—
ଏମନ୍ତ ସ୍ୱାୟମ୍ଭୁବ ମନୁ
ପ୍ରବୋଧ କଲେ ପୌତ୍ରମନ୍ୟୁ
ଧ୍ରୁବଙ୍କୁ ଆଲିଙ୍ଗନ କଲେ
ମୁନିଙ୍କ ସଙ୍ଗେ ପୁରେ ଗଲେ । ୩୫
ସେ ମୁନି ଚରଣାରବିନ୍ଦେ
ସୁଜନେ ନମ ହେ ଆନନ୍ଦେ
ଚତୁର୍ଥସ୍କନ୍ଧେ ଭାଗବତ
ହରି ମହିମା ସୁଚରିତ
ସୁଜନଜନ ଏଣେ ରସ
କହିଲି ଜଗନ୍ନାଥ ଦାସ



## ଦ୍ୱା ଦ ଶ ଅ ଧ୍ୟା ୟ ।

ଦ୍ୱାଦଶେ ଧନଦେନାଭିନନ୍ଦିତଃ ପୁରମାଗତଃ ।
ଯଜ୍ଞୈରିଷ୍ଟ୍ୱା ହରେଃ ସ୍ଥାନମାରୁରୋହେତି କୀର୍ତ୍ତ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ଧ୍ରୁବଂ ନିବୃତ୍ତଂ ପ୍ରତିବୁଧ୍ୟ ବୈଶସାଦପେତମନ୍ୟୁଂ ଭଗବାନ୍ ଧନେଶ୍ୱରଃ ।
ତତ୍ରାଗତଶ୍ଚାରଣ ଯକ୍ଷକିନ୍ନରୈଃ ସଂସ୍ତୂୟମାନୋ ନ୍ୟବଦତ୍ କୃତାଞ୍ଜଳିମ୍ । ୧ ।

ଶ୍ରୀଧନଦ ଉବାଚ ।

ଭୋ ଭୋଃ କ୍ଷତ୍ରିୟଦାୟାଦ ପରିତୁଷ୍ଟୋଽସ୍ମି ତେଽନଘ ।
ଯତ୍ ତ୍ୱଂ ପିତାମହାଦେଶାଦ୍ବୈରଂ ଦୁସ୍ତ୍ୟଜମତ୍ୟଜଃ । ୨ ।

---

### ଧ୍ରୁବଙ୍କର ବିଷ୍ଣୁଧାମ ପ୍ରାପ୍ତି ।

ଦ୍ୱାଦଶ ଅଧ୍ୟାୟରେ ଧ୍ରୁବଙ୍କର ବିଷ୍ଣୁଧାମ ପ୍ରାପ୍ତି ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀ ମୈତ୍ରେୟ କହିଲେ :—

ଅସୀମ ଐଶ୍ୱର୍ଯ୍ୟଶାଳୀ କୁବେର ଶୁଣିଲେ ଯେ ଧ୍ରୁବ କ୍ରୋଧ ପରିତ୍ୟାଗକରି ଯକ୍ଷମାନଙ୍କ ବଧରୁ ବିରତ ହୋଇଅଛନ୍ତି, ଏହା ଶୁଣି ସେମାନେ ଧ୍ରୁବଙ୍କ ନିକଟକୁ ଆଗମନ କରିଥିଲେ । ସେତେବେଳେ ଚାରଣ ଯକ୍ଷ ଓ କିନ୍ନରମାନେ ବିଶେଷଭାବରେ ସ୍ତୁତି କରିଥିଲେ । ଧ୍ରୁବ କୃତାଞ୍ଜଳିପୂଟରେ ଅବସ୍ଥାନ କରୁଥିବାର ଦେଖି କୁବେର କହିଲେ । ୧ ।

ଶ୍ରୀକୁବେର କହିଲେ :—

ହେ ନିଷ୍ପାପ କ୍ଷତ୍ରିୟ କୁମାର ! ତୁମ୍ଭେ ଯେ ପିତାମହ ମନୁଙ୍କ ଆଦେଶରେ ପ୍ରବଳ ଶତ୍ରୁଭାବ ପରିତ୍ୟାଗ କରିଅଛ, ସେଥିପାଇଁ ମୁଁ ତୁମ୍ଭପ୍ରତି ଅତ୍ୟନ୍ତ ସନ୍ତୁଷ୍ଟ ହୋଇଅଛି । ୨ ।

---

କୁବେରୁଁ ପାଇ ସନମାନ, ଯଜ୍ଞେ ଆରାଧି ନାରାୟଣ । ଧ୍ରୁବ ପାଇଲେ ଧ୍ରୁବସ୍ଥାନ, ଦ୍ୱାଦଶ ଅଧ୍ୟାୟେ ବର୍ଣ୍ଣନ ।

ଶ୍ରୀ ମୈତ୍ରେୟ ଉବାଚ—

ଧ୍ରୁବର କୋପ ଯହୁଁ ଗଲା
କୁବେର ଭୁବନେ ଜାଣିଲା
ତକ୍ଷଣେ ଯକ୍ଷଗଣ ଘେନି
ଧ୍ରୁବ ସମୀପେ ଆସି ମିଳେ
ଅଞ୍ଜଳି କରି ତେଜି ପାଣି
କାକୁସ୍ତେ କହେ ମଞ୍ଜୁବାଣୀ । ୧ ।

ଶ୍ରୀ ଧନଦ ଉବାଚ —

ଆହେ କ୍ଷତ୍ରିୟ ଚୂଡ଼ାମଣି
ତୋର ମହିମା ମୁହିଁ ଶୁଣି
ମିଳିଲି ତୋହର ସମୀପେ
ଗୁହ୍ୟ କିନ୍ନର ଘେନି ସୁଖେ
ତୁ ଯେଣୁ ପିତାମହ ବୋଲେ
କୋପ ଛାଡ଼ିଲୁ ରିପୁ କୁଳେ ।୨।

ନ ଭବାନବଧୀଦ୍‌ଯକ୍ଷାନ୍ ନ ଯକ୍ଷା ଭ୍ରାତରଂ ତବ ।
କାଲ ଏବ ହି ଭୂତାନାଂ ପ୍ରଭୁରପ୍ୟୟଭାବୟୋଃ । ୩ ।
ଅହଂ ତ୍ୱମିତ୍ୟପାର୍ଥା ଧୀରଜ୍ଞାନାତ୍ ପୁରୁଷସ୍ୟ ହି ।
ସ୍ୱାପ୍ନୀବାଭାତ୍ୟତଦ୍ଧ୍ୟାନାଦ୍‌ଯୟା ବନ୍ଧବିପର୍ଯ୍ୟୟୌ । ୪ ।
ତଦ୍‌ଗଚ୍ଛ ଧ୍ରୁବ ଭଦ୍ରଂ ତେ ଭଗବନ୍ତମଧୋକ୍ଷଜମ୍ ।
ସର୍ବଭୂତାତ୍ମଭାବେନ ସର୍ବଭୂତାତ୍ମବିଗ୍ରହମ୍ । ୫ ।
ଭଜସ୍ୱ ଭଜନୀୟାଙ୍ଘ୍ରିମଭବାୟ ଭବଚ୍ଛିଦମ୍ ।
ଯୁକ୍ତଂ ବିରହିତଂ ଶକ୍ତ୍ୟା ଗୁଣମଯ୍ୟାତ୍ମମାୟୟା । ୬ ।
ବୃଣୀହି କାମଂ ନୃପ ଯନ୍ମନୋଗତଂ ମତ୍ତସ୍ତ୍ୱମୌତ୍ତାନପଦେଽବିଶଙ୍କିତଃ ।
ବରଂ ବରାର୍ହୋଽମ୍ବୁଜନାଭପାଦୟୋରନନ୍ତରଂ ତ୍ୱାଂ ବୟମଙ୍ଗ ଶୁଶ୍ରୁମଃ । ୭ ।

---

ତୁମ୍ଭେ ଏହି ଯକ୍ଷମାନଙ୍କୁ ବଧ କରିନାହିଁ କିମ୍ବା ଯକ୍ଷମାନେ ତୁମ୍ଭର ଭ୍ରାତାଙ୍କୁ ବଧ କରିନାହାନ୍ତି, କାରଣ କାଳହିଁ ପ୍ରାଣୀମାନଙ୍କର ମୃତ୍ୟୁର ଓ ଜନ୍ମର ବିଧାନ କର୍ତ୍ତା ଅଟେ । ୩ ।

ଅଜ୍ଞାନ ବଶତଃ ସ୍ୱପ୍ନ ତୁଲ୍ୟ 'ମୁଁ ଓ ତୁମ୍ଭେ' ଏହିପରି ମିଥ୍ୟା ବୁଦ୍ଧି ଜନ୍ମେ ଏବଂ ସେହି ବୁଦ୍ଧି ହେତୁ ଦେହରେ ଅଭିମାନ ଜନ୍ମିବାରୁ ବନ୍ଧନ ଓ ଦୁଃଖ ଉପସ୍ଥିତ ହୁଏ । ୪ ।

ସୁତରାଂ ହେ ଧ୍ରୁବ ! ତୁମ୍ଭେ ଯାଅ, ତୁମ୍ଭର ମଙ୍ଗଳ ହେଉ, ତୁମ୍ଭେ ସଂସାରବନ୍ଧନରୁ ମୁକ୍ତହେବା ନିମନ୍ତେ ସର୍ବଜୀବରେ ସମଦର୍ଶୀ ରୂପେ ସେହି ବିଶ୍ୱରୂପୀ ସଂସାର ବନ୍ଧନ ଛେଦନକାରୀ ଭଗବାନ୍ ଶ୍ରୀହରିଙ୍କୁ ଭଜନ କର, ସେ ସଗୁଣ ଅବସ୍ଥାରେ ତ୍ରିଗୁଣାତ୍ମକ ମାୟାଶକ୍ତିଯୁକ୍ତ ଏବଂ ନିର୍ଗୁଣ ଅବସ୍ଥାରେ ତହିଁର ଅତୀତ, ଅତଏବ ତାହାଙ୍କର ପାଦପଦ୍ମ ସମସ୍ତଙ୍କର ସେବ୍ୟ, ତାହାଙ୍କୁ ଭଜନ କଲେ ତୁମ୍ଭର ମଙ୍ଗଳ ହେବ । ୫, ୬ ।

ହେ ଉତ୍ତାନପାଦନନ୍ଦନ ମହାରାଜ ଧ୍ରୁବ ! ଆମ୍ଭେମାନେ ଶୁଣିଅଛୁ ଆପଣ ଭଗବାନ୍ ଶ୍ରୀହରିଙ୍କ ପାଦପଦ୍ମଦ୍ୱୟର ସନ୍ନିକଟରେ ସ୍ଥାନ ପାଇ ଅଛନ୍ତି ଅତଏବ ଆପଣ ବର ଗ୍ରହଣ କରିବାର ଉପଯୁକ୍ତ ପାତ୍ର । ଅତଏବ ଆପଣଙ୍କ ଅନ୍ତରରେ ଯେଉଁ କାମନା ଅଛି ନିଃଶଙ୍କ ଚିତ୍ତରେ ସେହି ବର ପ୍ରାର୍ଥନା କରନ୍ତୁ । ୭ ।

---

ଭ୍ରାତ ମରଣେ କୋପବହି
ଗୁହ୍ୟକ ବିନାଶିଲୁ ତୁହି
କେହି କାହାର ହନ୍ତା ନୋହେ
ପ୍ରାଣି ଜୀବନ କାଳ ବହେ ।୩।
ଏ ଜୀବ ଅହଙ୍କାର ବହି
ଆତ୍ମାକୁ ବୋଲେ ତୁହି ମୁହିଁ
ଏ ନୋହେ ଜ୍ଞାନଙ୍କର ମତ
ଯାହାକୁ ପ୍ରସନ୍ନ ଅନନ୍ତ

ସଂସାର ଦେଖେ ସ୍ୱପ୍ନ ପ୍ରାୟେ
ସେ ମୋହେ ନୋହେ ସଂସାରଜୟେ ।୪
ତୋର ମଙ୍ଗଳ ହେଉ ନିତ୍ୟ
ଶ୍ରୀହରି ତୁ ଭଜ ଶୁଦ୍ଧ ଚିତ୍ତେ
ଯା ଶକ୍ତି ମାୟା ଗୁଣମୟୀ
ତହିଁରେ ଥାଇ ସେ ନ ଥାଇ
ସେ ହରି ପାଦେ ଆଶ୍ରେ କର
ଆତ୍ମାକୁ ସଂସାରୁ ଉଦ୍ଧର ।୫-୬

ତୋତେ ମୋ ହୃଦେ ଅନୁରାଗ
ଯେ ତୋର ଇଚ୍ଛା ବରମାଗ
ହରିଙ୍କ ହୃଦେ ପରମାଣୁ
ତୁ ବର ଯୋଗ୍ୟ ହେଉ ତେଣୁ ।୭

ଶ୍ରୀମୈତ୍ରେୟ ଉବାଚ ।

ସ ରାଜରାଜେନ ବରାୟ ଚୋଦିତୋ ଧ୍ରୁବୋ ମହାଭାଗବତୋ ମହାମତିଃ ।
ହରୌ ସ ବବ୍ରେଽଚଲିତାଂ ସ୍ମୃତିଂ ଯୟା ତରତ୍ୟଯତ୍ନେନ ଦୁରତ୍ୟୟଂ ତମଃ ।୮।
ତସ୍ୟ ପ୍ରୀତେନ ମନସା ତାଂ ଦତ୍ତ୍ୱୈଲବିଲସ୍ତତଃ ।
ପଶ୍ୟତୋଽନ୍ତର୍ଦଧେ ସୋଽପି ସ୍ୱପୁରଂ ପ୍ରତ୍ୟପଦ୍ୟତ । ୯ ।
ଅଥାଯଜତ ଯଜ୍ଞେଶଂ କ୍ରତୁଭିର୍ଭୂରିଦକ୍ଷିଣୈଃ ।
ଦ୍ରବ୍ୟକ୍ରିୟାଦେବତାନାଂ କର୍ମ କର୍ମଫଲପ୍ରଦମ୍ । ୧୦ ।

ଶ୍ରୀମୈତ୍ରେୟ କହିଲେ :—

କୁବେର ସେହି ପରମ ଭଗବତ ମହାମତି ଧ୍ରୁବଙ୍କୁ ବରଗ୍ରହଣ କରିବା ଲାଗି ଉତ୍ସାହିତ କରନ୍ତେ ଧ୍ରୁବ ବର ପ୍ରାର୍ଥନା କରିଥିଲେ ଯେ ଶ୍ରୀହରିଙ୍କ ପ୍ରତି ମୋର ଯେପରି ଅଚଳା ସ୍ମୃତି ଜନ୍ମେ ଏବଂ ତଦ୍ଦ୍ୱାରା ମୁଁ ଅନାୟାସରେ ଦୁସ୍ତର ଅଜ୍ଞାନରାଶି ପାର ହୋଇ ପାରେଁ ତାହା ପ୍ରାର୍ଥନା କରୁଅଛି । ୮ ।

କୁବେର ପ୍ରୀତମନରେ ଧ୍ରୁବଙ୍କୁ ସେହି ବର ପ୍ରଦାନ କରି ଅନ୍ତର୍ହିତ ହେଲେ ଏବଂ ଧ୍ରୁବ ନିଜ ପୁରକୁ ପ୍ରତ୍ୟାଗମନ କରିଥିଲେ । ୯ ।

ତଦନନ୍ତର ଧ୍ରୁବ ପ୍ରଚୁର ଦକ୍ଷିଣାବିଶିଷ୍ଟ ଯଜ୍ଞ ଦ୍ୱାରା ଯଜ୍ଞେଶ ବିଷ୍ଣୁଙ୍କୁ ଅର୍ଚ୍ଚନା କରିବାକୁ ଲାଗିଲେ । ସେହି ବିଷ୍ଣୁ ଦ୍ରବ୍ୟ, କ୍ରିୟା, ବେଦସମ୍ବନ୍ଧୀୟ କର୍ମମାଧ୍ୟ ଓ ତହିଁର ଫଳ ସ୍ୱରୂପ । ୧୦ ।



କୁବେରଙ୍କର ଧ୍ରୁବଙ୍କୁ ବରଦାନ ।

ଶ୍ରୀ ମୈତ୍ରେୟ ଉବାଚ—

ଏମନ୍ତେ କୁବେର ବଚନେ
ଧ୍ରୁବବୀର ତୋଷମନେ
ବୋଲଇ ହରି ପାଦଗତେ
ମୋହର ମନ ଥାଉ ନିତ୍ୟେ
ଅନ୍ୟ କାମନା ନାହିଁ ମୋର
ଯାର ପ୍ରସନ୍ନେ ତରୁ ପାର ।୮।

କୁବେର ବୋଲେ ଧ୍ରୁବ ସହି
ଏ ବର ଲଭ ଧ୍ରୁବ ତୁହି
ଏମନ୍ତ କହି ଧ୍ରୁବପାଶେ
କୁବେର ଗମିଲେ ଆକାଶେ ।୯।
ଏବେ ହୋ ଶୁଣ ମହୀପତି
ଧ୍ରୁବର ଅର୍ଜିଲା ବହୁତ
କୁବେର ଭୁବନୁଁ ସନ୍ତୋଷେ
ଧ୍ରୁବ ଗମିଲା ନିଜ ଦେଶେ

ନିଜ ଭୁବନେ ଧ୍ରୁବ ଯାଇଁ
ଋଦ୍ଧି ଜ ପୁଣ୍ୟେ ହିତ ଭାଇ
ଫଳକାମ କରି ଯଜ୍ଞମତେ
ପୂଜିଲ ବିଷ୍ଣୁ ଯାଦବତେ
ସର୍ବ ସମ୍ପଦ ଭୋଗ କଲା
ପ୍ରଭୁହେ ଲକ୍ଷ୍ମୀପ୍ରସାଦ ଭଲା ।୧୦।

ସର୍ବାତ୍ମନ୍ୟଚ୍ୟୁତେଽସର୍ବେ ତୀବ୍ରୌଘାଂ ଭକ୍ତିମୁଦ୍ଵହନ୍ ।
ଦଦର୍ଶାତ୍ମନି ଭୂତେଷୁ ତମେବାବସ୍ଥିତଂ ବିଭୁମ୍ । ୧୧ ।
ତମେବ ଶୀଲସମ୍ପନ୍ନଂ ବ୍ରହ୍ମଣ୍ୟଂ ଦୀନବତ୍ସଲମ୍ ।
ଗୋପ୍ତାରଂ ଧର୍ମସେତୂନାଂ ମେନିରେ ପିତରଂ ପ୍ରଜାଃ । ୧୨ ।
ଷଟ୍ତ୍ରିଂଶଦ୍ବର୍ଷସାହସ୍ରଂ ଶଶାସ କ୍ଷିତିମଣ୍ଡଲମ୍ ।
ଭୋଗୈଃ ପୁଣ୍ୟକ୍ଷୟଂ କୁର୍ବନ୍ନଭୋଗୈରଶୁଭକ୍ଷୟମ୍ । ୧୩ ।
ଏବଂ ବହୁସବଂ କାଲଂ ମହାତ୍ମାଽବିଚଲେନ୍ଦ୍ରିୟଃ ।
ତ୍ରିବର୍ଗୌପୟିକଂ ନୀତ୍ୱା ପୁତ୍ରାୟାଦାନ୍ନୃପାସନମ୍ । ୧୪ ।
ମନ୍ୟମାନ ଇଦଂ ବିଶ୍ୱଂ ମାୟାରଚିତମାତ୍ମନି ।
ଅବିଦ୍ୟାରଚିତସ୍ୱପ୍ନଗନ୍ଧର୍ବନଗରୋପମମ୍ । ୧୫ ।

---

ସର୍ବ ଉପାଧି ଶୂନ୍ୟ ସର୍ବଜୀବର ଆତ୍ମା ସ୍ୱରୂପ ସେହି ବିଷ୍ଣୁଙ୍କୁ ଭକ୍ତିକରି ତାହାଙ୍କୁ ନିଜଠାରେ ଏବଂ ସର୍ବଭୂତରେ ଅଧିଷ୍ଠିତ ଦେଖିଲେ । ୧୧ ।

ହେ ବତ୍ସ ! ଧ୍ରୁବଙ୍କୁ ସତ୍ସ୍ୱଭାବ ସମ୍ପନ୍ନ ଭଗବଦ୍ ପରାୟଣ, ଦୀନବତ୍ସଳ, ଧର୍ମମର୍ଯ୍ୟାଦାରକ୍ଷକ ଦେଖି ପ୍ରଜାମାନେ ତାହାଙ୍କୁ ପିତୃତୁଲ୍ୟ ମନେ କରୁଥିଲେ । ୧୨ ।

ଏହିପରି ଧ୍ରୁବ ବିଷୟଭୋଗଦ୍ୱାରା ପ୍ରାକ୍ତନ ଶୁଭଦୃଷ୍ଟମାନ ଏବଂ ଯଜ୍ଞାଦିଦ୍ୱାରା ଦୁରଦୃଷ୍ଟମାନ କ୍ଷୟକରି ଛତିଶହଜାର ବର୍ଷ ପୃଥିବୀ ଶାସନ କରିଥିଲେ । ୧୩ ।

ଏହିପରି ଜିତେନ୍ଦ୍ରିୟ ଓ ଶୁଦ୍ଧଚିତ୍ତ ଧ୍ରୁବ ଦେହାଦି ବିଶ୍ୱକୁ ଭଗବାନଙ୍କ ମାୟା ରଚିତ ଆତ୍ମାରେ ଅବିଦ୍ୟା କଳ୍ପିତ ସ୍ୱପ୍ନଦୃଷ୍ଟ ଗନ୍ଧର୍ବନଗରୀ ତୁଲ୍ୟ ମିଥ୍ୟାମନେକରି ବହୁଳ ଯଜ୍ଞ ଅନୁଷ୍ଠାନ ପୂର୍ବକ ତ୍ରିବର୍ଗ ସାଧନରେ ବହୁକାଳ ଅତିବାହିତ କରିଥିଲେ ଏବଂ ଅବଶେଷରେ ପୁତ୍ରଙ୍କୁ ରାଜସିଂହାସନ ପ୍ରଦାନ କରିଥିଲେ । ୧୪, ୧୫ ।

---

ସର୍ବପ୍ରକାରେ ବିଷ୍ଣୁପାଦେ
ଭକ୍ତି ସାଧିଲା ଅପ୍ରମାଦେ ।୧୧।
ପ୍ରଜାଏ ଧ୍ରୁବର ରାଜତ୍ୱେ
ଆନନ୍ଦେ ବର୍ତ୍ତିଲେ ଜଗତେ
ସ୍ୱଭାବେ ଧ୍ରୁବ ଧର୍ମଶୀଳ
ସୁସାଧୁ ବ୍ରାହ୍ମଣବତ୍ସଳ
ଧ୍ରୁବକୁ ପିତୃଭାବେ ଜାଣି
ସୁଖ ଦୁଃଖକୁ ନ ପ୍ରମାଣି

ଆନନ୍ଦ ମନ ଜନପ୍ରଜା
ଧ୍ରୁବ ସପତଦ୍ୱୀପେ ରାଜା ।୧୨।
ଛତିଶ ସହସ୍ର ବରଷ
ସ୍ୱଭାବେ ପରମ ଆସ୍ତୁଷ
ଆନନ୍ଦ ଚିତ୍ତେ ଭୋଗ କଲା
ଭୂମିମଣ୍ଡଳେ ମନୁବଳା
ସୁବର୍ଣ୍ଣ ଦାନ ଶୁଦ୍ଧଦେହେ
ପୁଣ୍ୟୋଦୟ ଅଘ କ୍ଷୟେ ।୧୩।

ତ୍ରିବିଧ ବର୍ଗ ଭୋଗକରି
ପୁତ୍ରକୁ ଅଧିରାଜ୍ୟ ବରି
ନୃପ ଆସନେ ବସାଇଲେ
ବିଧିରେ ଅଭିଷେକ କଲେ ।୧୪।
ଆତ୍ମ ସମ୍ପଦ ଆଦି ଯେତେ
ସ୍ୱପନପ୍ରାୟ ମଣି ଚିତ୍ତେ
ବିଷ୍ଣୁର ମାୟା ବଳ ଜାଣି
ଗନ୍ଧର୍ବପୁର ପ୍ରାୟ ମଣି

ଆତ୍ମସ୍ତ୍ର୍ୟପତ୍ୟସୁହୃଦୋ ବଲମୃଦ୍ଧକୋଷମନ୍ତଃପୁରଂ ପରିବିହାରଭୁବଶ୍ଚ ରମ୍ୟାଃ ।
ଭୂମଣ୍ଡଳଂ ଜଲଧିମେଖଲମାକଲଯ୍ୟ କାଲୋପସୃଷ୍ଟମିତି ସ ପ୍ରଯଯୌ ବିଶାଲାମ୍ । ୧୬
ତସ୍ୟାଂ ବିଶୁଦ୍ଧକରଣଃ ଶିବବାର୍ବିଗାହ୍ୟ ବଦ୍ଧାସନଂ ଜିତମରୁନ୍ମନସାହୃତାକ୍ଷଃ ।
ସ୍ଥୂଲେ ଦଧାର ଭଗବତ୍ପ୍ରତିରୂପ ଏତଦ୍ ଧ୍ୟାୟଂସ୍ତଦବ୍ୟବହିତୋ ବ୍ୟସୃଜତ୍ ସମାଧୌ ।୧୭
ଭକ୍ତିଂ ହରୌ ଭଗବତି ପ୍ରବହନ୍ନଜସ୍ରମାନନ୍ଦବାଷ୍ପକଲୟା ମୁହୁରର୍ଦ୍ଦ୍ୟମାନଃ ।
ବିକ୍ଲିଦ୍ୟମାନହୃଦୟଃ ପୁଲକାଚିତାଙ୍ଗୋ ନାତ୍ମାନମସ୍ମରଦସାବିତି ମୁକ୍ତଲିଙ୍ଗଃ । ୧୮ ।
ସ ଦଦର୍ଶ ବିମାନାଗ୍ର୍ୟଂ ନଭସୋଽବତରଦ୍ ଧ୍ରୁବଃ ।
ବିଭ୍ରାଜୟଦ୍ଦଶ ଦିଶୋ ରାକାପତିମିବୋଦିତମ୍ । ୧୯ ।
ତତ୍ରାନୁ ଦେବପ୍ରବରୌ ଚତୁର୍ଭୁଜୌ ଶ୍ୟାମୌ କିଶୋରାବରୁଣାମ୍ବୁଜେକ୍ଷଣୌ ।
ସ୍ଥିତାବବଷ୍ଟଭ୍ୟ ଗଦାଂ ସୁବାସସୌ କିରୀଟହାରାଙ୍ଗଦଚାରୁକୁଣ୍ଡଲୌ । ୨୦ ।

ସେ ଦେହ, ପୁତ୍ର, କଳତ୍ର, ମିତ୍ର, ସୈନ୍ୟ, ଧନପୂର୍ଣ୍ଣରାଜଭଣ୍ଡାର, ଅନ୍ତଃପୁର, ରମଣୀୟ ବିହାରଭୂମି, ସସାଗରା ପୃଥିବୀ ଏ ସମସ୍ତ ଅନିତ୍ୟ ଭାବି ଭଗବାନଙ୍କର ଆରାଧନା ନିମିତ୍ତ ବଦରିକାକୁ ଗମନକରିଥିଲେ ।୧୬

ସେହି ବଦରିକାଶ୍ରମରେ ଧ୍ରୁବ ପବିତ୍ର ଜଳରେ ସ୍ନାନ କରିଥିଲେ ଏବଂ ବିଶୁଦ୍ଧ ଅନ୍ତଃକରଣରେ ସ୍ୱସ୍ତିକାଦି ଆସନ ବନ୍ଧନ ପୂର୍ବକ ଜିତପ୍ରାଣ ହୋଇ ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ବିଷୟରୁ ନିବୃତ୍ତକରି ଭଗବାନଙ୍କର ପ୍ରତିନିଧି ସ୍ୱରୂପ ବିରାଟରୂପ ଧାରଣା କରିଥିଲେ, ଧ୍ୟାନ କରୁ କରୁ ସେ ତନ୍ନିଷ୍ଠ ହୋଇ ସମାଧିସ୍ଥଭାବରେ ସେହି ସ୍ଥୂଳରୂପକୁ ମଧ୍ୟ ବିସ୍ମୃତ ହୋଇଥିଲେ । ୧୭ ।

ଏହିପରି ଧ୍ରୁବଙ୍କର ଭଗବାନଙ୍କଠାରେ ଭକ୍ତିପ୍ରବାହ ଏକାନ୍ତ ବର୍ଦ୍ଧିତ ହୋଇଥିଲା ଏବଂ ଆନନ୍ଦାଶ୍ରୁରେ ସେ ବାରମ୍ବାର ଅଭିଭୂତ ହେବାରୁ ତାହାଙ୍କର ହୃଦୟ ଦ୍ରବୀଭୂତ ହୋଇଥିଲା ଏବଂ ଅଙ୍ଗ ପୁଲକରେ ବ୍ୟାପ୍ତ ହୋଇଥିଲା । ସୁତରାଂ ସେ ଦେହାଭିମାନରୁ ମୁକ୍ତ ହୋଇ ତାହାଙ୍କର ଦେହଜ୍ଞାନ ବିସ୍ମୃତ ଘଟିଥିଲା । ୧୮ ।

ଧ୍ରୁବ ଏହି ଅବସ୍ଥାରେ ପୂର୍ଣ୍ଣିମାଚନ୍ଦ୍ର ତୁଲ୍ୟ ଦଶଦିଗ ଉଜ୍ଜ୍ୱଳକାରୀ ଗୋଟିଏ ବିମାନ ନଭୋମଣ୍ଡଳରୁ ଅବତୀର୍ଣ୍ଣ ହେବା ଦେଖିଥିଲେ । ୧୯ ।

ତଦନ୍ତର ସେ ଦେଖିଲେ ସେହିବିମାନରେ ଚତୁର୍ଭୁଜ, ଶ୍ୟାମବର୍ଣ୍ଣ, କିଶୋରାକୃତି, ଅରୁଣବର୍ଣ୍ଣ କମଳନୟନ ଦୁଇଟିଦେବ ଶ୍ରେଷ୍ଠ ଗଦାଧାରଣ କରି ଅବସ୍ଥାନ କରୁଅଛନ୍ତି, ସେମାନଙ୍କର ପରିହିତ ବସନ ଅତ୍ୟନ୍ତ ସୁନ୍ଦର ଏବଂ ସେମାନଙ୍କ ଦେହରେ କିରୀଟ, କୁଣ୍ଡଳ ଓ ରମଣୀୟ ହାର ଶୋଭା ପାଉଅଛି ।୨୦।

ସର୍ବ ସମ୍ପଦ ପରିହରି
ସଂଯମେ ଆତ୍ମା ବଶ କରି
ତପସ୍ୟାପାଇଁ ସେ ଚଳିଲା
ବଦରୀ ଆଶ୍ରମେ ମିଳିଲା ।୧୫,୧୬
ବିଷ୍ଣୁର ସ୍ଥୂଳରୂପେ ମନ
ସଂଯମ ବଳେ କରି ଧ୍ୟାନ
ତକ୍ଷଣେ ଲିଙ୍ଗ ରୂପ ଗଲା
ନିର୍ମଳଜ୍ୟୋତପ୍ରକାଶିଲା ।୧୭,୧୮

ବିମାନ ଦେଖିଲା ଗଗନେ
ପୂର୍ଣ୍ଣିମା ସୁଧାକର ଯେହ୍ନେ
ତେଜେ ବିରାଜେ ଦଶଦିଶ
ଆକାଶୁଁ ହେଲା ପରବେଶ
ରଥେ ଅଛନ୍ତି ଦେନି ଦୂତ
ଗଞ୍ଜନ୍ତି ଶଶାଙ୍କ ଆଦିତ୍ୟ
କିଶୋର ତନୁ ଶ୍ୟାମବର୍ଣ୍ଣ
ବିରାଜେ ଅରୁଣ ଲୋଚନ

ଶୋହେ ସୁନ୍ଦର ଭୁଜ ଚାରି
ବିଷ୍ଣୁ ଆୟୁଧ ଛନ୍ତି ଧରି
ଅଙ୍ଗଦ କିରୀଟ କୁଣ୍ଡଳ
ହୃଦେ ଲମ୍ବଇ ବନମାଳ ।୧୯,୨୦

ବିଜ୍ଞାୟ ତାବୁତ୍ତମଗାୟକିଙ୍କରାବଭ୍ୟୁତ୍ଥିତଃ ସାଧ୍ୱସବିସ୍ମୃତକ୍ରମଃ ।
ନନାମ ନାମାନି ଗୃଣନ୍ ମଧୁଦ୍ୱିଷଃ ପାର୍ଷତ୍ପ୍ରଧାନାବିତି ସଂହତାଞ୍ଜଳିଃ ।୨୧।
ତଂ କୃଷ୍ଣପାଦାଭିନିବିଷ୍ଟଚେତସଂ ବଦ୍ଧାଞ୍ଜଳିଂ ପ୍ରଶ୍ରୟନମ୍ରକନ୍ଧରମ୍ ।
ସୁନନ୍ଦନନ୍ଦାବୁପସୃତ୍ୟ ସସ୍ମିତଂ ପ୍ରୀତ୍ୟୋଚତୁଃ ପୁଷ୍କରନାଭସମ୍ମତୌ । ୨୨ ।

ଶ୍ରୀସୁନନ୍ଦନନ୍ଦାବୂଚତୁଃ ।

ଭୋ ଭୋ ରାଜନ୍ ସୁଭଦ୍ରଂ ତେ ବାଚଂ ନୋଽବହିତଃ ଶୃଣୁ ।
ଯଃ ପଞ୍ଚବର୍ଷସ୍ତପସା ଭବାନ୍ ଦେବମତୀତୃପତ୍ । ୨୩ ।
ତସ୍ୟାଖିଳଜଗଦ୍ଧାତୁରାବାଂ ଦେବସ୍ୟ ଶାର୍ଙ୍ଗିଣଃ ।
ପାର୍ଷଦାବିହ ସଂପ୍ରାପ୍ତୌ ନେତୁଂ ତ୍ୱାଂ ଭଗବତ୍ପଦମ୍ । ୨୪ ।

---

ଧ୍ରୁବ ସେମାନଙ୍କୁ ଉତ୍ତମଶ୍ଳୋକ ଭଗବାନଙ୍କର କିଙ୍କର ଏବଂ ମଧୁରିପୁ ଶ୍ରୀହରିଙ୍କର ଶ୍ରେଷ୍ଠ ପାର୍ଷଦ ବୋଲି ମନେକରି ଅତ୍ୟନ୍ତ ସମ୍ଭ୍ରମରେ ସେମାନଙ୍କର ଯଥୋପଯୁକ୍ତ ପୂଜାକ୍ରମ ଭୁଲିଯାଇ କୃତାଞ୍ଜଳିପୂର୍ବକରେ ଶ୍ରୀହରିଙ୍କର ନାମକୀର୍ତ୍ତନ କରିଥିଲେ । ୨୧ ।

ଭଗବାନ୍ ଶ୍ରୀହରିଙ୍କର ଅତ୍ୟନ୍ତ ପ୍ରିୟପାତ୍ର ସୁନନ୍ଦ ଓ ନନ୍ଦନାମକ ଏହି ଦେବତାଦ୍ୱୟ ଧ୍ରୁବଙ୍କ ନିକଟରେ ଉପସ୍ଥିତ ହୋଇ ତାହାଙ୍କୁ କୃତାଞ୍ଜଳିପୂର୍ବକରେ ଭଗବାନଙ୍କ ପ୍ରତି ଏକାଗ୍ରଚିତ୍ତରେ ଅବନତ ମସ୍ତକରେ ଅବସ୍ଥାନ କରୁଥିବାର ଦେଖି ପ୍ରୀତି ବଶତଃ ସହାସ୍ୟ ବଦନରେ କହିଲେ । ୨୨ ।

ଶ୍ରୀସୁନନ୍ଦ ଓ ନନ୍ଦକହିଲେ :—

ହେ ରାଜନ୍ ! ଆପଣଙ୍କର ଅତ୍ୟନ୍ତ ମଙ୍ଗଳ ଉପସ୍ଥିତ, ଆପଣ ଏକାଗ୍ରଚିତ୍ତରେ ଆମ୍ଭମାନଙ୍କ କଥା ଶ୍ରବଣ କରନ୍ତୁ । ଆପଣ ପାଞ୍ଚବର୍ଷ ବୟସରେ ତପସ୍ୟା ଦ୍ୱାରା ସେହି ଦେବଙ୍କୁ ତୁଷ୍ଟ କରିଅଛନ୍ତି । ୨୩ ।

ଆମ୍ଭେମାନେ ସେହି ଦେବଦେବ ବିଷ୍ଣୁଙ୍କର ପାର୍ଷଦ, ଆମ୍ଭେମାନେ ଆପଣଙ୍କୁ ସେହି ଭଗବତ୍ପାଦପଦ୍ମକୁ ନେଇଯିବା ଲାଗି ଉପସ୍ଥିତ ହୋଇଅଛୁ । ୨୪ ।

---

ଧ୍ରୁବ ନିକଟେ ଯାଇଁ ମିଳି
ଗଗନୁ ଖସେ କି ବିଜୁଳି
ତୁଣ୍ଡେ ଗୋବିନ୍ଦଗୁଣ ଗାଇ
କପୋଳେ ବେନି କର ଦେଇ
ଧ୍ରୁବ ନମିଲ ପାଦମୂଳେ
ପ୍ରେମ ପୁଲକ ଅଶ୍ରୁଜଳେ
ସୁନନ୍ଦ ନନ୍ଦ ପାରିଷଦେ
ତକ୍ଷଣେ ମିଳଣ ଆନନ୍ଦେ

ଶ୍ରୀକୃଷ୍ଣ ନାମ ତୁଣ୍ଡେ ଗାଇ
ବୋଲନ୍ତି ଧ୍ରୁବ ମୁଖ ଚାହିଁ ।୨୧।୨୨
ଶୁଣ ଉତ୍ତାନପାଦସୁତ ।
ସଂସାରେ ତୁହି ଭାଗ୍ୟବନ୍ତ
ତୁ ବାଳ ପଞ୍ଚମ ବରଷ
ତପେ ତୋଷିଲୁ ହୃଷୀକେଶ
ଏବେ ଗୋବିନ୍ଦ ଆଜ୍ଞା ଶିରେ
ନେବା ନିମନ୍ତେ ତୋ ଛାମୁରେ

ଧ୍ରୁବପଦକୁ ନେବୁ ତୋତେ
ଦେଖ କାଞ୍ଚନ ଦିବ୍ୟ ରଥେ
ଦୁର୍ଲଭ ବିଷ୍ଣୁପଦ ତୁହି
ବଳେ ଲଭିଲୁ ତପ ଦାହି
ଯେ ଶିଶୁମାର-ଚକ୍ର-ତଳେ
ଚନ୍ଦ୍ର ଆଦିତ୍ୟ ତାରା ମେଳେ

ସୁଦୁର୍ଜ୍ଜୟଂ ବିଷ୍ଣୁପଦଂ ଜିତଂ ତ୍ୱୟା ଯତ୍ ସୂରୟୋଽପ୍ରାପ୍ୟ ବିଚକ୍ଷତେ ପରମ୍ ।
ଆତିଷ୍ଠ ତଚ୍ଚନ୍ଦ୍ରଦିବାକରାଦୟୋ ଗ୍ରହର୍କ୍ଷତାରାଃ ପରିଯନ୍ତି ଦକ୍ଷିଣମ୍ । ୨୫ ।

ଅନାସ୍ଥିତଂ ତେ ପିତୃଭିରନ୍ୟୈରପ୍ୟଙ୍ଗ କର୍ହିଚିତ୍ ।
ଆତିଷ୍ଠ ଜଗତାଂ ବନ୍ଦ୍ୟଂ ତଦ୍ବିଷ୍ଣୋଃ ପରମଂ ପଦମ୍ । ୨୬ ।

ଏତଦ୍ବିମାନପ୍ରବରମୁତ୍ତମଶ୍ଳୋକମୌଳିନା ।
ଉପସ୍ଥାପିତମାୟୁଷ୍ମନ୍ନଧିରୋଢୁଂ ତ୍ୱମର୍ହସି । ୨୭ ।

ଶ୍ରୀମୈତ୍ରେୟ ଉବାଚ ।

ନିଶମ୍ୟ ବୈକୁଣ୍ଠନିଯୋଜ୍ୟମୁଖ୍ୟୟୋର୍ମଧୁଚ୍ୟୁତଂ ବାଚମୁରୁକ୍ରମପ୍ରିୟଃ ।
କୃତାଭିଷେକଃ କୃତନିତ୍ୟମଙ୍ଗଲୋ ମୁନୀନ୍ ପ୍ରଣମ୍ୟାଶିଷମଭ୍ୟବାଦୟତ୍ । ୨୮

---

ସପ୍ତର୍ଷିଗଣ ଯେଉଁ ଶ୍ରେଷ୍ଠ ପାଦପଦ୍ମ ଲାଭକରିବା ନିମିତ୍ତ ବିଶେଷଭାବରେ ଅଭିଳାଷ କରିଥାନ୍ତି, ଚନ୍ଦ୍ରସୂର୍ଯ୍ୟାଦି ଗ୍ରହ ତାରକାଗଣ ଯେଉଁ ସ୍ଥାନକୁ ନିରନ୍ତର ପ୍ରଦକ୍ଷିଣ କରିଥାନ୍ତି, ଆପଣ ସେହି ସୁଦୁର୍ଲ୍ଲଭ ବିଷ୍ଣୁପଦ ଜୟ କରିଅଛନ୍ତି; ଆପଣ ଏହି ପଦରେ ଅଧିଷ୍ଠିତ ହୁଅନ୍ତୁ । ୨୫ ।

ହେ ରାଜନ୍ ! ଆପଣଙ୍କର ପିତୃପିତାମହଗଣ ଅଥବା ଅନ୍ୟକୌଣସି ତପସ୍ୱୀ ଯେଉଁଠାରେ ଆରୋହଣ କରିପାରି ନାହିଁ, ସର୍ବଜଗତର ବନ୍ଦନୀୟ ସେହି ବିଷ୍ଣୁ ପରମପଦରେ ଆପଣ ଆରୋହଣକରନ୍ତୁ ।୨୬

ହେ ଆୟୁଷ୍ମନ୍ ! ମହାପୁରୁଷମାନଙ୍କର ମୁକୁଟ ମଣି ସେହି ଶ୍ରେଷ୍ଠ ବିମାନ ଆଜ ଆପଣଙ୍କ ଲାଗି ପ୍ରେରିତ ହୋଇଅଛି, ଆପଣ ତହିଁରେ ଆରୋହଣ କରନ୍ତୁ । ୨୭ ।

ଶ୍ରୀମୈତ୍ରେୟ କହିଲେ ;—

ଭଗବାନ୍ ବୈକୁଣ୍ଠନାଥଙ୍କର ମୁଖ୍ୟ ପାର୍ଷଦଦୁହିଙ୍କର ଅମୃତମୟୀ ବାଣୀ ଶ୍ରବଣ କରି ଭଗବାନଙ୍କର ପ୍ରିୟ ସେହି ଧ୍ରୁବ ସ୍ନାନ ଓ ନିତ୍ୟକର୍ତ୍ତବ୍ୟ ମାଙ୍ଗଳିକ କ୍ରିୟାମାନ ଶେଷକରି ମୁନିମାନଙ୍କୁ ପ୍ରଣାମକରି ତାହାଙ୍କୁ ଆଶୀର୍ବାଦ ପ୍ରାର୍ଥନା କରିଥିଲେ । ୨୮ ।

---

ନିତ୍ୟେ ଭ୍ରମନ୍ତି ପ୍ରଦକ୍ଷିଣେ
ଯେସନେ ରଜ୍ଜୁ ଆକର୍ଷଣେ
ଯେ ପଦେ ତୋର ପିତୃଜନ
ପ୍ରବେଶେ ନୋହିଲେ ସ୍ୱଜନ
କେ ଅଛି ତାହା ଲଭିପାରେ
ଅଜ୍ଞାନୀ ସଂସାର ସାଗରେ
ଅଶେଷ ଜଗତ ବନ୍ଦନ
ବିଷ୍ଣୁ ପରମପଦ ସ୍ଥାନ

ଏଣୁ ଏ ଉତ୍ତମ ବିମାନ
ତୋତେ ପେଷିଲେ ଭଗବାନ
ତୁ ଏବେ ବସ ସ୍ଥିର ମନେ
ବିମାନ ବାହିରୁ ଗଗନେ ।୨୩-୨୭

ଶ୍ରୀ ମୈତ୍ରେୟ ଉବାଚ—

ଏମନ୍ତେ ବିଷ୍ଣୁ ଦୂତବାଣୀ
ଆନନ୍ଦମନେ ଧ୍ରୁବ ଶୁଣି
ତତକ୍ଷଣେ ଅଭିଷେକ କରି
ମୁନିଙ୍କ ଚରଣେ ନମିଣ
ମୁନିଜନଙ୍କ ଆଶୀର୍ବାଦେ
ଜୟମଙ୍ଗଳ ବେଦନାଦେ
ବିମାନ ପ୍ରଦକ୍ଷିଣ କରି
ବିଷ୍ଣୁ ଦୂତଙ୍କୁ ନମସ୍କରି

ପରୀତ୍ୟାଭ୍ୟର୍ଚ୍ୟ ଧିଷ୍ଣ୍ୟାଗ୍ର୍ୟଂ ପାର୍ଷଦାବଭିବନ୍ଦ୍ୟ ଚ ।
ଇୟେଷ ତଦଧିଷ୍ଠାତୁଂ ବିଭ୍ରଦ୍ରୂପଂ ହିରଣ୍ମୟମ୍ ।୨୯।
ତଦୋତ୍ତାନପଦଃ ପୁତ୍ରୋ ଦଦର୍ଶାନ୍ତକମାଗତମ୍ ।
ମୃତ୍ୟୋର୍ମୂର୍ଦ୍ଧ୍ନି ପଦଂ ଦତ୍ତ୍ୱା ଆରୁରୋହାଦ୍ଭୁତଂ ଗୃହମ୍ ।୩୦।
ତଦା ଦୁନ୍ଦୁଭୟୋ ନେଦୁର୍ମୃଦଙ୍ଗପଣବାଦୟଃ ।
ଗନ୍ଧର୍ବମୁଖ୍ୟାଃ ପ୍ରଜଗୁଃ ପେତୁଃ କୁସୁମବୃଷ୍ଟୟଃ ।୩୧।
ସ ଚ ସ୍ୱର୍ଲୋକମାରୋକ୍ଷନ୍ ସୁନୀତି ଜନନୀଂ ଧ୍ରୁବଃ ।
ଅନ୍ୱସ୍ମରଦଗଂ ହିତ୍ୱା ଦୀନାଂ ଯାସ୍ୟେ ତ୍ରିପିଷ୍ଟପମ୍ ।୩୨।
ଇତି ବ୍ୟବସିତଂ ତସ୍ୟ ବ୍ୟବସାୟ ସୁରୋତ୍ତମୌ ।
ଦର୍ଶୟାମାସତୁର୍ଦେବୀଂ ପୁରୋ ଯାନେନ ଗଚ୍ଛତୀମ୍ ।୩୩।
ତତ୍ର ତତ୍ର ପ୍ରଶଂସଦ୍ଭିଃ ପଥି ବୈମାନିକୈଃ ସୁରୈଃ ।
ଅବକୀର୍ଯ୍ୟମାଣୋ ଦଦୃଶେ କୁସୁମୈଃ କ୍ରମଶୋ ଗ୍ରହାନ୍ ।୩୪।

---

ତଦନନ୍ତର ସେ ଏହି ଶ୍ରେଷ୍ଠ ବିମାନକୁ ପ୍ରଦକ୍ଷିଣ ଓ ଅର୍ଚ୍ଚନା କରି ପାର୍ଷଦଦ୍ୱୟଙ୍କୁ ଅଭିବାଦନ ପୂର୍ବକ ସୁବର୍ଣ୍ଣମୟ ରୂପ ଧାରଣ କରି ବିମାନରେ ଆରୋହଣ କରିଥିଲେ ।୨୯।

ଏହି ସମୟରେ ଉତ୍ତାନପାଦଙ୍କର ପୁତ୍ର ଧ୍ରୁବ ମୃତ୍ୟୁକୁ ସମାଗତ ଦେଖିଥିଲେ ଏବଂ ମୃତ୍ୟୁର ମସ୍ତକରେ ପଦାର୍ପଣ ପୂର୍ବକ ତାହାକୁ ଅଗ୍ରାହ୍ୟକରି ସେହି ଅଦ୍ଭୁତବିମାନରେ ଆରୋହଣ କରିଥିଲେ ।୩୦।

ଏହି ସମୟରେ ଦୁନ୍ଦୁଭି, ମୃଦଙ୍ଗ, ପଣବାଦି ବାଦ୍ୟଯନ୍ତ୍ରମାନ ବାଜିବାକୁ ଲଗିଲା ଏବଂ ଶ୍ରେଷ୍ଠ ଗନ୍ଧର୍ବମାନେ ଗାନ କରିବାକୁ ଆରମ୍ଭ କଲେ ଏବଂ ପୁଷ୍ପବୃଷ୍ଟି ହୋଇଥିଲା ।୩୧।

ବିଷ୍ଣୁପଦରେ ଆରୋହଣୋଦ୍ୟତ ସେହି ଧ୍ରୁବ ଦୁଃଖିନୀ ସୁନୀତିଙ୍କୁ ତ୍ୟାଗକରି କିପରି ସେହି ଦୁର୍ଲଭ ବିଷ୍ଣୁପଦକୁ ଗମନ କରିବେ; ଏହା ଚିନ୍ତା କରିଥିଲେ ।୩୨।

ସେହି ଦେବଶ୍ରେଷ୍ଠ ଭଗବଦ୍ ସେବକଦ୍ୱୟ ଧ୍ରୁବଙ୍କର ଏପରି ମନୋଭାବ ଅବଗତ ହୋଇ ତାହାଙ୍କୁ ଦେଖାଇ କହିଲେ—ଦେଖ, ସୁନୀତିଦେବୀ ମଧ୍ୟ ରଥାରୋହଣ ପୂର୍ବକ ଆଗରେ ଯାଉ ଅଛନ୍ତି, ସେହି ଗନ୍ତବ୍ୟ ପଥରେ ବିମାନାରୂଢ଼ ଦେବଗଣ ଧ୍ରୁବଙ୍କୁ ପ୍ରଶଂସା କରୁଥିଲେ । ଧ୍ରୁବ ଅଗ୍ରସର ହେଲାବେଳେ ଗ୍ରହମାନଙ୍କୁ ଦେଖିଥିଲେ ।୩୩।୩୪।

---

ହିରଣ୍ୟମୟ ରୂପ ଧରି
ସ୍ୱତେଜେ ଦଶଦିଗ ପୂରେ
ଗଗନେ ଚତୁର୍ବିଧ ବାଦ୍ୟେ
ଦିଗ ପୂରିଲେ ଗୀତ ନାଦେ
ପୁଷ୍ପ ବରଷନ୍ତି ହରଷେ
ବିବୁଧେ ଦେଖନ୍ତି ଆକାଶେ ୨୮।୩୦

ସୁନୀତି ଜନନୀ ସମେତେ
ବସିଲା ରତ୍ନମୟ ରଥେ
ବିମାନ ଯାନ୍ତି ସ୍ୱର୍ଗପଥେ
ଦେବେ ଯେ ବସି କନକରଥେ
ଧ୍ରୁବକୁ ଦେଖି ପ୍ରଶଂସନ୍ତି
କେତେ ଆନନ୍ଦେ କଲେ ସ୍ତୁତି

ଏମନ୍ତେ ପୁଷ୍ପବୃଷ୍ଟି ପଥେ
ଗ୍ରହଙ୍କୁ ଦେଖିଲା ଅଗ୍ରତେ ।୩୧-୩୪

ତ୍ରିଲୋକୀଂ ଦେବଯାନେନ ସୋଽତିବ୍ରଜ୍ୟ ମୁନୀନପି ।
ପରସ୍ତାଦ୍ୟଦ୍ ଧ୍ରୁବଗତିର୍ବିଷ୍ଣୋଃ ପଦମଥାଭ୍ୟଗାତ୍ । ୩୫ ।
ଯଦ୍ଭ୍ରାଜମାନଂ ସ୍ୱରୁଚୈବ ସର୍ବତୋ ଲୋକାସ୍ତ୍ରୟୋଃ ହ୍ୟନୁ ବିଭ୍ରାଜନ୍ତ ଏତେ ।
ଯନ୍ନାବ୍ରଜନ୍ ଜନ୍ତୁଷୁ ଯେଽନନୁଗ୍ରହା ବ୍ରଜନ୍ତି ଭଦ୍ରାଣି ଚରନ୍ତି ଯେଽନିଶମ୍ । ୩୬ ।
ଶାନ୍ତାଃ ସମଦୃଶଃ ଶୁଦ୍ଧାଃ ସର୍ବଭୂତାନୁରଞ୍ଜନାଃ ।
ଯାନ୍ତ୍ୟଞ୍ଜସାଚ୍ୟୁତପଦମଚ୍ୟୁତପ୍ରିୟବାନ୍ଧବାଃ । ୩୭ ।
ଇତ୍ୟୁତ୍ତାନପଦଃ ପୁତ୍ରୋ ଧ୍ରୁବଃ କୃଷ୍ଣପରାୟଣଃ ।
ଅଭୂତ୍ ତ୍ରୟାଣାଂ ଲୋକାନାଂ ଚୂଡ଼ାମଣିରିବାମଲଃ । ୩୮ ।

---

ଧ୍ରୁବ ଦେବଗଣଙ୍କ ରଥ ଆରୋହଣ କରି ତ୍ରିଜଗତ୍ ଏବଂ ସପ୍ତର୍ଷିମଣ୍ଡଳ ଅତିକ୍ରମକରି ଭଗବାନଙ୍କର ସେହି ଅତ୍ୟୁତ୍ତମ ସ୍ଥାନକୁ ଗମନ କରିଥିଲେ । ଧ୍ରୁବ ଏହି ଯେଉଁ ଗତି ଲାଭକରିଥିଲେ ତାହା ଅବିନଶ୍ୱର, ତାହାର ଧ୍ୱଂସ ନାହିଁ । ୩୫ ।

ଏହିସ୍ଥାନ ସ୍ୱୀୟ ପ୍ରଭା ଦ୍ୱାରା ସର୍ବଦା ଜ୍ୟୋତିଷ୍ମାନ୍ ଏବଂ ତାହାର ପ୍ରଭାଦ୍ୱାରା ଏହି ତ୍ରିଭୁବନ ଶୋଭା ପାଉଅଛି । ଯେଉଁମାନେ ଜୀବପ୍ରତି ନିର୍ଦ୍ଦୟ ସେମାନେ କଦାଚ ଏ ସ୍ଥାନ ଲାଭ କରିପାରନ୍ତି ନାହିଁ, ଯେଉଁମାନେ ଅନବରତ ସତ୍କର୍ମ ଅନୁଷ୍ଠାନ କରନ୍ତି; ସେହିମାନେହିଁ ଏ ସ୍ଥାନ ଲାଭ କରିବାକୁ ସମର୍ଥ । ୩୬ ।

ଯେଉଁମାନେ ସମଗୁଣଶାଳୀ, ସର୍ବଭୂତରେ ସମଦର୍ଶୀ, ପବିତ୍ର ସ୍ୱଭାବ ସମ୍ପନ୍ନ, ସର୍ବ ଜୀବରେ ପ୍ରିୟ ଆଚରଣକାରୀ ଏବଂ କେବଳମାତ୍ର ଭଗବାନଙ୍କୁ ପରମବନ୍ଧୁ ବୋଲି ମନେ କରନ୍ତି, ସେହିମାନେ ଅନାୟାସରେ ଭଗବାନଙ୍କ ସ୍ଥାନ ଲାଭ କରିପାରନ୍ତି । ୩୭ ।

ପରମ ଭାଗବତ ଉତ୍ତାନପାଦଙ୍କର ପୁତ୍ର ଧ୍ରୁବ ଏହି ତ୍ରିଭୁବନର ନିର୍ମଳ ଚୂଡ଼ାମଣିରୂପେ ଶୋଭମାନ ହୋଇଥିଲେ । ୩୮ ।

---

ତ୍ରୈଲୋକ୍ୟ ଲଙ୍ଘି ଦେବଯାନେ
ମୁନିଙ୍କି ଦେଖିଲା ବିମାନେ
ମୁନିଙ୍କି ନମିଲା ଆନନ୍ଦେ
ବିଜୟେ କଲା ବିଷ୍ଣୁପଦେ । ୩୫ ।
ସେ ବିଷ୍ଣୁପଦର ମହିମା
କେ କହିପାରେ ଗୁଣସୀମା

ଯେ ପ୍ରାଣୀ ଶାନ୍ତ ସମଦୃଶ
ଅଶେଷ ଜନ୍ତୁଙ୍କ ବିଶ୍ୱାସ
ହରିଚରଣେ ରତି ଯାର
ସନ୍ତୋଷ ଶୁଦ୍ଧ ସାଧୁ ଧୀର
ଯେ ପ୍ରାଣୀ ସେ ପୁରେ ପଶନ୍ତି
ମାୟା ବନ୍ଧନୁ ନିସ୍ତରନ୍ତି । ୩୬, ୩୭

ଏଣୁ ଉତ୍ତାନପାଦସୁତ
ବିଷ୍ଣୁର ପରମ ଭକତ
ତ୍ରିଲୋକ ଚୂଡ଼ାମଣି ସ୍ଥାନେ
ବସିଲା ନିଶ୍ଚଳ ଆସନେ । ୩୮ ।

ଗମ୍ଭୀରବେଗୋଽନିମିଷଂ ଜ୍ୟୋତିଷାଂ ଚକ୍ରମାହିତମ୍ ।
ଯସ୍ମିନ୍ ଭ୍ରମତି କୌରବ୍ୟ ମେଧ୍ୟାମିବ ଗବାଂ ଗଣଃ । ୩୯ ।
ମହିମାନଂ ବିଲୋକ୍ୟାସ୍ୟ ନାରଦୋ ଭଗବାନୃଷିଃ ।
ଆତୋଦ୍ୟଂ ବିତୁଦନ୍ ଶ୍ଲୋକାନ୍ ସତ୍ରେଽଗାୟତ୍ ପ୍ରଚେତସାମ୍ । ୪୦ ।

ଶ୍ରୀନାରଦ ଉବାଚ ।

ନୂନଂ ସୁନୀତେଃ ପତିଦେବତାୟାସ୍ତପପ୍ରଭାବସ୍ୟ ସୁତସ୍ୟ ତାଂ ଗତିମ୍ ।
ଦୃଷ୍ଟ୍ୱାଭ୍ୟୁପାୟାନପି ବେଦବାଦିନୋ ନୈବାଧିଗନ୍ତୁଂ ପ୍ରଭବନ୍ତି କିଂ ନୃପାଃ ।୪୧।
ଯଃ ପଞ୍ଚବର୍ଷୋ ଗୁରୁଦାରବାକ୍ଶରୈର୍ଭିନ୍ନେନ ଯାତୋ ହୃଦୟେନ ଦୂୟତା ।
ବନଂ ମଦାଦେଶକରୋଽଜିତଂ ପ୍ରଭୁଂ ଜିଗାୟ ତଦ୍ଭକ୍ତଗୁଣୈଃ ପରାଜିତମ୍ ।୪୨।
ଯଃ କ୍ଷତ୍ରବନ୍ଧୁର୍ଭୁବି ତସ୍ୟାଧିରୂଢ଼ମନ୍ୱାରୁରୁକ୍ଷେଦପି ବର୍ଷପୂଗୈଃ ।
ଷଟ୍ପଞ୍ଚବର୍ଷୋ ଯଦହୋଭିରଳ୍ପୈଃ ପ୍ରସାଦ୍ୟ ବୈକୁଣ୍ଠମବାପ ତତ୍ପଦମ୍ ।୪୩।

---

ହେ କୁରୁନନ୍ଦନ ବିଦୁର ! ସେହି ଧ୍ରୁବଲୋକ ନିକଟରେ ଯେଉଁ ଗ୍ରହ ନକ୍ଷତ୍ରାଦି ଅବସ୍ଥିତ, ସେମାନେ ଧାନ୍ୟାଦି ମର୍ଦ୍ଦନ କାଳରେ ଗୋ-ସମୂହ ଯେପରି ବନ୍ଧନ କାଷ୍ଠର ଚତୁର୍ଦ୍ଦିଗରେ ପ୍ରବଳବେଗରେ ଭ୍ରମଣ କରନ୍ତି ସେହିପରି ଅବିଶ୍ରାମ ଏହି ସ୍ଥାନର ଚତୁର୍ଦ୍ଦିଗରେ ଭ୍ରମଣ କରୁଅଛନ୍ତି । ୩୯ ।

ଭଗବାନ୍ ନାରଦ ମୁନି ଏହି ଧ୍ରୁବଲୋକର ମାହାତ୍ମ୍ୟ ଦେଖି ପ୍ରଚେତାମାନଙ୍କର ଯଜ୍ଞସ୍ଥଳରେ ବୀଣାବାଦନ କରି ଉକ୍ତୋକ୍ତ ଶ୍ଳୋକ ଗାନ କରିଥିଲେ । ୪୦ ।

ପରମ ପତିବ୍ରତା ସୁନୀତିଙ୍କର ପୁତ୍ର ଧ୍ରୁବ ତପଃ ପ୍ରଭାବରୁ ଯେଉଁ ଗତିଲାଭ କରିଥିଲେ, ବେଦୋପଦେଷ୍ଟା ବ୍ରହ୍ମର୍ଷିଗଣ ଭଗବତ୍ ଧର୍ମ ପର୍ଯ୍ୟାଲୋଚନା କରି ମଧ୍ୟ ତାଦୃଶ ଗତିଲାଭ କରିବାକୁ ସମର୍ଥ ହୁଅନ୍ତି ନାହିଁ, ରାଜାମାନଙ୍କ କଥା ବା କଅଣ କହିବା । ୪୧ ।

ଯେଉଁ ଧ୍ରୁବ ପାଞ୍ଚବର୍ଷ ବୟସରେ ବିମାତାକଟୂକ୍ତି ତିରସ୍କୃତ ହୋଇ ବ୍ୟଥିତ ଚିତ୍ତରେ ବନଗମନ ପୂର୍ବକ ମୋର ଉପଦେଶ ଅନୁସାରେ ତପସ୍ୟାକରି ଅନ୍ୟର ଅଜେୟ ଭକ୍ତମାନଙ୍କର ବଶବର୍ତ୍ତୀ, ସେହି ଭଗବାନ୍ ଶ୍ରୀହରିଙ୍କୁ ବଶୀଭୂତ କରିଥିଲେ । ୪୨ ।

ଧ୍ରୁବ ପାଞ୍ଚ କିମ୍ବା ଛଅବର୍ଷସମୟରେ ଅତି ଅଳ୍ପକାଳ ମଧ୍ୟରେ ଭଗବାନଙ୍କୁ ପ୍ରସନ୍ନକରି ତାହାଙ୍କର ଯେଉଁ ପରମଧାମ ପ୍ରାପ୍ତ ହୋଇଥିଲେ, ପୃଥିବୀବାସୀ ଅନ୍ୟ କୌଣସି କ୍ଷତ୍ରୀୟ ବହୁକାଳରେ ସୁଦ୍ଧା ସେହି ଧ୍ରୁବପଦ କଳ୍ପନା କରିବାକୁ ସମର୍ଥ ହୋଇ ନାହିଁ । ୪୩ ।

---

ଗମ୍ଭୀର ବେଗ କାଳଚକ୍ରେ
ବାୟୁରସନା ଅନ୍ତରେକେ
ଗ୍ରହ ନକ୍ଷତ୍ର ତାରାଗଣେ
ଭ୍ରମନ୍ତି ମେଧି ଆକର୍ଷଣେ ।୩୯ ।

ତାର ମହିମା ଯଶ ଘୋଷି
ବୀଣା ଶବଦେ ଦେବଋଷି
ପ୍ରଚେତାଗଣ-ସତ୍ରେ ଥାଇ
ନୃତ୍ୟ କରନ୍ତି ଗୀତ ଗାଇ ।୪ ।

ମାତ୍ରୁ ସପତ୍ନୀ ବାକ୍ୟ ଘଲେ
ବନଟସ୍ତ ପଶିଲ ଯେମନ୍ତେ
ଯେମନ୍ତେ ହରିଙ୍କି ତୋଷିଲ
ଜନନୀ ସଙ୍ଗେ ସ୍ୱର୍ଗଗଲ ।୪୧-୪୩

ଶ୍ରୀମୈତ୍ରେୟ ଉବାଚ ।
ଏତତ୍ ତେଽଭିହିତଂ ସର୍ବଂ ଯତ୍‌ପୃଷ୍ଟୋଽହମିହ ତ୍ୱୟା ।
ଧ୍ରୁବସ୍ୟୋଦ୍ଦାମଯଶସଶ୍ଚରିତଂ ସମ୍ମତଂ ସତାମ୍ । ୪୪ ।
ଧନ୍ୟଂ ଯଶସ୍ୟମାୟୁଷ୍ୟଂ ପୁଣ୍ୟଂ ସ୍ୱସ୍ତ୍ୟୟନଂ ମହତ୍ ।
ସ୍ୱର୍ଗ୍ୟଂ ଧ୍ରୌବ୍ୟଂ ସୌମନସ୍ୟଂ ପ୍ରଶସ୍ୟମଘମର୍ଷଣମ୍ । ୪୫ ।
ଶ୍ରୁତ୍ୱୈତଚ୍ଛ୍ରଦ୍ଧୟାଭୀକ୍ଷ୍ଣମଚ୍ୟୁତପ୍ରିୟଚେଷ୍ଟିତମ୍ ।
ଭବେଦ୍‌ଭକ୍ତିର୍ଭଗବତି ଯୟା ସ୍ୟାତ୍ କ୍ଳେଶସଂକ୍ଷୟଃ । ୪୬ ।
ମହତ୍ତ୍ୱମିଚ୍ଛତାଂ ତୀର୍ଥଂ ଶ୍ରୋତୁଃ ଶୀଳାଦୟୋ ଗୁଣାଃ ।
ଯତ୍ର ତେଜସ୍ତଦିଚ୍ଛୂନାଂ ମାନୋ ଯତ୍ର ମନସ୍ୱିନାମ୍ । ୪୭ ।
ପ୍ରୟତଃ କୀର୍ତୟେତ୍ ପ୍ରାତଃ ସମବାୟେ ଦ୍ୱିଜନ୍ମନାମ୍ ।
ସାୟଂ ଚ ପୁଣ୍ୟଶ୍ଳୋକସ୍ୟ ଧ୍ରୁବସ୍ୟ ଚରିତଂ ମହତ୍ । ୪୮ ।

---

ଶ୍ରୀମୈତ୍ରେୟ କହିଲେ :—

ହେ ବତ୍ସ ବିଦୁର ! ସମ୍ପ୍ରତି ତୁମ୍ଭେ ମୋତେ ଯେଉଁ ଧ୍ରୁବଚରିତ୍ର ବିଷୟ ପଚାରିଥିଲ ତାହା ମୁଁ ସମସ୍ତ ବର୍ଣ୍ଣନାକଲି, ପରମ ଯଶସ୍ୱୀ ଧ୍ରୁବଙ୍କର ଏହିଚରିତ୍ରଗାଥା ଧନ ଯଶ ଓ ଆୟୁ ବୃଦ୍ଧି କରେ । ଏହା ଅତି ପବିତ୍ର ଓ ପରମ ମଙ୍ଗଳକର । ସ୍ୱର୍ଗ ଓ ଧ୍ରୁବଲୋକ ଫଳପ୍ରାପ୍ତିପୂର୍ବକ ଜନ୍ମାଇବାକୁ ସମର୍ଥ, ଏହା ଶ୍ରବଣକଲେ ଦେବତ୍ୱ ଲାଭ ହୁଏ, ପାପ ବିନଷ୍ଟ ହୁଏ, ଏହା ଅତି ପ୍ରଶଂସନୀୟ, ସୁତରାଂ ସାଧୁମାନଙ୍କ ପକ୍ଷରେ ବଡ଼ ଆଦରଣୀୟ । ୪୪,୪୫ ।

ଭଗବାନଙ୍କର ପ୍ରିୟପାତ୍ର ଧ୍ରୁବଙ୍କର ଏହି ସମସ୍ତଚରିତ୍ର କଥା ଶ୍ରଦ୍ଧା ପୂର୍ବକ ପୁନଃ ପୁନଃ ଶ୍ରବଣ କଲେ ଭଗବାନଙ୍କ ପ୍ରତି ଏପରି ଭକ୍ତି ଜନ୍ମେ ଯେ ତଦ୍ଦ୍ୱାରା ସମସ୍ତଦୁଃଖ ଦୂରୀଭୂତ ହୁଏ । ୪୬ ।

ଯେଉଁମାନେ ମହତ୍ତ୍ୱ ଇଚ୍ଛାକରନ୍ତି ସେମାନେ ଏହି ଚରିତ୍ର ଶ୍ରବଣ କଲେ ସେମାନଙ୍କର ମହତ୍ତ୍ୱ ଲାଭ ହୁଏ ଏବଂ ସୁଶୀଳତା ପ୍ରଭୃତି ସଦ୍‌ଗୁଣ ଜନ୍ମେ, ତେଜଃ କାମୀମାନେ ଏହା ଶ୍ରବଣକଲେ ତେଜ ଲାଭ କରନ୍ତି ଏବଂ ମନସ୍ୱିମାନଙ୍କର ମନ ଆହୁରି ପ୍ରଶସ୍ତ ହୁଏ । ପ୍ରାତଃ ଓ ସାୟଂକାଳରେ ସଂଯତ ହୋଇ ଦ୍ୱିଜାତିମାନଙ୍କ ସଭାରେ ପୁଣ୍ୟ ଶ୍ଳୋକ ଧ୍ରୁବଙ୍କର ଏହି ଉତ୍ତମ ଚରିତ୍ର କୀର୍ତ୍ତନ କରିବ । ୪୭,୪୮ ।

---

ଶ୍ରୀ ମୈତ୍ରେୟ ଉବାଚ ।
ଶୁଣ ହେ ବ୍ୟାସଙ୍କ କୁମର
ତୁ ସାଧୁଜନ ମଧ୍ୟେ ବର
ତୁ ଯେଣୁ ପଚାରିଲୁ ମୋତେ
ଧ୍ରୁବଚରିତ ଭାଗବତେ
ଉତ୍ତମଯଶ ଧ୍ରୁବବାଣୀ
ଯେ ଏହା ଏକମନେ ଶୁଣି
ଶୁଣି କହନ୍ତି ସାଧୁମେଳେ
ବସନ୍ତି ବିଷ୍ଣୁର ମନ୍ଦିରେ
ଯଶ ଆୟୁଷ ଧନ ମାନ
ସ୍ୱର୍ଗେ ନିବାସ ସ୍ୱସ୍ତ୍ୟୟନ
ବିଘ୍ନସମୂହେ ନାହିଁ ଭ୍ରାନ୍ତି
ସକଳ କ୍ଳେଶୁଁ ତରିଯାନ୍ତି ।୪୪,୪୫
ବିପ୍ରସଭାରେ ପ୍ରାତଃକାଳେ
ଗୋବିନ୍ଦ ଭକ୍ତିଭାବ ଭୋଳେ
ପୂର୍ଣ୍ଣିମା ଅମାବାସ୍ୟା ଦିନେ
ଦ୍ୱାଦଶୀ ଶ୍ରବଣା ବିଧାନେ

ପୌର୍ଣ୍ଣମାସ୍ୟାଂ ସିନୀବାଲ୍ୟାଂ ଦ୍ୱାଦଶ୍ୟାଂ ଶ୍ରବଣେଽଥବା ।
ଦିନକ୍ଷୟେ ବ୍ୟତୀପାତେ ସଂକ୍ରମେଽର୍କଦିନେଽପିବା । ୪୯ ।
ଶ୍ରାବୟେଚ୍ଛ୍ରଦ୍ଦଧାନାନାଂ ତୀର୍ଥପାଦପଦାଶ୍ରୟଃ ।
ନେଚ୍ଛଂସ୍ତତ୍ରାତ୍ମନାତ୍ମାନଂ ସନ୍ତୁଷ୍ଟ ଇତି ସିଧ୍ୟତି । ୫୦ ।
ଜ୍ଞାନମଜ୍ଞାତତତ୍ତ୍ୱାୟ ଯୋ ଦଦ୍ୟାତ୍ ସତ୍ପଥେଽମୃତମ୍ ।
କୃପାଲୋର୍ଦୀନନାଥସ୍ୟ ଦେବାସ୍ତସ୍ୟାନୁଗୃହ୍ଣତେ । ୫୧ ।
ଇଦଂ ମୟା ତେଽଭିହିତଂ କୁରୂଦ୍ୱହ ଧ୍ରୁବସ୍ୟ ବିଖ୍ୟାତବିଶୁଦ୍ଧକର୍ମଣଃ ।
ହିତ୍ୱାର୍ଭକକ୍ରୀଡ଼ନକାନି ମାତୁର୍ଗୃହଞ୍ଚ ବିଷ୍ଣୁଂ ଶରଣଂ ଜଗାମ । ୫୨ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ଚତୁର୍ଥସ୍କନ୍ଧେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଧ୍ରୁବଚରିତଂ ନାମ ଦ୍ୱାଦଶୋଽଧ୍ୟାୟଃ ।

---

ଯାହାଙ୍କର ଶ୍ରୀଚରଣ କୃପାରୁ ସଂସାରସାଗରରୁ ଉତ୍ତୀର୍ଣ୍ଣ ହେବା ସମ୍ଭବ ହୁଏ, ସେହି ଭଗବାନ୍ ଶ୍ରୀହରିଙ୍କ ଏକମାତ୍ର ଆଶ୍ରୟ ଜ୍ଞାନକରି ନିଷ୍କାମଭାବରେ ପୂର୍ଣ୍ଣିମା, ଅମାବାସ୍ୟା, ଦ୍ୱାଦଶୀ, ଶ୍ରବଣାନକ୍ଷତ୍ର, କ୍ଷୟତିଥି, ବ୍ୟତୀପାତଯୋଗ, ସଂକ୍ରାନ୍ତି କିମ୍ବା ରବିବାରରେ ଏହା ଶ୍ରବଣ କରାଇବ । ତାହାହେଲେ ଆତ୍ମା ସ୍ୱତଃ ତୁଷ୍ଟିଲାଭ କରିବ ଏବଂ ସିଦ୍ଧିଲାଭ ଅବଶ୍ୟମ୍ଭାବୀ ହେବ । ୪୯,୫୦ ।

ଯେ ଭଗବଦ୍‌ଭକ୍ତିତତ୍ତ୍ୱାନଭିଜ୍ଞ ବ୍ୟକ୍ତିଙ୍କ ଅମୃତତୁଲ୍ୟ ଜ୍ଞାନ ଦାନ କରନ୍ତି, ସେହି ଦୟାଳୁ ଅଧମ ତାରଣ ସାଧୁପୁରୁଷଙ୍କ ପ୍ରତି ଦେବତାମାନେ ଅନୁଗ୍ରହ ପରାୟଣ ହୋଇଥାନ୍ତି । ୫୧ ।

ହେ କୁରୁକୁଳ ଧୁରନ୍ଧର ବିଦୁର ! ଯେଉଁ ଧ୍ରୁବ ବାଲ୍ୟକାଳରେ କ୍ରୀଡ଼ା ସାମଗ୍ରୀ ଓ ମାତାଙ୍କର ଆଶ୍ରୟ ପରିତ୍ୟାଗ କରି ଭଗବାନ୍ ଶ୍ରୀହରିଙ୍କର ଶରଣାପନ୍ନ ହୋଇଥିଲେ, ସେହି ବିଶ୍ୱବିଖ୍ୟାତ କର୍ମୀ ଧ୍ରୁବଙ୍କର ଚରିତ ମୁଁ ବର୍ତ୍ତମାନ ତୁମ୍ଭ ନିକଟରେ କୀର୍ତ୍ତନ କଲି । ୫୨ ।

---

ଦିବସ କ୍ଷୟ ବ୍ୟତିପାତେ
ସଂକ୍ରାନ୍ତି ଅର୍କବାର ଯୁତେ
ଶ୍ରଦ୍ଧାପୂର୍ବକ ଯେ ପଢନ୍ତି
ଅଥବା ଶ୍ରବଣେ ଶୁଣନ୍ତି
ଜ୍ଞାନ ସନ୍ତୋଷ ପ୍ରାଣିଙ୍କର
ଚତୁର ବର୍ଗ ନୋହେ ଦୂର

ସକାମ ଚିତ୍ତେ ଚିନ୍ତେ ଯେବେ
ଶୁଣନ୍ତେ ଧନ ପୁତ୍ର ଲଭେ
କୁଳେ ସୁପୁତ୍ର ହୋଏ ଜାତ
ଯେ ଶୁଣେ ଧ୍ରୁବର ଚରିତ ।୪୬-୫୨
ସଂସାର ଜନ ହିତେ ଗୀତ
କହିଲ ବିପ୍ର ଜଗନ୍ନାଥ

ଧ୍ରୁବଭକତ ଶିରୋମଣି
ଏ ପାପୀ ଜନେ ନିଅ ଟାଣି



# ତ୍ର ୟୋ ଦ ଶ ଅ ଧ୍ୟା ୟ ।

ତତ୍ର ତ୍ରୟୋଦଶେ ବକ୍ତୁଂ ପୃଥୋର୍ଜନ୍ମ ଧ୍ରୁବାନ୍ୱୟେ ।
ଅଙ୍ଗ ବେଣପିତା ପୁତ୍ରଦୌର୍ଯ୍ୟାଦ୍‌ଗତ ଇତୀର୍ଯ୍ୟତେ ।୦। (ଶ୍ରୀଧରସ୍ୱାମୀ)

ଶ୍ରୀସୂତ ଉବାଚ ।

ନିଶମ୍ୟ କୌଶାରବଣୋପବର୍ଣ୍ଣିତଂ ଧ୍ରୁବସ୍ୟ ବୈକୁଣ୍ଠପଦାଧିରୋହଣମ୍ ।
ପ୍ରରୂଢ଼ଭାବୋ ଭଗବତ୍ୟଧୋକ୍ଷଜେ ପ୍ରଷ୍ଟୁଂ ପୁନସ୍ତଂ ବିଦୁରଃ ପ୍ରଚକ୍ରମେ ।୧।

ଶ୍ରୀବିଦୁର ଉବାଚ ।

କେ ତେ ପ୍ରଚେତସୋ ନାମ କସ୍ୟାପତ୍ୟାନି ସୁବ୍ରତ ।
କସ୍ୟାନ୍ୱବାୟେ ପ୍ରଖ୍ୟାତାଃ କୁତ୍ର ବା ସତ୍ରମାସତ ।୨।

---

## ଅଙ୍ଗଙ୍କର ବାନପ୍ରସ୍ଥ ।

ତ୍ରୟୋଦଶ ଅଧ୍ୟାୟରେ ଧ୍ରୁବଙ୍କ ବଂଶରେ ମହାମତି ପୃଥୁ ଜନ୍ମ ହୋଇଥିଲେ । ତାଙ୍କର ପୁତ୍ର ଅଙ୍ଗ ନିଜ ପୁତ୍ର ବେଣଙ୍କର ଅତ୍ୟାଗ୍ରହରେ ପ୍ରପୀଡ଼ିତ ହୋଇ ବାନପ୍ରସ୍ଥ ଅବଲମ୍ବନ କରିବା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀସୂତ କହିଲେ :—

ଧ୍ରୁବଙ୍କର ଭଗବତ୍‌ସ୍ଥାନ ପ୍ରାପ୍ତି ସମ୍ବନ୍ଧୀୟ ବୃତ୍ତାନ୍ତ ଶ୍ରବଣ କରି ଭଗବାନ୍ ଅଧୋକ୍ଷଜଙ୍କ ପ୍ରତି ବିଦୁରଙ୍କର ଅଗାଧ ଭକ୍ତି ଜନ୍ମିଲା, ସେ ପୁନର୍ବାର ମୈତ୍ରେୟଙ୍କୁ ପ୍ରଶ୍ନ କଲେ । ୧ ।

ଶ୍ରୀବିଦୁର କହିଲେ :—

ହେ ଭଗବତ୍‌ସେବାପରାୟଣ ମୁନିବର ! ଆପଣ ଯେଉଁ ପ୍ରଚେତାମାନଙ୍କର କଥା କହିଲେ, ସେମାନେ କିଏ ? ସେମାନେ କେଉଁ ବଂଶରେ କାହାର ପୁତ୍ରରୂପେ ଜାତ ହୋଇଥିଲେ ? ସେମାନେ କେଉଁଠାରେ ଯଜ୍ଞ ସମ୍ପାଦନ କରିଥିଲେ । ୨ ।

---

ଧ୍ରୁବର ବଂଶେ ରାଜା ବେଣ, ଦେଖିତାହାର ଦୁଷ୍ଟପଣ । ତା'ପିତା ଅଙ୍ଗ ଗଲା ବନ, ତ୍ରୟୋଦଶରେ ଏ ବର୍ଣ୍ଣନ

ଶ୍ରୀ ସୂତ ଉବାଚ—

ମୈତ୍ରେୟବାଣୀ ଶୁଣି କର୍ଣ୍ଣେ
ଆନନ୍ଦ ବିଦୁରର ମନେ
ଧ୍ରୁବ ଯେ ଜନନୀ ସହିତେ
ନିଷ୍ଟକେ କଲା ପରଯତ୍ନେ
ବସିଲା ଯାଇଁ ଧ୍ରୁବପଦେ
ଜ୍ୟୋତିଷ ଗ୍ରହ ଚକ୍ରମଧ୍ୟେ
ମୈତ୍ରେୟଠାରୁଁ ଏହା ଶୁଣି
ବିଦୁର ପଚାରଇ ପୁଣି ।୧

ଶ୍ରୀ ବିଦୁର ଉବାଚ—

ହେ ମୁନି ପ୍ରଚେତସମାନେ
କେବା ସେ କେଉଁ ଭୁବନେ
କେଉଁ ବଂଶେ କିବା ଜାତ
କାହାର ପୁତ୍ର ସେ ବୋଲନ୍ତୁ
ପୂର୍ବେ ନାରଦର ବଚନେ
ଯଜ୍ଞ ଆରମ୍ଭ କେଉଁ ବନେ
ହରିଙ୍କୁ କିସ୍ପଯୋଗେ ପାଇ
ଭବୁ ତରିଲେ ଦଶ ଭାଇ

ମନ୍ୟେ ମହାଭାଗବତଂ ନାରଦଂ ଦେବଦର୍ଶନମ୍ ।
ଯେନ ପ୍ରୋକ୍ତଃ କ୍ରିୟାଯୋଗଃ ପରିଚର୍ଯ୍ୟାବିଧିର୍ହରେଃ । ୩ ।
ସ୍ୱଧର୍ମଶୀଳୈଃ ପୁରୁଷୈର୍ଭଗବାନ୍ ଯଜ୍ଞପୁରୁଷଃ ।
ଇଜ୍ୟମାନୋ ଭକ୍ତିମତା ନାରଦେନେରିତଃ କିଲ । ୪ ।
ଯାସ୍ତା ଦେବର୍ଷିଣା ତତ୍ର ବର୍ଣ୍ଣିତା ଭଗବତ୍କଥାଃ ।
ମହ୍ୟଂ ଶୁଶ୍ରୂଷବେ ବ୍ରହ୍ମନ୍ କାର୍ତ୍ସ୍ନ୍ୟେନାଚଷ୍ଟୁମର୍ହସି । ୫ ।

ଶ୍ରୀମୈତ୍ରେୟ ଉବାଚ ।

ଧ୍ରୁବସ୍ୟ ଚୋତ୍କଳଃ ପୁତ୍ରଃ ପିତରି ପ୍ରସ୍ଥିତେ ବନମ୍ ।
ସାର୍ବଭୌମଶ୍ରିୟଂ ନୈଚ୍ଛଦଧିରାଜାସନଂ ପିତୁଃ । ୬ ।
ସ ଜନ୍ମନୋପଶାନ୍ତାତ୍ମା ନିଃସଙ୍ଗଃ ସମଦର୍ଶନଃ ।
ଦଦର୍ଶ ଲୋକେ ବିତତମାତ୍ମାନଂ ଲୋକମାତ୍ମନି । ୭ ।

---

ହେ ମୁନେ ! ମୁଁ ଦେବତୁଲ୍ୟ ମୂର୍ତ୍ତିଶାଳୀ ଦେବର୍ଷି ନାରଦଙ୍କୁ ମହାଭାଗବତ ବୋଲି ଜାଣିଅଛି । ସେ ଭଗବାନଙ୍କର ଆରାଧନା ସ୍ୱରୂପ କ୍ରିୟା ଯୋଗ ବର୍ଣ୍ଣନା କରିଅଛନ୍ତି । ୩ ।

ଆପଣଙ୍କ ନିକଟରୁ ଶୁଣିଅଛି—ଧର୍ମଶୀଳ ପ୍ରଚେତାମାନେ ଯଜ୍ଞରେ ଯଜ୍ଞପୁରୁଷ ଭଗବାନଙ୍କୁ ଅର୍ଚ୍ଚନା କରୁଥିଲେ, ସେହି ସମୟରେ ଭଗବାନ୍ ନାରଦ ନାରାୟଣଙ୍କ ସ୍ତୁତିଗାନ କରିଥିଲେ । ୪ ।

ହେ ବ୍ରହ୍ମନ୍ ! ସେଠାରେ ନାରଦ ଯେଉଁ ଭଗବଦ୍ କଥା ବର୍ଣ୍ଣନା କରିଥିଲେ, ସେ ସମସ୍ତ ଶୁଣିବାକୁ ମୋର ଅଭିଳାଷ ଜନ୍ମିଅଛି, ଆପଣ ସେ ସମସ୍ତ ମୋ ନିକଟରେ ସବିସ୍ତାର ବର୍ଣ୍ଣନାକରନ୍ତୁ । ୫ ।

ଶ୍ରୀମୈତ୍ରେୟ କହିଲେ :—

ପିତା ପ୍ରବ୍ରଜ୍ୟା ଅବଲମ୍ବନ କରନ୍ତେ ଧ୍ରୁବଙ୍କର ପୁତ୍ର ପିତୃପାଳିତ ସାର୍ବଭୌମ ରାଜ୍ୟ ଓ ପିତାଙ୍କର ରାଜସିଂହାସନ ପ୍ରାପ୍ତହୋଇ ମଧ୍ୟ ତାହା ଗ୍ରହଣ କରିବାକୁ ଇଚ୍ଛା କଲେ ନାହିଁ । ୬ ।

କାରଣ ଜନ୍ମରୁ ସେ ଜ୍ଞାନୀ, ସଙ୍ଗରହିତ ଓ ସମଦର୍ଶୀ ଥିଲେ । ସେ ସର୍ବଭୂତରେ ପରମାତ୍ମାଙ୍କୁ ବ୍ୟାପ୍ତ ଏବଂ ପରମାତ୍ମାଙ୍କଠାରେ ସର୍ବ ଭୂତଙ୍କୁ ଦର୍ଶନ କରିଥିଲେ । ୭ ।

---

ସେ ଧର୍ମ୍ମଶୀଳ ପ୍ରଚେତସ
ଯଜ୍ଞେ ବିଷ୍ଣୁଙ୍କୁ କରି ତୋଷ
ଯେ ଭଗବତକଥା ଋଷି
ତାହାଙ୍କ ଆଗେ ଥିଲେ ଭାଷି
ସେକଥା କହ ମୁନି ମୋତେ
ବିସ୍ତାରି ଚରିତ ଯେମନ୍ତେ ।୨-୫

ଶ୍ରୀମୈତ୍ରେୟ ଉବାଚ—
ଧ୍ରୁବର ପୁତ୍ର ଗୁଣଧାମ
ଜ୍ୟେଷ୍ଠ ଉତ୍କଳ ତାର ନାମ
ତାହାକୁ ଅଧିରାଜ୍ୟେ ସ୍ଥାପେ
ଧ୍ରୁବ ଯେ ବନେ ଗଲେ ତପେ

ସେ ବସି ରାଜାର ଆସନେ
ଉତ୍ତମ ରତ୍ନସିଂହାସନେ
ପିତାର ଯାତ୍ରା ଶୁଣି ବନେ
ସୁଖ ନ ଲଭେ ଦୁଃଖ ମନେ ।୬।
ସେ ଯେ ସ୍ୱଭାବେ ଆତ୍ମଜ୍ଞାନୀ
ସମଦରଶୀ ବୁଦ୍ଧି ଜେଣି

ଆତ୍ମାନଂ ବ୍ରହ୍ମ ନିର୍ବାଣଂ ପ୍ରତ୍ୟସ୍ତମିତବିଗ୍ରହମ୍ ।
ଅବବୋଧରସୈକାତ୍ମ୍ୟମାନନ୍ଦମନୁସନ୍ତତମ୍ । ୮ ।
ଅବ୍ୟବଚ୍ଛିନ୍ନଯୋଗାଗ୍ନି ଦଗ୍ଧକର୍ମମଲାଶୟଃ ।
ସ୍ୱରୂପମବରୁନ୍ଧାନୋ ନାତ୍ମନୋଽନ୍ୟତ୍ ତଦୈକ୍ଷତ । ୯ ।
ଜଡ଼ାନ୍ଧବଧିରୋନ୍ମତ୍ତମୂକାକୃତିରତନ୍ମତିଃ ।
ଲକ୍ଷିତଃ ପଥି ବାଲାନାଂ ପ୍ରଶାନ୍ତାର୍ଚ୍ଚିରିବାନଲଃ । ୧୦ ।
ମତ୍ୱା ତଂ ଜଡ଼ମୁନ୍ମତ୍ତଂ କୁଳବୃଦ୍ଧାଃ ସମନ୍ତ୍ରିଣଃ ।
ବତ୍ସରଂ ଭୂପତିଂ ଚକ୍ରୁର୍ଯବୀୟାଂସଂ ଭ୍ରମେଃ ସୁତମ୍ । ୧୧ ।

---

ସେହି ଉତ୍କଳ ଅବିରତ ଯୋଗାନଳଦ୍ୱାରା ଅନ୍ତଃକରଣର ବାସନାସ୍ୱରୂପ ମଳିନତାକୁ ଦଗ୍ଧ କରିଥିଲେ । ତେଣୁ ତାହାଙ୍କର ଆତ୍ମା, ନିର୍ମଳ ଜ୍ଞାନରସ ସହିତ ଏକାତ୍ମ ଲାଭକରି ପ୍ରଶାନ୍ତ ଭାବରେ ଅବସ୍ଥିତ ହୋଇଥିଲା । ତନ୍ମଧ୍ୟରେ କୌଣସି ଭେଦବୁଦ୍ଧି ନ ଥିଲା, ସୁତରାଂ ସେ ସେହି ନିଜସ୍ୱରୂପ ଜୀବାତ୍ମାକୁ ସର୍ବବ୍ୟାପି ଆନନ୍ଦମୟ ପରଂବ୍ରହ୍ମ ସ୍ୱରୂପ ଜାଣି ବିଶେଷ କୌଣସି ଜୀବକୁ ନିଜସହିତ ଭିନ୍ନବୋଲି ମନେକରି ନ ଥିଲେ । ୮, ୯ ।

ସାଧାରଣ କ୍ଷେତ୍ରରେ ବାଳକ ପ୍ରଭୃତି ଅନଭିଜ୍ଞ ବ୍ୟକ୍ତି ମାନଙ୍କନିକଟରେ ତାହାଙ୍କର ମୂର୍ତ୍ତି ଜଡ଼, ଅନ୍ଧ, ବଧିର, ଉନ୍ମତ୍ତ କିମ୍ବା ମୂକ ବ୍ୟକ୍ତି ତୁଲ୍ୟ ପରିଲକ୍ଷିତ ହେଉଥିଲା । କିନ୍ତୁ ବସ୍ତୁତଃ ତାହାଙ୍କର ବୁଦ୍ଧିବୃତ୍ତି ଏହି ବ୍ୟକ୍ତିମାନଙ୍କର ବୁଦ୍ଧିବୃତ୍ତିପରି ଥିଲା । ଅଗ୍ନିଶିଖା ପ୍ରଦୀପ୍ତ ନ ହେଲେ ତାହାକୁ ଲୋକେ ଅକର୍ମଣ୍ୟ ବୋଲି ମନେକରନ୍ତି; ସେ ସେହିପରି ଥିଲେ । ୧୦ ।

କୁଳବୃଦ୍ଧମାନେ ଓ ମନ୍ତ୍ରୀମାନେ ଉତ୍କଳଙ୍କୁ ଜଡ଼ ବା ଉନ୍ମତ୍ତ ଭାବି ଉତ୍କଳଙ୍କ ଅପେକ୍ଷା ବୟଃ କନିଷ୍ଠ ଭ୍ରମି ଗର୍ଭଜାତ ବତ୍ସରଙ୍କୁ ରାଜପଦରେ ଅଭିଷିକ୍ତ କରାଇଥିଲେ । ୧୧ ।

---

ଦେଖଇ ସର୍ବଭୂତେ ହରି
ସ୍ଥିର ଜଙ୍ଗମେ ଅଛି ପୂରି
ସକଳ ଦେଖେ ହରିଠାରେ
ନିର୍ମ୍ମଳ ଜ୍ଞାନଚକ୍ଷୁ ଦ୍ୱାରେ
ଏକାନ୍ତ ଆତ୍ମବୋଧ ରସେ
ଗୁଣ ପ୍ରବାହେ ସେ ନ ମିଶେ
ଜଡ଼ାନ୍ଧ ବଧିରଙ୍କ ପ୍ରାୟେ
ଭସ୍ମ ଭୂଷିତଶୁଦ୍ଧ ଦେହେ

ବୁଲଇ ନାନାମାର୍ଗେ ଲୁଚି
କେହି ନ ପାରେ ତାକୁ ଲକ୍ଷି
ଜଡ଼ ଉନ୍ମତ୍ତ ତାକୁ ଜାଣି
ବନ୍ଧୁ ବାନ୍ଧବ ମନେ ଗୁଣି
ମନ୍ତ୍ରୀ ଅମାତ୍ୟଗଣେ ମିଳି
ରାଜ୍ୟ ରକ୍ଷଣ ମନେ ଭାଳି
ବତ୍ସର ତା ଅନୁଜ ନାମ
ସୁନ୍ଦର ସର୍ବ ଗୁଣଧାମ

ତାହାକୁ ସକଳେ ବରିଣ
ସ୍ୱରାଜ୍ୟେ ଅଭିଷେକ କରି
ଥାପିଲେ ନୃପତି ଆସନେ
ଏମନ୍ତେ ଗଲା କେତେଦିନେ ।୮-୧୧

ସୁବୀଥୀ ବତ୍ସରସ୍ୟେଷ୍ଟା ଭାର୍ଯ୍ୟାସୂତ ଷଡାତ୍ମଜାନ୍ ।
ପୁଷ୍ପାର୍ଣଂ ତିଗ୍ମକେତୁଞ୍ଚ ଇଷମୂର୍ଜଂ ବସୁଂ ଜୟମ୍ ।୧୨।
ପୁଷ୍ପାର୍ଣସ୍ୟ ପ୍ରଭା ଭାର୍ଯ୍ୟା ଦୋଷା ଚ ଦ୍ୱେ ବଭୂବତୁଃ ।
ପ୍ରାତର୍ମଧ୍ୟନ୍ଦିନଂ ସାୟମିତି ହ୍ୟାସନ୍ ପ୍ରଭାସୁତାଃ ।୧୩।
ପ୍ରଦୋଷୋ ନିଶିଥୋ ବ୍ୟୁଷ୍ଟ ଇତି ଦୋଷାସୁତାସ୍ତ୍ରୟଃ ।
ବ୍ୟୁଷ୍ଟଃ ସୁତଂ ପୁଷ୍କରିଣ୍ୟାଂ ସର୍ବତେଜସମାଦଧେ ।୧୪।
ସ ଚକ୍ଷୁଃ ସୁତମାକୂତ୍ୟାଂ ପତ୍ନ୍ୟାଂ ମନୁମବାପ ହ ।
ମନୋରସୂତ ମହିଷୀ ବିରଜାନ୍ ନଡ୍ୱଲା ସୁତାନ୍ ।୧୫।
ପୁରୁଂ କୃତ୍ସ୍ନମୃତଂ ଦ୍ୟୁମ୍ନଂ ସତ୍ୟବନ୍ତଂ ଧୃତଂ ବ୍ରତମ୍ ।
ଅଗ୍ନିଷ୍ଟୋମମତୀରାତ୍ରଂ ପ୍ରଦ୍ୟୁମ୍ନଂ ଶିବମୁଲ୍ମୁକମ୍ ।୧୬।

---

ବତ୍ସରଙ୍କର ପ୍ରିୟ ପତ୍ନୀ ସୁବୀଥୀ, ପୁଷ୍ପାର୍ଣ୍ଣ, ତିଗ୍ମକେତୁ, ଇଶ, ଊର୍ଜ, ବସୁ ଓ ଜୟନାମକ ଛଅଗୋଟି ପୁତ୍ର ପ୍ରସବ କରିଥିଲେ ।୧୨।

ପୁଷ୍ପାର୍ଣ୍ଣଙ୍କ ଦୋଷା ଓ ପ୍ରଭାନାମରେ ଦୁଇସ୍ତ୍ରୀ ଥିଲେ । ସେମାନଙ୍କ ମଧ୍ୟରୁ ପ୍ରଭାଙ୍କ ଗର୍ଭରେ ପ୍ରାତଃ, ମଧ୍ୟନ୍ଦିନ ଏବଂ ସାୟଂ ନାମରେ ତିନିଗୋଟି ପୁତ୍ର ଜନ୍ମ ହୋଇଥିଲେ ।୧୩।

ଦୋଷାଙ୍କର ମଧ୍ୟ ପ୍ରଦୋଷ; ନିଶିଥ, ବ୍ୟୁଷ୍ଟ, ନାମକ ତିନିପୁତ୍ର ଥିଲେ । ବ୍ୟୁଷ୍ଟ ପୁଷ୍କରିଣୀ ନାମ୍ନୀ ଭାର୍ଯ୍ୟାଙ୍କ ଗର୍ଭରେ ସର୍ବତେଜାନାମକ ଏକ ପୁତ୍ର ଉତ୍ପାଦନ କରିଥିଲେ ।୧୪।

ସେହି ସର୍ବତେଜାଙ୍କର ନାମ ଚକ୍ଷୁ, ସେ ଆକୂତି ନାମ୍ନୀ ପତ୍ନୀଙ୍କଠାରୁ ସ୍ୱୟୁଷ,ବା ମନୁନାମରେ ପୁତ୍ର ଉତ୍ପାଦନ କରିଥିଲେ । ଏହି ମନୁଙ୍କର ମହିଷୀ ନଡ୍ୱଲା, ତାହାଙ୍କର ପୁରୁ, କୃତ୍ସ୍ନ, ଋତ, ଦ୍ୟୁମାନ, ସତ୍ୟବାନ ଧୃତବ୍ରତ, ଅଗ୍ନିଷ୍ଟୋମ, ଅତିରାତ୍ର, ପ୍ରଦ୍ୟୁମ୍ନ, ଶିବ ଓ ଉଲ୍ମୁକ ନାମକ ବାରଟି ଶୁଦ୍ଧଚିତ୍ତ ପୁତ୍ର ଜନ୍ମ ଗ୍ରହଣ କରିଥିଲେ ।୧୫, ୧୬।

---

ସୁବୀଥୀ ନାମେ ପତ୍ନୀ ତାର
ଯୋଷିତଗଣେ ସେ ଗମ୍ଭୀର
ତାର ଉଦରେ ସୁତ ଜାତ
ହୋଇଲେ ଗୁଣେ ଅପ୍ରମିତ
ପୁଷ୍ପାର୍ଣ୍ଣ ତିଗ୍ମକେତୁ ନାମ
ଇଷ ଊର୍ଜ୍ଜ ଯେ ଅନୁପମ
ବସୁ ଜୟ ଏଷଟ ସୁତେ
ଗୁଣେ ପ୍ରଖ୍ୟାତ ଏ ଜଗତେ ।୧୨।
ପ୍ରଭା ଦୋଷା ଯେ ବେନି ନାରୀ
ପୁଷ୍ପାର୍ଣ୍ଣ ଥିଲେ ବରିକରି

ସେ ପ୍ରଭା ଗର୍ଭେ ତିନି ସୁତ
ହୋଇଲେ ଜଗତେ ବିଖ୍ୟାତ
ପ୍ରାତଃ ମଧ୍ୟାହ୍ନ ସାୟଂକାଳ
ସ୍ୱଭାବେ ତେଜ ଅନର୍ଗଳ
ପ୍ରଦୋଷ ଅର୍ଦ୍ଧରାତ୍ର ବ୍ୟୁଷ୍ଟ
ଦୋଷାରଗର୍ଭେ ତିନିସୃଷ୍ଟ ।୧୩।୧୪
ବ୍ୟୁଷ୍ଟର ପତ୍ନୀ ପୁଷ୍କରିଣୀ
ତା ଗର୍ଭେ ସର୍ବ ତେଜା ଜନ୍ମି
ସ୍ୱୟୁଷ ମନୁ ତାର ବୀର୍ଯ୍ୟେ
ଜନ୍ମିଲେ ଆକୂତିର ଗର୍ଭେ ।୧୫।

ନଡ୍ୱଳା ସ୍ୱୟୁଷର ନାରୀ
ରୂପେ କମଳା ନୋହେ ସରି
ତାର ଉଦରେ ବାର ସୁତେ
ଜନ୍ମିଲେ ବିଷ୍ଣୁ ତେଜ ଯୁତେ
ନାମେ ସେପୁରୁକୃସ୍ନ ଋତ
ଦ୍ୟୁମ୍ନ ସତ୍ୟ ଯେ ଧୃତ ବ୍ରତ
ଅତିରାତ୍ର ଯେ ଅଗ୍ନିଷ୍ଟୋମ
ଶିବ ଯେ ଉଲ୍ମୁକ ପ୍ରଦ୍ୟୁମ୍ନ ।୧୬।

ଉଲ୍ମୁକୋଽଜନୟତ୍ ପୁତ୍ରାନ୍ ପୁଷ୍କରଣ୍ୟାଂ ଷଡୁତ୍ତମାନ୍ ।
ଅଙ୍ଗଂ ସୁମନସଂ ସ୍ୱାତିଂ କ୍ରତୁମଙ୍ଗିରସଂ ଗୟମ୍ । ୧୭ ।
ସୁନୀଥାଙ୍ଗସ୍ୟ ଯା ପତ୍ନୀ ସୁଷୁବେ ବେଣମୁଲ୍ବଣମ୍ ।
ଯଦ୍ଦୌଃଶୀଲ୍ୟାତ୍ ସ ରାଜର୍ଷିର୍ନିର୍ବିଣ୍ଣୋ ନିରଗାତ୍ ପୁରାତ୍ । ୧୮ ।
ଯମଙ୍ଗ ଶେପୁଃ କୁପିତା ବାଗ୍‌ବଜ୍ରା ମୁନୟଃ କିଲ ।
ଗତାସୋସ୍ତସ୍ୟ ଭୂୟସ୍ତେ ମମନ୍ଥୁର୍ଦକ୍ଷିଣଂ କରମ୍ । ୧୯ ।
ଅରାଜକେ ତଦା ଲୋକେ ଦସ୍ୟୁଭିଃ ପୀଡ଼ିତାଃ ପ୍ରଜାଃ ।
ଜାତୋ ନାରାୟଣାଂଶେନ ପୃଥୁରାଦ୍ୟଃ କ୍ଷିତୀଶ୍ୱରଃ । ୨୦ ।

---

ସେମାନଙ୍କ ମଧ୍ୟରେ ଉଲ୍ମୁକ ସ୍ୱୀୟ ଭାର୍ଯ୍ୟା ପୁଷ୍କରଣୀଙ୍କ ଗର୍ଭରେ ଅଙ୍ଗ, ସୁମନା, ସ୍ୱାତି, କ୍ରତୁ, ଅଙ୍ଗିରା, ଓ ଗୟ ନାମରେ ଛଅଗୋଟି ପୁତ୍ର ଉତ୍ପାଦନ କରିଥିଲେ । ୧୭ ।

ଅଙ୍ଗ ପତ୍ନୀଙ୍କର ସର୍ବଭୂତଙ୍କର ଭୟାବହ ବେଣନାମକ ଏକ ପୁତ୍ର ଜାତ ହୋଇଥିଲା । ତାହାଙ୍କର ଦୁଃଶୀଳତା ହେତୁ ରାଜର୍ଷି ଅଙ୍ଗ ବିରକ୍ତ ହୋଇ ଗୃହତ୍ୟାଗ କରି ଚାଲି ଯାଇଥିଲେ । ୧୮ ।

ହେ ବତ୍ସ ! ବଜ୍ରତୁଲ୍ୟ ଶକ୍ତିଶାଳୀ ବାକ୍ୟ ସମ୍ପନ୍ନ ମୁନିମାନେ କୁପିତ ହୋଇ ଏହି ବେଣଙ୍କ ପ୍ରତି ଅଭିଶାପ ପ୍ରଦାନକରିବାରୁ ସେଗତାୟୁ ହୋଇଥିଲେ କିନ୍ତୁ ବେଣଙ୍କର ମୃତ୍ୟୁରେଅରାଜକତା ଉପସ୍ଥିତହେବାରୁ ଦସ୍ୟୁମାନଙ୍କ ଦ୍ୱାରା ପ୍ରଜାକୁଳ ନିପୀଡ଼ିତ ହୋଇଥିଲେ । ଏଣୁ ମୁନିମାନେ ତାହାଙ୍କର ( ମୃତବେଣଙ୍କର ) ଦକ୍ଷିଣକର ମନ୍ଥନ କରିବାରୁ ଭଗବାନ୍ ନାରାୟଣ ଅଂଶରେ ଆଦିରାଜ ପୃଥୁ ଜନ୍ମଗ୍ରହଣ କରିଥିଲେ ।୧୯,୨୦

---

ଉଲ୍ମୁକ ତହୁଁ ଷଃ ସୁତ
ହୋଇଲେ ମନୁବଂଶେ ଖ୍ୟାତ
ଅଙ୍ଗ ସୁମନ ସ୍ୱାତି ତନ
କ୍ରତୁ ଅଙ୍ଗିର ଗୟ ଘେନ ।୧୭।
ସୁନୀଥା ଯମର ଦୁହିତା
ଅଙ୍ଗର ଅଟେ ସେ ବନିତା
ବେଣ ତାହାର ଗର୍ଭୁ ଜାତ
ଶୁଣ ହେ ତାହାର ଚରିତ
ସେ ପୁଣି ମାତାମହ ଦୋଷେ
ଦୁଷ୍ଟ ହୋଇଲା ମନୁବଂଶେ

ଦୁଃଶୀଳପଣ ଦେଖି ତାର
ପିତା ଚଳିଲା ଛାଡି ପୁର । ୧୮।
ଦେଖି ତାହାର ଦୁଷ୍ଟପଣ
କୋପେ ଶାପିଲେ ମୁନିଗଣ
ମୁନିଙ୍କ ବାକ୍ୟ-ବାଣେ କରି
ତାହାର ପ୍ରାଣ ବେଗେ ହରି
ପୁଣି ତାହାର ମୃତ ଗାତ୍ରେ
ବିପ୍ରେ ମନ୍ଥିଲେ ପୁତ୍ରଅର୍ଥେ
ଦକ୍ଷିଣ କରେ କୁଶବନ୍ଧ
ମନ୍ଥନ କଲେ ବେଦପଢି

ପ୍ରଜା ଅନାଥ ଅରାଜକେ
ଦୁଷ୍ଟେ ପୀଡ଼ିଲେ ଅତରେକେ
ତା ଦେଖି ପୃଥୁ ନାମେ ହରି
ଜନ୍ମିଲେ ରାଜରୂପ ଧରି
ତା ଶୁଣି ସନ୍ତୋଷ ବିଦୁର
ମୁନିଚରଣେ ଦେଇ କର
ପ୍ରେମପୁଲକ ତନୁ ବହି
ପୃଚ୍ଛଇ କୃତକୃତ୍ୟ ହୋଇ ।୧୯,୨୦

ଶ୍ରୀବିଦୁର ଉବାଚ ।

ତସ୍ୟ ଶୀଲନିଧେଃ ସାଧୋର୍ବ୍ରହ୍ମଣ୍ୟସ୍ୟ ମହାତ୍ମନଃ ।
ରାଜ୍ଞଃ କଥମଭୂଦ୍ଦୁଷ୍ଟା ପ୍ରଜା ଯଦ୍ବିମନା ଯଯୌ । ୨୧ ।
କିଂ ବାଂହୋ ବେଣ ଉଦ୍ଦିଶ୍ୟ ବ୍ରହ୍ମଦଣ୍ଡମୟୁୟୁଜନ୍ ।
ଦଣ୍ଡବ୍ରତଧରେ ରାଜ୍ଞି ମୁନୟୋ ଧର୍ମକୋବିଦାଃ । ୨୨ ।
ନାବଧ୍ୟେୟଃ ପ୍ରଜାପାଳଃ ପ୍ରଜାଭିରଘବାନପି ।
ଯଦସୌ ଲୋକପାଳାନାଂ ବିଭର୍ତ୍ତ୍ୟୋଜଃ ସ୍ୱତେଜସା । ୨୩ ।
ଏତଦାଖ୍ୟାହି ମେ ବ୍ରହ୍ମନ୍ ସୁନୀଥାତ୍ମଜଚେଷ୍ଟିତମ୍ ।
ଶ୍ରଦ୍ଦଧାନାୟ ଭକ୍ତାୟ ତ୍ୱଂ ପରାବରବିତ୍ତମଃ । ୨୪ ।

---

ଶ୍ରୀବିଦୁର କହିଲେ :—

ଅତ୍ୟନ୍ତ ସତ୍ସ୍ୱଭାବ ସମ୍ପନ୍ନ ସଦାଶୟ ବ୍ରାହ୍ମଣାନୁରକ୍ତ, ମହାତ୍ମା ଅଙ୍ଗରାଜଙ୍କର କିପରି ଏପରି ପୁତ୍ର ଜାତ ହେଲା, ଯାହାଙ୍କ ଯୋଗେ ଦୁଃଖିତ ହୋଇ ସେ ରାଜ୍ୟ ଓ ଗୃହ ପରିତ୍ୟାଗ କରିଗଲେ ? । ୨୧ ।

ଧର୍ମପରାୟଣ ମୁନିମାନେ ବେଣଙ୍କର କି ପାପ ଦେଖି ତାହାଙ୍କ ପ୍ରତି ବ୍ରହ୍ମଶାପ ପ୍ରଦାନ କରିଥିଲେ ? ।୨୨।

ରାଜା ଅଧର୍ମ ପରାୟଣ ହେଲେ ମଧ୍ୟ ତାହାଙ୍କୁ ଅବଜ୍ଞା କରିବା ପ୍ରଜାମାନଙ୍କର ଉଚିତ ନୁହେଁ; କାରଣ ସେ ନିଜ ପ୍ରଭାବରେ ଇନ୍ଦ୍ରାଦି ଲୋକପାଳଗଣଙ୍କର ମହିମାଧାରଣ କରିଥାନ୍ତି । ୨୩ ।

ହେ ମୁନିବର ! ଆପଣ ପର ଓ ଅପର ଅର୍ଥାତ୍ ନିରୁପାଧିକ ଓ ସୋପାଧିକ ବ୍ରହ୍ମଜ୍ଞାନୀମାନଙ୍କ ମଧ୍ୟରେ ଶ୍ରେଷ୍ଠ, ମୁଁ ମଧ୍ୟ ଭକ୍ତିଯୁକ୍ତ ହୋଇ ଶ୍ରଦ୍ଧା ସହକାରେ ସେହି ସୁନୀଥାପୁତ୍ର ବେଣଙ୍କର ଉପାଖ୍ୟାନ ଶୁଣିବାକୁ ଚାହେଁ, ସୁତରାଂ ଆପଣ ଏହା ମୋ ନିକଟରେ କୀର୍ତ୍ତନ କରନ୍ତୁ । ୨୪ ।

---

ଶ୍ରୀବିଦୁର ଉବାଚ—

ଯେ ଅଙ୍ଗ ସାଧୁ ଶୀଳ ନିଧି
ସର୍ବ ଲକ୍ଷଣ ଶ୍ରେଷ୍ଠ ବିଧି
ବ୍ରହ୍ମଣ୍ୟ ପ୍ରଜା ରକ୍ଷା କରି
ସେ ସର୍ବ ଧର୍ମ୍ମ ଅଧିକାରୀ
ଯେ ବେଣ ନାମେ ତାର ସୁତ
ସେ ଦୁଷ୍ଟ ହୋଇଲା କେମନ୍ତ
ପ୍ରଜାଏ ତାର ଦୁଷ୍ଟପଣେ
ଭୟେ ପଶିଲେ ଘୋରବନେ
କିପାଁ ବ୍ରାହ୍ମଣେ କୋପକଲେ
ତାହାକୁ କିପାଇଁ ନାଶିଲେ
ସେ ବିପ୍ରବର ଧର୍ମ୍ମଜ୍ଞାତା
ଆଗମ ନିଗମ ବକତା
ଏଡ଼େ ଅନ୍ୟାୟ କିପାଁ କଲେ
ରାଜାଙ୍କୁ ଘୋର ଶାପ ଦେଲେ
ରାଜାର ଶରୀରେ ନିଶ୍ଚୟେ
ବସନ୍ତି ଦଶଦିଗପାଳେ
ଯେ ରାଜା ବିଷ୍ଣୁ ତେଜ ବହି
ସ୍ୱଧର୍ମ୍ମେ ପ୍ରଜାଙ୍କୁ ପାଳଇ
ଯମର ସୁତା-ସୁତ ଯେଣୁ
ଦୁଷ୍ଟ ହୋଇଲା ଅବା ତେଣୁ
ଏ କଥା କହ ମୁନି ମୋତେ
ସଂଶୟ ରହୁ ମୋ ଚିତ୍ତେ । ୨୧-୨୪

ଶ୍ରୀମୈତ୍ରେୟ ଉବାଚ ।

ଅଙ୍ଗୋଽଶ୍ୱମେଧଂ ରାଜର୍ଷିରାଜହାର ମହାକ୍ରତୁମ୍ ।
ନାଜଗ୍ମୁର୍ଦେବତାସ୍ତସ୍ମିନ୍ନାହୂତା ବ୍ରହ୍ମବାଦିଭିଃ । ୨୫ ।
ତ ଊଚୁର୍ବିସ୍ମିତାସ୍ତତ୍ର ଯଜମାନମଥର୍ତ୍ୱିଜଃ ।
ହବୀଂଷି ହୂୟମାନାନି ନ ତେ ଗୃହ୍ଣନ୍ତି ଦେବତାଃ । ୨୬ ।
ରାଜନ୍ ହବୀଂଷ୍ୟଦୁଷ୍ଟାନି ଶ୍ରଦ୍ଧୟାସାଦିତାନି ତେ ।
ଛନ୍ଦାଂସ୍ୟଯାତଯାମାନି ଯୋଜିତାନି ଧୃତବ୍ରତୈଃ । ୨୭ ।
ନ ବିଦାମେହ ଦେବାନାଂ ହେଲନଂ ବୟମଣ୍ୱପି ।
ଯନ୍ନ ଗୃହ୍ଣନ୍ତି ଭାଗାନ୍ ସ୍ୱାନ୍ ଯେ ଦେବାଃ କର୍ମସାକ୍ଷିଣଃ । ୨୮ ।

---

ଶ୍ରୀମୈତ୍ରେୟ କହିଲେ :—

ରାଜର୍ଷି ଅଙ୍ଗ ଅଶ୍ୱମେଧ ନାମକ ମହାଯଜ୍ଞ ଆରମ୍ଭ କରିଥିଲେ । ସେଠାକୁ ବେଦଜ୍ଞ ପୁରୋହିତ ବ୍ରାହ୍ମଣମାନେ ନିମନ୍ତ୍ରିତ ହୋଇ ଆସିଲେ ମଧ୍ୟ, ଦେବତାମାନେ ଆସିଲେ ନାହିଁ । ୨୫ ।

ବତ୍ସ ବିଦୁର ! ତଦନନ୍ତର ପୁରୋହିତମାନେ ବିସ୍ମିତହୋଇ ଯଜମାନ ଅଙ୍ଗଙ୍କୁ କହିଲେ—"ଯଜ୍ଞର ଆହୁତି ନିମନ୍ତେ ଆପଣ ଯେଉଁ ଘୃତାଦି ଆୟୋଜନ କରିଅଛନ୍ତି; ତାହା ଦେବତାମାନେ ଗ୍ରହଣ କରୁନାହାନ୍ତି" । ୨୬ ।

ହେ ମହାରାଜ ! ଆପଣ ଶ୍ରଦ୍ଧାରେ ଯେଉଁ ହୋମ-ସାମଗ୍ରୀମାନ ଆୟୋଜନ କରି ଅଛନ୍ତି, ତହିଁରେ କୌଣସିହି ମନ୍ଦନାହିଁ, ଆମ୍ଭେମାନେ ମଧ୍ୟ ନିୟମାନୁସାରେ ସମସ୍ତ ମନ୍ତ୍ର ପ୍ରୟୋଗ କରୁଅଛୁଁ, ତଥାପି ଫଳ ନାହିଁ । ୨୭ ।

ଆମ୍ଭେମାନେ ଏହି ଯଜ୍ଞରେ ଦେବତାମାନଙ୍କର କୌଣସିପ୍ରକାର ବିନ୍ଦୁମାତ୍ରେ ଅବହେଳା ଅନୁଭବ କରୁନାହୁଁ, କେଉଁହେତୁ ସେମାନେ ନିଜର ଯଜ୍ଞଭାଗ ଗ୍ରହଣକରି ପାରୁନାହାନ୍ତି । ୨୮ ।

---

ଶ୍ରୀମୈତ୍ରେୟ ଉବାଚ—
ଶୁଣ ହେ ବେଣଦୁଷ୍ଟପଣ
କହିବା ନିମିତ୍ତ କାରଣ
ଅଙ୍ଗ ଯେ ଅଶ୍ୱମେଧ କଲା
ଉତ୍ତମ ଋଷିଙ୍କୁ ବରିଲା
ସକଳେ ମିଳି ବେଦ ନାଦେ
ଅନଳ ପୂଜିଲେ ସମିଧେ
ଯଜ୍ଞକୁଣ୍ଡକୁ ବିପ୍ର ରହି
ଦେଖିଲେ ଦେବଗଣେ ନାହିଁ

ଇନ୍ଦ୍ରାଦି ସର୍ବ ଦିଗପାଳେ
ସେ ଯଜ୍ଞେ କେହି ନ ମିଳିଲେ
ଦେଖି ବିସ୍ମୟ ମୁନିଜନ
ନିକଟେ ରାଇ ଯଜମାନ
ବୋଇଲେ ରାଜାମୁଖ ରହି
ଏ ଯଜ୍ଞ କଲୁ କିସ ପାଇଁ
ଦେବେ ଯେ ହବି ନ ଘେନିଲେ
ଆମ୍ଭେ ସର୍ବଜ୍ଞ ତେଣୁ ଭିଲେ
ଶୁଣ ରାଜନ ସାବଧାନେ
କିବା କଳିତ ତୋର ମନେ

ପବିତ୍ର ଦ୍ରବ୍ୟ ଶ୍ରଦ୍ଧା କରି
ସକଳ ନିଗମ ଉଚ୍ଚାରି
ଆମ୍ଭେ ସକଳେ ଧୃତବ୍ରତା
ତୁମ୍ଭେ ସ୍ୱଭାବେ ଶୁଦ୍ଧଚେତା
ମନ୍ତ୍ର ଉଚ୍ଚାରି ଆମ୍ଭେ ତୁଣ୍ଡେ
ଆହୁତି ଦେଲୁ ଯଜ୍ଞକୁଣ୍ଡେ
ଦେବେ ନଇଲେ କେଉଁଭାବେ
ତାର ପ୍ରସ୍ତାବ ଶୁଣ ଏବେ
ସକଳ କର୍ମସାକ୍ଷୀ ଦେବେ
କର୍ପା ନଇଲେ ଯଜ୍ଞଭାଗେ । ୨୫-୨୮

ଶ୍ରୀମୈତ୍ରେୟ ଉବାଚ ।

ଅଙ୍ଗୋ ଦ୍ୱିଜବଚଃ ଶ୍ରୁତ୍ୱା ଯଜମାନଃ ସୁଦୁର୍ମନାଃ ।
ତତ୍ ପ୍ରଷ୍ଟୁଂ ବ୍ୟସୃଜଦ୍‌ବାଚଂ ସଦସ୍ୟାଂସ୍ତଦନୁଜ୍ଞୟା । ୨୯ ।
ନାଗଚ୍ଛନ୍ତ୍ୟାହୃତା ଦେବା ନ ଗୃହ୍ଣନ୍ତି ଗ୍ରହାନିହ ।
ସଦସସ୍ପତୟୋ ବ୍ରୂତ କିମବଦ୍ୟଂ ମୟା କୃତମ୍ । ୩୦ ।

ଶ୍ରୀସଦସସ୍ପତୟ ଊଚୁଃ ।

ନରଦେବେହ ଭବତୋ ନାଘଂ ତାବନ୍ମନାକ୍ ସ୍ଥିତମ୍ ।
ଅସ୍ତ୍ୟେକଂ ପ୍ରାକ୍ତନମଘଂ ଯଦିହେଦୃକ୍ ତ୍ୱମପ୍ରଜଃ । ୩୧ ।
ତଥା ସାଧୟ ଭଦ୍ରନ୍ତେ ଆତ୍ମାନଂ ସୁପ୍ରଜଂ ନୃପ ।
ଇଷ୍ଟସ୍ତେ ପୁତ୍ରକାମସ୍ୟ ପୁତ୍ରଂ ଦାସ୍ୟତି ଯଜ୍ଞଭୁକ୍ । ୩୨ ।

---

**ଶ୍ରୀମୈତ୍ରେୟ କହିଲେ :—**

ଯଜମାନର ଅଙ୍ଗ ସ୍ୱରୂପ ପୁରୋହିତମାନଙ୍କର ଏହି କଥାମାନ ଶୁଣି ଅତ୍ୟନ୍ତ ଉଦ୍‌ବିଗ୍ନ ଚିତ୍ତରେ ସଦସ୍ୟମାନଙ୍କ ନିକଟରେ ଉପସ୍ଥିତ ହୋଇ ସେମାନଙ୍କ ଅନୁମତିସହ ପ୍ରଶ୍ନ କଲେ । ୨୯ ।

ହେ ସଦସ୍ୟ ମହୋଦୟଗଣ ! ଏହି ଯଜ୍ଞରେ ଯଥା ବିଧି ଆହ୍ୱାନ କଲେ ମଧ୍ୟ ଦେବତାମାନେ ଆସୁ ନାହାନ୍ତି, ଏବଂ ସୋମପାତ୍ର ମଧ୍ୟ ଗ୍ରହଣ କରୁନାହାନ୍ତି । ଏହାର କାରଣ କଣ ? ମୁଁ ଏପରି କି ଗର୍ହିତ କାର୍ଯ୍ୟ କରିଅଛି; ତାହା ମୋତେ କୁହନ୍ତୁ । ୩୦ ।

**ଶ୍ରୀସଦସ୍ୟଗଣ କହିଲେ :—**

ହେ ମହାରାଜ ! ଏ ଜନ୍ମରେ ଆପଣ କିଛିମାତ୍ର ପାପ କରି ନାହାନ୍ତି, କିନ୍ତୁ ପୂର୍ବଜନ୍ମରେ ଗୋଟିଏ ପାପ କରିଅଛନ୍ତି, ଯେହେତୁ ଆପଣ ଧାର୍ମିକ ହେଲେ ମଧ୍ୟ ଆପଣ ନିସନ୍ତାନ ହୋଇ ଅଛନ୍ତି । ୩୧ ।

ଅତଏବ ହେ ନୃପ ! ଯଦ୍ୱାରା ଆପଣଙ୍କର ପୁତ୍ରଲାଭ ହୁଏ, ସେପରି କର୍ମାନୁଷ୍ଠାନ କରନ୍ତୁ, ଆପଣ ପୁତ୍ରକାମନାକରି ଯଜ୍ଞ କଲେ, ଯଜ୍ଞ ପୁରୁଷ ଶ୍ରୀହରି ଆପଣଙ୍କୁ ପୁତ୍ର ପ୍ରଦାନ କରିବେ । ୩୨ ।

---

**ଶ୍ରୀମୈତ୍ରେୟ ଉବାଚ—**

ଅଙ୍ଗ ଯେ ବିପ୍ରବାକ୍ୟ ଶୁଣି
ଦୁଃଖିତ ମନେ ନୃପମଣି
ସଭ୍ୟଜନଙ୍କ ମୁଖ ଚାହିଁ
କହଇ ଶିରେ କର ଦେଇ
କି ମନ୍ଦ କର୍ମ୍ମ ମୋର ଅଛି
ହେ ବିପ୍ରେ କହ ଧର୍ମ୍ମ ଲକ୍ଷି
ଦେବେ ନଇଲେ ଯଜ୍ଞସ୍ଥଳେ
କାରଣ କହ ମୋରଆଗେ ।୨୯,୩୦

**ଶ୍ରୀସଦସ୍ୟା ଊଚୁଃ—**

ଏମନ୍ତ ରାଜାମୁଖୁଁ ଶୁଣି
ସ୍ୱଧର୍ମ୍ମ ବିପ୍ରେ ପରମାଣି
ବୋଇଲେ ରାଜାମୁଖ ଚାହିଁ
ଏଜନ୍ମେ ତୋର ଦୋଷ ନାହିଁ
ପୂର୍ବ ଅର୍ଜ୍ଜିତ କର୍ମ୍ମବଳେ
ସନ୍ତତି ନାହିଁ ତୋର କୋଳେ
ଅପୁତ୍ର ଦୋଷେ ଦେବଗଣେ
ନଇଲେ ଯଜ୍ଞ ନିମନ୍ତ୍ରଣେ ।୩୧।
ତୁ ଏବେ ପୁତ୍ରଯଜ୍ଞ କର
ଯଜ୍ଞେ ଯଜ୍ଞପୁରୁଷ ବର
ତେବେ ସକଳ ଦେବଗଣ
ତୋ ଯଜ୍ଞେ ହୋଇବେ ବରଣ

ତଥା ସ୍ୱଭାଗଧେୟାନି ଗ୍ରହୀଷ୍ୟନ୍ତି ଦିବୌକସଃ ।
ଯଦ୍‌ଯଜ୍ଞପୁରୁଷଃ ସାକ୍ଷାଦପତ୍ୟାୟ ହରିର୍ବୃତଃ । ୩୩ ।
ତାଂସ୍ତାନ୍ କାମାନ୍ ହରିର୍ଦଦ୍ୟାଦ୍ ଯାନ୍ ଯାନ୍ କାମୟତେ ଜନଃ ।
ଆରାଧିତୋ ଯଥୈବୈଷ ତଥା ପୁଂସାଂ ଫଲୋଦୟଃ । ୩୪ ।
ଇତି ବ୍ୟବସିତା ବିପ୍ରାସ୍ତସ୍ୟ ରାଜ୍ଞଃ ପ୍ରଜାତୟେ ।
ପୁରୋଡାଶଂ ନିରବପନ୍ ଶିପିବିଷ୍ଟାୟ ବିଷ୍ଣବେ । ୩୫ ।
ତସ୍ମାତ୍‌ପୁରୁଷ ଉତ୍ତସ୍ଥୌ ହେମମାଲ୍ୟମଲାମ୍ବରଃ ।
ହିରଣ୍ମୟେନ ପାତ୍ରେଣ ସିଦ୍ଧମାଦାୟ ପାୟସମ୍ । ୩୬ ।
ସ ବିପ୍ରାନୁମତୋ ରାଜା ଗୃହୀତ୍ୱାଞ୍ଜଲିନୌଦନମ୍ ।
ଅବଘ୍ରାୟ ମୁଦା ଯୁକ୍ତଃ ପ୍ରାଦାତ୍ ପତ୍ନ୍ୟା ଉଦାରଧୀଃ । ୩୭ ।
ସା ତତ୍ ପୁଂସବନଂ ରାଜ୍ଞୀ ପ୍ରାଶ୍ୟ ବୈ ପତ୍ୟୁରାଦଧେ ।
ଗର୍ଭଂ କାଲ ଉପାବୃତ୍ତେ କୁମାରଂ ସୁଷୁବେଽପ୍ରଜାଃ । ୩୮ ।

---

ଆପଣ ପୁତ୍ରଲାଭ ନିମିତ୍ତ ସାକ୍ଷାତ୍ ଯଜ୍ଞପୁରୁଷ ଶ୍ରୀହରିଙ୍କୁ ବରଣ କଲେ ତାହାଙ୍କ ସହିତ ଦେବତାମାନେ ଆସି ନିଜ ନିଜର ଯଜ୍ଞ ଭାଗ ଗ୍ରହଣ କରିବେ । ଫଳତଃ ଯେ ଯେଉଁଭାବରେ ଶ୍ରୀହରିଙ୍କୁ ଆରାଧନା କରେ, ସେ ସେହି ଅନୁସାରେ ଫଳଲାଭ କରେ । ୩୩, ୩୪ ।

ଋତ୍ୱିକମାନେ ସଦସ୍ୟମାନଙ୍କର ବାକ୍ୟ ସମର୍ଥନ କରି ଅଙ୍ଗରାଜାଙ୍କର ପୁତ୍ରଲାଭ ନିମିତ୍ତ ପଶୁଗଣଙ୍କ ମଧ୍ୟରେ ଯଜ୍ଞରୂପରେ ପ୍ରବିଷ୍ଟ ଭଗବାନ୍ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ପୁରୋଡାଶ ଦ୍ୱାରା ଆହୁତି ପ୍ରଦାନ କଲେ ।୩୫।

ତହିଁରେ ସେହି ଯଜ୍ଞ ଅଗ୍ନିରୁ ସୁବର୍ଣ୍ଣପାତ୍ରରେ ସୁପକ୍ୱ ପାୟସ ହସ୍ତରେ ଧାରଣ କରି ସୁବର୍ଣ୍ଣମାଲ୍ୟ ଓ ଶୁଭ୍ର ବସନ ପରିହିତ ପୁରୁଷ ବହିର୍ଗତ ହୋଇଥିଲେ । ୩୬ ।

ଉଦାର ବୁଦ୍ଧି ସେହି ରାଜା ବ୍ରାହ୍ମଣମାନଙ୍କ ଅନୁଜ୍ଞା ଅନୁସାରେ ଅଞ୍ଜଳି ବଦ୍ଧ ହୋଇ ଏହି ପାୟସ ଗ୍ରହଣ କରିଥିଲେ ଏବଂ ସ୍ୱୟଂ ତାହା ଆଘ୍ରାଣକରି ସ୍ୱୀୟ ପତ୍ନୀ ସୁନୀଥାଙ୍କୁ ପ୍ରଦାନ କରିଥିଲେ । ୩୭ ।

ପୁତ୍ରହୀନା ରାଣୀ ସୁନୀଥା ସେହି ପୁତ୍ରୋତ୍ପାଦନକାରୀ ପାୟସ ଆନନ୍ଦରେ ଭକ୍ଷଣ କରିଥିଲେ ଏବଂ ତଦନନ୍ତର ତାହାଙ୍କର ଗର୍ଭ ଉଦିତହେଲା ଏବଂ ଯଥା ସମୟରେ ଗୋଟିଏ ପୁତ୍ର ଜାତ ହେଲା । ୩୮ ।

---

ସେ ବିଷ୍ଣୁ ହବିର୍ଭାଗ ପାଇ
ତୋହର ଯଜ୍ଞେ ତୋଷ ହୋଇ
ସେ ହରି ପୁତ୍ର ଦେବେ ତୋତେ
ଫସାରୁଁ ତରିବୁଁ ଯେମନ୍ତେ ।୩୨-୩୪
ଏମନ୍ତ ସଭ୍ୟ-ବାକ୍ୟ ଶୁଣି
ସେ ଅଙ୍ଗରାଜା ମନେ ଗୁଣି
ଯଜ୍ଞେ ଯଜ୍ଞପୁରୁଷ ଭୁଞ୍ଜେ
ଆହୁତି ଦେଲେ ହୋମକୁଣ୍ଡେ ।୩୫।

ତକ୍ଷଣେ ହୋମକୁଣ୍ଡୁ ଜାତ
ପୁରୁଷ ହୋଇଲା ସମ୍ଭୂତ
ହୃଦେ ଲମ୍ବଇ ହେମ ହାର
କଟୀରେ ନିର୍ମଳ ଅମ୍ବର
ସୁବର୍ଣ୍ଣ ପାତ୍ର କରେ ଧରି
ପୂରେ ଅମୃତ-ମୟ କ୍ଷୀରି
ବିପ୍ରଙ୍କ ବାକ୍ୟେ କ୍ଷୀରି ପାତ୍ର
ହସ୍ତେ ଘେନିଲା ନରନାଥ

ଆଘ୍ରାଣ କରି ନାସାଦ୍ୱାରେ
ଦେଲାସେ ନିଜପତ୍ନୀକରେ ।୩୬,୩୭
ସେ ପୁଂସବନ କ୍ଷୀରି ଆଣି
ଗୃହେ ଭୁଞ୍ଜିଲା ତା ଘରଣୀ
ତକ୍ଷଣେ ପୁଂସବନ ସ୍ତବେ
ପୁତ୍ର ରହିଲା ତାର ଗର୍ଭେ
ସେ ଗର୍ଭକାଳ ଉପଗତେ
କୁମର ଜନ୍ମିଲା ଅଦ୍ଭୁତେ ।୩୮।

ସ ବାଲ ଏବ ପୁରୁଷୋ ମାତାମହମନୁବ୍ରତଃ ।
ଅଧର୍ମାଂଶୋଦ୍ଭବଂ ମୃତ୍ୟୁଂ ତେନାଭବଦଧାର୍ମିକଃ । ୩୯ ।
ସ ଶରାସନମୁଦ୍ୟମ୍ୟ ମୃଗୟୁର୍ବନଗୋଚରଃ ।
ହନ୍ତ୍ୟସାଧୁର୍ମୃଗାନ୍ ଦୀନାନ୍ ବେଣୋଽସାବିତ୍ୟରୌତ୍ଜନଃ । ୪୦ ।
ଆକ୍ରୀଡେ କ୍ରୀଡ଼ତୋ ବାଲାନ୍ ବୟସ୍ୟାନତିଦାରୁଣଃ ।
ପ୍ରସହ୍ୟ ନିରନୁକ୍ରୋଶଃ ପଶୁମାରମମାରୟତ୍ । ୪୧ ।
ତଂ ବିଚକ୍ଷ୍ୟ ଖଲଂ ପୁତ୍ରଂ ଶାସନୈର୍ବିବିଧୈର୍ନୃପଃ ।
ଯଦା ନ ଶାସିତୁଂ କଲ୍ପୋ ଭୃଶମାସୀତ୍ସୁଦୁର୍ମନାଃ । ୪୨ ।
ପ୍ରାୟେଣାଭ୍ୟର୍ଚ୍ଚିତୋ ଦେବୋ ଯେଽପ୍ରଜା ଗୃହମେଧିନଃ ।
କଦପତ୍ୟଭୃତଂ ଦୁଃଖଂ ଯେ ନ ବିନ୍ଦନ୍ତି ଦୁର୍ଭରମ୍ । ୪୩ ।

---

ସେହି ରାଜପୁତ୍ର ବେଣ ଅଧର୍ମ ଅଂଶରେ ଜନ୍ମଗ୍ରହଣ କରି ପାପସହ ମୃତ୍ୟୁଅନୁଗାମୀ ହୋଇଥିଲେ, ଏହି କାରଣରୁ ସେ ଅଧାର୍ମିକ ହେଲେ । ୩୯ ।

ସେହି ଅସାଧୁ ବେଣ ମୃଗୟା ନିମିତ୍ତ ବନଗମନ କରି ଧନୁଃଶରଦ୍ୱାରା କ୍ଷୀଣପ୍ରାଣ ମୃଗମାନଙ୍କୁ ବଧ କରିଥିଲେ, ତେଣୁ ତାହାଙ୍କୁ ଦେଖିଲେ ଲୋକେ ଦୂରରୁ ବେଣ ଆସୁଛନ୍ତି ବୋଲି ଭୟ କରନ୍ତି । ୪୦ ।

ଏହି ନିଷ୍ଠୁର ଓ ନିର୍ଦ୍ଦୟ ଶତ୍ରୁ ବେଣ କ୍ରୀଡ଼ା ସ୍ଥଳରେ ସମବୟସ୍କ ବାଳକମାନଙ୍କ ସହିତ କ୍ରୀଡ଼ା କରୁ କରୁ ସେମାନଙ୍କୁ ପଶୁତୁଲ୍ୟ ବଳପୂର୍ବକ ବଧ କରନ୍ତି । ୪୧ ।

ରାଜା ଅଙ୍ଗ ସେହି ପୁତ୍ର ବେଣକୁ ଏହିପରି ଖଳସ୍ୱଭାବ ଦେଖି ଯେତେବେଳେ ନାନାପ୍ରକାର ଶାସନ ଦ୍ୱାରା ଶିକ୍ଷାଦେବାକୁ ଅସମର୍ଥ ହେଲେ, ସେତେବେଳେ ସେ ଅତ୍ୟନ୍ତ ଦୁଃଖିତ ହୋଇଥିଲେ । ୪୨ ।

ଯେଉଁ ଗୃହସ୍ଥମାନେ ପୁତ୍ରନିମିତ୍ତ ଶ୍ରୀହରିଙ୍କୁ ଆରାଧନା କରିଥାନ୍ତି, ସେମାନେ ମନ୍ଦସ୍ୱଭାବ ପୁତ୍ରଜାତ ହେଲେ ଯେ କି ଅସହ୍ୟ ଯନ୍ତ୍ରଣା ଭୋଗ କରିବାକୁ ପଡ଼େ, ତାହା ଜାଣନ୍ତି ନାହିଁ । ୪୩ ।

---

ଦିନକୁ ଦିନ ସେ ବଢ଼ିଲା
ମାତାର ଅଂଶ ନ ଛାଡ଼ିଲା
ଅଧର୍ମ ଅଂଶୁଁ ମୃତ୍ୟୁ ଜାତ
ସେ ମୃତ୍ୟୁ-ସୁତା ଯେଣୁ ମାତ
ତେଣୁ ହୋଇଲା ଅଧାର୍ମିକ
 କ୍ଷତ୍ରିୟ ଭାବେ ଅତିରେକ ।୩୯।
ନିରତେ ଧନୁଶର ଧରେ
ମୃଗୟା ପ୍ରାୟ ବନେ ବୁଲେ
ନିର୍ଦ୍ଦୋଷ ପଶୁଗଣ ମାରେ
ଦୟା ବିବେକ ନ ବିଚାରେ ।୪୦।

ତୁଲ୍ୟ ବୟସେ ବାଳଙ୍ଗମାନେ
ଖେଳ ଖେଳଇ କୁତୂହଳେ
ତାଙ୍କୁ ଦାରୁଣପଣେ ଦୃଢ଼
ଚରଣେ ଚପି ମୁଣ୍ଡ ମୋଡ଼େ ।୪୧।
ଏମନ୍ତେ ତାର ଦୁଷ୍ଟପଣେ
ରାଜାର ଅଗ୍ରେ ପ୍ରଜାଗଣେ
ଗୋଦନ କରି ଉଚ୍ଚ ତୁଣ୍ଡେ
କରଅଞ୍ଜଳି ଦେଇମୁଣ୍ଡେ
କହନ୍ତି ବେଣ ଦୁଷ୍ଟପଣ
ରୋଦନ କରି ପ୍ରଜାଗଣ

ଏମନ୍ତ ଅଙ୍ଗ ରାଜା ଶୁଣି
ଖଳ ପୁତ୍ରକୁ ଘରେ ଆଣି
ନାନା ପ୍ରକାରେ ଧର୍ମ କହି
ଅନେକ ପ୍ରକାରେ ବୁଝାଇ
ଶୁଣନ୍ତେ ବଳୁ ତମ କରେ
ପିତାର ବଚନ ନ ଧରେ
ଦିନକୁ ଦିନ ଦୁଷ୍ଟପଣେ
କୋପ ବହିଲେ ପ୍ରଜାଗଣେ ।୪୨।
ଅଙ୍ଗ ତାହାର କର୍ମ ଦେଖି
ହୁଗଇ ଅତି ଦୁଃଖେ ଦୁଃଖୀ

ଯତଃ ପାପୀୟସୀ କୀର୍ତ୍ତିରଧର୍ମଶ୍ଚ ମହାନ୍ ନୃଣାମ୍ ।
ଯତୋବିରୋଧଃ ସର୍ବେଷାଂ ଯତ ଆଧିରନନ୍ତକଃ । ୪୪ ।
କସ୍ତଂ ପ୍ରଜାପଦେଶଂ ବୈ ମୋହବନ୍ଧନମାତ୍ମନଃ ।
ପଣ୍ଡିତୋ ବହୁ ମନ୍ୟେତ ଯଦର୍ଥାଃ କ୍ଲେଶଦା ଗୃହାଃ । ୪୫ ।
କଦପତ୍ୟଂ ବରଂ ମନ୍ୟେ ସଦପତ୍ୟାଚ୍ଛୁଚାଂ ପଦାତ୍ ।
ନିର୍ବିଦ୍ୟେତ ଗୃହାନ୍‌ମର୍ତ୍ତ୍ୟୋ ଯତ୍‌କ୍ଲେଶନିବହା ଗୃହାଃ । ୪୬ ।
ଏବଂ ସ ନିର୍ବିଣ୍ଣମନା ନୃପୋ ଗୃହାନ୍ନିଶୀଥ ଉତ୍ଥାୟ ମହୋଦୟୋଦୟାତ୍ ।
ଅଲବ୍‌ଧନିଦ୍ରୋଽନୁପଲକ୍ଷିତୋ ନୃଭିର୍ହିତ୍ୱା ଗତୋ ବେଣସୁବଂ ପ୍ରସୁପ୍ତାମ୍ । ୪୭ ।
ବିଜ୍ଞାୟ ନିର୍ବିଦ୍ୟ ଗତଂ ପତିଂ ପ୍ରଜାଃ ପୁରୋହିତାମାତ୍ୟସୁହୃଦ୍‌ଗଣାଦୟଃ ।
ବିଚିକ୍ୟୁରୁର୍ବ୍ୟାମତିଶୋକକାତରା ଯଥା ନିଗୂଢ଼ଂ ପୁରୁଷଂ କୁଯୋଗିନଃ । ୪୮ ।

---

କୁତ୍ସିତ ସନ୍ତାନମାନଙ୍କ ହେତୁରୁ ମନୁଷ୍ୟମାନଙ୍କର ଯାବତୀୟ ଅଖ୍ୟାତି, ଅଧର୍ମ ଏବଂ ସର୍ବପ୍ରାଣୀଙ୍କ ସହିତ ବିରୋଧ ଏବଂ ନାନାପ୍ରକାର ମନଃପୀଡ଼ା ଘଟିଥାଏ । ୪୪ ।

ଯାହା ହେତୁରୁ ଗୃହ କ୍ଲେଶଦାୟକ ହୁଏ, ସେହି ପୁତ୍ରନାମଧାରୀ ନିଜର ମୋହବନ୍ଧନର କାରଣ ସ୍ୱରୂପକୁ କେଉଁ ପଣ୍ଡିତ ଆଦର କରିବ ? । ୪୫ ।

ଶୋକର ଆଧାର ସୁସନ୍ତାନ ଅପେକ୍ଷା ବରଂ କୁସନ୍ତାନ ଶୁଭଦାୟକ, କାରଣ ଏପରି ଗୃହ ଦୁଃଖ ପ୍ରଦ ହେବାରୁ ମାନବମାନଙ୍କର ଗାର୍ହସ୍ଥ୍ୟ ଆଶ୍ରମ ପ୍ରତି ବିରକ୍ତି ଜନ୍ମିଥାଏ । ୪୬ ।

ଏହିପରି ରାଜା ଅଙ୍ଗଙ୍କର ନିର୍ବେଦ ଉପସ୍ଥିତ ହେବାରୁ ରାତିରେ ତାହାଙ୍କର ନିଦ୍ରା ହେଲା ନାହିଁ, ସେ ଅର୍ଦ୍ଧରାତ୍ରିରେ ଶଯ୍ୟାରୁ ଉଠି ପ୍ରସୁପ୍ତ ବେଣ ଜନନୀଙ୍କର ଅଜ୍ଞାତରେ ମହାସମୃଦ୍ଧିଶାଳୀ ଗୃହ ପରିତ୍ୟାଗ କରି ଚାଲି ଗଲେ । ୪୭ ।

ରାଜା ବୈରାଗ୍ୟ ଅବଲମ୍ବନ କରି ଚାଲି ଯାଇଅଛନ୍ତି, ଜାଣିପାରି ପ୍ରଜା, ପୁରୋହିତ, ଅମାତ୍ୟ ଏବଂ ବନ୍ଧୁଗଣ ଅତ୍ୟନ୍ତ ଶୋକ ବିହ୍ୱଳ ହୋଇଥିଲେ ଏବଂ କୁଯୋଗିମାନେ ଯେପରି ଅନ୍ତର୍ଯାମୀ ପୁରୁଷଙ୍କ ଅନୁସନ୍ଧାନ କରନ୍ତି, ସେହିପରି ସମସ୍ତ ପୃଥିବୀରେ ତାହାଙ୍କୁ ଅନ୍ୱେଷଣ କରିଥିଲେ । ୪୮ ।

---

ଦେଖ ମୁଁ ବିଷ୍ଣୁ ପ୍ରସାଦେ ସେବି
କୁପୁତ୍ରେ ହେଲି ପରାଭବୀ
ସବୁରି ସଙ୍ଗେ ନିରନ୍ତରେ
ମହତ ଦୋରେହା ଅଟରେ
ପ୍ରାଣୀଙ୍କ ମନେ ବହୁ ବ୍ୟଥା
ଏ ଦୁଷ୍ଟ ଦଅଇ ସର୍ବଥା
ଏ ପୁତ୍ରେ କାର୍ଯ୍ୟ ଅଛି କସ
ନାଶଇ ଇହ ପର ଯଶ ।୪୩-୪୫।

ପୁଣି ସେ ରାଜା ବିଚାରଇ
ସୁପୁତ୍ର ଛାଡ଼ି ନ ହୁଅଇ
କୁପୁତ୍ରେ ମାତ୍ର ଏତେ ଲାଭ
ସ୍ୱଜନ ଗୃହେ ଛାଡ଼େ ଲୋଭ ।୪୬।
ସୁପୁତ୍ର କୁପୁତ୍ର ବିଚାରେ
ଚିତ୍ତ ନ ରହେ ତାର ଘରେ
ରଜନୀ ଅର୍ଦ୍ଧେ ନୃପବର
ମନ୍ଦିରୁ ହୋଇଲେ ବାହାର

ବନେ ପଶିଲେ ନିରପତି
କେହି ନ ଜାଣେ ତାର ଗତି ।୪୭।
ତାହାର ପାତ୍ର ମନ୍ତ୍ରିଗଣେ
ଅନେକ ଖୋଜ ଘୋର ବନେ

ଅଲକ୍ଷୟନ୍ତଃ ପଦବୀଂ ପ୍ରଜାପତେର୍ହତୋଦ୍ୟମାଃ ପ୍ରତ୍ୟୁପସୃତ୍ୟ ତେ ପୁରୀମ୍ ।
ଋଷୀନ୍ ସମେତାନଭିବନ୍ଦ୍ୟ ସାଶ୍ରବୋ ନ୍ୟବେଦୟନ୍ କୌରବ ଭର୍ତ୍ତୁର୍ବିପ୍ଲବମ୍ ।୪୯ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ବେଣପ୍ରବ୍ରଜ୍ୟା ନାମ ତ୍ରୟୋଦଶୋଽଧ୍ୟାୟଃ । ୧୩ ।

---

ହେ କୁରୁକୁଳୋଦ୍ଭବ ବିଦୁର ! ସେମାନେ ପ୍ରଜାପତି ଅଙ୍ଗଙ୍କର ଅବସ୍ଥାନ ସ୍ଥଳ ଦେଖିନ ପାରି ହତୋଦ୍ୟମ ହୋଇ ରାଜପୁରୀକୁ ପ୍ରତ୍ୟାଗମନ କରିଥିଲେ ଏବଂ ସମବେତ ଋଷିମାନଙ୍କୁ ପ୍ରଣାମକରି ଅଶ୍ରୁପୂର୍ଣ୍ଣ ନୟନରେ ରାଜାଙ୍କର ଅଦର୍ଶନ କଥା ନିବେଦନ କରିଥିଲେ । ୪୯ ।

---

ନ ଦେଖି ନଗରେ ମିଳଲେ
ଅନେକ ପ୍ରକାରେ ଝୁରିଲେ
ନିବେଦନ କଲେ ଛନ୍ନମନେ
ବୋଇଲେ କେଣେ ଗଲେ ନ ଜାଣୁ ନେ
।୪୮।,୪୯।
ଭାଷା ପ୍ରବନ୍ଧେ ଭାଗବତ
ବୋଲଇ ବିପ୍ର ଜଗନ୍ନାଥ ।





## ଚ ତୁ ର୍ଦ୍ଦ ଶ ଅ ଧ୍ୟା ୟ ।

ଚତୁର୍ଦ୍ଦଶେ ତୁ ଦୁଷ୍ଟୁ ଏଭଦ୍ବାଦଙ୍ଗେ ଗତେ ଦ୍ୱିଜୈଃ ।
ଅଭିଷିକ୍ତସ୍ୟ ବେଣସ୍ୟ ରୋଷାଚ୍ଚୈବଧ ଈର୍ଯ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ଭୃଗ୍ୱାଦୟସ୍ତେ ମୁନୟୋ ଲୋକାନାଂ କ୍ଷେମଦର୍ଶିନଃ ।
ଗୋପ୍ତର୍ଯ୍ୟସତି ବୈ ନୃଣାଂ ପଶ୍ୟନ୍ତଃ ପଶୁସାମ୍ୟତାମ୍ । ୧ ।
ବୀରମାତରମାହୂୟ ସୁନୀଥାଂ ବ୍ରହ୍ମବାଦିନଃ ।
ପ୍ରକୃତ୍ୟସମ୍ମତଂ ବେଣମଭ୍ୟଷିଞ୍ଚନ୍ ପତିଂ ଭୁବଃ । ୨ ।
ଶ୍ରୁତ୍ୱା ନୃପାସନଗତଂ ବେଣମତ୍ୟୁଗ୍ରଶାସନମ୍ ।
ନିଲିଲ୍ୟୁର୍ଦସ୍ୟବଃ ସଦ୍ୟଃ ସର୍ପତ୍ରସ୍ତା ଇବାଖବଃ । ୩ ।

---

### ଋଷି ଅଭିଶାପରେ ବେଣଙ୍କର ବିନାଶ ।

ଚତୁର୍ଦ୍ଦଶ ଅଧ୍ୟାୟରେ ମହାରାଜ ଅଙ୍ଗ ବେଣଙ୍କର ଅତ୍ୟାଚାରରେ ମ୍ରିୟମାଣ ହୋଇ ବନକୁ ଚାଲିଯାନ୍ତେ ବ୍ରାହ୍ମଣମାନଙ୍କ ଅଭିଶାପରେ ବେଣଙ୍କର ମୃତ୍ୟୁବିଷୟ ବର୍ଣ୍ଣିତ ହୋଇଅଛି ।୦।

ଶ୍ରୀମୈତ୍ରେୟ କହିଲେ :—

ଜଗତର ହିତକାମୀ ଭୃଗୁ ପ୍ରଭୃତି ବ୍ରହ୍ମବାଦୀ ମୁନିମାନେ ରକ୍ଷକ ଅଭାବରେ ଲୋକମାନଙ୍କର ପଶୁତୁଲ୍ୟ ପରସ୍ତ୍ରୀଠାରେ ଓ ପରଧନରେ ସ୍ୱେଚ୍ଛାଚାର ଦେଖି ବୀରମାତା ସୁନୀଥାଙ୍କୁ ଆହ୍ୱାନ କରି ତାହାଙ୍କର ଅନୁମତି ନେଲେ, ପ୍ରଜାମାନଙ୍କର ଅସମ୍ମତି ସତ୍ତ୍ୱେ ବେଣଙ୍କୁ ରାଜ୍ୟାଧିପତି ପଦରେ ଅଭିଷେକକରିଥିଲେ ।୧,୨

ଅତ୍ୟନ୍ତ ଉଗ୍ରଶାସକ ବେଣ ରାଜପଦରେ ଅଭିଷିକ୍ତ ହୋଇଅଛନ୍ତି ଏହା ଶୁଣିବାମାତ୍ରେ ଦସ୍ୟୁମାନେ ସର୍ପଭୀତ ମୂଷିକ ତୁଲ୍ୟ ଲୁଚିଗଲେ । ୩ ।

---

ବ୍ରାହ୍ମଣ ରୋଷେ ବେଣ ବଧ । ଚତୁର୍ଦ୍ଦଶରେ ଏ ସମ୍ବାଦ ॥

ଶ୍ରୀମୈତ୍ରେୟ ଉବାଚ—

ଭୃଗୁ ଅଙ୍ଗିରା ଆଦି ଯେତେ
ମୁନିଏ ମିଳିଲେ ସମସ୍ତେ
ଭାଳନ୍ତି ଅତି ମନ ଦୁଃଖେ
ପ୍ରଜା ରକ୍ଷଣେ ଅରାଜକେ
ବୋଲନ୍ତି ରାଜ୍ୟେ ନାହିଁ ରାଜା
ଦୁଷ୍ଟେ ଲୁଟିବେ ଜନ ପ୍ରଜା । ୧ ।

ଏମନ୍ତେ ବିଚାରି ସମସ୍ତେ
ବେଣର ଜନନୀ ଅଗ୍ରତେ
ପ୍ରଜା ରକ୍ଷଣ ଧର୍ମ୍ମ କହି
ସକଳ ଜନେ ତୁଷ୍ଟ ହୋଇ
ବିଚାର କରି ଅନ୍ତରେକେ
ବେଣକୁ ରାଜ ଅଭିଷେକେ
ନିଜ ଭୁବନେ କଲେ ରାଜା
ଯେଣେ ରଖିବ ଜନପ୍ରଜା । ୨ ।

ଦୁଷ୍ଟେ ଯେ ଥିଲେ ଦୁଷ୍ଟପଣେ
ଲୁଟିବେ ବୋଲି ପ୍ରଜାଜନେ
ବେଣର ରାଜପଣ କର୍ଣ୍ଣେ
ଶୁଣି ଲୁଚିଲେ ଘୋରବନେ
ପଶିଲେ ଘୋର ଗିରିମାର୍ଗେ
ଗରୁଡ ଡରେ ଯେସନ୍ତେ ନାଗେ ।୩।

ସ ଆରୁଢ଼ନୃପସ୍ଥାନ ଉନ୍ନଦ୍ଧୋଽଷ୍ଟବିଭୂତିଭିଃ ।
ଅବମେନେ ମହାଭାଗାନ୍ ସ୍ତବ୍ଧଃ ସମ୍ଭାବିତଃ ସ୍ୱତଃ । ୪ ।
ଏବଂ ମଦାନ୍ଧ ଉତ୍ସିକ୍ତୋ ନିରଙ୍କୁଶ ଇବ ଦ୍ୱିପଃ ।
ପର୍ଯ୍ୟଟନ୍ ରଥମାସ୍ଥାୟ କମ୍ପୟନ୍ନିବ ରୋଦସୀ । ୫ ।
ନ ଯଷ୍ଟବ୍ୟଂ ନ ଦାତବ୍ୟଂ ନ ହୋତବ୍ୟଂ ଦ୍ୱିଜାଃ କ୍ୱଚିତ୍ ।
ଇତି ନ୍ୟବାରୟଦ୍ଧର୍ମ୍ମଂ ଭେରୀଘୋଷେଣ ସର୍ବତଃ । ୬ ।

---

ବେଣ ରାଜ ସିଂହାସନ ଆରୂଢ଼ ହୋଇ ଅଷ୍ଟଲୋକପାଳଙ୍କ ଐଶ୍ୱର୍ଯ୍ୟରେ କ୍ରମଶଃ ଗର୍ବିତ ହେଲେ ଏବଂ ଭାବିଲେ ଯେ ସେ ଅତ୍ୟନ୍ତ ବୀର ଓ ଜ୍ଞାନୀ, ଏବଂ ଅଭିମାନରେ ନିଜେ ନିଜକୁ ବଡ଼ ମନେକରି ମହତ୍ ବ୍ୟକ୍ତିମାନଙ୍କୁ ଅପମାନ କରିବାକୁ ଲାଗିଲେ । ୪ ।

ଏହିପରି ମଦଗର୍ବରେ ଗର୍ବିତ ବେଣ ସମସ୍ତ ବେଦାଚାର ପରିତ୍ୟାଗ କରି ରଥାରୋହଣ ପୂର୍ବକ ଦ୍ୟୁଲୋକ ଓ ଭୂଲୋକ କମ୍ପିତ କରି ନିରଙ୍କୁଶ ହସ୍ତୀତୁଲ୍ୟ ପର୍ଯ୍ୟଟନ କଲେ, ଏବଂ ବ୍ରାହ୍ମଣମାନଙ୍କୁ ଭେରୀ ନିର୍ଘୋଷ ଦ୍ୱାରା ଘୋଷଣା କରି ଏବଂ ଧର୍ମାନୁଷ୍ଠାନରେ ବାଧାଦେଇ କହିଲେ—ତୁମ୍ଭେମାନେ ଯଜ୍ଞ କରନାହିଁ, ଦାନ କରନାହିଁ, କିମ୍ବା ହୋମ କରନାହିଁ । ୫, ୬ ।

---

ବେଣ ଯେ ରାଜ୍ୟେ ରାଜା ହୋଇ
ରାଜସମ୍ପଦେ ଗର୍ବ ବହି
ଭାବିବେ ଦୁଷ୍ଟ ଦୁରାଚାର
ଧର୍ମ୍ମ ନ କରଇ ବିଚାର
ଆମ୍ଭାଙ୍କୁ ସିଦ୍ଧ ପ୍ରାୟ ମଣେ
ଋଷିଙ୍କ ବଚନ ନ ଶୁଣେ । ୪ ।
ଲକ୍ଷଣ ଅଶେଷ ବିରୁଦ୍ଧ
ମାତିଲା ଯେହ୍ନେ ମତ୍ତ ହସ୍ତୀ
କାଞ୍ଚନ ରଥେ ବିଜେ କରି
ବୁଲନ୍ତେ କମ୍ପେ ବସୁନ୍ଧରୀ
ଆମ୍ଭାଙ୍କୁ ସିଦ୍ଧ ପ୍ରାୟ ମଣି
ବୋଲଇ ଅସମ୍ଭବ ବାଣୀ । ୫ ।
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ
ମୋ ରାଜ୍ୟେ ଅଛ ଯେତେ ଜନ
ଶୁଣ ସକଳ ପ୍ରଜା ଜନ
ଏ ମୋର ଆଜ୍ଞାର ବଚନ
ଶୁଣ ହେ ବିପ୍ରେ ମୋର ବାଣୀ
ମୁଁ ଯେ ଜଗତେ ନୃପମଣି
ମୋହର ବଚନ ତୁମ୍ଭର
ଭାବିବେ ପାଳିବା ବେଭାର
ଦେଖ ମୋହର ବେନି ଭୁଜ
ଦଶ ଦିଗପାଳଙ୍କ ତେଜ
ମୁଁ ଯେ ପ୍ରତ୍ୟକ୍ଷେ ଭଗବାନ
ଦେଖ ମୋହର ବର୍ଣ୍ଣ ଚିହ୍ନ
ମୋ ରାଜ୍ୟେ ଯଜ୍ଞ ନ କରିବ
ପିତୃ ଦେବତା ନ ପୂଜିବ
ଦାନ ନ ଦେବ ବିପ୍ରହସ୍ତେ
ତୀର୍ଥ ନ ଯିବ ପାଦଗତେ
ସଂସାରେ ଧର୍ମ୍ମ କର୍ମ୍ମ ଯେତେ
ସକଳ ସମର୍ପିବ ମୋତେ
ମୋଠାରୁଁ ବଡ଼ ନାହିଁ ଆନ
ମୁଁ ଯେ ପ୍ରତ୍ୟକ୍ଷେ ଭଗବାନ
ମୋ ନାମ ଜପୁଥିବ ତୁଣ୍ଡେ
ମୋତେ ପୂଜିବ ଯଜ୍ଞକୁଣ୍ଡେ
ଯେ ମୋର ବୋଲ ନ କରିବ
ମୋ ରାଜ୍ୟେ ଦଣ୍ଡେହେଁ ନ ଥିବ
ଜୀବନ ହରିବି ତାହାର
ସର୍ବ ସମ୍ପଦ କରି ଦୂର
ଏମନ୍ତ ପୁର ଗ୍ରାମ ଦେଶେ
ହସ୍ତିର କନ୍ଧେ ଭେରୀ ଘୋଷେ
ଘୋଷଣ ବାଜେ ସର୍ବଦେଶେ
ଶୁଣି ସକଳ ଜନ ତ୍ରାସେ
ବେଣର ବାକ୍ୟ ଶିରେ କଲେ
ସକଳ ଧର୍ମ୍ମ ଉଚ୍ଛପିଲେ
ଜପନ୍ତି ତାର ନାମ ନିତ୍ୟେ
ଭୟେ ଘଟନ୍ତି ପାଦଗତେ । ୬ ।

ବେଣସ୍ୟାବେକ୍ଷ୍ୟ ମୁନୟୋ ଦୁର୍ବୃତ୍ତସ୍ୟ ବଚେଷ୍ଟିତମ୍ ।
ବିମୃଶ୍ୟ ଲୋକବ୍ୟସନଂ କୃପୟୋଚୁଃ ସ୍ମ ସତ୍ରିଣଃ । ୭ ।
ଅହୋ ଉଭୟତଃ ପ୍ରାପ୍ତଂ ଲୋକସ୍ୟ ବ୍ୟସନଂ ମହତ୍ ।
ଦାରୁଣ୍ୟୁଭୟତୋ ଦୀପ୍ତ ଇବ ତସ୍କରପାଲୟୋଃ । ୮ ।
ଅରାଜକଭୟାଦେଷ କୃତୋ ରାଜାଽତଦର୍ହଣଃ ।
ତତୋଽପ୍ୟାସୀଦ୍‌ଭୟଂ ତ୍ୱଦ୍ୟ କଥଂ ସ୍ୟାତ୍ ସ୍ୱସ୍ତି ଦେହିନାମ୍ ।୯।
ଅହେରିବ ପୟଃପୋଷଃ ପୋଷକସ୍ୟାପ୍ୟନର୍ଥଭୃତ୍ ।
ବେଣଃ ପ୍ରକୃତ୍ୟୈବ ଖଲଃ ସୁନୀଥାଗର୍ଭସମ୍ଭବଃ ।
ନିରୂପିତଃ ପ୍ରଜାପାଲଃ ସ ଜିଘାଂସତି ବୈ ପ୍ରଜାଃ । ୧୦ ।
ତଥାପି ସାନ୍ତ୍ୱୟେମାମୁଂ ନାସ୍ମାଂସ୍ତତ୍ପାତକଂ ସ୍ପୃଶେତ୍ ।
ତଦ୍‌ବିଦ୍ୱଦ୍‌ଭିରସଦ୍‌ବୃତ୍ତୋ ବେଣୋଽସ୍ମାଭିଃ କୃତୋ ନୃପଃ । ୧୧ ।

---

ମୁନିମାନେ ଦୁରାଚାରୀ ବେଣଙ୍କର ଏହି ଦୁଷ୍ଟଚରିତ୍ର ଦେଖି ନରଲୋକରେ ବିପଦ ଉପସ୍ଥିତ ବୋଲି ଜାଣି ପାରିଲେ ଏବଂ ସେମାନେ କରୁଣାବଶତଃ ଏକତ୍ରିତ ହୋଇ କଥୋପକଥନ କଲେ । ୭ ।

ଅହୋ ! କି ଆଶ୍ଚର୍ଯ୍ୟ ! କାଷ୍ଠର ଅଗ୍ର ଓ ମୂଳଭାଗ ଉଭୟ ପ୍ରଜ୍ଜ୍ୱଳିତ ହେଲେ ତନ୍ମଧ୍ୟସ୍ଥିତ ପିପିଲିକାମାନେ ଯେପରି ଉଭୟଆଡ଼ୁ ବିପନ୍ନ ହୁଅନ୍ତି, ସେହିପରି ପ୍ରଜାଗଣ ଏକ ଆଡ଼ୁ ରାଜା ଏବଂ ଅନ୍ୟଆଡ଼ୁ ଦସ୍ୟୁଗଣଙ୍କ କର୍ତ୍ତୃକ ବିପନ୍ନ ହେଉଅଛନ୍ତି । ୮ ।

ଅରାଜକତା ଭୟରେ ରାଜାହେବାର ଅନୁପଯୁକ୍ତ ଏହି ବେଣଙ୍କୁ ରାଜପଦରେ ଅଭିଷେକ କରାଗଲା, କିନ୍ତୁ ବର୍ତ୍ତମାନ ତାହାଙ୍କଠାରୁ ଭୟ ଉପସ୍ଥିତ, ବର୍ତ୍ତମାନ କି ଉପାୟ କରଣୀୟ ? । ୯ ।

କାଳସର୍ପକୁ ଯେ ଦୁଗ୍‌ଧ ପିଆଇ ରଖେ; ସେହି କାଳସର୍ପ ପାଳକର ଅନିଷ୍ଟ କରେ, ସୁନୀଥା ଗର୍ଭଜାତ ବେଣ ମଧ୍ୟ ସେହିପରି ସ୍ୱଭାବତଃ ଖଳ, ଆମ୍ଭେମାନେ ତାହାଙ୍କୁ ପ୍ରଜାପାଳକରୂପେ ନିଯୁକ୍ତ କରିଅଛୁ କିନ୍ତୁ ବର୍ତ୍ତମାନ୍ ସେ ପ୍ରଜାମାନଙ୍କୁ ବିନାଶ କରିବାକୁ ବସି ଅଛି । ୧୦ ।

ଆମ୍ଭେମାନେ ଏହା ଜାଣି ସୁଦ୍ଧା ଏହି ଦୁରାଚାର ବେଣଙ୍କ ରାଜା କରିଥିଲୁ ଏବଂ ତାହାଙ୍କର ପାପ ଯେପରି ଆମ୍ଭମାନଙ୍କୁ ସ୍ପର୍ଶ ନ କରେ, ତାହା ମଧ୍ୟ ତାହାଙ୍କୁ ଯୁକ୍ତିଦ୍ୱାରା ବୁଝାଇବୁଁ । କିନ୍ତୁ ଯଦି ସେହି

---

ଏମନ୍ତ ରାଜା ଦୁଷ୍ଟପଣ
ଦେଖି ଭାଳନ୍ତି ଋଷିଗଣ
ବୋଲନ୍ତି ଏକୁ ଆରେ ଚାହିଁ
ଏମନ୍ତ ଶୁଣିନାତ କାହିଁ
ଭୂମିରେ ଯେତେ ରାଜା ଥିଲେ
ଏମନ୍ତ କେବା ପ୍ରକାଶିଲେ
ଯଜ୍ଞ ନ କଲେ ବୃଷ୍ଟି କାହିଁ
ବୃଷ୍ଟି ନ ହେଲେ ଅନ୍ନ କାହିଁ

ଏ ପର୍ଯ୍ୟନ୍ତଙ୍କ କିସ୍ପ ଲୋପେ
ଅଧର୍ମେ ଜନପୁର କମ୍ପେ
ଏ ବଡ଼ ସଙ୍କଟ ପଡ଼ିଲା
ଉଭୟ ଲୋକ ନାଶ ଗଲା
ଆମ୍ଭେ ଏହାକୁ ରାଜା କଲୁଁ
ସର୍ପକୁ ଦୁଧ ପିଆଇଲୁଁ
ସେ ଯେହ୍ନେ ବଡ଼ ଅତଘୋରେ
କ୍ଷୀରଦାତାର ପ୍ରାଣ ହରେ

ଆମ୍ଭେ ନ ବୁଝି କର୍ମ କଲୁଁ
ବେଣକୁ ରାଜାପଦ ଦେଲୁଁ
ଖଳକୁ ଦେଲୁଁ ରାଜ୍ୟେ ବାସ
ଆମ୍ଭେ ହୋଇଲୁଁ ଏବେ ନାଶ
ସୁନୀଥା ଗର୍ଭେ ଏ ସମ୍ଭୂତ
ସ୍ୱଭାବେ ମୃତ୍ୟୁ-ସୁତା-ସୁତ

ସାନ୍ତ୍ୱିତୋ ଯଦି ନୋ ବାଚଂ ନ ଗ୍ରହୀଷ୍ୟତ୍ୟଧର୍ମକୃତ୍ ।
ଲୋକଧିକ୍କାରସନ୍ଦଗ୍ଧଂ ଦହିଷ୍ୟାମଃ ସ୍ୱତେଜସା । ୧୨ ।
ଏବମଧ୍ୟବସାୟୈନଂ ମୁନୟୋ ଗୂଢ଼ମନ୍ୟବଃ ।
ଉପବ୍ରଜ୍ୟାବ୍ରୁବନ୍ ବେଣଂ ସାନ୍ତ୍ୱୟିତ୍ୱାଥ ସାମଭିଃ । ୧୩ ।

ଶ୍ରୀମୁନୟ ଊଚୁଃ ।

ନୃପବର୍ଯ୍ୟ ନିବୋଧୈତଦ୍ ଯତ୍ତେ ବିଜ୍ଞାପୟାମ ଭୋଃ ।
ଆୟୁଃ ଶ୍ରୀବଲକୀର୍ତ୍ତୀନାଂ ତବ ତାତ ବିବର୍ଦ୍ଧନମ୍ । ୧୪ ।
ଧର୍ମ ଆଚରିତଃ ପୁଂସାଂ ବାଙ୍ମନଃକାୟବୁଦ୍ଧିଭିଃ ।
ଲୋକାନ୍ ବିଶୋକାନ୍ ବିତରତ୍ୟଥାନନ୍ତ୍ୟମସଙ୍ଗିନାମ୍ । ୧୫ ।
ସ ତେ ମା ବିନଶେଦ୍ୱୀର ପ୍ରଜାନାଂ କ୍ଷେମଲକ୍ଷଣଃ ।
ଯସ୍ମିନ୍ ବିନଷ୍ଟେ ନୃପତେରୈଶ୍ୱର୍ଯ୍ୟାଦବରୋହଣ । ୧୬ ।

---

ଅଧାର୍ମିକ ବେଣ ଆମ୍ଭମାନଙ୍କର ବାକ୍ୟ ଗ୍ରହଣ ନ କରେ; ତେବେ ଲୋକମାନଙ୍କର ଅଧିକାର ସମ୍ବନ୍ଧ ସେହି ବେଣଙ୍କୁ ଆମ୍ଭେମାନେ ନିଜର ତେଜଦ୍ୱାରା ଦଗ୍ଧ କରି ପକାଇବୁ । ୧୧, ୧୨ ।

ଏହିପରି ସ୍ଥିରକରି ମୁନିମାନେ କ୍ରୋଧ ଗୋପନ କରି ବେଣଙ୍କ ନିକଟକୁ ଗମନ କଲେ ଏବଂ ପ୍ରିୟ ବାକ୍ୟ ଦ୍ୱାରା ତାହାଙ୍କୁ ଉପଦେଶ ଦେଲେ । ୧୩ ।

ଶ୍ରୀମୁନିମାନେ କହିଲେ :—

ହେ ନୃପଶ୍ରେଷ୍ଠ ! ଆମ୍ଭେମାନେ ତୁମ୍ଭଙ୍କୁ ଯାହା କହିବୁ ତାହା ପାଳନ କଲେ ତୁମ୍ଭର ଆୟୁ, ଐଶ୍ୱର୍ଯ୍ୟ, ବଳ, କୀର୍ତ୍ତି ପ୍ରଭୃତି ବର୍ଦ୍ଧିତ ହେବ, ଅତଏବ ହେ ବତ୍ସ ! ତୁମ୍ଭେ ତାହା ମନଯୋଗ ପୂର୍ବକ ଶ୍ରବଣ କର । କାୟମନୋବାକ୍ୟ ବୁଦ୍ଧି ଦ୍ୱାରା ଅନୁଷ୍ଠିତ ଧର୍ମ ସକାମ ମନୁଷ୍ୟମାନଙ୍କୁ ସ୍ୱର୍ଗାଦିଲୋକ ଏବଂ ନିଷ୍କାମ ବ୍ୟକ୍ତିମାନଙ୍କୁ ମୋକ୍ଷ ପ୍ରଦାନ କରେ । ୧୪, ୧୫ ।

ହେ ବୀର ! ପ୍ରଜାମାନଙ୍କର ମଙ୍ଗଳ ସାଧକଧର୍ମକୁ ତୁମେ ନଷ୍ଟ କରନାହିଁ, କାରଣ ତାହା ବିନାଶ କଲେ ରାଜାର ଐଶ୍ୱର୍ଯ୍ୟ ନଷ୍ଟ ହୋଇଯାଏ । ୧୬ ।

---

ତଥାପି ତାର ପାଶେ ଯିବା
ଧର୍ମ୍ମ ବଚନ ବୁଝାଇବା
ଏ ଯେବେ ବୋଲ ନ କରିବ
ଅଧର୍ମ୍ମ ହେବ ନାଶ ଯିବ
ଏତେ ବିଚାରି ବିପ୍ରଜନେ
ମିଳିଲେ ବେଣସନ୍ନିଧାନେ

କଲ୍ୟାଣ କରି ବେଦନାଦେ
ବୋଧିଲେ ତାକୁ ସାମବାଦେ ।୧୨-୧୪

ଶ୍ରୀଋଷୟ ଊଚୁଃ—

ହେ ନୃପନାଥ ଶୁଣ ଧୀରେ
ଯାହା କହିବୁଁ ତୋ ଛାମୁରେ

ଯେତେ ହୋଇବ ତୋର ଲାଭ
ଜଗତେ ଯଶ କୀର୍ତ୍ତି ଥିବ ।୧୫।
ମନ ବଚନ ଦେହଗତେ
ଯେ ପ୍ରାଣୀ ଥାନ୍ତି ଜନହିତେ
ଏ ବେନି ଲୋକ ସେ ଜିଣନ୍ତି
ନ କଲେ ଜୀବନ୍ତେ ମରନ୍ତି ।୧୬।

ରାଜନ୍ନସାଧ୍ୱମାତ୍ୟେଭ୍ୟଶ୍ଚୌରାଦିଭ୍ୟଃ ପ୍ରଜା ନୃପଃ ।
ରକ୍ଷନ୍ ଯଥା ବଳିଂ ଗୃହ୍ଣନ୍ନିହ ପ୍ରେତ୍ୟ ଚ ମୋଦତେ । ୧୭ ।
ଯସ୍ୟ ରାଷ୍ଟ୍ରେ, ପୁରେ ଚୈବ ଭଗବାନ୍ ଯଜ୍ଞପୁରୁଷଃ ।
ଇଜ୍ୟତେ ସ୍ୱେନ ଧର୍ମ୍ମେଣ ଜନୈର୍ବର୍ଣ୍ଣାଶ୍ରମାନ୍ୱିତୈଃ । ୧୮ ।
ତସ୍ୟ ରାଜ୍ଞୋ ମହାରାଜ ଭଗବାନ୍ ଭୂତଭାବନଃ ।
ପରିତୁଷ୍ୟତି ବିଶ୍ୱାତ୍ମା ତିଷ୍ଠତୋ ନିଜଶାସନେ । ୧୯ ।
ତସ୍ମିଂସ୍ତୁଷ୍ଟେ କିମପ୍ରାପ୍ୟଂ ଜଗତାମୀଶ୍ୱରେଶ୍ୱରେ ।
ଲୋକାଃ ସପାଲା ହ୍ୟେତସ୍ମୈ ହରନ୍ତି ବଳିମାଦୃତାଃ । ୨୦ ।
ତଂ ସର୍ବଲୋକାମରଯଜ୍ଞସଂଗ୍ରହଂ ତ୍ରୟୀମୟଂ ଦ୍ରବ୍ୟମୟଂ ତପୋମୟମ୍ ।
ଯଜ୍ଞୈର୍ବିଚିତ୍ରୈର୍ଯଜତୋ ଭବାୟ ତେ ରାଜନ୍ ସ୍ୱଦେଶାନନୁରୋଦ୍ଧୁମର୍ହସି ।୨୧।

---

ହେ ରାଜନ୍ ! ରାଜାଙ୍କର ଅସାଧୁ ଅମାତ୍ୟବର୍ଗଙ୍କଠାରୁ ଓ ଦସ୍ୟୁମାନଙ୍କଠାରୁ ପ୍ରଜାଙ୍କୁ ରକ୍ଷା କରିବା ସହିତ, ଶାସ୍ତ୍ର ନିର୍ଦ୍ଦେଶାନୁସାରେ ଶୁଳ୍କ ରାଜା ଗ୍ରହଣ କରନ୍ତି, ତାହାହେଲେ ସେ ଇହଲୋକ ଓ ପରଲୋକରେ ସୁଖ ଭୋଗ କରନ୍ତି । ୧୭ ।

ହେ ମହାରାଜ ! ଯେଉଁ ରାଜାଙ୍କ ରାଜ୍ୟରେ ଓ ପୁରମଧ୍ୟରେ ବର୍ଣ୍ଣାଶ୍ରମଧର୍ମାବଲମ୍ବୀ ପ୍ରଜାମାନେ ନିଜ ନିଜର ଅଧିକାରାନୁସାରେ ଧର୍ମସାଧନ କରି ଭଗବାନ୍ ଯଜ୍ଞ ପୁରୁଷଙ୍କର ଅର୍ଚ୍ଚନା କରନ୍ତି, ପ୍ରଜାପାଳନ ରୂପ ଭଗବଦ୍ ଅଭିଳଷିତ କାର୍ଯ୍ୟ କରନ୍ତି, ସେହି ରାଜାଙ୍କ ପ୍ରତି ଭୂତଭାବନ ବିଶ୍ୱାତ୍ମା ଭଗବାନ୍ ପରିତୁଷ୍ଟ ହୁଅନ୍ତି । ୧୮, ୧୯ ।

ବ୍ରହ୍ମାଦି ଜଗଦୀଶ୍ୱରମାନଙ୍କ ମଧ୍ୟରେ ଈଶ୍ୱର ଭଗବାନ୍ ପ୍ରସନ୍ନ ହେଲେ ସେହି ରାଜାଙ୍କର ଅପ୍ରାପ୍ୟ କିଛି ନ ଥାଏ, କାରଣ ଲୋକପାଳଗଣଙ୍କ ସହିତ ଯାବତୀୟ ପ୍ରାଣୀ ସାଦରରେ ତାହାଙ୍କର ପୂଜୋପହାର ଆହରଣ କରିଥାନ୍ତି । ୨୦ ।

ହେ ରାଜନ୍ ! ସ୍ୱର୍ଗାଦି ଲୋକସମୂହ, ଲୋକପାଳବୃନ୍ଦ, ଅମରଗଣ ଏବଂ ଯଜ୍ଞନିୟାମକ, ଯଜ୍ଞବିଧାତା ବେଦମୟ, ଯଜ୍ଞୀୟ ଦ୍ରବ୍ୟମୟ ଓ ତପୋମୟ ଭଗବାନଙ୍କୁ ତୁମ୍ଭର ସ୍ୱଦେଶବାସୀ ପ୍ରଜାମାନେ ତୁମ୍ଭର ମଙ୍ଗଳ ପାଇଁ ନାନାବିଧ ଯଜ୍ଞଦ୍ୱାରା ଅର୍ଚ୍ଚନା କରୁଅଛନ୍ତି, ତୁମ୍ଭର ମଧ ସେହି ପଥାବଲମ୍ବୀ ହେବା ଉଚିତ । ୨୧ ।

---

ପ୍ରଜାଏ ଧର୍ମ୍ମ ଆଚରିଲେ
ନୃପସମ୍ପଦ ବଢ଼େ ଭଲେ
ସେ ଧର୍ମ୍ମ ଯେବେ ନାଶ ଯାଇ ।
ନୃପସମ୍ପଦ ଆଉ କାହିଁ । ୧୭ ।
ପ୍ରଜାଙ୍କୁ କଣ୍ଟକ ଯେ କରେ
ଚୌରାଦି ସର୍ବ ଭୟ ହରେ
ସେ ରାଜା ଇହ ପରଲୋକେ
ଆନନ୍ଦ ମନେ ରହେ ସୁଖେ ।୧୮।

ଯେ ରାଜା ରାଜ୍ୟ ପୁର ଦେଶେ
ବିଷ୍ଣୁଙ୍କୁ ପୂଜନ୍ତି ହରଷେ
ପ୍ରଜାଏ ନିଜ ଧର୍ମ୍ମେ ଥାନ୍ତି
ଆଶ୍ରମଧର୍ମ୍ମ ଆଚରନ୍ତି
ରାଜାର ଯଜ୍ଞେ ପୂଜା ପାଇ
ବିଷ୍ଣୁ ସନ୍ତୋଷେ ଦୟା ବହି
ରାଜା ପରଜା ସୁଖେ ରହେ
ଏ ଧର୍ମ୍ମଗୁରୁବେଦେକହେ ।୧୯,୨୦

ବିଷ୍ଣୁର ପାଦପଦ୍ମତଳେ
ଖଟନ୍ତି ସର୍ବ ଦିଗପାଳେ
ବଳି ଦେଇଣ ପାଦତଳେ
ସୁଖେ ରହନ୍ତି ସର୍ବକାଳେ ।୨୧।

ଯଜ୍ଞେନ ଯୁଷ୍ମଦ୍‌ବିଷୟେ ଦ୍ୱିଜାତଭିର୍ବିତାୟମାନେନ ସୁରାଃ କଳା ହରେଃ ।
ସ୍ୱିଷ୍ଟାଃ ସୁତୁଷ୍ଟାଃ ପ୍ରଦିଶନ୍ତି ବାଞ୍ଛିତଂ ତଦ୍ଧେଳନଂ ନାର୍ହସି ବୀର ଚେଷ୍ଟିତୁମ୍ ।୨୨।

ଶ୍ରୀବେଣ ଉବାଚ ।

ବାଲିଶା ବତ ଯୂୟଂ ବା ଅଧର୍ମ୍ମେ ଧର୍ମ୍ମମାନିନଃ ।
ଯେ ବୃତ୍ତିଦଂ ପତିଂ ହିତ୍ୱା ଜାରଂ ପତିମୁପାସତେ । ୨୩ ।
ଅବଜାନନ୍ତ୍ୟମୀ ମୂଢ଼ା ନୃପରୂପିଣମୀଶ୍ୱରମ୍ ।
ନାନୁବିନ୍ଦନ୍ତି ତେ ଭଦ୍ରମିହ ଲୋକେ ପରତ୍ର ଚ । ୨୪ ।
କୋ ଯଜ୍ଞପୁରୁଷୋ ନାମ ଯତ୍ର ବୋ ଭକ୍ତିରୀଦୃଶୀ ।
ଭର୍ତ୍ତୃସ୍ନେହବିଦୂରାଣାଂ ଯଥା ଜାରେ କୁଯୋଷିତାମ୍ । ୨୫ ।

---

ହେ ବୀର ! ତୁମ୍ଭର ରାଜ୍ୟରେ ବ୍ରାହ୍ମଣମାନେ ଯଜ୍ଞକଲେ, ଭଗବାନଙ୍କର ଅଂଶ ସ୍ୱରୂପ ଦେବତାମାନେ ସମ୍ୟକ୍‌ରୂପେ ପୂଜିତ ହୋଇ ପ୍ରସନ୍ନ ହେବେ ଏବଂ ବାଞ୍ଛିତଫଳ ପ୍ରଦାନ କରିବେ ଅତଏବ ତୁମ୍ଭର ସେହି ଦେବତାମାନଙ୍କୁ କୌଣସିପ୍ରକାର ଅବହେଳା କରିବା ଉଚିତ ନୁହେଁ । ୨୨ ।

ଶ୍ରୀବେଣ କହିଲେ :—

ଆପଣମାନେ ଅଧର୍ମକୁ ଧର୍ମବୋଲି ମନେ କରୁଅଛନ୍ତି, ସୁତରାଂ ଆପଣମାନେ ନିଶ୍ଚୟ ଅଜ୍ଞ, ଆପଣମାନେ ଅନ୍ନଦପ୍ରଦ ପ୍ରକୃତପତିକୁ ପରିତ୍ୟାଗ କରି ବ୍ୟଭିଚାରିଣୀ ସ୍ତ୍ରୀ ତୁଲ୍ୟ ଅନ୍ୟପତି ଉପାସନା କରୁ ଅଛନ୍ତି । ୨୩ ।

ଯେଉଁ ମୂଢ଼ମାନେ ନରରୂପୀ ଈଶ୍ୱରଙ୍କୁ ଅବଜ୍ଞା କରିଥାନ୍ତି, ସେମାନଙ୍କର ଇହ ଓ ପରଲୋକରେ ମଙ୍ଗଳ ହୁଏ ନାହିଁ । ୨୪ ।

ସ୍ୱାମିଭକ୍ତି ବିହୀନ ଅସତୀ ନାରୀମାନେ ଯେପରି ଉପପତିରେ ଆସକ୍ତ ହୁଅନ୍ତି; ସେହିପରି ତୁମ୍ଭେମାନେ ଯେଉଁ ଯଜ୍ଞରୂପୀପୁରୁଷକୁ ଭକ୍ତି କରୁଛ, ସେଇଏ କିଏ ? । ୨୫ ।

---

ସେ ସର୍ବଯଜ୍ଞମୟ ହରି
ମନୁ ଦେବତା ଆଦି କରି
ସେ ହରି ଯଜ୍ଞେ ହୋଇ ତୋଷ
ବିଷ୍ଣୁଙ୍କ ରଖିବେ ତୋ ଯଶ
ସର୍ବ ଦେବତା ତାର ଦେହେ
ବସନ୍ତି ଲୋମପନ୍ତି ପ୍ରାୟେ
ସେ ସର୍ବ ଦେବମୟ ହରି
ତାର ଚରଣେ ପୂଜା କରି
ଲଭିବୁ ସର୍ବ ସୁଖ ଭଲେ
ଆମ୍ଭର ବାକ୍ୟେ ଧର୍ମ୍ମକଲେ ।୨୨,୨୩

ଶ୍ରୀବେଣ ଉବାଚ—

ଋଷିଙ୍କ ବାକ୍ୟ ଶୁଣି କର୍ଣ୍ଣେ
ବେଣ ବୋଲଇ କୋପମନେ
ତୁମ୍ଭେ ବାଳିଶ ବିପ୍ରଜନ
ଅଧର୍ମ୍ମ ଧର୍ମ୍ମ ବୋଲି ମଣ
ଯେ ଅନ୍ନଦାତା, ତାଙ୍କୁ ଛାଡ଼ି
ଜାର ପୁରୁଷେ ରତି ବଢ଼ି । ୨୪ ।
ବିଷ୍ଣୁ ସ୍ୱରୂପ ନରପତି
ତାଙ୍କୁ ଯେ ମନୁଷ୍ୟେ ଗଣନ୍ତି
ସେ ମୂଢ଼ ପ୍ରାଣୀ ଏ ଜଗତେ
ବର୍ତ୍ତନ୍ତି ଶାସ୍ତ୍ର ଅବହିତେ
ତାହାଙ୍କ ଧର୍ମ୍ମଜ୍ଞାନ ନାହିଁ
ଉଭୟ ଲୋକେ ସୁଖ ନାହିଁ ।୨୫।

ବିଷ୍ଣୁର୍ବିରିଞ୍ଚୋ ଗିରିଶ ଇନ୍ଦ୍ରୋ ବାୟୁର୍ଯମୋ ରବିଃ ।
ପର୍ଜ୍ଜନ୍ୟୋ ଧନଦଃ ସୋମଃ କ୍ଷିତିରଗ୍ନିରପାଂ ପତିଃ । ୨୬ ।
ଏତେ ଚାନ୍ୟେ ଚ ବିବୁଧାଃ ପ୍ରଭବୋ ବରଶାପୟୋଃ ।
ଦେହେ ଭବନ୍ତି ନୃପତେଃ ସର୍ବଦେବମୟୋ ନୃପଃ । ୨୭
ତସ୍ମାନ୍ମାଂ କର୍ମଭିର୍ବିପ୍ରା ଯଜଧ୍ୱଂ ଗତମତ୍ସରାଃ ।
ବଳିଞ୍ଚ ମହ୍ୟଂ ହରତ ମତ୍ତୋଽନ୍ୟଃ କୋଽଗ୍ରଭୁକ୍ ପୁମାନ୍ । ୨୮ ।

ଶ୍ରୀମୈତ୍ରେୟ ଉବାଚ ।

ଇତ୍ଥଂ ବିପର୍ଯ୍ୟୟମତିଃ ପାପୀୟାନୁତ୍ପଥଂ ଗତଃ ।
ଅନୁନୀୟମାନସ୍ତଦ୍ୟାଚ୍ଞାଂ ନ ଚକ୍ରେ ଭ୍ରଷ୍ଟମଙ୍ଗଳଃ । ୨୯ ।

---

ବିଷ୍ଣୁ, ବ୍ରହ୍ମା, ଶିବ, ଇନ୍ଦ୍ର, ବାୟୁ, ଯମ, ସୂର୍ଯ୍ୟ, ପର୍ଜ୍ଜନ୍ୟ, କୁବେର, ଚନ୍ଦ୍ର, ପୃଥିବୀ, ଅଗ୍ନି, ବରୁଣ ଏବଂ ଅନ୍ୟାନ୍ୟ ବର ଓ ଶାପପ୍ରଦାନକାରୀ ଦେବଗଣ ରାଜ ଦେହରେ ଅବସ୍ଥିତ, ଏଣୁ ରାଜା ସର୍ବ ଦେବମୟ । ୨୬,୨୭ ।

ଅତଏବ ହେ ବ୍ରାହ୍ମଣଗଣ ! ଆପଣମାନେ ମାତ୍ସର୍ଯ୍ୟ ପରିତ୍ୟାଗକରି ଇଚ୍ଛାନୁରୂପ କର୍ମଦ୍ୱାରା ମୋର ଆରାଧନା କର ଏବଂ ମୋପାଇଁ ପୂଜାସାମଗ୍ରୀ ସଂଗ୍ରହ କର, କାରଣ ମୋ ବ୍ୟତୀତ ଅନ୍ୟ କେହି ଅଗ୍ରଭୁକ୍ ବା ଅଗ୍ରପୂଜ୍ୟ ହୋଇ ନ ପାରେ । ୨୮ ।

ଶ୍ରୀମୈତ୍ରେୟ କହିଲେ :—

ଏପରି ଅସତ୍‌ପଥଗାମୀ, ଭ୍ରାନ୍ତମତି, ପାପିଷ୍ଠ, ନଷ୍ଟପୁଣ୍ୟ, ବେଣ ମୁନିମାନଙ୍କ କର୍ତ୍ତୃକ ବାରମ୍ବାର ଅନୁରୁଦ୍ଧ ହେଲେ ମଧ୍ୟ ସେମାନଙ୍କ ପ୍ରାର୍ଥନାରେ ରାଜି ହେଲେ ନାହିଁ । ୨୯ ।

---

କେ ଯଜ୍ଞପୁରୁଷ ତୁମ୍ଭର
ଯାର ଚରଣେ ସେବାକର
ଯୁବତି କୁଳ ଧର୍ମ୍ମ ଛାଡ଼
ଜାରେ ଯେସନେ ସେବାକରି
ଦେଖ ଏ ନୃପତିଶରୀରେ
ଦେବେ ବସନ୍ତି ଅଧିକାରେ
ବିଷ୍ଣୁ ବିରଞ୍ଚି ମହେଶ୍ୱର
ଇନ୍ଦ୍ର ପବନ ଦିବାକର

ଯମ ପର୍ଜ୍ଜନ୍ୟ ଧନଦାତା
ସୋମ ଧରଣୀ ଭସ୍ମକର୍ତ୍ତା
ବରୁଣ ଆଦି ଅନ୍ୟ ଯେତେ
ସର୍ବେ ବସନ୍ତି ନୃପଗାତ୍ରେ
ଯେ ବର ଶାପ ଦିଅନ୍ତି ଲୋକେ
ନୃପ ଶରୀରେ ଏକେ ଏକେ
ଏଣୁ ଏ ନରପତିଦେହ
ପ୍ରତ୍ୟକ୍ଷେ ସର୍ବ ଦେବମୟ

ଏ ଦେହ ମହିମା ନ ଜାଣି
ଅଧର୍ମ୍ମ ଧର୍ମ୍ମ ପରିମାଣି
ଏଣୁ ତୁମ୍ଭର କର୍ମ୍ମ ଯେତେ
ସେ ଧର୍ମ୍ମେ ପୂଜା କର ମୋତେ
ମୋହର ବଳି ଅଗ୍ରେ କର
ଏ ଧର୍ମ୍ମ ସ୍ୱଧର୍ମ୍ମ ତୁମ୍ଭର
ମୁଁ ଯଜ୍ଞଭାଗ ଆଗ ପାଇ
ମୋଠାରୁ ଅନ୍ୟ ଦେବ ନାହିଁ । ୨୬-୨୯

ଇତି ତେଽସତ୍‌କୃତାସ୍ତେନ ଦ୍ୱିଜାଃ ପଣ୍ଡିତମାନିନା ।
ଭଗ୍ନାୟାଂ ଭବ୍ୟଯାଚ୍‌ଞାୟାଂ ତସ୍ମୈ ବିଦୁର ଚୁକ୍ରୁଧୁଃ । ୩୦ ।
ହନ୍ୟତାଂ ହନ୍ୟତାମେଷ ପାପଃ ପ୍ରକୃତଦାରୁଣଃ ।
ଜୀବନ୍ ଜଗଦସାବାଶୁ କୁରୁତେ ଭସ୍ମସାତ୍ ଧ୍ରୁବମ୍ । ୩୧ ।
ନାୟମର୍ହତ୍ୟସଦ୍‌ବୃତ୍ତୋ ନରଦେବବରାସନମ୍ ।
ଯୋଽଧିଯଜ୍ଞପତିଂ ବିଷ୍ଣୁଂ ବିନିନ୍ଦତ୍ୟନପତ୍ରପଃ । ୩୨ ।
କୋ ବୈନଂ ପରିଚକ୍ଷୀତ ବେଣମେକମୃତେଽଶୁଭମ୍ ।
ପ୍ରାପ୍ତ ଈଦୃଶମୈଶ୍ୱର୍ଯ୍ୟଂ ଯଦନୁଗ୍ରହଭାଜନଃ । ୩୩ ।
ଇତ୍ଥଂ ବ୍ୟବସିତା ହନ୍ତୁମୃଷୟୋ ରୂଢ଼ମନ୍ୟବଃ ।
ନିଜଘ୍ନୁର୍ହୁଙ୍କୃତୈର୍ବେଣଂ ହତମଚ୍ୟୁତନିନ୍ଦୟା । ୩୪ ।

---

ହେ ବିଦୁର ! ବ୍ରାହ୍ମଣମାନେ ଏହିପରି ତାହାର ମଙ୍ଗଳ ପ୍ରାର୍ଥନାରେ ବିଫଳ ମନୋରଥ ହୋଇ ଓ ପଣ୍ଡିତାଭିମାନୀ ବେଣ କର୍ତ୍ତୃକ ଅପମାନିତ ହୋଇ ତାହାପ୍ରତି ଅତ୍ୟନ୍ତ କ୍ରୁଦ୍ଧ ହୋଇଥିଲେ । ୩୦ ।

ସେମାନେ ଏକ ବାକ୍ୟରେ କହିଲେ "ଏ ନିଷ୍ଠୁରପ୍ରକୃତି ପାପାତ୍ମାକୁ ବର୍ତ୍ତମାନ ସଂହାର କର, ଏ ସଂସାରରେ ରହିଲେ ତାହାକୁ ଭସ୍ମସାତ୍ କରିଦେବ" । ୩୧ ।

ଏ ଦୁରାଚାର ରାଜାର ଶ୍ରେଷ୍ଠ ଆସନର ଅଧିକାରୀ ହେବାର କୌଣସି ଯୋଗ୍ୟତା ନାହିଁ, ଏ ଏପରି ନିର୍ଲଜ୍ଜ ଯେ ସର୍ବ ଯଜ୍ଞାଧିପତି ବିଷ୍ଣୁଙ୍କର ସୁଦ୍ଧା ଏ ନିନ୍ଦା କରୁଅଛି । ୩୨ ।

ଯାହାଙ୍କ ଅନୁଗ୍ରହରୁ ସେ ଏତାଦୃଶ ଐଶ୍ୱର୍ଯ୍ୟ ପ୍ରାପ୍ତ ହେଲା, ଏହି ଅମଙ୍ଗଳ ମୂର୍ତ୍ତି ଭିନ୍ନ ଅନ୍ୟ କିଏ ତାଙ୍କର ନିନ୍ଦା କରିପାରେ ? । ୩୩ ।

ବେଣ ଭଗବାନଙ୍କର ନିନ୍ଦାକରି ପୂର୍ବରୁ ହତ ହୋଇଥିଲା ବୋଲି କହିଲେ ଚଳେ, ମାତ୍ର ବର୍ତ୍ତମାନ ଋଷିମାନଙ୍କର କ୍ରୋଧ ପ୍ରଜ୍ୱଳିତ ହୋଇ ଉଠିବାରୁ ସେମାନେ ହୁଂକାରଶବ୍ଦଦ୍ୱାରା ବେଣକୁ ନିହତ କଲେ । ୩୪

---

ଶ୍ରୀ ମୈତ୍ରେୟ ଉବାଚ—
ଏମନ୍ତ ବିପରୀତ ମତି
ଉଇଲା ପାଷଣ୍ଡଙ୍କ ଗତି
ମୁନିଙ୍କ ଅନୁନୟ ବାଣୀ
କର୍ଣ୍ଣେ ନ କଲା ନୃପମଣି
ଭାବିବେ ଦୁଷ୍ଟ ଅନର୍ଗଳ
ଆମ୍ଭାକୁ କଲା ଅମଙ୍ଗଳ । ୩୦ ।
ଏମନ୍ତ ମୁନିଙ୍କ ବଚନେ
ଅବଜ୍ଞା କଲା ଜନେ ଜନେ
ଆମ୍ଭ ପଣ୍ଡିତମାନୀ କରେ
ମୁନିଙ୍କ ବଚନ ନ ଧରେ
ମୁନିଏ ଜନେ ଜନେ ଆସି
ଧର୍ମ୍ମ କହନ୍ତି ପାଶେ ବସି
କେବେହେଁ ନ କଲା ବଚନ
ମୁନିଙ୍କି କଲା ଅପମାନ
ତାହାର ଅଧର୍ମ୍ମ ବିଶ୍ୱାସେ
ମୁନିଙ୍କ ମନେ କୋପ ବସେ । ୩୧ ।
ବୋଲନ୍ତି ଏକ ଆରେ ଯାହିଁ
ଏହା ଜୀବନେ କାର୍ଯ୍ୟ ନାହିଁ
ଏହାର ଅଧର୍ମ୍ମ ଆସ୍ରରେ
ପ୍ରଜାଏ ମରିବେ ସଂସାରେ । ୩୨ ।
ଅସାଧୁବୃତ୍ତ ଏହା ଦେଖି
ନୃପଆସନେ ଯୋଗ୍ୟ କାହିଁ
ଯେ ରାଜା ଲଜ୍ଜା ଦୂରକରି
ନିନ୍ଦଇ ଯଜ୍ଞପତି ହରି
କେ ଏହା ସହେ ଦେହ ବହି
ଅଶୁଭବେଣ ବିନା କେହି । ୩୩, ୩୪

ଋଷିଭିଃ ସ୍ୱାଶ୍ରମପଦଂ ଗତେ ପୁତ୍ରକଳେବରମ୍ ।
ସୁନୀଥା ପାଲୟାମାସ ବିଦ୍ୟାଯୋଗେନ ଶୋଚତୀ । ୩୫ ।
ଏକଦା ମୁନୟସ୍ତେ ତୁ ସରସ୍ୱତ୍ସଲିଲାପ୍ଲୁତାଃ ।
ହୁତ୍ୱାଗ୍ନୀନ୍ ସତ୍କଥାଶ୍ଚକ୍ରୁରୁପବିଷ୍ଟାଃ ସରିତ୍ତଟେ । ୩୬ ।
ବୀକ୍ଷ୍ୟୋତ୍ଥିତାନ୍ ତଦୋତ୍ପାତାନାହୁର୍ଲୋକଭୟଙ୍କରାନ୍ ।
ଅପ୍ୟଭଦ୍ରମନାଥାୟା ଦସ୍ୟୁଭ୍ୟୋ ନ ଭବେଦ୍ଭୁବଃ । ୩୭ ।
ଏବମୃଷନ୍ତ ଋଷୟୋ ଧାବତାଂ ସର୍ବତୋ ଦିଶମ୍ ।
ପାଂଶୁଃ ସମୁତ୍ଥିତୋ ଭୂରିଶ୍ଚୌରାଣାମଭିଲୁମ୍ପତାମ୍ । ୩୮ ।
ତଦୁପଦ୍ରବମାଜ୍ଞାୟ ଲୋକସ୍ୟ ବସୁ ଲୁମ୍ପତାମ୍ ।
ଭର୍ତ୍ତର୍ୟୁପରତେ ତସ୍ମିନ୍ନନ୍ୟୋଽନ୍ୟଂ ଚ ଜିଘାଂସତାମ୍ । ୩୯ ।

ଋଷିମାନେ ବେଣଙ୍କର ପ୍ରାଣସଂହାର କରି ନିଜନିଜର ଆଶ୍ରମକୁ ପ୍ରସ୍ଥାନ କଲେ । ବେଣ ଜନନୀ ସୁନୀଥା ଅତ୍ୟନ୍ତ ଶୋକାର୍ତ୍ତ ହୋଇ ବିଦ୍ୟାବଳରେ ବେଣର ଶରୀର ରକ୍ଷାକରିଥିଲେ । ୩୫ ।

ଦିନେ ମୁନିମାନେ ସରସ୍ୱତୀତୀରରେ ସ୍ନାନ ହୋମାଦି ସମାପନ କରି ତଟରେ ଉପସ୍ଥିତ ହୋଇ ସତ୍କଥା ଆଲୋଚନା କରୁଥିଲେ । ୩୬ ।

ଏପରି ସମୟରେ କେତେଗୁଡ଼ିଏ ଲୋକଙ୍କୁ ନାନାପ୍ରକାର ଉତ୍ପାତ କରିବା ଦେଖି ସେମାନେ ଆପଣା ଆପଣା ମଧ୍ୟରେ କଥୋପକଥନ କଲେ—"ପୃଥିବୀ ନୃପହୀନ ହେବାରୁ ଦସ୍ୟୁମାନେ ଏପରି ଅମଙ୍ଗଳ ଘଟାଉ ଅଛନ୍ତି" । ୩୭ ।

ଋଷିମାନେ ଏହିପରି ତର୍କ ବିତର୍କ କରୁଥିଲେ, ଏମନ୍ତ ସମୟରେ ନାନାଦିଗରୁ ଧାବମାନ ଚୌରମାନଙ୍କର ପଦଧୂଳି ଉତ୍ଥିତ ହେଲା । ୩୮ ।

ଦସ୍ୟୁମାନେ ରାଜାଙ୍କର ମରଣହେତୁ ନିର୍ଭୀକଭାବରେ ପ୍ରଜାମାନଙ୍କର ଧନଲୁଣ୍ଠନ ଓ ପ୍ରାଣସଂହାର କରିବାକୁ ଆରମ୍ଭ କରିଥିଲେ, ରାଜ୍ୟ ଅରାଜକ ଓ ହୀନସତ୍ତ୍ୱ ହୋଇଥିବା ଦେଖି ସୁଦ୍ଧା ସବଳବ୍ୟକ୍ତିମାନେ

ଏମନ୍ତେ ବେଣ ନାଶପାଇଁ
ମୁନିଏ ମନେ କୋପ ବହି
ହୁଙ୍କାର କରି ବେଦବାଣେ
ପ୍ରହାର କଲେ ବେଣ ପ୍ରାଣେ
ଅଚ୍ୟୁତନିନ୍ଦା ଫଳ ଥିଲା
ତକ୍ଷଣେ ଦେହୁଁ ପ୍ରାଣ ଗଲା
ବେଣଙ୍କୁ ମାରି ବିପ୍ରଗଣେ
ଗଲେ ସେ ଯେ ଯାହା ଭୁବନେ
ସୁନୀଥା ପୁତ୍ରର ମରଣ
ଦେଖି କରଇ ବିଚାରଣ

ଅବଶ୍ୟ ଏହାର ଶରୀରେ
ପୁତ୍ର ଉପୁଜିବ ସଂସାରେ
ହୋଇବେ ପ୍ରଜାଜନେ ସୁଖୀ
ଏତେ ବିଚାରି ଅଶ୍ରୁମୁଖୀ
ତଇଳଦ୍ରୋଣି ମଧ୍ୟେ ଥୋଇ
ବେଣର ଶରୀର ପାଳଇ ୩୫,୩୬
ଏହି ସମୟେ ଏକ ଦିନେ
ସରସ୍ୱତୀକୂଳେ ମୁନିଜନେ
ସେ ଜଳେ ପ୍ରାତଃସ୍ନାନ କରି
ହୋମେ ପୂଜିଲେ ନରହରି

ବିଷ୍ଣୁର କଥା ଗୋଷ୍ଠୀ କଲେ
ଏମନ୍ତେ ଉତ୍ପାତ ଦେଖିଲେ
ଶୁଭଇ ମୁଖରବ ଘୋଷ
ଭୟେ କମ୍ପନ୍ତି ଦଶଦିଶ
ପ୍ରଜାଏ ଅନାଥେ ଆକୁଳ
ପଳାନ୍ତି ବନ ଗିରି ସ୍ଥୋଳ
ମୁନି ଚାହାନ୍ତି ଚାରିଦିଗେ
ଧୂଳି ଉଡ଼ିଲା ବାୟୁଯୋଗେ
ଦୁଷ୍ଟେ ଧାମନ୍ତି ଶସ୍ତ୍ର ଧରି
ଚାହାନ୍ତି ମାଲ ମାଲ କରି

ଚୌରପ୍ରାୟଂ ଜନପଦଂ ହୀନସତ୍ତ୍ୱମରାଜକମ୍ ।
ଲୋକାନ୍ ନାବାରୟନ୍ ଶକ୍ତା ଅପି ତଦ୍ଦୋଷଦର୍ଶିନଃ । ୪୦ ।
ବ୍ରାହ୍ମଣଃ ସମଦୃକ୍ ଶାନ୍ତୋ ଦୀନାନାଂ ସମୁପେକ୍ଷକଃ ।
ସ୍ରବତେ ବ୍ରହ୍ମ ତସ୍ୟାପି ଭିନ୍ନଭାଣ୍ଡାତ୍ ପୟୋ ଯଥା । ୪୧ ।
ନାଙ୍ଗସ୍ୟ ବଂଶୋ ରାଜର୍ଷେରେଷ ସଂସ୍ଥାତୁମର୍ହତି ।
ଅମୋଘବୀର୍ଯ୍ୟା ହି ନୃପା ବଂଶେଽସ୍ମିନ୍ କେଶବାଶ୍ରୟାଃ । ୪୨ ।
ବିନିଶ୍ଚିତ୍ୟୈବମୃଷୟୋ ବିପନ୍ନସ୍ୟ ମହୀପତେଃ ।
ମମନ୍ଥୁରୂରୁଂ ତରସା ତତ୍ରାସୀଦ୍ ବାହୁକୋ ନରଃ । ୪୩ ।
କାକକୃଷ୍ଣୋଽତିହ୍ରସ୍ୱାଙ୍ଗୋ ହ୍ରସ୍ୱବାହୁର୍ମହାହନୁଃ ।
ହ୍ରସ୍ୱପାନ୍ନିମ୍ନନାସାଗ୍ରୋ ରକ୍ତାକ୍ଷସ୍ତାମ୍ରମୂର୍ଦ୍ଧଜଃ । ୪୪ ।

ଏହି ଦସ୍ୟୁମାନଙ୍କୁ ନିବାରଣ ନ କଲେ ଅପରାଧ ହେବ, ଏହା ଜାଣି ସୁଦ୍ଧା ଏସବୁ ଉପଦ୍ରବ ଦମନ କରିବାକୁ ଚେଷ୍ଟା କଲେ ନାହିଁ । ୩୯, ୪୦ ।

ସମଦର୍ଶୀ, ଶାନ୍ତ ବ୍ରାହ୍ମଣଗଣ ଯେବେ ଅନାଥର କ୍ଲେଶ ଦୂର କରିବାକୁ ଉପେକ୍ଷା କରନ୍ତି, ତେବେ ଭଗ୍ନଭାଣ୍ଡରୁ ଦୁଗ୍ଧ କ୍ଷରଣ ତୁଲ୍ୟ ସେମାନଙ୍କର ବ୍ରହ୍ମତପ କ୍ଷୟ ହୁଏ । ୪୧ ।

ରାଜର୍ଷି ଅଙ୍ଗଙ୍କର ଏହି ବଂଶ ଏକାବେଳକେ ଧ୍ୱଂସ ହେବା ଉଚିତ ହୋଇନାହିଁ, କାରଣ ଏହି ବଂଶରେ ହରିପରାୟଣ ଅମୋଘବୀର୍ଯ୍ୟ ବହୁରାଜା ଉତ୍ପନ୍ନ ହୋଇଥିଲେ । ୪୨ ।

ମୁନିମାନେ ଏହିପରି ସ୍ଥିରକରି ମୃତ ବେଣଙ୍କର ଉରୁମନ୍ଥନ କଲେ, ତହିଁରୁ ଗୋଟିଏ ଖର୍ବାକୃତି ମନୁଷ୍ୟ ଜାତ ହେଲା, ତାହାର ବର୍ଣ୍ଣ କାକତୁଲ୍ୟ କୃଷ୍ଣ, ଅଙ୍ଗସମୂହ ଓ ବାହୁ ଅତ୍ୟନ୍ତ କ୍ଷୁଦ୍ର, କପାଳ ବୃହତ୍, ପାଦଦ୍ୱୟ ଖର୍ବ; ନାସାଗ୍ର ନିମ୍ନ, ନୟନ ରକ୍ତବର୍ଣ୍ଣ ଏବଂ କେଶ ତାମ୍ରବର୍ଣ୍ଣ । ୪୩, ୪୪ ।

ତାଙ୍କ ଚରଣଧୂଳି ବେଗେ
ଆଚ୍ଛାଦି ରହିଲେ ଦଶଦିଗେ
ଦୁଷ୍ଟେ ଲୁଟନ୍ତି ପ୍ରଜାଧନ
ଅଭୁତେ ଶୁଭେ ଘୋରସ୍ୱନ ।୩୭-୪୦।
ମୁନିଏ ପ୍ରଜାଦୁଃଖ ଦେଖି
ମନେ ହୋଇଲେ ଗରୁଦୁଃଖୀ
ବୋଇଲେ କଲୁଁ ମନ୍ଦ କୃତ୍ୟ
ପ୍ରଜାଏ ହୋଇଲେ ଅନାଥ
ରାଜା ନ ଥିଲେ ପ୍ରଜା କାହିଁ
ଏମନ୍ତ ବୋଲି ଦସ୍ୟୁ ବହି
ବୋଲନ୍ତି ବ୍ରାହ୍ମଣ ବେଭାର
ସଂସାରେ ପରଉପକାର

କ୍ଷୀର ଯେସନେ ଭଗ୍ନ ଭାଣ୍ଡେ
ଯତ୍ନ କରନ୍ତେ ଦଣ୍ଡେ ଦଣ୍ଡେ
କେବେହେଁ ନୋହେ ସେ ନିରୋଧ
ଏମନ୍ତ ମଣି ଶାସ୍ତ୍ର ବାଦ । ୪୧ ।
ବୋଲନ୍ତି ଅଙ୍ଗରାଜା ବଂଶେ
ରାଜା ଧାର୍ମ୍ମିକ ବିଷ୍ଣୁ ଅଂଶେ
ଜନମି ଗୋବିନ୍ଦ ଆଶ୍ରୟେ
ପ୍ରଜା ପାଳନେ ସ୍ନେହ ବହେ
ତାର ଜୀବନ ଏ ସଂସାରେ
ରହିବ ପର ଉପକାରେ । ୪୨ ।
ଏତେ ବିଚାରି ବିପ୍ରବରେ
ଉରୁ ମନ୍ଥିଲେ କୁଶଶରେ

ବାହୁକ ନାମେ ନରଅଂଶେ
ଅଭୁତେ ହୋଇଲା ପୁରୁଷେ ।୪୩
କାକହୁଁ କୃଷ୍ଣ ଅଙ୍ଗ ତାର
ନାସିକା ହନୁ ଭିନ୍ନଙ୍କର
ହସ୍ତ ଚରଣ ଦେହ କୃଶ
ତାମ୍ରର ପ୍ରାୟ ମୁଣ୍ଡକେଶ
ଅରୁଣ ବରଣେ ଲୋଚନ
ଭ୍ରୂକୁଟୀ କୁଟିଳ ବଦନ । ୪୪ ।

ତନ୍ତୁ ତେଽବନତଂ ଦୀନଂ କିଂ କରୋମୀତିବାଦିନମ୍ ।
ନିଷୀଦେତ୍ୟବ୍ରୁବଂସ୍ତାତ ସ ନିଷାଦସ୍ତତୋଽଭବତ୍ । ୪୫ ।
ତସ୍ୟ ବଂଶ୍ୟାସ୍ତୁ ନୈଷାଦା ଗିରିକାନନଗୋଚରାଃ ।
ଯେନାହରଜ୍ଜାୟମାନୋ ବେଣକଲ୍ମଷମୁଲ୍ବଣମ୍ । ୪୬ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ଚତୁର୍ଥସ୍କନ୍ଧେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ନିଷାଦୋତ୍ପତ୍ତିର୍ନାମ ଚତୁର୍ଦ୍ଦଶୋଽଧ୍ୟାୟଃ । ୧୪ ।

---

ହେ ବତ୍ସ ! ସେହି ବ୍ୟକ୍ତି ଦୀନଭାବରେ ଅବନତ ମସ୍ତକରେ କହିଲେ ମୁଁ କଅଣ କରିବି ? ଋଷିମାନେ କହିଲେ—'ନିଷୀଦ' ଅର୍ଥାତ୍ ଉପବେଶନ କର । ନିଷୀଦ ଏହି କଥାରୁ ସେ ନିଷାଦ ବୋଲି ବିଖ୍ୟାତ ହେଲା । ୪୫ ।

ଏହି ନିଷାଦ ବଂଶଧରମାନେ ନୈଷାଦ ବୋଲି ଅଭିହିତ ହେଲେ ଏବଂ ପର୍ବତ ଓ ବନରେ ବାସ କଲେ । ଏହି ନିଷାଦ ଜନ୍ମ ଗ୍ରହଣ କରି ବେଣଙ୍କର ମହାପାପ ପୂରଣ କରିଥିଲା । ୪୬ ।

---

ବିପ୍ରଙ୍କ ପାଦେ ଶିର ଦେଇ
ବୋଲଇ କି କରିବି ମୁହିଁ
ତାହାର ରୂପ ଦେଖି ମନେ
ବିସ୍ମିତ କଲେ ବିପ୍ରଗଣେ
ଦେଖି ଅଦ୍ଭୁତ ଏହା କାୟେ
ରାଜା ଆସନେ ଯୋଗ୍ୟ ନୋହେ
ଆମ୍ଭେ ଏହାକୁ ରାଜା କଲେ
ସଂସାର ନାଶିବ ଏ ଭଲେ
ଏମନ୍ତ ବିପ୍ରେ ବିଚାରିଲେ
"ନିଷୀଦ" ବୋଲି ଆଜ୍ଞା ଦେଲେ
ବୋଇଲେ ବନେ ହୁଅ ରାଜା
ଗିରି କାନନେ ତୋର ପୂଜା ।୪୫
ହେ ତାତ ବିପ୍ରଙ୍କର ବୋଲେ
ତେଣୁ ସେ ନିଷାଦ ହୋଇଲେ
ତା ବଂଶ ନିଷାଦ ହୋଇଲେ
ଗିରି କାନନ ଆଶ୍ରେ କଲେ
ଯେ ବେଣଦେହେ ପାପ ଥିଲା
ନିଷାଦ ରୂପେ ବନେ ଗଲା ।୪୬।
ବୋଲଇ ଦାସ ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ





## ପ ଞ୍ଚ ଦ ଶ ଅ ଧ୍ୟା ୟ ।

ତତଃ ପଞ୍ଚଦଶେ ବିପ୍ରୈର୍ମଥନାଦ୍ ବେଣବାହୁତଃ ।
ଜାତସ୍ୟ ତୁ ପୃଥୋରୁକ୍ତମଭିଷେକାର୍ହଣାଦିକମ୍ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀମୈତ୍ରେୟ ଉବାଚ ।

ଅଥ ତସ୍ୟ ପୁନର୍ବିପ୍ରୈରପୁତ୍ରସ୍ୟ ମହୀପତେଃ ।
ବାହୁଭ୍ୟାଂ ମଥ୍ୟମାନାଭ୍ୟାଂ ମିଥୁନଂ ସମପଦ୍ୟତ । ୧ ।
ତଦ୍ଦୃଷ୍ଟ୍ୱା ମିଥୁନଂ ଜାତମୃଷୟୋ ବ୍ରହ୍ମବାଦିନଃ ।
ଊଚୁଃ ପରମସନ୍ତୁଷ୍ଟା ବିଦିତ୍ୱା ଭଗବତ୍କଳାମ୍ । ୨ ।

ଶ୍ରୀଋଷୟ ଊଚୁଃ ।

ଏଷ ବିଷ୍ଣୋର୍ଭଗବତଃ କଳା ଭୁବନପାବନୀ ।
ଇୟଞ୍ଚ ଲକ୍ଷ୍ମ୍ୟାଃ ସଂଭୂତଃ ପୁରୁଷସ୍ୟାନପାୟିନୀ । ୩ ।

---

### ପୃଥୁଙ୍କର ଉତ୍ପତ୍ତି ଓ ରାଜ୍ୟାଭିଷେକ ।

ପଞ୍ଚଦଶ ଅଧ୍ୟାୟରେ ବ୍ରାହ୍ମଣମାନେ ବେଣଙ୍କର ବାହୁମନ୍ଥନ କରିବାରୁ ପୃଥୁ ଜନ୍ମ ହେବା ଓ ତାଙ୍କର ଅଭିଷେକ ବିଷୟ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀମୈତ୍ରେୟ କହିଲେ :—

ବ୍ରାହ୍ମଣମାନେ ଅପୁତ୍ରିକ ରାଜା ବେଣଙ୍କର ବାହୁ ମନ୍ଥନ କରନ୍ତେ ତହିଁରୁ ଗୋଟିଏ ପୁରୁଷ ଓ ଗୋଟିଏ ସ୍ତ୍ରୀ ଉତ୍ପନ୍ନ ହେଲେ । ୧ ।

ବ୍ରହ୍ମବାଦୀ ମୁନିଗଣ ଏହି ପୁରୁଷ ଓ ସ୍ତ୍ରୀଙ୍କୁ ଜାତ ହେବା ଦେଖି ଭଗବାନ୍ ବିଷ୍ଣୁଙ୍କ ଅଂଶରେ ଏମାନେ ଜାତ ବୋଲି ଜାଣି ତୁଷ୍ଟ ହୋଇ କହିଲେ । ୨ ।

ଋଷିମାନେ କହିଲେ :—

ଏହି ପୁରୁଷ ଭୁବନ ପାଳକ ବିଷ୍ଣୁଙ୍କର ଅଂଶ ଓ ସ୍ତ୍ରୀଟି ମଧ୍ୟ ଭଗବାନଙ୍କର ନିତ୍ୟଯୁକ୍ତା ଲକ୍ଷ୍ମୀଙ୍କର ଅଂଶ । ୩ ।

---

ବେଣ ବାହୁକୁ ବିପ୍ରେ ମନ୍ଥୁ, ଜାତ ହୋଇଲେ ତହିଁ ପୃଥୁ । ତାହାଙ୍କ ଅଭିଷେକକଥା, ପନ୍ଦର ଅଧ୍ୟାୟବାରତା

ଶ୍ରୀ ମୈତ୍ରେୟ ଉବାଚ—

ଜନ୍ମିଲା ଦେଖି ବେଣ ଅଙ୍ଗ
ପୁଣି ମନ୍ଥିଲେ ବାହୁ ଯୁଗ

ନାରୀ ପୁରୁଷ ଏକମେଳେ
ଜନ୍ମିଲେ ବେଦ ମନ୍ତ୍ରବଳେ
ସ୍ତ୍ରୀ ପୁରୁଷ ଦେହ ଦେଖି
ବିଷ୍ଣୁର କଳା ଉପଲକ୍ଷି
ଅତି ଆନନ୍ଦେ ମୁନିଗଣେ
ଋଷେ କହନ୍ତି ଜଣେ ଜଣେ । ୧,୨ ।

ଋଷୟ ଊଚୁଃ—

ଦେଖ ଏ ପୁରୁଷ କାମିନୀ
ଅଶେଷ ଭୁବନ ପାଳନୀ
ଦେଖ ଏ ମିଥୁନ ଲକ୍ଷଣ
ପ୍ରତ୍ୟକ୍ଷେ ଲକ୍ଷ୍ମୀ ନାରାୟଣ
ବେଣର ବଂଶ ଏ ରଖିବ
ଆନନ୍ଦେ ଭୁବନ ପାଳିବ । ୩ ।

ଅତ୍ର ଯଃ ପ୍ରଥମୋ ରାଜ୍ଞାଂ ପୁମାନ୍ ପ୍ରଥୟିତା ଯଶଃ ।
ପୃଥୁର୍ନାମ ମହାରାଜୋ ଭବିଷ୍ୟତି ପୃଥୁଶ୍ରବାଃ । ୪ ।
ଇୟଂ ଚ ଦେବୀ ସୁଦତୀ ଗୁଣଭୂଷଣଭୂଷଣମ୍ ।
ଅର୍ଚିର୍ନାମ ବରାରୋହା ପୃଥୁମେବାବରୁନ୍ଧତୀ । ୫ ।
ଏଷ ସାକ୍ଷାଦ୍ଧରେରଂଶୋ ଜାତୋ ଲୋକରିରକ୍ଷୟା ।
ଇୟଞ୍ଚ ତତ୍ପରା ହି ଶ୍ରୀରନୁଜଜ୍ଞେଽନପାୟିନୀ । ୬ ।
ଶ୍ରୀମୈତ୍ରେୟ ଉବାଚ ।
ପ୍ରଶଂସନ୍ତି ସ୍ମ ତଂ ବିପ୍ରା ଗନ୍ଧର୍ବପ୍ରବରା ଜଗୁଃ ।
ମୁମୁଚୁଃ ସୁମନୋଧାରାଃ ସିଦ୍ଧା ନୃତ୍ୟନ୍ତି ସ୍ୱଃସ୍ତ୍ରିୟଃ । ୭ ।
ଶଙ୍ଖତୂର୍ଯ୍ୟମୃଦଙ୍ଗାଦ୍ୟା ନେଦୁର୍ଦୁନ୍ଦୁଭୟୋ ଦିବି ।
ତତ୍ର ସର୍ବ ଉପାଜଗ୍ମୁର୍ଦେବର୍ଷିପିତୃଣାଂ ଗଣାଃ । ୮ ।

ଏହି ପୁରୁଷ ରାଜାମାନଙ୍କର ପ୍ରଥମ ସ୍ଥାନ ଅଧିକାର କରି ବହୁଳ ଯଶ ବିସ୍ତାର କରିବେ ଏବଂ ମହାଯଶା ପୃଥୁ ନାମରେ ବିଖ୍ୟାତ ହୋଇ ରାଜଚକ୍ରବର୍ତ୍ତୀ ହେବେ । ୪ ।

ଏହି ସୁନ୍ଦରଦଶନା ଭୂଷଣମାନଙ୍କର ଭୂଷଣାସ୍ୱରୂପା ବରାଙ୍ଗନା ଦେବୀ, ଅର୍ଚି ନାମରେ ଖ୍ୟାତ ଲଭି କରି ମହାରାଜା ପୃଥୁଙ୍କୁ ସ୍ୱାମୀରୂପେ ଭଜନ କରିବେ । ୫ ।

ଏହି ପୁରୁଷ ସାକ୍ଷାତ୍ ଭଗବାନଙ୍କର ଅଂଶ, ଲୋକରକ୍ଷା ନିମିତ୍ତ ଜନ୍ମଗ୍ରହଣ କରିଥିଲେ । ଅର୍ଚି ସ୍ୱୟଂ ଲକ୍ଷ୍ମୀ, ସେ ଭଗବାନଙ୍କ ବ୍ୟତୀତ କୌଣସିଠାରେ ଅବସ୍ଥାନ କରନ୍ତି ନାହିଁ । ସୁତରାଂ ସେ ପତିଙ୍କର ପଶ୍ଚାତ୍ ଜନ୍ମ ଗ୍ରହଣ କରିଥିଲେ । ୬ ।

ଶ୍ରୀମୈତ୍ରେୟ କହିଲେ :—

ହେ ବିଦୁର ! ତଦନନ୍ତର ବ୍ରାହ୍ମଣମାନେ ତାହାଙ୍କୁ ସ୍ତବ କଲେ, ଗନ୍ଧର୍ବମାନେ ଗାୟନ କଲେ, ସିଦ୍ଧମାନେ ଆକାଶରୁ ପୁଷ୍ପ ବୃଷ୍ଟି କଲେ, ଅପ୍ସରାମାନେ ନୃତ୍ୟ କଲେ । ୭ ।

ସ୍ୱର୍ଗରେ ଶଙ୍ଖ, ତୂରୀ, ମୃଦଙ୍ଗ, ଦୁନ୍ଦୁଭି ପ୍ରଭୃତି ବାଦ୍ୟ ବାଜି ଉଠିଲା ଏବଂ ଦେବର୍ଷି ଓ ପିତୃଗଣ ସେଠାରେ ସମବେତ ହେଲେ । ୮ ।

ପ୍ରଥିତ ଯଶ କୀର୍ତ୍ତି ଯେଣୁ
ଏହାର ପୃଥୁ ନାମ ତେଣୁ । ୪ ।
ଏ ଯେ ସୁନ୍ଦରୀ ଶୁଭ୍ରଦନ୍ତୀ
ମୁକ୍ତାର ପ୍ରାୟ ଦନ୍ତପନ୍ତି
ସକଳ ଗୁଣେ ଏ ଭୂଷିତ
ବିରାଜେ ଯେସନେ ଆଦିତ୍ୟ
ରୂପେ ଅର୍ଚିଲା ପୃଥୁ ଯେଣୁ
ଏହାର ଅର୍ଚିନାମ ତେଣୁ । ୫ ।

ଏ ରାଜା ବିଷ୍ଣୁ ଅଂଶେ ଜାତ
ପୁରୁଷେ ଲୋକେ ଏ ବିଖ୍ୟାତ
ଏ ବାମା ଜାତ ରମା ରୂପେ
ଜନ୍ମ ହୋଇଲା ଜନ ସୁଖେ
ଏହାକୁ ରାଜ୍ୟ ରାଜା କରି
ଏ ନାରୀ ରାଣୀ ରୂପେ ବରି । ୬ ।
ଶ୍ରୀ ମୈତ୍ରେୟ ଉବାଚ—
ଏତେ ବିପ୍ରର ଶୁଦ୍ଧମନେ
ସ୍ତୁତି କରନ୍ତି ବିପ୍ରଜନେ

ଗନ୍ଧର୍ବେ ଗୀତ ନାଦ କଲେ
ଦେବେ କୁସୁମ ବରଷିଲେ
ଆନନ୍ଦେ ଗୀତ ନାଦ କରି
ନୃତ୍ୟ କରନ୍ତି ଅପସରୀ । ୭ ।
ଶଙ୍ଖ ମୃଦଙ୍ଗ ତୂରୀ ନାଦେ
ଦେବେ ଦୁନ୍ଦୁଭି, ବିଷ୍ଣୁ ମୋଦେ
ଦେବତା ପିତୃ ଋଷିଗଣେ
ମିଳିଲେ ହରଷିତ ମନେ । ୮ ।

ବ୍ରହ୍ମା ଜଗଦ୍‌ଗୁରୁର୍ଦେବୈଃ ସହାସୃତ୍ୟ ସୁରେଶ୍ୱରୈଃ ।
ବୈଣ୍ୟସ୍ୟ ଦକ୍ଷିଣେ ହସ୍ତେ ଦୃଷ୍ଟ୍ୱା ଚିହ୍ନଂ ଗଦାଭୃତଃ । ୯ ।
ପାଦୟୋରରବିନ୍ଦଞ୍ଚ ତଂ ବୈ ମେନେ ହରେଃ କଳାମ୍ ।
ଯସ୍ୟାପ୍ରତିହତଂ ଚକ୍ରମଂଶଃ ସ ପରମେଷ୍ଠିନଃ । ୧୦ ।
ତସ୍ୟାଭିଷେକ ଆରବ୍ଧୋ ବ୍ରାହ୍ମଣୈର୍ବ୍ରହ୍ମବାଦିଭିଃ ।
ଆଭିଷେଚନିକାନ୍ୟସ୍ମୈ ଆଜହ୍ରୁଃ ସର୍ବତୋ ଜନାଃ । ୧୧ ।
ସରିତ୍ ସମୁଦ୍ରା ଗିରୟୋ ନାଗା ଗାବଃ ଖଗା ମୃଗାଃ ।
ଦ୍ୟୌଃ କ୍ଷିତିଃ ସର୍ବଭୂତାନି ସମାଜହ୍ରୁରୁପାୟନମ୍ । ୧୨ ।
ସୋଽଭିଷିକ୍ତୋ ମହାରାଜଃ ସୁବାସାଃ ସାଧ୍ୱଲଂକୃତଃ ।
ପତ୍ନ୍ୟାର୍ଚ୍ଚିଷାଲଙ୍କୃତୟା ବିରେଜେଽଗ୍ନିରିବାପରଃ । ୧୩ ।

---

ଜଗଦ୍‌ଗୁରୁ ବ୍ରହ୍ମା ଇନ୍ଦ୍ରାଦି ଲୋକପାଳଗଣଙ୍କ ସହିତ ସେଠାକୁ ଆଗମନ କରି ଦେଖିଲେ ଯେ ବେଣନନ୍ଦନଙ୍କର ଦକ୍ଷିଣହସ୍ତରେ ବିଷ୍ଣୁଚକ୍ରରେଖା, ପାଦଦ୍ୱୟରେ ପଦ୍ମଚିହ୍ନ ସୁବ୍ୟକ୍ତ ହୋଇଅଛି, ସୁତରାଂ ସେ ତାହାଙ୍କୁ ଶ୍ରୀହରିଙ୍କ ଅଂଶ ବୋଲି ମନେ କରିଥିଲେ । କାରଣ ଯେଉଁମାନଙ୍କର ଚକ୍ରରେଖା ଅନ୍ୟରେଖା ଦ୍ୱାରା ବିଲୁପ୍ତ ହୁଏ ନାହିଁ ସେହିମାନେହିଁ ଭଗବାନଙ୍କର ଅଂଶ । ୯, ୧୦ ।

ତହିଁ ଉତ୍ତାରୁ ବ୍ରହ୍ମବାଦୀ ବ୍ରାହ୍ମଣମାନେ ତାହାଙ୍କର ଅଭିଷେକ ଆରମ୍ଭ କରିଥିଲେ, ସେତେବେଳେ ଲୋକମାନେ ଚତୁର୍ଦ୍ଦିଗରୁ ଅଭିଷେକ ଯୋଗ୍ୟ ଦ୍ରବ୍ୟମାନ ଆଣି ତାହାଙ୍କୁ ସମର୍ପଣ କରିଥିଲେ । ୧୧ ।

ଗିରି, ନଦୀ, ସମୁଦ୍ର, ନାଗ, ଗୋ, ଖଗ, ମୃଗ, ଦ୍ୟୁଲୋକ, ଭୂଲୋକ ଏବଂ ସମସ୍ତପ୍ରାଣୀ ଉପଯୁକ୍ତ ଉପହାର ତାହାଙ୍କୁ ସମର୍ପଣ କରିଥିଲେ । ୧୨ ।

ମହାରାଜା ପୃଥୁ ସୁନ୍ଦର ବସନ ପରିଧାନ କରି ସୁନ୍ଦରରୂପେ ଅଳଂକୃତ ହୋଇ ଯଥାବିଧି ଅଭିଷିକ୍ତ ହୋଇଥିଲେ । ଏବଂ ସର୍ବାଳଂକାର ବିଭୂଷିତା ଅର୍ଚ୍ଚିଙ୍କ ସହିତ ଦ୍ୱିତୀୟ ଅଗ୍ନି ରୂପେ ପ୍ରାପ୍ତ ହେଲେ । ୧୩ ।

---

ଶଙ୍କ ଯେ ପଦ୍ମଯୋନି ଭୁଲେ
ଦେବ ସମୂହେ ବିଜେ କଲେ
ଦେଖିଲେ ବେଣସୁତ ହସ୍ତ
ବିଷ୍ଣୁ ଚିହ୍ନ ପାଦିଗତେ ।୯,୧୦
ବିଷ୍ଣୁ ଅଂଶ ବୋଲି ଜାଣି
ବେଗେ ଆଣିଲେ ତୀର୍ଥପାଣି

ଯେ ଅଭିଷେକ ଦ୍ରବ୍ୟ ଯେତେ
ପ୍ରଜାଏ ଆଣି ଯେଝା ମତେ ।୧୧।
ସମୁଦ୍ର ପର୍ବତ ସରିତ
ସର୍ପ ବିହଙ୍ଗ ମୃଗ ଯୂଥ
ଧରଣୀ ଆଦି ସର୍ବଭୂତେ
ଯାହାର ଯେ ଥିବା ଉଚିତେ

ସକଳେ ନାନା ଦ୍ରବ୍ୟ ଆଣି
ମୁନି ଆନନ୍ଦେ ବେଦ ଭଣି
ପୃଥିକୁ ଅଭିଷେକ କଲେ
ମଙ୍ଗଳ ନାଦେ ଅର୍ଚ୍ଚିଭୂଲେ
ପୃଥୁକୁ କଲେ ମହାରାଜା
ଶୁଭବିଗ୍ରହେ ମହାତେଜା ।୧୨,୧୩

ତସ୍ମୈ ଜହାର ଧନଦୋ ହୈମଂ ବୀର ବରାସନମ୍ ।
ବରୁଣଃ ସଲିଳସ୍ରାବମାତପତ୍ରଂ ଶଶିପ୍ରଭମ୍ । ୧୪ ।
ବାୟୁଶ୍ଚ ବାଳବ୍ୟଜନେ ଧର୍ମ୍ମଃ କୀର୍ତ୍ତିମୟୀଂ ସ୍ରଜମ୍ ।
ଇନ୍ଦ୍ରଃ କିରୀଟମୁତ୍ତମଂ ଦଣ୍ଡଂ ସଂଯମନଂ ଯମଃ । ୧୫ ।
ବ୍ରହ୍ମା ବ୍ରହ୍ମମୟଂ ବର୍ମ୍ମ ଭାରତୀ ହାରମୁତ୍ତମମ୍ ।
ହରିଃ ସୁଦର୍ଶନଂ ଚକ୍ରଂ ତତ୍ପତ୍ନ୍ୟବ୍ୟାହତାଂ ଶ୍ରିୟମ୍ । ୧୬ ।
ଦଶଚନ୍ଦ୍ରମସିଂ ରୁଦ୍ରଃ ଶତଚନ୍ଦ୍ରଂ ତଥାମ୍ବିକା ।
ସୋମୋଽମୃତମୟାନଶ୍ୱାଂସ୍ତ୍ୱଷ୍ଟା ରୂପାଶ୍ରୟଂ ରଥମ୍ । ୧୭ ।

---

ହେ ବୀର ! ମହାରାଜ ପୃଥୁଙ୍କୁ କୁବେର କାଞ୍ଚନମୟ ଆସନ ଉପହାର ଦେଲେ, ବରୁଣ ଚନ୍ଦ୍ରତୁଲ୍ୟ ଶୁକ୍ଳବର୍ଣ୍ଣ ଛତ୍ର ଉପହାର ଦେଲେ; ତହିଁରୁ ସର୍ବଦା ଜଳ କ୍ଷରୁଥିଲା । ୧୪ ।

ବାୟୁ ଦୁଇଟି ଚାମର, ଧର୍ମ କୀର୍ତ୍ତିମୟୀ ଅମ୍ଳାନ ପୁଷ୍ପମାଳା, ଇନ୍ଦ୍ର, ଉତ୍କୃଷ୍ଟ କିରୀଟ ଏବଂ ଯମ ଶତ୍ରୁ ଦମନକାରୀ ଦଣ୍ଡ ପ୍ରଦାନ କରିଥିଲେ । ୧୫ ।

ବ୍ରହ୍ମା ବେଦମୟ ବର୍ମ, ସରସ୍ୱତୀ ଉତ୍ତମହାର, ନାରାୟଣ ସୁଦର୍ଶନ ଚକ୍ର, ଲକ୍ଷ୍ମୀ ଅକ୍ଷୟ ସମ୍ପଦ ଦାନ କରିଥିଲେ । ରୁଦ୍ରଦେବ ଦଶଟି ଚନ୍ଦ୍ରାକୃତ ଚିହ୍ନବିଶିଷ୍ଟ କୋଷ ସହିତ ଅସି, ପାର୍ବତୀ ଶତଚନ୍ଦ୍ରାକୃତ ଚର୍ମ, ଚନ୍ଦ୍ର ମରଣକ୍ଲାନ୍ତିଶୋଷିତ ଶୂନ୍ୟ ବହୁ ଅଶ୍ୱ ଓ ବିଶ୍ୱକର୍ମା ଗୋଟିଏ ଅତ୍ୟନ୍ତ ସୁନ୍ଦର ରଥ ପ୍ରଦାନ କରିଥିଲେ । ୧୬,୧୭ ।

---

କୁବେର ଦେଖି ତୋଷ ମନେ
ଦେଲେ ସେ ସୁବର୍ଣ୍ଣ ଆସନେ
ବରୁଣ ଦେଲେ ଛତ୍ର ଆଣି
ଟେକିଲେ ବରଷଇ ପାଣି
ଯେ ଛତ୍ରନାମ ଜଳସ୍ରବା
ସ୍ୱଭାବେ ଦିଶେ ଶଶିପ୍ରଭା । ୧୪ ।
ଚାମର ସମୀରଣ ଦେଲା
ଧର୍ମ୍ମ ଦେବତା କୀର୍ତ୍ତିମାଳା

ଇନ୍ଦ୍ର କିରୀଟ ଦେଲେ ଶିରେ
ଶମନ ଦଣ୍ଡ ଦେଲେ କରେ । ୧୫ ।
ବ୍ରହ୍ମକବଚ ବ୍ରହ୍ମା ଦେଲେ
ଭାରତୀ ହାର ଲମ୍ବାଇଲେ
ଗୋବିନ୍ଦ ଚକ୍ର ଦେଲେ କରେ
କମଳା ବସେ ତାର ଉରେ । ୧୬ ।
ସୁବର୍ଣ୍ଣ ଦଶଚନ୍ଦ୍ର ଯୁକ୍ତ
ରୁଦ୍ର ଖଡ଼ଗ ଦେଲେ ହସ୍ତେ

ଅମ୍ବିକା ଦେଲେ ଆଣି ଚର୍ମ
ଶତଚନ୍ଦ୍ରରେ ଶୋଭମାନ
ଅମୃତମୟ ଅଶ୍ୱ ଆଣି
ବିମାନ ଅର୍ଥେ ନିଶାମଣି
ପୃଥୁ ସମୀପେ ଆଣିଦେଲା
ସଙ୍ଗେ ତା ବିଶ୍ୱକର୍ମ୍ମା ଥିଲା
ବିମାନ ନାନା ରତ୍ନେ ସାଜି
ତହିଁ ଯୋଚିଲା ସେହି ବାଜି । ୧୭ ।

ଅଗ୍ନି ରାଜଗବଂ ଚାପଂ ସୂର୍ଯ୍ୟୋ ରଶ୍ମି ମୟାନିଷୂନ୍ ।
ଭୂଃ ପାଦୁକେ ଯୋଗମୟ୍ୟୌ ଦ୍ୟୌଃ ପୁଷ୍ପାବଳିମନ୍ୱହମ୍ । ୧୮ ।
ନାଟ୍ୟଂ ସୁଗୀତଂ ବାଦିତ୍ରମନ୍ତର୍ଦ୍ଧାନଞ୍ଚ ଖେଚରାଃ ।
ଋଷୟଶ୍ଚାଶିଷଃ ସତ୍ୟାଃ ସମୁଦ୍ରଃ ଶଙ୍ଖମାତ୍ମଜମ୍ । ୧୯ ।
ସିନ୍ଧବଃ ପର୍ବତା ନଦ୍ୟୋ ରଥବୀଥୀର୍ମହାତ୍ମନଃ ।
ସୂତୋଽଥ ମାଗଧୋ ବନ୍ଦୀ ତଂ ସ୍ତୋତୁମୁପତସ୍ଥିରେ । ୨୦ ।
ସ୍ତାବକାଂସ୍ତାନଭିପ୍ରେତ୍ୟ ପୃଥୁର୍ବୈଣ୍ୟଃ ପ୍ରତାପବାନ୍ ।
ମେଘନିର୍ହ୍ରାଦୟା ବାଚା ପ୍ରହସନ୍ନିଦମବ୍ରବୀତ୍ । ୨୧ ।

---

ଅଗ୍ନି ଛାଗ ଏବଂ ଗୋଶୃଙ୍ଗ ନିର୍ମିତ ଧନୁ, ସୂର୍ଯ୍ୟ ରଶ୍ମି ମୟ ବାଣ, ପୃଥିବୀ ଯୋଗମୟୀ ପାଦୁକା, ଅର୍ଥାତ୍ ଯେଉଁ ପାଦୁକା ସ୍ପର୍ଶମାତ୍ରେ ଅଭୀଷ୍ଟ ଫଳ ମିଳେ, ଏବଂ ସ୍ୱର୍ଗ ପୁଷ୍ପାଞ୍ଜଳି ପ୍ରଦାନ କରିଥିଲେ । ୧୮ ।

ବିମାନାରୂଢ଼ ଗନ୍ଧର୍ବ ବିଦ୍ୟାଧର ପ୍ରଭୃତି ସୁନ୍ଦର ସଙ୍ଗୀତ ବାଦ୍ୟ ଏବଂ ନାଟ୍ୟ ଅର୍ଥାତ୍ ନାଟକୀୟ ଅଭିନୟ କୌଶଳ, ଋଷିମାନେ ଆଶୀର୍ବାଦ ବର୍ଷଣ ଏବଂ ସମୁଦ୍ର ସଜଳ ସମ୍ଭୂତ ଶଙ୍ଖ ଉପହାର ଦେଇଥିଲେ । ୧୯ ।

ସମୁଦ୍ର, ପର୍ବତ ଓ ନଦୀ ଏହି ମହାତ୍ମାଙ୍କୁ ରଥମାର୍ଗ ପ୍ରଦାନ କରିଥିଲେ, ତଦନନ୍ତର ସୂତ, ମାଗଧ, ବନ୍ଦୀମାନେ ତାହାଙ୍କର କୀର୍ତ୍ତିଗାନ କରିବାକୁ ଉପସ୍ଥିତ ହୋଇଥିଲେ । ୨୦ ।

ମହା ପ୍ରତାପଶାଳୀ ବେଣ ନନ୍ଦନ ପୃଥୁ ସେମାନଙ୍କୁ ସ୍ତୁତିଗାନ କରିବା ଉଦ୍ୟତ ଜାଣି ହାସ୍ୟ ପୂର୍ବକ ଜଳଦ ଗମ୍ଭୀର ସ୍ୱରରେ କହିଲେ । ୨୧ ।

---

ଅନଳ ଆଣି ଦେଲା ଧନୁ
ରଶ୍ମି ନାରାଚ ଦେଲା ଭାନୁ
ଦେଲା ପାଦୁକା ଯୋଗମୟୀ
ଚରଣ ତଳେ ଦେଲା ମହୀ
ଆକାଶ ଦେଲା ପୁଷ୍ପମାଳ
ଆକାଶଚର-ଗଣେ ମିଳ
ନୃତ୍ୟ ସଙ୍ଗୀତ ବାଦ୍ୟ ଯେତେ
ଯେ ଅନ୍ତର୍ଦ୍ଧାନ ବିଦ୍ୟା ସେତେ
ମିଳି ସକଳ ମୁନିଗଣେ
ଆଶିଷ ଦେଲେ ଜଣେ ଜଣେ
ସମୁଦ୍ର ଶଙ୍ଖ ଦେଲା କରେ
ଯେ ନାଦେ ଦଶଦିଗ ପୂରେ । ୧୮,୧୯
ସମୁଦ୍ର ଗିରି ନଦୀ ଯେତେ
ବାଟ ଛାଡ଼ିଲେ ତାର ରଥେ
ସୂତ ମାଧବ ବନ୍ଦୀ ମେଳେ
ପୃଥୁର ସମୀପେ ମିଳିଲେ
ସ୍ତୁତି ଉଦ୍ୟମ ତାଙ୍କ ଜାଣି
ମେଘ ଗମ୍ଭୀର ମୃଦୁ ବାଣୀ
ଆନନ୍ଦେ ନିକଟେ ବସାଇ
ପୃଥୁ କହିଲା ସ୍ତବ ନାହିଁ । ୨୦,୨୧ ।

ଶ୍ରୀପୃଥୁରୁବାଚ ।

**ଭୋଃ ସୂତ ହେ ମାଗଧ ସୌମ୍ୟ ବନ୍ଦିନ୍ ଲୋକେଽଧୁନାସ୍ପଷ୍ଟଗୁଣସ୍ୟ ମେ ସ୍ୟାତ୍ ।**
**କିମାଶ୍ରୟୋ ମେ ସ୍ତବ ଏଷ ଯୋଜ୍ୟତାଂ ମା ମୟ୍ୟଭୂବନ୍ ବିତଥା ଗିରୋ ବଃ । ୨୨ ।**
**ତସ୍ମାତ୍ ପରୋକ୍ଷେଽସ୍ମଦୁପଶ୍ରୁତାନ୍ୟଲଂ କରିଷ୍ୟଥ ସ୍ତୋତ୍ରମପୀଚ୍ୟବାଚଃ ।**
**ସତ୍ୟୁତ୍ତମଃ ଶ୍ଳୋକଗୁଣାନୁବାଦେ ଜୁଗୁପ୍ସିତଂ ନ ସ୍ତବୟନ୍ତି ସଭ୍ୟାଃ । ୨୩ ।**
**ମହଦ୍‌ଗୁଣାନାତ୍ମନି କର୍ତ୍ତୁମୀଶଃ କଃ ସ୍ତାବକୈଃ ସ୍ତାବୟତେଽସତୋଽପି ।**
**ତେଽସ୍ୟାଭବିଷ୍ୟନ୍ନିତି ବିପ୍ରଲବ୍ଧୋ ଜନାବହାସଂ କୁମତିର୍ନ ବେଦ । ୨୪ ।**
**ପ୍ରଭବୋ ହ୍ୟାତ୍ମନଃ ସ୍ତୋତ୍ରଂ ଜୁଗୁପ୍ସନ୍ତ୍ୟପି ବିଶ୍ରୁତାଃ ।**
**ହ୍ରୀମନ୍ତଃ ପରମୋଦାରାଃ ପୌରୁଷଂ ବା ବିଗର୍ହିତମ୍ । ୨୫ ।**
**ବୟଂ ତ୍ୱବିଦିତା ଲୋକେ ସୂତାଦ୍ୟାପି ବରୀମଭିଃ ।**
**କର୍ମଭିଃ କଥମାତ୍ମାନଂ ଗାପୟିଷ୍ୟାମ ବାଲବତ୍ । ୨୬ ।**

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପୃଥୁଚରିତଂ ନାମ ପଞ୍ଚଦଶୋଽଧ୍ୟାୟଃ । ୧୫ ।

---

**ଶ୍ରୀପୃଥୁ କହିଲେ :—**

ହେ ସୌମ୍ୟ, ସୂତ, ମାଗଧ ଓ ବନ୍ଦୀଗଣ ! ମୋହର ଗୁଣ ବର୍ତ୍ତମାନ ସୁଦ୍ଧା ଅପ୍ରକାଶିତ, ତେଣୁ କେଉଁ ଗୁଣ ଅବଲମ୍ବନ କରି ତୁମ୍ଭେମାନେ ସ୍ତୁତି କରିବ ? ତୁମ୍ଭମାନଙ୍କର ଏହି ସ୍ତୁତି ଅନ୍ୟପ୍ରତି ପ୍ରୟୋଗ କର । ନଚେତ୍ ତୁମ୍ଭମାନଙ୍କର ବାକ୍ୟାବଳୀ ମୋଠାରେ ପ୍ରଯୁକ୍ତ ହେଲେ ମିଥ୍ୟା ବୋଲି ପ୍ରତୀତ ହେବ । ୨୨

ହେ ମଧୁରଭାଷୀ ସ୍ତାବକଗଣ ! ଯେତେବେଳେ ମୋହର ଯଶ ବ୍ୟକ୍ତ ହେବ, ସେତେବେଳେ ତାହା ଅବଲମ୍ବନ କରି ପରୋକ୍ଷରେ ତୁମ୍ଭମାନଙ୍କର ସ୍ତୋତ୍ରକୁ ଅଳଂକୃତ କରିବ । ଉତ୍ତମଶ୍ଳୋକ ଭଗବାନଙ୍କର ଗୁଣହିଁ କୀର୍ତ୍ତନୀୟ, ସତ୍ ସଭ୍ୟମାନେ ମୋପରି ଅପ୍ରସିଦ୍ଧ ଗୁଣବାନଙ୍କୁ କଦାପି ସ୍ତବ କରନ୍ତି ନାହିଁ । ୨୩ ।

ଯେଉଁ ବ୍ୟକ୍ତି ନିଜର ମହତ୍ତ୍ୱ ପ୍ରକାଶକରିବାକୁ ସମର୍ଥ ହେବ ସେ ନିଜର ଗୁଣ ସ୍ତାବକଙ୍କ ଦ୍ୱାରା ପ୍ରକାଶ କରାଇ ମିଥ୍ୟା ପ୍ରଶଂସା କରାଇବ ନାହିଁ, "ଏ ବ୍ୟକ୍ତି ଶାସ୍ତ୍ର ଅଭ୍ୟାସ କଲେ ଏହାର ଖୁବ ଖ୍ୟାତି ହେବ ଇତ୍ୟାଦି ବାକ୍ୟ ଦ୍ୱାରା ଉପହସିତ ହେଲେ ମଧ ସେହି ମନ୍ଦବୁଦ୍ଧି ବ୍ୟକ୍ତି ଏହି ଉପହାସ ସହଜରେ ବୁଝିପାରେ ନାହିଁ" ଅତ୍ୟନ୍ତ ଉଦାର ଉତ୍ ବ୍ୟକ୍ତିମାନେ କ୍ଷମତାଶାଳୀ ଏବଂ ଖ୍ୟାତଯୁକ୍ତ ହେଲେ ମଧ ନିଜର ପ୍ରଶଂସାବାକ୍ୟକୁ ନିନ୍ଦିତ ପୁରୁଷକାର ତୁଲ୍ୟ ଅତି ଲଜ୍ଜିତ ମନରେ ନିନ୍ଦା କରିଥାନ୍ତି । ୨୪,୨୫ ।

ହେ ସୂତ ! ମୁଁ ଅଦ୍ୟାପି କୌଣସି ଶ୍ରେଷ୍ଠକର୍ମ ଦ୍ୱାରା ପ୍ରସିଦ୍ଧି ଲଭ ନାହିଁ, ସୁତରାଂ ଅଜ୍ଞବ୍ୟକ୍ତି ତୁଲ୍ୟ କପରି ନିଜର ସ୍ତୁତି କରାଇବି । ୨୬ ।

---

**ଶ୍ରୀ ପୃଥୁ ଉବାଚ—**
**ଅହେ ମାଗଧେ ସୂତେ ଶୁଣ**
**ତୁମ୍ଭା ଭବିଷ୍ୟ ସ୍ତୁତି ଭଣ**
**ସ୍ୱଭାବୁ ଧର୍ମ୍ମ ସେ କାରଣ**
**ଏବେ କହିବା ସୁଖେ ଶୁଣ**

ମୋର କର୍ତ୍ତବ୍ୟ କର୍ମ୍ମ ଯେତେ
ତୁମ୍ଭେ କହିବ ଭବିଷ୍ୟତେ
ସେ କଥା ସନମତ ମୋର
ଏବେ ବିଷ୍ଣୁଙ୍କୁ ସ୍ତବକର । ୨୨-୨୬
ଏମନ୍ତ ପୃଥୁର ବଚନ
ଶୁଣି ସନ୍ତୋଷ ପ୍ରଜାଜନ

କହଇ ବିପ୍ରଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ
ଚତୁର୍ଥସ୍କନ୍ଧେ ଶ୍ରେଷ୍ଠ ବାଣୀ
ଶୁଣି ସଂସାରୁ ତର ପ୍ରାଣୀ

## ଷୋ ଡ଼ ଶ ଅ ଧ୍ୟା ୟ ।

ଷୋଡ଼ଶେ ସର୍ବଲୋକେଶୈଃ ସତ୍କୃତଂ ଭର୍ଯ୍ୟସ୍ତୁ ସ୍ତୁତମ୍ ।
ମୁନିପ୍ରଯୁକ୍ତାଃ ସୂତାଦ୍ୟାଃ ସ୍ତୁବନ୍ତ୍ୟେତ ବର୍ଣ୍ଣ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ଇତି ବ୍ରୁବାଣଂ ନୃପତିଂ ଗାୟକା ମୁନିଚୋଦିତାଃ ।
ତୁଷ୍ଟୁବୁସ୍ତୁଷ୍ଟମନସସ୍ତଦ୍‌ବାଗମୃତସେବୟା । ୧ ।
ନାଲଂ ବୟଂତେ ମହିମାନୁବର୍ଣ୍ଣନେ ଯୋ ଦେବବର୍ଯ୍ୟୋଽବତତାର ମାୟୟା ।
ବେଣୋଽଙ୍ଗଜାତସ୍ୟ ଚ ପୌରୁଷାଣି ତେ ବାଚସ୍ପତୀନାମପି ବଭ୍ରମୁର୍ଧିୟଃ । ୨ ।

---

## ପୃଥୁ ସ୍ତବ ।

ଷୋଡ଼ଶ ଅଧ୍ୟାୟରେ ଲୋକପାଳମାନଙ୍କ ଦ୍ୱାରା ଭର୍ଯ୍ୟାସହିତ ପୃଥୁ ପୂଜିତ ହେବା ଏବଂ ମୁନିମାନଙ୍କ ଦ୍ୱାରା ପ୍ରେରିତ ହୋଇ ଭାଟମାନେ ପୃଥୁଙ୍କର ସ୍ତୁତି ଗାନକରିବା ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀମୈତ୍ରେୟ କହିଲେ :—

ରାଜା ପୃଥୁ ଏହିପରି କହିଲେ ମଧ୍ୟ ସୂତ ପ୍ରଭୃତି ଗାୟକଗଣ ତାହାଙ୍କର ବଚନାମୃତ ପାନରେ ପରିତୃପ୍ତ ହୋଇ ମୁନିଗଣଙ୍କ ପ୍ରେରଣାରେ ତାହାଙ୍କର ସ୍ତବ କରିବାକୁ ଆରମ୍ଭ କଲେ । ୧ ।

ହେ ମହାରାଜ ! ଆପଣ ସର୍ବଦେବାଧି ଦେବ ଭଗବାନ୍ ବିଷ୍ଣୁଙ୍କ ଶକ୍ତ୍ୟାଂଶ କରି ଏହି ଅବତାର ଗ୍ରହଣ କରି ଅଛନ୍ତି । ଆପଣଙ୍କ ମହିମା ବର୍ଣ୍ଣନ କରିବାକୁ ଆମ୍ଭେମାନେ ଅସମର୍ଥ, କାରଣ ଆପଣ ବେଣଙ୍କ ଶରୀରରୁ ଉତ୍ପନ୍ନ ହେଲେ ମଧ୍ୟ ଆପଣଙ୍କର ପୌରୁଷାଦିରେ ବ୍ରହ୍ମାଦିଙ୍କର ମଧ୍ୟ ବୁଦ୍ଧି ଭ୍ରମଗ୍ରସ୍ତ ଥାଏ । ୨ ।

---

ଷୋଡ଼ଶେ ପୃଥୁସ୍ତୁତି ବାଣୀ । ମୁନିଙ୍କ ବୋଲେ ଭାଟେ ଭଣି ॥

ଶ୍ରୀମୈତ୍ରେୟ ଉବାଚ ।

ଶୁଣ ବିଦୁର ସାବଧାନେ
ସୂତ ମାଗଧ ତୋଷମନେ
ମୁନିଙ୍କ ମତେ ସୁଧାବାଣୀ ;
ପୃଥୁ ବଦନ ସ୍ତୁତି ଭଣି । ୧ ।
ଲୋକନାଥ ତୋହର ମହିମା
କେ କହିପାରେ ଗୁଣ ସୀମା
ତାହା କେ ସମର୍ଥ ବର୍ଣ୍ଣନେ
ଯେଗଣେ ବ୍ରହ୍ମାଦି ବୁଦ୍ଧି ଭ୍ରମେ
ତୁ ଦେବ ନିଜମାୟା ବଳେ
ଶରୀର ବହୁ ଏ ଶରୀରେ

ଅଥାପ୍ୟୁଦାରଶ୍ରବସଃ ପୃଥୋର୍ହରେଃ କଳାବତାରସ୍ୟ କଥାମୃତାଦୃତାଃ ।
ଯଥୋପଦେଶଂ ମୁନିଭିଃ ପ୍ରଚୋଦିତାଃ ଶ୍ଲାଘ୍ୟାନି କର୍ମାଣି ବୟଂ ବିତନ୍ମହି । ୩ ।
ଏଷ ଧର୍ମଭୃତାଂ ଶ୍ରେଷ୍ଠୋ ଲୋକଂ ଧର୍ମେଽନୁବର୍ତ୍ତୟନ୍ ।
ଗୋପ୍ତା ଚ ଧର୍ମସେତୂନାଂ ଶାସ୍ତା ତତ୍ ପରିପନ୍ଥିନାମ୍ । ୪ ।
ଏଷ ବୈ ଲୋକପାଲାନାଂ ବିଭର୍ତ୍ତ୍ୟେକସ୍ତନୌ ତନୂଃ ।
କାଳେ କାଳେ ଯଥାଭାଗଂ ଲୋକୟୋରୁଭୟୋର୍ହିତମ୍ । ୫ ।
ବସୁ କାଳ ଉପାଦତ୍ତେ କାଳେ ଚାୟଂ ବିମୁଞ୍ଚତି ।
ସମଃ ସର୍ବେଷୁ ଭୂତେଷୁ ପ୍ରତପନ୍ ସୂର୍ଯ୍ୟବଦ୍ବିଭୁଃ । ୬ ।
କ୍ଷମତ୍ୟକ୍ରମଂ ବୈଣ୍ୟ ଉପର୍ଯ୍ୟାକ୍ରମତାମପି ।
ଭୂତାନାଂ କରୁଣଃ ଶଶ୍ୱଦାର୍ତ୍ତାନାଂ କ୍ଷିତିବୃତ୍ତିମାନ୍ । ୭ ।

---

ଆପଣଙ୍କର ଗୁଣକୀର୍ତ୍ତନକରିବାକୁ ଆମ୍ଭେମାନେ ଅସମର୍ଥ ଥିଲେ ମଧ୍ୟ ଶ୍ରୀହରିଙ୍କ ଅବତାର ଆପଣଙ୍କର କଥାମୃତରେ ଆମ୍ଭମାନଙ୍କର ଅତ୍ୟନ୍ତ ଆଦର ଜନ୍ମିଅଛି, ଏହି ଋଷିମାନେ ଯୋଗବଳରେ ଆମ୍ଭମାନଙ୍କ ହୃଦୟରେ ଯେପରି ପ୍ରକାଶ କରିଅଛନ୍ତି, ସେମାନଙ୍କ ନିୟୋଗଅନୁସାରେ, ଆମ୍ଭେମାନେ ସେହିପରି ଭାବରେ ମହା ଯଶସ୍ୱୀ ଆପଣଙ୍କର ଶ୍ଳାଘନୀୟ କର୍ମମାନ ସେହିପରି ପ୍ରକାଶ କରିବୁ । ୩ ।

ଏହି ପୃଥୁରାଜ ଧର୍ମିଷ୍ଠ ମାନଙ୍କର ଅଗ୍ରଗଣ୍ୟ ହୋଇ ଅନ୍ୟାନ୍ୟ ଲୋକଗଣଙ୍କୁ ଧର୍ମାନୁଗାମୀ କରିବେ ଓ ବର୍ଣ୍ଣାଶ୍ରମ ଧର୍ମର ମର୍ଯ୍ୟାଦା ରକ୍ଷକ ହୋଇ ତାହାର ବିରୁଦ୍ଧାଚରଣକୁ ଶାସନ କରିବେ । ୪ ।

ଏକାକୀ ସ୍ୱଶରୀରରେ ଯଥାଯୋଗ୍ୟଭାବରେ ଇହ ଏବଂ ପରଲୋକ ହିତାର୍ଥେ ସାମୟିକ ଇନ୍ଦ୍ରାଦି ଲୋକପାଳକ ମାନଙ୍କ ମୂର୍ତ୍ତି ଧାରଣ କରିଥାନ୍ତି । ୫ ।

ଏ ସର୍ବପ୍ରାଣୀଙ୍କ ପ୍ରତି ସମଦର୍ଶୀ ହୋଇ ସୂର୍ଯ୍ୟ ସଦୃଶ ସ୍ୱପ୍ରତାପ ପ୍ରକଟିତ କରି ଯଥା ସମୟରେ ଧନ ଆଦାନ ପ୍ରଦାନ କରିଥାନ୍ତି । ୬ ।

ଏହି ବେଣ ନନ୍ଦନ ପୃଥୁ ସର୍ବଂ ସହା ପୃଥିବୀ ତୁଲ୍ୟ ଆର୍ତ୍ତମାନଙ୍କ ପ୍ରତି କରୁଣା ପରବଶ ହେବେ ଏବଂ କେହି ତାଙ୍କୁ ଆକ୍ରମଣ କଲେ ମଧ୍ୟ; ତାହାର ଆକ୍ରମଣ ସହ୍ୟ କରିବେ । ୭ ।

---

ବେଣ ଶରୀରୁଁ ତୁହି ଜାତ
ଏ କଥା ଜଗତେ ବିଖ୍ୟାତ
ତଥାପି ତୋର ଗୁଣ ଯେତେ
ଭାବେ କହିବୁଁ ତୋ ଅଗ୍ରତେ ।୨,୩
ତୁ ଧର୍ମ୍ମିଷ୍ଠଜନଙ୍କର ସାର
ଯେ ଧର୍ମ୍ମ ଲୋକର ବେଭାର
ଅଧର୍ମ୍ମ ନାଶି ଧର୍ମ୍ମ ପାଳୁ
ତୁ ନାଥ ପରମ ଦୟାଳୁ । ୪ ।
ଶରୀର ବହୁ କାଳେ କାଳେ
ସ୍ୱଧର୍ମ୍ମ ରଖୁ ମହୀତଳେ । ୫ ।
ସକଳ ଭୂତେ ସମେ ବସୁ
ସବିତାରୂପେ ତୁ ପ୍ରକାଶୁ
ହିମ ଗ୍ରୀଷମ ଅଷ୍ଟ ମାସ
ସବିତା ଯେଉଁକେ ଜଳ ରସ
ସକଳ ସ୍ଥାନୁଁ ସେ ହରଇ
ବରଷା କାଳେ ବରଷଇ
ସେ ରୂପେ ତୁ କର ଗ୍ରହଣ
କରି ଦୁର୍ଭିକ୍ଷେ ଦେବୁ ଦାନ ।୬।
ପୃଥିବୀ ସମ ସର୍ବ ସହୁ
ବିକାର ଅବକାର ନୋହୁ
ପ୍ରାଣିଙ୍କ ମଧ୍ୟେ ତୁ କରୁଣ
ଆରତଦୁଃଖ ନିବାରଣ

ଦେବୋଽବର୍ଷତ୍ୟସୌ ଦେବୋ ନରଦେବବପୁର୍ହରିଃ ।
କୃଚ୍ଛ୍ରପ୍ରାଣାଃ ପ୍ରଜା ହ୍ୟେଷ ରକ୍ଷିଷ୍ୟତ୍ୟଞ୍ଜସେନ୍ଦ୍ରବତ୍ । ୮ ।
ଆପ୍ୟାୟୟତ୍ୟସୌ ଲୋକଂ ବଦନାମୃତମୂର୍ତ୍ତିନା ।
ସାନୁରାଗାବଲୋକେନ ବିଶଦସ୍ମିତଚାରୁଣା । ୯ ।
ଅବ୍ୟକ୍ତବର୍ତ୍ମୈଷ ନିଗୂଢ଼କାର୍ଯ୍ୟୋ ଗମ୍ଭୀରବେଧା ଉପଗୁପ୍ତବିତ୍ତଃ ।
ଅନନ୍ତମାହାତ୍ମ୍ୟଗୁଣୈକଧାମା ପୃଥୁଃ ପ୍ରଚେତା ଇବ ସଂବୃତାତ୍ମା । ୧୦ ।
ଦୁରାସଦୋ ଦୁର୍ବିଷହ ଆସନ୍ନୋଽପି ବିଦୂରବତ୍ ।
ନୈବାଭିଭବିତୁଂ ଶକ୍ୟୋ ବେଣାରଣ୍ୟୁତ୍ଥିତୋଽନଳଃ । ୧୧ ।
ଅନ୍ତର୍ବହିଶ୍ଚ ଭୂତାନାଂ ପଶ୍ୟନ୍ କର୍ମାଣି ଚାରଣୈଃ ।
ଉଦାସୀନ ଇବାଧ୍ୟକ୍ଷୋ ବାୟୁରାତ୍ମେବ ଦେହିନାମ୍ । ୧୨ ।

---

ଇନ୍ଦ୍ର ଜଳ ବୃଷ୍ଟି ନ କଲେ ପ୍ରଜାଙ୍କର କଷ୍ଟହୁଏ, ମାତ୍ର ଏହି ଶ୍ରୀହରି ଅଂଶଧାରୀ ରାଜପୁରୁଷ ଇନ୍ଦ୍ରତୁଲ୍ୟ ବୃଷ୍ଟିକରି ପ୍ରଜାମାନଙ୍କୁ ରକ୍ଷା କରିବେ । ୮ ।

ଏହି ମହାରାଜ ଅନୁରାଗ ପୂର୍ଣ୍ଣ ଦୃଷ୍ଟିଦ୍ୱାରା ଏବଂ ମଧୁରହାସ୍ୟ ପୂର୍ଣ୍ଣ କମନୀୟ ଚନ୍ଦ୍ର ବଦନର ଶୋଭା ଦ୍ୱାରା ପ୍ରଜାମାନଙ୍କର ତୃପ୍ତି ବିଧାନ କରିବେ । ୯ ।

ଏହି ପୃଥୁ ସଂଯତ ମୂର୍ତ୍ତି ବରୁଣ ତୁଲ୍ୟ, କାରଣ ଏହାଙ୍କର ପ୍ରବେଶ ଓ ନିର୍ଗମ ମାର୍ଗ ସାଧାରଣଙ୍କୁ ଅଗୋଚର, ଫଳ ଫଳିବା ପୂର୍ବରୁ ଏହାଙ୍କର କାର୍ଯ୍ୟ କେହି ଜାଣି ପାରିବେ ନାହିଁ । ଏହାଙ୍କର କାର୍ଯ୍ୟର ଫଳ ପ୍ରକାଶିତ ହେବା ପୂର୍ବରୁ, ଏ କେଉଁ ଉଦ୍ଦେଶ୍ୟରେ କି କାର୍ଯ୍ୟ କରୁଅଛନ୍ତି, ତାହା କେହି ଜାଣି ପାରିବେ ନାହିଁ, ଏହାଙ୍କର ଧନ ଗୁପ୍ତଭାବରେ ରକ୍ଷିତ ହେବ, ଏ ଅନନ୍ତ ମାହାତ୍ମ୍ୟ ଓ ଅଶେଷ ଗୁଣର ଆଧାର । ୧୦ ।

ଏ ଅରଣି ସ୍ୱରୂପ ବେଣଙ୍କଠାରୁ ଅଗ୍ନିରୂପେ ଜାତ, ଏ ଶତ୍ରୁମାନଙ୍କର ସ୍ପର୍ଶର ସୁଦ୍ଧା ଅଯୋଗ୍ୟ, ଏ ଶତ୍ରୁମାନଙ୍କ ନିକଟରେ ଅବସ୍ଥାନ କଲେ ମଧ୍ୟ କେହି ଏହାଙ୍କୁ ପରାଜିତ କରିବାକୁ ସମର୍ଥ ହେବେ ନାହିଁ ।୧୧

ଏ ବାୟୁସଦୃଶ, ଯେହେତୁ ଗୁପ୍ତଚରମାନଙ୍କ ଦ୍ୱାରା ପ୍ରାଣୀମାନଙ୍କର ଆନ୍ତରିକ ଓ ବାହ୍ୟିକ କର୍ମମାନ ଅବଲୋକନ କରି ଦେହଧାରି ମାନଙ୍କର ଅଭ୍ୟନ୍ତରସ୍ଥ ଆତ୍ମଭୂତ ବାୟୁ ବା ଅନ୍ତର୍ଯ୍ୟାମୀ ତୁଲ୍ୟ ସ୍ୱୀୟ ସ୍ଥିତରେ ଉଦାସୀନ ହୋଇ ସାକ୍ଷୀରୂପେ ଅବସ୍ଥିତ । ୧୨ ।

---

| | | |
|---|---|---|
| ଇନ୍ଦ୍ର ଯେସନେ ଛାଡ଼େ ବାରି | ତୋହର କର୍ମ ବ୍ୟକ୍ତ ନୋହେ | ତୁ ଦୁରାସଦ ଦୁର୍ବିସହ |
| ଜନ ନିମନ୍ତେ ଶସ୍ୟକାରୀ ।୭,୮। | ଯାହାର ମାୟା ଜନ ମୋହେ | ନିକଟେ ଥାଇ ଦୂର ପ୍ରାୟ ।୧୧ |
| ତୋହର ବଚନ ଅମୃତ | ଏତେଯେ ଗଭୀର ମାୟା ଜାଳ | ଜନ୍ତୁଙ୍କ ଅନ୍ତର ବାହାର |
| ଶୁଣି ନିସ୍ତରିବେ ଜଗତ | ତୋହର ଚେଷ୍ଟା ଅନ୍ତରାଳ | ଜାଣିଲେ ହେଲେ ସେଷି ସ୍ଥିର |
| ତୋର ବଦନ ସ୍ମିତ-ହାସ | ଅନନ୍ତ ମହିମା ତୋହର | ଅଧ୍ୟକ୍ଷ ହୋଇ ଉଦାସୀନ |
| ଦେଖନ୍ତେ ହେବ ଦୁଃଖନାଶ ।୯ | ଅଶେଷ ଗୁଣର ସାଗର ।୧୦। | ଶରୀରେ ଯେସନେ ପବନ ।୧୨। |

ନାଦଣ୍ଡ୍ୟଂ ଦଣ୍ଡୟତ୍ୟେଷ ସୁତମାତ୍ମଦ୍ୱିଷାମପି ।
ଦଣ୍ଡୟତ୍ୟାତ୍ମଜମପି ଦଣ୍ଡ୍ୟଂ ଧର୍ମପଥେ ସ୍ଥିତଃ । ୧୩ ।
ଅସ୍ୟାପ୍ରତିହତଂ ଚକ୍ରଂ ପୃଥୋରାମାନସାଚଳାତ୍ ।
ବର୍ତ୍ତତେ ଭଗବାନର୍କୋ ଯାବତ୍ ତପତି ଗୋଗଣୈଃ । ୧୪ ।
ରଞ୍ଜୟିଷ୍ୟତି ଯଲ୍ଲୋକମୟମାତ୍ମବଚେଷ୍ଟିତୈଃ ।
ଅଥାମୁମାହୂ ରାଜାନଂ ମନୋରଞ୍ଜନକୈଃ ପ୍ରଜାଃ । ୧୫ ।
ଦୃଢ଼ବ୍ରତଃ ସତ୍ୟସନ୍ଧୋ ବ୍ରହ୍ମଣ୍ୟୋ ବୃଦ୍ଧସେବକଃ ।
ଶରଣ୍ୟଃ ସର୍ବଭୂତାନାମାନଦୋ ଦୀନ ବତ୍ସଳଃ । ୧୬ ।
ମାତୃଭକ୍ତିଃ ପରସ୍ତ୍ରୀଷୁ ପତ୍ନ୍ୟାମର୍ଦ୍ଧ ଇବାତ୍ମନଃ ।
ପ୍ରଜାସୁ ପିତୃବତ୍‌ସ୍ନିଗ୍ଧଃ କିଙ୍କରୋ ବ୍ରହ୍ମବାଦିନାମ୍ । ୧୭ ।

---

ଏ ଧର୍ମରାଜ ଯମଙ୍କ ତୁଲ୍ୟ, କାରଣ ଶତ୍ରୁ ସନ୍ତାନ ଦଣ୍ଡାର୍ହ ନ ହେଲେ ମଧ୍ୟ, ଏ ତାହାପ୍ରତି ଦଣ୍ଡ ବିଧାନ କରିବେ ନାହିଁ, ସେହିପରି ନିଜପୁତ୍ର ଦଣ୍ଡଯୋଗ୍ୟ ହେଲେ ଏ ତାହାପ୍ରତି ଦଣ୍ଡ ବିଧାନ କରିବେ ।୧୩

ଏହାଙ୍କର ରଥ କୌଣସିଠାରେ ପ୍ରତିହତ ହେବ ନାହିଁ, କାରଣ ଭଗବାନ ସୂର୍ଯ୍ୟଙ୍କ କିରଣ ମାନସାଚଳପର୍ଯ୍ୟନ୍ତ ଯେତେଦୂର ଉତ୍ତାପମାନକରେ ସେତେଦୂର ପର୍ଯ୍ୟନ୍ତ ତାଙ୍କର ରଥ ଗତି କରିବ ।୧୪

ପୃଥୁ ନିଜର କର୍ମଦ୍ୱାରା ପ୍ରଜାମାନଙ୍କର ମନୋରଞ୍ଜନ କରିବେ, ତେଣୁ ପ୍ରଜାମାନେ ଏହାଙ୍କୁ ରାଜା ବୋଲି ସମ୍ବୋଧନ କରିବେ । ୧୫ ।

ଏ ଦୃଢ଼ବ୍ରତ, ସତ୍ୟ ପ୍ରତିଜ୍ଞ, ବ୍ରାହ୍ମଣମାନଙ୍କ ପ୍ରତି ହିତାକାଙ୍କ୍ଷୀ, ବୃଦ୍ଧ ସେବୀ, ନିଖିଳ ପ୍ରାଣୀ ରକ୍ଷକ ସମସ୍ତଙ୍କର ମାନଦାତା ଏବଂ ଦୀନ ପ୍ରତି ସ୍ନେହ ପ୍ରବଣ । ୧୬ ।

ଏ ପରସ୍ତ୍ରୀକୁ ମାତୃତୁଲ୍ୟ ଭକ୍ତି କରିବେ, ନିଜସ୍ତ୍ରୀଠାରେ ଅର୍ଦ୍ଧାଙ୍ଗ ତୁଲ୍ୟ ପ୍ରୀତି କରିବେ, ପ୍ରଜାଙ୍କ ପ୍ରତି ପିତୃତୁଲ୍ୟ ସ୍ନେହ କରିବେ ଓ ବ୍ରହ୍ମବାଦୀ ବ୍ରାହ୍ମଣମାନଙ୍କ ନିକଟରେ କିଙ୍କର ତୁଲ୍ୟ ବଶୀଭୂତ ହେବେ ।୧୭

---

ଅଦୋଷୀଜନ ତୁ ନ ଦଣ୍ଡୁ
ପୁତ୍ର ହେଲେହେଁ ଦୋଷୀ ଦଣ୍ଡୁ ।୧୩
ଅପ୍ରତିହତ ଚକ୍ର ତୋର
ତେଜେ ଯେସନେ ଦିବାକର ।୧୪
ତୋହର ଆତ୍ମା ସଚେଷ୍ଟିତ
ଲୋକରଞ୍ଜନ ଏ ଜଗତ

ରାଜା ଯେ ପ୍ରଜା ମନ ରଞ୍ଜି
ରାଜ୍ୟ ସମ୍ପଦ ସୁଖେ ଭୁଞ୍ଜି ।୧୫।
ସତ୍ୟ ସନ୍ଧ ତୁ ଦୃଢ଼ବ୍ରତ
ବୃଦ୍ଧ ସେବକ ବିପ୍ରଭକ୍ତ
ଶରଣ ସର୍ବ ପ୍ରାଣୀଙ୍କର
ଦୀନ ବତ୍ସଳ ମାନକର ।୧୬।

ପର ରମଣୀ ମାତୃ ପ୍ରାୟ
ନିଜ ରମଣୀ ଅର୍ଦ୍ଧକାୟ
ପ୍ରଜାଙ୍କୁ ପୁତ୍ର ପ୍ରାୟ ରଚେ
ବିପ୍ରଙ୍କୁ ସେବା ଯାର ନିତ୍ୟେ ।୧୭

ଦେହଭାଜାମାତ୍ମବତ୍ ପ୍ରେଷ୍ଠଃ ସୁହୃଦାଂନନ୍ଦିବର୍ଦ୍ଧନଃ ।
ମୁକ୍ତସଙ୍ଗପ୍ରସଙ୍ଗୋଽୟଂ ଦଣ୍ଡପାଣିରସାଧୁଷୁ । ୧୮ ।
ଅୟନ୍ତୁ ସାକ୍ଷାଦ୍‌ଭଗବାଂସ୍ତ୍ର୍ୟଧୀଶଃ କୂଟସ୍ଥ ଆତ୍ମାକଲୟାବତୀର୍ଣ୍ଣଃ ।
ଯସ୍ମିନ୍ନବିଦ୍ୟାରଚିତଂନିରର୍ଥକଂ ପଶ୍ୟନ୍ତି ନାନାତ୍ୱମପି ପ୍ରତୀତମ୍ । ୧୯ ।
ଅୟଂ ଭୁବୋ ମଣ୍ଡଳମୋଦୟାଦ୍ରେର୍ଗୋପ୍ତୈକବୀରୋ ନରଦେବନାଥଃ ।
ଆସ୍ଥାୟ ଜୈତ୍ରଂ ରଥମାତ୍ତଚାପଃ ପର୍ଯ୍ୟସ୍ୟତେ ଦକ୍ଷିଣତୋ ଯଥାର୍କଃ ।୨୦।
ଅସ୍ମୈ ନୃପାଲାଃ କିଲ ତତ୍ର ତତ୍ର ବଳିଂ ହରିଷ୍ୟନ୍ତି ସଲୋକପାଲାଃ ।
ମଂସ୍ୟନ୍ତ ଏଷାଂସ୍ତ୍ରିୟ ଆଦିରାଜଂ ଚକ୍ରାୟୁଧଂ ତଦ୍‌ଯଶ ଉଦ୍ଧରନ୍ତ୍ୟଃ । ୨୧ ।

---

ଏ ଦେହଧାରୀ ଯେ କୌଣସି ପ୍ରାଣୀ ଆତ୍ମତୁଲ୍ୟ ପ୍ରିୟ ଏବଂ ସୁହୃଦ୍‌ଜନମାନଙ୍କର ଆନନ୍ଦ ବର୍ଦ୍ଧନକାରୀ ମୁକ୍ତସଙ୍ଗ ସାଧୁମାନଙ୍କ ସହିତ ଏ ପ୍ରକୃଷ୍ଟରୂପେ ସଙ୍ଗକାରୀ, ପରନ୍ତୁ ଯେଉଁମାନେ ଅସାଧୁ ଏ ସେମାନଙ୍କ ପ୍ରତି ଦଣ୍ଡଧାରୀ ଯମତୁଲ୍ୟ । ୧୮ ।

ଏ ଗୁଣତ୍ରୟର ଅଧୀଶ୍ୱର, ନିର୍ବିକାର ପରମାତ୍ମାରୂପୀ ସାକ୍ଷାତ୍ ଭଗବାନଙ୍କର ଅଂଶରେ ଏ ଅବତୀର୍ଣ୍ଣ ଅବିଦ୍ୟାହେତୁରୁ ଏହାଙ୍କଠାରେ ବିଭିନ୍ନତ୍ୱ ପ୍ରକଟିତ ହେଲେ ମଧ୍ୟ, ତାହା ନିରର୍ଥକ । ୧୯ ।

ଏହି ଅଦ୍ୱିତୀୟ ପରାକ୍ରମଶାଳୀ ନରଦେବତା ଉଦୟାଦ୍ରି ପର୍ଯ୍ୟନ୍ତ ଅଖଣ୍ଡ ଧରାମଣ୍ଡଳ ରକ୍ଷାକରିବେ, ଏହି ଉଦ୍ଦେଶ୍ୟରେ ଜୟଯୁକ୍ତ ରଥାରୋହଣ କରି ଶରାସନ ଗ୍ରହଣକରି ସୂର୍ଯ୍ୟଙ୍କତୁଲ୍ୟ ସର୍ବସ୍ଥାନ ପ୍ରଦକ୍ଷିଣ କରିବେ । ୨୦ ।

ଯେତେବେଳେ ଏ ଏହିପରି ଭୂମଣ୍ଡଳ ପ୍ରଦକ୍ଷିଣ କରିବେ, ସେତେବେଳେ ନୃପତିନରପତିମାନେ ଲୋକପାଳଗଣଙ୍କ ସହିତ ଉପସ୍ଥିତ ହୋଇ ଏହାଙ୍କୁ ଉପହାର ପ୍ରଦାନ କରିବେ । ଏବଂ ଏହି ନରପତିମାନଙ୍କର ମହିଳାମାନେ ଚକ୍ରଧର ତୁଲ୍ୟ ଏହି ରାଜାଙ୍କର ଯଶୋଗାନ କରୁ କରୁ "ଆଦିରାଜ" ବୋଲି ଏହାଙ୍କୁ ବହୁମାନ୍ୟ କରିବେ । ୨୧ ।

---

ପ୍ରାଣୀ ବିଷୟେ ଆତ୍ମା ପ୍ରାୟେ
ଦୟା ବସଇ ଯାର ଦେହେ
ସୁହୃଦ ଆନନ୍ଦ ବର୍ଦ୍ଧନ
ବିମୁକ୍ତ ସଙ୍ଗ ସଙ୍ଗେ ଧ୍ୟାନ
ଅସାଧୁଗଣେ ଦଣ୍ଡଧର
ସ୍ୱଭାବେ ଶରଣ ସୋଦର ।୧୮।
ନିର୍ଗୁଣ ଭଗବାନ ତୁହି
କୂଟସ୍ଥ ଆତ୍ମା କଳା ବହି
ଯେତେ ଅବିଦ୍ୟା ବିରଚିତ
ନାନାତ୍ୱବରେ ସେ ପ୍ରତୀତ-
ହେଲେହେଁ ତୋହର ଶରୀରେ
ହିଂସଇ ବିଅର୍ଥ ବେଭାରେ
ତୋ ଅବତାର ଏ ଜଗତେ
ଜଗତ ନିସ୍ତାର ନିମନ୍ତେ ।୧୯।
ତୁ ନୃପନାଥ ଏକରଥୀ
ମହୀ ମଣ୍ଡଳେ ଯେତେ ଛନ୍ତି
ତାହାଙ୍କ ରକ୍ଷଣ ନିମିତ୍ତେ
ଉଦୟ ଗିରି ପରଯନ୍ତେ
ଭ୍ରମିବୁ ରଥେ ଧନୁ ଧରି
ବିଗ ସମୁଦ୍ର ବନ ଗିରି
ଦକ୍ଷିଣାବର୍ତ୍ତେ ସାବଧାନେ
ସୂର୍ଯ୍ୟେ ଆଦିତ୍ୟରଥେଯେସନେ।୨୦
ଯେ ଲୋକପାଳେ ରାଜାଗଣେ
ବଳି ହରିବେ ଯେଝାସ୍ଥାନେ
ଗାଇବେ ତୋର ଯଶ ଗୁଣ
ଖଟିବେ ତୋହର ଚରଣ ।୨୧।

ଅୟଂ ମହୀଂ ଗାଂ ଦୁଦୁହେଽଧିରାଜଃ ପ୍ରଜାପତେର୍ବୃତ୍ତିକରଃ ପ୍ରଜାନାମ୍ ।
ଯୋ ଲୀଲୟାଦ୍ରୀନ୍ ସ୍ୱଶରାସକୋଟ୍ୟା ଭିନ୍ଦନ୍ ସମାଂ ଗାମକରୋଦ୍ୟଥେନ୍ଦ୍ରଃ ।୨୨।
ବିସ୍ଫୂର୍ଜୟନ୍ନାଜଗବଂ ଧନୁଃ ସ୍ୱୟଂ ଯଦାଚରତ୍ କ୍ଷ୍ମାମବିଷହ୍ୟମାଜୌ ।
ତଦା ନିଲିଲ୍ୟୁର୍ଦିଶିଦିଶ୍ୟସନ୍ତୋ ଲାଙ୍ଗୁଲମୁଦ୍ୟମ୍ୟ ଯଥା ମୃଗେନ୍ଦ୍ରଃ । ୨୩ ।
ଏଷୋଽଶ୍ୱମେଧାନ୍ ଶତମାଜହାର ସରସ୍ୱତୀ ପ୍ରାଦୁରଭାବି ଯତ୍ର ।
ଅହାରଷୀଦ୍ୟସ୍ୟ ହୟଂ ପୁରନ୍ଦରଃ ଶତକ୍ରତୁଶ୍ଚରମେ ବର୍ତ୍ତମାନେ । ୨୪ ।
ଏଷ ସ୍ୱସଦ୍ମୋପବନେ ସମେତ୍ୟ ସନତ୍କୁମାରଂ ଭଗବନ୍ତମେକମ୍ ।
ଆରାଧ୍ୟ ଭକ୍ତ୍ୟା ଲଭତାମଲନ୍ତଜ୍ଜ୍ଞାନଂ ଯତୋ ବ୍ରହ୍ମପରଂ ବିଦନ୍ତି । ୨୫ ।

---

ଏ ରାଜାଧି ରାଜ ହୋଇ ପ୍ରଜାମାନଙ୍କର ପ୍ରଜାପତିତୁଲ୍ୟ ସେମାନଙ୍କ ବୃତ୍ତିବିଧାନ ନିମନ୍ତେ ଗୋରୂପା ପୃଥ୍ୱୀଙ୍କୁ ଦୋହନ କରିବେ ଏବଂ ଇନ୍ଦ୍ର ତୁଲ୍ୟ ଅବଲୀଳାକ୍ରମେ ଧନୁଷ୍କୋଟି ଦ୍ୱାରା ପର୍ବତମାନଙ୍କର ଅଗ୍ରଭାଗ ଭଗ୍ନକରି ଭୂମିସମୁଦାୟକୁ ପରସ୍ପର ସହିତ ସମାନ କରିଦେବେ । ୨୨ ।

ମୃଗେନ୍ଦ୍ର ଯେପରି ଲାଙ୍ଗୁଳ ଉଚ୍ଚକରି ବନରେ ବିଚରଣ କରେ ଏ ମଧ୍ୟ ସେହିପରି ଯେତେବେଳେ ମେଷ ଓ ଗୋଶୃଙ୍ଗ ନିର୍ମିତ ଶରାସନରେ ଟଙ୍କାର ଦେଇ ଯୁଦ୍ଧକ୍ଷେତ୍ରରେ ଭ୍ରମଣ କରିବେ, ସେତେବେଳେ ଦୁଷ୍ଟଗଣ ତାହାଙ୍କ ବିକ୍ରମ ସହ୍ୟ କରି ନ ପାରି ନାନାଦିଗରେ ଲୁକ୍କାୟିତ ହେବେ । ୨୩ ।

ଯେଉଁସ୍ଥାନରେ ସରସ୍ୱତୀନଦୀ ପ୍ରାଦୁର୍ଭୂତା, ମହାରାଜ ପୃଥୁ ସେହିଠାରେ ଶତଅଶ୍ୱମେଧ ଯଜ୍ଞ ସମ୍ପାଦନ କରିବେ, କିନ୍ତୁ ଶେଷ ଯଜ୍ଞ ସମାପ୍ତିହେବା ପୂର୍ବରୁ ଶତଯଜ୍ଞକାରୀ ଇନ୍ଦ୍ରଦେବ ଏହାଙ୍କର ଯଜ୍ଞୀୟ ଅଶ୍ୱ ଅପହରଣ କରିବେ । ୨୪ ।

ତଦନନ୍ତର ମହାରାଜପୃଥୁ ନିଜର ଗୃହସମୀପସ୍ଥ ଉପବନରେ ଅନୁପମଙ୍କନଯୁକ୍ତ ଭଗବାନ୍ ସନତ୍କୁମାରଙ୍କ ସଙ୍ଗଲାଭକରି ଭକ୍ତି ସହକାରେ ତାଙ୍କର ଆରାଧନା କରିବେ ଏବଂ ଯେଉଁ ଜ୍ଞାନଦ୍ୱାରା ପରମ୍ବ୍ରହ୍ମଙ୍କୁ ଜାଣିପାରୁଥାଏ, ସେହି ଶୁଦ୍ଧ ନିର୍ମଳ ଜ୍ଞାନ ଲାଭ କରିବେ । ୨୫ ।

---

ଇନ୍ଦ୍ରର ପ୍ରାୟ ଶରେ ଗିରି
ଛେଦ ପୃଥିବୀ ସମ କରି
ମେଦିନୀ ପ୍ରକୃ ପୟ ଦୁହିଁ
ପ୍ରାଣୀଙ୍କ ପ୍ରାଣ ବୃତ୍ତି ଦେଇ
ଖିଳ ଅଖିଳ ବସୁନ୍ଧରା
ପାଳିବ ଏ ନୃପକେଶରୀ । ୨୨ ।
ମୃଗେନ୍ଦ୍ର ଯେସନ୍ତେ ଲାଙ୍ଗୁଳ ତୋଳି
ବିକ୍ରମି ଚରେ ମହାବଳୀ
ତେସନ୍ତେ ଭୃ ଧନୁର ଟଙ୍କାରେ
ବିକ୍ରମି ବସନ୍ତେ ରଥରେ
ଦେଖି ସକଳ ଶତ୍ରୁଗଣେ
ଭୟେ ପଶିବେ ଘୋରବନେ
ମୃଗ ଯେସନେକ ସିଂହ ଦେଖି
ପଳାନ୍ତି ବିପିନ ଉପେକ୍ଷି ।୨୩।
କରିବୁ ଅଶ୍ୱମେଧ ଶତ
ହରିବେ ଯେସନ୍ତେ ସୁରନାଥ ।୨୪
ସ୍ୱବେଗ ଅନ୍ତେ ଗଙ୍ଗାତଳେ
ସନତ-କୁମାରଙ୍କ ମେଳେ
ଭକତ କରି ବିଷ୍ଣୁପାଦେ
ଅନ୍ତେ ପଶିବୁ ନିଜପଦେ । ୨୫।

ତଂ ତଂ ଗିରସ୍ତାସ୍ତା ଇତ ବଶ୍ରୁ ତବକ୍ରମଃ ।
ଶ୍ରୋଷ୍ୟତ୍ୟାତ୍ମାଶ୍ରିତାଗାଥାଃ ପୃଥୁଃ ପୃଥୁପରାକ୍ରମଃ । ୨୭ ।
ଦିଶୋ ବିଜିତ୍ୟାପ୍ରତିରୁଦ୍ଧଚକ୍ରଃ ସ୍ୱତେଜସୋତ୍ପାଟିତଲୋକଶଲ୍ୟଃ ।
ସୁରାସୁରେନ୍ଦ୍ରୈରୁପଗୀୟମାନମହାନୁଭାବୋ ଭବିତା ପତିର୍ଭୁବଃ । ୨୭ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ପୃଥୁ ସ୍ତବୋ ନାମ ଷୋଡ଼ଶୋଽଧ୍ୟାୟ । ୧୬ ।

---

ଏ ଏହିପରି ପୃଥୁ ମହତ୍ ପରାକ୍ରମଶାଳୀ, ଏହାଙ୍କର ବିକ୍ରମ ସର୍ବତ୍ର ବିଖ୍ୟାତ, ନିଜ ବିଷୟରେ ଏହିପରି ନାନାବିଧ ସ୍ତବ ବାକ୍ୟ ଓ ଗୁଣଗାଥା ସର୍ବତ୍ର ଶ୍ରବଣ କରିବେ । ୨୭ ।

ଏ ଦିଗ୍‌ବିଜୟୀ ହେବେ, ଏହାଙ୍କର ଆଜ୍ଞାଚକ୍ର ଅପ୍ରତିହତ ହେବ, ନିଜର ତେଜଃଦ୍ୱାରା ଲୋକମାନଙ୍କର ଦୁଃଖ ସ୍ୱରୂପ ଶଲ୍ୟ ବିଦୂରିତ କରିବେ । ପୃଥ୍ୱୀପତି ଏହି ପୃଥୁ ସୁରେନ୍ଦ୍ର ଓ ଅସୁରେନ୍ଦ୍ରମାନଙ୍କ କର୍ତ୍ତୃକ ବହୁ ସମ୍ମାନିତ ହୋଇ ମହାନୁଭବ ହେବେ । ୨୭ ।

---

ତୋର ଚରିତ ଇହଲୋକେ
ପ୍ରତିଏ ବିସ୍ତାରିବେ ମୁଖେ ।୨୬।
ହେ ପୃଥୁ ପରାକ୍ରମ ତୋର
ଦେବ ମାନବେ ଅଗୋଚର

ତୋର ମହିମା କର୍ଣ୍ଣେ ଶୁଣି
ତରିବେ ଭବଜନ୍ତୁ ପ୍ରାଣୀ । ୨୭
କହଇ ବିପ୍ର ଜଗନ୍ନାଥ
ପୃଥୁରାଜାର ଏ ଚରିତ

ସୁଜନେ ଶୁଣ ଶୁଦ୍ଧଚିତ୍ତେ
ଭାଷା ଦ୍ରବନ୍ତେ ଭାଗବତେ





## ସ ପ୍ତ ଦ ଶ ଅ ଧ୍ୟା ୟ

ତତଃ ସପ୍ତଦଶେ ଲୋକକ୍ଷୁଧାଂ ପ୍ରଶମୟନ୍ ପୃଥୁଃ ।
ଗ୍ରସ୍ତବୀଜାଂ ମହୀଂ ହନ୍ତୁଂ ଯତ୍ତୋ ଭିତ୍ୟା ତୟା ସ୍ତୁତଃ । ୦ । [ଶ୍ରୀଧରସ୍ୱାମୀ]

ଶ୍ରୀମୈତ୍ରେୟ ଉବାଚ ।

ଏବଂ ସ ଭଗବାନ୍ ବୈଣ୍ୟଃ ଖ୍ୟାପିତୋ ଗୁଣକର୍ମଭିଃ ।
ଛନ୍ଦୟାମାସ ତାନ୍ କାମୈଃ ପ୍ରତିପୂଜ୍ୟାଭିନନ୍ଦ୍ୟ ଚ । ୧ ।
ବ୍ରାହ୍ମଣପ୍ରମୁଖାନ୍ ବର୍ଣ୍ଣାନ୍ ଭୃତ୍ୟାମାତ୍ୟପୁରୋଧସଃ ।
ପୌରାନ୍ ଜାନପଦାନ୍ ଶ୍ରେଣୀଃ ପ୍ରକୃତୀଃ ସମପୂଜୟତ୍ । ୨ ।

---

### ପୃଥିବୀ ବଧାର୍ଥ ପୃଥୁଙ୍କର ଉଦ୍ୟମ ଓ ଧରଣୀଙ୍କ କର୍ତ୍ତୃକ ପୃଥୁ ସ୍ତବ ।

ସପ୍ତଦଶ ଅଧ୍ୟାୟରେ ଗୋରୂପଧାରିଣୀ ପୃଥିବୀ ସମସ୍ତ ଶସ୍ୟ ବୀଜ ଭକ୍ଷଣ କରନ୍ତେ ରାଜାପୃଥୁ ତାହାଙ୍କୁ ମାରିବାକୁ ଉଦ୍ୟତ ହୁଅନ୍ତେ ଭୀତା ପୃଥିବୀ ପୃଥୁଙ୍କୁ ସ୍ତବ କରିବା ବିଷୟ ବର୍ଣ୍ଣିତ ହୋଇଅଛି ।୦।

ଶ୍ରୀମୈତ୍ରେୟ କହିଲେ :—

ହେ କୁରୁନନ୍ଦନ ବିଦୁର ! ସ୍ୱୀୟ ଗୁଣ ଓ ଧର୍ମ କର୍ମର ସ୍ତୁତି ଶୁଣି ବେଣନନ୍ଦନ ପୃଥୁ ପରିତୁଷ୍ଟ ହେଲେ ଏବଂ ସ୍ତବକାରୀମାନଙ୍କୁ ଅଭିନନ୍ଦନ କରି ସେମାନଙ୍କର କାମନାଅନୁସାରେ ଦ୍ରବ୍ୟ ପ୍ରଦାନ ଦ୍ୱାରା ପ୍ରତି ପୂଜା କରି ସେମାନଙ୍କର ସନ୍ତୋଷ ବିଧାନ କରିଥିଲେ । ୧ ।

ତଦନନ୍ତର ସେ ବ୍ରାହ୍ମଣାଦି ବର୍ଣ୍ଣମାନଙ୍କୁ ଓ ଅମାତ୍ୟ ପୁରୋହିତପ୍ରଭୃତିଙ୍କୁ ଓ ବୈଶ୍ୟ ତାମ୍ବୁଳିକାଦି ସାଧାରଣ ବ୍ୟକ୍ତିମାନଙ୍କୁ ଯଥାଯୋଗ୍ୟ ସମ୍ମାନ କରିଥିଲେ । ୨ ।

---

ମହୀଗ୍ରାସନ୍ତେ ଶସ୍ୟ ବୀଜ, ମାରିଧାଇଁଲେ ପୃଥୁରାଜ । ଭୟେ ଧରଣୀ କଲା ସ୍ତବ, ସତର ଅଧ୍ୟାର ପ୍ରସ୍ତାବ ॥

ଶ୍ରୀ ମୈତ୍ରେୟ ଉବାଚ—

ଏମନ୍ତେ ପୃଥୁରାଜା ବୋଲେ
ସୁତ ମାଗଧେ ଏକ ହୁଲେ
ଲଭବନ୍ଦ୍ୟେ କଲେ ଯେବେ ସ୍ତୁତି
ଶୁଣି ସାନନ୍ଦେ ନରପତି
ଆମ୍ଭର ଗୁଣ କର୍ମ ଶୁଣି
ସନ୍ତୋଷମନେ ନୃପମଣି
ବାଞ୍ଛିତ ସର୍ବ ସୁଖ ଦେଇ
ଅନେକମତେ ମାନ୍ୟ କଲା
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ
ଅମାତ୍ୟ ପୁରୋହିତ ଜନ
ସକଳ ଜନପଦ ଆଣି
ସନ୍ତୋଷ କଲା ନୃପମଣି ।୧-୨।

ଶ୍ରୀବିଦୁର ଉବାଚ ।

କସ୍ମାଦ୍ଦଧାର ଗୋରୂପଂ ଧରିତ୍ରୀ ବହୁ ରୂପିଣୀ ।
ଯାଂ ଦୁଦୋହ ପୃଥୁସ୍ତତ୍ର କୋ ବତ୍ସୋ ଦୋହନଞ୍ଚ କିମ୍ । ୩ ।
ପ୍ରକୃତ୍ୟା ବିଷମା ଦେବୀ କୃତା ତେନ ସମା କଥମ୍ ।
ତସ୍ୟ ମେଧ୍ୟଂ ହୟଂ ଦେବଃ କସ୍ୟ ହେତୋରପାହରତ୍ । ୪ ।
ସନତ୍କୁମାରାଦ୍ଭଗବତୋ ବ୍ରହ୍ମନ୍ ବ୍ରହ୍ମବିଦୁତ୍ତମାତ୍ ।
ଲବ୍ଧ୍ୱା ଜ୍ଞାନଂସବିଜ୍ଞାନଂ ରାଜର୍ଷିଃ କାଂ ଗତିଂ ଗତଃ । ୫ ।
ଯଚାନ୍ୟଦପି କୃଷ୍ଣସ୍ୟ ଭବେଦ୍ଭଗବତଃ ପ୍ରଭୋଃ ।
ଶ୍ରବଃ ସୁଶ୍ରବସଃ ପୁଣ୍ୟଂ ପୂର୍ବଦେହ କଥାଶ୍ରୟମ୍ । ୬ ।

---

ଶ୍ରୀବିଦୁର କହିଲେ :—

ମୁନେ ! ମହାରାଜ ପୃଥୁ ଯେଉଁ ପୃଥିବୀକୁ ଦୋହନ କରିଥିଲେ, ସେହି ବହୁରୂପଧାରିଣୀ ପୃଥିବୀ କି ହେତୁ ଗୋରୂପ ଧାରଣ କରିଥିଲା । ସେହି ଦୋହନ କାଳରେ କିଏ ବତ୍ସ ଏବଂ କିଏ ପାତ୍ରସ୍ୱରୂପ ହୋଇଥିଲା ? । ୩ ।

ଏହି ପୃଥିବୀ ଦେବୀ ସ୍ୱଭାବତଃ କୌଣସଠାରେ ନିମ୍ନ କୌଣସିଠାରେ ଉଚ୍ଚତା, ପୃଥୁ କପରିଭାବରେ ତାହାକୁ ସମତଳ କରିଥିଲେ ? ଦେବରାଜ ଇନ୍ଦ୍ର କି କାରଣରୁ ତାହାଙ୍କ ଯଜ୍ଞୀୟ ଅଶ୍ୱ ଅପହରଣ କରିଥିଲେ ? । ୪ ।

ହେ ବ୍ରହ୍ମନ୍ ! ରାଜର୍ଷି ପୃଥୁ ବ୍ରହ୍ମଜ୍ଞପ୍ରଧାନ ଭଗବାନ୍ ସନତ୍କୁମାରଙ୍କ ନିକଟରୁ ସର୍ବଜ୍ଞାନ ପ୍ରାପ୍ତ ହୋଇ କପରି ଗତିଲାଭ କରିଥିଲେ । ୫ ।

ହେ ଦେବ ! ମୁଁ ଆପଣଙ୍କୁ ଯେଉଁ ପ୍ରଶ୍ନମାନ କଲି, ତଦ୍ଭିନ୍ନ ଏବଂ ଭଗବାନ୍ ବିଷ୍ଣୁଙ୍କର ପୃଥୁରୂପେ ଅବତୀର୍ଣ୍ଣ ହେବା ସମ୍ବନ୍ଧୀୟ ବୃତ୍ତାନ୍ତମାନ କୃପାକରି ମୋ ନିକଟରେ ବର୍ଣ୍ଣନା କରନ୍ତୁ । ୬ ।

---

ଶ୍ରୀ ବିଦୁର ଉବାଚ ।

କେମନ୍ତେ ଗାଈ ରୂପଧରି
କ୍ଷୀର ସ୍ରବିଲା ବସୁନ୍ଧରା
ସ୍ୱଭାବେ ସେ ବହୁ ରୂପିଣୀ
କେବା ମହିମା ତାର ଜାଣି
ସ୍ୱଭାବେ ସେ ଅନନ୍ତରୂପୀ
ଜଗତ ଅଛି ଦେହବ୍ୟାପୀ

ତାହାକୁ କେମନ୍ତେ ଦୁହିଁଲା
ଦୋହନେ ବତ୍ସା କେବା ହେଲା ।୩।
ଶରୀର ସ୍ୱଭାବେ ବିଷମ
ତାକୁ କେମନ୍ତେ କଲା ସମ
କି ଅଦେଥ ଅଶ୍ୱମେଧ କଲା
ଇନ୍ଦ୍ର କପାଇଁ ଅଶ୍ୱ ନେଲା ।୪।
ସନତକୁମାରଙ୍କ ମେଳେ
ବ୍ରହ୍ମ ସମ୍ବାଦ କେତେ କାଳେ

ତାହାଙ୍କ ଠାରୁ ଜ୍ଞାନ ପାଇ
ପଶ୍ଚାତେ କି ଗତିକୁ ପାଇ ।୫।
କି ଅର୍ଥେ ପ୍ରଭୁ ନରହରି
ଜଗତେ ପୃଥୁ ରୂପ ଧରି
ସୁପୁଣ୍ୟ କଥା ବିସ୍ତରିଲେ
ଏ ଯଶ ଜଗତେ ରଖିଲେ
ସେ କଥା କହ ମୁନି ମୋତେ
ମୁଁ ତୋର ସେବକ ଭକତେ

ଭକ୍ତାୟ ମେଽନୁରକ୍ତାୟ ତବ ଚାଧୋକ୍ଷଜସ୍ୟ ଚ ।
ବକ୍ତୁମର୍ହସି ଯୋଽଦୁହ୍ୟଦ୍‌ବୈଣ୍ୟରୂପେଣ ଗାମିମାମ୍ । ୭ ।

ଶ୍ରୀସୂତଉବାଚ ।

ଚୋଦିତୋ ବିଦୁରେଣୈବଂ ବାସୁଦେବକଥାଂ ପ୍ରତି ।
ପ୍ରଶସ୍ୟ ତଂ ପ୍ରୀତମନା ମୈତ୍ରେୟଃ ପ୍ରତ୍ୟଭାଷତ । ୮ ।

ଶ୍ରୀମୈତ୍ରେୟ ଉବାଚ ।

ଯଦାଭିଷିକ୍ତଃ ପୃଥୁରଙ୍ଗ ବିପ୍ରୈରାମନ୍ତ୍ରିତୋ ଜନତାୟାଶ୍ଚ ପାଲଃ ।
ପ୍ରଜା ନିରନ୍ନେ କ୍ଷିତିପୃଷ୍ଠ ଏତ୍ୟ କ୍ଷୁତ୍‌କ୍ଷାମଦେହାଃ ପତିମଭ୍ୟବୋଚନ୍ । ୯ ।
ବୟଂ ରାଜନ୍ ଜାଠରେଣାଭିତପ୍ତା ଯଥାଗ୍ନିନା କୋଟରସ୍ଥେନ ବୃକ୍ଷାଃ ।
ତ୍ୱାମଦ୍ୟ ଯାତାଃ ଶରଣଂ ଶରଣ୍ୟଂ ଯଃ ସାଧିତୋ ବୃତ୍ତିକରଃ ପତିର୍ନଃ ।୧୦।

ହେ ବ୍ରହ୍ମନ୍ ମୁଁ ଆପଣଙ୍କର ଏବଂ ଭଗବାନ୍ ଅଧୋକ୍ଷଜଙ୍କର ଭକ୍ତ ଓ ଅନୁରକ୍ତ ଶିଷ୍ୟ, ଭଗବାନ୍ ବେଣତନୟରୂପେ ଅବତୀର୍ଣ୍ଣ ହୋଇ ପୃଥିବୀକୁ ଦୋହନ କରିଥିଲେ, ଏ ପ୍ରସଙ୍ଗ ଶୁଣିବା ନିମନ୍ତେ ମୋର ଅତ୍ୟନ୍ତ ଶ୍ରଦ୍ଧା ଜନ୍ମିଅଛି । ୭ ।

ଶ୍ରୀସୂତ କହିଲେ :—ଭଗବାନ୍ ବାସୁଦେବଙ୍କ କଥା ପ୍ରତି ବିଦୁରଙ୍କର ଏପରି ଆଗ୍ରହ ଦେଖି ସନ୍ତୁଷ୍ଟ ଚିତ୍ତରେ ତାହାଙ୍କର ବାକ୍ୟର ପ୍ରଶଂସା କରି ମୈତ୍ରେୟ କହିବାକୁ ଲାଗିଲେ । ୮ ।

ଶ୍ରୀମୈତ୍ରେୟ କହିଲେ :—

ହେ ଅଙ୍ଗ ! "ତୁମ୍ଭେ ପ୍ରଜାପାଳକ ହେଲ" ଏହି କଥା କହି ବ୍ରାହ୍ମଣମାନେ ପୃଥୁରାଜଙ୍କୁ ଆମନ୍ତ୍ରଣ କରି ଯେତେବେଳେ ରାଜ୍ୟରେ ଅଭିଷିକ୍ତ କଲେ ସେତେବେଳେ ପୃଥିବୀ ତଳ ଅନ୍ନହୀନ ଥିବାରୁ ପ୍ରଜାମାନେ କ୍ଷୀଣ କଳେବର ହୋଇ ତାହାଙ୍କ ନିକଟକୁ ଗମନ କରି କହିଲେ । ୯ ।

ହେ ରାଜନ୍ ! ବୃକ୍ଷମାନେ ଯେପରି କୋଟରସ୍ଥ ଅଗ୍ନି ଦ୍ୱାରା ତାପିତ ହୁଅନ୍ତି, ଆମ୍ଭେମାନେ ସେହିପରି ଜଠରାନଳ ଦ୍ୱାରା ସନ୍ତାପିତ ହେଉଅଛୁଁ । ଆପଣ ଆମ୍ଭମାନଙ୍କର ଅନ୍ନଦାତା ପତି ବୋଲି ସାଧୁମାନେ ସ୍ଥିର କରିଅଛନ୍ତି । ଅତଏବ ଆପଣହିଁ ଆମ୍ଭମାନଙ୍କର ଶରଣ ଏବଂ ଆମ୍ଭେମାନେ ଶରଣାଗତ । ୧୦ ।

କେମନ୍ତେ ପୃଥୁରୂପ ଧରି
ଦୋହନ କଲେ ବସୁନ୍ଧରା
ସେ ବସ୍ତୁ କଥା ଗୁଣ ସାର
ଯା ଶୁଣି ନିସ୍ତରେ ସଂସାର ।୬-୭

ଶ୍ରୀ ସୁତ ଉବାଚ ।

ଏମନ୍ତେ ବିଦୁର ବଚନେ
ମୈତ୍ରେୟ ମୁନି ତୋଷମନେ
ପ୍ରଶଂସି ବିଦୁର ବଚନ
କହନ୍ତି ବ୍ୟାସଙ୍କନନ୍ଦନ ।୮

ଶ୍ରୀ ମୈତ୍ରେୟ ଉବାଚ ।

ଶୁଣ ବିଦୁର ଏକମନେ
ପୃଥୁଙ୍କୁ ମିଳି ବିପ୍ରଗଣେ
ବିଧାନେ ଅଭିଷେକ କଲେ
ତହିଁ ପରଜା ଏକମେଳେ
ସକଳେ ହୋଇ ଏକମନ
କହିଲେ ପୃଥୁ ସନ୍ନିଧାନ । ୯
କହନ୍ତି ଶିରେ କରଦେଇ
କ୍ଷୁଧାଏ କମେ ଆମ୍ଭ ଦେହ
କ୍ଷୁଧା ଅନଳ ଦହେ ମନେ
ବୃକ୍ଷ କୋଟରେ ଅଗ୍ନି ଯେହ୍ନେ
ଏଥକୁ କର ତୁ କାରଣ
ତୋ ପାଦେ ପଶିଲୁ ଶରଣ
କ୍ଷୁଧା ନ ସହେ ଆମ୍ଭ ଦେହ
ଆମ୍ଭଙ୍କୁ ଅନ୍ନ ବୃତ୍ତିଅଦ ।୧୦।

ତନ୍ନୋ ଭବାନୀହତୁ ରାତବେଽନ୍ନଂ କ୍ଷୁଧାର୍ଦ୍ଦିତାନାଂ ନରଦେବଦେବ ।
ଯାବନ୍ନ ନଙ୍କ୍ଷ୍ୟାମହ ଉଜ୍‌ଝିତୋର୍ଜ୍ଜା ବାର୍ତ୍ତାପତିସ୍ତ୍ୱଂ କଲ ଲୋକପାଲଃ ।୧୧।
ପୃଥୁଃ ପ୍ରଜାନାଂ କରୁଣଂ ନିଶମ୍ୟ ପରିଦେବିତମ୍ ।
ଦୀର୍ଘଂ ଦଧ୍ୟୌ କୁରୁଶ୍ରେଷ୍ଠ ନିମିତ୍ତଂ ସୋଽନ୍ୱପଦ୍ୟତ । ୧୨ ।
ଇତି ବ୍ୟବସିତୋ ବୁଦ୍ଧ୍ୟା ପ୍ରଗୃହୀତଶରାସନଃ ।
ସନ୍ଦଧେ ବିଶିଖଂ ଭୂମେଃ କ୍ରୁଦ୍ଧସ୍ତ୍ରିପୁରହା ଯଥା । ୧୩ ।
ପ୍ରବେପମାନା ଧରଣୀ ନିଶାମ୍ୟୋଦାୟୁଧଞ୍ଚ ତମ୍ ।
ଗୌଃ ସତ୍ୟପଦ୍ରବାଦ୍‌ଭୀତା ମୃଗୀବ ମୃଗୟୁଦ୍ରୁତା । ୧୪ ।

---

ହେ ନରଦେବ ଶ୍ରେଷ୍ଠ ! ଆମ୍ଭେମାନେ ଅତ୍ୟନ୍ତ କ୍ଷୁଧାତୁର ହୋଇ ପଡ଼ିଅଛୁଁ । ଯେତେଦିନ ଆମ୍ଭେମାନେ ଅନ୍ନାଭାବରେ ବିନଷ୍ଟ ନ ହେଉଁ, ସେତେଦିନ ପର୍ଯ୍ୟନ୍ତ ଆପଣ ଅନ୍ନ ପ୍ରଦାନକରି ଆମ୍ଭମାନଙ୍କୁ ରକ୍ଷାକରନ୍ତୁ, ହେ ରାଜନ୍ ! ଆପଣ ଅଖିଳ ଲୋକପାଳଙ୍କ ଏବଂ ଅନ୍ନ ଦାତା । ୧୧ ।

ଶ୍ରୀମୈତ୍ରେୟ କହିଲେ :—

ହେ କୁରୁଶ୍ରେଷ୍ଠ ବିଦୁର ! ପୃଥୁ ପ୍ରଜାମାନଙ୍କର ଏହି ପ୍ରକାର ବିଳାପ ଓ ଦୈନ୍ୟ ଶ୍ରବଣ କରି ଅନେକକ୍ଷଣ ଚିନ୍ତା କଲେ, ଏବଂ ପ୍ରଜାମାନଙ୍କ କ୍ଳେଶର କାରଣ ବୁଝି ପାରିଲେ । ୧୨ ।

ପୃଥିବୀ ଔଷଧି ବୀଜ ଗ୍ରାସ କରିଥିବା ନିଜ ବୁଦ୍ଧିବଳରେ ସ୍ଥିରକରି ସେ ତ୍ରିପୁରାରିଙ୍କ ତୁଲ୍ୟ ଶରାସନ ଗ୍ରହଣ କରି ପୃଥିବୀ ପ୍ରତି ଶରସନ୍ଧାନ କଲେ । ୧୩ ।

ତାହାଙ୍କୁ ଅସ୍ତ୍ର ଉଦ୍ୟତ ଦେଖି ଭୀତା, କମ୍ପମାନା ଧରଣୀ ଗୋରୂପଧାରଣ କରି ବ୍ୟାଧ ବିତାଡ଼ିତା ହରିଣୀ ତୁଲ୍ୟ ପଳାୟନ କରିବାକୁ ବସିଲା । ୧୪ ।

---

କ୍ଷୁଧା ହରଇ ଆମ୍ଭ ପ୍ରାଣ
ଏଥକୁ କର ପରିତ୍ରାଣ
ଅନ୍ନ ନ ଥିଲେ ପ୍ରାଣ କାହିଁ
ପ୍ରଜା ନ ଥିଲେ ରାଜା କାହିଁ ।୧୧।
ଏମନ୍ତ ପ୍ରଜାଙ୍କ ରୋଦନ
ଶୁଣିଣ ଛନ୍ନ ପୃଥୁ ମନ
ବୋଲଇ ଅନ୍ନ କେ ହରିଲା
ତୁମ୍ଭଙ୍କୁ ଏତେ ଦୁଃଖ ଦେଲା
ଶୁଣି ବୋଲନ୍ତି ପ୍ରଜାଜନେ
ଶୁଣ ରାଜନ ତୋଷ ମନେ

ତୋ ପିତା ଅରାଜକ କାଳେ
ଏ ଭୂମି ଗୋରୂପେ ଢଳେ
ରାଜ୍ୟେ ସକଳ ଶସ୍ୟ ଖାଇ
ଦିବସେ ସମୁଦ୍ରେ ଲୁଚଇ
ଆମ୍ଭର ଶସ୍ୟ ବୀଜ ବଳେ
ଭକ୍ଷିଲା କ୍ଷୁଧାର ଅନଳେ
ତାହାକୁ କେବେହେଁ ନ ଦେଖି
ଏଣୁ ହୋଇଲୁଁ ଆମ୍ଭେ ଦୁଃଖୀ ।୧୨
ଏମନ୍ତ ପ୍ରଜାବାକ୍ୟ ଶୁଣି
ପୃଥୁ ବିଚାରେ ମନେ ଗୁଣି

ଭୂମି ଜୀବନ ହରିବାରେ
ନିଜ କୋଦଣ୍ଡ ଧରି କରେ
ବାଣ ନିବେଶି ଧନୁଗୁଣେ
ତ୍ରିପୁର ବଧେ ରୁଦ୍ର ଯେହ୍ନେ ।୧୩
ଧରଣୀ ପୃଥୁ ତେଜ ଦେଖି
ଧାଇଁଲା ସମୁଦ୍ର ଉପେକ୍ଷି
ଭୟେ ରହିଁ ଇନ୍ଦ୍ରଦହଣେ
ମୃଗ ଯେପରେ ବ୍ୟାଧ ତ୍ରାସେ ।୧୪

ତାମନ୍ୱଧାବତ୍ତଦ୍‌ବୈଣ୍ୟଃ କୁପିତୋଽତ୍ୟରୁଣେକ୍ଷଣଃ ।
ଶରଂ ଧନୁଷି ସନ୍ଧାୟ ଯତ୍ର ଯତ୍ର ପଲାୟତେ । ୧୫ ।
ସା ଦିଶୋ ବିଦିଶୋ ଦେବୀ ରୋଦସୀ ଚାନ୍ତରଂ ତୟୋଃ ।
ଧାବନ୍ତୀ ତତ୍ର ତତ୍ରୈନଂ ଦଦର୍ଶାନୁଦ୍ୟତାୟୁଧମ୍ । ୧୬ ।
ଲୋକେ ନାବିନ୍ଦତ ତ୍ରାଣଂ ବୈଣ୍ୟାନ୍ମୃତ୍ୟୋରିବ ପ୍ରଜାଃ ।
ତ୍ରସ୍ତା ତଦା ନିବବୃତେ ହୃଦୟେନ ବିଦୂୟତା । ୧୭ ।
ଉବାଚ ଚ ମହାଭାଗଂ ଧର୍ମଜ୍ଞାପନ୍ନ ବତ୍ସଳ ।
ତ୍ରାହି ମାମପି ଭୂତାନାଂ ପାଳନେଽବସ୍ଥିତୋ ଭବାନ୍ । ୧୮ ।
ସ ତ୍ୱଂ ଜିଘାଂସସେ କସ୍ମାଦ୍ଦୀନାମକୃତକିଲ୍ବିଷାମ୍ ।
ଅହନିଷ୍ୟତ୍ କଥଂ ଯୋଷାଂ ଧର୍ମଜ୍ଞ ଇତି ଯୋ ମତଃ । ୧୯ ।

---

ବେଣନନ୍ଦନ ପୃଥୁ ଶରସନ୍ଧାନ ପୂର୍ବକ କ୍ରୋଧାରକ୍ତ ଲୋଚନରେ ସେହି ପଳାୟମାନା ପୃଥ୍ୱୀଙ୍କୁ ଅନୁସରଣ କଲେ । ୧୫ ।

ତଦନନ୍ତର ଧରଣୀ ଦିକ୍ ବିଦିକ୍, ସ୍ୱର୍ଗ ମର୍ତ୍ତ୍ୟ, ଆକାଶ, ଯେଉଁଠାକୁ ଧାବମାନା ହେଲା, ସେହି ସଶସ୍ତ୍ର ପୃଥୁ ତାହାର ପଶ୍ଚାତ୍ ଧାବନ କଲେ । ୧୬ ।

ଯେପରି ମୃତ୍ୟୁ ମୁଖରୁ ପ୍ରଜାମାନଙ୍କର ପରିତ୍ରାଣ ହୁଏ ନାହିଁ ସେହିପରି ବେଣତନୟ ପୃଥୁଙ୍କଠାରୁ ପରିତ୍ରାଣ ପାଇବାର କୌଣସି ଉପାୟ ନଦେଖି ଦୁଃଖିତା ହୋଇ ପଳାୟନ କାର୍ଯ୍ୟରୁ ବିରତହେଲେ ।୧୭।

ତଦନନ୍ତର ଭୀତା ଧରଣୀ ମହାଭାଗ ପୃଥୁଙ୍କୁ କହିଲେ :—ହେ ଧର୍ମଜ୍ଞ ! ହେ ଶରଣାଗତ ରକ୍ଷକ ! ଆପଣ ପ୍ରାଣିମାନଙ୍କର ପାଳନକାର୍ଯ୍ୟରେ ନିଯୁକ୍ତ ଅଛନ୍ତି, ଆପଣହିଁ ମୋତେ ରକ୍ଷା କରନ୍ତୁ । ୧୮ ।

ସମସ୍ତେ ଆପଣଙ୍କୁ ଧାର୍ମିକ ବୋଲି ଜାଣନ୍ତି, ଅତଏବ ଆପଣ ଏହି ଦୀନା ଓ ନିରପରାଧାକୁ କି କାରଣରୁ ହତ୍ୟା କରିବାକୁ ଉଦ୍ୟତ ହୋଇଅଛନ୍ତି ? ଆପଣ କଣ ସ୍ତ୍ରୀ ବଧ କରିବେ ? । ୧୯ ।

---

ପୃଥୁ ଧାମନ୍ତି ତୋଷମନେ
ରୋଷିତ ଅରୁଣ ଲୋଚନେ
ଶର ସନ୍ଧାନ ଧନୁଗୁଣେ
ଧାମନ୍ତି ପୃଥ୍ୱୀ ଧାଇଁ ଯେଣେ
ପୃଥ୍ୱୀ ପଳାଇ ଯେଣେ ଯେଣେ
ପୃଥୁ ଧାମନ୍ତି ତେଣେ ତେଣେ ।୧୫
ଦିଗ ବିଦିଗ ଭୂମି ଶୂନ୍ୟେ
ପ୍ରତାପେ ମିଳନ୍ତେ ଗଗନେ
ପ୍ରତ୍ୟକ୍ଷ ଦେଖନ୍ତି ପୃଥୁ ଦେଖେ
କେବା ଅବନୀ ପ୍ରାଣ ରଖେ ।୧୬।
ଦେଖି ଲଭିଲା ତ୍ରାସ ମନେ
ମୃତ୍ୟୁର ଭୟେ ପ୍ରାଣୀ ଯେହ୍ନେ
ଚଳି ନ ପାରି ଦୁଃଖ ମନେ
ମିଳିଲା ପୃଥୁ ସନ୍ନିଧାନେ । ୧୭ ।
କମ୍ପଇ ଭୟେ ବସୁନ୍ଧରା
ପୃଥୁ ଚରଣେ ନମସ୍କାର
ବୋଲଇ ମଧୁର ବଚନେ
ଇଷିତ ବିକଳ ବଦନେ
ହେ ମହାଭାଗ ଧର୍ମ୍ମବେତ୍ତା
ଭୂତ ବତ୍ସଳ ସର୍ବଜ୍ଞାତା
ପ୍ରାଣୀ ରକ୍ଷଣେ ଜନ୍ମ ତୋର
ତୁ ନାଥ ତ୍ରାହି ମୋତେ କର ।୧୮।
କିପାଁ ଜିଘାଂସା ମୋତେ କର
ଅପ୍ରାଧୀ ନୁହଇ ମୁଁ ତୋର
ସ୍ତ୍ରିରୀ ଗୋବଧ ମୁହିଁ ମଲେ
କେସନେ ସମ୍ପାଦିବୁ ଭଲେ
ଏକ ମାରଣେ ବେନି ଦୋଷ
ସଂସାରେ ଥିବ ଅପଯଶ ।୧୯।

ପ୍ରହରନ୍ତି ନ ବୈ ସ୍ତ୍ରୀଷୁ କୃତାଗଃସ୍ୱପି ଜନ୍ତବଃ ।
କିମୁତ ତ୍ୱଦ୍‌ବିଧା ରାଜନ୍ କରୁଣା ଦୀନବତ୍ସଳାଃ । ୨୦ ।
ମାଂ ବିପାଟ୍ୟାଜରାଂ ନାବଂ ଯତ୍ର ବିଶ୍ୱଂ ପ୍ରତିଷ୍ଠିତମ୍ ।
ଆତ୍ମାନଞ୍ଚ ପ୍ରଜାଶ୍ଚେମାଃ କଥମମ୍ଭସି ଧାସ୍ୟସି । ୨୧ ।

ଶ୍ରୀପୃଥୁରୁବାଚ ।

ବସୁଧେତ୍ୱାଂ ବଧିଷ୍ୟାମି ମଚ୍ଛାସନପରାଙ୍ମୁଖୀମ୍ ।
ଭାଗଂ ବର୍ହିଷି ଯା ବୃଙ୍କ୍ତେ ନ ତନୋତି ଚ ନୋ ବସୁ । ୨୨ ।
ଯବସଂ ଜଗ୍ଧ୍ୟନୁଦିନଂ ନୈବ ଦୋଗ୍ଧ୍ୟୌଧସଂ ପୟଃ ।
ତସ୍ୟାମେବଂ ହି ଦୁଷ୍ଟାୟାଂ ଦଣ୍ଡୋ ନାତ୍ର ନ ଶସ୍ୟତେ । ୨୩ ।

---

ହେ ରାଜନ୍ ! ଆପଣଙ୍କ ତୁଲ୍ୟ କରୁଣ ହୃଦୟ, ଦୀନ ବତ୍ସଳ ବ୍ୟକ୍ତି କଥା ଦୂରେ ଥାଉ, ସ୍ତ୍ରୀବ୍ୟକ୍ତି ଅପରାଧ କଲେ ସାଧାରଣ ଲୋକେ ମଧ୍ୟ ତାହାଙ୍କୁ ପ୍ରହାର କରନ୍ତି ନାହିଁ । ୨୦ ।

ମୋ ଉପରେ ଏହି ବିଶ୍ୱ ପ୍ରତିଷ୍ଠିତ, ମୁଁ ଏହାର ସୁଦୃଢ଼ ନୌକାରୂପେ ବିଦ୍ୟମାନ, ମୋତେ ବିଦୀର୍ଣ୍ଣ କରି ଆପଣ କପରି ଜଳରାଶି ରୂପରେ ନିଜକୁ ଓ ପ୍ରଜାମାନଙ୍କୁ ସ୍ଥାପନ କରିବେ ? । ୨୧ ।

ପୃଥୁ ଏହାଶୁଣି କହିଲେ :—

ହେ ବସୁଧେ ! ତୁମ୍ଭେ ମୋର ଶାସନ ଗ୍ରାହ୍ୟ କରି ନ ଥିବାରୁ ମୁଁ ତୁମ୍ଭଙ୍କୁ ବଧ କରିବାକୁ ବସି ଅଛି । କି ଆଶ୍ଚର୍ଯ୍ୟ ତୁମ୍ଭେ ଦେବତାରୂପେ ଯଜ୍ଞଭାଗ ଗ୍ରହଣ କରୁଥିଲେ ମଧ୍ୟ ତୁମ୍ଭେ ଆମ୍ଭମାନଙ୍କୁ ଧନ ଧାନ୍ୟାଦି ପ୍ରଦାନ କରୁନାହିଁ । ୨୨ ।

ଯେଉଁ ଗାଈ ପ୍ରତିଦିନ ତୃଣ ଭକ୍ଷଣ କରେ ଅଥଚ ଦୁଗ୍ଧ ପ୍ରଦାନ କରେ ନାହିଁ, ସେହି ଦୁଷ୍ଟା ପ୍ରତି ଦଣ୍ଡବିଧାନ କରିବା କଅଣ ଉଚିତ ନୁହେଁ ? । ୨୩ ।

---

ସ୍ତ୍ରୀଲୋକ ଅପରାଧ କଲେ
ପଣ୍ଡିତେ ନ ମାରନ୍ତି ଭଲେ
ତୁ ନାଥ କରୁଣାସାଗର
ଦୁଃଖୀ ଦରିଦ୍ରଙ୍କ ସୋଦର ।୨୦।
ଦଦରା ନାବ ପ୍ରାୟ ମୁହିଁ
ଏ ଭାର ନ ପାରଇ ସହି
ମୋହର ମଲେ ଏ ଜଗତେ
ଏ ପ୍ରଜା ରଖିବୁ କେମନ୍ତେ ।୨୧

ଶ୍ରୀ ପୃଥୁରୁବାଚ ।

ଶୁଣ ଧରଣୀ ମୋ ଉତ୍ତର
ତୁ ମଲେ ମୋର ନାହିଁ ଡର
ମୋହର ଆଜ୍ଞା ଭଙ୍ଗୁ ତୁହି
ତୋର ମାରଣେ ଦୋଷ ନାହିଁ ।୨୨
ପିତା ମରଣେ ଅରାଜକେ
ସକଳ ଶସ୍ୟ ଭୁଞ୍ଜି ସୁଖେ

ଖାଇଲୁ ଗୋରୂ ରୂପ ହୋଇ
ସଂସାରେ ଶସ୍ୟ ବୀଜ ନାହିଁ
ଅନ୍ନ ନ ଥିଲେ ପ୍ରଜାଜନ
କେମନ୍ତେ ରଖିବେ ଜୀବନ
ପ୍ରଜା ନ ଥିଲେ ରାଜା କାହିଁ
ଏ ଘେନି ତୋତେ ମୁଁ ମାରଇ
ଦୁଷ୍ଟ ମାରଣ ରାଜା ଧର୍ମ୍ମ
ଏତ ସ୍ୱଭାବେ ନିଜକର୍ମ୍ମ

ତ୍ୱଂ ଖଲ୍ୱୋଷଧିବୀଜାନି ପ୍ରାକ୍ ସୃଷ୍ଟାନି ସ୍ୱୟମ୍ଭୁବା ।
ନ ମୁଞ୍ଚସ୍ୟାତ୍ମରୁଦ୍ଧାନି ମାମବଜ୍ଞାୟ ମନ୍ଦଧୀଃ । ୨୪ ।
ଅମୂଷାଂ କ୍ଷୁତ୍ପରୀତାନାମାର୍ତ୍ତାନାଂ ପରିଦେବିତମ୍ ।
ଶମୟିଷ୍ୟାମି ମଦ୍‌ବାଣୈର୍ଭିନ୍ନାୟାସ୍ତବ ମେଦସା । ୨୫ ।
ପୁମାନ୍ ଯୋଷିଦୁତକ୍ଲୀବ ଆତ୍ମ ସମ୍ଭାବନୋଽଧମଃ ।
ଭୂତେଷୁ ନିରନୁକ୍ରୋଶୋ ନୃପାଣାଂ ତଦ୍‌ବଧୋଽବଧଃ । ୨୬ ।
ତ୍ୱାଂ ସ୍ତବ୍ଧାଂ ଦୁର୍ମ୍ମଦାଂ ନୀତ୍ୱା ମାୟାଗାଂ ତିଲଶଃ ଶରୈଃ ।
ଆତ୍ମଯୋଗବଲେନେମା ଧାରୟିଷ୍ୟାମ୍ୟହଂ ପ୍ରଜାଃ । ୨୭ ।
ଏବଂ ମନ୍ୟୁମୟୀଂ ମୂର୍ତ୍ତିଂ କୃତାନ୍ତମିବ ବିଭ୍ରତମ୍ ।
ପ୍ରଣତା ପ୍ରାଞ୍ଜଳିଃ ପ୍ରାହ ମହୀ ସଞ୍ଜାତବେପଥୁଃ । ୨୮ ।

---

ସ୍ୱୟମ୍ଭୂ ବ୍ରହ୍ମା ସୃଷ୍ଟିର ପ୍ରାରମ୍ଭରେ ଯେଉଁ ଔଷଧି ବୀଜର ସୃଷ୍ଟି କରିଥିଲେ ସେ ସମସ୍ତ ତୁମ୍ଭେ ଆପଣାର ଗର୍ଭ ମଧ୍ୟରେ ଅବରୁଦ୍ଧ କରି ରଖିଅଛ ଏବଂ ମୋତେ ଅବଜ୍ଞା କରି ସେ ସମସ୍ତ ଦେଉନାହଁ ।୨୪

ଅତଏବ ମୁଁ ମୋର ବାଣଦ୍ୱାରା ତୁମ୍ଭଙ୍କୁ ଭେଦକରି ତୁମ୍ଭର ମାଂସରେ ଏହି କ୍ଷୁଧାତୁର ପ୍ରଜାମାନଙ୍କର ବିଳାପ ଶାନ୍ତ କରିବି । ୨୫ ।

ଯେଉଁ ବ୍ୟକ୍ତି ନିର୍ଦ୍ଦୟ, ଆତ୍ମମ୍ଭରି ଓ ଅଧମ ସେ ପୁରୁଷ ହେଉ, ସ୍ତ୍ରୀ ହେଉ ବା କ୍ଳୀବ ହେଉ, ତାହାକୁ ହତ୍ୟା କଲେ ରାଜାଙ୍କୁ ପାପ ଲାଗେ ନାହିଁ । ୨୬ ।

କପଟ ଗୋରୂପିଣୀ ଦୁର୍ମଦା, ଉଦ୍ଧତ ସ୍ୱଭାବା ତୁମ୍ଭଙ୍କୁ ବାଣଦ୍ୱାରା ତିଳପ୍ରମାଣେ ଖଣ୍ଡବିଖଣ୍ଡ କରି ମୋର ଯୋଗବଳରେ ମୁଁ ନିଜେ ଏହି ପ୍ରଜାମାନଙ୍କୁ ଧାରଣ କରିବି । ଯମପରି ମହାରାଜ ପୃଥୁ କ୍ରୋଧମୟ ମୂର୍ତ୍ତି ଧାରଣ କରି ଏପରି କହନ୍ତେ ପୃଥ୍ୱୀ ଭୟରେ କମ୍ପମାନ ହେଲା ଏବଂ ପ୍ରଣତ ଭାବରେ ବଦ୍ଧାଞ୍ଜଳି ସହି କହିଲା । ୨୭, ୨୮ ।

---

ମୁଁ ଯେବେ ନ ମାରିବି ତୋତେ
ଏ ପ୍ରଜା ବଞ୍ଚିବେ କେମନ୍ତେ
ବିଧାତା ସୃଷ୍ଟି କଲା ଯେତେ
ଅନ୍ନ ଜୀବନ ରକ୍ଷା ଅର୍ଥେ
ସେ ଶସ୍ୟ ଗୋରୂପେ ଖାଇ
ଏବେ ନ ଦେଉ କାହିଁପାଇଁ
ତୁ ମନ୍ଦବୁଦ୍ଧି ଦୁରାଶୟ
ମାୟା ଭିଆଣେ ବହୁ ଦେହ
ଅବଜ୍ଞା କଲୁ ଯେଣୁ ମୋତେ
ତେଣୁଦଣ୍ଡିବିଆଜତୋତେ ।୨୩୨୪
ଏ ପ୍ରଜା ପୀଡ଼ିତ ଆରତେ
କ୍ଷୁଧିତ ଅନ୍ନ ଅପ୍ରାପତେ
ସେ ଦୁଃଖ ନିବାରିବି ମୁହିଁ
ମୋବାଣେତୋରମାଂସଦେଇ । ୫
ସ୍ତିରୀ ପୁରୁଷ ନପୁଂସକେ
ପୀଡ଼ିତ ଯାର ତହୁଁ ଲୋକେ
ତାହାକୁ ରାଜା ନ ଦଣ୍ଡିଲେ
ସେ କିସ ରାଜା ଏ ସଂସାରେ
ତାର ମାରଣେ ଦୋଷ ନାହିଁ
ସଂସାରେ ଧର୍ମ୍ମ କଥା ଏହି ।୨୬।
ତୁ ମାୟା ଗୋରୂପ ବହି
ସକଳ ଶସ୍ୟବୀଜ ଖାଇ
ଅବଜ୍ଞା କଲୁ ଯେବେ ମୋତେ
ନିଶ୍ଚେ ଦଣ୍ଡିବି ଆଜ ତୋତେ
ତୋର ଶରୀର ତୀକ୍ଷ୍ଣବାଣେ
କାଟିବି ତିଳ ପରମାଣେ
ବାଣେ ତୋହର ପ୍ରାଣ ହରି
ମୁଁ ଆତ୍ମଯୋଗବଳେ କରି
ବସ୍ତାରି ମୋହର ଶରୀରେ
ଏ ପ୍ରଜା ରଖିବି ନିର୍ଭରେ ।୨୭।
ଏମନ୍ତେ କହୁଁ ମହା କୋପେ
ପୃଥ୍ୱୀ ମିଳିଲା ସମୀପେ
ଏମନ୍ତ ପୃଥୁ ରୂପ ଗ୍ରହି
ଉତ୍ତର କମ୍ପଇ ମହୀଦେହି
ପୃଥୁ ଚରଣେ ଶିରଦେଇ
ବୋଲଇ ଅଧୋମୁଖୀ ହୋଇ ।୨୮।

ଶ୍ରୀପୃଥିବ୍ୟୁବାଚ ।

ନମଃ ପରସ୍ମୈ ପୁରୁଷାୟ ମାୟୟା ବିନ୍ୟସ୍ତ ନାନାତନବେ ଗୁଣାତ୍ମନେ ।
ନମଃ ସ୍ୱରୂପାନୁଭବେନ ନିର୍ଦ୍ଧୂତ ଦ୍ରବ୍ୟକ୍ରିୟାକାରକବିଭ୍ରମୋର୍ମ୍ମୟେ । ୨୯ ।
ଯେନାହମାତ୍ମାୟତନଂ ବିନିର୍ମ୍ମିତା ଧାତ୍ରା ଯତୋଽୟଂ ଗୁଣସର୍ଗସଂଗ୍ରହଃ ।
ସ ଏବ ମାଂ ହନ୍ତୁମୁଦାୟୁଧଃ ସ୍ୱରାଡୁପସ୍ଥିତୋଽନ୍ୟଂ ଶରଣଂ କମାଶ୍ରୟେ । ୩୦ ।
ଯ ଏତଦାଦାବସୃଜଚ୍ଚରାଚରଂ ସ୍ୱମାୟୟାତ୍ମାଶ୍ରୟୟାବିତର୍କ୍ୟୟା ।
ତୟୈବ ସୋଽୟଂ କିଲ ଗୋପ୍ତୁମୁଦ୍ୟତଃ କଥଂ ନୁ ମାଂ ଧର୍ମ୍ମପରୋ ଜିଘାଂସତି ।୩୧।
ନୂନଂ ବତେଶସ୍ୟ ସମୀହିତଂ ଜନୈସ୍ତନ୍ମାୟୟା ଦୁର୍ଜ୍ଜୟୟାଽକୃତାତ୍ମଭିଃ ।
ନ ଲକ୍ଷ୍ୟତେ ଯସ୍ତ୍ୱକରୋଦକାରୟଦ୍‌ଯୋଽନେକ ଏକଃ ପରତଶ୍ଚ ଈଶ୍ୱରଃ । ୩୨ ।

---

ଶ୍ରୀପୃଥିବୀ କହିଲେ :—

ଯେ ମାୟାଦ୍ୱାରା ନାନାରୂପ ରଚନାକରି ଗୁଣମୟରୂପେ ପ୍ରତୀୟମାନ ହୁଅନ୍ତି, କିନ୍ତୁ ଯଥାର୍ଥରେ ଯେ ଆପଣାର ସ୍ୱରୂପ ଅନୁଭବ ହେତୁ ଦ୍ରବ୍ୟ କ୍ରିୟା, କାରକ, ଅହଂକାର ଓ ତନିମିତ୍ତ ରାଗ ଦ୍ୱେଷରୁ ମୁକ୍ତ, ମୁଁ ସେହି ପରମପୁରୁଷଙ୍କୁ ନମସ୍କାର କରୁଅଛି । ୨୯ ।

ଯେଉଁ ବିଧାତା ମୋତେ ଜୀବମାନଙ୍କର ବାସସ୍ଥାନ ରୂପେ ସୃଷ୍ଟି କରିଥିବାରୁ ମୁଁ ଚତୁର୍ବିଧ ଜୀବାତ୍ମକ ଗୁଣମୟ ସୃଷ୍ଟିର ଆଧାରଭୂତା ହୋଇଅଛି, ସେହି ସ୍ୱେଚ୍ଛାମୟ ପୁରୁଷ ଯଦି ଅସ୍ତ୍ର ଉତ୍ତୋଳନ କରି ମୋତେ ସଂହାର କରନ୍ତି, ତେବେ ମୁଁ କାହାର ଆଶ୍ରୟ ଗ୍ରହଣ କରିବି । ୩୦ ।

ଯେଉଁ ଭଗବାନ୍ ସୃଷ୍ଟିର ଆଦ୍ୟରେ ଆପଣାର ଆଶ୍ରିତା ସ୍ୱୀୟ ଅଚିନ୍ତ୍ୟ ଶକ୍ତିଦ୍ୱାରା ଏହି ଚରାଚର ବିଶ୍ୱସୃଷ୍ଟି କରି ଅଛନ୍ତି ଏବଂ ଯେ ସେହି ଅଚିନ୍ତ୍ୟ ଶକ୍ତିଦ୍ୱାରା ପୁନଶ୍ଚ ଏହି ପୃଥୁରୂପେ ନିଜର ସୃଷ୍ଟ ବିଶ୍ୱରକ୍ଷଣରେ ଉଦ୍ୟତ ସେହି ଧର୍ମପାଳକ ପୁରୁଷ କିପରି ମୋର ବିନାଶ ଚେଷ୍ଟା କରୁଅଛନ୍ତି ? । ୩୧ ।

ସେହି ଈଶ୍ୱରଙ୍କର ଦୁର୍ଜ୍ଜୟ ମାୟାଦ୍ୱାରା ଯେଉଁମାନେ ବିକ୍ଷିପ୍ତ ଚିତ୍ତ ସେମାନଙ୍କ ପକ୍ଷରେ ତାହାଙ୍କର ଉଦ୍ଦେଶ୍ୟ ଦୁର୍ଜ୍ଞେୟ, ସେହି ଈଶ୍ୱର ସ୍ୱତନ୍ତ୍ର ହେଲେ ମଧ୍ୟ ସ୍ୱୟଂ ବ୍ରହ୍ମାଙ୍କୁ ଉତ୍ପାଦନ କରନ୍ତି ଏବଂ ବ୍ରହ୍ମାଙ୍କ ଦ୍ୱାରା ଏହି ଚରାଚର ଜଗତ ନିର୍ମାଣ କରାନ୍ତି, ସେ ସ୍ୱରୂପତଃ ଏକ ହେଲେ ମଧ୍ୟ ତାହାଙ୍କର ଅଚିନ୍ତ୍ୟଶକ୍ତି ଦ୍ୱାରା ଅନେକ ହୋଇଥାନ୍ତି । ୩୨ ।

---

ଶ୍ରୀ ଧରଣ୍ୟୁବାଚ ।

ନମସ୍ତେ ପରମ ପୁରୁଷ
ଗୁଣ ପ୍ରକାଶେ ତୋର ଦୃଶ୍ୟ
ନିଜ ମାୟାରେ ଛନ୍ନ ହୋଇ
ସଂସାର ଅର୍ଥେ ଦେହ ବହି
ସ୍ୱରୂପେ ଅନୁଭବ ବୃତ୍ତି
ଦ୍ରବ୍ୟ କାରକ କ୍ରିୟା ରୀତି
ସକଳ କରୁ ମାୟାଭ୍ରମେ
ଊର୍ମି ଯେସନେ ଜଳ ଗ୍ରାମେ ।୨୯।
ମାୟା ରଚନା ମୋତେ କରି
ବିହରୁ ଆତ୍ମା ରୂପ ଧରି
ସର୍ବ୍ବ ପାଳଣ କରୁ ଅନ୍ତ
ଯେ ସ୍ୱୟଂ ପ୍ରକାଶେ ଜଗତ
ସେ ମୋତେ ମାରିବାର ସଧେ
ଧାମଇ ଉଦ୍ୟତ ଆୟୁଧେ
କେବା ରକ୍ଷଣେ ଅଛି ମୋର
ତୁ ନାଥ ନ କରୁ ବିସ୍ମର ।୩୦।
ତୁ ନିଜ ମାୟା ତର୍କ ବଳେ
ଜନ୍ତୁଙ୍କ ସର୍ଜ୍ଜୁ ଏ ଶୟଳେ
ତୁ ନାଥ ଧର୍ମ୍ମଙ୍କର ଗୁରୁ
କିପାଁ ନ ବୁଝି ମୋତେ ମାରୁ ।୩୧।
ଅନ୍ନ ନ ପାଇ ପ୍ରଜା ଯେବେ
ମୋତେ କହିଲେ ଅନୁଭବେ

ସର୍ଗାଦ ଯୋଽସ୍ୟାନୁରୁଣଦ୍ଧି ଶକ୍ତିଭିର୍ଦ୍ରବ୍ୟକ୍ରିୟାକାରକଚେତନାତ୍ମଭିଃ ।
ତସ୍ମୈ ସମୁନ୍ନଦ୍ଧନିରୁଦ୍ଧଶକ୍ତୟେ ନମଃ ପରସ୍ମୈ ପୁରୁଷାୟ ବେଧସେ । ୩୩ ।
ସ ବୈ ଭବାନାତ୍ମବିନିର୍ମିତଂ ଜଗଦ୍‌ଭୂତେନ୍ଦ୍ରିୟାନ୍ତଃକରଣାତ୍ମକଂ ବିଭୋ ।
ସଂସ୍ଥାପୟିଷ୍ୟନ୍ନଜ ମାଂ ରସାତଳାଦଭ୍ୟୁଜ୍ଜହାରାମ୍ଭସ ଆଦିଶୂକରଃ । ୩୪ ।
ଅପାମୁପସ୍ଥେ ମୟି ନାବ୍ୟବସ୍ଥିତାଃ ପ୍ରଜା ଭବାନଦ୍ୟ ରିରକ୍ଷିଷୁଃ କିଲ ।
ସ ବୀରମୂର୍ତ୍ତିଃ ସମଭୂଦ୍ଧରାଧରୋ ଯୋ ମାଂ ପୟସ୍ୟୁଗ୍ରଶରୋ ଜିଘାଂସସି । ୩୫ ।
ନୂନଂ ଜନୈରୀହିତମୀଶ୍ୱରାଣାମସ୍ମଦ୍ୱିଧୈସ୍ତଦ୍‌ଗୁଣସର୍ଗମାୟୟା ।
ନ ଜ୍ଞାୟତେ ମୋହିତଚିତ୍ତ ବର୍ତ୍ମଭିସ୍ତେଭ୍ୟୋ ନମୋ ବୀରଯଶସ୍କରେଭ୍ୟଃ ।୩୬।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପୃଥୁଚରିତେ ଧରିତ୍ରୀନିଗ୍ରହୋ ନାମ ସପ୍ତଦଶୋଽଧ୍ୟାୟଃ । ୧୭ ।

---

ଯେ ଆପଣାର ଶକ୍ତିସ୍ୱରୂପ ଇନ୍ଦ୍ରିୟ, ଦେବତା, ବୁଦ୍ଧି, ଅହଂକାର ଇତ୍ୟାଦି ମହାଭୂତ ଦ୍ୱାରା ଏହି ବିଶ୍ୱ ସୃଜନ, ପାଳନ ଓ ଲୟ କରୁଅଛନ୍ତି, ଯାହାଙ୍କର ଏହି ଶକ୍ତି ସମୂହ ଜଗତର ବୃଦ୍ଧିଶୀଳ ଓ ପରସ୍ପର ବିରୋଧି ମୁଁ ସେହି ପରମପୁରୁଷ ବିଧାତାଙ୍କୁ ନମସ୍କାର କରୁଅଛି । ୩୩ ।

ହେ ବିଭୋ ! ହେ ଅଜ ! ଯେ ଏହି ବିଶ୍ୱ ସୃଷ୍ଟି କରିଅଛନ୍ତି ଆପଣ ସେହି ପୁରୁଷ, ଆପଣ ସେହି ସ୍ୱନିର୍ମିତ ଭୂତ, ଇନ୍ଦ୍ରିୟ, ଅନ୍ତଃକରଣସ୍ୱରୂପ, ଏହି ଚରାଚର ଜଗତକୁ ମୋ ଉପରେ ସମ୍ୟକ୍‌ରୂପେ ସ୍ଥାପନ କରିବା ଲାଗି ମୋତେ ଆଦି ଶୂକରରୂପେ ଧାରଣକରି ଜଳମୟ ରସାତଳରୁ ଉଦ୍ଧାର କରିଥିଲେ । ୩୪ ।

ଆପଣ ସେହି ଧରାଧାରୀ ବରାହମୂର୍ତ୍ତି ଦେବ, ଆପଣ ଜଳ ଉପରେ ନୌକାରୂପେ ରହିଅଛନ୍ତି, ମୋ ଉପରେ ଅବସ୍ଥିତ ଏହି ସମସ୍ତ ପ୍ରଜାପାଳନ ଇଚ୍ଛାରେ ଆପଣ ବର୍ତ୍ତମାନ ବୀରମୂର୍ତ୍ତି ପୃଥୁରୂପେ ଅବତୀର୍ଣ୍ଣ ହୋଇ ଅଛନ୍ତି । ହେ ପ୍ରଭୋ ! ଆପଣ ବର୍ତ୍ତମାନ ଯୁଦ୍ଧ ନିମିତ୍ତ ଶର ଧାରଣ କରି ମୋତେ ବଧ କରିବାକୁ ଉଦ୍ୟତ ହୋଇ ଅଛନ୍ତି, ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟ ବିଷୟ ! ୩୫ ।

ହେ ପ୍ରଭୋ ! ଈଶ୍ୱରଙ୍କର ଗୁଣମୟ ସୃଷ୍ଟିସ୍ୱରୂପା ମାୟାଦ୍ୱାରା ମୋପରି ବ୍ୟକ୍ତିର ମୋହଗ୍ରସ୍ତ ହୋଇଅଛି; ସୁତରାଂ ଈଶ୍ୱରଙ୍କ କଥା ଦୂରେ ଥାଉ, ଈଶ୍ୱରାନୁରକ୍ତ ଭକ୍ତମାନଙ୍କ କାର୍ଯ୍ୟ ମଧ୍ୟ ମୁଁ ଅନୁମାନ କରିବାକୁ ସମର୍ଥ ନୁହେଁ । ଭକ୍ତମାନଙ୍କ କର୍ତ୍ତୃକ ଜିତେନ୍ଦ୍ରିୟ ବ୍ୟକ୍ତିର ଯଶ ବୃଦ୍ଧି ହୁଏ, ସୁତରାଂ ମୁଁ ସେମାନଙ୍କୁ ପରମେଶ୍ୱର ଜ୍ଞାନ କରି ନମସ୍କାର କରୁଅଛି । ୩୬ ।

---

ତୁ ନାଥ ଜଗତଈଶ୍ୱର
ଏ ତୋତେ ନୋହେ ଅଗୋଚର
ତୁ ନାଥ ପଙ୍କଜକୁ ଅନ୍ତେ
ଶୂକରରୂପେ ତୋଳି ଦନ୍ତେ
ମୋତେ ସ୍ଥାପିଲୁ ଜଳ ଉପରେ
ପୁଣି ସଂହାରୁ କେମନ୍ତେ
କହିଲି ତୋର ଯେବା ଇଚ୍ଛା
ହେ ନାଥକର ପ୍ରାଣରକ୍ଷା ।୩୨-୩୬
ବୋଲଇ ବିପ୍ର ଜଗନ୍ନାଥ
ସୃଜନହିତେ ଭଗବତ
ପୃଥୁ ପୃଥ୍ୱୀଙ୍କର ସମ୍ବାଦ
ଶୁଣନ୍ତେ ଖଣ୍ଡଇ ପ୍ରମାଦ



## ଅ ଷ୍ଟା ଦ ଶ ଅ ଧ୍ୟା ୟ ।

ଅଷ୍ଟାଦଶେ ମହୀବାକ୍ୟାଦ୍‌ବତ୍ସପାତ୍ରାଦିଭେଦତଃ ।
ପୃଥ୍ୱାଦିଭିଶ୍ଚ କ୍ରମଶଃ ସା ଚ ଦୁଗ୍‌ଧା ଇତୀର୍ଯ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ଇତ୍ଥଂ ପୃଥୁମଭିଷ୍ଟୂୟ ରୁଷା ପ୍ରସ୍ଫୁରିତାଧରମ୍ ।
ପୁନରାହାବନିର୍ଭୀତା ସଂସ୍ତଭ୍ୟାତ୍ମାନମାତ୍ମନା । ୧ ।
ସନ୍ନିଯଚ୍ଛାଭିଭୋ ମନ୍ୟୁଂ ନିବୋଧ ଶ୍ରାବିତଞ୍ଚ ମେ ।
ସର୍ବତଃ ସାରମାଦତ୍ତେ ଯଥା ମଧୁକରୋ ବୁଧଃ । ୨ ।
ଅସ୍ମିଂଲ୍ଲୋକେଽଥବାମୁଷ୍ମିନ୍ ମୁନିଭିସ୍ତତ୍ତ୍ୱଦର୍ଶିଭିଃ ।
ଦୃଷ୍ଟା ଯୋଗାଃ ପ୍ରଯୁକ୍ତାଶ୍ଚ ପୁଂସାଂ ଶ୍ରେୟଃପ୍ରସିଦ୍ଧୟେ । ୩ ।

---

## ଧେନୁରୂପା ପୃଥିବୀର ଦୋହନ ।

ଅଷ୍ଟାଦଶ ଅଧ୍ୟାୟରେ ମହାରାଜ ପୃଥୁ ପୃଥିବୀର କଥା ଅନୁସାରେ ଭିନ୍ନ ଭିନ୍ନ ବତ୍ସ କଳ୍ପନା କରି ଭିନ୍ନ ଭିନ୍ନ ପଦାର୍ଥମାନ ଦୋହନ କରିବା ବିଷୟ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀମୈତ୍ରେୟ କହିଲେ :—

ହେ ବିଦୁର ! କ୍ରୋଧ ହେତୁରୁ ପୃଥୁଙ୍କର ଓଷ୍ଠଦ୍ୱୟ କମ୍ପିତ ହେଉଥିବାର ଦେଖି ଭୀତା ପୃଥିବୀ ପୂର୍ବୋକ୍ତ ପ୍ରକାରେ ତାହାଙ୍କର ସ୍ତବକରି ଚିତ୍ତ ସଂଯମ ପୂର୍ବକ କହିଲେ । ୧ ।

ହେ ଦେବ ! ଓ୍ରୋଧ ସମ୍ବରଣକର, ମୋତେ ଅଭୟଦାନ କର, ପଣ୍ଡିତବ୍ୟକ୍ତି ମଧୁକର ତୁଲ୍ୟ ସମସ୍ତବସ୍ତୁରୁ ସାର ଗ୍ରହଣ କରିଥାନ୍ତି । ତତ୍ତ୍ୱଦର୍ଶୀ ମୁନିଗଣ ଇହ ଓ ପରଲୋକର ପୁରୁଷାର୍ଥ ସିଦ୍ଧି ନିମିତ୍ତ ନାନା ଉପାୟ ନିର୍ଣ୍ଣୟ ଓ ପ୍ରୟୋଗ କରିଥାନ୍ତି । ୨, ୩ ।

---

ଅଷ୍ଟାଦଶେ ଯେ ପୃଥୁ ବଳେ । ସର୍ବେ ଦୁହିଲେ ମହୀତଳେ ॥

ଶ୍ରୀ ମୈତ୍ରେୟ ଉବାଚ—

କୁପିତ ଶରୀର ବଦନ
ସ୍ୱଭାବେ ଅରୁଣ ଲୋଚନ
ଏମନ୍ତେ ପୃଥୁମୁଖ ଚାହିଁ
ଭୟେ ଚରଣେ ଶିର ଦେଇ
ବିନୟେ କରି ନାନା ସ୍ତୁତି
ପୁଣି ବୋଲଇ ବସୁମତୀ । ୧ ।

ଧରଣ୍ୟୁବାଚ ।

ହେ ନାଥ କୋପ ଛାଡ଼ ମୋତେ
ମୁହିଁ ଶରଣ ଗଲି ତୋତେ
ଯେ ଆତ୍ମା କାର୍ଯ୍ୟ ବିଚାରଇ
ସଂସାରୁ ସାର ଆହରଇ
ଚିତ୍ତ ନ କରେ ଭିନେ ଭିନେ
ପୁଷ୍ପରୁ ମଧୁକର ଯେହ୍ନେ । ୨ ।
ଯେ ଶାନ୍ତ ଇହ ପରଲୋକେ
ସୁଯୋଗୀଜନ କହେ ମୁଖେ

ତାନାତିଷ୍ଠତ ଯଃ ସମ୍ୟଗୁପାୟାନ୍ ପୂର୍ବଦର୍ଶିତାନ୍ ।
ଅବରଃ ଶ୍ରଦ୍ଧୟୋପେତ ଉପେୟାନ୍ ବିନ୍ଦତେଽଞ୍ଜସା । ୪ ।
ତାନନାଦୃତ୍ୟ ଯୋଽବିଦ୍ୱାନର୍ଥାନାରଭତେ ସ୍ୱୟମ୍ ।
ତସ୍ୟ ବ୍ୟଭିଚରନ୍ତ୍ୟର୍ଥା ଆରବ୍‌ଧାଶ୍ଚ ପୁନଃ ପୁନଃ । ୫ ।
ପୁରା ସୃଷ୍ଟା ହ୍ୟୋଷଧୟୋ ବ୍ରହ୍ମଣା ଯା ବିଶାଂପତେ ।
ଭୁଜ୍ୟମାନା ମୟା ଦୃଷ୍ଟା ଅସଦ୍ଭିରଧୃତବ୍ରତୈଃ । ୬ ।
ଅପାଲିତା ନାଦୃତା ଚ ଭବଦ୍ଭିର୍ଲୋକପାଲକୈଃ ।
ଚୌରୀଭୂତେଽଥ ଲୋକେଽହଂ ଯଜ୍ଞାର୍ଥେଽଗ୍ରସମୋଷଧୀଃ । ୭ ।
ନୂନଂ ତା ବୀରୁଧଃ କ୍ଷୀଣା ମୟି କାଲେନ ଭୂୟସା ।
ତତ୍ର ଯୋଗେନ ଦୃଷ୍ଟେନ ଭବାନାଦାତୁମର୍ହତି । ୮ ।

---

ଯେଉଁ ବ୍ୟକ୍ତି ଶ୍ରଦ୍ଧାନ୍ୱିତ ହୋଇ ପୂର୍ବତନ ମୁନିମାନଙ୍କ ପ୍ରଦର୍ଶିତ ଉପାୟ ସମ୍ୟକ୍‌ରୂପେ ଅନୁଷ୍ଠାନ କରେ ସେ ଅର୍ବାଚୀନ ହେଲେ ମଧ୍ୟ ଅନାୟାସରେ ଫଳଲାଭରେ ସମର୍ଥ ହୁଏ । ୪ ।

କିନ୍ତୁ ସେହି ଉପାୟମାନ ଅବହେଳା କରି ପଣ୍ଡିତବ୍ୟକ୍ତି ମଧ୍ୟ ଯଦି କୌଣସି କାର୍ଯ୍ୟ ଆରମ୍ଭ କରେ, ତେବେ ତାହାର ମଧ୍ୟ ସେ ବିଷୟ ବିଫଳ ହୁଏ । ୫ ।

ହେ ମହାରାଜ ! ପୂର୍ବେ ବ୍ରହ୍ମା ମୋହର ପୃଷ୍ଠରେ ବ୍ରୀହି, ଯବ ଆଦି ଯେଉଁ ଔଷଧିମାନ ସୃଷ୍ଟି କରିଥିଲେ, ମୁଁ ଦେଖିଲି ଅବ୍ରତଧାରୀ ଲୋକେ ସେ ସମସ୍ତ ଭୋଗ କରୁଅଛନ୍ତି । ୬ ।

ଆପଣଙ୍କ ତୁଲ୍ୟ ଲୋକପାଳକମାନେ ଚୌର୍ଯ୍ୟାଦି ନିବାରଣ ଦ୍ୱାରା ମୋର ପାଳନ ଏବଂ ଯଜ୍ଞାଦି ଦ୍ୱାରା ମୋର ଆଦର କରୁନାହାନ୍ତି, ପ୍ରାୟ ସମସ୍ତବ୍ୟକ୍ତି ଚୌର ହୋଇ ଅଛନ୍ତି; ଏହା ଦେଖି ମୁଁ ଭବିଷ୍ୟତ ଯଜ୍ଞ ସାଧନ ନିମିତ୍ତ ସେହି ଔଷଧମାନ ଗ୍ରାସ କରିଅଛି । ୭ ।

ସେହି ଔଷଧିମାନ ଦୀର୍ଘକାଳ ମୋର ଉଦର ମଧ୍ୟରେ ଥିବାରୁ କ୍ଷୀଣ ହୋଇଅଛି, ମାତ୍ର ପ୍ରସିଦ୍ଧ ଉପାୟ ପ୍ରୟୋଗ ଦ୍ୱାରା ସେହି ଔଷଧି ଗୁଡ଼ିକ ମୋଠାରୁ ଗ୍ରହଣ କରିବା ଆପଣଙ୍କର ଉଚିତ । ୮ ।

---

ଉପାୟେ ସେ ଫଳ ଭୁଞ୍ଜନ୍ତି
ଉଦ୍ୟମେ ଲୋକେ ନାହିଁ ଭ୍ରାନ୍ତି
ଏହା ଯେ ନ କରନ୍ତି ଠଉରେ
ସେ ଯଶ ଲଭିବେ କେମନ୍ତେ ।୪-୫
ବ୍ରହ୍ମା ଯେ ସର୍ବ ପ୍ରାଣୀହିତେ
ଶସ୍ୟ ସାମଗ୍ରୀ କଲେ ଯେତେ

ସେ ଶସ୍ୟ ମୋର ଦେହେ ଥିଲା
ଏମନ୍ତେ ତୋର ପିତା ମଲା
ରାଜା ବିୟୋଗେ ସର୍ବ କର୍ମ
ଦୁଷ୍ଟେ ନାଶିଲେ ସର୍ବ ଧର୍ମ
ଯେତେ ଓଷଧି ବୀଜ ଥିଲା
ଅରାଜା ଯୋଗେ ନାଶ ଗଲା

ଚୋରର ଭୟ ଅରାଜହେ
ଭବିଷ୍ୟ ଯଜ୍ଞର ଆସ୍ଥାରେ
କ୍ଷୀଣ ବିରୁଧ ଦେଖି ମୁହିଁ
ଭକ୍ଷିଲି ଧେନୁ ରୂପ ହୋଇ ।୬-୮

ବତ୍ସଂ କଲ୍ପୟ ମେ ବୀର ଯେନାହଂ ବତ୍ସଲା ତବ ।
ଧୋକ୍ଷ୍ୟେ କ୍ଷୀରମୟାନ୍ କାମାନନୁରୂପଞ୍ଚ ଦୋହନମ୍ । ୯ ।
ଦୋଗ୍‌ଧାରଞ୍ଚ ମହାବାହୋ ଭୂତାନାଂ ଭୂତଭାବନ ।
ଅନ୍ନମୀପ୍‌ସିତମୂର୍ଜ୍ଜସ୍ୱଦ୍‌ଭଗବାନ୍ ବାଞ୍ଛତେ ଯଦି । ୧୦ ।
ସମାଞ୍ଚ କୁରୁ ମାଂ ରାଜନ୍ ଦେବବୃଷ୍ଟଂ ଯଥା ପୟଃ ।
ଅପର୍ତ୍ତାବପି ଭଦ୍ରନ୍ତେ ଉପାବର୍ତ୍ତେତ ମେ ବିଭୋ । ୧୧ ।
ଇତି ପ୍ରିୟଂ ହିତଂ ବାକ୍ୟଂ ଭୁବ ଆଦାୟ ଭୂପତିଃ ।
ବତ୍ସଂ କୃତ୍ୱା ମନୁଂ ପାଣାବଦୁହତ୍ସକଲୌଷଧୀଃ । ୧୨ ।

---

ହେ ବୀର ! ହେ ମହାବାହୋ ! ହେ ଭୂତଭାବନ ! ଆପଣ ଯଦି ପ୍ରାଣୀମାନଙ୍କର ଅଭିଳଷିତ ବଳପ୍ରଦ ଅନ୍ନବାଞ୍ଛା କରନ୍ତି, ତାହାହେଲେ ଗୋରୂପା ମୋର ଅନୁରୂପ ବତ୍ସ, ଦୋହନ ପାତ୍ର ଓ ଦୋଗ୍‌ଧା (ଦୋହନକାରୀ) ସ୍ଥିର କରନ୍ତୁ, ତାହା ହେଲେ ମୁଁ ବତ୍ସାବତୀ ହୋଇ ଆପଣଙ୍କର କାମନା ଅନୁସାରେ କ୍ଷୀରମୟ ଅନ୍ନ ପ୍ରଦାନ କରି ପାରିବି । ୯, ୧୦ ।

ହେ ବିଭୋ ! ହେ ରାଜନ୍ ! ମୋତେ ଏପରି ଭାବରେ ସମତଳ କରନ୍ତୁ, ଯଦ୍ଦ୍ୱାରା ବର୍ଷାଋତୁ ଅତୀତ ହେଲେ ମଧ୍ୟ ଇନ୍ଦ୍ରଦେବଙ୍କ ଦ୍ୱାରା ବର୍ଷିତ ଜଳ ସର୍ବତ୍ର ସମାନଭାବରେ ରହିପାରିବ, ତାହା ହେଲେ ଆପଣଙ୍କର ମଙ୍ଗଳ ହେବ । ୧୧ ।

ଭୂପତି ପୃଥୁ ପୃଥ୍ୱୀର ଏହି ସମସ୍ତ ପ୍ରିୟ ଓ ହିତବାକ୍ୟ ଗ୍ରହଣ କରି ସ୍ୱାୟମ୍ଭୁବମନୁଙ୍କୁ ବତ୍ସ କରି ପାଣି-ପାତ୍ରରେ ସମସ୍ତ ଔଷଧି ଦୋହନ କରିଥିଲେ । ୧୨ ।

---

ଯେ ସର୍ବ ଶସ୍ୟ ରସ ଯେତେ
କ୍ଷୀର ସ୍ରବିବ ମୋର ଗାତ୍ରେ
ତୁ ଏବେ ରକ୍ଷାକର ମୋତେ
ଦୋହନ କର ତୁ ଯୁଗତେ
ଝରିବ ସର୍ବ ଶସ୍ୟ ମୁହିଁ
ଯାର ଜୀବନ ଯେଣେ ରହି
ମୁଁ ସର୍ବ କାମଧେନୁ ରୂପେ
ସ୍ରବିବ ସର୍ବ ଜନ ମୁଖେ
ଏବେ ତୁ ମୋତେ ରକ୍ଷାକର
ଧନୁ ଆୟୁଧ ସଂହର ।୯,୧୦।
ସୁସମ କରି ମୋର ଗାତ୍ର
ମୁହିଁ ଯେସନେ ଶସ୍ୟ କ୍ଷେତ୍ର
ସମ ହୋଇଲେ ମୋ ଶରୀର
ବର୍ଷାରେ ପୂରି କ୍ଷୀରଧାର
ସରସ ହୋଇ ମୋ ଶରୀର
ଶସ୍ୟ ଉଠିବ ନିରନ୍ତର
ହୋଇବ ନାନାରୂପେ ଧାନ୍ୟ
ଜନ୍ତୁଏ ଲଭିବେ ଜୀବନ ।୧୧।

ଶ୍ରୀ ମୈତ୍ରେୟ ଉବାଚ ।

ଏମନ୍ତ ଧରଣୀ ବଚନ
ଶୁଣି ସନ୍ତୋଷ ପୃଥୁ ମନ
ମନୁକୁ ବତ୍ସା ରୂପ କରି
ଭୂପତି ବୋଲଇ ଦଣ୍ଡଧାରୀ
ତୁ ଏହା ସ୍ତନ ପାନ କର
ଯେମନ୍ତେ ସଞ୍ଚରଇ କ୍ଷୀର
ତକ୍ଷଣେ ପୃଥୁର ବଚନେ
ସେ ମନୁ ମୁଖ ଦେଇ ସ୍ତନେ
ପିବନ୍ତେ ସଞ୍ଚରିଲା କ୍ଷୀର
ମେଘୁ ଯେସନେ ବୃଷ୍ଟି ଧାର
ଚରଣେ ବାନ୍ଧି ବତ୍ସା ମନୁ
ପୃଥୁ ଦୁହିଁଲା କ୍ଷୀରସ୍ତନୁ
କ୍ଷୀରେ ପୂରିଲା ବସୁନ୍ଧରା
ଯେସନେ ସିନ୍ଧୁର ଲହରୀ

ତଥାପରେ ଚ ସର୍ବତ୍ର ସାରମାଦଦତେ ବୁଧାଃ ।
ତତୋଽନ୍ୟେ ଚ ଯଥାକାମଂ ଦୁଦୁହୁଃ ପୃଥୁଭାବିତାମ୍ । ୧୩ ।
ଋଷୟୋ ଦୁଦୁହୁର୍ଦେବୀମିନ୍ଦ୍ରିୟେଷ୍ୱଥ ସତ୍ତମାଃ ।
ବତ୍ସଂ ବୃହସ୍ପତିଂ କୃତ୍ୱା ପୟଶ୍ଛନ୍ଦୋମୟଂ ଶୁଚି । ୧୪ ।
କୃତ୍ୱା ବତ୍ସଂ ସୁରଗଣା ଇନ୍ଦ୍ରଂ ସୋମମଦୂଦୁହନ୍ ।
ହିରଣ୍ମୟେନ ପାତ୍ରେଣ ବୀର୍ଯ୍ୟମୋଜୋ ବଲଂ ପୟଃ । ୧୫ ।
ଦୈତେୟା ଦାନବା ବତ୍ସଂ ପ୍ରହ୍ଲାଦମସୁରର୍ଷଭମ୍ ।
ବିଧାୟ ଦୁଦୁହୁଃ କ୍ଷୀରମୟଃପାତ୍ରେ ସୁରାସବମ୍ । ୧୬ ।
ଗନ୍ଧର୍ବାପ୍‌ସରସୋଽଧୁକ୍ଷନ୍ ପାତ୍ରେ ପଦ୍ମମୟେ ପୟଃ ।
ବତ୍ସଂ ବିଶ୍ୱାବସୁଂ କୃତ୍ୱା ଗାନ୍ଧର୍ବଂ ମଧୁସୌଭଗମ୍ । ୧୭ ।

---

ଅନ୍ୟାନ୍ୟ ପଣ୍ଡିତମାନେ ମଧ୍ୟ ସର୍ବତ୍ର ଏହି ସାରବାକ୍ୟ ଗ୍ରହଣ କରିଥିଲେ ଏବଂ ପୃଥୁଙ୍କର ଦୋହନ ପରେ ପୃଥୁଙ୍କର ବଶୀଭୂତା ପୃଥିବୀକୁ ଋଷିଗଣ ପ୍ରମୁଖ ଅନ୍ୟାନ୍ୟ ସମସ୍ତେ ନିଜନିଜର ବାସନା ଅନୁସାରେ ଦୋହନ କରିବାକୁ ଲାଗିଲେ । ୧୩ ।

ମହାତ୍ମାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଋଷିମାନଙ୍କୁ ଓ ବୃହସ୍ପତିଙ୍କୁ ବତ୍ସାସ୍ୱରୂପ କଳ୍ପନା କରି ଇନ୍ଦ୍ରିୟରୂପ ପାତ୍ରରେ ପୃଥିବୀରୁ ପବିତ୍ର ବେଦରୂପ ଦୁଗ୍ଧ ଦୋହନ କରିଥିଲେ । ୧୪ ।

ଦେବଗଣ ଇନ୍ଦ୍ରଙ୍କୁ ବତ୍ସା କରି ସୁବର୍ଣ୍ଣ ପାତ୍ରରେ ଅମୃତ ମନଃଶକ୍ତି, ଇନ୍ଦ୍ରିୟଶକ୍ତି ଏବଂ ଦେହ ଶକ୍ତିମୟ ଦୁଗ୍ଧ ଦୋହନ କରିଥିଲେ । ଦୈତ୍ୟ ଓ ଦାନବଗଣ ଅସୁରଶ୍ରେଷ୍ଠ ପ୍ରହ୍ଲାଦଙ୍କୁ ବତ୍ସା କରି ଲୌହ ପାତ୍ରରେ ସୁରା ଓ ଆସବ ସ୍ୱରୂପ ଦୁଗ୍ଧ ଦୋହନ କରିଥିଲେ । ୧୫,୧୬ ।

ଗନ୍ଧର୍ବ ଓ ଅପ୍‌ସରାଗଣ ବିଶ୍ୱାବସୁଙ୍କୁ ବତ୍ସାକରି ପଦ୍ମପତ୍ରମୟପାତ୍ରରେ ମଧୁମୟ ଗନ୍ଧର୍ବବିଦ୍ୟା ବା ସଙ୍ଗୀତ ଏବଂ ସୌନ୍ଦର୍ଯ୍ୟ ସ୍ୱରୂପ ଦୁଗ୍ଧ ଦୋହନ କରିଥିଲେ । ୧୭ ।

---

ଗର୍ଭେ ଯେ ଶସ୍ୟ ବୀଜ ଥିଲା
କ୍ଷୀର ସଙ୍ଗତେ ପଶିଥିଲା
ଶସ୍ୟ ହୋଇଲେ ଅପ୍ରମିତେ
ପ୍ରଜା ଜୀବନେ ଯେଉଁମତେ ।୧୨।୧୩।
ପୃଥୁ ଦୋହନ ଅନ୍ତେ ଦେବେ
ସର୍ବେ ଦୁହିଁଲେ ଯେତେ ଭାବେ
ମିଳି ସକଳ ଋଷିଗଣ
ଆନନ୍ଦେ ହୃଷୀକ ପାତ୍ରେଣ
ଗୁରୁଙ୍କୁ ବତ୍ସା ରୂପ କରି
ବ୍ରହ୍ମ ଯାହାମତେ ସ୍ତନଧରି

ଦୁହିଁଲେ ପୟ ଛନ୍ଦୋମୟ
ଯେ ଶୁଭେ ଭୂଇଁ ଫଶସ୍ୟ ।୧୪।
ପୁଣି ସକଳ ଦେବେ ଧରି
ଇନ୍ଦ୍ରଙ୍କୁ ବତ୍ସାରୂପ କରି
ସୁବର୍ଣ୍ଣମୟ ପାତ୍ର ଆଣି
ଆନନ୍ଦେ ଦୁହିଁଲେ ଧରଣୀ
ସୋମ ଦୁହିଁଲେ ଯେଉଁମତେ
ଅଶେଷ ଯଜ୍ଞ କର୍ମ ଅର୍ଥେ
ସେ ବଳ ବୀର୍ଯ୍ୟ ଓଜ ଭୂତେ
ନିର୍ମଳ ପୟ ସେ ଦୁହିଁଲେ ।୧୫।

ଦୈତ୍ୟ ଦାନବେ ପୁଣ ଧରି
ପ୍ରହ୍ଲାଦଙ୍କୁ ବତ୍ସା କରି
ଦୁହିଁଲେ ଲୌହମୟ ପାତ୍ରେ
ସୁରା ଆସବ ଆଦି ଯେତେ ।୧୬।
ବିଶ୍ୱାବସୁଙ୍କୁ ବତ୍ସା କରି
ଗନ୍ଧର୍ବ ଅପସରା ଧରି
ଦୁହିଁଲେ ପଦ୍ମପାତ୍ରେ କ୍ଷୀର
ମଧୁର ସୁଗନ୍ଧ ସୁନ୍ଦର ।୧୭।

ବତ୍ସେନ ପିତରୋଽର୍ଯ୍ୟମ୍ଣା କବ୍ୟଂ କ୍ଷୀରମଧୁକ୍ଷତ ।
ଆମପାତ୍ରେ ମହାଭାଗ ଶ୍ରଦ୍ଧୟା ଶ୍ରାଦ୍ଧଦେବତାଃ । ୧୮ ।
ପ୍ରକଳ୍ପ୍ୟ ବତ୍ସଂ କପିଳଂ ସିଦ୍ଧାଃ ସଂକଳ୍ପନାମୟୀମ୍ ।
ସିଦ୍ଧିଂ ନଭସି ବିଦ୍ୟାଞ୍ଚ ଯେ ଚ ବିଦ୍ୟାଧରାଦୟଃ । ୧୯ ।
ଅନ୍ୟେ ଚ ମାୟିନୋ ମାୟାମନ୍ତର୍ଦ୍ଧାନାଦ୍ଭୁତାତ୍ମନାମ୍ ।
ମୟଂ ପ୍ରକଳ୍ପ୍ୟ ବତ୍ସତ୍ୱେ ଦୁଦୁହୁର୍ଦ୍ଧାରଣାମୟୀମ୍ । ୨୦ ।
ଯକ୍ଷରକ୍ଷାଂସି ଭୂତାନି ପିଶାଚାଃ ପିଶିତାଶନାଃ ।
ଭୂତେଶବତ୍ସା ଦୁଦୁହୁଃ କପାଲେ କ୍ଷତଜାସବମ୍ । ୨୧ ।
ତଥାହୟୋ ଦନ୍ଦଶୂକାଃ ସର୍ପା ନାଗାଶ୍ଚ ତକ୍ଷକମ୍ ।
ବିଧାୟ ବତ୍ସଂ ଦୁଦୁହୁର୍ବିଲପାତ୍ରେ ବିଷଂ ପୟଃ । ୨୨ ।

---

ହେ ମହାଭାଗ ବିଦୁର ! ଶ୍ରାଦ୍ଧଦେବତା ଓ ପିତୃଗଣ ମଧ୍ୟ ଆର୍ଯ୍ୟମାନଙ୍କୁ ବତ୍ସାସ୍ୱରୂପ କରି ଅପକ୍ୱ ମୃଣ୍ମୟ ପାତ୍ରରେ ଶ୍ରଦ୍ଧା ସହକାରେ କାବ୍ୟ ଅର୍ଥାତ୍ ପିତୃଗଣଙ୍କର ଅନ୍ନରୂପ ଦୁଗ୍ଧଦୋହନ କରିଥିଲେ । ସିଦ୍ଧଗଣ କପିଳଦେବଙ୍କୁ ବତ୍ସା ସ୍ୱରୂପ କରି ଅଣିମାଦି ସିଦ୍ଧି ଏବଂ ବିଦ୍ୟାଧରଗଣ ଆକାଶରୂପ ପାତ୍ରରେ ଖେଚରାଦି ବିଦ୍ୟାଦୋହନ କରିଥିଲେ । ୧୮, ୧୯ ।

ଅନ୍ୟାନ୍ୟ କିଂପୁରୁଷଗଣ, ମାୟାବୀଗଣ ମୟନାମକ ଦାନବକୁ ବତ୍ସାସ୍ୱରୂପ କଳ୍ପନା କରି ସେହି ଆକାଶରୂପ ପାତ୍ରରେ ସଂକଳ୍ପପ୍ରଭବା ଅନ୍ତର୍ଦ୍ଧାନ ଶକ୍ତିରୂପା ମାୟାଦୋହନ କରିଥିଲେ, ଯକ୍ଷ ରାକ୍ଷସ ପିଶାଚ ଓ ମାଂସାଶୀଗଣ ଭଗବାନ୍ ରୁଦ୍ରଙ୍କୁ ବତ୍ସାରୂପ କଳ୍ପନା କରି କପାଳପାତ୍ରରେ ରୁଧିର ସ୍ୱରୂପ ଆସବ ଦୋହନ କରିଥିଲେ । ୨୦, ୨୧ ।

ତଦନନ୍ତର ଅହି ଅର୍ଥାତ୍ ଫଣାହୀନ ସର୍ପ, ବୃଶ୍ଚିକାଦି ଏବଂ ଫଣାଯୁକ୍ତ ସର୍ପଗଣ ଓ ନାଗଗଣ ତକ୍ଷକଙ୍କୁ ବତ୍ସାରୂପେ କଳ୍ପନା କରି ମୁଖ ସ୍ୱରୂପ ପାତ୍ରରେ ବିଷମୟ ଦୁଗ୍ଧ ଦୋହନ କରିଥିଲେ । ୨୨ ।

---

ଶ୍ରାଦ୍ଧଦେବତା ପିତୃଗଣେ
ଶ୍ରଦ୍ଧାରେ କ୍ଷୀର ଜଳେ ଭଳେ
ଅର୍ଯ୍ୟମା ବତ୍ସା କରି ହସ୍ତେ
କାବ୍ୟ ଦୁହିଁଲେ ଆମ ପାତ୍ରେ ।୧୮
ସକଳ ସିଦ୍ଧଗଣ ରଙ୍ଗେ
କପିଳ ବତ୍ସା ଘେନି ସଙ୍ଗେ
ସଂକଳ୍ପମୟ କ୍ଷୀର ଧାରେ
ଦୁହିଁଲେ ଉନ ଉପକାରେ
ପୁଣି ମିଳିଲେ ବିଦ୍ୟାଧରେ
ଯେ ଯାହା ପାତ୍ର ଧରି କରେ
ଆନନ୍ଦ ମନେ କ୍ଷୀର ଦୁହିଁ.
ବସିଲେ ନିଜ ଘରେ ଯାଇଁ ।୧୯
ପୁଣି ମିଳିଲେ ପୁଣ୍ୟଜନେ
ମୟକୁ ବତ୍ସା କଳ୍ପି ମନେ
ମାୟାବୀ ଗଣ ପୁଣି ଆସି
ଧରଣୀ ସ୍ତନ ତଳେ ବସି
ଆନନ୍ଦ ପାତ୍ର କରି ମନ
ସର୍ବେ ଦୁହିଁଲେ ଅନ୍ତର୍ଦ୍ଧାନ ।୨୦ ।
ମିଳିଲେ ଯକ୍ଷ ରକ୍ଷଗଣେ
ଭୂତ ବେତାଳ ଯାତୁଧାନେ
କପାଳ ପାତ୍ରେ ସଦ୍ୟ ଦୁହିଁ
କ୍ଷୀର ରୁଧିର ମାଂସମୟୀ ।୨୧
ତକ୍ଷଣେ ସର୍ପଗଣେ ଆସି
ଧରଣୀ ସ୍ତନ ତଳେ ବସି
ତକ୍ଷକ ବତ୍ସା ରୂପ କରି
ସଦ୍ୟ ଦୁହିଁଲେ ସ୍ତନ ଧରି
ବିଳକୁ ପାତ୍ର କରି ରଙ୍ଗେ
ବିଷ ଦୁହିଁଲେ ଅତି ବେଗେ ।୨୨

ପଶବୋ ଯବସଂ କ୍ଷୀରଂ ବତ୍ସଂ କୃତ୍ୱା ଚ ଗୋବୃଷମ୍ ।
ଅରଣ୍ୟପାତ୍ରେ ଚାଧୁକ୍ଷନ୍ ମୃଗେନ୍ଦ୍ରେଣ ଚ ଦଂଷ୍ଟ୍ରିଣଃ । ୨୩ ।
କ୍ରବ୍ୟାଦାଃ ପ୍ରାଣିନଃ କ୍ରବ୍ୟଂ ଦୁଦୁହୁଃସ୍ୱେକଳେବରେ ।
ସୁପର୍ଣ୍ଣବତ୍ସା ବିହଗାଶ୍ଚରଞ୍ଚାଚରମେବ ଚ । ୨୪ ।
ବଟବତ୍ସାଶ୍ଚ ତରବଃ ପୃଥଗ୍ରସମୟଂ ପୟଃ ।
ଗିରୟୋ ହିମବଦ୍‌ବତ୍ସା ନାନାଧାତୂନ୍ ସ୍ୱସାନୁଷୁ । ୨୫ ।
ସର୍ବେ ସ୍ୱମୁଖ୍ୟବତ୍ସେନ ସ୍ୱେ ସ୍ୱେ ପାତ୍ରେ ପୃଥକ୍‌ପୟଃ ।
ସର୍ବକାମଦୁଘାଂ ପୃଥ୍ୱୀଂ ଦୁଦୁହୁଃ ପୃଥୁଭାବିତାମ୍ । ୨୬ ।
ଏବଂ ପୃଥ୍ୱାଦୟଃ ପୃଥ୍ୱୀମନ୍ନାଦାଃ ସ୍ୱନ୍ନମାତ୍ମନଃ ।
ଦୋହବତ୍ସାଦି ଭେଦେନ କ୍ଷୀରଭେଦଂ କୁରୁଦ୍‌ବହ । ୨୭ ।

---

ପଶୁମାନେ ରୁଦ୍ରଙ୍କ ବାହନ ବୃଷଭଙ୍କୁ ବତ୍ସାକରି ଅରଣ୍ୟ-ପାତ୍ରରେ ତୃଣାଦି ସ୍ୱରୂପ ଦୁଗ୍‌ଧ ଦୋହନ କଲେ, ଦଂଷ୍ଟ୍ରି ବା ଦନ୍ତ ପ୍ରଧାନ ପଶୁମାନେ ( ଯେଉଁମାନେ ମାଂସାଶୀ ) ସିଂହକୁ ବତ୍ସାକରି ନିଜନିଜର ଦେହ ପାତ୍ରରେ ମାଂସ ଦୁଗ୍‌ଧ ଦୋହନ କରିଥିଲେ, ପକ୍ଷୀମାନେ ଗରୁଡଙ୍କୁ ବତ୍ସାକରି କୀଟ ପ୍ରଭୃତି ଓ ଫଳାଦି ସ୍ୱରୂପ ଦୁଗ୍‌ଧ ଦୋହନ କରିଥିଲେ । ୨୩,୨୪ ।

ବୃକ୍ଷମାନେ ବଟବୃକ୍ଷକୁ ବତ୍ସାକରି ବିଭିନ୍ନପ୍ରକାର ରସ ସ୍ୱରୂପ ଦୁଗ୍‌ଧ ଏବଂ ପର୍ବତମାନେ ହିମାଳୟକୁ ବତ୍ସାକରି ବହୁପ୍ରକାର ଧାତୁଦ୍ରବ୍ୟ ରୂପ ଦୁଗ୍‌ଧ ଦୋହନ କରିଥିଲେ । ୨୫ ।

ସମସ୍ତ ଶ୍ରେଣୀର ଦୋଗ୍‌ଧା ନିଜନିଜର ସମ୍ପ୍ରଦାୟ ଶ୍ରେଷ୍ଠ ବ୍ୟକ୍ତିକୁ ବତ୍ସସ୍ୱରୂପ କରି ପୃଥୁଙ୍କ ପ୍ରଭାବରେ ବଶୀଭୂତ ପୃଥିବୀଠାରୁ ନିଜ ନିଜ ପାତ୍ରରେ ଇଚ୍ଛାନୁସାରେ ଦୁଗ୍‌ଧ ଦୋହନ କରିଥିଲେ । ୨୬ ।

ହେ କୁରୁଶ୍ରେଷ୍ଠ ବିଦୁର ! ଅନ୍ନଭୋଜୀ ପୃଥୁ ଏହିପରି ବିଭିନ୍ନପ୍ରକାର ବତ୍ସା ଓ ପାତ୍ର ଅବଲମ୍ବନକରି ନିଜନିଜର ଅଭିପ୍ରାୟ ଅନୁସାରେ ନାନାବିଧ ଦୁଗଧ ଦୋହନ କରିଥିଲେ । ୨୭ ।

---

ପଶୁଏ ମିଳି ପ୍ରୀତ ଲଗେ
ବୃଷକୁ ବତ୍ସା କରି ବେଗେ
ତୃଣ ଦୁହିଁଲେ ଯେତେ ମତେ
ପୃଥ୍ୱୀରେ ଥିଲେ ଅବା ଯେତେ
ସିଂହ ସହିତେ ପଶୁଗଣେ
ମାଂସ ଦୋହନକଲେ ବେଣେ ।୨୩।
ତକ୍ଷଣେ ଯାତୁଧାନେ ଆସି
ଧରଣୀ ପ୍ରୀତେ ତଳେ ବସି
ଶରୀର ପାତ୍ରେ କ୍ରବ୍ୟ ଦୁହିଁ
ଆନନ୍ଦ କଲେ ନିଜ ଦେହି

ପକ୍ଷିଏ କ୍ଷୀର ପାନ ଆଶେ
ମିଳିଲେ ଧରଣୀର ପାଶେ
ଗରୁଡ ବତ୍ସା କରି ବଳେ
ଦୋହନ କଲେ ମୁଖ ଛଳେ ।୨୪
ସକଳ ବୃକ୍ଷେ ଆଗ ସରି
ବଟ ବୃକ୍ଷକୁ ବତ୍ସା କରି
ସନ୍ତୋଷେ ଦୁହିଁ ରସମୟେ
କ୍ଷୀର କରଷି ନିଜ ଦେହେ
ହିମବନ୍ତକୁ ବତ୍ସା କରି
ରତ୍ନ ଦୁହିଁଲେ ସର୍ବଗିରି ।୨୫।

ପୃଥୁ ଭାବିତ ମହୀଶୋଭା
ସକଳମତେ କାମଦୁହା ।୨୬।
ଏମନ୍ତେ ପୃଥୁ ଆଦି ସର୍ବେ
କ୍ଷୀର ଦୁହିଁଲେ ଯେତେଭାବେ
ଯେତେକ ଲୋକ ମୁଖ୍ୟ ଆଦି
ଦୁହିଁଲେ ଜୀବନ ସମ୍ପାଦି । ୨୭

ତତୋ ମହୀପତିଃ ପ୍ରୀତଃ ସର୍ବକାମଦୁଘା ପୃଥୁଃ ।
ଦୁହିତୃତ୍ୱେ ଚକାରେମାଂ ପ୍ରେମ୍‌ଣା ଦୁହିତୃବତ୍ସଳଃ । ୨୮ ।
ଚୂର୍ଣ୍ଣୟଂଶ୍ଚ ଧନୁଷ୍କୋଟ୍ୟା ଗିରିକୂଟାନି ରାଜରାଟ୍ ।
ଭୂମଣ୍ଡଳମିଦଂ ବୈଣ୍ୟଃ ପ୍ରାୟଶ୍ଚକ୍ରେ ସମଂ ବିଭୁଃ । ୨୯ ।
ଅଥାସ୍ମିନ୍ ଭଗବାନ୍ ବୈଣ୍ୟଃ ପ୍ରଜାନାଂ ବୃତ୍ତିଦଃ ପିତା ।
ନିବାସାନ୍ କଳ୍ପୟାଞ୍ଚକ୍ରେ ତତ୍ର ତତ୍ର ଯଥାର୍ହତଃ । ୩୦ ।
ଗ୍ରାମାନ୍ ପୁରଃ ପତ୍ତନାନି ଦୁର୍ଗାଣି ବିବିଧାନି ଚ ।
ଘୋଷାନ୍ ବ୍ରଜାନ୍ ସଶିବିରାନାକରାନ୍ ଖେଟଖର୍ବଟାନ୍ । ୩୧ ।
ପ୍ରାକ୍ ପୃଥୋରିହ ନୈବୈଷା ପୁରଗ୍ରାମାଦିକଳ୍ପନା ।
ଯଥାସୁଖଂ ବସନ୍ତି ସ୍ମ ତତ୍ର ତତ୍ରାକୁତୋଭୟାଃ । ୩୨ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପୃଥ୍ୱୀଦୋହୋ ନାମ ଅଷ୍ଟାଦଶୋଽଧ୍ୟାୟଃ ।୧୮।

---

ତଦନନ୍ତର ସନ୍ତୁଷ୍ଟ ଚିତ୍ତ ରାଜା ପୃଥୁ ପୃଥ୍ୱୀପ୍ରତି ନିଜନିଜର ସନ୍ତାନୋଚିତ ବାତ୍ସଲ୍ୟ ପରାୟଣ ହୋଇ ସମସ୍ତଙ୍କର କାମ୍ୟ ଫଳଦାତ୍ରୀ ପୃଥ୍ୱୀଙ୍କୁ ସ୍ନେହକରି ନିଜର କନ୍ୟାପରି ମନେ କରିଥିଲେ । ୨୮ ।

ରାଜାଧିରାଜ ପୃଥୁ ଧନୁର ଅଗ୍ରଭାଗରେ ପର୍ବତର ଶୃଙ୍ଗ ଗୁଡ଼ିକ ଚୂର୍ଣ୍ଣକରି ଏହି ଭୂମଣ୍ଡଳକୁ ସମତଳ କରିଦେଇଥିଲେ । ୨୯ ।

ପ୍ରଜାମାନଙ୍କର ଜୀବିକା ସମ୍ପାଦନ କାରୀ ପିତୃତୁଲ୍ୟ ରାଜା ପୃଥୁ ଏହି ଭୂମଣ୍ଡଳରେ ଯେଉଁ ସ୍ଥାନ ଯାହାଲାଗି ଉପଯୁକ୍ତ, ତଦନୁସାରେ ପ୍ରଜାମାନଙ୍କର ବାସସ୍ଥାନ ନିର୍ଦ୍ଦେଶକରି ଦେଇଥିଲେ । ୩୦ ।

ଗ୍ରାମ, ପୁର, ନଗର, ବିବିଧ ଦୁର୍ଗ, ଗୋପପଲ୍ଲୀ, ଗୋଶାଳା, ଶିବିର, ଆକର, କୃଷିଗ୍ରାମ, ପାର୍ବତ୍ୟଗ୍ରାମ ଇତ୍ୟାଦି ପୃଥୁ ନିର୍ଦ୍ଦେଶ କରିଥିଲେ । ୩୧ ।

ପୃଥୁଙ୍କ ଶାସନରେ ପୂର୍ବେ ପୁରଗ୍ରାମ ପ୍ରଭୃତି ଏପରି ବିଭାଗ ନ ଥିଲା, ଏହିପରି ବିଭିନ୍ନସ୍ଥାନ ନିର୍ଦ୍ଦିଷ୍ଟ ହେବାରୁ ପ୍ରଜାମାନେ ନିଃଶଙ୍କ ଚିତ୍ତରେ ସୁଖରେ ବାସ କରିଥିଲେ । ୩୨ ।

---

ପୃଥୁ ଧରଣୀ ମୁଖ ଚାହିଁ
ଆନନ୍ଦ ମନେ ବିଚାରଇ
ଏ ମୋର ପାଇଁ ଦୁଃଖ ସହି
ରୂପ ବହିଲା ଧେନୁ ହୋଇ
ଯେ ଯାହା ସୁଖେ ପୟେନେଲେ
ସର୍ବେ ତୋଷିଲେ ମହୀତଳେ
ସକଳେ ଲଭିଲେ ଜୀବନ
ଦେଖ ଏହାର ଦେହ ଧନ୍ୟ
ଏ ମୋର ଦୁହିତା ହୋଇବ
ଏତେ ବର୍ଣ୍ଣିଲେ ସର୍ବ ଜୀବ
ଜୀବର ଜୀବଦାତା ଯେଣୁ
ଏହାର ପୃଥ୍ୱୀ ନାମ ତେଣୁ
ହୋଇବ ଏ ମୋର ପ୍ରମାଣ
ଯେଣୁ ଏ ସଂସାର ଧାରଣ
ଏମନ୍ତେ ପୃଥ୍ୱୀ ନାମ କରି
ସୁଖେ ପାଳିଲେ ବସୁନ୍ଧରୀ ।୨୮।
ଏମନ୍ତେ ପୃଥ୍ୱୀ ହୋଇ ରାଜା
ସମେ ପାଳିଲେ ଜନ ପ୍ରଜା
ଭୂମି ଉପରେ ନାନା ଦେଶ
ସକଳ ସ୍ଥାପି ଉପଦେଶ
ଜନଙ୍କୁ ସ୍ଥାପି ପିତା ପ୍ରାୟେ
ସକଳେ ରହିଲେ ନିର୍ଭୟେ
ନିଶ୍ଚିନ୍ତେ ରହିଲେ ସକଳେ
ଅଚଳଯେସନ ନିଶ୍ଚଳେ ।୨୯-୩୨।
ବୋଲଇ ଦାସ ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ



## ଊ ନ ବିଂ ଶ ଅ ଧ୍ୟା ୟ ।

ଊନବିଂଶେଽଶ୍ୱମେଧାଙ୍ଗହୟାପହରଣାତ୍ ପୃଥୋଃ ।
ଇନ୍ଦ୍ରଂ ହନ୍ତୁଂ ପ୍ରବୃତ୍ତସ୍ୟ ଧାତ୍ରା ବାରଣମୁଚ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ଅଥାଦୀକ୍ଷତ ରାଜର୍ଷିର୍ହୟମେଧଶତେନ ସଃ ।
ବ୍ରହ୍ମାବର୍ତ୍ତେ ମନୋଃ କ୍ଷେତ୍ରେ ଯତ୍ର ପ୍ରାଚୀ ସରସ୍ୱତୀ । ୧ ।
ତଦଭିପ୍ରେତ୍ୟ ଭଗବାନ୍ କର୍ମାତିଶୟମାତ୍ମନଃ ।
ଶତକ୍ରତୁର୍ନ ମମୃଷେ ପୃଥୋର୍ଯଜ୍ଞମହୋତ୍ସବମ୍ । ୨ ।
ଯତ୍ର ଯଜ୍ଞପତିଃ ସାକ୍ଷାଦ୍‌ଭଗବାନ୍ ହରିରୀଶ୍ୱରଃ ।
ଅନ୍ୱଭୂୟତ ସର୍ବାତ୍ମା ସର୍ବଲୋକଗୁରୁଃ ପ୍ରଭୁଃ । ୩ ।

---

### ବ୍ରହ୍ମା ପୃଥୁଙ୍କୁ ଇନ୍ଦ୍ରବଧ କରିବାରୁ ନିବାରଣ ପ୍ରସଙ୍ଗ ।

ଊନବିଂଶ ଅଧ୍ୟାୟରେ ଯଜ୍ଞୀୟ ଅଶ୍ୱ ଇନ୍ଦ୍ରହରଣ କରନ୍ତେ ପୃଥୁ ଜାଣିପାରି ଇନ୍ଦ୍ରଙ୍କୁ ବଧକରିବାକୁ ଉଦ୍ୟତ ହେବାରୁ ବ୍ରହ୍ମା ଆସି ସେଥିରୁ ନିବୃତ୍ତ କରିବା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀମୈତ୍ରେୟ କହିଲେ :—

ଅନନ୍ତର ମନୁଙ୍କକ୍ଷେତ୍ର ବ୍ରହ୍ମାବର୍ତ୍ତଦେଶରେ ଯାହାର ପୂର୍ବଭାଗରେ ସରସ୍ୱତୀ ନଦୀ ପ୍ରବାହିତା; ସେଠାରେ ରାଜର୍ଷି ପୃଥୁ ଶତାଶ୍ୱମେଧ ଯଜ୍ଞ କରିବାକୁ ଦୀକ୍ଷା ଲାଭ କରିଥିଲେ । ୧ ।

ଭଗବାନ୍ ଇନ୍ଦ୍ର ପୃଥୁଙ୍କର ଯଜ୍ଞୋତ୍ସବ ଦେଖି ମନେକଲେ, ଏହାତ ମୋର କର୍ମକୁ ଅତିକ୍ରମ କରି ଗଲା, ଏହା ଭାବି ସେ ଆଉ ସହ୍ୟ କରିପାରିଲେ ନାହିଁ । ୨ ।

ସର୍ବାନ୍ତର୍ଯାମୀ, ସର୍ବଲୋକ ପୂଜ୍ୟ ଭଗବାନ୍ ଶ୍ରୀହରି ସେହି ଯଜ୍ଞରେ ସାକ୍ଷାତ୍ ଯଜ୍ଞେଶ୍ୱର ରୂପେ ସମସ୍ତ ପର୍ଯ୍ୟବେକ୍ଷଣ କରୁଥିଲେ । ୩ ।

---

ଅଶ୍ୱହରଣେ ବହିଦୋଷ, ପୃଥୁ ଚଳନ୍ତେ ଇନ୍ଦ୍ରନାଶ । ତାଙ୍କୁ ନିଷେଧକଲେ ଧାତା, ଊନବିଂଶରେ ଏହିକଥା ।୦।

ମୈତ୍ରେୟ ଉବାଚ—

ଏବେ ହୋ ଶୁଣ ବନ୍ଧୁ ଗାଥା
କହିବା ବନ୍ଧୁ ଯଜ୍ଞ କଥା
ମିଳି ସକଳ ମୁନିଜନେ
ସନ୍ତୋଷେ ପୃଥୁ ସନ୍ନିଧାନେ
ଯଜ୍ଞ କରିଣ ଉଦଯୋଗେ
ସର୍ବ ସମ୍ଭାର ଆଣି ବେଗେ
ସୁପ୍ରାଚୀ ସରସ୍ୱତୀ ତୀର୍ଥେ
ଆରମ୍ଭ କଲେ ବ୍ରହ୍ମାବର୍ତ୍ତେ । ୧ ।
ଯଜ୍ଞ ସମ୍ଭାର ଇନ୍ଦ୍ର ଦେଖି
ନ ସହି ମନେ ହେଲ ଦୁଃଖୀ । ୨ ।
ସେ ଯଜ୍ଞେ ଯଜ୍ଞପତି ହରି
ପ୍ରତ୍ୟକ୍ଷ ହେଲେ ଦୟା କରି । ୩ ।

ଅନ୍ୱିତୋ ବ୍ରହ୍ମଶର୍ବାଭ୍ୟାଂ ଲୋକପାଲୈଃ ସହାନୁଗୈଃ ।
ଉପଗୀୟମାନୋ ଗନ୍ଧର୍ବୈର୍ମୁନିଭିଶ୍ଚାପ୍ସରୋଗଣୈଃ । ୪ ।
ସିଦ୍ଧା ବିଦ୍ୟାଧରା ଦୈତ୍ୟା ଦାନବା ଗୁହ୍ୟକାଦୟଃ ।
ସୁନନ୍ଦନନ୍ଦପ୍ରମୁଖାଃ ପାର୍ଷଦାଃ ପ୍ରବରା ହରେଃ । ୫ ।
କପିଲୋ ନାରଦୋ ଦତ୍ତୋ ଯୋଗଶାଃ ସନକାଦୟଃ ।
ତମନ୍ୱୀୟୁର୍ଭାଗବତା ଯେ ଚ ତତ୍ସେବନୋତ୍ସୁକାଃ । ୬ ।
ଯତ୍ର ଧର୍ମଦୁଘା ଭୂମିଃ ସର୍ବକାମଦୁଘା ସତୀ ।
ଦୋଗ୍ଧି ସ୍ମାଭୀପ୍‌ସିତାର୍ଥାନ୍ ଯଜମାନସ୍ୟ ଭାରତ । ୭ ।
ଊହୁଃ ସର୍ବରସାନ୍ ନଦ୍ୟଃ କ୍ଷୀରଦଧ୍ୟନ୍ନ ଗୋରସାନ୍ ।
ତରବୋ ଭୂରିବର୍ଷ୍ମାଣଃ ପ୍ରାସୂୟନ୍ତ ମଧୁଚ୍ୟୁତଃ । ୮ ।

---

ତାଙ୍କ ସହିତ ବ୍ରହ୍ମା ଓ ମହେଶ୍ୱର ସେଠାରେ ପ୍ରତ୍ୟକ୍ଷରୂପେ ବିଦ୍ୟମାନ ଥିଲେ, ଏବଂ ଲୋକପାଳମାନେ ଗନ୍ଧର୍ବମାନେ, ମୁନିମାନେ, ଅପ୍ସରାମାନେ, ନିଜନିଜର ଅନୁଚରବର୍ଗଙ୍କ ସହିତ ସେଠାରେ ଶ୍ରୀହରିଙ୍କର ଯଶୋଗାନ କରି ସ୍ତବ କରୁଥିଲେ । ୪ ।

ସିଦ୍ଧ, ବିଦ୍ୟାଧର, ଦୈତ୍ୟ, ଦାନବ, ଯକ୍ଷପ୍ରଭୃତି; ସୁନନ୍ଦନନ୍ଦପ୍ରଭୃତି, ପ୍ରଧାନ ପ୍ରଧାନ ଅନୁଚର ଭୃଗି, କପିଳ, ନାରଦ, ଦତ୍ତାତ୍ରେୟ, ଯୋଗସିଦ୍ଧ, ସନକାଦି କୁମାରଗଣ, ଏବଂ ଅନ୍ୟାନ୍ୟଭକ୍ତମାନେ ତାହାଙ୍କର ସେବା କରିବା ଅଭିପ୍ରାୟରେ ସମସ୍ତେ ଶ୍ରୀହରିଙ୍କର ଅନୁଗାମୀ ହୋଇଥିଲେ । ୫,୬ ।

ହେ ବିଦୁର ! ଏହି ଯଜ୍ଞରେ ସକଳଫଳଦାତ୍ରୀ ପୃଥିବୀ ହବିଃ (ଘୃତ) ଦାତ୍ରୀ ଧେନୁ ମୂର୍ତ୍ତି ଧାରଣ କରି ଯଜ୍ଞକର୍ତ୍ତା ପୃଥୁଙ୍କ ଅଭିଳଷିତ ପଦାର୍ଥ ନିଜେ ନିଜେ ଅର୍ପଣ କରିଥିଲେ । ୭ ।

ନଦୀମାନେ ଇକ୍ଷୁ ଦ୍ରାକ୍ଷା ପ୍ରଭୃତି ରସତୁଲ୍ୟ ରସ ବହନ କରିଥିଲେ ଏବଂ ବୃହତ୍ ବୃକ୍ଷମାନେ ମଧୁବର୍ଷଣକାରୀ ହୋଇ ଦୁଗ୍ଧ, ଦଧି, ଅନ୍ନ, ଘୃତ, ତକ୍ର ( ଘୋଳଦହି ) ପ୍ରଭୃତି ବିବିଧ ଉପହାର ପ୍ରଦାନ କରିଥିଲେ । ୮ ।

---

ଶଙ୍କର ପଦ୍ମ-ଯୋନି ଭୂଲେ
ମିଳି ସକଳ ଦିଗପାଳେ
ଗନ୍ଧର୍ବ ଅପସରା ଗଣେ
ମୁନିଏ ବେଦ ଉଚ୍ଚାରଣେ
ଆନନ୍ଦେ ଗୀତ ନୃତ୍ୟ ସ୍ତୁତି
ସିଦ୍ଧ ଗୁହ୍ୟକ ସନ୍ତି ସନ୍ତି
ଦାନବ ଦୈତ୍ୟ ବିଦ୍ୟାଧରେ
ସେ ଯଜ୍ଞେ ମିଳିଲେ ସକଳେ

ସୁନନ୍ଦ ନନ୍ଦ ଆଦି ମାନେ
ହରିର ପାରିଷଦଗଣେ
କପିଳ ନାରଦ ଯେ ଦତ୍ତ
ସନକ ଆଦି ଉପଗତ । ୪-୬ ।
ସେ ପୃଥୁ ଯଜ୍ଞେ ବସୁମତୀ
ଧେନୁର ପ୍ରାୟ ଦୁଗ୍ଧବତୀ
କାମଧେନୁର ପ୍ରାୟ ହୋଇ
ସର୍ବ ସମ୍ପଦ ଦେଲି ମହୀ

ନଦୀଏ ଇକ୍ଷୁ ଦ୍ରାକ୍ଷା ଜଳେ
ବହିଲେ ଲହରୀ ଭଲେ ଭଲେ
ଘୃତ ସଂଯୋଗେ ଦଧି ଅନ୍ନ
ତୋଷେ ଭୁଞ୍ଜନ୍ତି ସର୍ବଜନ
ସକଳ ବୃକ୍ଷେ ମଧୁ ସନ୍ତି
ଜୀମୂତ ପ୍ରାୟ ବରଷନ୍ତି । ୭,୮ ।

ସିନ୍ଧବୋ ରତ୍ନନିକରାନ୍ ଗିରୟୋଽନ୍ନଂ ଚତୁର୍ବିଧମ୍ ।
ଉପାୟନମୁପାଜହ୍ରୁଃ ସର୍ବଲୋକାଃ ସପାଲକାଃ । ୯ ।
ଇତି ଚାଧୋକ୍ଷଜେଶସ୍ୟ ପୃଥୋସ୍ତୁ ପରମୋଦୟମ୍ ।
ଅସୂୟନ୍ ଭଗବାନିନ୍ଦ୍ରଃ ପ୍ରତିଘାତମଚୀକରତ୍ । ୧୦ ।
ଚରମେଣାଶ୍ୱମେଧେନ ଯଜମାନେ ଯଜୁଷ୍ପତିମ୍ ।
ବୈଣ୍ୟେ ଯଜ୍ଞପଶୁଂ ସ୍ପର୍ଦ୍ଧନ୍ନପୋବାହ ତିରୋହିତଃ । ୧୧ ।
ତମତ୍ରିର୍ଭଗବାନୈକ୍ଷତ୍ ତ୍ୱରମାଣଂ ବିହାୟସା ।
ଆମୁକ୍ତମିବ ପାଷଣ୍ଡଂ ଯୋଽଧର୍ମେ ଧର୍ମବିଭ୍ରମଃ । ୧୨ ।
ଅତ୍ରିଣା ଚୋଦିତୋ ହନ୍ତୁଂ ପୃଥୁପୁତ୍ରୋ ମହାରଥଃ ।
ଅନ୍ୱଧାବତ ସଂକ୍ରୁଦ୍ଧସ୍ତିଷ୍ଠ ତିଷ୍ଠେତି ଚାବ୍ରବୀତ୍ । ୧୩ ।

---

ସମୁଦ୍ରଗଣ ରତ୍ନ ସମୂହ, ପର୍ବତମାନେ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ, ଏହି ଚତୁର୍ବିଧ ଅନ୍ନ ଏବଂ ସର୍ବଲୋକପାଳକଗଣ ବିବିଧ ଉପହାର ପ୍ରଦାନ କରିଥିଲେ । ୯ ।

ଶ୍ରୀହରିଙ୍କ ସହାୟତାରେ ପୃଥୁଙ୍କର ଯଜ୍ଞ ସର୍ବବିଧ ଶ୍ରୀଯୁକ୍ତ ହୋଇଥିଲା, ସ୍ୱର୍ଗରାଜ ଇନ୍ଦ୍ର ଈର୍ଷା ପରବଶ ହୋଇ ବିଘ୍ନ ଘଟାଇବାକୁ ଆରମ୍ଭ କଲେ । ୧୦ ।

ପୃଥୁ ଯେତେବେଳେ ସର୍ବଶେଷ ଅଶ୍ୱମେଧ ଦ୍ୱାରା ଯଜ୍ଞେଶ୍ୱର ଶ୍ରୀହରିଙ୍କୁ ଅର୍ଚ୍ଚନା କରିବାକୁ ଆରମ୍ଭ କଲେ, ସେତେବେଳେ ଇନ୍ଦ୍ର ଏକାନ୍ତ ଈର୍ଷାନ୍ୱିତଭାବରେ ସେଠାରୁ ଲୁଚି ଯାଇ ତାହାଙ୍କର ଯଜ୍ଞୀୟ ଅଶ୍ୱଟି ଅପହରଣ କରିଥିଲେ । ୧୧ ।

ପାପକାର୍ଯ୍ୟ କଲାବେଳେ ଧର୍ମକାର୍ଯ୍ୟ କରୁଅଛୁ ବୋଲି ଯେଉଁ ପାଷଣ୍ଡ ବେଶ ଧାରଣ କଲେ ଲୋକଙ୍କ ମନରେ ଭ୍ରାନ୍ତ ଜନ୍ମେ, ସେହି ପାଷଣ୍ଡବେଶ ପରିଧାନ କରି ଇନ୍ଦ୍ର ଆକାଶ ମାର୍ଗରେ ଦ୍ରୁତବେଗରେ ପଳାୟନ କଲାବେଳେ ମୁନିବର ଅତ୍ରି ତାହା ଦେଖିଲେ । ୧୨ ।

ଅତ୍ରି ଦେଖିଲେ ମହାବଳଶାଳୀ ପୃଥୁଙ୍କପୁତ୍ର ଅତ୍ୟନ୍ତ କ୍ରୁଦ୍ଧ ହୋଇ ଇନ୍ଦ୍ରଙ୍କ ପଶ୍ଚାତ୍ ଧାବମାନ ହେଉଅଛନ୍ତି ଏବଂ 'ପଳାଅ ନାହିଁ ପଳାଅ ନାହିଁ' ଏହିପରି କହିଲେ । ୧୩ ।

---

ସମୁଦ୍ରେ ନାନା ରତ୍ନେ ପୂରି
ଗର୍ଜ୍ଜନ୍ତି ଉଲ୍ଲୋଳ ଲହରି
ପର୍ବତେ ଚତୁର୍ବିଧ ଅନ୍ନ
ଦେଇ ରଞ୍ଜିଲେ ପୃଥୁମନ
ଲୋକପାଳକେ ଲୋକ ବୁଲେ
ସର୍ବ ସମ୍ଭାର ସମ୍ପାଦିଲେ । ୯ ।
ପୃଥୁର ଯଜ୍ଞାରମ୍ଭ ବୁଝି
ବାସବ ମନେ ବିଚାରଇ

ଏ ପୃଥୁ ଶତକ୍ରତୁ କଲେ
ଲଭିବ ଇନ୍ଦ୍ରପଦ ଭଲେ
ମୋର ସମ୍ପଦ ଯିବ ନାଶ
ଏମନ୍ତ ଚିନ୍ତି ଛାଡ଼େ ଶ୍ୱାସ । ୧୦ ।
ଯଜ୍ଞର କିଛି ଦିନ ଅନ୍ତେ
ଆତ୍ମାର ହିତ ଚିନ୍ତି ଚିତ୍ତେ
ଯଜ୍ଞର ପଶୁ ହରି ନେଲା
ନିଜ ଭୁବନେ ବିଜେ କଲା । ୧୧ ।

ଆକାଶ ମାର୍ଗେ ଇନ୍ଦ୍ର ଗଲା
ପାଷାଣ୍ଡ ଧର୍ମ୍ମ ଆଚରିଲା
ଧର୍ମ୍ମେ ବିଭ୍ରମ ତାର ମନ
ସଭିଙ୍କୁ ଦିଶୁ ଛନ୍ନ ଛନ୍ନ
ଅତ୍ରିଯେ ଯଜ୍ଞଶାଳେ ଥିଲେ
ଅଶ୍ୱର ହରଣ ଜାଣିଲେ
ପୃଥୁ-ପୁତ୍ରଙ୍କୁ ଗୁଣି ବେଗେ
ଇନ୍ଦ୍ରର କର୍ମ୍ମ ତାର ଆଗେ

ତଂ ତାଦୃଶାକୃତିଂ ବୀକ୍ଷ୍ୟ ମେନେ ଧର୍ମ୍ମଂ ଶରୀରିଣମ୍ ।
ଜଟିଲଂ ଭସ୍ମନାଚ୍ଛନ୍ନଂ ତସ୍ମୈ ବାଣଂ ନ ମୁଞ୍ଚତି । ୧୪ ।
ବଧାନ୍ନିବୃତ୍ତଂ ତଂ ଭୂୟୋ ହନ୍ତବେଽତ୍ରିରଚୋଦୟତ୍ ।
ଜହି ଯଜ୍ଞହନଂ ତାତ ମହେନ୍ଦ୍ରଂ ବିବୁଧାଧମମ୍ । ୧୫ ।
ଏବଂ ବୈଣ୍ୟସୁତଃ ପ୍ରୋକ୍ତସ୍ତ୍ୱରମାଣଂ ବିହାୟସା ।
ଅନ୍ୱଦ୍ରବଦଭିକ୍ରୁଦ୍ଧୋ ଗୃଧ୍ରରାଡ଼ିବ ରାବଣମ୍ । ୧୬ ।
ସୋଽଶ୍ୱଂ ରୂପଞ୍ଚ ତଦ୍ଧିତ୍ୱା ତସ୍ମା ଅନ୍ତର୍ହିତଃ ସ୍ୱରାଟ୍ ।
ବୀରଃ ସ୍ୱପଶୁମାଦାୟ ପିତୁର୍ଯଜ୍ଞମୁପେୟିବାନ୍ । ୧୭ ।

---

ଇନ୍ଦ୍ରଙ୍କ ମସ୍ତକରେ ଜଟା ଓ ଶରୀର ଭସ୍ମାଚ୍ଛନ୍ନ ଓ ତାହାଙ୍କର ଆକୃତି ଦେଖି ରାଜପୁତ୍ର ତାଙ୍କ ପ୍ରତି ବାଣ ପ୍ରୟୋଗ ନ କରି ନିବୃତ୍ତି ହେଲେ । ୧୪ ।

ଅତ୍ରି ପୃଥୁତନୟଙ୍କୁ ଇନ୍ଦ୍ରବଧରୁ ନିବୃତ୍ତି ଦେଖି ପୁନର୍ବାର ଶତ୍ରୁ ନିବାରଣ ନିମିତ୍ତ ଉତ୍ସାହିତ କରି କହିଲେ "ହେ ବତ୍ସ ! ତୁମ୍ଭ ପିତାଙ୍କର ଯଜ୍ଞ ବିନାଶକାରୀ ଏହି ଦେବାଧମ ଇନ୍ଦ୍ରକୁ ବିନାଶ କର" । ୧୫ ।

ପକ୍ଷୀରାଜ ଜଟାୟୁ ଯେପରି ରାବଣର ପଶ୍ଚାତ୍‌ଧାବିତ ହୋଇଥିଲେ, ସେହିପରି ମହର୍ଷି ଅତ୍ରିଙ୍କ ବାକ୍ୟ ଶୁଣି ପୃଥୁତନୟ ଅତ୍ୟନ୍ତ କ୍ରୁଦ୍ଧ ଭାବରେ ଇନ୍ଦ୍ରଙ୍କ ପଶ୍ଚାତ୍ ଧାବନ କରିଥିଲେ । ୧୬ ।

ସେତେବେଳେ ଇନ୍ଦ୍ର ପାଷଣ୍ଡବେଶ ପରିତ୍ୟାଗ କରି ଯଜ୍ଞ ପଶୁକୁ ଛାଡ଼ିଦେଇ ଅନ୍ତର୍ହିତ ହେଲେ । ମହାବୀର ପୃଥୁପୁତ୍ର ଯଜ୍ଞାଶ୍ୱ ଗ୍ରହଣ କରି ପିତାଙ୍କର ଯଜ୍ଞସ୍ଥଳରେ ଉପସ୍ଥିତ ହେଲେ । ୧୭ ।

---

କହିଲେ ଅତ୍ରିହିର ବାଣୀ
ପୃଥୁ-ନନ୍ଦନ ତାହା ଶୁଣି
ଧନୁ ଶରକୁ ଧରି କରେ
ଶୂନ୍ୟେ ଧାଇଁଲା କୋପଭରେ
ଡାକଇ ରହ ରହ ବାଣୀ
ସଭୟେ ଇନ୍ଦ୍ର ତାହା ଶୁଣି
ନିଜ ଶରୀର ଛଳ କଲା
ଜଟିଳ ରୂପ ପ୍ରକାଶିଲା
ଭସ୍ମ ଭୂଷିତ ଦେହ ରହି.
ପୃଥୁ ନନ୍ଦନ ବିଚାରଇ
ଜଟିଳ ଭସ୍ମ ଏହା ଗାତ୍ରେ
ଏହାକୁ ମାରିବ କେମନ୍ତେ
ଏମନ୍ତ ମନେ ବିଚାରିଲା
ଇନ୍ଦ୍ରକୁ ବାଣ ନ ଛାଡ଼ିଲା ।୧୨-୧୪
ତାର ରହିବା ପଥ ଦେଖି
ଅତ୍ରି ଯଜ୍ଞଶାଳ ଉପେକ୍ଷି
ବୋଲଇ ଇନ୍ଦ୍ର ବେଗେ ମାର
ସ୍ୱଭାବେ ଯଜ୍ଞ-ଅଶ୍ୱ ଚୋର
ଡାକନ୍ତି ମାର ମାର ବେଗେ
ତା ଶୁଣି ଇନ୍ଦ୍ର ଶୂନ୍ୟ ମାର୍ଗେ
ଭୟେ ଯାଉଁଛି ଦଶ ଦଗେ
ସ୍ୱଭାବେ କେହି ନାହିଁ ପାଶେ ।୧୫
ଏମନ୍ତ ଅତ୍ରିର ବଚନ
ଶୁଣନ୍ତେ ପୃଥୁର ନନ୍ଦନ
ଧାଇଁଲା ଶୂନ୍ୟେ କୋପ କରି
ହସ୍ତୀକୁ ଯେସନେ କେଶରୀ ।୧୬
ଏ ସବୁ ଦେଖି ଜ୍ରାସମନ
ଅଶ୍ୱକୁ ଛାଡ଼ି ଅନ୍ତର୍ଦ୍ଧାନ
ରହିଲା ଶୂନ୍ୟମାର୍ଗେ ଯାଇ
ପୃଥୁ ନନ୍ଦନ ବିଚାରଇ
ଅଶ୍ୱକୁ ନେଇ ମହାବେଗେ
ଇନ୍ଦ୍ରକୁ ଚାହେଁ ଦଶଦଗେ
ନ ଦେଖି ପିତା ଯଜ୍ଞସ୍ଥାନେ
ମିଳିଲା ଅତ୍ରି ସନ୍ନିଧାନେ । ୧୭।

ତତ୍ରସ୍ୟ ଶ୍ରୁଦ୍‌ଭୁତଂ କର୍ମ ବିଚକ୍ଷ୍ୟ ପରମର୍ଷୟଃ ।
ନାମଧେୟଂ ଦଦୁସ୍ତସ୍ମୈ ବିଜିତାଶ୍ୱ ଇତି ପ୍ରଭୋ ।୧୮।
ଉପସୃଜ୍ୟ ତମସ୍ତୀବ୍ରଂ ଜହାରାଶ୍ୱଂ ପୁନର୍ହରିଃ ।
ଚଷାଲଯୂପତଶ୍ଛନ୍ନୋ ହିରଣ୍ୟରଶନଂ ବିଭୁଃ । ୧୯ ।
ଅତ୍ରିଃ ସନ୍ଦର୍ଶୟାମାସ ତ୍ୱରମାଣଂ ବିହାୟସା ।
କପାଲଖଟ୍ୱାଙ୍ଗଧରଂ ବୀରୋ ନୈନମବାଧତ । ୨୦ ।
ଅତ୍ରିଣା ଚୋଦିତସ୍ତସ୍ମୈ ସନ୍ଦଧେ ବିଶିଖଂ ରୁଷା ।
ସୋଽଶ୍ୱଂ ରୂପଞ୍ଚ ତଦ୍ଧିତ୍ୱା ତସ୍ମାଦନ୍ତର୍ହିତଃ ସ୍ୱରାଟ୍ । ୨୧ ।
ବୀରଶ୍ଚାଶ୍ୱମୁପାଦାୟ ପିତୃୟଜ୍ଞମଥାବ୍ରଜତ୍ ।
ତଦବଦ୍ୟଂ ହରେ ରୂପଂ ଜଗୃହୁର୍ଜ୍ଞାନଦୁର୍ବଳାଃ ।୨୨।

---

ହେ ପ୍ରଭୋ ! ମହର୍ଷିଗଣ ପୃଥୁପୁତ୍ରଙ୍କର ଏହିପରି ଅଦ୍ଭୁତ କାର୍ଯ୍ୟ ଦେଖି ତାହାଙ୍କୁ **'ବିଜିତାଶ୍ୱ'** ଉପାଧି ପ୍ରଦାନ କରିଥିଲେ । ୧୮ ।

ସେହି ଅଶ୍ୱ ଯୂପକାଷ୍ଠର ଅଗ୍ରଭାଗରେ ଆବଦ୍ଧ ଥିଲା । ସେହି ସମୟରେ ଇନ୍ଦ୍ର ଘୋର ଅନ୍ଧକାର ସୃଷ୍ଟିକରି ଶୃଙ୍ଖଳାସହ ସେହି ଅଶ୍ୱଟିକୁ ପୁନର୍ବାର ହରଣ କରିନେଲେ । ୧୯ ।

ପୁନର୍ବାର ଅଶ୍ୱ ହରଣ କରି ଆକାଶମାର୍ଗରେ ପଳାୟନ କରୁଥିବା ଅତ୍ରି ପୃଥୁ ପୁତ୍ରଙ୍କୁ ଦେଖାଇ ଦେଲେ । ସେ ଏହା ଦେଖି କପାଳ ଖଟ୍ୱାଙ୍ଗଧର ଇନ୍ଦ୍ରଙ୍କୁ ଆଉ ଅନୁସରଣ କଲେ ନାହିଁ । ୨୦ ।

ଅତ୍ରିଙ୍କ କର୍ତ୍ତୃକ ପ୍ରଣୋଦିତ ହୋଇ ସେ ଇନ୍ଦ୍ରଙ୍କ ପ୍ରତି ତୀକ୍ଷ୍ଣଶରଣର ନିକ୍ଷେପ କରିଥିଲେ, ସେତେବେଳେ ଇନ୍ଦ୍ର ନିଜର ଇଚ୍ଛାନୁସାରେ ରୂପଧାରଣ କରି ଅଶ୍ୱ ପରିତ୍ୟାଗ କରି ଅନ୍ତର୍ହିତ ହେଲେ ।୨୧

ମହାବୀର ପୃଥୁତନୟ ପୁନର୍ବାର ଅଶ୍ୱଆଣି ଯଜ୍ଞ ସ୍ଥଳରେ ଉପସ୍ଥିତ ହେଲେ, ମନ୍ଦବୁଦ୍ଧିମାନେ ଇନ୍ଦ୍ରଙ୍କର ଏହିପରିତ୍ୟକ୍ତ ନିନ୍ଦିତ ରୂପ ଗ୍ରହଣ କଲେ । ୨୨ ।

---

ଅଶ୍ୱର ରଜ୍ଜୁ କରେ ଧରି
ଅତ୍ରି ଚରଣେ ନମସ୍କରି
ତାର ଅଦ୍ଭୁତ କର୍ମ ଦେଖି
ମୁନିଏ ନାମ ଉପଲକ୍ଷି
ବିଷ୍ଣୁ ଉଦ୍ଦେଶି ଆଣେ ଅଶ୍ୱ
ଦେଲେ ତା ନାମ ବିଜିତାଶ୍ୱ ।୧୮
ପୁଣିହିଁ ରଜନୀ ପ୍ରବେଶେ
ଇନ୍ଦ୍ର ମିଳିଲେ ଯଜ୍ଞଦେଶେ

ଯଜ୍ଞର ଯୂପ ତଳୁ ଛାଡ଼ି
ହରିଲା ସୁବର୍ଣ୍ଣ ରସନେ
ବିସ୍ତରି ଅନ୍ଧକାର ଛନେ
ଅଶ୍ୱକୁ ପୁଣି ନେଇଗଲେ ।୧୯,୨୦
ଅତ୍ରି ଦେଖିଲା ଶୂନ୍ୟ ମାର୍ଗେ
ବାସେ ପଳାଏ ଇନ୍ଦ୍ର ବେଗେ
ବିଜିତାଶ୍ୱର ମୁଖ ଚାହିଁ
ବୋଲଇ ଅଶ୍ୱ ଆଣ ଯାଇ

ତା ଶୁଣି ହସ୍ତେ ଧନୁ ଧରି
ଧାଇଁଲା ଘୋର ନାଦ କରି
ଡାକଇ ରହ ରହ ବାଣୀ
ତାର ବଚନ ଇନ୍ଦ୍ର ଶୁଣି
ପଥେ ଅଶ୍ୱକୁ ଛାଡ଼ି ଛଡ଼ି
ଶୂନ୍ୟେ ରହିଲା ଅନ୍ତର୍ଦ୍ଧାନେ
ପୁଣି ସେ ଅଶ୍ୱ ଧରି କରେ
ମିଳିଲା ପିତା ଯଜ୍ଞ ଘରେ ।୨୧,୨୨

ଯାନି ରୂପାଣି ଜଗୃହେ ଇନ୍ଦ୍ରୋ ହୟଜିହୀର୍ଷୟା ।
ତାନି ପାପସ୍ୟ ଷଣ୍ଡାନି ଲିଙ୍ଗଂ ଷଣ୍ଡମିହୋଚ୍ୟତେ । ୨୩ ।
ଏବମିନ୍ଦ୍ରେ ହରତ୍ୟଶ୍ୱଂ ବୈଣ୍ୟଯଜ୍ଞଜିଘାଂସୟା ।
ତଦ୍ଗୃହୀତବିସୃଷ୍ଟେଷୁ ପାଷଣ୍ଡେଷୁ ମତିର୍ନୃଣାମ୍ । ୨୪ ।
ଧର୍ମ ଇତ୍ୟୁପଧର୍ମେଷୁ ନଗ୍ନରକ୍ତପଟାଦିଷୁ ।
ପ୍ରାୟେଣ ସଜ୍ଜତେ ଭ୍ରାନ୍ତ୍ୟା ପେଶଲେଷ ଚ ବାଗ୍ମିଷୁ । ୨୫ ।
ତଦଭିଜ୍ଞାୟ ଭଗବାନ୍ ପୃଥୁଃ ପୃଥୁପରାକ୍ରମଃ ।
ଇନ୍ଦ୍ରାୟ କୁପିତୋ ବାଣମାଦତ୍ତୋଦ୍ୟତକାର୍ମୁକଃ । ୨୬ ।
ତମୃତ୍ୱିଜଃ ଶକ୍ରବଧାଭିସନ୍ଧିତଂ ବିଚକ୍ଷ୍ୟ ଦୁଷ୍ପ୍ରେକ୍ଷ୍ୟ ମସହ୍ୟରଂହସମ୍ ।
ନିବାରୟାମାସୁ ରହୋ ମହାମତେ ନ ଯୁଜ୍ୟତେଽତ୍ରାନ୍ୟବଧଃ ପ୍ରଚୋଦିତାତ୍ ।୨୭।

ଇନ୍ଦ୍ର ଅଶ୍ୱ ଅପହରଣ କରିବା ନିମିତ୍ତ ଯେଉଁ କପଟ ବେଶମାନ ଧାରଣ କରିଥିଲେ, ତାହା ପାପର ଷଣ୍ଡ ବୋଲି ବିଖ୍ୟାତ ( ଷଣ୍ଡ ଅର୍ଥ ଲିଙ୍ଗ ବା ଚିହ୍ନ ) ଅର୍ଥାତ୍ ଏହି ବେଶମାନ ଶାସ୍ତ୍ରରେ ପାଷଣ୍ଡ ବେଶ ବୋଲି ବର୍ଣ୍ଣିତ ହୋଇ ଅଛି । ୨୩ ।

ପୃଥୁଙ୍କ ଯଜ୍ଞରେ ବିଘ୍ନ ଜନ୍ମାଇବା ନିମିତ୍ତ ଇନ୍ଦ୍ର ଅଶ୍ୱ ଅପହରଣ କରିବା ଲାଗି ଯେଉଁ ବେଶ ଗ୍ରହଣ ଓ ପରିତ୍ୟାଗ କରିଥିଲେ, ସେହି ବେଶ ଗ୍ରହଣ କରିବା ଲାଗି କ୍ରମେ ମନୁଷ୍ୟମାନଙ୍କର ମତିବଳିଲା ।୨୪

ଏହି ସମସ୍ତ ଦିଗମ୍ବର ଓ କଷାୟ ବସ୍ତ୍ରଧାରୀ ଉପଧର୍ମୀବିଳମ୍ବୀମାନେ ଆପାତତଃ ରମଣୀୟ ହେତୁବାଦ ଦ୍ୱାରା ମାନବମତସେହି ଭ୍ରାନ୍ତ ମତରେ ଆସକ୍ତ ହୋଇଥାଏ ।୨୫।

ଯେତେବେଳେ ମହାରାଜ ପୃଥୁ ଏହି ବ୍ୟାପାରମାନ ଶ୍ରବଣ କଲେ, ସେତେବେଳେ ସେ ଇନ୍ଦ୍ରଙ୍କ ପ୍ରତି ଅତ୍ୟନ୍ତ କୁପିତ ହେଲେ ଏବଂ ଧନୁ ଉତ୍ତୋଳନ କରି ଶରସନ୍ଧାନ କରିବାକୁ ଉଦ୍ୟତ ହେଲେ ।୨୬।

ଯଜ୍ଞ ସ୍ଥଳରେ ଯେଉଁ ସମସ୍ତ ଋତ୍ୱିକ ଯଜ୍ଞ କରୁଥିଲେ, ସେମାନେ ପୃଥୁଙ୍କୁ ଇନ୍ଦ୍ରବଧାର୍ଥେ ଉଦ୍ୟମ ଓ କ୍ରୋଧରେ କମ୍ପମାନ ଦେଖି ନିବାରଣ କରି କହିଲେ—ମହାରାଜ ! ଏ ସମୟରେ ଶାସ୍ତ୍ରବିଧି ଅନୁସାରେ ଯଜ୍ଞ ପଶୁବଧ ଭିନ୍ନ ଅନ୍ୟବଧ କରିବା ବିହିତ ନୁହେଁ । ୨୭ ।

ଅଶ୍ୱ ସ୍ୱେଚ୍ଛାରେ ଇନ୍ଦ୍ର ପଥେ
ଛଳେ ଧଇଲେ ରୂପ ଯେତେ
ପାଷଣ୍ଡ ଜନ ସେହି ମତେ
ରୂପ ପ୍ରକାଶିଲେ ଜଗତେ
ପୃଥୁର ଯଜ୍ଞଘର ସ୍ଥାନେ
ଇନ୍ଦ୍ରର ରୂପ ଯେତେ ଛଳେ
ପାଷଣ୍ଡେ ସେହିରୂପ ଛନ୍ତି
ଅଧର୍ମେ ଧର୍ମ ବିସ୍ତରନ୍ତି
କେ ନଗ୍ନ ରକ୍ତପଟ ଧରେ
କେ ଭସ୍ମ ଭୂଷଣ ଶରୀରେ
ଅଧର୍ମ ମାର୍ଗ ଆଚରନ୍ତି
ଆମ୍ଭର ହିତ ନ କରନ୍ତି
ପାଷଣ୍ଡ ମାର୍ଗେ ଥାଇ ନିତ୍ୟ
ଦୂଷଣ ଦେଇ ବେଦ ପଥ
ତାହାଙ୍କ ମତ ଯେ କରନ୍ତି
ଅନ୍ତେ ନରକେ ପ୍ରବେଶନ୍ତି ।୨୩-୨୫
ସେ କଥା ଜାଣି ପୃଥୁ କୋପେ
ଇନ୍ଦ୍ର ଉଙ୍ଘାସେ ଦେହ କମ୍ପେ
ଇନ୍ଦ୍ର ମାରଣେ କୋପ କରି
ନିଜ କୋଦଣ୍ଡେ ଶର ଧରି
କୋପରେ ଅରୁଣ ଲୋଚନ
ପ୍ରଚଣ୍ଡ ବିରାଜେ ବଦନ । ୨୬ ।
ପୃଥୁ ଆଗମ ଦେଖି ରଣେ
ବେଗେ ମିଳିଲେ ବିପ୍ରଗଣେ
ଇନ୍ଦ୍ର ବିପକ୍ଷେ କୋପବହି
ବୋଲନ୍ତି ପୃଥୁ ମୁଖ ଚାହିଁ
ହେ ପୃଥୁ ଶୁଣ ଧର୍ମ କଥା
ଆଗମ ନିଗମ ବ୍ୟବସ୍ଥା
ପଶୁର ବିନା ଆନବଧ
ଯଜ୍ଞରେ ଅଟଇ ନିଷେଧ

ବୟଂ ମରୁତ୍ୱନ୍ତମିହାର୍ଥନାଶନଂ ହ୍ୱୟାମହେ ତ୍ୱଚ୍ଛ୍ରବସା ହତତ୍ୱିଷମ୍ ।
ଆୟାତୟାମୋପହବୈରନନ୍ତରଂ ପ୍ରସହ୍ୟ ରାଜନ୍ ଜୁହବାମ ତେଽହିତମ୍ ।୨୮।
ଇତ୍ୟାମନ୍ତ୍ର୍ୟ କ୍ରତୁପତିଂ ବିଦୁରାସ୍ୟର୍ତ୍ୱିଜୋ ରୁଷା ।
ସ୍ରୁଗ୍ଘସ୍ତାନ୍ ଜୁହ୍ୱତୋଽଭ୍ୟେତ୍ୟ ସ୍ୱୟମ୍ଭୂଃ ପ୍ରତ୍ୟଷେଧତ । ୨୯ ।
ନ ବଧ୍ୟୋ ଭବତାମିନ୍ଦ୍ରୋ ଯଦ୍ୟଜ୍ଞୋ ଭଗବତ୍ତନୁଃ ।
ଯଂ ଜିଘାଂସଥ ଯଜ୍ଞେନ ଯସ୍ୟେଷ୍ଟାସ୍ତନବଃ ସୁରାଃ । ୩୦ ।
ତଦିଦଂ ପଶ୍ୟତ ମହଦ୍ଧର୍ମବ୍ୟତିକରଂ ଦ୍ୱିଜାଃ ।
ଇନ୍ଦ୍ରେଣାନୁଷ୍ଠିତଂ ରାଜ୍ଞଃ କର୍ମୈତଦ୍ୱିଜିଘାଂସତା । ୩୧ ।
ପୃଥୁକୀର୍ତ୍ତେଃ ପୃଥୋର୍ଭୂୟାତ୍ ତର୍ହ୍ୟେକୋନଶତକ୍ରତୁଃ ।
ଅଲଂ ତେ କ୍ରତୁଭିଃ ସ୍ୱିଷ୍ଟୈର୍ଯଦ୍ଭବାନ୍ ମୋକ୍ଷଧର୍ମବିତ୍ । ୩୨ ।

---

ହେ ରାଜନ୍ ! ଯେଉଁ ଇନ୍ଦ୍ର ଆପଣଙ୍କ ଯଜ୍ଞନଷ୍ଟ କରିବାକୁ ପ୍ରବୃତ୍ତ, ଆପଣଙ୍କ କୀର୍ତ୍ତିଦ୍ୱାରା ତାହାଙ୍କର ପ୍ରଭାବ ନଷ୍ଟ ହୋଇଅଛି, ଆମ୍ଭେମାନେ ଆପଣଙ୍କର ଯଜ୍ଞ ବିଘ୍ନକାରୀ ଇନ୍ଦ୍ରଙ୍କୁ ଅହିତକାରୀ ଆବାହନ ମନ୍ତ୍ରଦ୍ୱାରା ଏହି ଯଜ୍ଞ ଶାଳାକୁ ଆହ୍ୱାନ କରି ତାହାଙ୍କୁ ବଳ ପୂର୍ବକ ଅଗ୍ନିରେ ହୋମ କରିବୁ । ୨୮ ।

ହେ ବିଦୁର ! ପୃଥୁଙ୍କର ଋତ୍ୱିକଗଣ ଏହିପରି ମନ୍ତ୍ରଣା କରି କ୍ରୋଧଭରରେ ହୋମପାତ୍ର ହସ୍ତରେ ଗ୍ରହଣ କରି ଯଜ୍ଞପତିଙ୍କୁ ଆକ୍ରମଣ କରି ହୋମ କରିବାକୁ ଉଦ୍ୟତ ହୁଅନ୍ତେ ସ୍ୱୟମ୍ଭୂ ବ୍ରହ୍ମା ସେଠାରେ ଉପସ୍ଥିତ ହୋଇ ସେମାନଙ୍କୁ ନିବାରଣ କରି କହିଲେ । ୨୯ ।

ହେ ଋତ୍ୱିକଗଣ ! ତୁମ୍ଭେମାନେ ଯଜ୍ଞ ଆହୁତିଦ୍ୱାରା ଇନ୍ଦ୍ରଙ୍କୁ ବଧକରିବାକୁ ଇଚ୍ଛା କରିଅଛ, ମାତ୍ର ଯଜ୍ଞରେ ପୂଜିତ ସମସ୍ତ ଦେବତା ତାହାଙ୍କର ଦେହ, ତାହାଙ୍କର ଗୋଟିଏ ନାମ ଯଜ୍ଞ ଓ ସେ ମଧ୍ୟ ଭଗବାନଙ୍କର ଗୋଟିଏ ଅବତାର, ସୁତରାଂ ଇନ୍ଦ୍ରଙ୍କୁ ବଧ କରିବା ଉଚିତ ନୁହେଁ । ୩୦ ।

ହେ ଦ୍ୱିଜଗଣ ! ଦେଖ ମହାରାଜ ପୃଥୁଙ୍କର ଯଜ୍ଞଭଗ୍ନ କରିବା ଲାଗି ଇନ୍ଦ୍ର କେତେ ଧର୍ମ ବ୍ୟତିକର କାର୍ଯ୍ୟ କଲେ । ୩୧ ।

ବିପୁଳକୀର୍ତ୍ତି ପୃଥୁଙ୍କର ଊନଶତଟି ଯଜ୍ଞ ହେଲେ କ୍ଷତି ନାହିଁ । ତଦନନ୍ତର ସେ ମହାରାଜା ପୃଥୁଙ୍କୁ କହିଲେ ଆପଣ ମଧ୍ୟ ମୋକ୍ଷ ଧର୍ମ ପରାୟଣ, ସୁତରାଂ ଆପଣଙ୍କ ପକ୍ଷରେ କାମ୍ୟ ଯଜ୍ଞାଦି ଅନୁଷ୍ଠାନର ପ୍ରୟୋଜନ କଅଣ ଅଛି । ୩୨ ।

---

ତୋ ଯଜ୍ଞ କୀର୍ତ୍ତି ନାଶେ ଇନ୍ଦ୍ର
ଆମ୍ଭେ ନାଶିବୁଁ ତା ନରେନ୍ଦ୍ର
ମନ୍ତ୍ର ଆହ୍ୱାନ ବଳେ କରି
ଅଗ୍ନିରେ ଆହୁତିକୁ ଧରି
ନାଶିବୁଁ ତୋହର ଅହିତ
ତୋରମାରିବା ନୋହେଯୁକ୍ତ ୨୭,୨୮

ଏମନ୍ତ ପୃଥୁ ଆଗେ କହି
ଋତ୍ୱିଜେ ଅତି କୋପ ବହି
ସ୍ରୁବକୁ ସର୍ବେ ଧରି ହସ୍ତେ
ଅଗ୍ନିରେ ଆହୁତି ଦିଅନ୍ତେ
ବ୍ରହ୍ମା ମିଳିଲେ ତତକ୍ଷଣ
ସମସ୍ତ ମୁନି ସନ୍ନିଧାନେ

ଇନ୍ଦ୍ରର ହିତ ଚିତ୍ତେ ବହି
ବୋଲନ୍ତି ମୁନିଗଣ ଚାହିଁ
ଶୁଣ ହେ ସର୍ବ ବିପ୍ରବର
ଯାହାକୁ ଯଜ୍ଞେ ତୁମ୍ଭେ ମାର
ଯେ ଦେବ ଯଜ୍ଞଭାଗ ଭୁଞ୍ଜେ
ସେ ଦେବ ଦେହ ଇନ୍ଦ୍ର ତେଜେ

ନୈବାତ୍ମନେ ମହେନ୍ଦ୍ରାୟ ରୋଷମାହର୍ତ୍ତୁମର୍ହସି ।
ଉଭାବପି ହି ଭଦ୍ରଂ ତ ଉତ୍ତମଶ୍ଲୋକବିଗ୍ରହୌ । ୩୩ ।
ମାସ୍ମିନ୍ ମହାରାଜ କୃଥାଃ ସ୍ମ ଚିନ୍ତାଂ ନିଶାମୟାସ୍ମଦ୍ବଚ ଆଦୃତାତ୍ମା ।
ଯଦ୍ଧ୍ୟାୟତୋ ଦୈବହତଂ ନୁ କର୍ତ୍ତୁଂ ମନୋଽତିରୁଷ୍ଟଂ ବିଶତେ ତମୋଽନ୍ଧଂ ।୩୪।
କ୍ରତୁର୍ବିରମତାମେଷ ଦେବେଷୁ ଦୁରବଗ୍ରହଃ ।
ଧର୍ମବ୍ୟତିକରୋ ଯତ୍ର ପାଷଣ୍ଡୈରିନ୍ଦ୍ରନିର୍ମିତୈଃ । ୩୫ ।
ଏଭିରିନ୍ଦ୍ରୋପସଂସୃଷ୍ଟୈଃ ପାଷଣ୍ଡୈର୍ହାରିଭିର୍ଜନମ୍ ।
ହ୍ରିୟମାଣଂ ବିଚକ୍ଷ୍ୱୈନଂ ଯସ୍ତେ ଯଜ୍ଞଧ୍ରୁଗଶ୍ୱମୁଟ୍ । ୩୬ ।
ଭବାନ୍ ପରିତ୍ରାତୁମିହାବତୀର୍ଣ୍ଣୋ ଧର୍ମଂ ଜନାନାଂ ସମୟାନୁରୂପମ୍ ।
ବେଣାପଚାରାଦବଲୁପ୍ତମଦ୍ୟ ତଦ୍ଦେହତୋ ବିଷ୍ଣୁକଳାଽସି ବୈଣ୍ୟ । ୩୭ ।

---

ଆପଣଙ୍କ ଆତ୍ମତୁଲ୍ୟ ଇନ୍ଦ୍ରଙ୍କପ୍ରତି କ୍ରୋଧ କରିବା ଉଚିତ ନୁହେଁ, କାରଣ ଆପଣ ଓ ଇନ୍ଦ୍ର ଉଭୟ ଉତ୍ତମ ଶ୍ଲୋକ ଭଗବାନଙ୍କର ଅବତାର, ଆପଣଙ୍କର ଜୟ ହେଉ । ୩୩ ।

ହେ ମହାରାଜ ! ଅବହିତ ହୋଇ ମୋହର କଥା ଶ୍ରବଣ କରନ୍ତୁ, ଏହି ଯଜ୍ଞଭଙ୍ଗ ବିଷୟରେ ଆପଣ ଚିନ୍ତା କରନ୍ତୁ ନାହିଁ । ଦୈବଦ୍ୱାରା ବିନଷ୍ଟ ଧର୍ମ ପୁନର୍ବାର ଅନୁଷ୍ଠାନ କରିବାକୁ ଯେଉଁ ବ୍ୟକ୍ତି ଚିନ୍ତା କରେ, ତାହାର ମନ ଅତ୍ୟନ୍ତ ରୁଷ୍ଟ ହୋଇ ମହାନ୍ଧକାରରେ ନିମଗ୍ନ ହୁଏ । ୩୪ ।

ଏହି ଯଜ୍ଞ ରହିତ ହେଉ, ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ରଙ୍କୁ ନିବାରଣ କରିବା ଦୁଃସାଧ୍ୟ । ଆପଣଙ୍କର ଯଜ୍ଞରେ ଇନ୍ଦ୍ର ନିର୍ମିତ ପାଷଣ୍ଡବେଶ ଦ୍ୱାରା ଧର୍ମର ଗ୍ଲାନି ଉପସ୍ଥିତ ହୋଇଅଛି । ୩୫ ।

ଦେଖନ୍ତୁ ଆପଣଙ୍କର ଯଜ୍ଞବିଘ୍ନକାରୀ ଓ ଅଶ୍ୱାପହାରୀ ଇନ୍ଦ୍ର ଯେଉଁ ପାଷଣ୍ଡ ବେଶ ଧାରଣ କରିଥିଲେ ସେହି ପାଷଣ୍ଡଗଣ ମାନବଗଣଙ୍କୁ ଆକର୍ଷଣ କରୁଅଛନ୍ତି । ୩୬ ।

ବେଣଙ୍କର ଅନ୍ୟାୟାଚରଣ ମାନବଗଣଙ୍କର କାଳୋପଯୋଗୀ ଧର୍ମ ବିନଷ୍ଟ କରିଅଛି । ସେହି ଧର୍ମର ପୁନରୁତ୍ଥାନ କରିବା ନିମିତ୍ତ ଆପଣ ବିଷ୍ଣୁ ଅଂଶରେ ବେଣଙ୍କ ଦେହରେ ଅବତୀର୍ଣ୍ଣ ହୋଇ ଅଛନ୍ତି ।୩୭

---

ଏ ଇନ୍ଦ୍ର ନାରାୟଣ ତନୁ
ଏହାକୁ ଛାଡ଼ ତୁମ୍ଭେ ମନ୍ୟୁ
ଏହାର ଦେହେ ସର୍ବ ଦେବେ
ନିତ୍ୟେ ବସନ୍ତି ଯଜ୍ଞ ଭବେ
ଆହୁତ ଯାଉ ମୁଖେ ଦେଇ
ତାହାକୁ କୋପ ନ ଯୋଗାଇ

ଏହାକୁ କୋପ ତୁ ନ କର
ଯଜ୍ଞ ପୁରୁଷ ଅର୍ଥେ ବର
ଏ ଧର୍ମ ପରମ କାରଣ
ଅଶେଷ ସୃଷ୍ଟିର କାରଣ
ଏ ଯଜ୍ଞେ ଦ୍ରୋହ କର୍ମ କଲା
ପାଷଣ୍ଡ ପଥ ବିସ୍ତାରିଲା ।୨୯-୩୭।

ପାଷଣ୍ଡ ଉଦ୍ଧରିବା ଅର୍ଥେ
ତୋ ଅବତାର ଏ ଜଗତେ
ବେଣର ଦେହେ ଯେତେ ଦୋଷ
ତୋ ଜନ୍ମ କଲା ତାହା ନାଶ

ସ ତ୍ୱଂ ବିମୃଶ୍ୟାସ୍ୟ ଭବଂ ପ୍ରଜାପତେ ସଙ୍କଳ୍ପନଂ ବିଶ୍ୱସୃଜାଂ ପିପୀପୃହି ।
ଐନ୍ଦ୍ରୀଞ୍ଚ ମାୟାମୁପଧର୍ମ୍ମମାତରଂ ପ୍ରଚଣ୍ଡପାଷଣ୍ଡପଥଂ ପ୍ରଭୋ ଜହି । ୩୮ ।

ଶ୍ରୀମୈତ୍ରେୟ ଉବାଚ ।

ଇତ୍ଥଂ ସ ଲୋକଗୁରୁଣା ସମାଦିଷ୍ଟୋ ବିଶାମ୍ପତିଃ ।
ତଥାଚ କୃତ୍ୱା ବାତ୍ସଲ୍ୟଂ ମଘୋନାପି ଚ ସନ୍ଦଧେ । ୩୯ ।
କୃତାବଭୃଥସ୍ନାନାୟ ପୃଥବେ ଭୂରିକର୍ମଣେ ।
ବରାନ୍ ଦଦୁସ୍ତେ ବରଦା ଯେ ତଦ୍ବର୍ହିଷି ତର୍ପିତାଃ । ୪୦ ।
ବିପ୍ରାଃ ସତ୍ୟାଶିଷସ୍ତୁଷ୍ଟାଃ ଶ୍ରଦ୍ଧୟା ଲବ୍ଧଦକ୍ଷିଣାଃ ।
ଆଶିଷୋ ଯୁଯୁଜୁଃ କ୍ଷତ୍ତରାଦିରାଜାୟ ସତ୍କୃତାଃ । ୪୧ ।

---

ହେ ପ୍ରଜାପତେ ! ଏହି ବିଶ୍ୱର ଉତ୍ପତ୍ତି ବିଷୟ ବିଚାର କରି ଆପଣ ଯେଉଁ ବିଶ୍ୱସ୍ରଷ୍ଟା ଋଷିମାନଙ୍କ ଦ୍ୱାରା ଉତ୍ପନ୍ନ ହୋଇ ଅଛନ୍ତି, ସେମାନଙ୍କର ସଂକଳ୍ପ ପୂର୍ଣ୍ଣ କରନ୍ତୁ । ଏହି ପ୍ରଚଣ୍ଡ ପାଷଣ୍ଡବର୍ଗ ଓ ଉପଧର୍ମ ଇନ୍ଦ୍ରଙ୍କର ମାୟା; ତାହାକୁ ଅବିଳମ୍ବେ ବିନାଶ କର । ୩୮ ।

ଶ୍ରୀମୈତ୍ରେୟ କହିଲେ :—

ଲୋକଗୁରୁ ବ୍ରହ୍ମା ଏହିପରି ଆଦେଶ ଦେବାରୁ ମହାରାଜ ପୃଥୁ ଯଜ୍ଞପରିତ୍ୟାଗ କରି ଇନ୍ଦ୍ରଙ୍କପ୍ରତି ସ୍ନେହ ଭାବ ପ୍ରକାଶ କରି ଇନ୍ଦ୍ରଙ୍କ ସହିତ ବନ୍ଧୁତା ସ୍ଥାପନ କରିଥିଲେ । ୩୯ ।

ତଦନନ୍ତର ଭୂରିକର୍ମା ପୃଥୁ ଯଜ୍ଞାନ୍ତ ସ୍ନାନ କଲାପରେ ଯେଉଁ ଦେବତା ଓ ଋଷିମାନେ ଯଜ୍ଞରେ ପୂଜିତ ହୋଇଥିଲେ, ସେମାନେ ତାହାଙ୍କୁ ବର ପ୍ରଦାନ କଲେ । ୪୦ ।

ହେ ବିଦୁର ! ଯେଉଁ ବ୍ରାହ୍ମଣମାନଙ୍କର ଆଶୀର୍ବାଦ ଅବ୍ୟର୍ଥ, ସେମାନେ ଶ୍ରଦ୍ଧା ସହକାରେ ସେହି ଆଦିରାଜ ପୃଥୁଙ୍କୁ ଆଶୀର୍ବାଦ କରିଥିଲେ ଏବଂ ଦକ୍ଷିଣା ପାଇ ସନ୍ତୁଷ୍ଟ ହୋଇଥିଲେ । ୪୧ ।

---

ଏବେ ମୋହର ବୋଲ କର
ପାଷଣ୍ଡ ସୃଷ୍ଟିକି ହରର ।୩୭,୩୮

ଶ୍ରୀ ମୈତ୍ରେୟ ଉବାଚ—

ଏମନ୍ତେ ବ୍ରହ୍ମାର ବଚନେ
ଯଜ୍ଞର ଅବଭୃତ ସ୍ନାନେ
ଦକ୍ଷିଣା ଦେଇ ବିପ୍ରଜନ
ଯାଗେ ତୋଷିଲେ ସର୍ବଜନ
ଅନ୍ନ ବସନ ଧେନୁ ଦାନେ
ତଳ କାଞ୍ଚନ ଯେ ବିଧାନେ
ସେ ବିପ୍ରଜନ ହୋଇ ତୋଷ
ପୃଥୁକୁ କରନ୍ତି ଆଶିଷ
ବ୍ରହ୍ମା ବଚନେ ସର୍ବ ଦେବେ
ତୋଷ ହୋଇଲେ ଯଜ୍ଞ ଭାବେ
ଏମନ୍ତ କହି ସନ୍ଧ୍ୟୋଜନ
ସଙ୍ଗେ ସକଳ ବିପ୍ର ଗଣ

ତସ୍ମାହୂତା ମହାବାହୋ ସର୍ବ ଏବ ସମାଗତାଃ ।
ପୂଜିତା ଦାନମାନାଭ୍ୟାଂ ପିତୃଦେବର୍ଷିମାନବାଃ । ୪୨ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପୃଥୁବିଜୟେ ନାମ ଏକୋନତ୍ରିଂଶୋଽଧ୍ୟାୟଃ । ୧୯ ।

---

ସେମାନେ କହିଲେ-ହେ ମହାବାହୋ ! ଆପଣ ଯେଉଁ ପିତୃ, ଦେବତା, ଋଷି ଏବଂ ମାନବମାନଙ୍କୁ ଆହ୍ୱାନ କରି ଅଛନ୍ତି, ସେମାନେ ସମାଗତ ହୋଇ ଦାନ ଓ ସମ୍ମାନାଦି ଦ୍ୱାରା ଉତ୍ତମରୂପେ ଅର୍ଚ୍ଚିତ ହୋଇ ଅଛନ୍ତି । ୪୨ ।

---

ତକ୍ଷଣେ ଗଲେ ନିଜ ସ୍ଥାନେ
ଶୁଣ ବିଦୁର ତୋଷମନେ।୩୯-୪୨।
କହଇ ବିପ୍ର ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ
ଚତୁର୍ଥ ସ୍କନ୍ଧେ ପୃଥୁବାଣୀ
ଶୁଣି ତରନ୍ତୁ ନରପ୍ରାଣୀ ।



## ବିଂଶ ଅଧ୍ୟାୟ ।

**ବିଂଶେ ତୁ ବିଷ୍ଣୁନା ସାକ୍ଷାତ୍ ପୃଥୋର୍ଯଜ୍ଞେଽନୁଶାସନମ୍ ।**
**ବରଦାନପ୍ରସଙ୍ଗେନ ପ୍ରୀତିଶ୍ଚାନ୍ୟୋଽନ୍ୟମୀର୍ଯ୍ୟତେ । ୦ ।** ( ଶ୍ରୀଧରସ୍ୱାମୀ )

**ଶ୍ରୀମୈତ୍ରେୟ ଉବାଚ ।**

**ଭଗବାନପି ବୈକୁଣ୍ଠଃ ସାକଂ ମଘବତା ବିଭୁଃ ।**
**ଯଜ୍ଞୈର୍ଯଜ୍ଞପତିସ୍ତୁଷ୍ଟୋ ଯଜ୍ଞଭୁକ୍ ତମଭାଷତ । ୧ ।**

**ଶ୍ରୀଭଗବାନୁବାଚ ।**

**ଏଷ ତେଽକାରଷୀଦ୍ଭଙ୍ଗଂ ହୟମେଧଶତସ୍ୟ ହ ।**
**କ୍ଷମାପୟତ ଆତ୍ମାନମମୁଷ୍ୟ କ୍ଷନ୍ତୁମର୍ହସି । ୨ ।**

---

### ପୃଥୁଙ୍କପ୍ରତି ଭଗବାନ୍ ବିଷ୍ଣୁଙ୍କର ଉପଦେଶ ।

ବିଂଶ ଅଧ୍ୟାୟରେ ପୃଥୁଙ୍କର ଯଜ୍ଞରେ ବିଷ୍ଣୁ ଓ ଇନ୍ଦ୍ର ଉପସ୍ଥିତ ହୋଇ ବରଦାନରେ ପୃଥୁଙ୍କୁ ସନ୍ତୋଷ କରିବା ବିଷୟ ବର୍ଣ୍ଣିତ ହୋଇଅଛି । ୦ ।

**ଶ୍ରୀମୈତ୍ରେୟ କହିଲେ** :—

ଯଜ୍ଞେଶ୍ୱର ଯଜ୍ଞଭୋକ୍ତା ଭଗବାନ ମଧ୍ୟ ସନ୍ତୁଷ୍ଟ ହୋଇ ଇନ୍ଦ୍ରଙ୍କ ସହିତ ସେଠାରେ ଉପସ୍ଥିତ **ହୋଇ କହିଲେ** । ୧ ।

**ଶ୍ରୀଭଗବାନ୍ କହିଲେ** :—

ଏହି ଇନ୍ଦ୍ର ତୁମ୍ଭର ଏକଶତ ଅଶ୍ୱମେଧ ଯଜ୍ଞରେ ବିଘ୍ନ ଘଟାଇ ଅଛନ୍ତି । କିନ୍ତୁ ବର୍ତ୍ତମାନ୍ ସେ କ୍ଷମା **ସ୍ପୃହୁ ଅଛନ୍ତି**, ଅତଏବ ଏହାଙ୍କୁ କ୍ଷମା ଦେବା ଉଚିତ । ୨ ।

---

ଇନ୍ଦ୍ର ସହିତେ ବିଷ୍ଣୁ ଆସି, ପୃଥୁଙ୍କୁ ବରଦାନେ ତୋଷି । ପୃଥୁର ଇନ୍ଦ୍ରର ମିଳନ, ବିଂଶତିଅଧ୍ୟାୟ ବର୍ଣ୍ଣନ ।

**ଶ୍ରୀ ମୈତ୍ରେୟ ଉବାଚ—**

ମୈତ୍ରେୟମୁନି ତୋଷିତରେ
କହନ୍ତି ବିଦୁର ଅଗ୍ରତେ
ଶୁଣ ବିଦୁର ସାବଧାନେ
ପୃଥୁର ଯଜ୍ଞ ଅବସାନେ
ସେ ଯଜ୍ଞପତି ଭଗବାନ
ଇନ୍ଦ୍ର ସହିତେ ଆଗମନ
ହରଷେ ପ୍ରଭୁ ଯଜ୍ଞପତି
ପୃଥୁଙ୍କୁ ଗ୍ରହଣ କହନ୍ତି । ୧ ।

**ଶ୍ରୀଭଗବାନୁବାଚ—**

ଶୁଣ ହେ ପୃଥୁ ନୃପନାଥ
ଇନ୍ଦ୍ର ଯେ କଲା ଯଜ୍ଞେ ଘାତ
ସେ ଅପରାଧ ଖଣ୍ଡିବାକୁ
ଏବେ ଅଇଲା ତୁମ୍ଭଠାକୁ
ତୁମ୍ଭେ ଯେ ସାଧୁ ନୃପବର
ଏହାର ଦୋଷ କ୍ଷମାକର । ୨ ।

ସୁଧିୟଃ ସାଧବୋ ଲୋକେ ନରଦେବ ନରୋତ୍ତମାଃ ।
ନାଭିଦ୍ରୁହ୍ୟନ୍ତି ଭୂତେଭ୍ୟୋ ଯର୍ହି ନାତ୍ମା କଲେବରମ୍ । ୩ ।
ପୁରୁଷା ଯଦି ମୁହ୍ୟନ୍ତି ତ୍ୱାଦୃଶା ଦେବମାୟୟା ।
ଶ୍ରମ ଏବ ପରଂ ଜାତୋ ଦୀର୍ଘୟା ବୃଦ୍ଧସେବୟା । ୪ ।
ଅତଃ କାୟମିମଂ ବିଦ୍ୱାନବିଦ୍ୟାକାମକର୍ମଭିଃ ।
ଆରବ୍ଧ ଇତି ନୈବାସ୍ମିନ୍ ପ୍ରତିବୁଦ୍ଧୋଽନୁଷଜ୍ଜତେ । ୫ ।
ଅସଂସକ୍ତଃ ଶରୀରେଽସ୍ମିନ୍ନମୁନୋତ୍ପାଦିତେ ଗୃହେ ।
ଅପତ୍ୟେ ଦ୍ରବିଣେ ବାପି କଃ କୁର୍ଯ୍ୟାତ୍ ମମତାଂ ବୁଧଃ । ୬ ।
ଏକଃ ଶୁଦ୍ଧଃ ସ୍ୱୟଂ ଜ୍ୟୋତିର୍ନିର୍ଗୁଣୋଽସୌ ଗୁଣାଶ୍ରୟଃ ।
ସର୍ବଗୋଽନାବୃତଃ ସାକ୍ଷୀ ନିରାତ୍ମାତ୍ମାତ୍ମନଃ ପରଃ । ୭ ।

---

ହେ ନର ଦେବ ! ଏ ଜଗତରେ ଯେ ସୁବୁଦ୍ଧି, ସାଧୁ, ଓ ପ୍ରଧାନ, ସେମାନେ ପ୍ରାଣିହିଂସା କରନ୍ତି ନାହିଁ । କାରଣ ସେମାନେ ଜାଣନ୍ତି ଏହି ଦେହ ଆତ୍ମା ନୁହେଁ । ୩ ।

ତୁମ୍ଭପରି ପୁରୁଷମାନେ ମଧ୍ୟ ଦେବମାୟାରେ ମୁଗ୍‌ଧ ହୁଅନ୍ତି । ତୁମ୍ଭ ପକ୍ଷରେ ବୃଦ୍ଧ ସେବା କେବଳ ଶ୍ରମ ମାତ୍ର । ୪ ।

ବିଦ୍ୱାନ୍‌ବ୍ୟକ୍ତି ଏହି ଦେହକୁ ଅବିଦ୍ୟା, କାମ, ଏବଂ କର୍ମ ଦ୍ୱାରା ରଚିତ ବୋଲି ଜାଣି ଏଦେହରେ ଆସକ୍ତ ହୁଅନ୍ତି ନାହିଁ । ୫ ।

ଯେ ଏ ଦେହ ପ୍ରତି ଅନାସକ୍ତ, ସେହି ପଣ୍ଡିତ ବ୍ୟକ୍ତି ଏହାଦ୍ୱାରା ସମୁତ୍ପନ୍ନ ଗୃହ, ସମ୍ପଦ, ଏବଂ ପୁତ୍ରାଦିରେ ମମତା ରଖିବ କାହିଁକି ? । ୬ ।

ଏହି ଆତ୍ମା ଦେହଠାରୁ ଭିନ୍ନ, ଆତ୍ମାଏକ, ଶୁଦ୍ଧ, ସ୍ୱପ୍ରକାଶ, ନିର୍ଗୁଣ, ଗୁଣର ଆଧାର ସର୍ବବ୍ୟାପୀ ସର୍ବତ୍ର ଅନାବୃତ, ସାକ୍ଷିସ୍ୱରୂପ, ଆତ୍ମାନ୍ତରରହିତ, କିନ୍ତୁ ଦେହ କଥା ସ୍ୱତନ୍ତ୍ର, ସେ ଆତ୍ମା ପରି ନୁହେଁ ।୭।

---

ଏ ଲୋକେ ସାଧୁ ଯେ ଅଟନ୍ତି
ସେ ଦ୍ରୋହ କର୍ମ୍ମ ନ କରନ୍ତି
ସାଧୁଙ୍କ ନାହିଁ ହିଂସା ଭାବ
ସମେ ଦେଖନ୍ତି ସର୍ବ ଜୀବ
ଯେଣୁ ଏ ଦେହ ଆତ୍ମା ନୋହେ
ତେଣୁ ସେ ନ ପଡ଼ନ୍ତି ଦ୍ରୋହେ ।୩।
ଯେତେବ ପୁରୁଷ ତୁମ୍ଭ ପ୍ରାୟେ
ଦେବ ମାୟାରେ ମୋହ ହୋଏ
ବୃଦ୍ଧ ସେବନ ଦୀର୍ଘକାଳ
କେବଳ ଶ୍ରମ ସିନା ସାର । ୪ ।

ଅବିଦ୍ୟା କାମ୍ୟ କର୍ମ୍ମ ବଶେ
ଯେଣୁ ଏ ଦେହ ପରକାଶେ
ଏ କଥା ଯେ ଜ୍ଞାନୀ ଜାଣନ୍ତି
ସେ ମୋହ ଦ୍ୱନ୍ଦେ ନ ପଡ଼ନ୍ତି ।୫।
ଅନିତ୍ୟ ଜାଣନ୍ତି ସେ ଦେହ
ତେଣୁ ତହିଁରେ ନାହିଁ ସ୍ନେହ
ଗୃହ ଦ୍ରବିଣ ଦାର ସୁତେ
ମମତା କରିବେ କେମନ୍ତେ ।୬।
ଏ ଆତ୍ମା ଦେହତହୁଁ ଭିନ୍ନ
ଶୁଣ କହିବା ତାର ଚିହ୍ନ

ଏକଇ ଆତ୍ମା ସର୍ବ ଦେହେ
ଶୁଦ୍ଧ ଅଶୁଦ୍ଧ ଭେଦ ନୋହେ
ନିର୍ଗୁଣ ହୋଇ ଗୁଣାଶ୍ରୟ
ସେ ଆତ୍ମା ସ୍ୱୟଂ ଜ୍ୟୋତିର୍ମ୍ମୟ
ସେ ଏକ ଅଛି ସର୍ବଠାରେ
ଆବୃତ ନୋହେ ମାୟାଦ୍ୱାରେ
ତାହାର ନାହିଁ ଆତ୍ମା ପର
ସେ ଥାଇ ପ୍ରକୃତି ରୂପର
ଶରୀରୁ ଭିନ୍ନେ ଥାଇ ସେହି
ତାକୁ ଦେଖନ୍ତା ନାହିଁ କେହି

ଯ ଏବଂ ସନ୍ତମାତ୍ମାନଂ ଆତ୍ମସ୍ଥଂ ବେଦପୂରୁଷଃ ।
ନାଜ୍ୟତେ ପ୍ରକୃତିସ୍ଥୋଽପି ତଦ୍‌ଗୁଣୈଃ ସ ମୟି ସ୍ଥିତଃ ।୮।
ଯଃ ସ୍ୱଧର୍ମେଣ ମାଂ ନିତ୍ୟଂ ନିରାଶୀଃ ଶ୍ରଦ୍ଧୟାନ୍ୱିତଃ ।
ଭଜତେ ଶନକୈସ୍ତସ୍ୟ ମନୋ ରାଜନ୍ ପ୍ରସୀଦତି ।୯।
ପରିତ୍ୟକ୍ତଗୁଣଃ ସମ୍ୟଗ୍‌ଦର୍ଶନୋ ବିଶଦାଶୟଃ ।
ଶାନ୍ତିଂ ମେ ସମବସ୍ଥାନଂ ବ୍ରହ୍ମକୈବଲ୍ୟମଶ୍ନୁତେ ।୧୦।
ଉଦାସୀନମିବାଧ୍ୟକ୍ଷଂ ଦ୍ରବ୍ୟଜ୍ଞାନକ୍ରିୟାତ୍ମନାମ୍ ।
କୂଟସ୍ଥମିମମାତ୍ମାନଂ ଯୋ ବେଦାପ୍ନୋତି ସୋଽଭବମ୍ ।୧୧।
ଭିନ୍ନସ୍ୟ ଲିଙ୍ଗସ୍ୟ ଗୁଣପ୍ରବାହୋ ଦ୍ରବ୍ୟକ୍ରିୟାକାରକଚେତନାତ୍ମନଃ ।
ଦୃଷ୍ଟାସୁ ସଂପତ୍ସୁ ବିପତ୍ସୁ ସୂରୟୋ ନ ବିକ୍ରିୟନ୍ତେ ମୟି ବଦ୍ଧସୌହୃଦାଃ ।୧୨।

---

ଦେହ ମଧ୍ୟସ୍ଥ ଆତ୍ମାକୁ ଯେ ଚିହ୍ନିପାରେ, ସେ ଦେହଧାରୀ ହେଲେ ମଧ୍ୟ ଦେହବିକାର ଦ୍ୱାରା ଲିପ୍ତ ହୁଏ ନାହିଁ । କାରଣ ସେ ମୋଠାରେ ଅବସ୍ଥିତ ।୮।

ଯେ ନିଷ୍କାମ ଓ ଶ୍ରଦ୍ଧାନ୍ୱିତ ହୋଇ ଧର୍ମାନୁଷ୍ଠାନ ଦ୍ୱାରା ମୋତେ ଭଜନ୍ତି, ତାଙ୍କର ମନକ୍ରମେ ପ୍ରସନ୍ନହୁଏ ।୯।

ମନ ପ୍ରସନ୍ନ ହେଲେ ଗୁଣମୁକ୍ତ ହୋଇ ସେ ବ୍ୟକ୍ତି ତତ୍ତ୍ୱଦର୍ଶୀ ହୁଏ । ସେତେବେଳେ ସେ ମୋର ଉଦାସୀନତା ଜନିତ ବ୍ରହ୍ମକୈବଲ୍ୟ ନାମକ ପରମଶାନ୍ତି ଅନୁଭବ କରେ ।୧୦।

ଆତ୍ମା କୂଟସ୍ଥ ଅର୍ଥାତ୍ ନିର୍ବିକାର, ଏହି ଆତ୍ମାକୁ ଯେ ଦେହ, ଜ୍ଞାନ, କର୍ମ, ଇନ୍ଦ୍ରିୟ ଏବଂ ମନର ଅଧ୍ୟକ୍ଷରୂପେ ଅନୁଭବ କରେ, ସେହି ବ୍ୟକ୍ତି ବ୍ରହ୍ମଲାଭ କରେ ।୧୧।

ଏହି ଜ୍ଞାନୀବ୍ୟକ୍ତିମାନଙ୍କର ଅନ୍ତଃକରଣରେ ଏପରି ବୋଧଭାବ ଜାତହୁଏ ଯେ, ଲିଙ୍ଗ ଶରୀର— ଅର୍ଥାତ୍ ଦ୍ରବ୍ୟ, କ୍ରିୟା, କାରକ ଏବଂ ଚେତନାମୟ ଏହି ଦେହର ସଂସାର ଭୋଗ ହୋଇଥାଏ । ସମ୍ପଦ ବା ବିପଦରେ ସେମାନଙ୍କର କୌଣସି ବିକାର ଘଟେ ନାହିଁ, କାରଣ ଏହି ବିବେଚକମାନେ ମୋଠାରେ ସୌହାର୍ଦ୍ଦ୍ୟ ବନ୍ଧନ ହେତୁ ନିଶ୍ଚିନ୍ତ ହୋଇ ଅବସ୍ଥାନ କରନ୍ତି ।୧୨।

---

ଆତ୍ମାକୁ ଏମନ୍ତ ପ୍ରକାରେ
ଯେ ପ୍ରାଣୀ ଦେଖନ୍ତି ଶରୀରେ
ସେ ଯେବେ ପ୍ରକୃତିରେ ଥାଇ
ପ୍ରକୃତି ଗୁଣେ ବନ୍ଧ ନୋହି ।୭,୮
ଯେମନ୍ତେ ପ୍ରାଣୀ ମୋତେ ପାଏ
ତୁମ୍ଭଙ୍କୁ କହି ସେ ଉପାୟେ
ନିଜ ସ୍ୱଧର୍ମେ ପ୍ରାଣୀ ଥାଇଁ
ଶ୍ରଦ୍ଧାରେ ଯେ ମୋତେ ଭଜଇ
ତାହାର ମନ ହେ ରାଜନ
କ୍ରମେ ହୁଅଇ ସୁପ୍ରସନ୍ନ ।୯।

ମନ ପ୍ରସନ୍ନ ଯାର ହୋଇ
ସେ ପ୍ରାଣୀ ଗୁଣ ପ୍ରତେଜଇ
ସମଦ୍ୱେ ସେ ସର୍ବ ଦେଖଇ
ସେ ଜୀବ ଆତ୍ମାକୁ ଜାଣଇ
ଭଜଇ ଶାନ୍ତି ଅବସ୍ଥାନ
ଲଭଇ କୈବଲ୍ୟ ନିର୍ବାଣ ।୧୦।
ଏ ଦେହ ଇନ୍ଦ୍ରିମାନଙ୍କର
ଆତ୍ମା ଅଧ୍ୟକ୍ଷ ସବୁଙ୍କର
ଉଦାସୀ ଜନ ପ୍ରାୟ ହୋଇ
ସେ କୂଟେ ସ୍ଥିତ ହୋଇ ଥାଇ

ଏହାକୁ ଯେ ପ୍ରାଣୀ ଦେଖିଲା
ସେ ପ୍ରାଣୀ ମୁକ୍ତିକୁ ପାଇଲା ।୧୧।
ଦେଖ ଏ ଲିଙ୍ଗ କଳେବର
ସେ ପଞ୍ଚଭୂତେ ସ୍ଥୂଳତର
ଏ ଦଶ ଇନ୍ଦ୍ରିଛନ୍ତି ଏଥି
ଚେତନ ରୂପେ ଆତ୍ମା ତଥି
ଏ ଗୁଣ ପ୍ରବାହରୁ ହୋଇ
ଏହାକୁ ଯେ ଭେଦ ଦେଖଇ
ସେ ପ୍ରାଣୀ ଆତ୍ମାକୁ ଦେଖଇ
କ୍ଳେଶାଦି ତାକୁ ନ ବାଧଇ ।୧୨।

ସମଃ ସମାନୋତ୍ତମମଧ୍ୟମାଧମଃ ସୁଖେ ଚ ଦୁଃଖେ ଚ ଜିତେନ୍ଦ୍ରିୟାଶୟଃ ।
ମୟୋପକ୍ଳୃପ୍ତାଖିଲଲୋକସଂଯୁତୋ ବିଧତ୍ସ୍ୱ ବୀରାଖିଲଲୋକରକ୍ଷଣମ୍ ।୧୩।
ଶ୍ରେୟଃ ପ୍ରଜାପାଳନମେବ ରାଜ୍ଞୋ ଯତ୍ ସାମ୍ପରାୟେ ସୁକୃତାତ୍ ଷଷ୍ଠମଂଶମ୍ ।
ହର୍ତ୍ତାନ୍ୟଥା ହୃତପୁଣ୍ୟଃ ପ୍ରଜାନାମରକ୍ଷିତା କରହାରୋଽଘମତ୍ତି । ୧୪ ।
ଏବଂ ଦ୍ୱିଜାଗ୍ର୍ୟାନୁମତାନୁବୃତ୍ତଧର୍ମପ୍ରଧାନୋଽନ୍ୟତମୋଽବିତାସ୍ୟାଃ ।
ହ୍ରସ୍ୱେନ କାଲେନ ଗୃହୋପଯାତାନ୍ ଦ୍ରଷ୍ଟାସି ସିଦ୍ଧାନନୁରକ୍ତଲୋକଃ । ୧୫ ।

---

ହେ ରାଜନ୍ ! ତୁମ୍ଭେ ମଧ୍ୟ ଜ୍ଞାନୀ, ସୁତରାଂ ତୁମ୍ଭେ ସୁଖ ଦୁଃଖକୁ ସମାନ ଓ ଉତ୍ତମ, ମଧ୍ୟମ ଅଧମରେ ସମବୁଦ୍ଧି ହୋଇ ଇନ୍ଦ୍ରିୟ ଓ ମନ ଦମନକରି ମନଜୟ ପୂର୍ବକ ପ୍ରଜାପାଳନ କର, ମୁଁ ତୁମ୍ଭ ଲାଗି ଯେଉଁ ଅମାତ୍ୟାଦି ପାର୍ଷଦଗଣ ସ୍ଥିର କରିଅଛି, ସେମାନଙ୍କ ସହିତ ମିଳିତ ହୋଇ ସମସ୍ତ ଲୋକ ରକ୍ଷାର ବ୍ୟବସ୍ଥା କର । ୧୩ ।

ପ୍ରଜାପାଳନ ରାଜାର ଶ୍ରେଷ୍ଠଧର୍ମ, ପ୍ରଜାମାନେ ଯେଉଁ ପୁଣ୍ୟାନୁଷ୍ଠାନ କରନ୍ତି, ରାଜା ତହିଁର ପୁଣ୍ୟର ଷଷ୍ଠାଂଶ ଭାଗୀ ହୋଇ ପରଲୋକରେ ତାହା ଭୋଗ କରନ୍ତି, ଯେ ରାଜା ହୋଇ ପ୍ରଜାପାଳନ ନ କରନ୍ତି, ପ୍ରଜାମାନେ ତାଙ୍କର ପୁଣ୍ୟ ହରଣ କରି ନିଅନ୍ତି, ସେ ପ୍ରଜାମାନଙ୍କ ନିକଟରୁ ଯେଉଁ କର ଗ୍ରହଣ କରନ୍ତି, ତହିଁରେ କେବଳ ନିଜର ପ୍ରଜାମାନଙ୍କର ପାପ ଭୋଜନ କରନ୍ତି । ୧୪ ।

ତୁମ୍ଭେ ବ୍ରାହ୍ମଣମାନଙ୍କ ଦ୍ୱାରା ଅନୁମୋଦିତ ଓ ପରମ୍ପରାକ୍ରମେ ଆଗତ ସେହି ଧର୍ମକୁ ପ୍ରଧାନ ଓ ଅର୍ଥ କାମକୁ ପ୍ରାସଙ୍ଗିକ ବୋଧକରି, ଏବଂ ଏହି ଧର୍ମରେ ଅନୁରାଗ ପ୍ରକାଶ କର, ଅନାସକ୍ତଭାବରେ ପ୍ରଜା ପାଳନ କର, ତାହା ହେଲେ ପ୍ରଜାମାନେ ତୁମ୍ଭପ୍ରତି ଅନୁରକ୍ତ ହେବେ ଏବଂ ଅଳ୍ପକାଳ ମଧ୍ୟରେ ତୁମ୍ଭେ ସନକାଦି ସିଦ୍ଧଗଣଙ୍କୁ ନିଜଗୃହରେ ଉପସ୍ଥିତ ଦେଖିବ । ୧୫ ।

---

ଏବେ ହୋ ବେଣଙ୍କ ନନ୍ଦନ
ଶୁଣିବା ଆମ୍ଭର ବଚନ
ଉତ୍ତମ ମଧ୍ୟମ ଅଧମ
ଏ ତିନି ଦେଖ ତୁମ୍ଭେ ସମ
ଏ ଦୁଃଖ ସୁଖ ସମକର
ଇନ୍ଦ୍ରିୟମାନଙ୍କୁ ଜିବାର
ବନ୍ଧୁ ଅମାତ୍ୟ ଆଦି ଯେତେ
ମୋହର ଦେବା ଜାଣି ଚିତ୍ତେ
ତାହାଙ୍କ ସଙ୍ଗତେ ଯେଜଣ
ପ୍ରଜାଙ୍କୁ ପାଳ ସ୍ୱଧର୍ମେଣ । ୧୩ ।
ପ୍ରଜା ପାଳନ ରାଜା ଧର୍ମ
ପ୍ରଜା କରେ ଯେ ଶୁଭକର୍ମ
ପରଲୋକରେ ଷଷ୍ଠ ଅଂଶ
ନୃପତି ଲଭଇ ଅବଶ୍ୟ
ଯେ ରାଜା ପ୍ରଜାଙ୍କୁ ନ ପାଳେ
ଅଧର୍ମ କରି ଜୀଏ ବଳେ
ସେ ରାଜା ନରକ ଭୁଞ୍ଜଇ
ତାହାର କାହିଁ ରକ୍ଷା ନାହିଁ ।୧୪।
ସ୍ୱଧର୍ମେ ଥାଇ ପ୍ରଜାପାଳ
ଗୃହମେଧୀରେ କରୁ କାଳ
ସନକ ଆଦି ମୁନିଜନେ
ଆସିବେ ତୁମ୍ଭର ଭୁବନେ
ତାହାଙ୍କୁ ନୟନେ ଦେଖିବ
ସୁଦିବ୍ୟ ଜ୍ଞାନ ତୁମ୍ଭ ହେବ ।୧୫।

ବରଞ୍ଚ ମତ୍ କଞ୍ଚନ ମାନବେନ୍ଦ୍ର ବୃଣୀଷ୍ୱ ତେଽହଂ ଗୁଣଶୀଲଯନ୍ତ୍ରିତଃ ।
ନାହଂ ମଖୈର୍ବୈ ସୁଲଭସ୍ତପୋଭିର୍ଯୋଗେନ ବା ଯତ୍ ସମଚିତ୍ତବର୍ତ୍ତୀ । ୧୬ ।

ଶ୍ରୀମୈତ୍ରେୟ ଉବାଚ ।

ସ ଇତ୍ଥଂ ଲୋକଗୁରୁଣା ବିଷ୍ୱକ୍ସେନେନ ବିଶ୍ୱଜିତ୍ ।
ଅନୁଶାସିତ ଆଦେଶଂ ଶିରସା ଜଗୃହେ ହରେଃ । ୧୭ ।
ସ୍ପୃଶନ୍ତଂ ପାଦୟୋଃ ପ୍ରେମ୍ଣା ବ୍ରୀଡ଼ିତଂ ସ୍ୱେନ କର୍ମ୍ମଣା ।
ଶତକ୍ରତୁଂ ପରିଷ୍ୱଜ୍ୟ ବିଦ୍ୱେଷଂ ବିସସର୍ଜ ହ । ୧୮ ।
ଭଗବାନଥ ବିଶ୍ୱାତ୍ମା ପୃଥୁନୋପହୃତାର୍ହଣଃ ।
ସମୁଜ୍ଜିହାନୟା ଭକ୍ତ୍ୟା ଗୃହୀତଚରଣାମ୍ବୁଜଃ । ୧୯ ।
ପ୍ରସ୍ଥାନାଭିମୁଖୋଽପ୍ୟେନମନୁଗ୍ରହବିଲମ୍ବିତଃ ।
ପଶ୍ୟନ୍ ପଦ୍ମପଲାଶାକ୍ଷୋ ନ ପ୍ରତସ୍ଥେ ସୁହୃତ୍ ସତାମ୍ । ୨୦ ।

---

ହେ ମାନବେନ୍ଦ୍ର ! ମୁଁ ତୁମ୍ଭର ସଦ୍‌ଗୁଣ ଓ ସତ୍‌ସ୍ୱଭାବଦ୍ୱାରା ବଶୀଭୂତ ହୋଇଅଛି, ଅତଏବ ତୁମ୍ଭେ ମୋ ନିକଟରେ ବର ପ୍ରାର୍ଥନା କର । ଯଜ୍ଞ, ଯୋଗ ବା ତପସ୍ୟା ଦ୍ୱାରା ମୋତେ କେହି ସହଜରେ ପାଏ ନାହିଁ । ଯାହାର ଚିତ୍ତ ବୈଷମ୍ୟ ରହିତ, ମୁଁ ତାହାର ପକ୍ଷରେ ସହଜ ପ୍ରାପ୍ୟ । ୧୬ ।

ଶ୍ରୀମୈତ୍ରେୟ କହିଲେ :—ବିଶ୍ୱ ବିଜୟୀ ପୃଥୁ ଲୋକଗୁରୁ ଭଗବାନ୍ ଶ୍ରୀହରିଙ୍କଠାରୁ ଉପଦେଶ ଲାଭକରି ତାଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରିଥିଲେ । ୧୭ ।

ଏହି ସମୟରେ ଇନ୍ଦ୍ର ନିଜ କୃତକର୍ମ ଲାଗି ଲଜ୍ଜିତ ହୋଇ ପୃଥୁଙ୍କର ପାଦଦ୍ୱୟ ସ୍ପର୍ଶ କରିଥିଲେ, ମହାରାଜ ପୃଥୁ ପ୍ରେମରେ ତାଙ୍କୁ ଆଲିଙ୍ଗନ କରିଥିଲେ, ଏବଂ ବିଦ୍ୱେଷଭାବ ପରିତ୍ୟାଗ କରିଥିଲେ । ୧୮ ।

ସଜ୍ଜନବନ୍ଧୁ, ସର୍ବାନ୍ତର୍ଯ୍ୟାମୀ ଭଗବାନ୍ ଶ୍ରୀହରି ସେଠାରୁ ପ୍ରସ୍ଥାନ କରିବାକୁ ଅଭିଳାଷୀ ହୋଇଥିଲେ ମଧ୍ୟ, କାର୍ଯ୍ୟତଃ ତାହା କଲେ ନାହିଁ, ପୃଥୁ ବିବିଧ ପୂଜାସାମଗ୍ରୀ ଅର୍ପଣକରି ସାତିଶୟ ଭକ୍ତିଭାବରେ ତାହାଙ୍କର ଶ୍ରୀପାଦପଦ୍ମ ଯୁଗଳ ଧାରଣ କରିଥିଲେ । ପଦ୍ମପଲାଶଲୋଚନ ଶ୍ରୀହରି ପ୍ରଫୁଲ୍ଲ ନୟନରେ ତାହାଙ୍କ ପ୍ରତି ଅନୁଗ୍ରହବଶତଃ ବିଳମ୍ବକରିବାକୁ ବାଧ ହେଲେ ସେଠାରୁ ପ୍ରସ୍ଥାନକରି ପାରିଲେନାହିଁ ।୧୯,୨୦

---

ତୋ ଗୁଣଶୀଳେ ମୁହିଁ ବଶ
ହୋଇଲି ଜାଣ ହେ ନରେଶ
ତେଣୁ ତୁ ମୋ'ଠାରୁ ବର
ଯେ ଇଚ୍ଛା ମାଗ ନୃପବର
ତପସ୍ୟାଯୋଗ-ଯୋଗେ ମୁହିଁ
ଦୁର୍ଲ୍ଲଭ ଅଟେ ଜାଣ ତୁହି
ଯାହାର ଚିତ୍ତ ସମେ ଥାଇ
ତାହ୍ନଦେ ନିରତେ ମୁଁ ଥାଇ ।୧୬।

ଶ୍ରୀମୈତ୍ରେୟ ଉବାଚ—
ଏମନ୍ତ ପ୍ରଭୁ ଭବଗ୍ରାହୀ
ପୃଥୁଙ୍କୁ କହିଲେ ବୁଝାଇ
ହରିଙ୍କ ଆଜ୍ଞା ଧରି ଶିରେ
ତକ୍ଷଣେ ପାଦେ ପ୍ରଣମିଲେ ।୧୭।
ଏମନ୍ତ କାଳେ ଦେବରାଜ
ଆପଣା କର୍ମ୍ମେ ପାଇ ଲାଜ
ପୃଥୁଙ୍କ ଚରଣେ ପଡିଲେ
ଅପ୍ରାଧ କଲିଁ ବୋଇଲେ

ପୃଥୁ ଯେ ତହୁଁ ଆଲିଙ୍ଗନ
କରି ତୋଷିଲେ ଇନ୍ଦ୍ରମନ ।୧୮।
ଏ ଅନ୍ତେ ପ୍ରଭୁ ଭଗବାନ
ଗମନେ କଲେକ ଉଦ୍ୟମ
ପୃଥୁ ଯେତେକ ପୂଜା କଲେ
ହରି ତା ଆନନ୍ଦେ ଘେନିଲେ
ସେ ରାଜା ପଡ଼ି ହରି ପାଦେ
ପ୍ରଣାମ କରିଣ ଆନନ୍ଦେ । ୧୯ ।
ଆନନ୍ଦ-ସାଗରେ ବୁଡ଼ିଲା
ପୁଲକ ସର୍ବାଙ୍ଗେ ବହିଲା

ସ ଆଦିରାଜୋ ରଚିତାଞ୍ଜଳିର୍ହରିଂ ବିଲୋକିତୁଂ ନାଶକଦଶ୍ରୁଲୋଚନଃ ।
ନ କିଞ୍ଚନୋବାଚ ସ ବାଷ୍ପବିକ୍ଳବୋ ହୃଦୋପଗୁହ୍ୟାମୁମଧାଦବସ୍ଥିତଃ । ୨୧ ।
ଅଥାବମୃଜ୍ୟାଶ୍ରୁକଳାବିଲୋକୟନ୍ନତୃପ୍ତଦୃଗ୍‌ଗୋଚରମାହ ପୂରୁଷମ୍ ।
ପଦା ସ୍ପୃଶନ୍ତଂ କ୍ଷିତିମଂସ ଉନ୍ନତେ ବିନ୍ୟସ୍ତହସ୍ତାଗ୍ରମୁରଙ୍ଗବିଦ୍ୱିଷଃ । ୨୨ ।

ଶ୍ରୀପୃଥୁରୁବାଚ ।

ବରାନ୍ ବିଭୋ ତ୍ୱଦ୍‌ବରଦେଶ୍ୱରାଦ୍‌ବୁଧଃ କଥଂ ବୃଣୀତେ ଗୁଣବିକ୍ରିୟାତ୍ମନାମ୍ ।
ଯେ ନାରକାଣାମପି ସନ୍ତି ଦେହିନାଂ ତାନୀଶ କୈବଲ୍ୟପତେ ବୃଣେ ନ ଚ । ୨୩ ।
ନ କାମୟେ ନାଥ ତଦପ୍ୟହଂ କ୍ୱଚିନ୍ନ ଯତ୍ର ଯୁଷ୍ମଚ୍ଚରଣାମ୍ବୁଜାସବଃ ।
ମହତ୍ତମାନ୍ତର୍ହୃଦୟାନ୍ମୁଖଚ୍ୟୁତୋ ବିଧତ୍ସ୍ୱ କର୍ଣ୍ଣାୟୁତମେଷ ମେ ବରଃ । ୨୪ ।

---

ଆଦିରାଜା ପୃଥୁ ଭଗବାନଙ୍କ ସମ୍ମୁଖରେ କୃତାଞ୍ଜଳିପୁଟରେ ଦଣ୍ଡାୟମାନ ହୋଇଥାନ୍ତି ଓ ନୟନରୁ ପ୍ରେମାଶ୍ରୁ ଗଡ଼ପଡ଼ୁଥାଏ । ସୁତରାଂ ଭଗବାନଙ୍କୁ ଦେଖି ପାରିଲେ ନାହିଁ, ଆନନ୍ଦରେ ବାଷ୍ପ ରୁଦ୍ଧ ହେଲା, ସୁତରାଂ କିଛି କହିପାରିଲେ ନାହିଁ, ଅବଶେଷରେ ତାଙ୍କୁ କେବଳ ଆଲିଙ୍ଗନକରି ବକ୍ଷରେ ଧାରଣ କଲେ ।୨୧

ତଦନନ୍ତର ପୃଥୁ ଅଶ୍ରୁ ଧାରା ପୋଛି ଅତୃପ୍ତ ନୟନରେ ଭଗବାନଙ୍କୁ ଚାହିଁ ରହିଲେ । ସେ ଦେଖିଲେ ଭଗବାନ ନିଜଚରଣ ଦ୍ୱାରା ଭୂତଳ ସ୍ପର୍ଶକରି ରହିଅଛନ୍ତି ଏବଂ ଗରୁଡ଼ସ୍କନ୍ଧରେ ହସ୍ତାଗ୍ର ସ୍ଥାପନ କରି ରଖି ଅଛନ୍ତି । ଏପରି ଭାବରେ ସେହି ପରମପୁରୁଷଙ୍କୁ ଦେଖି ସେ କହିଲେ । ୨୨ ।

ଶ୍ରୀପୃଥୁ କହିଲେ :—

"ହେ ପ୍ରଭୋ ! ବ୍ରହ୍ମାଦି ଯେଉଁ ଦେବତାମାନେ ବରଦାନ କରିଥାନ୍ତି, ଆପଣ ସେମାନଙ୍କର ଅଧିପତି, ଆପଣଙ୍କ ନିକଟରୁ ବିଜ୍ଞବ୍ୟକ୍ତି ବା ଦେହାଭିମାନୀ ବ୍ୟକ୍ତି କି ଭୋଗ୍ୟବର ପ୍ରାର୍ଥନା କରିପାରେ ? ହେ ମୁକ୍ତିଦାତା ପରମେଶ୍ୱର ! ଯେଉଁ ବର ନରକବାସୀ ପ୍ରାଣୀମାନଙ୍କର କାମ୍ୟ ମୁଁ ଅଜ୍ଞହେଲେ ମଧ୍ୟ ସେହିବର ପ୍ରାର୍ଥନା କରେ । ୨୩ ।

ହେ ନାଥ ! ମୋକ୍ଷ ଅବସ୍ଥାରେ ଯଦି ସାଧୁପୁରୁଷମାନଙ୍କ ହୃଦୟରୁ ମୁଖପଦ୍ମ ନିଃସୃତ ଭବଦୀୟ ଶ୍ରୀପାଦପଦ୍ମର ଗୁଣ କୀର୍ତ୍ତନାଦି କଥାମୃତ ଲାଭ କରି ନ ଯାଏ, ତେବେ ତାହା ମଧ୍ୟ ମୁଁ କଦାପି ପ୍ରାର୍ଥନା କରୁନାହିଁ । ଆପଣ ମୋତେ ଅସଂଖ୍ୟ ଶ୍ରବଣେନ୍ଦ୍ରିୟ ଦିଅନ୍ତୁ, ତଦ୍ୱାରା ଆପଣଙ୍କର ଗୁଣ ଶୁଣିପାରିବି; ଏହାହିଁ ମୋର ପ୍ରାର୍ଥନା । ୨୪ ।

---

ଆନନ୍ଦ-ଅଶ୍ରୁ ନେତ୍ର ପୂର୍ଣ୍ଣେ
ଚାହିଁ ନ ପାରଇ ନୟନେ
କର ଅଞ୍ଜଳି ଶିରେ ଦେଇ
କହଇ ବସ୍ତ୍ର ମୁଖ ଚାହିଁ ।୨୦-୨୨।
ଶ୍ରୀପୃଥୁ ଉବାଚ—
ଆଜ୍ଞା ଯେ ଦେଲେ ବର ଘେନ
ବରେ ମୋ ନାହିଁ ପ୍ରୟୋଜନ

ବର ଘେନନ୍ତି ଭୋଗପାଇଁ
ସେ ଭୋଗ ନରକେ କି ନାହିଁ
କୈବଲ୍ୟନାଥ ତୋତେ ପାଇ
କେ ଭୋଗ ବାଞ୍ଛେ ଜ୍ଞାନୀହୋଇ ।୨୩
ଅପରେ ମୋକ୍ଷ ଧର୍ମ୍ମସାର
ତହିଁରେ ବାଞ୍ଛା ନାହିଁ ମୋର
ତୋ ପାଦପଦ୍ମ ମକରନ୍ଦ
ଅତହିଁ ରସାଳ ସୁଗନ୍ଧ

ମହାନ୍ତ ଅନ୍ତଃ-ହୃଦୟରୁ
ବାହାର ହୋନ୍ତେ ମୁଖଦ୍ୱାରୁ
ତୁମ୍ଭର ଯଶମଧୁ ବହେ
ତହୁଁ ଯେ ସୁଖ ଜାତ ହୁଏ
ସେ ଯଶ ଶ୍ରବଣେ ମୋ ଇଚ୍ଛା
ଅୟୁତେ କର୍ଣ୍ଣ ଦିଅ ବାଞ୍ଛା ।୨୪।

ସ ଉତ୍ତମଃଶ୍ଳୋକ ମହନ୍ମୁଖଚ୍ୟୁତୋ ଭବତ୍‌ପଦାମ୍ଭୋଜସୁଧାକଣାନିଲଃ ।
ସ୍ମୃତିଂ ପୁନର୍ବିସ୍ମୃତତତ୍ତ୍ୱବର୍ତ୍ମନାଂ କୁଯୋଗିନାଂ ନୋ ବିତରତ୍ୟଲଂ ବରୈଃ ।୨୫।
ଯଶଃ ଶିବଂ ସୁଶ୍ରବ ଆର୍ଯ୍ୟସଙ୍ଗମେ ଯଦୃଚ୍ଛୟା ଚୋପଶୃଣୋତି ତେ ସକୃତ୍ ।
କଥଂ ଗୁଣଜ୍ଞୋ ବିରମେଦ୍‌ବିନା ପଶୁଂ ଶ୍ରୀର୍ଯତ୍ ପ୍ରବବ୍ରେ ଗୁଣସଂଗ୍ରହେଚ୍ଛୟା ।୨୬।
ଅଥାଭଜେ ତ୍ୱାଖିଳପୂରୁଷୋତ୍ତମଂ ଗୁଣାଳୟଂ ପଦ୍ମକରେବ ଲାଲସଃ ।
ଅପ୍ୟାବୟୋରେକପତିସ୍ପୃଧୋଃ କଲିର୍ନସ୍ୟାତ୍ କୃତତ୍ୱଚ୍ଚରଣୈକତାନୟୋଃ ।୨୭।
ଜଗଜ୍ଜନନ୍ୟାଂ ଜଗଦୀଶ ବୈଶସଂ ସ୍ୟାଦେବ ଯତ୍‌କର୍ମଣି ନଃ ସମୀହିତମ୍ ।
କରୋଷି ଫଲ୍‌ଗ୍ୱପ୍ୟୁରୁ ଦୀନବତ୍ସଲଃ ସ୍ୱ ଏବ ଧିଷ୍ଣ୍ୟେଽଭିରତସ୍ୟ କିଂ ତୟା ।୨୮।

---

ହେ ପୁଣ୍ୟ ଶ୍ଳୋକ ! ସାଧୁପୁରୁଷମାନଙ୍କ ମୁଖ ନିଃସୃତ ଆପଣଙ୍କର ପାଦପଦ୍ମର ମଧୁବିନ୍ଦୁସଂଯୁକ୍ତ ବାୟୁ ମଧ୍ୟ ତତ୍ତ୍ୱଜ୍ଞାନହୀନ କୁଚ୍ଛକର୍ମାସକ୍ତ ଲୋକମାନଙ୍କର ଆତ୍ମଜ୍ଞାନ ସମ୍ପାଦନ କରେ, ସୁତରାଂ ମୋର ଅନ୍ୟ ବରରେ ପ୍ରୟୋଜନ ନାହିଁ । ୨୫ ।

ହେ ମଙ୍ଗଳ କୀର୍ତ୍ତି ! ଯେଉଁ ବ୍ୟକ୍ତି ମହାଜନମାନଙ୍କ ସଙ୍ଗରେ ଆପଣଙ୍କର ମଙ୍ଗଳମୟ କୀର୍ତ୍ତିଗାଥା ଯେ କୌଣସି ପ୍ରକାରେ ଶ୍ରବଣ କରେ, ସେ ପଶୁ ନ ହୋଇ ଗୁଣଜ୍ଞ ହେଲେ, ସେଥିରୁ କଦାପି ବିରତ ହୋଇ ନ ପାରେ । ଲକ୍ଷ୍ମୀଦେବୀ ମଧ୍ୟ ଆପଣଙ୍କର ସମସ୍ତ ଯଶ ସଂଗ୍ରହ କରିବା ଇଚ୍ଛାରେ ଆପଣଙ୍କର ଯଶଃ ଶ୍ରବଣକୁ ପ୍ରକୃଷ୍ଟରୂପେ ଆଶ୍ରୟ କରି ଅଛନ୍ତି । ୨୬ ।

ଲକ୍ଷ୍ମୀଙ୍କ ତୁଲ୍ୟ ସମୁତ୍ସୁକ ହୋଇ ମୁଁ ମଧ୍ୟ ଆପଣଙ୍କର ଭଜନ କରିବି, ଆପଣ ପୁରୁଷୋତ୍ତମ ଓ ସର୍ବଗୁଣାଳୟ; ହେ ନାଥ ! କମଳା ଓ ମୁଁ ଉଭୟ ଏକପତି ରୂପେ ଆପଣଙ୍କର କାମନା କରିବୁ ଏବଂ ଉଭୟ ଆପଣଙ୍କ ପଦାରବିନ୍ଦରେ ଏକାଗ୍ରଭାବରେ ମନ ନିବେଶ କରିବୁ । ତାହାହେଲେ ଆମ୍ଭ ଉଭୟଙ୍କ ମଧ୍ୟରେ ବିରୋଧ ଉପସ୍ଥିତ ହେବ ନାହିଁ । ୨୭ ।

ହେ ଜଗଦୀଶ୍ୱର ! ଜଗଜ୍ଜନନୀ ଲକ୍ଷ୍ମୀଙ୍କ କାର୍ଯ୍ୟରେ ମୋର ଐକାନ୍ତିକ ଆଗ୍ରହ ହେଉଅଛି, ତେଣୁ ତାହାଙ୍କ ସହିତ ମୋର ବିରୋଧ ସମ୍ଭାବନା ନାହିଁ କିନ୍ତୁ ଆପଣ ଦୀନବତ୍ସଳ ଭକ୍ତମାନଙ୍କର କାର୍ଯ୍ୟ ଅଳ୍ପ ହେଲେ ମଧ୍ୟ ବହୁ ବୋଲି ଜ୍ଞାନ କରିଥାନ୍ତି । ଆପଣ ଯେତେବେଳେ ପରାନନ୍ଦ ସ୍ୱରୂପ ନିଜର ସ୍ୱରୂପରେ ଅବସ୍ଥାନ କରନ୍ତି ସେତେବେଳେ ଲକ୍ଷ୍ମୀଙ୍କଠାରେ ମଧ୍ୟ ଆପଣଙ୍କର କି ପ୍ରୟୋଜନ । ୨୮ ।

---

ତୋ ପାଦପଦ୍ମ ସୁଧା ଯଶ
ସାଧୁଙ୍କ ବଦନୁଁ ପ୍ରକାଶ
କୁଯୋଗୀ ଜନେ ଦିଏ ଜ୍ଞାନ
ଅନେମୋନାହିଁପ୍ରୟୋଜନ ।୨୫,୨୬

ଅଖିଳ ପୁରୁଷଉତ୍ତମ
ତୁ ଗୁଣାଳୟ ତୋ ଚରଣ
ସେବଇ ଲକ୍ଷ୍ମୀର ପରାଏ
ତା ସଙ୍ଗେ କଳହକ ହୋଏ ?

ଜଗତ ଜନନୀ ସଙ୍ଗତେ
ବାଦ ହେଲେହେଁ ଅବରତେ
ତଥାପି ସେବା ନ ତେଜିବି
ଏ ବଣ୍ୟ ସେ ପାଦ ଭଜିବି ।୨୭,୨୮



ଚତୁର୍ଥ ଅଧ୍ୟାୟ ସତୀଙ୍କର ଯଜ୍ଞଯାତ୍ରା ।



ଷଷ୍ଠ ଅଧ୍ୟାୟ ଶିବଙ୍କ ନିକଟରେ
ଦକ୍ଷପ୍ରଭୃତିଙ୍କର ଜୀବନ ପାର୍ଥନା ।



ବିଂଶ ଅଧ୍ୟାୟ
ପୃଥୁଙ୍କପ୍ରତି ବିଷ୍ଣୁଙ୍କର ଉପଦେଶ

ନ୍ତ୍ୟ ୟ ତ୍ୱାମତ ଏବ ସାଧବୋ ବ୍ୟୁଦସ୍ତମାୟାଗୁଣବିଭ୍ରମୋଦୟମ୍ ।
ଭବତ୍ପଦାନୁସ୍ମରଣାଦୃତେ ସତାଂ ନିମିତ୍ତମନ୍ୟଦ୍ଭଗବନ୍ନବିଦ୍ମହେ । ୨୯ ।
ମନ୍ୟେ ଗିରଂ ତେ ଜଗତାଂ ବିମୋହିନୀଂ ବରଂ ବୃଣୀଷ୍ୱେତି ଭଜନ୍ତମାତ୍ଥ ଯତ୍ ।
ବାଚା ନୁ ତନ୍ତ୍ୟା ଯଦି ତେ ଜନୋଽସିତଃ କଥଂ ପୁନଃ କର୍ମ କରୋତି ମୋହିତଃ ।୩୦।
ତ୍ୱନ୍ମାୟୟାଦ୍ଧା ଜନ ଈଶ ଖଣ୍ଡିତୋ ଯଦନ୍ୟଦାଶାସ୍ତ ଋତାତ୍ମନୋଽବୁଧଃ ।
ଯଥାଚରେଦ୍ବାଲହିତଂ ପିତା ସ୍ୱୟଂ ତଥା ତ୍ୱମେବାର୍ହସି ନଃ ସମୀହିତୁମ୍ । ୩୧ ।

ଶ୍ରୀମୈତ୍ରେୟ ଉବାଚ ।

ଇତ୍ୟାଦିରାଜେନ ନୁତଃ ସ ବିଶ୍ୱଦୃକ୍ ତମାହ ରାଜନ୍ ମୟି ଭକ୍ତିରସ୍ତୁ ତେ ।
ଦିଷ୍ଟ୍ୟେଦୃଶୀ ଧୀର୍ମୟି ତେ କୃତା ଯୟା ମାୟାଂ ମଦୀୟାଂ ତରତି ସ୍ମ ଦୁସ୍ତରାମ୍ ।୩୨।

---

ହେ ଭଗବନ୍ ! ଆପଣ ଦୀନବତ୍ସଳ, ମାୟାଗୁଣରେ ଯେଉଁ କାର୍ଯ୍ୟ କରନ୍ତି, ତାହା ଆପଣଙ୍କଠାରେ ନାହିଁ ବୋଲି ସାଧୁବ୍ୟକ୍ତିମାନେ ଜ୍ଞାନୋଦୟପରେ ମଧ୍ୟ ଆପଣଙ୍କର ଭଜନ କରିଥାନ୍ତି । ସେମାନଙ୍କର ଏପରି ସେବାରେ ଆପଣଙ୍କର ଚରଣକମଳ ସ୍ମରଣ ଭିନ୍ନ ଅନ୍ୟ କୌଣସି ପ୍ରକାର ପ୍ରୟୋଜନ ନାହିଁ । ଆପଣ ମୋତେ କହିଲେ—"ବର ପ୍ରାର୍ଥନା କର" ଏ କଥାଟି ଜଗତ୍ ପକ୍ଷରେ ମୋହ କାରିଣୀ, ଆପଣଙ୍କର ବାକ୍ୟ ରଜ୍ଜୁ ଦ୍ୱାରା ଲୋକେ ବଦ୍ଧ ନ ହେଲେ କି ଫଳ ପ୍ରତ୍ୟାଶାରେ ସେମାନେ ପୁନଃ ପୁନଃ କର୍ମ କରୁଥାନ୍ତେ" । ୨୯,୩୦ ।

ହେ ଭଗବନ୍ ! ଅଜ୍ଞ ମାନବ ଆପଣଙ୍କମାୟାରେ ମୁଗ୍ଧ, ଯେହେତୁ ସେମାନେ ପରମାର୍ଥ ସତ୍ୟ ସ୍ୱରୂପ ଆପଣଙ୍କଠାରୁ ପୃଥକ୍ଭାବରେ ସେମାନଙ୍କ ନିମିତ୍ତ ପୃଥକ୍ ସ୍ତ୍ରୀପୁତ୍ରାଦି କାମନା କରିଥାନ୍ତି, କିନ୍ତୁ ପିତା ଯେପରି ନିଜେ ନିଜେ ପୁତ୍ରର ହିତକାମନା କରେ, ଆପଣ ସେହିପରି ସ୍ୱୟଂ ସେମାନଙ୍କର ହିତ କାମନା କରିବେ । ୩୧ ।

ଶ୍ରୀମୈତ୍ରେୟ କହିଲେ :—

ବିଶ୍ୱଦ୍ରଷ୍ଟା ଭଗବାନ୍ ବିଷ୍ଣୁ ଆଦି ରାଜା ପୃଥୁଙ୍କର ଏହି ସ୍ତବ ଶ୍ରବଣକରି କହିଲେ—ହେ ରାଜନ୍ ମୋ ପ୍ରତି ଆପଣଙ୍କର ଭକ୍ତି ହେଉ, ତୁମ୍ଭର ଭାଗ୍ୟବଳରେ ତୁମ୍ଭେ ଏପରି ସୁକୃତ ଲାଭ କରିଅଛ, ଏହିପରି ବୁଦ୍ଧି ଦ୍ୱାରା ପଣ୍ଡିତମାନେ ମୋର ସୁଦୁସ୍ତର ମାୟା ପରିତ୍ୟାଗ କରିଥାନ୍ତି । ୩୨ ।

---

ଦୀନବତ୍ସଳ ତୋର ବାନା
ଭକ୍ତରେ ତୋହର କରୁଣା
ଏଣୁ ଭଜନ୍ତି ଏକ ଭାବେ
ନିଷ୍କାମ ଭାବରେ ସାଧବେ
ଅନ୍ୟନ୍ତ ଫଳ ନ ବାଞ୍ଛନ୍ତି
ଆନନ୍ଦେ ତୋ ପାଦ ଭଜନ୍ତି ।୨୯।
ଭଜିଲା ଲୋକଠାରେ ଯାହା
"ବର ମାଗ ତୁ" ବୋଲୁ ତାହା

ହେ ନାଥ ? ଏ ତୋହର ବାଣୀ
ଜାଣିଲି ବିଶ୍ୱବିମୋହିନୀ
ଫଳ ଆଶାରେ ଲୋଭୀ ହୋଇ
ମାୟା ମୋହରେ ଭ୍ରମୁ ଥାଇ
ତାଙ୍କୁ ନ ଦେବ ଭୋଗ କିଛି
ଯେବେ ଭକତେ ଦୟା ଅଛି
ପିତା ଯେସନେ ପୁତ୍ରହିତ
କରଇ ସେହେ ଅବିରତ

ତୁମ୍ଭେ ସେରୂପେ ଆଚରିବ
ତେବେ ଭକତ ନିସ୍ତରିବ ।୩୦,୩୧

ଶ୍ରୀମୈତ୍ରେୟ ଉବାଚ—

ଏମନ୍ତ ପୃଥୁର ବଚନ
ଶୁଣି କହନ୍ତି ଭଗବାନ
ହେ ରାଜା ମୋ ଚରଣ ଯୁଗେ
ତୋ ଦୃଢ ଭକ୍ତି ହେଉ ବେଗେ

ତତ୍ ତ୍ୱଂ କୁରୁ ମୟ୍ୟାଦିଷ୍ଟମପ୍ରମତ୍ତଃ ପ୍ରଜାପତେ ।
ମଦାଦେଶ କରୋ ଲୋକଃ ସର୍ବତ୍ରାପ୍ନୋତି ଶୋଭନମ୍ । ୩୩ ।
ଇତି ବୈଣ୍ୟସ୍ୟ ରାଜର୍ଷେଃ ପ୍ରତିନନ୍ଦ୍ୟାର୍ଥବଦ୍‌ବଚଃ ।
ପୂଜିତୋଽନୁଗୃହୀତ୍ୱୈନଂ ଗନ୍ତୁଂ ଚକ୍ରେଽଚ୍ୟୁତୋମତିମ୍ । ୩୪ ।
ଦେବର୍ଷି ପିତୃଗନ୍ଧର୍ବସିଦ୍ଧଚାରଣପନ୍ନଗାଃ ।
କିନ୍ନରାପ୍‌ସରସୋ ମର୍ତ୍ତ୍ୟାଃ ଖଗା ଭୂତାନ୍ୟନେକଶଃ । ୩୫ ।
ଯଜ୍ଞେଶ୍ୱରଧିୟା ରାଜ୍ଞା ବାଗ୍‌ବିତ୍ତାଞ୍ଜଳିଭକ୍ତିତଃ ।
ସଭାଜିତା ଯୟୁଃ ସର୍ବେ ବୈକୁଣ୍ଠାନୁଗତାସ୍ତତଃ । ୩୬ ।
ଭଗବାନପି ରାଜର୍ଷେଃ ସୋପାଧ୍ୟାୟସ୍ୟ ଚାଚ୍ୟୁତଃ ।
ହରନ୍ନିବ ମନୋଽମୁଷ୍ୟ ସ୍ୱଧାମ ପ୍ରତ୍ୟପଦ୍ୟତ । ୩୭ ।

---

ହେ ପ୍ରଜାପତେ ! ମୁଁ ଯାହା ଆଦେଶ କଲି ତୁମ୍ଭେ ତାହା ଅବଧାନ କରି ପାଳନ କର, ମୋର ଆଜ୍ଞା ପାଳନକାରୀ ବ୍ୟକ୍ତି ସର୍ବତ୍ର ମଙ୍ଗଳଲାଭ କରିଥାଏ । ୩୩ ।

ହେ ବିଦୁର ! ଭଗବାନ୍ ଶ୍ରୀହରି ଏହିପରି ରାଜର୍ଷି ପୃଥୁଙ୍କର ସାରବାନ୍ ବାକ୍ୟପ୍ରତି ସମାଦର କରି ତାହାଙ୍କୁ ଅନୁଗ୍ରହ କରି ପ୍ରସ୍ଥାନ କରିବାର ଇଚ୍ଛା ପ୍ରକାଶ କଲେ । ୩୪ ।

ତଦନନ୍ତର ମହାରାଜ ପୃଥୁ ଦେବର୍ଷି, ପିତୃ, ଗନ୍ଧର୍ବ, ସିଦ୍ଧ, ଚାରଣ, ପନ୍ନଗ, କିନ୍ନର, ଅପ୍‌ସରା ମର୍ତ୍ତ୍ୟ, ଖଗ ଓ ଅନ୍ୟାନ୍ୟ ବହୁବିଧ ପ୍ରାଣୀ ଏବଂ ବିଷ୍ଣୁଙ୍କର ପାର୍ଷଦଗଣଙ୍କୁ ଯଜ୍ଞେଶ୍ୱର ବିଷ୍ଣୁଙ୍କଠାରୁ ଅଭିନ୍ନ ଭାବି ବାକ୍ୟ, ବିତ୍ତ, ଅଞ୍ଜଳି ଓ ଭକ୍ତିଦ୍ୱାରା ସେମାନଙ୍କୁ ଯଥା ବିହିତ ପୂଜା କରିଥିଲେ । ସେମାନେ ଏହିପରି ପୂଜିତ ହୋଇ ପ୍ରସ୍ଥାନ କରିଥିଲେ । ୩୫,୩୬ ।

ଭଗବାନ୍ ଶ୍ରୀହରି ମଧ୍ୟ ଋତ୍ୱିକମାନଙ୍କ ସହିତ ରାଜର୍ଷି ପୃଥୁଙ୍କର ମନ ହରଣ କରି ସ୍ୱଧାମକୁ ଗମନ କରିଥିଲେ । ୩୭ ।

---

ମୋର ବଚନେ ତୋର ବୁଦ୍ଧି
ଭକତ ଯୋଗେ ଯେ ପ୍ରସିଦ୍ଧି
ଏଣୁ ତୁସ୍ତର ମୋର ମାୟା
ତୋତେ ନ ଲାଗୁ ପୁଣ୍ୟଦେହା

ଏମନ୍ତ ପରମାର୍ଥ ବାଣୀ
ରାଜର୍ଷି ପୃଥୁଙ୍କର ସେ ଭଣି
ତାର ପୂଜନେ ତୋଷ ହୋଇ
ତାଠାରେ ଅନୁଗ୍ରହ ବହି

ରାଜର୍ଷି ପୃଥୁ ଆନେ ଯେତେ
ଯେ ଉପାଧ୍ୟାୟ ଯଜ୍ଞ ମତେ
ହରିଲେ ତାହାଙ୍କର ମନ
ବୈକୁଣ୍ଠେ ବିଜେ ଭଗବାନ

ଅଦୃଷ୍ଟାୟ ନମସ୍କୃତ୍ୟ ନୃପଃ ସନ୍ଦର୍ଶିତାତ୍ମନେ ।
ଅବ୍ୟକ୍ତାୟ ଚ ଦେବାନାଂ ଦେବାୟ ସ୍ୱପୁରଂ ଯଯୌ । ୩୮ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ପୃଥୁଚରିତେ ପୃଥୁସ୍ତବୋ ନାମ ବିଂଶୋଽଧ୍ୟାୟଃ । ୨୦ ।

---

ଅବ୍ୟକ୍ତ ହେଲେ ମଧ୍ୟ ଭକ୍ତଜନ ସମୀପରେ ଯେ ନିଜକୁ ପ୍ରଦର୍ଶନ କରନ୍ତି, ସେହି ଭଗବାନ୍ ନୟନପଥ ଅତିକ୍ରମ କରନ୍ତେ ମହାରାଜ ପୃଥୁ ସେହି ସର୍ବଦେବାଧିଦେବଙ୍କୁ ପ୍ରଣାମ କରି ନିଜ ନଗରକୁ ପ୍ରତ୍ୟାଗମନ କରିଥିଲେ । ୩୮ ।

---

| | |
|---|---|
| ସେ ପୃଥୁ ତାଙ୍କୁ ନମସ୍କାରି | ସୁଜନ ଜନେ ଶୁଣ ଏହା |
| କରିଣ ଗଲେ ନିଜପୁରି ।୩୭-୩୮ | ଯେତେବେ ଚରିତ ବିଷ୍ଣୁ ମାୟା |
| ଏ ବିଷ୍ଣୁ ପୃଥୁର ସମ୍ବାଦ | ପୁରାଣ କରି ଗୀତ ରସ |
| ଶୁଣନ୍ତେ ନ ଲାଗେ ପ୍ରମାଦ | ଭଣଇ ଜଗନ୍ନାଥ ଦାସ । |





## ଏ କ ବିଂ ଶ ଅ ଧ୍ୟା ୟ ।

ଏକବିଂଶେତ୍ତୁ ପୃଥୁନା ପ୍ରଜାନାମନୁଶାସନମ୍ ।
ମହାସତ୍ରେ ସୁର୍ବାଦୀନାଂ ମହାସଦସି ବର୍ଣ୍ଣ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ମୌକ୍ତିକୈଃ କୁସୁମସ୍ରଗ୍‌ଭିର୍ଦୁକୂଲୈଃ ସ୍ୱର୍ଣ୍ଣତୋରଣୈଃ ।
ମହାସୁରଭିଭିର୍ଧୂପୈର୍ମଣ୍ଡିତଂ ତତ୍ର ତତ୍ର ବୈ । ୧ ।
ଚନ୍ଦନାଗୁରୁତୋୟାର୍ଦ୍ରରଥ୍ୟାଚତ୍ୱର ମାର୍ଗବତ୍ ।
ପୁଷ୍ପାକ୍ଷତଫଳୈସ୍ତୋକ୍ମୈର୍ଲାଜୈରର୍ଚିଭିରର୍ଚ୍ଚିତମ୍ । ୨ ।
ସବୃନ୍ତୈଃ କଦଳୀସ୍ତମ୍ଭୈଃ ପୂଗପୋତୈଃ ପରିଷ୍କୃତମ୍ ।
ତରୁପଲ୍ଲବମାଳାଭିଃ ସର୍ବତଃ ସମଲଂକୃତମ୍ । ୩ ।

---

### ପୃଥୁରାଜାଙ୍କର ପ୍ରଜାମାନଙ୍କୁ ଉପଦେଶ ।

ଏକବିଂଶ ଅଧ୍ୟାୟରେ ପୃଥୁରାଜା ପ୍ରଜାମାନଙ୍କୁ ଉପଦେଶ ଦେଇ ଯଜ୍ଞ ସଭାରେ ଦେବତାମାନଙ୍କୁ ସନ୍ତୋଷ କରିଥିଲେ । ୦ ।

ଶ୍ରୀମୈତ୍ରେୟ କହିଲେ :—

ବତ୍ସ ବିଦୁର ! ପୃଥୁରାଜାଙ୍କର ନଗର ପ୍ରବେଶ କାଳରେ ସେହି ରାଜନଗରୀ ସ୍ଥାନେ ସ୍ଥାନେ ଅସଂଖ୍ୟମୁକ୍ତା, ପୁଷ୍ପ, ମାଲ୍ୟ, ଦୁକୂଳ ଓ ସ୍ୱର୍ଣ୍ଣତୋରଣରେ ସୁଶୋଭିତ ଏବଂ ସୁଗନ୍ଧଧୂପରେ ସୁବାସିତ ହୋଇଥିଲା । ପଥ ଓ ପ୍ରାଙ୍ଗଣ ସମୂହ ଚନ୍ଦନ ଅଗୁରୁ ମିଶ୍ରିତ ଜଳରେ ସିକ୍ତ ହୋଇଥିଲା । ପୁଷ୍ପ, ଫଳ, ଆତପତଣ୍ଡୁଳ, ଜବାଙ୍କୁର, ଲଜା ଏବଂ ଦୀପ, ଫଳ, ପୁଷ୍ପଫଳଯୁକ୍ତ କଦଳୀସ୍ତମ୍ଭ କ୍ଷୁଦ୍ର କ୍ଷୁଦ୍ର ଗୁବାକବୃକ୍ଷ ଏବଂ ବିବିଧ ତରୁ ପଲ୍ଲବମାଳା ଦ୍ୱାରା ସୁସଜ୍ଜିତ ହୋଇ ନଗରର ଶୋଭାବର୍ଦ୍ଧନ କରୁଥିଲା । ୧-୩ ।

---

ପୃଥୁ ପ୍ରଜାଙ୍କୁ ଉପଦେଶ । ଦଅନ୍ତି ବର୍ଣ୍ଣେ ଏକବିଂଶ ॥

ଶ୍ରୀ ମୈତ୍ରେୟ ଉବାଚ—

କହନ୍ତି ମଇତ୍ରେୟ ଋଷି
ଶୁଣ ବିଦୁର କୁରୁବଂଶୀ
ପୁରେ ପ୍ରବେଶ କରସାଇଁ
ଯେ ପୁର ମୁକ୍ତାଦାମେ ଶୋଭି

ସୁବର୍ଣ୍ଣ ତୋରଣା ଦୁକୂଳେ
ସୁଗନ୍ଧ ଧୂପ ପୁଷ୍ପମାଳେ
ଚନ୍ଦନ ଅଗୁରୁ ଜଳରେ
ସିଞ୍ଚିତ ବାଟ ଅଗଣାରେ
ଫଳ ତଣ୍ଡୁଳ ଦୁର୍ବାକ୍ଷତେ
ଜଳନ୍ତି ଦୀପ ଲୋକ ହସ୍ତେ

କଦଳୀ ସ୍ତମ୍ଭ ପୂଗପୋତେ
ତରୁ-ପଲ୍ଲବମାଳ ଯୁତେ
ସେ ପୁର ଅଛି ଅଳଂକୃତ
ମଙ୍ଗଳ ଦ୍ରବ୍ୟ ଯେ ସର୍ବତ୍ର
ପ୍ରଜାଏ ଘୀପାବଳୀକର
ଆବର ଯେ ଦ୍ରବ୍ୟ ମଙ୍ଗଳ

ପ୍ରଜାସ୍ତଂ ଦୀପବଲିଭିଃ ସମ୍ଭୃତାଶେଷମଙ୍ଗଳୈଃ ।
ଅଭীୟୁର୍ମୃଷ୍ଟକନ୍ୟାଶ୍ଚ ମୃଷ୍ଟକୁଣ୍ଡଳମଣ୍ଡିତାଃ । ୪ ।
ଶଙ୍ଖଦୁନ୍ଦୁଭିଘୋଷେଣ ବ୍ରହ୍ମଘୋଷେଣ ଚର୍ତ୍ୱିଜାମ୍ ।
ବିବେଶ ଭବନଂ ବୀରଃ ସ୍ତୂୟମାନୋ ଗତସ୍ମୟଃ । ୫ ।
ପୂଜିତଃ ପୂଜୟାମାସ ତତ୍ର ତତ୍ର ମହାଯଶାଃ ।
ପୌରାନ୍ ଜାନପଦାଂସ୍ତାଂସ୍ତାନ୍ ପ୍ରୀତଃ ପ୍ରିୟବରପ୍ରଦଃ । ୬ ।
ସ ଏବମାଦୀନ୍ୟନବଦ୍ୟଚେଷ୍ଟିତଃ କର୍ମାଣି ଭୂୟାଂସି ମହାନ୍ ମହତ୍ତମଃ ।
କୁର୍ବନ୍ ଶଶାସାବନିମଣ୍ଡଳଂ ଯଶଃ ସ୍ଫୀତଂ ନିଧାୟାରୁରୁହେ ପରଂ ପଦମ୍ ।୭।
ଶ୍ରୀସୂତ ଉବାଚ ।
ତଦାଦିରାଜସ୍ୟ ଯଶୋ ବିଜୃମ୍ଭିତଂ ଗୁଣୈରଶେଷୈର୍ଗୁଣବତ୍ ସଭାଜିତମ୍ ।
କ୍ଷତ୍ତା ମହାଭାଗବତଃ ସଦସ୍ପତେ କୌଶାରବିଂ ପ୍ରାହ ଗୃଣନ୍ତମର୍ଚ୍ଚୟନ୍ । ୮ ।

---

ପ୍ରଜାମାନେ ଏବଂ ସ୍ନାନାଦି ଦ୍ୱାରା ପରିଶୁଦ୍ଧ ଓ ସମୁଜ୍ଜ୍ୱଳ ମଣିକୁଣ୍ଡଳଭୂଷିତା କନ୍ୟାମାନେ ଦୀପମାଳା ଓ ଦଧି ପ୍ରଭୃତି ବହୁବିଧ ମାଙ୍ଗଳିକଦ୍ରବ୍ୟ ସହ ମହାରାଜ ପୃଥୁଙ୍କ ସମ୍ବର୍ଦ୍ଧନା କରିବାନିମନ୍ତେ ଗମନ କରିଥିଲେ ।୪।

ବୀର ପୃଥୁ ଶଙ୍ଖ ଦୁନ୍ଦୁଭିଶବ୍ଦ ଏବଂ ଋତ୍ୱିକମାନଙ୍କ କର୍ତ୍ତୃକ ଉଚ୍ଚାରିତ ବେଦଧ୍ୱନିଦ୍ୱାରା ସ୍ତୂୟମାନ ହୋଇ ବିନୀତଭାବରେ ଗୃହରେ ପ୍ରବେଶ କରିଥିଲେ । ୫ ।

ବିପୁଳକୀର୍ତ୍ତି ମହାରାଜ ପୃଥୁ ସ୍ଥାନେ ସ୍ଥାନେ ପୁରବାସୀ ଓ ଜନପଦବାସିମାନଙ୍କ ଦ୍ୱାରା ପୂଜିତ ହୋଇ ପ୍ରୀତ ଲାଭ କରିଥିଲେ ଏବଂ ଅଭୀଷ୍ଟ ବରପ୍ରଦ ପୃଥୁ ସେମାନଙ୍କୁ ପ୍ରତିପୂଜା କରିଥିଲେ । ୬ ।

ପବିତ୍ରକୀର୍ତ୍ତି ମହତ୍ତମ ପୃଥୁରାଜ ଏହିପରି ଯଜ୍ଞାଦି ବହୁବିଧ କର୍ମକରି ଭୂମଣ୍ଡଳ ଶାସନ ଏବଂ ଅବଶେଷରେ ପୃଥ୍ୱୀରେ ବିପୁଳକୀର୍ତ୍ତି ସ୍ଥାପନ ପୂର୍ବକ ପରମପଦରେ ଆରୋହଣ କରିଥିଲେ । ୭ ।

ଶ୍ରୀସୂତକହିଲେ :—ହେ ଶୌନକ ! ମୈତ୍ରେୟ ଆଦିରାଜ ଅଶେଷ ଗୁଣାଧାର ଓ ଗୁଣଜ୍ଞବ୍ୟକ୍ତିଙ୍କ ଦ୍ୱାରା ପ୍ରଶଂସିତ ଯଶଃ କୀର୍ତ୍ତନ କରିଥିଲେ; ମହାଭାଗବତ ବିଦୁର ତାହାଁର ସତ୍କାର କରି କହିଲେ । ୮ ।

---

ଉଜ୍ଜ୍ୱଳ କନ୍ୟାଗଣ ମେଳେ
ଦିବ୍ୟକୁଣ୍ଡଳ କର୍ଣ୍ଣେ ଲୁଳେ
ମିଳିଲେ ରାଜାର ଅଗ୍ରତେ
ପୂଜାର ବଳି ଘେନି ହସ୍ତେ
ଶଙ୍ଖ ଦୁନ୍ଦୁଭି ବାଦ୍ୟ ନାଦ
ଋତ୍ୱିକେ ପଢନ୍ତି ଯେ ବେଦ
ସ୍ତୁତି କରନ୍ତି ସର୍ବେ ମିଳି
ପ୍ରିୟେ ଦିଅନ୍ତି ହୁଳାହୁଳି
ଭୁବନେ ବିଜେ ନୃପବର
ସର୍ବନ୍ତ ତେଜି ଅହଂକାର

ସେ ପୁରେ ମହାନ୍ତ ଯେ ଥିଲେ
ପୂଜିତ ହୋଇ ପୂଜା କଲେ
ସେ ପୃଥୁ ଏ ରୂପେ ନାନାଦି
କୁଶଳ କର୍ମକୁ ସମ୍ପାଦି
ଅବନୀମଣ୍ଡଳ ପାଳନ
କରି ନିର୍ମଳ ଯଶ ଗୁଣ
ରଖି ମହୀରେ ଅନ୍ତକାଳେ
ପରମପଦେ ସେ ଭଜିଲେ ।୪-୭।

ଶ୍ରୀସୂତ ଉବାଚ—

କହନ୍ତି ସୂତ ପୌରାଣିକ
ଶୁଣ ହେ ମୁନି ଶଉନକ
ସେ ଆଦି ରାଜା ପୃଥୁ ଯଶ
ଅଶେଷ ଗୁଣେ ଯେ ପ୍ରକାଶ
ସେ ଯଶ ମହାଭାଗବତ
ବିଦୁର ଶୁଣି କୃତକୃତ୍ୟ
ମୈତ୍ରେୟ ମୁନିଙ୍କୁ ପୂଜଣ
ପୁଚ୍ଛଇ ପଦେଶ ଚରଣ ।୮।

ଶ୍ରୀବିଦୁର ଉବାଚ ।

ସୋଽଭିଷିକ୍ତଃ ପୃଥୁର୍ବିପ୍ରୈର୍ଲବ୍ଧାଶେଷସୁରାର୍ହଣଃ ।
ବିଭ୍ରତ୍ ସ ବୈଷ୍ଣବଂ ତେଜୋ ବାହ୍ୱୋର୍ଯାଭ୍ୟାଂ ଦୁଦୋହ ଗାମ୍ । ୯ ।
କୋ ନ୍ୱସ୍ୟ କୀର୍ତ୍ତିଂ ନ ଶୃଣୋତ୍ୟଭିଜ୍ଞୋ ଯଦ୍ୱିକ୍ରମୋଚ୍ଛିଷ୍ଟମଶେଷଭୂପାଃ ।
ଲୋକାଃ ସପାଲା ଉପଜୀବନ୍ତି କାମମଦ୍ୟାପି ତନ୍ମେ ବଦ କର୍ମ ଶୁଦ୍ଧମ୍ ।୧୦।

ଶ୍ରୀମୈତ୍ରେୟ ଉବାଚ ।

ଗଙ୍ଗାଯମୁନୟୋର୍ନଦ୍ୟୋରନ୍ତରା କ୍ଷେତ୍ରମାବସନ୍ ।
ଆରବ୍ଧାନେବ ବୁଭୁଜେ ଭୋଗାନ୍ ପୁଣ୍ୟଜିହାସୟା । ୧୧ ।
ସର୍ବତ୍ରାସ୍ଖଳିତାଦେଶଃ ସପ୍ତଦ୍ୱୀପୈକଦଣ୍ଡଧୃକ୍ ।
ଅନ୍ୟତ୍ର ବ୍ରାହ୍ମଣକୁଲାଦନ୍ୟତ୍ରାଚ୍ୟୁତଗୋତ୍ରତଃ । ୧୨ ।

ଶ୍ରୀବିଦୁର କହିଲେ :—

ବ୍ରାହ୍ମଣମାନେ ଯାହାଙ୍କର ଅଭିଷେକ କରନ୍ତି, ସେ ଦେବଗଣଙ୍କନିକଟରେ ସମ୍ମାନିତ, ଯେ ବାହୁଦ୍ୱାରା ପୃଥିବୀକୁ ଦୋହନ ଏବଂ ବିଷ୍ଣୁତେଜ ଧାରଣକରିଥିଲେ, ସେହି ପୃଥୁରାଜ ଆଉ କଣ କାର୍ଯ୍ୟ କରିଥିଲେ ?।୯।

ଯାହାଙ୍କର ବିକ୍ରମାଦିର ଉଚ୍ଛିଷ୍ଟସ୍ୱରୂପ ଅବଶିଷ୍ଟ ଭୋଗପ୍ରାପ୍ତ ହୋଇ ଇନ୍ଦ୍ରାଦି ଲୋକପାଳଗଣଙ୍କ ସହିତ ନିଖିଳ ଲୋକ ଓ ଭୂପାଳଗଣ ଅଦ୍ୟାପି ଜୀବିତ ରହି ଅଛନ୍ତି । କେଉଁ ଗୁଣଗ୍ରାହୀ ବ୍ୟକ୍ତି ସେହି ପୃଥୁଙ୍କର ଗୁଣ ଶ୍ରବଣ ନ କରିବେ ? ଆପଣ ତାହାଙ୍କର ପବିତ୍ର କର୍ମ ପ୍ରକାଶ କରିବାକୁ ଆଜ୍ଞା କରନ୍ତୁ ।୧୦

ଶ୍ରୀମୈତ୍ରେୟ କହିଲେ :—ଆଦିରାଜ ପୃଥୁ ଗଙ୍ଗା ଏବଂ ଯମୁନା ଏହି ନଦୀମଧ୍ୟସ୍ଥିତ ପବିତ୍ର ଭୂମିରେ ବାସ କରି ଭୋଗଦ୍ୱାରା ପୁଣ୍ୟକ୍ଷୟ କରିବାର ବାସନାରେ ପ୍ରାକ୍ତନ କର୍ମାରବ୍ଧ ବିବିଧ ଭୋଗ କରିବାକୁ ଲାଗିଲେ, କିନ୍ତୁ ଜନ୍ମାନ୍ତରରେ ଭୋଗକରିବାକୁ ହେବ ଏଥିପାଇଁ କୌଣସି କର୍ମ କଲେ ନାହିଁ । ୧୧ ।

ସପ୍ତଦ୍ୱୀପମଧ୍ୟରେ ସେ ଏକମାତ୍ର ଦଣ୍ଡଧାରୀ ଥିଲେ । ତାହାଙ୍କର ଆଦେଶ ସର୍ବତ୍ର ଅପ୍ରତିହତ ଥିଲା । କେବଳ ବ୍ରାହ୍ମଣକୁଳ ଓ ଅଚ୍ୟୁତ ଗୋତ୍ରୀ ( ବୈଷ୍ଣବ ଗଣଙ୍କର ) ପ୍ରତି ସେ କୌଣସି ପ୍ରକାର ଦଣ୍ଡ ବିଧାନ କରୁ ନ ଥିଲେ । ୧୨ ।

ଶ୍ରୀବିଦୁର ଉବାଚ—
ସେ ପୃଥୁ ବିପ୍ରଙ୍କରେ କରି
ରାଜ୍ୟେ ହୋଇଲେ ଦଣ୍ଡଧାରୀ
ଅଶେଷ ଦେବଗଣଙ୍କର
ପୂଜା ପାଇଲେ ନୃପବର
ବିଷ୍ଣୁର ଅଂଶ ଧରି ତେଜେ
ଭୂମି ଦୁହିଁଲେ ବେନି ଭୁଜେ
ଯାର ବିକ୍ରମ ଅବଶେଷ
ଉଚ୍ଛିଷ୍ଟ ଭୁଞ୍ଜନ୍ତି ନରେଶ
ଏ ଲୋକପାଳ ଆଦି ଯେତେ
ଅଦ୍ୟାପି ଅଛନ୍ତି ନିଶ୍ଚିନ୍ତେ
ସେ ପୃଥୁରାଜା କୀର୍ତ୍ତି ପୁଣି
କେ ଅବା ସେ କଥା ନ ଶୁଣି
ଏଣୁ ତା ଶୁଦ୍ଧକର୍ମ ଯେତେ
କହ ହେ ମୁନି ମୋ ଅଗ୍ରତେ ।୯,୧୦

ଶ୍ରୀମୈତ୍ରେୟ ଉବାଚ—
ଆନନ୍ଦେ ମଇତ୍ରେୟ ମୁନି
କହନ୍ତି ହରିଷ ଘେନି
ସେ ପୁଣ୍ୟ ପୃଥୁର ଚରିତ
ଶୁଣ ବିଦୁର ଏକ ଚିତ୍ତ
ଗଙ୍ଗା ଯମୁନା ମଧ୍ୟେ ପୁର
କରାଇ ରହି ପୃଥୁ ବୀର
ପ୍ରାରବ୍ଧ କର୍ମ କ୍ଷୟ ପାଇ
ଭୋଗ ଭୁଞ୍ଜନ୍ତି ନରସାଇଁ
ସପତଦ୍ୱୀପେ ଏକ ଦଣ୍ଡ
ଧରେ ସେ ନୃପତି ପ୍ରଚଣ୍ଡ
ବ୍ରାହ୍ମଣ ବୈଷ୍ଣବନ୍ତୁ ଅନ୍ୟ
ଆଜ୍ଞା ଲଙ୍ଘନ୍ତି ନାହିଁ ଜନ ।୧୧,୧୨

ଏକଦାସୀନ୍ମହାସତ୍ରଦୀକ୍ଷା ତତ୍ର ଦିବୌକସାମ୍ ।
ସମାଜୋ ବ୍ରହ୍ମର୍ଷୀଣାଂ ଚ ରାଜର୍ଷୀଣାଂ ଚ ସତ୍ତମ । ୧୩ ।
ତସ୍ମିନ୍ନର୍ହତ୍ସୁ ସର୍ବେଷୁ ସ୍ୱର୍ଚ୍ଚିତେଷୁ ଯଥାର୍ହତଃ ।
ଉତ୍ଥିତଃ ସଦସୋ ମଧ୍ୟେ ତାରାଣାମୁଡୁରାଡ଼ିବ । ୧୪ ।
ପ୍ରାଂଶୁଃ ପୀନାୟତଭୁଜୋ ଗୌରଃ କଞ୍ଜାରୁଣେକ୍ଷଣଃ ।
ସୁନାସଃ ସୁମୁଖଃ ସୌମ୍ୟଃ ପୀନାଂସଃ ସୁଦ୍ୱିଜସ୍ମିତଃ । ୧୫ ।
ବ୍ୟୂଢ଼ବକ୍ଷା ବୃହଚ୍ଛ୍ରୋଣିର୍ବଲିବଲ୍‌ଗୁଦଲୋଦରଃ ।
ଆବର୍ତ୍ତନାଭିରୋଜସ୍ୱୀ କାଞ୍ଚନୋରୁରୁଦଗ୍ରପାତ୍ । ୧୬ ।
ସୂକ୍ଷ୍ମବକ୍ରାସିତସ୍ନିଗ୍ଧମୂର୍ଦ୍ଧଜଃ କମ୍ବୁକନ୍ଧରଃ ।
ମହାଧନେ ଦୁକୂଲାଗ୍ର୍ୟେ ପରିଧାୟୋପବୀୟ ଚ । ୧୭ ।

ଏକଦା ମହାରାଜ ପୃଥୁ ଆଉ ଗୋଟିଏ ମହାଯଜ୍ଞରେ ଦୀକ୍ଷିତ ହୋଇଥିଲେ । ଦେବତା, ମହର୍ଷି ଏବଂ ରାଜର୍ଷି ସମସ୍ତେ ଏହି ଯଜ୍ଞକୁ ଆଗମନ କରିଥିଲେ । ୧୩ ।

ପୂଜନୀୟ ବ୍ୟକ୍ତିମାନଙ୍କ ପ୍ରତି ଯଥାଯୋଗ୍ୟ ପୂଜା କରି ତାରାମଣ୍ଡଳୀରେ ଚନ୍ଦ୍ରତୁଲ୍ୟ ମହାରାଜ ପୃଥୁ ସଭାମଧ୍ୟରେ ଗାତ୍ରୋତ୍ଥାନ କରି ଋତ୍ୱିକ୍‌ଙ୍କୁ ଗୃହିଁ କହିଲେ । ୧୪ ।

ତାହାଙ୍କର ଶରୀର ଉନ୍ନତ, ବର୍ଣ୍ଣ ଗୌର, ବାହୁଦ୍ୱୟ ସ୍ଥୂଳ ଏବଂ ଦୀର୍ଘ, ନୟନଦ୍ୱୟ ପଦ୍ମତୁଲ୍ୟ ଅରୁଣବର୍ଣ୍ଣ, ନାସିକା ସୁନ୍ଦର, ବଦନ ମନୋହର, ପ୍ରକୃତି ଧୀର, ସ୍କନ୍ଧଦ୍ୱୟ ଉନ୍ନତ, ଦନ୍ତ ଏବଂ ହାସ୍ୟ ରମଣୀୟ । ୧୫ ।

ତାହାଙ୍କର ବକ୍ଷସ୍ଥଳ ବିଶାଳ, କଟି ବୃହତ୍, ଉଦର ଅଶ୍ୱତ୍ଥପତ୍ର ତୁଲ୍ୟ ଏବଂ ତ୍ରିବଳି ଦ୍ୱାରା ଶୋଭିତ, ନାଭିଦେଶ ଆବର୍ତ୍ତପରି ଗମ୍ଭୀର, ଉରୁଦ୍ୱୟ ସୁବର୍ଣ୍ଣତୁଲ୍ୟ ଉଜ୍ଜ୍ୱଳ ଏବଂ ଚରଣ ଦ୍ୱୟ ଉନ୍ନତାଗ୍ର ।୧୬

ତାହାଙ୍କର ମସ୍ତକର କେଶ ସୂକ୍ଷ୍ମ, କୁଞ୍ଚିଳ, କୃଷ୍ଣବର୍ଣ୍ଣ ଏବଂ ସୁସ୍ନିଗ୍ଧ, ଗଳଦେଶ କମ୍ବୁ ତୁଲ୍ୟ ତ୍ରିରେଖାଙ୍କିତ, ପରିଧାନବସ୍ତ୍ର ଓ ଉତ୍ତରୀୟ ମହାମୂଲ୍ୟ ପଟ୍ଟବସନ । ୧୭ ।

| | | |
|---|---|---|
| ଏକ ସମୟେ ମହାସତ୍ର | ଦଶଇ ତାରାଗଣ ମଝିରେ | ବିସ୍ତାର ବକ୍ଷ କମ୍ବୁ ଗ୍ରୀବ |
| ଆରମ୍ଭ କଲେ ବେଣସୁତ | ସୁଧାଂଶୁ କିଅବା ବିରାଜେ ।୧୩,୧୪ | ସୁନ୍ଦର ବିଶାଳ ନିତମ୍ବ |
| ତହିଁ ପ୍ରବେଶ ଦେବଗଣ | ଗଉର କାନ୍ତି ମନୋହର | ଉଦରେ ତ୍ରିବଳି ଯେ ରାଜେ |
| ଦେବର୍ଷି ରାଜର୍ଷିମାନ | ସୁନ୍ଦର ବଦନମଣ୍ଡଳ | ଅଶ୍ୱତ୍ଥ ପତ୍ର ଶୋଭା ଗଞ୍ଜେ |
| ଯେ ଯୋଗ୍ୟ ଯେମନ୍ତ ପୂଜାକୁ | ଲମ୍ବ ପୃଥୁଳ ବେନିଭୁଜ | ଆବର୍ତ୍ତ ନାଭି ସୁଗମ୍ଭୀର |
| ସେ ରୂପେ ପୂଜ ପୃଥୁ ତାଙ୍କୁ | ପଦ୍ମ ଅରୁଣ ଚକ୍ଷୁ ତେଜ | ବିରାଜିତ ମଧ୍ୟ ଦେଶେ ତାର |
| ଉଆଇ ତହିଁ ମହାସଭା | ସୁନାସା ମୁଖ ଦନ୍ତପନ୍ତି | ହେମ ସ୍ତମ୍ଭ କି ଉରୁ ଯୁଗ. |
| ରାଜା ତୁରିତେ ହେଲେ ଉଭା | ସ୍ମିତ ଅଧରେ ଶୋଭା ଅତି | ଉନ୍ନତ ଅଗ୍ର ପାଦଯୁଗ |

ବ୍ୟଞ୍ଜିତାଶେଷଗାତ୍ରଶ୍ରୀର୍ନିୟମେ ନ୍ୟସ୍ତଭୂଷଣଃ ।
କୃଷ୍ଣାଜିନଧରଃ ଶ୍ରୀମାନ୍ କୁଶପାଣିଃ କୃତୋଚିତଃ । ୧୮ ।
ଶିଶିରସ୍ନିଗ୍ଧତାରାକ୍ଷଃ ସମୈକ୍ଷତ ସମନ୍ତତଃ ।
ଊଚିବାନିଦମୁର୍ବୀଶଃ ସଦଃ ସଂହର୍ଷୟନ୍ନିବ । ୧୯ ।
ଚାରୁ ଚିତ୍ରପଦଂ ଶ୍ଲକ୍ଷ୍ଣଂ ମୃଷ୍ଟଂ ଗୂଢ଼ମବିକ୍ଳବମ୍ ।
ସର୍ବେଷାମୁପକାରାର୍ଥଂ ତଦା ଅନୁବଦନ୍ନିବ । ୨୦ ।

ଶ୍ରୀରାଜୋବାଚ ।

ସଭ୍ୟାଃ ଶୃଣୁତ ଭଦ୍ରଂ ବଃ ସାଧବୋ ଯ ଇହାଗତାଃ ।
ସତ୍ସୁ ଜିଜ୍ଞାସୁଭିର୍ଧର୍ମମାବେଦ୍ୟଂ ସ୍ୱମନୀଷିତମ୍ । ୨୧ ।
ଅହଂ ଦଣ୍ଡଧରୋ ରାଜା ପ୍ରଜାନାମିହ ଯୋଜିତଃ ।
ରକ୍ଷିତାଃ ବୃତ୍ତିଦଃ ସ୍ୱେଷୁ ସେତୁଷୁ ସ୍ଥାପିତାଃ ପୃଥକ୍ । ୨୨ ।

---

ଯଜ୍ଞ ନିୟମାନୁସାରେ ତାହାଙ୍କର ଦେହ ଭୂଷଣ ବର୍ଜିତ ହେଲେ ମଧ୍ୟ ଶରୀରରେ ସ୍ୱାଭାବିକ ସୌନ୍ଦର୍ଯ୍ୟ ପ୍ରକାଶିତ ହେଉଥିଲା, ସେ କୃଷ୍ଣାଜିନ ଧାରୀ କୁଶ ହସ୍ତ ହୋଇ ଯଜ୍ଞର ସମସ୍ତ କାର୍ଯ୍ୟ ସ୍ୱୟଂ ସମ୍ପାଦନ କରୁଥିଲେ । ୧୮ ।

ପୃଥିବୀପତି ପୃଥୁ ସନ୍ତାପହାରକ ଓ ସ୍ନିଗ୍ଧ ତାରକାଯୁକ୍ତ ନେତ୍ରଦ୍ୱାରା ଚତୁର୍ଦ୍ଦିଗ ନିରୀକ୍ଷଣ କରି ଏବଂ ସଭ୍ୟଗଣଙ୍କର ହର୍ଷୋତ୍ପାଦନ କରି ଶ୍ରବଣ ମଧୁର ମନୋହର ବିଚିତ୍ର ପଦବିଶିଷ୍ଟ ପ୍ରଶସ୍ତ ଶୁଦ୍ଧ ଏବଂ ଗମ୍ଭୀରାର୍ଥ ଯୁକ୍ତ ବାକ୍ୟାବଳି ସମସ୍ତଙ୍କ ହିତାର୍ଥେ ବ୍ୟାକୁଳଚିତ୍ତରେ ପ୍ରକାଶ କରିଥିଲେ । ୧୯,୨୦ ।

ଶ୍ରୀମହାରାଜ ପୃଥୁ କହିଲେ :—

ହେ ସଭ୍ୟଗଣ ! ସମଗ୍ର ସାଧୁବ୍ୟକ୍ତି ଏଠାରେ ସମବେତ ହୋଇଅଛନ୍ତି, ସମସ୍ତେ ମୋର ବାକ୍ୟ ଶ୍ରବଣ କରନ୍ତୁ । ଆପଣମାନଙ୍କର ମଙ୍ଗଳ ହେଉ, ସାଧୁ ବ୍ୟକ୍ତିମାନଙ୍କ ନିକଟରେ ଧର୍ମଜିଜ୍ଞାସୁ ଲୋକ ନିଜ ନିଜର ମନୋଭାବ ଉତ୍ତମରୂପେ ପ୍ରକାଶ କରିବା ଉଚିତ । ୨୧ ।

ଜଗଦୀଶ୍ୱର ମୋତେ ଦଣ୍ଡଧର କରି ପ୍ରଜାମାନଙ୍କର ଜୀବିକାଦାନ ଓ ପରିପାଳନ ନିମିତ୍ତ ନିଯୁକ୍ତ କରିଅଛନ୍ତି, ଏଥିରେ ପୃଥକ୍ ପୃଥକ୍ ବର୍ଣ୍ଣାଶ୍ରମ ଧର୍ମରେ ସମସ୍ତଙ୍କ ସ୍ଥାପନ କରିବା ମୋର କର୍ତ୍ତବ୍ୟ । ୨୨

---

ଅଜପ ବନ୍ଧ କୃଷ୍ଣ କେଶ
ଦୁକୂଳ ଶୋହେ କଟୀ ଦେଶ
କଣ୍ଠେ ଉତ୍ତରୀ ଯଜ୍ଞସୂତ୍ର
କୃଷ୍ଣଅଜିନ କୁଶ ହସ୍ତ
ନିୟମେ ଅଛନ୍ତି ନରପତି
ତେଣୁ ଭୂଷଣ ନ ଧରନ୍ତି
ତଥାପି ବିଦ୍ୟା ଶୋଭା ଦେହେ
ଦେଖିଲାଜନ ମନ ମୋହେ

ଶିଶିର-ସ୍ନିଗ୍ଧ ତାରା ପ୍ରାୟ
ନୟନେ ଚାହିଁ ନରରାୟ
ବଚନ କହିଲେ ମଧୁର
ସରଳ ଅର୍ଥେ ସୁଗମ୍ଭୀର ।୧୮-୨୦

ଶ୍ରୀପୃଥୁରୁବାଚ—

ଡାକଣ କହନ୍ତି ରାଜନ
ଶୁଣିବା ହେଉ ସଭାଜନ

ଆସିଛି ଯେତେ ସାଧୁଜନେ
ମନ ନିବେଶ ମୋ ବଚନେ
ମୋହର ମନେ ଯେବା ଅଛି
ମୁଁ ତାହା ପ୍ରକାଶି କହୁଛି ।୨୧।
ରାଜତ୍ୱ କର୍ମେ ଧାତା ମୋତେ
ସର୍ଜ୍ଜନା କଲେ ଏ ଜଗତେ
ପ୍ରଜାଙ୍କ ରକ୍ଷାକର୍ତ୍ତା ମୁହିଁ
ପ୍ରଜା ପୋଷଣେ ବୃତ୍ତି ଦେଇ

ତସ୍ୟ ମେ ତଦନୁଷ୍ଠାନାଦ୍ ଯନାହୁର୍ବ୍ରହ୍ମବାଦିନଃ ।
ଲୋକାଃ ସ୍ୟୁଃ କାମସନ୍ଦୋହା ଯସ୍ୟ ତୁଷ୍ୟତି ଦିଷ୍ଟଦୃକ୍ । ୨୩ ।
ଯ ଉଦ୍ଧରେତ୍ କରଂ ରାଜା ପ୍ରଜା ଧର୍ମ୍ମେଷ୍ୱଶିକ୍ଷୟନ୍ ।
ପ୍ରଜାନାଂ ଶମଲଂ ଭୁଂକ୍ତେ ଭଗଂ ଚ ସ୍ୱଂ ଜହାତି ସଃ । ୨୪ ।
ତତ୍ ପ୍ରଜା ଭର୍ତ୍ତୃପିଣ୍ଡାର୍ଥଂ ସ୍ୱାର୍ଥମେବାନୁସୂୟୁତଃ ।
କୁରୁତାଧୋକ୍ଷଜଧିୟସ୍ତର୍ହି ମେଽନୁଗ୍ରହଃ କୃତଃ । ୨୫ ।
ଯୂୟଂ ତଦନୁମୋଦଧ୍ୱଂ ପିତୃଦେବର୍ଷୟୋଽମଲାଃ ।
କର୍ତ୍ତୁଃ ଶାସ୍ତୁରନୁଜ୍ଞାତୁସ୍ତୁଲ୍ୟଂ ଯତ୍ ପ୍ରେତ୍ୟ ତତ୍ଫଳମ୍ । ୨୬ ।

---

ହେ ମହୋଦୟଗଣ ! ପ୍ରାକ୍ତନ କର୍ମର ସାକ୍ଷୀ ଈଶ୍ୱର ଯାହାଙ୍କ ପ୍ରତି ପ୍ରସନ୍ନ, ବେଦବାଦୀ ପଣ୍ଡିତମାନେ ଯାହାଙ୍କର ସର୍ବଲୋକ ପ୍ରାପ୍ତିକଥା ପ୍ରକାଶ କରନ୍ତି, ଏହି କର୍ମାନୁଷ୍ଠାନରେ ମୁଁ ସେହି ସର୍ବକାମ ପୂର୍ଣ୍ଣ ଲୋକ ଯେପରି ଲାଭ କରିପାରେ । ଯେଉଁ ରାଜା ପ୍ରଜାମାନଙ୍କୁ ସେମାନଙ୍କର ସ୍ୱଧର୍ମ ଶିକ୍ଷା ନ ଦେଇ କର ଗ୍ରହଣ କରେ, ସେ ପ୍ରଜାମାନଙ୍କର ପାପଭାଗୀ ହୋଇ ଆପଣାର ଐଶ୍ୱର୍ଯ୍ୟରୁ ବଞ୍ଚିତ ହୁଏ ।୨୩,୨୪।

ଅତଏବ ହେ ପ୍ରଜାମାନେ ! ତୁମ୍ଭେମାନେ ମୋତେ ପିଣ୍ଡଦେଲା ପରି ପାରଲୌକିକ ମଙ୍ଗଳ ନିମନ୍ତେ ଭଗବାନଙ୍କ ପ୍ରତି ବୁଦ୍ଧି ସ୍ଥିର କର ଏବଂ କାହାରି କାର୍ଯ୍ୟରେ କେହି ଅସୂୟା ନ କରି ନିଜ ନିଜ କର୍ତ୍ତବ୍ୟ ପାଳନରେ ବ୍ରତୀ ହୁଅ, ତାହା ହେଲେ ତୁମ୍ଭେମାନେ ମୋ ପ୍ରତି ଅନୁଗ୍ରହ କଲ ବୋଲି ଜାଣିବ ।୨୫

ହେ ବିଶୁଦ୍ଧଚିତ୍ତ ପିତୃ, ଦେବତା, ଋଷିଗଣ ! କର୍ମ, କର୍ତ୍ତା, ଶିକ୍ଷାଦାତା ଏବଂ ଅନୁମୋଦନକାରୀଙ୍କର ପରଲୋକରେ ଯେପରି ଫଳଲାଭ ହୁଏ, ସେହି ଫଳ ସମ୍ବନ୍ଧେ ଆପଣମାନେ ସମଭାବରେ ଅନୁମୋଦନ କରନ୍ତୁ । ୨୬ ।

---

ପ୍ରଜାଙ୍କୁ ରଖଇ ଧର୍ମ୍ମରେ
ଅଧର୍ମେ କେହି ନ ପ୍ରଚରେ
ଏ ରୂପେ ପ୍ରଜାଙ୍କୁ ଯେ ପାଳେ
ସୁଗତି ଲଭେ ଅନ୍ତକାଳେ
ପ୍ରଜାଙ୍କୁ କଲେ ସୁରକ୍ଷଣ
ତୁଷ୍ଟ ହୁଅନ୍ତି ନାରାୟଣ
ଯାହାକୁ ସନ୍ତୋଷ ମୁରାରି
ସେପ୍ରାଣୀ ଭବୁଁ ଯାନ୍ତିତରି ।୨୨,୨୩

ଯେ ପ୍ରଜାଠାରୁ କର ନିଅନ୍ତି
ପ୍ରଜାଙ୍କୁ ଧର୍ମ ନ ଶିଖାନ୍ତି
ପ୍ରଜା ପାତକକୁ ଘେନନ୍ତି
ଅନ୍ତେ ନରକେ ସେ ପଡ଼ନ୍ତି ।୨୪।
ଏ ଘେନି କହଇ ପ୍ରଜାଙ୍କୁ
ଭୟ ରଖିବ ଅଧର୍ମକୁ
ମୋ ତହୁଁ ଧର୍ମ କର ଶିକ୍ଷା
ମୋ ପରଲୋକ ହେବ ରକ୍ଷା

ପର ନିନ୍ଦାକୁ ପରିହର
ହରିଙ୍କି ଭଜ ଦୃଢ଼କରି
ମୋଠାରେ ଅନୁଗ୍ରହ ଯେବେ
ହରିଙ୍କି ସେବା କର ତେବେ ।୨୫।
ହେ ଦେବ ପିତୃ ଋଷିଗଣେ
ଯେତେ ଆସିଛ ସଭାସ୍ଥାନେ
ସକଳେ ଅନୁମତ କର
ପ୍ରଜାଙ୍କୁ ଶିକ୍ଷା ଦିଅ ମୋର ।୨୬।

ଅସ୍ତି ଯଜ୍ଞପତିର୍ନାମ କେଷାଞ୍ଚିଦର୍ହସତ୍ତମାଃ ।
ଇହାମୁତ୍ର ଚ ଲକ୍ଷ୍ୟନ୍ତେ ଜ୍ୟୋତ୍ସ୍ନାବତ୍ୟଃ କ୍ୱଚିଦ୍ଭୁବଃ । ୨୭ ।
ମନୋରୁତ୍ତାନପାଦସ୍ୟ ଧ୍ରୁବସ୍ୟାପି ମହୀପତେଃ ।
ପ୍ରିୟବ୍ରତସ୍ୟ ରାଜର୍ଷେରଙ୍ଗସ୍ୟାସ୍ମତ୍ପିତୁଃ ପିତୁଃ । ୨୮ ।
ଈଦୃଶାନାମଥାନ୍ୟେଷାମଜସ୍ୟ ଚ ଭବସ୍ୟ ଚ ।
ପ୍ରହ୍ଲାଦସ୍ୟ ବଲେଶ୍ଚାପି କୃତ୍ୟମସ୍ତି ଗଦାଭୃତା । ୨୯ ।
ଦୌହିତ୍ରାଦୀନୃତେ ମୃତ୍ୟୋଃ ଶୋଚ୍ୟାନ୍ ଧର୍ମବିମୋହିତାନ୍ ।
ବର୍ଗସ୍ୱର୍ଗାପବର୍ଗାଣାଂ ପ୍ରାୟେଣୈକାତ୍ମ୍ୟହେତୁନା । ୩୦ ।

---

ହେ ମାନନୀୟ ମହୋଦୟଗଣ ! ଯଜ୍ଞେଶ୍ୱର ଶ୍ରୀହରି ନାମଧାରୀ ଭଗବାନଙ୍କ ଅସ୍ତିତ୍ୱ ପ୍ରାୟ ସମସ୍ତେ ସ୍ୱୀକାର କରନ୍ତି, ଏ ସମ୍ବନ୍ଧେ କେହି କେହି ବିରୁଦ୍ଧ ବାଦୀ ଥିଲେ ମଧ୍ୟ ସେ ବିଷୟରେ ଅପ୍ରମାଣ ଆଶଙ୍କା ଉଚିତ ନୁହେଁ, କାରଣ ଇହଲୋକ ଓ ପରଲୋକରେ ଯେଉଁ ବିଚିତ୍ର କାନ୍ତି ସମ୍ପନ୍ନ ଭୋଗ କ୍ଷେତ୍ର ଜନ୍ମେ, ତାହା କୌଣସି କୌଣସି ବ୍ୟକ୍ତିଙ୍କ ଭାଗ୍ୟରେ ଘଟିଥାଏ । ୨୭ ।

ଆଦିରାଜ ମନୁ, ଉତ୍ତାନପାଦ, ଧ୍ରୁବ, ପ୍ରିୟବ୍ରତ, ଏବଂ ମୋର ପିତାମହ ରାଜର୍ଷି ଅଙ୍ଗ, ବ୍ରହ୍ମା, ଶିବ, ପ୍ରହ୍ଲାଦ ଓ ବଳି ଏବଂ ଏହିପରି ଆହୁରି ଯେଉଁ ମହାନୁଭବଗଣ ଅଛନ୍ତି; ସେମାନଙ୍କର ସମସ୍ତଙ୍କ ମତରେ ଧର୍ମ, ଅର୍ଥ, କାମ ସ୍ୱର୍ଗ, ମୋକ୍ଷ ପ୍ରଭୃତି ଫଳର ଅଧୀନକାରଣ ସ୍ୱରୂପ ଭଗବାନ ଗଦାଧରଙ୍କର ପ୍ରୟୋଜନ ଅଛି, ଅର୍ଥାତ୍ ତାଙ୍କର ଅସ୍ତିତ୍ୱର ପ୍ରମାଣ ଅଛି । କେବଳ ଧର୍ମଜ୍ଞାନହୀ ମୃତ୍ୟୁର ଦୌହିତ୍ର ବେଣ ପ୍ରଭୃତି ବ୍ୟକ୍ତିଙ୍କ ମତ ବିଭିନ୍ନ ପ୍ରକାର । ୨୮,୩୦ ।

---

ବୋଲିବି ଅବା କର୍ତା କର୍ମ
କରନ୍ତୁ ହରି ସମର୍ପଣ
ଶୁଣ ଏଥିକୁ ମୋର ଗିର
ହେ ମାନ୍ୟଜନେ ହୋଇ ସ୍ଥିର
ବେଦ ଆଜ୍ଞାରେ କର୍ମ କରି
ଦିଅନ୍ତି ତାର ଫଳ ହରି
ପରମେଶ୍ୱର ଯଜ୍ଞପତି
ଉତ୍ତମ ଜନଙ୍କ ସମ୍ମତି
ଅଛଇ ଇହ ପରେ ଜାଣ
ବିଚିତ୍ର ଭୋଗ ସ୍ଥାନମାନ
ନ ଥିଲେ ଫଳଦାତା ଏକ
ନ ଲୁଭେ ତା ପାଇବି ଲୋକ ।୨୭।

ବୋଲିବି ଅବା ଏଥି ପୁଣ
ବିଚିତ୍ର ସ୍ୱକର୍ମ କାରଣ
ଶୁଣ ଏଥିକୁ ଦେଇ ଚିତ୍ତ
ମହାତ୍ମମାନଙ୍କର ମତ
ଯେ ସ୍ୱାୟମ୍ଭୁବ ମନୁବର
ଉତ୍ତାନପାଦ ଧ୍ରୁବ ଆର
ଯେ ରାଜଋଷି ପ୍ରିୟବ୍ରତ
ଅଙ୍ଗ ନୃପତି ପିତୃ-ତାତ
ବ୍ରହ୍ମା ଶଙ୍କର ଆଦି ଯେତେ
ପ୍ରହ୍ଲାଦ ବଳି ସର୍ବମତେ
ଶ୍ରୀଗଦାଧର କର୍ମଫଳ
ଦେବାକୁ ସମର୍ଥ କେବଳ

ତ୍ରିବର୍ଗ ସ୍ୱର୍ଗ ଅପବର୍ଗ
ଯେ ସାଧ୍ୟ ଅଛି ଭୋଗ୍ୟାଭୋଗ୍ୟ
ସେ ପ୍ରଭୁ ପରମଈଶ୍ୱର
ଦିଅନ୍ତି ସର୍ବ କର୍ମଫଳ
ମୃତ୍ୟୁଙ୍କ ନାତି ଆମ୍ଭ ତାତ
ଧର୍ମ ବିଷୟରେ ବିମୋହିତ
ସେପରି ଯେବା ଅଧର୍ମୀନ
ମାନନ୍ତି ନାହିଁ ଭଗବାନ ।୨୮-୩୦

ଯତ୍ପାଦସେବାଭିରୁଚିସ୍ତପସ୍ୱିନାମଶେଷଜନ୍ମୋପଚିତଂ ମଳଂ ଧିୟଃ ।
ସଦ୍ୟଃ କ୍ଷିଣୋତ୍ୟନ୍ୱହମେଧତୀ ସତୀ ଯଥା ପଦାଙ୍ଗୁଷ୍ଠବିନିଃସୃତା ସରିତ୍ ।୩୧।
ବିନିର୍ଦ୍ଧୂତାଶେଷମନୋମଳଃ ପୁମାନସଙ୍ଗବିଜ୍ଞାନବିଶେଷବୀର୍ଯ୍ୟବାନ୍ ।
ଯଦଙ୍ଘ୍ରିମୂଳେ କୃତକେତନଃ ପୁନର୍ନ ସଂସୃତିଂ କ୍ଲେଶବହାଂ ପ୍ରପଦ୍ୟତେ ।୩୨।
ତମେବ ଯୂୟଂ ଭଜତାତ୍ମବୃତ୍ତିଭିର୍ମନୋବଚଃକାୟଗୁଣୈଃ ସ୍ୱକର୍ମଭିଃ ।
ଅମାୟିନଃ କାମଦୁଘାଙ୍ଘ୍ରିପଙ୍କଜଂ ଯଥାଧିକାରାବସିତାର୍ଥସିଦ୍ଧୟଃ । ୩୩ ।
ଅସାବିହାନେକଗୁଣୋଽଗୁଣୋଽଧ୍ୱରଃ ପୃଥଗ୍ୱିଧଦ୍ରବ୍ୟଗୁଣକ୍ରିୟୋକ୍ତିଭିଃ ।
ସମ୍ପଦ୍ୟତେଽର୍ଥାଶୟଲିଙ୍ଗନାମଭିର୍ବିଶୁଦ୍ଧବିଜ୍ଞାନଘନଃ ସ୍ୱରୂପତଃ । ୩୪ ।

---

ତପସ୍ୱୀମାନେ ଯେ ଭଗବାନଙ୍କର ପାଦପଦ୍ମ ସେବା କରିବାକୁ ଅଭିଳାଷ କରନ୍ତି, ତାହାନ୍ତୁ ଭଗବାନଙ୍କର ପାଦାଙ୍ଗୁଷ୍ଠ ନିର୍ଗତ ଗଙ୍ଗାଦେବୀଙ୍କ ତୁଲ୍ୟ ସର୍ବଦା ପରିବର୍ଦ୍ଧନ ଶୀଳ ହୋଇ ଅନ୍ତଃକରଣର ବହୁଜନ୍ମ ସଞ୍ଚିତ ମଳିନତା ଅଚିରେ ବିନାଶ କରିଥାଏ । ୩୧ ।

ବୈରାଗ୍ୟ ଓ ଜ୍ଞାନତତ୍ତ୍ୱ ପ୍ରଭୃତି ବିଶିଷ୍ଟଶକ୍ତିସମ୍ପନ୍ନ ପୁରୁଷ ଅନ୍ତଃକରଣର ସମସ୍ତ ମଳିନତା ଦୂରକରି ଯେଉଁ ଭଗବାନଙ୍କ ଚରଣତଳେ ଆଶ୍ରୟଗ୍ରହଣପୂର୍ବକ ଦୁଃଖ ସଙ୍କୁଳ ସଂସାର ବନ୍ଧନ ଅତିକ୍ରମକରିଥାନ୍ତି।୩୨

ଅତଏବ ହେ ପ୍ରଜାଗଣ ! ତୁମ୍ଭେମାନେ କପଟତା ପରିତ୍ୟାଗ କରି ସିଦ୍ଧିଲାଭ ବିଷୟରେ ଦୃଢ଼ ନିଶ୍ଚୟ ହୁଅ, ଅଧିକାରାନୁସାରେ ଆତ୍ମବୃତ୍ତି ଅଧ୍ୟାପନାଦି ଏବଂ ମନ, ବାକ୍ୟ, ଧ୍ୟାନ, ସ୍ତବ ଓ ପରିଚର୍ଯ୍ୟା ଆଦି ସ୍ୱକର୍ମଦ୍ୱାରା ସର୍ବଦା ଅଭୀଷ୍ଟ-ପ୍ରଦ ଭଗବାନଙ୍କ ପାଦପଦ୍ମରେ ଭଜନ କରିବ । ତାହାଙ୍କର ପାଦପଦ୍ମ କୃପାରୁ ଭକ୍ତମାନଙ୍କର ସମସ୍ତ ବାସନା ସିଦ୍ଧ ହୋଇଥାଏ । ୩୩ ।

ଭଗବାନ୍ ଯଥାର୍ଥରେ ବିଶୁଦ୍ଧ, ଚୈତନ୍ୟ ସ୍ୱରୂପ ଏବଂ ସର୍ବପ୍ରକାର ବିଶେଷଣ ରହିତ ହେଲେ ମଧ୍ୟ ସେ ଏହି କର୍ମପଥରେ ବିଭିନ୍ନ ପ୍ରକାର ଦ୍ରବ୍ୟ, ଗୁଣ, କ୍ରିୟା ଓ ମନ୍ତ୍ରାଦି ଦ୍ୱାରା ଏବଂ ଅଙ୍ଗ ସାଧ୍ୟ ଫଳ, ସଂକଳ୍ପ, ପଦାର୍ଥର ଶକ୍ତି ଓ ନାମଦ୍ୱାରା ନାନାପ୍ରକାର ବିଶେଷଣ ବିଶିଷ୍ଟ ଆତ୍ମ ପ୍ରକାଶ କରୁଥାନ୍ତି । ୩୪ ।

---

ହରିଚରଣ-ପଦ୍ମ-ଜାତ
ସରିତ ସଦୃଶେ ସାକ୍ଷାତ
ତାର ଚରଣ ସେବା ବ୍ରତ
ସକଳ ଜନ୍ମେ କରେ ଶ୍ରୁତ
ଦିନକୁ ଦିନ ବୃଦ୍ଧି ପାଏ
ମନର ମଳ ନାଶ ଯାଏ । ୩୧ ।
ମନର ମଳ ନାଶ ଗଲେ
ବୈରାଗ୍ୟ ବିଜ୍ଞାନର ବଳେ
ଲଭି ଶ୍ରୀହରିପାଦ ମୂଳ
ନ ପାଏ ପୁଣ ସେ ସଂସାର ।୩୨।

ଏ ହେତୁ ସର୍ବେ ହରି ଭଜ
ବିଷୟ ବାସନା ପ୍ରତେଜ
ତାହାଙ୍କ ଚରଣ ଅମ୍ବୁଜ
ଅଶେଷ କାମ ଲଭି ଯାଜ
କପଟ ଭାବ ପରିହରି
ଯେବା ଯେମନ୍ତ ଅଧିକାରୀ
ଆପଣା ବର୍ଣ୍ଣାଶ୍ରମ ମତେ
ହରିଙ୍କି ଭଜ ଅବିରତେ । ୩୩।
ସେ ହରି ଆତ୍ମଜ୍ଞାନଘନ
ତହିଁଟି ନାହିଁ ବିଶେଷଣ

ଗୁଣ ବିହୁନ ସେହୁ ଯେବେ
ତଥାପି ନାନା ରୂପ ଲଭେ
ଯେ ହୋମଦ୍ରବ୍ୟ କ୍ରିୟାଗୁଣ
ଅପଘାତାଦି ମନ୍ତ୍ର ପୁଣ
ଅଙ୍ଗ ସାଧ୍ୟ ଯେ ଉପକାର
ସଂକଳ୍ପ ପଦାର୍ଥରି ସାର
ଜ୍ୟୋତିଷ୍ଟୋମାଦି ନାମ ଧରି
ପ୍ରକାଶେ ଯଜ୍ଞରୂପେ ହରି । ୩୪ ।

ପ୍ରଧାନକାଲାଶୟଧର୍ମସଂଗ୍ରହେ ଶରୀର ଏଷ ପ୍ରତିପଦ୍ୟ ଚେତନାମ୍ ।
କ୍ରିୟାଫଲତ୍ୱେନ ବିଭୁର୍ବିଭାବ୍ୟତେ ଯଥାନଲୋ ଦାରୁଷୁ ତଦ୍‌ଗୁଣାତ୍ମକଃ ।୩୫।
ଅହୋ ମମାମୀ ବିତରନ୍ତ୍ୟନୁଗ୍ରହଂ ହରିଂ ଗୁରୁଂ ଯଜ୍ଞଭୁଜାମଧୀଶ୍ୱରମ୍ ।
ସ୍ୱଧର୍ମଯୋଗେନ ଯଜନ୍ତି ମାମକା ନିରନ୍ତରଂ କ୍ଷୌଣିତଳେ ଦୃଢ଼ବ୍ରତାଃ । ୩୬ ।
ମା ଜାତୁ ତେଜଃ ପ୍ରଭବେନ୍ମହର୍ଦ୍ଧିଭିସ୍ତିତିକ୍ଷୟା ତପସା ବିଦ୍ୟୟା ଚ ।
ଦେଦୀପ୍ୟମାନେଽଜିତଦେବତାନାଂ କୁଲେ ସ୍ୱୟଂ ରାଜକୁଲାଦ୍‌ଦ୍ୱିଜାନାମ୍ ।୩୭।
ବ୍ରହ୍ମଣ୍ୟଦେବଃ ପୁରୁଷଃ ପୁରାତନୋ ନିତ୍ୟଂ ହରିର୍ଯଚ୍ଚରଣାଭିବନ୍ଦନାତ୍ ।
ଅବାପ ଲକ୍ଷ୍ମୀମନପାୟିନୀଂ ଯଶୋ ଜଗତ୍ପବିତ୍ରଞ୍ଚ ମହତ୍ତମାଗ୍ରଣୀଃ । ୩୮ ।
ଯତ୍‌ସେବୟାଶେଷଗୁହାଶୟଃ ସ୍ୱରାଡ୍‌ବିପ୍ରପ୍ରିୟସ୍ତୁଷ୍ୟତି କାମମୀଶ୍ୱରଃ ।
ତଦେବ ତଦ୍ଧର୍ମପରୈର୍ବିନୀତୈଃ ସର୍ବାତ୍ମନା ବ୍ରହ୍ମକୁଳଂ ନିଷେବ୍ୟତାମ୍ । ୩୯ ।

ଯେପରି ଅଗ୍ନି କାଷ୍ଠାଦିରେ ଦୈର୍ଘ୍ୟ ଓ ବକ୍ରତ୍ୱ ଆଦି ତଦ୍‌ଗୁଣାତ୍ମକ ହୋଇ ପ୍ରକାଶ ପା'ନ୍ତି, ସେହିପରି ଭଗବାନ୍ ପରମାନନ୍ଦସ୍ୱରୂପ ହେଲେମଧ୍ୟ ଅବ୍ୟକ୍ତପ୍ରକୃତି, ତତ୍କ୍ଷୋଭକ କାଳ, ବାସନା ଓ ଧର୍ମହେତୁ ଉତ୍ପନ୍ନ ଶରୀର ସମୂହରେ ବିଷୟାକାର ବୁଦ୍ଧି ଉତ୍ପାଦନ କରି ତାହାର କର୍ମଫଳ ରୂପେ ସ୍ୱୟଂ ପ୍ରକାଶିତ ହୁଅନ୍ତି ।୩୫।

ମୋର ଯେଉଁ ପ୍ରଜାମାନେ ଏହି ଭୂମଣ୍ଡଳରେ ଦୃଢ଼ବ୍ରତୀ ହୋଇ ରହିବେ ଏବଂ ସ୍ୱଧର୍ମଯୋଗେ ନିରନ୍ତର ଯଜ୍ଞଭୁକ୍ ଦେବଗଣଙ୍କର ଅଧୀଶ୍ୱର ଜଗଦ୍‌ଗୁରୁ ହରିଙ୍କର ଆରାଧନା କରିଥାନ୍ତି, ସେମାନେ ମୋ ପ୍ରତି କୃପା କରିଥାନ୍ତି । ୩୬ ।

ମହା ସମୃଦ୍ଧିଶାଳୀ ଯେ କୌଣସି ରାଜବଂଶର ତେଜ ସେହିବ୍ୟକ୍ତି ମାନଙ୍କର କୁଳ, ତିତିକ୍ଷା, ତପସ୍ୟା ଓ ବିଦ୍ୟାଦ୍ୱାରା ଦେଦୀପ୍ୟମାନ ହୁଏ, ଏହି ବ୍ରାହ୍ମଣମାନେ ବା ଶ୍ରୀହରିହିଁ ଯେଉଁମାନଙ୍କର ଏକମାତ୍ର ଦେବତା, ସେହି ବୈଷ୍ଣବମାନେ ଯେପରି କଦାପି ନିଜର ପ୍ରଭାବ ପ୍ରକାଶ ନ କରନ୍ତି । ୩୭ ।

ମହତ୍ତମ ବ୍ୟକ୍ତିମାନଙ୍କର ଅଗ୍ରଣୀ ସାକ୍ଷାତ୍ ବ୍ରହ୍ମଣ୍ୟଦେବ ଶ୍ରୀହରି ଯେଉଁ ବ୍ରାହ୍ମଣମାନଙ୍କର ଚରଣ ନିତ୍ୟ ବନ୍ଦନା କରି ଜଗତ୍‌ପୂଜ୍ୟ ଲକ୍ଷ୍ମୀ ଯଶଲାଭ କରିଅଛନ୍ତି । ସେହି ବ୍ରାହ୍ମଣମାନଙ୍କର ସେବାରେ ସର୍ବାନ୍ତର୍ଯାମୀ ସ୍ୱପ୍ରକାଶ ବିପ୍ରପ୍ରିୟ ପରମେଶ୍ୱର ତୁଷ୍ଟିଲାଭ କରିଥାନ୍ତି ତୁମ୍ଭେମାନେ ଭଗବଦ୍ଧର୍ମରେ ଶିକ୍ଷିତ ହୋଇ ସର୍ବପ୍ରକାରେ ସେହି ବ୍ରାହ୍ମଣକୁଳକୁ ସେବା କର । ୩୮,୩୯ ।

ଯଜ୍ଞରେ ଯେବା ଫଳ ହୋଏ
ସେ ଫଳ ତହୁଁ ଭିନ୍ନ ନୋହେ
ଯେ ଦେହେ ଚେତନା ରୂପରେ
ଅଛନ୍ତି ସକଳ ଶରୀରରେ
ଯେସନ୍ତେ ଅନଳ ସମିଧରେ
ଏକ ସେ ନାନାରୂପ ଧରେ
ସେ ରୂପେ ହରି ଦେହେ ଥାନ୍ତି
କର୍ମର ଫଳ ସେ ଭୁଞ୍ଜନ୍ତି । ୩୫ ।
ସେ ହରି ସର୍ବ ଗୁରୁ ପର
ସର୍ବ ଦେବତା ଅଧୀଶ୍ୱର
ଯେ ପ୍ରାଣୀ ସେ ପାଦେ ଭଜନ୍ତି
ସେ ମୋତେ ଅନୁଗ୍ରହ କଲେ ।୩୬।
କ୍ଷମା ତପସ୍ୟା ବିଦ୍ୟାବନ୍ତେ
ଉଜ୍ଜ୍ୱଳ ଯେଉଁ ଦ୍ୱିଜକୁଳେ
ଅପରେ ମହା ସାଧୁ ଧୀର
ବିଷ୍ଣୁ ଇଷ୍ଟ ଦେବତା ଯାହାର
ସେ କୁଳେ ପ୍ରଭୁତ୍ୱ କଲେ
ପ୍ରମାଦ ପଡ଼ଇଟ ଭଲେ । ୩୭ ।
ବ୍ରହ୍ମଣ୍ୟ ଦେବ ନରହରି
ଯେଉଁ ବ୍ରାହ୍ମଣ ସେବା କରି
ଲକ୍ଷ୍ମୀଙ୍କି ସେ ପୁଣ୍ୟେ ଲଭିଲେ
ଉତ୍ତମ ଯଶହିଁ ପାଇଲେ
ଯେ ଭଜେ ବ୍ରାହ୍ମଣ କୁଳକୁ
ଈଶ୍ୱର ସନ୍ତୋଷ ତାହାକୁ
ଏଣୁ ସକଳ ପ୍ରାଣିମାନେ
ମାନ୍ୟ କରିବ ବିପ୍ରଗଣେ ।୩୮,୩୯

ପୁମାଂଲ୍ଲଭେତାନତିବେଲମାତ୍ମନଃ ପ୍ରସୀଦତୋଽତ୍ୟନ୍ତଶମଂ ସ୍ୱତଃ ସ୍ୱୟମ୍ ।
ଯନ୍ନିତ୍ୟସମ୍ବନ୍ଧନିଷେବୟା ତତଃ ପରଂ କିମତ୍ରାସ୍ତି ମୁଖଂ ହବିର୍ଭୁଜାମ୍ । ୪୦ ।
ଅଶ୍ନାତ୍ୟନନ୍ତଃ ଖଲୁ ତତ୍ତ୍ୱକୋବିଦୈଃ ଶ୍ରଦ୍ଧାହୁତଂ ଯନ୍ମୁଖ ଇଜ୍ୟନାମଭିଃ ।
ନ ବୈ ତଥା ଚେତନୟା ବହିଷ୍କୃତେ ହୁତାଶନେ ପାରମହଂସ୍ୟପର୍ଯ୍ୟଗୁଃ ।୪୧।
ଯଦ୍ବ୍ରହ୍ମ ନିତ୍ୟଂ ବିରଜଂ ସନାତନଂ ଶ୍ରଦ୍ଧାତପୋମଙ୍ଗଳମୌନସଂଯମୈଃ ।
ସମାଧିନା ବିଭ୍ରତି ହାର୍ଥଦୃଷ୍ଟୟେ ଯତ୍ରେଦମାଦର୍ଶ ଇବାବଭାସତେ । ୪୨ ।
ତେଷାମହଂ ପାଦସରୋଜରେଣୁମାର୍ଯ୍ୟା ବହେୟାଧିକିରୀଟମାୟୁଃ ।
ଯଂ ନିତ୍ୟଦା ବିଭ୍ରତ ଆଶୁ ପାପଂ ନଶ୍ୟତ୍ୟମୁଂ ସର୍ବଗୁଣା ଭଜନ୍ତି । ୪୩ ।

---

ବ୍ରାହ୍ମଣ କୁଳକୁ ନିତ୍ୟ ସେବା କଲେ ଅବିଳମ୍ବେ ଚିତ୍ତ ଶୁଦ୍ଧିହୁଏ ଏବଂ ତାହାର ଫଳରେ ପୁରୁଷ ସ୍ୱଭାବତଃ ମୋକ୍ଷଲାଭ କରିଥାଏ, ଅତଏବ ଇହଲୋକରେ ବ୍ରହ୍ମକୁଳଅପେକ୍ଷା ହବିର୍ଭୋଜୀ ଦେବତାମାନଙ୍କର ଅନ୍ୟ ଉତ୍କୃଷ୍ଟ ମୁଖ ଆଉ କ'ଣ ଅଛି ? । ୪୦ ।

ତତ୍ତ୍ୱଜ୍ଞ ବିଦ୍ୱାନ୍‌ମାନେ ଇନ୍ଦ୍ରାଦିଙ୍କର ନାମୋଚ୍ଚାରଣ କରି ଶ୍ରଦ୍ଧା ସହକାରେ ବ୍ରାହ୍ମଣମାନଙ୍କ ମୁଖରେ ହୋମ କଲେ, ସର୍ବାନ୍ତର୍ଯ୍ୟାମୀ ଅନନ୍ତଦେବ ତଦ୍ୱାରା ଯେପରି ତୃପ୍ତି ସହକାରେ ଭୋଜନ କରନ୍ତି, ଅଚେତନ ଅଗ୍ନିରେ ହୋମ କଲେ, ସେପରି ଭୋଜନ କରନ୍ତି ନାହିଁ । ୪୧ ।

ଯେ ବେଦଦର୍ପଣରେ ପ୍ରତିବିମ୍ବ ତୁଲ୍ୟ ବିଶ୍ୱ ପ୍ରକାଶ ପାଇଥାଏ, ବ୍ରାହ୍ମଣମାନେ ଶ୍ରଦ୍ଧା, ତପସ୍ୟା ମଙ୍ଗଳ, ମୌନ, ଇନ୍ଦ୍ରିୟସଂଯମ ଓ ସମାଧିଦ୍ୱାରା ସର୍ବଦା ସେହି ବେଦ ବିସ୍ତାର କରିଥାନ୍ତି । ୪୨ ।

ହେ ଆର୍ଯ୍ୟଗଣ ! ମୁଁ ଯେପରି ଯାବଜ୍ଜୀବନ ମୋର ମୁକୁଟୋପରି ସେହି ବ୍ରାହ୍ମଣପଦଧୂଳି ଗ୍ରହଣ କରିପାରେ ଏବଂ ଯେଉଁ ପୁରୁଷ ବ୍ରାହ୍ମଣମାନଙ୍କର ଚରଣଧୂଳି ସର୍ବଦା ଧାରଣକରେ, ତାହାର ସମସ୍ତ ପାପ ଦୂର ହୋଇଯାଏ, ଏବଂ ସମସ୍ତ ଗୁଣ ନିଜେ ନିଜେ ତାହାକୁ ଭଜନ କରନ୍ତି । ୪୩ ।

---

ବ୍ରାହ୍ମଣ ଦେବଙ୍କର ମୁଖ
ତାଙ୍କ ଭୋଜନେ ଯେଉଁ ସୁଖ
ସେ ସୁଖ ହରି ଆସ୍ୱାଦନ୍ତି
ଯଜ୍ଞେ ସେ ସୁଖ ନ ପାବନ୍ତି
ଏଣୁ ବିପ୍ରଙ୍କୁ ଭୁଞ୍ଜାଇଲେ
ସକଳ ଯଜ୍ଞଫଳ ମିଳେ
ଚେତନା ରହିତ ଅନଳେ
ଆହୁତ ମନ୍ତ୍ର ଯୋଗେ ଦେଲେ

ହରି ତା କଲେହେଁ ଭୋଜନ
ସୁଖ ନ ଲଭନ୍ତି ତେସନ ।୪୦,୪୧
ଯେ ବେଦ ଦର୍ପଣ ପରାୟେ
ସକଳ ଧର୍ମ୍ମ ଦୃଶ୍ୟ ହୋଏ
ଶ୍ରଦ୍ଧା ତପସ୍ୟା ଶୁଦ୍ଧାଚାର
ମଉନ ସଂଯମ ପ୍ରକାର
ସମାଧି ଯେଉଁ ଦ୍ୱିଜମାନେ
ଧରନ୍ତି ତାକୁ ହୃଦଧ୍ୟାନେ

ବେଦାର୍ଥ କରନ୍ତି ବିସ୍ତାର
ଯେ ବେଦ ହେତୁ ଏ ସଂସାର
ସେ ଦ୍ୱିଜ ପାଦପଦ୍ମ ଧୂଳି
ମୁଁ ନିତ୍ୟେ ଧରୁଛି ମଉଳି
ଯେ ପ୍ରାଣୀ ନିତ୍ୟେ ଏହା ବହେ
ପାପ ନ ରହେ ତାର ଦେହେ
ସେ ସର୍ବ ଗୁଣେ ପୂଜ୍ୟ ହୋଇ
ସମ୍ପଦହାନିକେବେନୋହି ।୪୨,୪୩

ଗୁଣାଯ୍ନନଂ ଶୀଲଧନଂ କୃତଜ୍ଞଂ ବୃଦ୍ଧାଶ୍ରୟଂ ସଂବୃଣୁତେଽନୁସମ୍ପଦଃ ।
ପ୍ରସୀଦତାଂ ବ୍ରହ୍ମକୁଲଂ ଗବାଞ୍ଚ ଜନାର୍ଦ୍ଦନଃ ସାନୁଚରଶ୍ଚ ମହ୍ୟମ୍ । ୪୪ ।

ଶ୍ରୀମୈତ୍ରେୟ ଉବାଚ ।

ଇତିବ୍ରୁବାଣଂ ନୃପତିଂ ପିତୃଦେବଦ୍ୱିଜାତୟଃ ।
ତୁଷ୍ଟୁବୁର୍ହୃଷ୍ଟମନସଃ ସାଧୁବାଦେନ ସାଧବଃ । ୪୫ ।
ପୁତ୍ରେଣ ଜୟତେ ଲୋକାନିତି ସତ୍ୟବତୀ ଶ୍ରୁତିଃ ।
ବ୍ରହ୍ମଦଣ୍ଡହତଃ ପାପୋ ଯଦ୍ବେଣୋଽତ୍ୟତରତ୍ତମଃ । ୪୬ ।
ହିରଣ୍ୟକଶିପୁଶ୍ଚାପି ଭଗବନ୍ନିନ୍ଦୟା ତମଃ ।
ବିବିକ୍ଷୁରତ୍ୟଗାତ୍ ସୂନୋଃ ପ୍ରହ୍ଲାଦସ୍ୟାନୁଭାବତଃ । ୪୭ ।
ବୀରବର୍ଯ୍ୟ ପିତଃ ପୃଥ୍ୱ୍ୟାଃ ସମାଃ ସଂଜୀବ ଶାଶ୍ୱତୀଃ ।
ଯସ୍ୟେଦୃଶ୍ୟଚ୍ୟୁତେ ଭକ୍ତିଃ ସର୍ବଲୋକୈକଭର୍ତ୍ତରି । ୪୮ ।

---

ଯେ ସର୍ବଗୁଣର ଆଶ୍ରୟ, ଚରିତ୍ରବାନ୍ ଏବଂ କୃତଜ୍ଞ ଏବଂ ଯେ ଜ୍ଞାନବୃଦ୍ଧ ଗୁରୁମାନଙ୍କର ଆଶ୍ରୟ ଗ୍ରହଣ କରିଅଛି, ସର୍ବ ସମ୍ପତ୍ତି ତାହାକୁ ସମ୍ୟକ୍ଭାବରେ ଆଶ୍ରୟ କରିଥାଏ । ସୁତରାଂ ବ୍ରହ୍ମକୁଳ, ଗୋକୁଳ ଏବଂ ସାନୁଚର ଜନାର୍ଦ୍ଦନ ଯେପରି ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ୪୪ ।

ଶ୍ରୀମୈତ୍ରେୟ କହିଲେ :—

ମହାରାଜ ପୃଥୁ ଏହିପରି କହିଲେ ପିତୃଗଣ, ଦେବଗଣ, ବ୍ରାହ୍ମଣଗଣ ତାହାଙ୍କ ପ୍ରତି ସନ୍ତୁଷ୍ଟ ହୋଇଥିଲେ ଏବଂ ହୃଷ୍ଟ ଚିତ୍ତରେ ସାଧୁବାଦ କରି ତାହାଙ୍କୁ ପ୍ରଶଂସା କରିଥିଲେ । ୪୫ ।

"ପୁତ୍ରଦ୍ୱାରା ସମସ୍ତଲୋକ ଜିତ ହୁଏ" ଏହି ଶ୍ରୁତି ଯଥାର୍ଥ, କାରଣ ବ୍ରହ୍ମଦଣ୍ଡହତ ପାପିଷ୍ଠ ବେଣ ମଧ୍ୟ ପୁତ୍ରର ସୁକୃତ ଦ୍ୱାରା ନରକରୁ ଉଦ୍ଧାର ପାଇଥିଲେ । ୪୬ ।

ହିରଣ୍ୟକଶିପୁ ମଧ୍ୟ ଭଗବାନଙ୍କର ନିନ୍ଦା କରି ନରକଦ୍ୱାର ଉନ୍ମୁଖ ହେଲେ ମଧ୍ୟ ନିଜର ପୁତ୍ର ପ୍ରହ୍ଲାଦର ପ୍ରଭାବରୁ ନରକରୁ ପରିତ୍ରାଣ ପାଇଥିଲେ । ୪୭ ।

ହେ ବୀରବର ! ହେ ପୃଥିବୀପତି ! ସର୍ବଲୋକରେ ଏକମାତ୍ର ଭର୍ତ୍ତା ଅଚ୍ୟୁତଙ୍କ ପ୍ରତି ଯଥାର୍ଥରେ ଆପଣଙ୍କର ଭକ୍ତି ଜନ୍ମି ଅଛି, ସୁତରାଂ ଆପଣ ଅନନ୍ତକାଳରେ ସୁଖରେ ଜୀବନ ଯାପନ କରନ୍ତୁ । ୪୮ ।

---

ଗୋ-ବିପ୍ର ବିଷ୍ଣୁଙ୍କ କଙ୍କରେ
ପ୍ରସନ୍ନ ହୋନ୍ତୁ ମୋରଠାରେ ।୪୪

ଶ୍ରୀ ମୈତ୍ରେୟ ଉବାଚ—

ଏମନ୍ତ କହୁଁ ପୃଥୁରାଯ୍ୱେ
ପିତୃ ଦେବ ଦ୍ୱିଜ ସମୂହେ
ସକଳେ କଲେ ସାଧୁବାଣୀ
ସେ ସଭା ମଧ୍ୟେ ଯେତେ ପ୍ରାଣୀ ।୪୫

କହନ୍ତି ପୃଥୁଙ୍କ ଅଗ୍ରତେ
ତୁମ୍ଭେ ହେ ଧନ୍ୟ ଧର୍ମ୍ମମତେ
ସୁପୁତ୍ରେ ପୁଣ୍ୟଲୋକ ପାଇ
ଏ ବାକ୍ୟ ସତ୍ୟ ଶ୍ରୁତି କହି
ବ୍ରାହ୍ମଣ ଶାପ ଦଣ୍ଡ ଗ୍ରସ୍ତ
ମଲେ ଯେ ବେଣ ତୁମ୍ଭ ତାତ
ସେ ମହାପାପୀ ହୋଇଥିଲେ
ତୁମ୍ଭ ସକାଶୁ ନିସ୍ତରିଲେ । ୪୬ ।

ହିରଣ୍ୟକଶିପୁ ଯେସନେ
ବିଷ୍ଣୁ ନିନ୍ଦନେ ଯାନ୍ତେ ତମେ
ତା ସୁତ ବିଷ୍ଣୁ ଭକ୍ତି ଭାବେ
ପିତାକୁ ନିସ୍ତାରିଲା ପୂର୍ବେ ।୪୭।
ତୁ ଏବେ ଚକ୍ରବର୍ତ୍ତୀ ପଣେ
ଏ ମହୀ ପାଳ ଶୁଭକ୍ଷଣେ
ଯୁଗେ ଅଖଣ୍ଡ ଭୋଗ ଭୁଞ୍ଜ
ଭକ୍ତିରେ ହରିପାଦେ ଭଜ ।୪୮।

ଆହୋ ବୟଂ ହ୍ୟଦ୍ୟ ପବିତ୍ରକୀର୍ତ୍ତେ ତ୍ୱୟୈବ ନାଥେନ ମୁକୁନ୍ଦନାଥାଃ ।
ସ ଉତ୍ତମଶ୍ଳୋକତମସ୍ୟ ବିଷ୍ଣୋର୍ବ୍ରହ୍ମଣ୍ୟଦେବସ୍ୟ କଥାଂ ବ୍ୟନକ୍ତି । ୪୯ ।
ନାତ୍ୟଦ୍ଭୁତମିଦଂ ନାଥ ତବାଜୀବ୍ୟାନୁଶାସନମ୍ ।
ପ୍ରଜାନୁରାଗୋ ମହତାଂ ପ୍ରକୃତିଃ କରୁଣାତ୍ମନାମ୍ । ୫୦ ।
ଅଦ୍ୟ ନସ୍ତମସଃ ପାରସ୍ତ୍ୱୟୋପାସାଦିତଃ ପ୍ରଭୋ ।
ଭ୍ରାମ୍ୟତାଂ ନଷ୍ଟଦୃଷ୍ଟୀନାଂ କର୍ମଭିର୍ଦୈବସଂଜ୍ଞିତୈଃ । ୫୧ ।
ନମୋ ବିଶୁଦ୍ଧସତ୍ତ୍ୱାୟ ପୁରୁଷାୟ ମହୀୟସେ ।
ଯୋ ବ୍ରହ୍ମ କ୍ଷତ୍ରମାବିଶ୍ୟ ବିଭର୍ତ୍ତୀଦଂ ସ୍ୱତେଜସା । ୫୨ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ
ପୃଥୁ ଚରିତେ ଏକବିଂଶୋଽଧ୍ୟାୟଃ । ୨୧ ।

---

ହେ ପବିତ୍ର କୀର୍ତ୍ତେ ! ଆମ୍ଭେମାନେ ତୁମ୍ଭଙ୍କୁ ନାଥରୂପେ ପାଇ ମନେ କରୁଅଛୁଁ ଯେପରି ସ୍ୱୟଂ ମୁକୁନ୍ଦଙ୍କୁ ପତିରୂପେ ପାଇ ଅଛୁ । କାରଣ ତୁମ୍ଭେ ଉତ୍ତମଶ୍ଳୋକ ମାନଙ୍କ ମଧ୍ୟରେ ଶ୍ରେଷ୍ଠ ବ୍ରାହ୍ମଣ୍ୟ ଦେବ ବିଷ୍ଣୁଙ୍କର ପବିତ୍ରକୀର୍ତ୍ତି ପ୍ରକାଶ କରୁଅଛ । ୪୯ ।

ହେ ନାଥ ! ତୁମ୍ଭର ଏହି ସେବକମାନଙ୍କ ପ୍ରତି ତୁମ୍ଭର ଅନୁଶାସନ ଆଶ୍ଚର୍ଯ୍ୟ ଜନକ ନୁହେଁ, କାରଣ ପ୍ରଜାମାନଙ୍କ ପ୍ରତି ଅନୁରାଗ ତୁମ୍ଭପରି ମହତ୍ ବ୍ୟକ୍ତି ପକ୍ଷରେ ସ୍ୱାଭାବିକ । ୫୦ ।

ହେ ପ୍ରଭୋ ! ଆମ୍ଭେମାନେ ଦୈବକର୍ମଦ୍ୱାରା ନଷ୍ଟଦୃଷ୍ଟି ହୋଇ ଭ୍ରମଣ କରୁଥିଲୁଁ । ତୁମ୍ଭେ ଆମ୍ଭମାନଙ୍କୁ ଆଜି ଅଜ୍ଞାନାନ୍ଧକାରର ପରପାରକୁ ଘେନି ଯାଇ ଅଛ । ୫୧ ।

ଯେ ବ୍ରାହ୍ମଣ ଜାତିରେ ଅଧିଷ୍ଠିତ ହୋଇ କ୍ଷତ୍ରିୟଙ୍କୁ ଏବଂ କ୍ଷତ୍ରିୟ ଜାତିରେ ଆବିଷ୍ଟ ହୋଇ ବ୍ରାହ୍ମଣଙ୍କୁ ଏବଂ ଏହି ଉଭୟରେ ଅଧିଷ୍ଠାନ କରିଥାନ୍ତି, ତାଙ୍କ ତେଜଦ୍ୱାରା ଏହି ବିଶ୍ୱକୁ ପାଳନ କରିଥାନ୍ତି, ଆମ୍ଭେ ମାନେ ସେହି ବିଶୁଦ୍ଧସତ୍ତ୍ୱ ମହୀୟାନ୍ ପୁରୁଷଶ୍ରେଷ୍ଠଙ୍କୁ ନମସ୍କାର କରୁଅଛୁଁ । ୫୨ ।

---

ବ୍ରହ୍ମଣ୍ୟ ଦେବ ହରି କଥା
ତୁମ୍ଭର କୀର୍ତ୍ତନେ ସର୍ବଥା
ଆମ୍ଭଙ୍କୁ ତୁମ୍ଭେ ନିସ୍ତାରିଲ
ହରିଙ୍କ ମହିମା କହିଲ । ୪୯ ।
ଯେମାନେ ମହତ ଅଟନ୍ତି
ତାଙ୍କ ଚରିତ ଏହି ମତି
ପ୍ରଜାଙ୍କୁ ଦିଅନ୍ତି ଧର୍ମ ଶିକ୍ଷା
ଯେଣେ ହୁଅଇ ସର୍ବ ରକ୍ଷା । ୫୦ ।

ଆମ୍ଭେ ଅଜ୍ଞାନେ ଭ୍ରମ ଅତି
ଆମ୍ଭଙ୍କୁ ଦେଲ ଦିବ୍ୟଗତି
ଏ ଘୋରତମୁଁ ନିସ୍ତାରିଲ
ହରିଭଜନ ଶିକ୍ଷା ଦେଲ । ୫୧ ।
ହେ ଶୁଦ୍ଧ-ସତ୍ତ୍ୱ ପୁଣ୍ୟବ୍ରତ
ତୁମ୍ଭଙ୍କୁ ଆମ୍ଭ ପ୍ରଣମିତ
ତୁମ୍ଭେ ଯେ ଜଗତଈଶ୍ୱର
ତୁମ୍ଭ ଚରଣେ ନମସ୍କାର । ୫୨ ।

ପୃଥୁ ପ୍ରଜାଜନ ଚରିତ
କହିଲ ବିପ୍ର ଜଗନ୍ନାଥ
ମୈତ୍ରେୟ ବିଦୁର ସମ୍ବାଦ
ଶୁଣନ୍ତେ ନ ଲାଗେ ପ୍ରମାଦେ ।



## ଦ୍ୱା ବିଂ ଶ ଅ ଧ୍ୟା ୟ ।

ଦ୍ୱାବିଂଶେ ତୁ ପରଂ ଜ୍ଞାନଂ ପୃଥବେ ହରିଶାସନାତ୍ ।
ସନତ୍କୁମାରୋ ଭଗବାନୁପାଦିଶଦିତୀର୍ଯ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ଜନେଷୁ ପ୍ରଗୃଣତ୍ସ୍ୱେବଂ ପୃଥୁଂ ପୃଥୁଲବିକ୍ରମମ୍ ।
ତତ୍ରୋପଜଗ୍ମୁର୍ମୁନୟଶ୍ଚତ୍ୱାରଃ ସୂର୍ଯ୍ୟବର୍ଚ୍ଚସଃ । ୧ ।
ତାଂସ୍ତୁ ସିଦ୍ଧେଶ୍ୱରାନ୍ ରାଜା ବ୍ୟୋମ୍ନୋଽବତରତୋଽର୍ଚ୍ଚିଷା ।
ଲୋକାନପାପାନ୍ କୁର୍ବାଣାନ୍ ସାନୁଗୋଽଚଷ୍ଟ ଲକ୍ଷିତାନ୍ । ୨ ।

---

### ପୃଥୁ ରାଜାଙ୍କୁ ସନତ୍କୁମାରଙ୍କର ଉପଦେଶ ।

ଦ୍ୱାବିଂଶ ଅଧ୍ୟାୟରେ ଶ୍ରୀହରିଙ୍କ ଆଦେଶ ଅନୁସାରେ ସନତ୍କୁମାର ରାଜା ପୃଥୁଙ୍କୁ ଉପଦେଶ ଦେବା ବର୍ଣ୍ଣିତ ହୋଇଅଛି । ୦ ।

**ଶ୍ରୀମୈତ୍ରେୟ କହିଲେ :—**

ହେ ବିଦୁର ! ପୌରସଦ୍‌ଗଣ ମହାବଳଶାଳୀ ପୃଥୁଙ୍କୁ ଏହିପରି କହୁଥିବାବେଳେ, ସୂର୍ଯ୍ୟତୁଲ୍ୟ ତେଜସ୍ୱୀ ଚାରୋଟି ମୁନି ସେଠାରେ ଆସି ଉପସ୍ଥିତ ହେଲେ । ୧ ।

ସିଦ୍ଧପୁରୁଷମାନଙ୍କମଧ୍ୟରେ ଶ୍ରେଷ୍ଠ ଏହିଚାରିଜଣ ମୁନି ଯେତେବେଳେ ଲୋକମାନଙ୍କ ପାପକ୍ଷୟ କରି ଅବତୀର୍ଣ୍ଣ ହେଉଥିଲେ, ସେତେବେଳେ ପୃଥୁ ସେମାନଙ୍କୁ ଦେଖିଥିଲେ, ସେମାନଙ୍କର ଅସାଧାରଣ ଜ୍ୟୋତି ସେମାନଙ୍କୁ ଦୂରରୁ ପରିଚିତ କରାଇ ଦେଇଥିଲା । ୨ ।

---

ହରିଙ୍କ ଆଜ୍ଞା ଅନୁସାରେ, ସେଶ୍ୱର ସନତକୁମାରେ । ପୃଥୁଙ୍କୁ ଦେଲେ ତତ୍ତ୍ୱଜ୍ଞାନ, ଦ୍ୱାବିଂଶଅଧ୍ୟାରେ ବର୍ଣ୍ଣନ ॥

ଶ୍ରୀ ମୈତ୍ରେୟ ଉବାଚ—

ଏମନ୍ତେ ଶୁଣ ହେ ବିଦୁର
ସେ ପୃଥୁ ଦେବ ରାଜେଶ୍ୱର
ପ୍ରଜା ପାଳନେ ଧର୍ମଶୀଳ
ହରି-ଭକତି-ରସେ ଭୋଳ
ସେ ରାଜ୍ୟେ ଯେତେ ପ୍ରଜାଗଣ
ପିତୃ ଦେବ ଋଷି ବ୍ରାହ୍ମଣ
ପୃଥୁ ବିକ୍ରମ ବଖାଣନ୍ତି
ସେ ସର୍ବେ ହରିଙ୍କୁ ପୂଜନ୍ତି
ଏମନ୍ତେ କେତେ କାଳାନ୍ତରେ
ବିଜୟ କଲେ ମୁନିବରେ
ସେ ସିଦ୍ଧଗଣମଧ୍ୟେ ବର
ବିଶେଷେ ବ୍ରହ୍ମାଙ୍କ କୁମର
ତପ ସାଧନେ ବିରାଜନ୍ତି
ସୂର୍ଯ୍ୟ କିରଣ ପ୍ରାୟ ଜ୍ୟୋତି ।୧।
ଆକାଶୁଁ ଆସନ୍ତେ ରାଜନ
ଦୂରନ୍ତୁ କଲେ ଅନୁମାନ
ଏ ସର୍ବେ ସିଦ୍ଧ ସନକାଦି
ବିଷ୍ଣୁ ଭକତ ବ୍ରହ୍ମବାଦୀ
ଲୋକଙ୍କ ପାପ ଶୁଦ୍ଧିଅର୍ଥେ
ଭ୍ରମଣ କରନ୍ତି ଜଗତେ
ନିଶ୍ଚୟ ଜାଣି ଅନୁମାନେ
ଉଠିଲେ ସହାସ୍ୟେ ସଗଣେ ।୨

ତଦ୍ଦର୍ଶନୋଦ୍‌ଗତାନ୍ ପ୍ରାଣାନ୍ ପ୍ରତ୍ୟାଦିତ୍ସୁରିବୋତ୍ଥିତଃ ।
ସସଦସ୍ୟାନୁଗୋ ବୈଣ୍ୟ ଇନ୍ଦ୍ରିୟେଶୋ ଗୁଣାନିବ । ୩ ।
ଗୌରବାଦ୍ୟନ୍ତ୍ରିତଃ ସଭ୍ୟଃ ପ୍ରଶ୍ରୟାନତକନ୍ଧରଃ ।
ବିଧିବତ୍ ପୂଜୟାଂଚକ୍ରେ ଗୃହୀତାଧ୍ୟର୍ହଣାସନାନ୍ । ୪ ।
ତତ୍ପାଦଶୌଚସଲିଲୈର୍ମାର୍ଜିତାଲକବନ୍ଧନଃ ।
ତତ୍ର ଶୀଲବତାଂ ବୃତ୍ତମାଚରନ୍ମାନୟନ୍ନିବ । ୫ ।
ହାଟକାସନ ଆସୀନାନ୍ ସ୍ୱଧିଷ୍ଣ୍ୟେଷ୍ୱିବ ପାବକାନ୍ ।
ଶ୍ରଦ୍ଧାସଂୟମସଂଯୁକ୍ତଃ ପ୍ରୀତଃ ପ୍ରାହ ଭବାଗ୍ରଜାନ୍ । ୬ ।

---

ଜୀବ ଯେପରି ଗନ୍ଧାଦିଗୁଣ ଗ୍ରହଣ କରିବା ନିମନ୍ତେ ତତ୍ପ୍ରତି ଧାବମାନ ହୁଏ, ସେହିପରି ମୁନି ସ୍ୱରିଜଣଙ୍କୁ ଦେଖି ସଭାସଦ୍‌ଗଣ ଓ ଅନୁଚରଗଣଙ୍କ ସହ ରାଜା ପୃଥୁଙ୍କ ପ୍ରାଣ ସେମାନଙ୍କ ପ୍ରତି ଆକୃଷ୍ଟ ହେଲା । ପ୍ରତ୍ୟୁତ୍ଥାନ କରି ପୁଣି ତାହାଙ୍କୁ କିପରି ପାଇବେ, ଏହା ଭାବି ସଦସ୍ୟମାନଙ୍କ ସହିତ ଦଣ୍ଡାୟମାନ ହେଲେ । ୩ ।

ପୃଥୁ ସେହି ଋଷିମାନଙ୍କର ଗୌରବରେ ତତ୍‌କ୍ଷଣାତ୍ ବଶୀଭୂତ ହୋଇଥିଲେ ଏବଂ ସେମାନେ ଅର୍ଘ୍ୟ ଓ ଆସନ ଗ୍ରହଣ କଲାପରେ ବିନୀତଭାବରେ ମସ୍ତକ ଅବନତ କରି ସେମାନଙ୍କୁ ଯଥାବିଧି ପୂଜା କରି ଥିଲେ । ୪ ।

ରାଜା ସେମାନଙ୍କର ପାଦ ପ୍ରକ୍ଷାଳନ କରି ସେହି ଜଳରେ ଆପଣାର କେଶଗୁଚ୍ଛ ଧୌତ କରିଥିଲେ ଏପ୍ରକାର ଶିଷ୍ଟାଚାରରୁ ଜଣାପଡ଼ିଲା ଯେ ସଜ୍ଜନମାନଙ୍କର ଏହିପରି ବ୍ୟବହାରହିଁ କର୍ତ୍ତବ୍ୟ । ୫ ।

ଭଗବାନ୍ ରୁଦ୍ରଦେବଙ୍କର ଅଗ୍ରଜ ମୁନି ସ୍ୱରିଜଣ ନିଜନିଜର ସ୍ୱର୍ଣ୍ଣ ସିଂହାସନରେ ଉପବେଶନ କରିଥିଲେ, ମହାରାଜ ପୃଥୁ ସେମାନଙ୍କ ପ୍ରତି ଶ୍ରଦ୍ଧା ଓ ସଂଯମସହିତ ପ୍ରୀତି ପ୍ରକାଶ କରି କହିଲେ । ୬ ।

---

ତାଙ୍କ ଦର୍ଶନେ ନୃପପ୍ରାଣ
ଊର୍ଦ୍ଧ୍ୱକୁ କଲା କି ଗମନ
ଯେସନ୍ତେ ଜୀବନ ପିଣ୍ଡ ପାଇ
ସତ୍ୱରେ ଉଠିଲେ ଲୁସାଇଁ
ସଦସ୍ୟ ଆଦି ଯେତେ ଥିଲେ
ସକଳେ ସତ୍ୱରେ ଉଠିଲେ
ଯେସନେ ଗନ୍ଧାଦି ଗୁଣକୁ
ଜୀବ ଉତ୍ସୁକ ଭେଟିବାକୁ
ତେସନେ ନୃପ ହେଲେ ଭକ୍ତ
ମୁନି ପ୍ରବେଶ ହେଲେ ସତ୍ୟ । ୩ ।

ଆନନ୍ଦେ ପୃଥୁ ନୃପବର
ପ୍ରଣମି ମୁନିଙ୍କ ପୟର
ସୁଗନ୍ଧ ଶୀତ ଜଳ ନେଇ
ପଦକମଳ ଦେଲେ ଧୋଇ
ଦିବ୍ୟ ଆସନେ ବସାଇଲେ
ସବିଧି ବେଦରେ ପୂଜିଲେ । ୪ ।
ତାହାଙ୍କ ଚରଣସଲିଳେ
ଅଳକବନ୍ଧ ସମାର୍ଜିଲେ
ଯେ ପ୍ରାଣୀ ହୋଏ ଶୀଳବନ୍ତ
ତାହାଙ୍କ ଚରିତ ଏମନ୍ତ

ଶୁଦ୍ଧ ନୃପତି-ଅଭିମାନ
ଆନନ୍ଦେ କଲେ ବହୁମାନ୍ୟ । ୫ ।
ହାଟକ ଆସନେ ବସାଇ
ପାଦଉଦକ ଶିରେ ଲଇ
ସେ ଭବଅଗ୍ରଜନ୍ମା ଯେଣୁ
ରାଜନ ମାନ୍ୟ କଲେ ତେଣୁ
ଭାବେ ପ୍ରତୋଷି ତାଙ୍କ ମନ
କହିଲେ ମଧୁର ବଚନ । ୬ ।

ଶ୍ରୀପୃଥୁରୁବାଚ ।

ଅହୋ ଆଚରିତଂ କିଂ ମେ ମଙ୍ଗଳଂ ମଙ୍ଗଳାୟନାଃ ।
ଯସ୍ୟ ବୋ ଦର୍ଶନଂ ହ୍ୟାସୀଦ୍‌ଦୁର୍ଦ୍ଦର୍ଶାନାଞ୍ଚ ଯୋଗିଭିଃ । ୭ ।
କିଂ ତସ୍ୟ ଦୁର୍ଲ୍ଲଭତରମିହ ଲୋକେ ପରତ୍ର ଚ ।
ଯସ୍ୟ ବିପ୍ରାଃ ପ୍ରସୀଦନ୍ତି ଶିବୋ ବିଷ୍ଣୁଶ୍ଚ ସାନୁଗଃ । ୮ ।
ନୈବ ଲକ୍ଷୟତେ ଲୋକୋ ଲୋକାନ୍ ପର୍ଯ୍ୟଟତୋଽପି ଯାନ୍ ।
ଯଥା ସର୍ବଦୃଶଂ ସର୍ବ ଆତ୍ମାନଂ ଯେଽସ୍ୟ ହେତବଃ । ୯ ।
ଅଧନା ଅପି ତେ ଧନ୍ୟାଃ ସାଧବୋ ଗୃହମେଧିନଃ ।
ଯଦ୍‌ଗୃହା ହ୍ୟର୍ହବର୍ଯ୍ୟାମ୍ବୁତୃଣଭୂମୀଶ୍ୱରାବରାଃ । ୧୦ ।

---

ଶ୍ରୀପୃଥୁ କହିଲେ :—

ହେ ମଙ୍ଗଳମୟ ଋଷିଗଣ ! ମୁଁ ଏପରିକି ଶୁଭକାର୍ଯ୍ୟ କରିଅଛି ଯେ ଆପଣମାନଙ୍କର ଦେବ ଦୁର୍ଲ୍ଲଭ ଦର୍ଶନ ଲାଭକଲି ? । ୭ ।

ଅଥବା ଯାହାପ୍ରତି ବିପ୍ରଗଣ ଏବଂ ଅନୁଚରଗଣଙ୍କ ସହିତ ଭଗବାନ୍ ଶିବ ଓ ବିଷ୍ଣୁ ପ୍ରସନ୍ନ ହୁଅନ୍ତି, ତାହା ପ୍ରତି ଇହ ଓ ପରଲୋକରେ ଦୁଷ୍ପ୍ରାପ୍ୟ କଣ ଥାଏ ? । ୮ ।

ଯେପରି ସର୍ବଦର୍ଶୀ ଆତ୍ମାକୁ ଲୋକେ ଦେଖି ନ ପାରନ୍ତି, ସେହିପରି ଆପଣମାନେ ସର୍ବତ୍ର ପର୍ଯ୍ୟଟନ କରି ବୁଲୁଥିଲେ ମଧ୍ୟ କୌଣସି ବ୍ୟକ୍ତି ଆପଣମାନଙ୍କୁ ଦେଖି ପାରେ ନାହିଁ । ୯ ।

ଯେଉଁ ଗୃହରେ ଆପଣମାନଙ୍କର ପୂଜାଯୋଗ୍ୟ ଜଳ, ତୃଣ, ଭୂମି; ଗୃହସ୍ୱାମୀ ଓ ଭୃତ୍ୟମାନଙ୍କର ସେବା ସମ୍ଭାର ବର୍ତ୍ତମାନ ଥାଏ, ସେହି ସାଧୁ ଗୃହସ୍ଥମାନେ ଧନହୀନ ହେଲେ ମଧ୍ୟ ଧନ୍ୟ । ୧୦ ।

---

ଶ୍ରୀ ପୃଥୁରୁବାଚ—

ଆଜ ମୋ ପୂର୍ବ ଭାଗ୍ୟଫଳ
ଜୀବନ ହୋଇଲା ସଫଳ
ଦୁର୍ଲ୍ଲଭ ଦେଖିଲି ତୁମ୍ଭଙ୍କୁ
ଖୋଜି ନ ପାନ୍ତି ଯୋଗୀ ଯାକୁ ।୭
କି ଡାରି ଦୁର୍ଲ୍ଲଭ ସଂସାରେ
ଯେ ଅବା ଅଛି ଇହ ପରେ
ଯାହାକୁ ବିଷ୍ଣୁ ବିଇସ୍ତବ
ପ୍ରସନ୍ନ ବିପ୍ର ସଦାଶିବ । ୮ ।
ଅବ୍ୟକ୍ତ ଗତି ଯେ ତୁମ୍ଭର
ଭ୍ରମଣ ଚତୁର୍ଦ୍ଦଶ ପୁର

ଅଭାଗ୍ୟବନ୍ତ ପ୍ରାଣୀ ଯେହି
ତୁମ୍ଭ ଦର୍ଶନେ ଯୋଗ୍ୟ ନାହିଁ
ଏ ଆତ୍ମା ପୁରୁଷ ଯେସନେ
ସକଳ ଦେଖଇ ଚେତନେ
ତାହାକୁ ନ ଦେଖନ୍ତି କେହି
ଏ ବିଶ୍ୱ-ହେତୁରୂପ ଯେହି । ୯ ।
ହେ ସିଦ୍ଧ ତୁମ୍ଭଙ୍କୁ ଦେଖିଲି
ଧନ୍ୟ ଜୀବନ ମୁଁ ମଣିଲି
ନିର୍ଦ୍ଧନ ଗୃହେ ଯେହ୍ନେ ଧନ
ଅଣାଆସ୍ତେ ଯେହ୍ନେ ପୁଣ୍ୟ
ତେହ୍ନେ ମଣିଲି ଅଦଭୂତ
କି ଭାଗ୍ୟେ ତୁମ୍ଭେ ଉପଗତ

ଯା ଗୃହେ ଅତିଥି ଆଗତ
ଭାବେ ପୂଜଇ ଶୁଦ୍ଧ ଚିତ୍ତ
ବିଭବେ ପୂଜେ ବହୁବିଧେ
କାୟ ବାଚକ ମନ ଶୁଦ୍ଧେ
ବିଭବହୀନ ଯେବା ଜନ
ପୂଜିବ ଯେ ବିଧି ବିଧାନ
ଭୂମି ଉଦକ ତୃଣାସନେ
ବିନୟ କୋମଳ ବଚନେ
ଏ ଭାବେ ଯେବା ନ ପୂଜନ୍ତି
ସେ ବ୍ୟର୍ଥ ଜୀବନେ ବଞ୍ଚନ୍ତି
ବ୍ୟାଳଆଳୟ ଦ୍ରୁମ ଯେହ୍ନେ
ତା ଗୃହ ଭୟଙ୍କର ତେହ୍ନେ

ବ୍ୟାଳାଳୟଦ୍ରୁମା ବୈ ତେଽପ୍ୟରିକ୍ତାଖିଳସମ୍ପଦଃ ।
ଯଦ୍‌ଗୃହାସ୍ତୀର୍ଥପାଦୀୟପାଦତୀର୍ଥବିବର୍ଜିତାଃ । ୧୧ ।
ସ୍ୱାଗତଂ ବୋ ଦ୍ୱିଜଶ୍ରେଷ୍ଠାଃ ଯଦ୍‌ବ୍ରତାନି ମୁମୁକ୍ଷବଃ ।
ଚରନ୍ତି ଶ୍ରଦ୍ଧୟା ଧୀରା ବାଲା ଏବ ବୃହନ୍ତି ବୈ । ୧୨ ।
କଚ୍ଚିନ୍ନଃ କୁଶଳଂ ନାଥା ଇନ୍ଦ୍ରିୟାର୍ଥାର୍ଥବେଦନାମ୍ ।
ବ୍ୟସନାବାପ ଏତସ୍ମିନ୍ ପତିତାନାଂ ସ୍ୱକର୍ମଭିଃ । ୧୩ ।
ଭବତ୍ସୁ କୁଶଳପ୍ରଶ୍ନ ଆତ୍ମାରାମେଷୁ ନେଷ୍ୟତେ ।
କୁଶଳାକୁଶଳା ଯତ୍ର ନ ସନ୍ତି ମତିବୃତ୍ତୟଃ । ୧୪ ।
ତଦହଂ କୃତବିଶ୍ରମ୍ଭଃ ସୁହୃଦୋ ବସ୍ତପସ୍ୱିନାମ୍ ।
ସଂପୃଚ୍ଛେ ଭବ ଏତସ୍ମିନ୍ କ୍ଷେମଃ କେନାଞ୍ଜସା ଭବେତ୍ । ୧୫ ।

---

ଯେଉଁ ଗୃହ ସାଧୁ ବୈଷ୍ଣବମାନଙ୍କ ଚରଣୋଦକ ବର୍ଜିତ, ସେ ଗୃହ ସର୍ବସମ୍ପଦ ପୂର୍ଣ୍ଣ ହେଲେ ମଧ୍ୟ ସର୍ପମାନଙ୍କ ଆବାସ ବୃକ୍ଷତୁଲ୍ୟ ଭୟଙ୍କର । ୧୧ ।

ହେ ଦ୍ୱିଜଶ୍ରେଷ୍ଠଗଣ ! ଆପଣମାନେ ନିଶ୍ଚୟ କୁଶଳରେ, ଆଗମନ କରିଥିବେ, କାରଣ ବାଲ୍ୟ କାଳରୁ ଆପଣମାନେ ଏକାଗ୍ରଚିତ୍ତରେ ମୁକ୍ତିପଥ ଅନୁସରଣକରି ଶ୍ରଦ୍ଧା ପୂର୍ବକ ବ୍ରହ୍ମଚର୍ଯ୍ୟାଦି ମହା ମହାବ୍ରତ ଆଚରଣ କରି ଅଛନ୍ତି । ୧୨ ।

ହେ ପ୍ରଭୁଗଣ ! ଆମ୍ଭେମାନେ ନିଜ କର୍ମ ବଶରେ ନାନାପ୍ରକାର ବିପଦର ଆକର (ଖଣି) ଏହି ସଂସାରରେ ପଡ଼ି ଇନ୍ଦ୍ରିୟସେବାକୁ ପରମପୁରୁଷାର୍ଥ ବୋଲି ବୋଧ କରୁଅଛୁଁ । ଆମ୍ଭମାନଙ୍କର କି କୌଣସି ପ୍ରକାର ମଙ୍ଗଳର ସମ୍ଭାବନା ଅଛି ? । ୧୩ ।

ଆପଣମାନେ ଆତ୍ମାରାମ, ସୁତରାଂ କଅଣ ମଙ୍ଗଳଜନକ କଅଣ ବା ଅମଙ୍ଗଳଜନକ ଏପରି ଭେଦ ବୁଦ୍ଧି ଆପଣଙ୍କର ନାହିଁ । ସୁତରାଂ ଆପଣଙ୍କୁ କୁଶଳ ପ୍ରଶ୍ନ କରିବା ଉଚିତ ନୁହେଁ । ୧୪ ।

ମୋର ଦୃଢ଼ ବିଶ୍ୱାସ, ଆପଣମାନେ ସଂସାରସନ୍ତପ୍ତଜନଙ୍କର ପରମବନ୍ଧୁ ଅତଏବ କି ଉପାୟରେ ଏହି ସଂସାରରେ ସେମାନଙ୍କର ମଙ୍ଗଳ ହୋଇପାରେ, ମୁଁ ତାହାହିଁ ଆପଣମାନଙ୍କୁ ପ୍ରଶ୍ନ କରୁଅଛି ।୧୫।

---

ଯା ଗୃହଗତେଣ ଅତିଥି
ସୁଖେ ଚରଣ ନ ଧୁଅନ୍ତି
ତାର ଜୀବନ ଅକାରଣ
ବ୍ୟର୍ଥ ଆୟୁଷ ଯଶ ଗୁଣ
ଯେ ଭକ୍ତଜନଙ୍କୁ ନ ସେବେ
ସେ ସୁଖ ସମ୍ପଦ କି ଲଭେ ।୧୦,୧୧
ହେ ମୁନି ତୁମ୍ଭ ଆଗମନ
ମଙ୍ଗଳ ମଣିଲି ଜୀବନ
ତୁମ୍ଭର ବ୍ରତ ବିଧି ଆଦି
ଆଚରନ୍ତି ଯେ ମୋକ୍ଷବାଦୀ

ସେ ଚେତେ ମୋକ୍ଷ ମାର୍ଗ ପାନ୍ତି
ଏ ବିଷ୍ଣୁମାୟାରୁ ତରନ୍ତି । ୧୨ ।
ଇନ୍ଦ୍ରିୟମାନଙ୍କ ବିଷୟ
ନ ଛାଡ଼େ ଯାହାର ହୃଦୟ
ସେ କାହିଁ ସୁଖ ନ ଲଭନ୍ତି
ସ୍ୱକର୍ମ୍ମ ବନ୍ଧେ ବନ୍ଦୀ ହୋନ୍ତି
ଏ ଘୋର ସଂସାରେ ପଡ଼ିଣ
ଦୁଃଖ ଭୁଞ୍ଜନ୍ତି ଜ୍ଞାନହୀନ । ୧୩।
ହେ ମୁନିଗଣେ ତୁମ୍ଭେ ଜ୍ଞାନୀ
ଆତ୍ମାରାମଙ୍କ ମଧ୍ୟେ ମାନି

ଏଣୁ ଯେ ତୁମ୍ଭମାନଙ୍କରେ
କୁଶଳ ପ୍ରଶ୍ନ କେ ପଚାରେ
ତୁମ୍ଭର ମତି-ବୃତ୍ତିମାନେ
କୁଶଳାକୁଶଳ ନ ଘେନେ ।୧୪।
ଏହି ବିଶ୍ୱାସ ମୋର ଅଛି
ସତ୍ୟେ ନ ପାରଇ ପୁଚ୍ଛି
ସଂସାରତାପେ ଯେ ତାପିତ
ତାଙ୍କ କୁଶଳ ଯେ ଚରିତ
ଏ ଅଭିପ୍ରାୟ ମୁଁ ପୁଚ୍ଛଇ
ସେହିଣ କହିବା ଗୋସାଇଁ ।୧୫।

ବ୍ୟକ୍ତମାତ୍ମବତାମାତ୍ମା ଭଗବାନାତ୍ମଭାବନଃ ।
ସ୍ୱାନାମନୁଗ୍ରହାୟେମାଂ ସିଦ୍ଧରୂପୀ ଚରତ୍ୟଜଃ । ୧୬ ।
ଶ୍ରୀମୈତ୍ରେୟ ଉବାଚ ।
ପୃଥୋସ୍ତତ୍ ସୂକ୍ତମାକର୍ଣ୍ୟ ସାରଂ ସୁଷ୍ଠୁ ମିତଂ ମଧୁ ।
ସ୍ମୟମାନ ଇବ ପ୍ରୀତ୍ୟା କୁମାରଃ ପ୍ରତ୍ୟୁବାଚ ହ । ୧୭ ।
ଶ୍ରୀସନତ୍‌କୁମାର ଉବାଚ ।
ସାଧୁ ପୃଷ୍ଟଂ ମହାରାଜ ସର୍ବଭୂତହିତାତ୍ମନା ।
ଭବତା ବିଦୁଷା ଚାପି ସାଧୂନାଂ ମତିରୀଦୃଶୀ । ୧୮ ।
ସଙ୍ଗମଃ ଖଲୁ ସାଧୂନାମୁଭୟେଷାଞ୍ଚ ସମ୍ମତଃ ।
ଯତ୍‌ସମ୍ଭାଷଣସଂପ୍ରଶ୍ନଃ ସର୍ବେଷାଂ ବିତନୋତି ଶମ୍ । ୧୯ ।

---

ଆପଣମାନେ ଆତ୍ମତତ୍ତ୍ୱଦର୍ଶୀ ପୁରୁଷମାନଙ୍କର ଆତ୍ମା ସ୍ୱରୂପ, ସେହି ଭଗବାନ୍ ସେମାନଙ୍କର ଆତ୍ମା ସ୍ୱରୂପ ପ୍ରକାଶିତ ହୋଇ ନିଜର ଭକ୍ତମାନଙ୍କ ପ୍ରତି ଅନୁଗ୍ରହ ପ୍ରକାଶ କରି ସିଦ୍ଧରୂପେ ଅବନୀ ମଣ୍ଡଳରେ ବିଚରଣ କରୁଥାନ୍ତି । ୧୬ ।

ଶ୍ରୀମୈତ୍ରେୟ କହିଲେ :—ପୃଥୁ-ମହାରାଜାଙ୍କର ଏହିପରି ଗମ୍ଭୀରାର୍ଥ ପୂର୍ଣ୍ଣ ଶ୍ରବଣମୋହନ ସୁସଙ୍ଗତ ସ୍ୱଳ୍ପାକ୍ଷର ଶୁଣି ସନତ୍ କୁମାର ପ୍ରସନ୍ନ ବଦନରେ ମୃଦୁ ହାସ୍ୟରେ ପ୍ରୀତି ପୂର୍ଣ୍ଣଭାବରେ କହିଲେ । ୧୭ ।

ଶ୍ରୀସନତ୍‌କୁମାର କହିଲେ :—

ହେ ମହାରାଜ ! ଆପଣ ସ୍ୱୟଂ ଜ୍ଞାନବାନ୍ ହୋଇ ମଧ୍ୟ ସର୍ବଜୀବର ମଙ୍ଗଳକାମନାରେ ଯେଉଁ ପ୍ରଶ୍ନମାନ କଲେ, ତାହା ଉତ୍ତମ । ସାଧୁଲୋକମାନଙ୍କର ବୁଦ୍ଧି ବୃତ୍ତି ଏହିପରି ହୋଇଥାଏ । ୧୮ ।

ଦୁଇଜଣ ସାଧୁପୁରୁଷଙ୍କ ମିଳନ ସମସ୍ତଙ୍କର ବାଞ୍ଛନୀୟ, କାରଣ ସେ ଦୁହିଙ୍କ ମଧ୍ୟରେ ପରସ୍ପର ପ୍ରଶ୍ନୋତ୍ତରରେ ପ୍ରଶ୍ନକର୍ତ୍ତା, ଉତ୍ତରଦାତା ଓ ଶ୍ରୋତା ସମସ୍ତଙ୍କର ମଙ୍ଗଳ ହୋଇଥାଏ । ୧୯ ।

---

ତୁମ୍ଭେ ଭକତଜନହିତେ
କୁଶଳ ବାଞ୍ଛି ଅନ୍ତରତେ
ସିଦ୍ଧ ଯୋଗୀନ୍ଦ୍ର ରୂପ ଧରି
ଏ ରୂପେ ବୁଲୁଥାନ୍ତି ହରି
ସକଳ ଆତ୍ମା ସେ ଗୋସାଇଁ
ଭ୍ରମନ୍ତି ସନ୍ଥଜନପାଇଁ
ପ୍ରତ୍ୟକ୍ଷେ ସେ ତୁମ୍ଭେ ଗୋସାଇଁ
ଦର୍ଶନେ ନିସ୍ତରିଲି ମୁହିଁ
ଏ ଭବ ତରଣ ଉପାୟେ
ଟିକିଏ କହିବା ଥୋକାଏ ।୧୬।

ଶ୍ରୀମୈତ୍ରେୟ ଉବାଚ—
ଏମନ୍ତେ ଶୁଣ ହେ ବିଦୁର
ସେ ପୃଥୁବଚନ ମଧୁର
ଶ୍ରବଣେ ତୋଷ ହେଲେ ମୁନି
ସାଧୁ ସମ୍ମତ ବାକ୍ୟ ମାନି
କହନ୍ତି ବ୍ରହ୍ମାଙ୍କ କୁମର
ଶୁଣ ହେ ପୃଥୁ ନୃପବର । ୧୭ ।
ଶ୍ରୀସନତ୍‌କୁମାର ଉବାଚ—
ସଂସାରେ ସାଧୁଜନ ଯେହି
ତାଙ୍କ ମହିମା ସିନା ଏହି

ବିଷୟସୁଖ ନ ଘେନନ୍ତି
ପ୍ରାଣିଙ୍କ ଶ୍ରେୟ ସମ୍ଭରନ୍ତି
ତୁମ୍ଭେ ଯେ ପଣ୍ଡିତ ସୁଶୀଳ
ଏଣୁ ଉତ୍ତମ ସମ୍ଭରିଲ । ୧୮ ।
ସୁସାଧୁ ଜନଙ୍କ ସଙ୍ଗତ
ଉଭୟ ଲୋକେ ସେ ବିଦିତ
ଏଣୁ ସାଧୁଙ୍କ ସମ୍ଭାଷଣ
ସୁପୁଣ୍ୟ ମଙ୍ଗଳ କାରଣ
ଅଶେଷ ଜୀବ ହିତ କରେ
ଏଣୁ ସମ୍ଭରିଲ ବେଭାରେ
ସୁଶାନ୍ତ ଆତ୍ମ ମନ ହେଲ
ତୁମ୍ଭ ପ୍ରଶ୍ନେ ଦୁଃଖ ଗଲ ।୧୯।

ଅସ୍ତ୍ୟେବ ରାଜନ୍ ଭବତୋ ମଧୁଦ୍ୱିଷଃ ପାଦାରବିନ୍ଦସ୍ୟ ଗୁଣାନୁବାଦନେ ।
ରତିର୍ଦୁରାପା ବିଧୁନୋତି ନୈଷ୍ଠିକୀ କାମଂ କଷାୟଂ ମଲମନ୍ତରାତ୍ମନଃ । ୨୦ ।
ଶାସ୍ତ୍ରେଷ୍ୱିୟାନେବ ସୁନିଶ୍ଚିତୋ ନୃଣାଂ କ୍ଷେମସ୍ୟ ସଧ୍ର୍ୟଗ୍ବିମୃଶେଷୁ ହେତୁଃ ।
ଅସଙ୍ଗ ଆତ୍ମବ୍ୟତିରିକ୍ତ ଆତ୍ମନି ଦୃଢ଼ା ରତିର୍ବ୍ରହ୍ମଣି ନିର୍ଗୁଣେ ଚ ଯା । ୨୧ ।
ସା ଶ୍ରଦ୍ଧୟା ଭଗବଦ୍ଧର୍ମଚର୍ଯ୍ୟୟା ଜିଜ୍ଞାସୟାଧ୍ୟାତ୍ମିକଯୋଗନିଷ୍ଠୟା ।
ଯୋଗେଶ୍ୱରୋପାସନୟା ଚ ନିତ୍ୟଂ ପୁଣ୍ୟଶ୍ରବଃକଥୟା ପୁଣ୍ୟୟା ଚ । ୨୨ ।

---

ହେ ରାଜନ ! ମଧୁସୂଦନ ଶ୍ରୀହରିଙ୍କର ପଦାରବିନ୍ଦର ଗୁଣକୀର୍ତ୍ତନରେ ତୁମ୍ଭର ସୁଦୁର୍ଲ୍ଲଭ ଐକାନ୍ତିକୀ ରତି ବିଦ୍ୟମାନ, ଏଥିଦ୍ୱାରେ ଅନ୍ତରାତ୍ମାର କାମସ୍ୱରୂପ ମଳ ବିଦୂରିତ ହୋଇଯାଏ । ୨୦ ।

ଆତ୍ମଭିନ୍ନ ଦେହାଦି ପ୍ରତି ଅନାସକ୍ତି ଏବଂ ପରମବ୍ରହ୍ମସ୍ୱରୂପ ଆତ୍ମାପ୍ରତି ପ୍ରଗାଢ଼ ଅନୁରାଗ, ଏହାହିଁ ସମ୍ୟକ୍ ବିଚାରଯୁକ୍ତ ଏବଂ ଶାସ୍ତ୍ରରେ ଲୋକମାନଙ୍କର ମଙ୍ଗଳ କାରକ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି ।୨୧।

ଶ୍ରଦ୍ଧା, ଭଗବାନଙ୍କର ପ୍ରୀତିକର ଧର୍ମାନୁଷ୍ଠାନ, ସାଂସାରିକତତ୍ତ୍ୱ ଜାଣିବାର ଆଗ୍ରହ, ଭଗବାନଙ୍କର ଆରାଧନା ଏବଂ ସର୍ବଦା ପୁଣ୍ୟକୀର୍ତ୍ତି ଭଗବାନଙ୍କର ପବିତ୍ର ପ୍ରସଙ୍ଗ ଆଲୋଚନା ଇତ୍ୟାଦିଦ୍ୱାରା ସେହି ନିର୍ଗୁଣ ପରମବ୍ରହ୍ମ ସ୍ୱରୂପ ଆତ୍ମାରେ ଆସକ୍ତି ଓ ଦେହାଦିରେ ଅନାସକ୍ତି ଜନ୍ମିଥାଏ । ୨୨ ।

---

ଏବେ ହେ ଶୁଣ ନୃପବର
କହିବା ଏଥି ପ୍ରତିକାର
ଯେ ମୋକ୍ଷ ସାଧନ ପୁଚ୍ଛିଲ
ଅଶେଷ ଜୀବର ଯେ ଭଲ
ଉପାୟ ଅଛଇ ଯେ ଏକ
ହେ ନୃପ ମନେ ତୁ ବିବେକ
ତ୍ରିବିଧି କୃଷ୍ଣ ଉପାସନ
ରଜ ତାମସ ସତ୍ତ୍ୱଗୁଣ
ତାମସ ଭକ୍ତି ଏ ଲକ୍ଷଣ
କହିବା ଏଥିର କାରଣ
ଶ୍ରୀକୃଷ୍ଣଚରଣକମଳେ
ଯେ ପ୍ରାଣୀ ଭଜନ୍ତି ଶାନ୍ଲେ
ଚିତ୍ତେ ଯାହାର ନୋହେ ରତି
ସେ ହୀନ କପଟ ଭକତି
ତାହାଙ୍କ ଅନ୍ତର ମଳିନ
କାମକଷାୟେ ଅନୁକ୍ଷଣ
ତାମସ ଭକ୍ତି ବୋଲି ତାରେ
ନ ତରେ ଏ ଭବସାଗରେ ।୨୦।

କୃଷ୍ଣ ଭଜନେ ହୋଏ ରତି
ଆତ୍ମାକୁ ବିଶୁଦ୍ଧ କରନ୍ତି
ଯେ ନିଷ୍ଠା ଶାସ୍ତ୍ରମାର୍ଗେ କହେ
ନିଶ୍ଚୟ ବୁଦ୍ଧି ନରରାୟେ
ସେହି ନିର୍ମଳ ଜ୍ଞାନହେତୁ
ଭବସାଗର ପାର ସେତୁ
ଚିତ୍ତ ବିଶୁଦ୍ଧ ଯାର ନାହିଁ
ତାର ବୈରାଗ୍ୟ ଜ୍ଞାନ କାହିଁ ?
ହରିଚରଣେ ସେବା ରତି
ବୈରାଗ୍ୟ ନିଶ୍ଚଳ ଭକତି
ଏହି କୈବଲ୍ୟ ସୁସାଧନ
ନିଶ୍ଚୟ ବୁଦ୍ଧି ତୁ ରାଜନ
ବୈରାଗ୍ୟ ହୋଏ ଯେ ଅସଙ୍ଗ
ଚିତ୍ତେ ଜନ୍ମଇ ଭକ୍ତିଅଙ୍ଗ
ଯେଣୁ ତା ଦେହେ ସଙ୍ଗ ନାହିଁ
ଏଣୁହିଁ ଆତ୍ମେ ରତି ହୋଇ
ସେ ବ୍ରହ୍ମ ନିର୍ଗୁଣ ନିର୍ମଳ
ବ୍ୟାପିଛି ଅଶେଷ ଶରୀର

ଭକ୍ତି ବୈରାଗ୍ୟ ତାକୁ ପାଇ
ଏ ଭବେ ଜୀବ ମୁକ୍ତ ଥାଇ ।୨୧।
ସେ ବ୍ରହ୍ମେ ରତି ଏ ପ୍ରକାର
ଶାସ୍ତ୍ରରେ ଶ୍ରଦ୍ଧା ଥାଇ ଯାର
ହରିଚରଣେ ଯେବେ ଭାବେ
ନିଷ୍କାମ ଭକ୍ତି ହୁଏ ତେବେ
ଯୋଗରେ ନିଷ୍ଠା ଥାଇ ଯାର
ପୁଚ୍ଛଇ ଶାସ୍ତ୍ରମାର୍ଗ ସାର
ଯୋଗୀନ୍ଦ୍ରଗଣେ ସେବା କଲେ
ସେ ରତି ଲଭେ ବ୍ରହ୍ମ ଭୁଲେ
କି ଅବା ହରି ସଂକୀର୍ତ୍ତନ
ଶୁଣେ ଶ୍ରବଣେ କରେ ଧ୍ୟାନ
ଅସଙ୍ଗ ରତି ଏହି ଭାବେ
ସାଧନ ତାରତମେ ଲଭେ ।୨୨।

ଅର୍ଥେନ୍ଦ୍ରିୟାରାମସଗୋଷ୍ଠ୍ୟତୃଷ୍ଣୟା ତତ୍‌ସମ୍ମତାନାମପରିଗ୍ରହେଣ ଚ ।
ବିବିକ୍ତରୁଚ୍ୟା ପରିତୋଷ ଆତ୍ମନ ବିନା ହରେର୍ଗୁଣପୀୟୂଷପାନାତ୍ । ୨୩ ।
ଅହିଂସୟା ପାରମହଂସ୍ୟଚର୍ଯ୍ୟୟା ସ୍ମୃତ୍ୟା ମୁକୁନ୍ଦାଚରିତାଗ୍ର୍ୟସୀଧୁନା ।
ଯମୈରକାମୈର୍ନିୟମୈଶ୍ଚାପ୍ୟନିନ୍ଦୟା ନିରୀହୟା ଦ୍ୱନ୍ଦ୍ୱତିତିକ୍ଷୟା ଚ । ୨୪ ।

---

ଯେଉଁମାନେ ଅର୍ଥ ଓ ଇନ୍ଦ୍ରିୟ ସେବାରେ ରତ ସେମାନଙ୍କ ସଂସର୍ଗରେ ବିତୃଷ୍ଣା ଏବଂ ସେମାନଙ୍କର ଅଭିପ୍ରେତ ଅର୍ଥ କାମାଦିପରିତ୍ୟାଗ ଓ ଆତ୍ମାର ପରିତୋଷ ଜନ୍ମିଲେ ନିର୍ଜ୍ଜନ ବାସରେ ଅଭିରୁଚି ଏବଂ ଏହିପରି ସ୍ଥବରେ ଆତ୍ମରତି ଦୃଢ ହୋଇଥାଏ, କିନ୍ତୁ ଶ୍ରୀହରି ଗୁଣାମୃତ ପାନର ସମ୍ଭାବନା ନ ଥିଲେ ଆତ୍ମରତ ଓ ନିର୍ଜ୍ଜନବାସ ମଧ୍ୟ କର୍ତ୍ତବ୍ୟ ନୁହେଁ । ୨୩ ।

ଅହିଂସା ବା କାୟମନୋବାକ୍ୟରେ ପରପୀଡ଼ା ପରିତ୍ୟାଗ, ପରମହଂସଚର୍ଯ୍ୟା ବା ନିବୃତ୍ତିପରାୟଣତା ଆତ୍ମହିତାନୁସନ୍ଧାନ, ଶ୍ରୀଭଗବାନଙ୍କର ଚରିତାମୃତ ପାନରେ ତତ୍ପରତା, ସଂଯମ, କାମନାତ୍ୟାଗ, ଶୌଚାଦି ନିୟମ, କୌଣସି ଧର୍ମର ନିନ୍ଦା ନ କରିବା, ବ୍ୟଗ୍ରତା ପରିତ୍ୟାଗ ଓ ଶୀତୋଷ୍ଣାଦି ଦ୍ୱନ୍ଦ୍ୱସହନ, ଏହି ସମସ୍ତ ଉପାୟ ଦ୍ୱାରା ସେହି କାରଣ ଜନ୍ମେ । ୨୪ ।

---

ଶୁଣ ରାଜନ କୃଷ୍ଣ ଲହେ
ତ୍ରିବିଧ ପ୍ରକାରେ ଯେ ହୋଏ
ଯେ ମାର୍ଗେ ଯେ ସାଧ କରନ୍ତି
ବ୍ରହ୍ମ ନିର୍ବାଣେ ହୋଏ ରତି
ଅର୍ଥ ବାଞ୍ଛିତ ମନ ଯାର
ତାମସେ ବନ୍ଧ ସେହି ନର
ଯେ ପ୍ରାଣୀ ଇନ୍ଦ୍ରି ଭୋଗ ବଶ
ତାହାକୁ ବୋଲନ୍ତି ରାଜସ
ଏହାଙ୍କୁ ନ କରିବ ସଙ୍ଗ
ସେ ସଙ୍ଗ ଦୋଷେ ଜ୍ଞାନ ଭଙ୍ଗ
ତହିଁ ନ ଦେବ ମନ ଦୃଷ୍ଟି
କେବେହେଁ ନ କରିବ ଗୋଷ୍ଠୀ
ସେ ସଙ୍ଗ ଯେବା ଆଦରନ୍ତି
ସେ କାମ ଅର୍ଥ ସେ ବାଞ୍ଛନ୍ତି
ଏଣୁ ତାହାଙ୍କ ସଙ୍ଗ ତେଜ
ଯେ ପ୍ରାଣୀ ଆତ୍ମା ଲଭ ଖୋଜ

ନିଃସଙ୍ଗେ ନିର୍ଜ୍ଜନେ ସେବଇ
ତେବେ ଆତ୍ମାକୁ ଭେଟ ପାଇ
ଏରୂପେ ହୋଏ ବ୍ରହ୍ମେ ରତି
ଶୁଣ ସୁମନେ ହେ ନୃପତି
ଅପରେ ଅସାଧ୍ୟ କହିବି
ଯାହାର ନାହିଁ ଭକ୍ତି ସେବା
ହରିଚରଣେ ଭକ୍ତି ନୋହି
ତାହାର ବ୍ରହ୍ମେ ରତି କାହିଁ ?
ସେ ହରିଗୁଣ-ସୁଧାପାନ
ସେ ବିନୁ ନୋହେ ବ୍ରହ୍ମଜ୍ଞାନ ।୨୩।
ଅହିଂସା ଧର୍ମେ ଯେବେ ଥାନ୍ତି
ଏ ବ୍ରହ୍ମଜ୍ଞାନ ସେ ଲଭନ୍ତି
ପରମହଂସର ଯେ ବିଧି
ତିତିକ୍ଷା ଶମ ଦମ ଆଦି
ଆତ୍ମାର ହିତ ଅନୁଷ୍ଠାନେ
ନିର୍ଗୁଣ ହୋଏ ବ୍ରହ୍ମଜ୍ଞାନେ

ସେ ହରି ପରମପୁରୁଷ
ତାହାର ଚରିତ ପୀୟୂଷ
ସେ ସୁଧା ପାନ ଯେବେ କରେ
ତେବେ ସେ ବ୍ରହ୍ମଜ୍ଞାନ ଧରେ
ଯମ ନିୟମ ଶମ ଦମ
ଏ ଆଦି ସାଧନ ନିପୁଣ
ସଂସାରେ ଶାସ୍ତ୍ର ବ୍ୟବହାରେ
ନିନ୍ଦା ଧର୍ମ୍ମକୁ ନ ଆଚରେ,
ପରମ ଧର୍ମ୍ମ ଏ ବିଷୟରେ
ନିର୍ମଳ ବାହ୍ୟ ଅଭ୍ୟନ୍ତରେ
ଶୀତୋଷ୍ଣ ସୁଖ ଦୁଃଖ ସହେ
ତେବେ ସେ ବ୍ରହ୍ମଜ୍ଞାନ ବହେ ।୨୪

ହରେର୍ମୁହୁସ୍ତତ୍‌ପରକର୍ଣ୍ଣପୂରଗୁଣାଭିଧାନେନ ବିଜୃମ୍ଭମାଣୟା ।
ଭକ୍ତ୍ୟା ହ୍ୟସଙ୍ଗଃ ସଦସତ୍ୟନାତ୍ମନି ସ୍ୟାନ୍ନିର୍ଗୁଣେ ବ୍ରହ୍ମଣି ଚାଞ୍ଜସା ରତିଃ । ୨୫ ।
ଯଦା ରତିର୍ବ୍ରହ୍ମଣି ନୈଷ୍ଠିକୀ ପୁମାନାଚାର୍ଯ୍ୟବାନ୍ ଜ୍ଞାନବିରାଗରଂହସା ।
ଦହତ୍ୟବୀର୍ଯ୍ୟଂ ହୃଦୟଂ ଜୀବକୋଷଂ ପଞ୍ଚାତ୍ମକଂ ଯୋନିମିବୋତ୍ଥିତୋଽଗ୍ନିଃ ।୨୬।

---

ଭକ୍ତମାନଙ୍କର ଶ୍ରୁତି ସୁଖାବହ ଶ୍ରୀ ଭଗବାନଙ୍କର ଗୁଣଗାଥା ପୁନଃ ପୁନଃ କୀର୍ତ୍ତନ ଏବଂ ପ୍ରବଳ ଭକ୍ତି, ଏହି ଉପାୟ ଦ୍ୱାରା କାର୍ଯ୍ୟକାରଣାତ୍ମକ ଦେହାଦି ପ୍ରତି ବୈରାଗ୍ୟ ଓ ନିର୍ଗୁଣ ବ୍ରହ୍ମ ସ୍ୱରୂପ ପରମାତ୍ମାଙ୍କ ଠାରେ ଗାଢ଼ ଅନୁରାଗ ଜନ୍ମିଥାଏ । ୨୫ ।

ସାଧକର ଯେତେବେଳେ ପରମାତ୍ମାଙ୍କଠାରେ ଐକାନ୍ତିକୀ ରତି ଜନ୍ମେ ସେତେବେଳେ ସେ ଜ୍ଞାନ ଓ ବୈରାଗ୍ୟର ପ୍ରବଳବେଗରେ ସଦ୍‌ଗୁରୁଙ୍କର ଆଶ୍ରୟ ଗ୍ରହଣ କରିଥାନ୍ତି, ଜୀବର ଆବରକ ପଞ୍ଚବିଧ କ୍ଲେଶମୟ ଅହଙ୍କାରାତ୍ମକ ଲିଙ୍ଗ ଶରୀର ସେତେବେଳେ ବାସନା ଶୂନ୍ୟ ହୋଇ ଦୁର୍ବଳ ହୋଇ ପଡ଼େ, ସୁତରାଂ ସେତେବେଳେ ଅଗ୍ନି ପ୍ରଜ୍ୱଳିତ ହୋଇ ଅରଣିକାଷ୍ଠକୁ ଦଗ୍ଧ କଲାପରି ସାଧକର ସେହି ଲିଙ୍ଗ ଶରୀରକୁ ଦଗ୍ଧ କରେ । ୨୬ ।

---

ହରି ଭକତ ଯେତେ ଜନ
ତାହାଙ୍କ ଯେ କର୍ଣ୍ଣଭୂଷଣ
ଯେତେ କୃଷ୍ଣର ଗୁଣଗ୍ରାମ
ତନ୍ମଧ୍ୟରେ ସାଧକ ଯେ ଜନ
ତେଣୁ ବଢ଼ଇ ତାର ଭକ୍ତି
ତେବେ ସେ ଲଭଇ ମୁକତି
ସେ ବ୍ରହ୍ମ ଅଟେ ସଦସତ
ଅନାଦି ନିର୍ଗୁଣ ଅନନ୍ତ
ତେଣେ ଯାହାର ରତି ହୋଏ
ଯେପ୍ରାଣୀବନ୍ଧନୋହେ ମୋହେ ।୨୫

ସେ ବ୍ରହ୍ମେ ଯାର ନିଷ୍ଠା ରତି
ତେବେ ତା ହୋଏ ଦୃଢ଼ମତି
ସେ ସଦଗୁରୁ ସେବା କରେ
ସେ ତେବେ ଜ୍ଞାନମାର୍ଗ ଧରେ
ଜ୍ଞାନ ବୈରାଗ୍ୟ ଯୋଗ ବଳେ
ଏ ଜୀବକୋଷ ଦହେ ହେଳେ
ଏ ପଞ୍ଚଭୂତରେ ହୃଦୟ
ଜୀବର ହୋଇଛି ଆଳୟ
ଜ୍ଞାନଅନଳ ଉହ୍ଲେ ଜାତ
ତେବେ ସେ ହୋଏ ଭସ୍ମ ଗତ

ଏ ଜୀବ-କୋଷ ଯେବେ ଯାଇ
ତେବେ ସେ ବ୍ରହ୍ମଜ୍ଞାନ ପାଇ
ଅନଳ ପ୍ରକାଶିଲେ ଯେହ୍ନେ
ସମିଧ ହୁଅନ୍ତି ଦହନେ
ତେସନେ ଏ ଲିଙ୍ଗଶରୀର
ଜ୍ଞାନେ ଦହଇ ନୃପବର
ଏମନ୍ତ ଜ୍ଞାନ ଉଦେ ଯାର
ନୁହଇ ଭବବନ୍ଧ ତାର
ଉପାଧି ବାସନା ଅଶେଷ
ଜ୍ଞାନ ଅନଳେ ହୋଏ ଧ୍ୱଂସ ।୨୬।

ଦଗ୍‌ଧାଶୟୋ ମୁକ୍ତସମସ୍ତତଦ୍‌ଗୁଣୋ ନୈବାତ୍ମନୋ ବହିରନ୍ତର୍ବିଚଷ୍ଟେ ।
ପରାତ୍ମନୋର୍ଯଦ୍‌ବ୍ୟବଧାନଂ ପୁରସ୍ତାତ୍‌ ସ୍ୱପ୍ନେ ଯଥା ପୁରୁଷସ୍ତଦ୍‌ବିନାଶେ । ୨୭ ।
ଆତ୍ମାନମିନ୍ଦ୍ରିୟାର୍ଥଞ୍ଚ ପରଂ ଯଦୁଭୟୋରପି ।
ସତ୍ୟାଶୟ ଉପାଧୌ ବୈ ପୁମାନ୍‌ ପଶ୍ୟତି ନାନ୍ୟଦା । ୨୮ ।

---

ଲୋକେ ସ୍ୱପ୍ନରେ ଯେଉଁ ବିଷୟମାନ ଅନୁଭବ କରନ୍ତି ଏବଂ ସ୍ୱପ୍ନ ଭାଙ୍ଗିଗଲେ ତାହା ଅନୁଭୂତ ହୁଏ ନାହିଁ, ସେହିପରି ଯେଉଁ ବ୍ୟକ୍ତିର ଅହଙ୍କାର ସ୍ୱରୂପ ଲିଙ୍ଗ ଶରୀର ନଷ୍ଟ ହୋଇଅଛି, ତାହାର କର୍ତ୍ତୃତ୍ୱାଦି ଅଭିମାନ ଦୂରୀଭୂତ ହୋଇଯାଏ, ଆତ୍ମାନୁରାଗ ପୂର୍ବେ ପରମାତ୍ମା ଓ ଜୀବାତ୍ମା ମଧ୍ୟରେ ଯେଉଁ ଭେଦବୁଦ୍ଧି ତାହା ମଧ୍ୟ ସେତେବେଳେ ବିନଷ୍ଟ ହୋଇଯାଏ, ନିଜର ଏବଂ ସ୍ତ୍ରୀ ପୁତ୍ରାଦିଙ୍କର ବାହ୍ୟକ ସୁଖ ଦୁଃଖ ପ୍ରଭୃତି ଆଭ୍ୟନ୍ତରିଣ ବିଷୟ କିଛିହିଁ ସେତେବେଳେ ଅନୁଭୂତ ହୁଏ ନାହିଁ । ୨୭ ।

ଯେତେଦିନଯାଏ ଲିଙ୍ଗ ଶରୀରର ଉପାଧି ରହିଥାଏ ସେତେଦିନ ଲୋକ ଜୀବଭାବାପନ୍ନ ଆପଣାକୁ ଇନ୍ଦ୍ରିୟଭୋଗ୍ୟ ବିଷୟଗୁଡ଼ିକୁ ଏବଂ ଭୋଗଜନିତ ସୁଖ ଦୁଃଖାଦିକୁ ଅନୁଭବ କରେ ମାତ୍ର ଉପାଧି ନଷ୍ଟ ହେଲେ ସେ ପ୍ରକାର ଅନୁଭୂତି ଆଉ ଆସେ ନାହିଁ । ୨୮ ।

---

ଉପାଧି ହୁଡେ ନୃପରାୟେ
ତାର ଗୁଣାଦି ହୋଏ ଲୟେ
ବିନାଶ ହୋଏ ଅଭିମାନ
ଆପଣା ପର ଆଦି ଜ୍ଞାନ
ଜନ୍ମଇ ନିଜ ଭାବେ ରତି
ଏ ପରାପର ନୋହେ ମତି
ସେ ପୁଣି ଅନ୍ତର ବାହାରେ
ଏ ଦୁଃଖ ସୁଖ ନ ବିଚାରେ
ବାହ୍ୟେ ସେ ନ ଲକ୍ଷଇ କିଛି
ଘଟାଦି ବସ୍ତୁ ଯେତେ ଅଛି
ଏଥିକୁ ପ୍ରତିଲକ୍ଷ୍ୟ ଦେବା
ହେ ନୃପ ଦେଖାଇ କହିବା
ଦ୍ରଷ୍ଟା ଦୃଶ୍ୟର ଭିନ୍ନେ ବିଧି
ଏହାଙ୍କ ହେତୁ ମନ ବୁଦ୍ଧି

ଏ ଆତ୍ମା ଏ ମୋହର ପର
ଏ ଭାବେ କରେ ଅହଂକାର
ଭେଦ କରନ୍ତା ଯେବେ ମଲା
ତାର ଅଜ୍ଞାନ କ୍ଷୟ ଗଲା
ଅଜ୍ଞାନ ନାଶେ ସର୍ବ ଏକ
ହୋ ରାଜା କର ତୁ ବିବେକ
ଯେସନେ ଶୟନେ ସ୍ୱପନ
ମିଥ୍ୟାଭିଳାଷେ ଦେଖେ ମନ
ଆପଣେ ହୋଇଥାଇ ରାଜା
ସଙ୍ଗତେ ଦେଖେ ଜନ ପ୍ରଜା
ସୈନ୍ୟ ସାମନ୍ତ ଗଜ ରଥ
ମିଥ୍ୟା ପ୍ରପଞ୍ଚ ମଣେ ସତ
ସେ ପୁଣି ସ୍ୱପ୍ନ ଅବସାନେ
ସକଳ ମିଥ୍ୟା କରି ମାନେ

ରାଜ୍ୟ ସମ୍ପଦ ଭୋଗ ଯେତେ
ଶୋଚନା ନ କରଇ ଚିତ୍ତେ
ତେସନେ ଜ୍ଞାନ ଉପୁଜିଲେ
ଏ ସର୍ବ ନାଶ ଯାନ୍ତି ଭଲେ ।୨୭।
ଏ ଆତ୍ମା ଦେଖନ୍ତା ପୁରୁଷ
ଇନ୍ଦ୍ରିୟ ଅର୍ଥଙ୍କ ପ୍ରକାଶ
ଏ ଦେହି ପର ଅହଂକାର
ଏ ଭେଦ ବିବେକ ତାହାର
ଯାବତ ଉପାଧି ଅଛଇ
ତାବତ ଭେଦବୁଦ୍ଧି ହୋଇ
ଉପାଧି ହଟେ ସର୍ବ ନାଶ
ତେବେ ସେ ଆତ୍ମା ସୁପ୍ରକାଶ ।୨୮

ନମିତ୍ତେ ସତି ସର୍ବତ୍ର ଜଳାଦାବପି ପୂରୁଷଃ ।
ଆତ୍ମନଶ୍ଚ ପରସ୍ୟାପି ଭିଦାଂ ପଶ୍ୟତି ନାନ୍ୟଦା । ୨୯ ।
ଇନ୍ଦ୍ରିୟୈର୍ବିଷୟାକୃଷ୍ଟୈରାକ୍ଷିପ୍ତଂ ଧ୍ୟାୟତାଂ ମନଃ ।
ଚେତନାଂ ହରତେ ବୁଦ୍ଧେଃ ସ୍ତମ୍ବସ୍ତୋୟମିବ ହ୍ରଦାତ୍ । ୩୦ ।
ଭ୍ରଶ୍ୟତ୍ୟନୁସ୍ମୃତିଶ୍ଚିତ୍ତଂ ଜ୍ଞାନଭ୍ରଂଶଃ ସ୍ମୃତିକ୍ଷୟେ ।
ତଦ୍ରୋଧଂ କବୟଃ ପ୍ରାହୁରାତ୍ମାପହ୍ନବମାତ୍ମନଃ । ୩୧ ।
ନାତଃ ପରତରୋ ଲୋକେ ପୁଂସଃ ସ୍ୱାର୍ଥବ୍ୟତିକ୍ରମଃ ।
ଯଦଧ୍ୟନ୍ୟସ୍ୟ ପ୍ରେୟସ୍ତ୍ୱମାତ୍ମନଃ ସ୍ୱବ୍ୟତିକ୍ରମାତ୍ । ୩୨ ।

ବାହ୍ୟ ଜଗତର ଦୃଷ୍ଟାନ୍ତରେ ଦେଖାଯାଏ ଯେ ଜଳ ବା ଦର୍ପଣସ୍ୱରୂପ କାରଣ ଥିଲେ ମଧ୍ୟ ଲୋକେ ନିଜକୁ ଓ ନିଜର ପ୍ରତିବିମ୍ବକୁ ବିଭିନ୍ନ ବୋଲି ମନେ କରନ୍ତି, କିନ୍ତୁ ଜଳାଦି ଅଭାବରେ ତାହା ହୁଏନାହିଁ । ୨୯

ଯେଉଁ ବ୍ୟକ୍ତି ବିଷୟ ଚିନ୍ତାରେ ମଗ୍ନ ତାହାର ଇନ୍ଦ୍ରିୟମାନେ ବିଷୟଦ୍ୱାରା ଆକୃଷ୍ଟ ଏବଂ ମନ ଇନ୍ଦ୍ରିୟଦ୍ୱାରା ଆକୃଷ୍ଟ ହୁଏ । ଜଳାଶୟର ତୀରରେ ଉତ୍ପନ୍ନ କୁଶାଦି ଯେପରି ଜଳାଶୟରୁ ଜଳ ହରଣ କରେ, ସେହିପରି ମନ ବୁଦ୍ଧିରୁ ତାହାର ବିବେକକୁ ହରଣ କରିଥାଏ । ୩୦ ।

ବିବେକ ଅପହୃତ ହେଲେ ସ୍ମୃତି ଅର୍ଥାତ୍ ପୂର୍ବାପର ଅନୁସନ୍ଧାନ ନଷ୍ଟ ହୋଇଯାଏ, ସ୍ମୃତି ନାଶରୁ ଜ୍ଞାନ ନାଶ ହୁଏ । ପଣ୍ଡିତମାନେ ଏହି ଜ୍ଞାନନାଶକୁ ଆତ୍ମକୃତ ଆତ୍ମନାଶ ବୋଲି କହିଥାନ୍ତି । ୩୧ ।

ଯେଉଁ ଆତ୍ମାକୁ ଲକ୍ଷ୍ୟକରି ଅନ୍ୟାନ୍ୟ ବିଷୟ ଗୁଡ଼ିକ ପ୍ରିୟ ବୋଲି ଜଣାଯାଏ, ସେହି ଆତ୍ମାର ପ୍ରକୃତ ସ୍ୱରୂପ ନଷ୍ଟ ହେଲେ ଯେଉଁ ସ୍ୱାର୍ଥ ହାନି ହୁଏ, ଜଗତରେ ତଦପେକ୍ଷା ଅଧିକ କ୍ଷତି ଆଉ କିଛିନାହିଁ । ୩୨ ।

ଏ ଆତ୍ମା ଦେଖନ୍ତା ପୁରୁଷ
ଯାହାର ନାହିଁ ଗୁଣ ଦୋଷ
ଉପାଧି ଭେଦେ ଭିନ୍ନ ଦିଶେ
ତା ବିନା ଏକ ସେ ପ୍ରକାଶେ
ଯେହ୍ନେ ଦର୍ପଣ ଜଳାଦିରେ
ଆପଣା ପ୍ରତିବିମ୍ବ ଧରେ
ଏ ବେନି ହୀନେ ନ ଦିଶନ୍ତି
ଆପଣା ଶରୀର ଆକୃତି
ଉପାଧି ହେତୁ ଭିନ୍ନ ଭିନ୍ନ
ତା ଅବଶେଷେ ଏକ ଚିହ୍ନ
ଶୁଣ ହେ ପୃଥୁ ମହୀପତି
ଅସଙ୍ଗ ଆଉ ବ୍ରହ୍ମେ ରତି
ଏ ବେନି ମାର୍ଗ ମୋକ୍ଷ ହେତୁ
ଭବସାଗର-ପାର-ସେତୁ । ୨୯ ।
ଶୁଣ ସୁମନେ ହେ ସୁଜନ
ବେକ ବିହୀନ ଯେବା ଜନ
ଯାହାର ଆତ୍ମାରତି ନୋହେ
ଯେ ଦେହେ ଅହଙ୍କାର ବହେ
ଏ ମୋର ଦାରା ସୁତ ଘର
ବୋଲି ବିଷୟେ ଅହଂକାର
ବିଷୟେ ରସେ ଇନ୍ଦ୍ରି ରସି
ମନକୁ ଆଣଇ ଆକର୍ଷି
ଇନ୍ଦ୍ରିୟ ସଙ୍ଗେ ମନ ରସେ
ନିଜ ଚେତନା ବଳ ଧ୍ୱଂସେ
ଏଣୁ ବିବେକ ତାର ନୋହି
କୁସଙ୍ଗ ଦୋଷେ ମନ ମୋହି
ଯେସନେ କୁଶ ଆଦି ମୂଳ
ହ୍ରଦରୁ ଓଟାରନ୍ତି ଜଳ
ତେସନେ ଦେଖ ବିଷୟାଦି
ହରଇ ସର୍ବ ମନ ବୁଦ୍ଧି । ୩୦
ଚେତନା ବିନେ ସ୍ମୃତି ରହି
ତାର ଅଭାବେ ସ୍ମୃତି କାହିଁ ?
ଯାହାର ସ୍ମୃତି ହୋଏ ନାଶ
ତା ହୃଦେ ଜ୍ଞାନ ଅପ୍ରକାଶ
ଜ୍ଞାନ ବିନାଶେ ଆତ୍ମା ହତ
ବେଦାନ୍ତେ କହନ୍ତି ପଣ୍ଡିତ । ୩୧ ।
ଶୁଣ ନୃପତି ପୁତ୍ରବର
ଏଥୁଁକି ହାନି ନାହିଁ ପର
ବିଷୟ ସୁଖ ଭୋଗ ଲାଗି
ହୁଅଇ ଆତ୍ମାବଧେ ଭାଗୀ
ଯେ ନିଜ ହାନି ନ ବୁଝଇ
ତାର ବିବେକ ଗୁଣ କାହିଁ ? । ୩୨

ଅର୍ଥେନ୍ଦ୍ରିୟାର୍ଥାଭିଧ୍ୟାନଂ ସର୍ବାର୍ଥାପହ୍ନବୋ ନୃଣାମ୍ ।
ଭ୍ରଂଶିତୋ ଜ୍ଞାନବିଜ୍ଞାନାଦ୍ ଯେନାବିଶତି ମୁଖ୍ୟତାମ୍ । ୩୩ ।
ନ କୁର୍ଯ୍ୟାତ୍ କର୍ହିଚିତ୍‌ସଙ୍ଗଂ ତମସ୍ତୀବ୍ରଂ ତିତୀରିଷୁଃ ।
ଧର୍ମାର୍ଥକାମମୋକ୍ଷାଣାଂ ଯଦତ୍ୟନ୍ତବିଘାତକମ୍ । ୩୪ ।
ତତ୍ରାପି ମୋକ୍ଷ ଏ ବାର୍ଥ ଆତ୍ୟନ୍ତିକତୟେଷ୍ୟତେ ।
ତ୍ରୈବର୍ଗ୍ୟୋଽର୍ଥୋ ଯତୋ ନିତ୍ୟଂ କୃତାନ୍ତଭୟସଂଯୁତଃ । ୩୫ ।
ପରେଽବରେ ଚ ଯେ ଭାବା ଗୁଣବ୍ୟତିକରାଦନୁ ।
ନ ତେଷାଂ ବିଦ୍ୟତେ କ୍ଷେମମୀଶବିଧ୍ୱଂସିତାଶିଷାମ୍ । ୩୬ ।

ଅର୍ଥ ଓ କାମର ଐକାନ୍ତିକ ଚିନ୍ତା କଲେ ଲୋକର ସର୍ବପ୍ରକାର ସ୍ୱାର୍ଥ ବିନାଶ ହୁଏ, କାରଣ ଏହି ଉଭୟ ଚିନ୍ତାଦ୍ୱାରା ଲୋକ ଜ୍ଞାନ ବିଜ୍ଞାନରୁ ପରିଭ୍ରଷ୍ଟ ହୋଇ ସ୍ଥାବରତ୍ୱ ପ୍ରାପ୍ତ ହୁଏ । ୩୩ ।

ଯେଉଁ ବ୍ୟକ୍ତି ଘୋର ସଂସାରାନ୍ଧକାର ପାର ହେବାକୁ ଇଚ୍ଛାକରେ ତାହା ପକ୍ଷରେ ଯେଉଁ ବସ୍ତୁ ଧର୍ମ, ଅର୍ଥ, କାମ, ମୋକ୍ଷର ଅତ୍ୟନ୍ତ ଅନ୍ତରାୟ, ତହିଁରେ ଆସକ୍ତ ହେବା ଆଦୌ ଉଚିତ ନୁହେଁ ।୩୪।

ଏହି ଚତୁର୍ବର୍ଗ ମଧ୍ୟରେ ମୋକ୍ଷହିଁ ଆତ୍ୟନ୍ତିକ ପୁରୁଷାର୍ଥ ବୋଲାଯାଏ, କାରଣ ଧର୍ମ, ଅର୍ଥ, କାମ, ଏହି ତ୍ରୈବର୍ଗିକ ପୁରୁଷାର୍ଥରେ ସର୍ବଦା କାଳଭୟ ବିଦ୍ୟମାନ । ୩୫ ।

ବ୍ରହ୍ମାଦିଙ୍କଠାରୁ ଯେଉଁ ଶ୍ରେଷ୍ଠ ଓ ଅପକୃଷ୍ଟ ପଦାର୍ଥମାନ ଉତ୍ପନ୍ନ, ସେହି ସମସ୍ତ ଗୁଣ କ୍ଷୋଭର ପରେ ଉତ୍ପନ୍ନ ହୋଇ ଅଛନ୍ତି । ସୁତରାଂ ଏହି ପଶ୍ଚାତ୍ ଜାତ ପଦାର୍ଥ, ଧର୍ମାଦି ପୁରୁଷାର୍ଥ କାଳ ଶକ୍ତି ପ୍ରଭାବରେ ଧ୍ୱଂସ ହୁଏ, ଅତଏବ ତହିଁରୁ ମଙ୍ଗଳର ସମ୍ଭାବନା ନାହିଁ । ୩୬ ।

ଅର୍ଥ କାମାଦି ଧ୍ୟାନ ରାଏ
ଏ ସର୍ବ ବିନାଶ ଉପାଏ
ଯେ ଜ୍ଞାନ ବିଜ୍ଞାନରୁ ହୀନ
ତା ଜୀବ ସ୍ଥାବର ସମାନ
ଯା ଚିତ୍ତେ ବ୍ରହ୍ମେ ରତ ନୋହେ
ସର୍ବ ଅନର୍ଥେ ଭାଗୀ ହୋଏ ।୩୩।
ଅପରେ ଶୁଣ ହେ ରାଜନ
ସଙ୍ଗଟି ଅନର୍ଥକାରଣ
ସଂସାର ତ୍ୟାଗ ଯେ ଇଚ୍ଛିବ
କେବେହେଁ ସଙ୍ଗ ନ କରିବ
ଧର୍ମାର୍ଥ କାମ ମୋକ୍ଷ ଭଙ୍ଗ
କରଇ ସେ ପାପିଷ୍ଠ ସଙ୍ଗ
କୁସଙ୍ଗେ ସର୍ବ ନାଶ ହୋଏ
ପଡ଼ଇ ମିଥ୍ୟା ମାୟା ମୋହେ ।୩୪।
ଏବେ ତୁ ଶୁଣ ନୃପରାଣ
ଯେ ଚତୁର୍ବର୍ଗର କାରଣ
ଯେ ଧର୍ମ ଅର୍ଥ କାମ ମୋକ୍ଷ
ଏ ଚାରି ମଧ୍ୟେ ଶ୍ରେୟ ମୋକ୍ଷ
ଧର୍ମାର୍ଥ କାମ ବୋଲି ଯାହା
ଅନିତ୍ୟ ମିଥ୍ୟା ବୋଲି ତାହା
ଅନିତ୍ୟେ ମୃତ୍ୟୁ ଭୟ ପାଇ
ଏଣୁ ଜ୍ଞାନୀ ତା ନ ଭାବଇ
ଚତୁର୍ଥ ବର୍ଗ ବୋଲି ରାଏ
ଦୁର୍ଲ୍ଲଭ ସେ ଅର୍ଥ ଉପାଏ
ମୃତ୍ୟୁର ଭୟ ଯହିଁ ନାହିଁ
ନିତ୍ୟ ଆନନ୍ଦ ରୂପ ସେହି
ଚତୁର୍ଥ ବର୍ଗ ବହୁ ମୂଲ୍ୟ
ତ୍ରିତୟ ବର୍ଗ ନୋହେ ତୁଲ୍ୟ
ଯାହାର କାଳ ଭୟ ଅଛି
ତାହାର ସୁଖ ନାହିଁ କିଛି । ୩୫ ।
ଗୁଣ-କ୍ଷୋଭର ପରେ ପ୍ରାଏ
ଯେ ଯେ ହୋଇଲେ ଭବ ରାଏ
ସ୍ଥାବରୁ ବ୍ରହ୍ମାଦି ପର୍ଯ୍ୟନ୍ତେ
ଈଶ୍ୱର ମାୟାରେ ଯନ୍ତ୍ରିତେ
ଏହାଙ୍କ ଶ୍ରେୟ କେବେ ନୋହେ
ଏଣୁ ଦଣ୍ଡଇ ଜନ୍ତୁ ରାଏ
ଆପଣେ ଅର୍ଜ୍ଜଇ ଅନର୍ଥ
ରାଜନ ବୁଝ ଏହୁ ମତ । ୩୬ ।

ତତ୍ ତ୍ୱଂ ନରେନ୍ଦ୍ର ଜଗତାମଥ ତସ୍ଥୁଷାଞ୍ଚ ଦେହେନ୍ଦ୍ରିୟାସୁଧିଷଣାତ୍ମଭିରାବୃତାନାମ୍ ।
ଯଃ କ୍ଷେତ୍ରବିତ୍ତପତୟା ହୃଦି ବିଶ୍ୱଗାବିଃ ପ୍ରତ୍ୟକ୍ ଚକାସ୍ତି ଭଗବାଂସ୍ତମବେହି ସୋଽସ୍ମି ।୩୭।
ଯସ୍ମିନ୍ନିଦଂ ସଦସଦାତ୍ମତୟା ବିଭାତି ମାୟାବିବେକବିଧୁତି ସ୍ରଜି ବାଽହିବୁଦ୍ଧିଃ ।
ତଂ ନିତ୍ୟମୁକ୍ତପରିଶୁଦ୍ଧବିଶୁଦ୍ଧତତ୍ତ୍ୱଂ ପ୍ରତ୍ୟୂଢ଼କର୍ମକଲିଲପ୍ରକୃତିଂ ପ୍ରପଦ୍ୟେ । ୩୮ ।
ଯତ୍‌ପାଦପଙ୍କଜପଲାଶବିଳାସଭକ୍ତ୍ୟା କର୍ମାଶୟଂ ଗ୍ରଥିତମୁଦ୍‌ଗ୍ରଥୟନ୍ତି ସନ୍ତଃ ।
ତଦ୍‌ବନ୍ନ ରିକ୍ତମତୟୋ ଯତୟୋଽପି ରୁଦ୍ଧସ୍ରୋତୋଗଣାସ୍ତମରଣଂ ଭଜ ବାସୁଦେବମ୍ ।୩୯

---

ହେ ନରେନ୍ଦ୍ର ! ଦେହ, ଇନ୍ଦ୍ରିୟ, ପ୍ରାଣ, ବୁଦ୍ଧି, ଅହଂକାର, ଏ ସମସ୍ତଙ୍କ ସହିତ ସମ୍ବନ୍ଧ, ସ୍ଥାବର ଜଙ୍ଗମ ସମୂହଙ୍କର ହୃଦୟରେ ଯେଉଁ ଭଗବାନ୍ ସର୍ବତ୍ର ପ୍ରକଟଭାବରେ ଜୀବର ନିୟାମକରୂପେ ଅନ୍ତରର ଅଭିମୁଖରେ ପ୍ରକାଶ ପାଇଥାନ୍ତି, ସେହି ଭଗବାନଙ୍କୁ ଆପଣ "ସେ ହିଁ ମୁଁ" ବୋଲି ଜାଣିବାକୁ ଚେଷ୍ଟା କରନ୍ତୁ । ୩୭ ।

ମାଳାକୁ ସର୍ପଜ୍ଞାନ କଲାପରି ଜ୍ଞାନଦ୍ୱାରା ଯାହା ନିରାକୃତ ହୁଏ, ସେହିପରି ଏହି ମାୟାମୟ ବିଶ୍ୱ ଯେ ଭଗବାନଙ୍କୁ ଆଶ୍ରୟ କରି କାର୍ଯ୍ୟ କାରଣାଦି ନାନାଭାବରେ ପ୍ରତୀୟମାନ ହେଉଅଛି, କର୍ମ ମଳିନତା ପ୍ରଭୃତିକୁ ଯେ ଅଭିଭୂତ କରି ଅଛନ୍ତି, ସେହି ନିତ୍ୟଯୁକ୍ତ ନିର୍ମଳ ସତ୍ୟସ୍ୱରୂପ ଶ୍ରୀଭଗବାନଙ୍କ ନିକଟରେ ମୁଁ ନିତ୍ୟ ଶରଣାପନ୍ନ । ୩୮ ।

ଭକ୍ତମାନେ ଯାହାଙ୍କର ପାଦପଦ୍ମର ଅଙ୍ଗୁଳି ସମୂହର କାନ୍ତି, ସ୍ମରଣ କଲାମାତ୍ରେ କର୍ମଦ୍ୱାରା ଗ୍ରଥିତ ଅହଂକାରରୂପ ହୃଦୟ ଗ୍ରନ୍ଥିକୁ ଅନାୟାସରେ ଯେପରି ଛେଦନ କରି ପାରନ୍ତି, ବିଷୟ ନିବୃତ୍ତ ସଂଯତେନ୍ଦ୍ରିୟ ଯତିଗଣ ସେପରି ପାରନ୍ତିନାହିଁ । ଅତଏବ ଆପଣ ସେହିଶରଣବତ୍ସଳ ଭଗବାନ୍ ବାସୁଦେବଙ୍କୁ ଭଜନା କରନ୍ତୁ । ୩୯ ।

---

ସ୍ଥାବର ଜଙ୍ଗମାଦିଠାରେ
ଦେହ ଇନ୍ଦ୍ରିୟ ଅହଂକାରେ
ପ୍ରାଣ ବୁଦ୍ଧିରେ ଛନ୍ତି ବୃତ
ଏହାଙ୍କ ହୃଦରେ ବ୍ୟକତ
ଯେ ଅଧ ଊର୍ଦ୍ଧ୍ୱେ ଛନ୍ତି ପୂରି
ସର୍ବବ୍ୟାପକ ନରହରି
ଦେହକୁ କ୍ଷେତ୍ର ବୋଲି କହି
ଜୀବ ନ ଜାଣେ ଏହା ବହି
ଏ ଦେହେ ବନ୍ଧ ଅହଂକାରେ
ନିଜ ପରମ ବୁଦ୍ଧି ହରେ
ଜୀବର ପ୍ରଭୁ ଭଗବାନ
ପ୍ରକାଶ କରନ୍ତି ଚେତନ
ହେ ରାଜା ନିଶ୍ଚେ ଜାଣ ତୁହି
ସେ ଆତ୍ମାରୂପ ତୁହି ମୁହିଁ
ଇତ୍ୟାଦି ଚରାଚର ଯେତେ
ଆତ୍ମାସ୍ୱରୂପ ସର୍ବଭୂତେ । ୩୭ ।
ଯେ ଆତ୍ମାଆଶ୍ରୟେ ଜଗତ
ଶୋଭା ପାଉଛି ସଦସତ
ମାୟାରେ ହୋଇଣ ପ୍ରଭେଦ
ଜ୍ଞାନ ବିବେକ ତାହା ଛେଦ
ଆତ୍ମାକୁ ମାୟା ନ ସ୍ପରଶେ
ଯେସନେ ପବନ ଆକାଶେ
କର୍ମ୍ମର ମୂଳ ଏ ପ୍ରକୃତି
ଏହାକୁ ସେ ନାଶ କରନ୍ତି
ସେ ଆତ୍ମା ସର୍ବଠାରେ ଯୁକ୍ତ
ଲିପ୍ତ ନୋହିଣ ଥାଇ ମୁକ୍ତ
ସେ ଶୁଦ୍ଧ ପରମ ପୁରୁଷ
ତାଙ୍କୁ ଶରଣ ବେଗେ ପଶ ।୩୮।
ଯାହାର ପାଦପଦ୍ମେ ଭକ୍ତି
କରି ସାଧବେ ନିସ୍ତରନ୍ତି
ସୁଗମ ପଥ ଏ କାରଣ
ଅବିଘ୍ନେ ଲଭି ନାରାୟଣ
କଠୋର ଯୋଗାଦି ସାଧନ
ସୁଗମ ଭକ୍ତି ହେ ରାଜନ
ସେ ଆତ୍ମା ଆନନ୍ଦ ପାଇବ
ଭକ୍ତିରେ ଭଜ ବାସୁଦେବ ।୩୯।

କୃଚ୍ଛ୍ରୋ ମହାନିହ ଭବାର୍ଣ୍ଣବମପ୍ଲବେଶାଂ ଷଡ୍‌ବର୍ଗନକ୍ରମସୁଖେନ ତିତୀରଷନ୍ତି ।
ତତ୍ତ୍ୱଂ ହରେର୍ଭଗବତୋ ଭଜନୀୟମଙ୍ଘ୍ରିଂ କୃତ୍ୱୋଡୁପଂ ବ୍ୟସନମୁତ୍ତର ଦୁସ୍ତରାର୍ଣ୍ଣମ୍ ।୪୦।

ଶ୍ରୀମୈତ୍ରେୟ ଉବାଚ ।

ସ ଏବଂ ବ୍ରହ୍ମପୁତ୍ରେଣ କୁମାରେଣାତ୍ମମେଧସା ।
ଦର୍ଶିତାତ୍ମଗତିଃ ସମ୍ୟକ୍ ପ୍ରଶସ୍ୟୋବାଚ ତଂ ନୃପଃ । ୪୧ ।

ଶ୍ରୀରାଜୋବାଚ ।

କୃତୋ ମେଽନୁଗ୍ରହଃ ପୂର୍ବଂ ହରିଣାର୍ତ୍ତାନୁକମ୍ପିନା ।
ତମାପାଦୟିତୁଂ ବ୍ରହ୍ମନ୍ ଭଗବନ୍ ଯୂୟମାଗତାଃ । ୪୨ ।

---

ସଂସାର ତାରଣକାରୀ ଶ୍ରୀ ଭଗବାନଙ୍କୁ ଯେଉଁମାନେ ଆଶ୍ରୟ କରନ୍ତି ନାହିଁ, ଏପରି ଯତିମାନଙ୍କ ପକ୍ଷରେ ଏହା ପାରହେବା ଅତିକଠିନ, କାରଣ ସେମାନେ ଅତ୍ୟନ୍ତ ଦୁଃସାଧ୍ୟ ଯୋଗାଦିଦ୍ୱାରା ଷଡ଼୍‌ରିପୁ ପରିବ୍ୟାପ୍ତ ସଂସାର ସମୁଦ୍ର ପାରିହେବାକୁ ଅଭିଳାଷୀ, ସୁତରାଂ ଆପଣ ଭଗବାନ୍ ଶ୍ରୀହରିଙ୍କର ସର୍ବାରାଧ୍ୟ ପାଦପଦ୍ମକୁ ଭେଳାରୂପେ ଅବଲମ୍ବନକରି ଦୁସ୍ତର ସଂସାର ସାଗର ପାରିହେଉନ୍ତୁ । ୪୦ ।

ଶ୍ରୀମୈତ୍ରେୟ କହିଲେ :—

ବ୍ରହ୍ମାତନୟ ସନତ୍‌କୁମାର ଏହିପରି ଆତ୍ମଜ୍ଞାନତତ୍ତ୍ୱ ସମ୍ୟକ୍‌ରୂପେ ବୁଝାଇବାରୁ ମହାରାଜ ପୃଥୁ ତାହାଙ୍କୁ ଧନ୍ୟବାଦ ଦେଇ କହିଲେ । ୪୧ ।

ଶ୍ରୀରାଜା କହିଲେ :—

କାତର ବ୍ୟକ୍ତିପ୍ରତି କୃପାଳୁ ଭଗବାନ୍ ଶ୍ରୀହରି ପୂର୍ବେ ମୋ ପ୍ରତି ଯେଉଁ ଅନୁଗ୍ରହ କରିଅଛନ୍ତି, ତାହା ପୂର୍ଣ୍ଣକରିବା ନିମନ୍ତେ ଆପଣମାନେ ଆଗମନ କରିଅଛନ୍ତି । ୪୨ ।

---

ଏ ଭବ ସମୁଦ୍ର ଅପାର
ଇନ୍ଦ୍ରିୟବର୍ଗ ଗ୍ରାହ ଘୋର
ଏ ଘୋର ତରଣେ ଯେ ଭେଳା
ନ କରି କେମନ୍ତେ ତରିଲା
ଅଷ୍ଟାଙ୍ଗ ଯୋଗେ ଯୋଗ ସାଧି
ତରନ୍ତି ଯୋଗ-ଭେଳା ବାନ୍ଧି
ସେ ଅତି କ୍ଳେଶେ ହୋନ୍ତି ପାର
ନୋହିଲେ ଭ୍ରମନ୍ତି ଅପାର
ଦୁର୍ଗମ ତରଣ ଉପାୟେ
ତୁମ୍ଭଙ୍କୁ କହିଦେଲୁ ରାୟେ
ଗୋବିନ୍ଦ-ଅଭୟପୟର
ଯେ ଭଜେ ଭେଳା ମଧ୍ୟେ ସାର

ସେ ପାଦେ କଲେ ଏକ ଧ୍ରୁବ
ସୁଖେ ତରିବ ଭବାର୍ଣ୍ଣବ
ଏ ଭକ୍ତିଯୋଗ ସୁସାଧନ
ମୋକ୍ଷକୁ ପରମକାରଣ । ୪୦ ।

ଶ୍ରୀ ମୈତ୍ରେୟ ଉବାଚ—

ଏମନ୍ତେ ଶୁଣ ହେ ବିଦୁର
ଯେ ଜ୍ଞାନ କହିଲେ କୁମାର
ପୃଥୁ ଶ୍ରବଣେ ଆତ୍ମାଗତି
ପ୍ରଣମି ଚରଣେ ବୋଲନ୍ତି ।୪୧।

ଶ୍ରୀରାଜୋବାଚ—

ତୁମ୍ଭେ ଦୟାଳୁ ଯୋଗିଜନ
ସୁଭାଗ୍ୟ ତୁମ୍ଭ ଦରଶନ
ଯେଣୁ ଗୋବିନ୍ଦକୃପା ଥିଲା
ତେଣୁ ଦର୍ଶନ ମୋର ହେଲା
ହରିଙ୍କ ଆଜ୍ଞା ରକ୍ଷା ପାଇଁ
ମୋ ହିତେ ଅଇଲ ଗୋସାଇଁ
ମୋର ସଂଶୟ ଯେତେ ଥିଲା
ତୁମ୍ଭ ଦର୍ଶନେ ଦୂରଗଲା
ମୋହର ମନୋରଥ ଯେତେ
ସମ୍ପୂର୍ଣ୍ଣ କରିଦେଲ ମୋତେ ।୪୨।

ନିଷ୍ପାଦିତଶ୍ଚ କାର୍‌ତ୍ସ୍ନ୍ୟେନ ଭଗବଦ୍‌ଭିର୍ଘୃଣାଳୁଭିଃ ।
ସାଧୂଚ୍ଛିଷ୍ଟଂ ହି ମେ ସର୍ବମାତ୍ମନା ସହ କିଂ ଦଦେ । ୪୩ ।
ପ୍ରାଣା ଦାରାଃ ସୁତା ବ୍ରହ୍ମନ୍ ଗୃହାଶ୍ଚ ସପରିଚ୍ଛଦାଃ ।
ରାଜ୍ୟଂ ବଳଂ ମହୀ କୋଶ ଇତି ସର୍ବଂ ନିବେଦିତମ୍ । ୪୪ ।
ସୈନାପତ୍ୟଞ୍ଚ ରାଜ୍ୟଞ୍ଚ ଦଣ୍ଡନେତୃତ୍ୱମେବ ଚ ।
ସର୍ବଲୋକାଧିପତ୍ୟଞ୍ଚ ବେଦଶାସ୍ତ୍ରବିଦର୍ହତି । ୪୫ ।
ସ୍ୱମେବ ବ୍ରାହ୍ମଣୋ ଭୁଂକ୍ତେ ସ୍ୱଂ ବସ୍ତେ ସ୍ୱଂ ଦଦାତି ଚ ।
ତସ୍ୟୈବାନୁଗ୍ରହେଣାନ୍ନଂ ଭୁଞ୍ଜତେ କ୍ଷତ୍ରିୟାଦୟଃ । ୪୬ ।

---

ଆପଣମାନେ ଦୟାଳୁ, ଯେଉଁ ଉଦ୍ଦେଶ୍ୟରେ ଆପଣମାନେ ଆଗମନ କରିଥିଲେ ତାହା ସଂପୂର୍ଣ୍ଣରୂପେ ସମ୍ପାଦନ କରିଅଛନ୍ତି, କିନ୍ତୁ ମୋର ଦେହ ଓ ରାଜ୍ୟାଦି ସମସ୍ତ ପଦାର୍ଥ ଭୃଗୁ ପ୍ରଭୃତି ସାଧୁଗଣ ( ଯଜ୍ଞର ଦକ୍ଷିଣା ସ୍ୱରୂପ ) ଗ୍ରହଣ କରି ପୁଣି ବରରୂପେ ମୋତେ ଅର୍ପଣ କରିଅଛନ୍ତି, ସୁତରାଂ ଆପଣମାନଙ୍କୁ କଅଣ ପ୍ରଦାନ କରିବି ? । ୪୩ ।

ହେ ମୁନିବର ! ମୋର ପ୍ରାଣ, ଭାର୍ଯ୍ୟା, ପୁତ୍ର, ସମସ୍ତପରିଚ୍ଛଦାଦି, ଗୃହ, ରାଜ୍ୟ, ପୃଥିବୀ, ସୈନ୍ୟ ଧନଭଣ୍ଡାର ସମସ୍ତ ମୁଁ ସେମାନଙ୍କୁ ଅର୍ପଣ କରିଅଛି । ୪୪ ।

ସେନାପତିତ୍ୱ, ରାଜ୍ୟ, ଦଣ୍ଡବିଧାନର କ୍ଷମତା, ଏବଂ ସମସ୍ତଙ୍କ ଉପରେ ଆଧିପତ୍ୟ, ଏ ସମସ୍ତ ବିଷୟରେ ବେଦ୍‌ବିତ୍ ବ୍ରାହ୍ମଣହିଁ ଯଥାର୍ଥରେ ଅଧିକାରୀ । ୪୫ ।

ବ୍ରାହ୍ମଣମାନେ ସ୍ୱୀୟ ସତ୍ତ୍ୱବିଶିଷ୍ଟ ବସ୍ତୁରୁ ଭୋଜନ, ପରିଧାନ ଓ ଦାନ କରନ୍ତି, କ୍ଷତ୍ରିୟମାନେ ବ୍ରାହ୍ମଣର ଅନୁଗ୍ରହରୁ ଅନ୍ନଭୋଜନାଦି କରିଥାନ୍ତି ମାତ୍ର । ୪୬ ।

---

ତୁମ୍ଭଙ୍କୁ କି ରୂପେ ସେବିବି
ଉତ୍ତମ ଦ୍ରବ୍ୟ କିବା ଦେବି
ଦେହ ସହିତେ ଦ୍ରବ୍ୟ ମୋର
ସାଧୁଙ୍କ ଉଚ୍ଛିଷ୍ଟ ବେଭାର
ସୁଦୟା କରି ସାଧୁଜନେ
ରାଜବଳ୍ଲଭ ତୋଷମନେ
ସମର୍ପିଛନ୍ତି ମୋର ତହିଁ
ଏଥେଁ ପ୍ରଭୁତ୍ୱ ମୋର ନାହିଁ
କିରୂପେ କରିବି ସେବନ
ଏ ଦେହ ସାଧୁଙ୍କ ଅଧୀନ
ଯେହ୍ନେ ବାଳକେ ସ୍ନେହ ବହି
ତାତ ଜନନୀ ଧନ ଦେଇ
ପୁଣ ତା ନ କରେ ଗ୍ରହଣ
ଏ ସର୍ବ ତୁମ୍ଭରେ ଅର୍ପଣ
ତୁମ୍ଭ ପ୍ରତୋଷେ ଶକ୍ୟ ନାହିଁ
ରାଜସେବକ ପ୍ରାୟେ ହୋଇ
ତାଙ୍କ ତାମ୍ବୂଳ ନିଯୋଜନ୍ତି
ମଧ୍ୟରେ ସେବକ ବୋଲନ୍ତି
ସେ ଅନୁମାନେ ମୋ ବିଗ୍ରହ
ଯେ କିଛି ଦ୍ରବ୍ୟ ଅଛି ମୋର
ପ୍ରାଣ ତନୟ ଆଦି ଯେତେ
ଏ ରାଜବଳ୍ଲଭ ସହିତେ
ଅପରେ ଚତୁରଙ୍ଗ ବଳ
ସମର୍ପି ଅଛି ମୁଁ ସକଳ ।୪୩,୪୪।
ଏଥେ ମୋ ନାହିଁ ଅଧିକାର
ବେଦବିଦିତେ ବ୍ରାହ୍ମଣର
ଯେ ସର୍ବ ସେନାଅଧିପତି
ଦଣ୍ଡ ଅଦଣ୍ଡ ରାଜନୀତି
ସକଳ ଲୋକେ ଅଧିକାର
ଏ ସର୍ବ ବେଦବିଦଙ୍କର । ୪୫ ।
ସେ ବିପ୍ର ନିଜ ଧନେ ଶାନ୍ତି
ଜୀବଙ୍କୁ କଲ୍ୟାଣେ ପାଳନ୍ତି
ବ୍ରାହ୍ମଣଅନୁଗ୍ରହେ ଅନ୍ନ
ଭୁଞ୍ଜନ୍ତି କ୍ଷତ୍ରିୟାଦି ବର୍ଣ୍ଣ । ୪୬ ।

ୟେ ଈଦୃଶୀ ଭଗବତୋ ଗତିରାତ୍ମବାଦ ଏକାନ୍ତତୋ ନିଗମିଭିଃ ପ୍ରତିପାଦିତା ନ ।
ତୁଷ୍ୟନ୍ତ୍ୟଦଭ୍ରକରୁଣାଃ ସ୍ୱକୃତେନ ନିତ୍ୟଂ କୋ ନାମ ତତ୍ପ୍ରତିକରୋତି ବିନୋଦପାତ୍ରମ୍ ॥

ଶ୍ରୀମୈତ୍ରେୟ ଉବାଚ ।

ତ ଆତ୍ମଯୋଗପତୟ ଆଦିରାଜେନ ପୂଜିତାଃ ।
ଶୀଲଂ ତଦୀୟଂ ଶଂସନ୍ତଃ ଖେଽଭୂବନ୍ ମିଷତାଂ ନୃଣାମ୍ ।୪୮ ।
ବୈଣ୍ୟସ୍ତୁ ଧୂର୍ଯ୍ୟୋ ମହତାଂ ସଂସ୍ଥିତ୍ୟାଧ୍ୟାତ୍ମଶିକ୍ଷୟା ।
ଆପ୍ତକାମମିବାତ୍ମାନଂ ମେନ ଆତ୍ମନ୍ୟବସ୍ଥିତଃ । ୪୯ ।

---

ଆପଣମାନେ ବେଦଶାସ୍ତ୍ରରେ ପାରଦର୍ଶୀ, ଅଧ୍ୟାତ୍ମତତ୍ତ୍ୱ ବିଗ୍ରହ କରି ଭଗବାନଙ୍କ ପ୍ରତି ଭକ୍ତି ଯେ ପରମଗତି ଏହା ନିଶ୍ଚିତରୂପେ ବୁଝାଇ ଅଛନ୍ତି, ଏପରି ପରମଦୟାଳୁ ଆପଣମାନେ ଦୀନଜନ ଉଦ୍ଧାରଣ ସ୍ୱରୂପ ନିଜର କାର୍ଯ୍ୟଦ୍ୱାରା ସର୍ବଦା ସନ୍ତୁଷ୍ଟ ଥାନ୍ତି, ଏକମାତ୍ର କୃତାଞ୍ଜଳି ହେବା ଭିନ୍ନ ଆପଣମାନଙ୍କ କୃତ ଉପକାରର ପ୍ରତ୍ୟୁପକାର କରିବା କାହାର ସାଧ୍ୟ । ୪୭ ।

ଆତ୍ମଜ୍ଞାନ ସିଦ୍ଧ ସେହି ସନତ୍କୁମାରାଦି ମୁନିଚତୁଷ୍ଟୟ ଆଦିରାଜ ପୃଥୁଙ୍କ କର୍ତ୍ତୃକ ସମ୍ୟକ୍ ପୂଜିତ ହୋଇ ତାହାଙ୍କର ସାଧୁଚରିତ୍ରର ପର୍ଯ୍ୟାଲୋଚନା କରୁ କରୁ ସର୍ବଜନ ସମକ୍ଷରେ ଆକାଶମାର୍ଗରେ ପ୍ରସ୍ଥାନ କରିଥିଲେ । ୪୮ ।

ସାଧୁମାନଙ୍କର ଅଗ୍ରଗଣ୍ୟ ପୃଥୁ ଆତ୍ମତତ୍ତ୍ୱଶିକ୍ଷା ହେତୁ ଏକାଗ୍ରତା ସହକାରେ ଆତ୍ମଧ୍ୟାନରେ ରତ ହୋଇ ନିଜକୁ ପୂର୍ଣ୍ଣମନୋରଥ ବୋଲି ଜ୍ଞାନ କରିଥିଲେ । ୪୯ ।

---

ବ୍ରହ୍ମା ସର୍ଜ୍ଜନେ ଏ ଜଗତେ
ଅଛି ଅପୂର୍ବ ଦ୍ରବ୍ୟ ଯେତେ
ଏ ସର୍ବ ଯେବେ ସମର୍ପିବ
ତେବେ ପ୍ରତୋଷି ନ ପାରିବ
ନିଗମବେତ୍ତା ପ୍ରଭୁମାନେ
ମୋତେ ତୋଷିଲ ଦିବ୍ୟଜ୍ଞାନେ
ଏଡ଼ାଇଲ ଦେଇ ଆତ୍ମପଦ
ମୋହର ନାଶିଲ ପ୍ରମାଦ
ତୁମ୍ଭେ ଦୟାଳୁ ଯୋଗେଶ୍ୱର
ଅଧମ ଜନେ ଦୟାକର
ଅବ୍ୟକ୍ତ ବ୍ରହ୍ମ ଦୃଷ୍ଟିଗତେ
ପ୍ରତ୍ୟକ୍ଷ ଦେଖାଇଲ ମୋତେ
ଅଜ୍ଞାନ ଭୟ ବିନାଶିଲ
ସଂସାରବନ୍ଧୁ ନିସ୍ତାରିଲ
ଏମନ୍ତ ମହିମା ତୁମ୍ଭର
ଅଶେଷ ଜୀବେ ହିତକର
ମୋକ୍ଷର ସାଧନ କାରଣ
ଏଣୁ ଗୁରୁଙ୍କର ଯେ ଋଣ
ଉପାୟ ନାହିଁ ମୋର କିଛି
କେବଳ ଅଞ୍ଜଳି ମୋ ଅଛି ।୪୭।

ଶ୍ରୀମୈତ୍ରେୟ ଉବାଚ—

ଏମନ୍ତେ ସନକାଦି ଜନେ,
ସନ୍ତୋଷ ଯେ ପୃଥୁବଚନେ
ନୃପଶୀଳତା ପ୍ରଶଂସିଲେ
ତକ୍ଷଣେ ଅନ୍ତର୍ଦ୍ଧାନେ ଗଲେ
ସକଳ ଜନ ଦୃଷ୍ଟିଧ୍ୟାନେ
ସିଦ୍ଧେ ଗମିଲେ ନିଜସ୍ଥାନେ ।୪୮।
ତଦନ୍ତେ ସେ ପୃଥୁରାଜନ
ମହତ ଗୁଣେ ସେ ପ୍ରଧାନ
ଅଧ୍ୟାତ୍ମ ଶିକ୍ଷାକୁ ଧଇଲେ
ସେ ଆତ୍ମଜ୍ଞାନେ ପୂର୍ଣ୍ଣ ହେଲେ
ଆତ୍ମାରେ କରି ଅବସ୍ଥିତ
କାଳଭେ କର୍ମାଦି କରନ୍ତି

କର୍ମାଣି ଚ ଯଥାକାଲଂ ଯଥାଦେଶଂ ଯଥାବଲମ୍ ।
ଯଥୋଚିତଂ ଯଥାବିତ୍ତମକରୋଦ୍ ବ୍ରହ୍ମସାତ୍କୃତମ୍ । ୫୦ ।
ଫଲଂ ବ୍ରହ୍ମଣି ସଂନ୍ୟସ୍ୟ ନିର୍ବିଷଙ୍ଗଃ ସମାହିତଃ ।
କର୍ମାଧ୍ୟକ୍ଷଞ୍ଚ ମନ୍ୱାନ ଆତ୍ମାନଂ ପ୍ରକୃତେଃ ପରମ୍ । ୫୧ ।
ଗୃହେଷୁ ବର୍ତ୍ତମାନୋଽପି ସ ସାମ୍ରାଜ୍ୟଶ୍ରିୟାନ୍ୱିତଃ ।
ନାସଜ୍ଜତେନ୍ଦ୍ରିୟାର୍ଥେଷୁ ନିରହଂମତିରର୍କବତ୍ । ୫୨ ।
ଏବମଧ୍ୟାତ୍ମଯୋଗେନ କର୍ମାଣ୍ୟନୁସମାଚରନ୍ ।
ପୁତ୍ରାନୁତ୍ପାଦୟାମାସ ପଞ୍ଚାର୍ଚ୍ଚିଷ୍ୟାତ୍ମସମ୍ମତାନ୍-
ବିଜିତାଶ୍ୱଂ ଧୂମ୍ରକେଶଂ ହର୍ଯ୍ୟକ୍ଷଂ ଦ୍ରବିଣଂ ବୃକମ୍ । ୫୩ ।

---

କାଳ, ଦେଶ, ଶକ୍ତି ଓ ଅର୍ଥ ଅନୁସାରେ ତାହାଙ୍କ ପକ୍ଷରେ ଯେପରି କାର୍ଯ୍ୟ କରିବା ଉଚିତ, ତାହା ପରମବ୍ରହ୍ମରେ ଅର୍ପଣ କରି ସମସ୍ତ ଅନୁଷ୍ଠାନ କରିବାକୁ ଲାଗିଲେ । ୫୦ ।

ମହାରାଜ ପୃଥୁ ଭଗବାନଙ୍କଠାରେ କର୍ମଫଳ ଅର୍ପଣ କରି କର୍ମାସକ୍ତି ପରିତ୍ୟାଗ ପୂର୍ବକ ସମାହିତ ଚିତ୍ତରେ ପ୍ରକୃତି ପରଗାମୀ ପରମାତ୍ମାଙ୍କୁ କର୍ମାଧ୍ୟକ୍ଷ ଜ୍ଞାନକରି କର୍ତ୍ତୃତ୍ୱାଦି ଅଭିମାନ ତ୍ୟାଗ କରିଥିଲେ ।୫୧।

ସେ ସାମ୍ରାଜ୍ୟ ଲକ୍ଷ୍ମୀଙ୍କ ସହିତ ଗୃହରେ ବାସ କରୁଥିଲେ ମଧ୍ୟ ଏବଂ ସୂର୍ଯ୍ୟଙ୍କ ତୁଲ୍ୟ ସର୍ବତ୍ର ପର୍ଯ୍ୟଟନ କରୁଥିଲେ ମଧ୍ୟ କଦାପି ବିଷୟାସକ୍ତ ହେଉ ନ ଥିଲେ । ୫୨ ।

ଏହିପରି ଅଧ୍ୟାତ୍ମ ଯୋଗଯୁକ୍ତ ହୋଇ କର୍ମାନୁଷ୍ଠାନ କରୁ କରୁ କୌଣସିକ୍ରମେ ପୃଥୁ ଅର୍ଚ୍ଚିନାମ୍ନୀ ସ୍ତ୍ରୀ ଗର୍ଭରେ ଆତ୍ମତୁଲ୍ୟ ପଞ୍ଚପୁତ୍ର ଉତ୍ପାଦନ କରିଥିଲେ । ସେମାନଙ୍କର ନାମ ବିଜିତାଶ୍ୱ, ଧୂମ୍ରକେଶ, ହର୍ଯ୍ୟକ୍ଷ,

---

ଯେ ଦେଶ କାଳ ଯଥୋଚିତ
ଯେମନ୍ତ ଅଛଇ ବିହିତ
ସେ ଅନୁସାରେ କର୍ମ କଲେ
ବିପ୍ରଙ୍କୁଦାନେପ୍ରତୋଷିଲେ ୪୯,୫୦
ନିଜ ପରିଜାଗଣ ଘେନି
ଅତି ଆନନ୍ଦେ ଦୟା ବହି
ହେ ପୁତ୍ରେ ସାବଧାନେ ଶୁଣ
ଯେବେ ହୋଇବା ପରିତ୍ରାଣ
କହିବା ତହିଁର ଉପାୟ
ଯେଣେ ଖଣ୍ଡିବ ମୃତ୍ୟୁ ଭୟ
ସକଳେ କୃଷ୍ଣ ଆଶ୍ରେ କର
ଏ ଘୋର ସଂସାରୁ ନିସ୍ତର
ଯେ କୃଷ୍ଣଚରଣେ ସେବନ୍ତି
ଏ ଭବଭୟ ନିବାରନ୍ତି

ଆମ୍ଭର ବାକ୍ୟ ଦୃଢେ ଧର
ରାଜସ୍ୱ ଭୟ ପରିହର
ରାଜସ୍ୱ ଧନ ଧର୍ମ ଯେତେ
ଆମ୍ଭେ ପ ଇଲୁ ତୋଷ ଚିତ୍ତେ
ଏମନ୍ତେ ମଧୁର ବଚନେ
ପ୍ରଜା ଶିକ୍ଷାଇ ପ୍ରବୋଧନେ
ଅର୍ପଣ କରି କାମ୍ୟଫଳ
ନିବୃତ୍ତ ହୋଇଲେ ଭୂପାଳ
ମୁଁ ଆତ୍ମା ପ୍ରକୃତିରୁ ପର
ଅଧ୍ୟକ୍ଷ କର୍ମମାନଙ୍କର
ଆତ୍ମାକୁ ଏମନ୍ତ ସେ ମଣି
ଗୃହେ ରହିଲେ ନୃପମଣି । ୫୧ ।
ସମ୍ପଦ ପରିପୂର୍ଣ୍ଣେ ଛନ୍ତି
ଇନ୍ଦ୍ରିୟ ଭୋଗ ନ ଇଛନ୍ତି

ତ୍ୟଜି ସକଳ ଅହଂକାର
ବିଷୟ ଆଦି ଯେ ବିକାର
କୌଣସି କର୍ମେ ଲିପ୍ତ ନୋହି
ସୂର୍ଯ୍ୟକିରଣ ପ୍ରାୟ ହୋଇ ।୫୨।
ଏରୂପେ ଅଧ୍ୟାତ୍ମ ଯୋଗରେ
କର୍ମ ଆଚରନ୍ତି ସଂସାରେ
ତାହାଙ୍କ ଅର୍ଚ୍ଚି ନାମେ ରାଣୀ
ପ୍ରତ୍ୟକ୍ଷେ ଲକ୍ଷ୍ମୀଠାକୁରାଣୀ
ପଞ୍ଚ ତନୟ ତାଙ୍କଠାରେ
ପୃଥୁ ଜନ୍ମାଇଲେ ବେଗରେ
ବିଜିତ ଅଶ୍ୱ, ଧୂମ୍ରକେଶ
ହର୍ଯ୍ୟକ୍ଷ ଦ୍ରବିଣ ବୃକେଶ
ଏ ପଞ୍ଚ ତନୟ ତାଙ୍କର
ନୃପସମାନେ ଶୁର ଧୀର । ୫୩ ।

ସର୍ବେଷାଂ ଲୋକପାଳାନାଂ ଦଧାରୈକଃ ପୃଥୁର୍ଗୁଣାନ୍ ।
ଗୋପୀଥାୟ ଜଗତ୍ସୃଷ୍ଟେଃ କାଲେ ସ୍ୱେ ସ୍ୱେଽଚ୍ୟୁତାତ୍ମକଃ । ୫୪ ।
ମନୋବାଗ୍ବୃତ୍ତିଭିଃ ସୌମ୍ୟୈର୍ଗୁଣୈଃ ସଂରଞ୍ଜୟନ୍ ପ୍ରଜାଃ ।
ରାଜେତ୍ୟଧାନ୍ନାମଧେୟଂ ସୋମରାଜ ଇବାପରଃ । ୫୫ ।
ସୂର୍ଯ୍ୟବଦ୍ଵିସୃଜନ୍ ଗୃହ୍ଣନ୍ ପ୍ରତପଂଶ୍ଚ ଭୁବୋ ବସୁ ।
ଦୁର୍ଦ୍ଧର୍ଷସ୍ତେଜସେବାଗ୍ନିର୍ମହେନ୍ଦ୍ର ଇବ ଦୁର୍ଜ୍ଜୟଃ । ୫୬ ।
ତିତିକ୍ଷୟା ଧରଣୀବ ଦ୍ୟୌରିବାଭୀଷ୍ଟଦୋ ନୃଣାମ୍ ।
ବର୍ଷତି ସ୍ମ ଯଥାକାମଂ ପର୍ଜ୍ଜନ୍ୟ ଇବ ତର୍ପୟନ୍ । ୫୭ ।
ସମୁଦ୍ର ଇବ ଦୁର୍ବୋଧଃ ସତ୍ତ୍ୱେନାଚଲରାଡ଼ିବ ।
ଧର୍ମ୍ମରାଡ଼ିବ ଶିକ୍ଷାୟାମାଶ୍ଚର୍ଯ୍ୟେ ହିମବାନିବ । ୫୮ ।

---

ଦ୍ରବଣ ଓ ବୃକ । ଅଚ୍ୟୁତାତ୍ମକ ମହାରାଜ ପୃଥୁ ଜଗତର ସୃଷ୍ଟି ରକ୍ଷା ନିମନ୍ତେ ଯଥାଯୋଗ୍ୟ ସମୟରେ ସମସ୍ତ ଲୋକପାଳଙ୍କର ଗୁଣ ଏକାହିଁ ଧାରଣ କରିଥିଲେ । ୫୩, ୫୪ ।

ସେ ହିତକାରୀ ସ୍ୱରୂପ ମନୋବୃତ୍ତି ଓ ପ୍ରିୟଭାଷଣାଦି ରୂପ ବାକ୍ୟବୃତ୍ତି ଓ ମନୋହରଗୁଣ ସମୂହ ଦ୍ୱାରା ପ୍ରଜାରଞ୍ଜନ କରି ଦ୍ୱିତୀୟ ସୋମରାଜ ଏହି ନାମ ଧାରଣ କରିଥିଲେ । ୫୫ ।

ସୂର୍ଯ୍ୟ ଯେପରି ଗ୍ରୀଷ୍ମକାଳରେ ରଶ୍ମି ଯୋଗେ ପୃଥିବୀର ରସ ଆକର୍ଷଣ କରନ୍ତି ଏବଂ ବର୍ଷାକାଳରେ ତାହା ପରିତ୍ୟାଗ କରନ୍ତି, ସେହିପରି ସେ ପ୍ରଜାମାନଙ୍କଠାରୁ କର ଗ୍ରହଣ କରନ୍ତି ଓ ଯଥାକାଳରେ ପ୍ରତ୍ୟର୍ପଣ କରନ୍ତି । ସେ ଅଗ୍ନି ତୁଲ୍ୟ ଦୁର୍ଦ୍ଧର୍ଷ ଏବଂ ଇନ୍ଦ୍ରତୁଲ୍ୟ ଦୁର୍ଜ୍ଜୟ ବଳଶାଳୀ ଥିଲେ । ୫୬ ।

ସେ ପୃଥିବୀ ତୁଲ୍ୟ ସହିଷ୍ଣୁ, ସ୍ୱର୍ଗତୁଲ୍ୟ ସର୍ବାଭୀଷ୍ଟ ପ୍ରଦ ଏବଂ ମେଘ ତୁଲ୍ୟ ଯଥା କାଳରେ ଜଳ ବର୍ଷଣ କରି ସମସ୍ତଙ୍କର ତୃପ୍ତି ସମ୍ପାଦନ କରିଥିଲେ, ଏବଂ ପ୍ରଜାମାନଙ୍କର କାମନା ଅନୁସାରେ ଅର୍ଥ ମୋଚନ କରି ତୃପ୍ତିବିଧାନ କରୁଥିଲେ । ୫୭ ।

ସେ ସମୁଦ୍ରତୁଲ୍ୟ ଗାମ୍ଭୀର୍ଯ୍ୟ ହେତୁ ଦୁର୍ବୋଧ୍ୟ, ସୁମେରୁ ତୁଲ୍ୟ ସ୍ଥିର ଅଟଳ, ନ୍ୟାୟ ବିଚାରରେ ଯମରାଜ ତୁଲ୍ୟ ଏବଂ ବିସ୍ମୟ ଜନକତାରେ ହିମାଳୟ ତୁଲ୍ୟ । ୫୮ ।

---

ଏବେ କହିବା ହେ ବିଦୁର
ରାଜାଙ୍କ ଯେ ଗୁଣ ପ୍ରସ୍ପର
ଇନ୍ଦ୍ରାଦି ଦଶଦିଗପାଳେ
ଏହାଙ୍କ ଗୁଣେ ସେ ତୁଳାଳେ
ସେ ନୃପଅଙ୍ଗେ ଏକେ ଏକ
ବସିଲେ ଅବସ୍ଥିବ ଯାକେ
ବସିଲେ ସଦ୍‌ବୃତ୍ତି ଆଚାର
ଶୁଣ ବିଦୁର ହେତୁ କରି ।୫୪।
ଜଗତ ପ୍ରତିପାଳବାରେ
ସେ ଜନ୍ମ ଲଭିଲେ ସଂସାରେ

ମନ ବଚନ କାୟ ବୃତ୍ତି
ଅତି ସୁନ୍ଦର ଗୁଣ କାନ୍ତି
ଏଣେ ରଞ୍ଜିତ ଜନ ପ୍ରଜା
ଏଣୁ ତାଙ୍କର ନାମ ରାଜା
ତା ତୁଲ୍ୟ ନାହିଁ ନୃପବର
ସମେ ସୋମ କି ଅନ୍ତାନ୍ତର ।୫୫।
ସେ ରାଜା ସୂର୍ଯ୍ୟଙ୍କ ସମାନ
ତା ତେଜେ ପୃଥ୍ୱୀ ଦୀପ୍ତିମାନ
କେହି ନପାରେ ତେଜ ଧରି
ତେଣୁ ସେ ଅଗ୍ନି ସମ ସରି

ରଣେ ଦୁର୍ଜ୍ଜୟ ମହାରାଜା
ଏଣୁ ମହେନ୍ଦ୍ର ସମତେଜା ।୫୬।
ସହିଷ୍ଣୁ ଗୁଣେ ସେ ପୃଥିବୀ
ଅଭୀଷ୍ଟ ଦାନେ ସ୍ୱର୍ଗ ଛବି
ଜୀମୂତ ପ୍ରାୟେ ବୃଷ୍ଟି କରେ
ପ୍ରଜା ପ୍ରାର୍ଥନା କାମ ପୂରେ ।୫୭।
ପୟୋଧି ତୁଲେ ସେ ଗମ୍ଭୀର
ସୁଧୀରେ କନକ ଭୂଧର
ଧର୍ମ୍ମ ସମାନେ ଶିକ୍ଷାକାରୀ
ଆଶ୍ଚର୍ଯ୍ୟେ ହିମାଳୟ ଗିରି ।୫୮।

କୁବେରଂ ଇବ କୋଶାଢ୍ୟୋ ଗୁପ୍ତାର୍ଥୋ ବରୁଣୋ ଯଥା ।
ମାତରିଶ୍ୱେବ ସର୍ବାତ୍ମା ବଲେନ ମହସୌଜସା । ୫୯ ।
ଅବିସହ୍ୟତୟା ଦେବୋ ଭଗବାନ୍ ଭୂତରାଡ଼ିବ ।
କନ୍ଦର୍ପ ଇବ ସୌନ୍ଦର୍ଯ୍ୟେ ମନସ୍ୱୀ ମୃଗରାଡ଼ିବ । ୬୦ ।
ବାତ୍ସଲ୍ୟେ ମନୁବନ୍ନୃଣାଂ ପ୍ରଭୁତ୍ୱେ ଭଗବାନଜଃ ।
ବୃହସ୍ପତିର୍ବ୍ରହ୍ମବାଦେ ଆତ୍ମବତ୍ତ୍ୱେ ସ୍ୱୟଂ ହରିଃ । ୬୧ ।
ଭକ୍ତ୍ୟା ଗୋଗୁରୁବିପ୍ରେଷୁ ବିଷ୍ୱକ୍ସେନାନୁବର୍ତ୍ତିଷୁ ।
ହ୍ରିୟା ପ୍ରଶ୍ରୟଶୀଲାଭ୍ୟାମାତ୍ମତୁଲ୍ୟଃ ପରୋଦ୍ୟମେ । ୬୨ ।
କୀର୍ତ୍ତ୍ୟୋର୍ଦ୍ଧ୍ୱଗୀତୟା ପୁଂଭିସ୍ତ୍ରୈଲୋକ୍ୟେ ତତ୍ର ତତ୍ର ହ ।
ପ୍ରବିଷ୍ଟଃ କର୍ଣ୍ଣରନ୍ଧ୍ରେଷୁ ସ୍ତ୍ରୀଣାଂ ରାମଃ ସତାମିବ । ୬୩ ।
ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ପୃଥୁଚରିତେ ପୃଥୁସ୍ତବୋ ନାମ ଦ୍ୱାବିଂଶୋଽଧ୍ୟାୟଃ । ୨୨ ।

---

ସେ କୁବେରତୁଲ୍ୟ ଧନବାନ୍, ଗୁପ୍ତ ଧନରକ୍ଷଣରେ ବରୁଣତୁଲ୍ୟ,ବାୟୁତୁଲ୍ୟ ସର୍ବଗାମୀ ଓ ପରାକ୍ରମଶାଳୀଥିଲେ ॥

ଅସହ୍ୟ ବିକ୍ରମରେ ଭଗବାନ୍ ରୁଦ୍ରଙ୍କ ତୁଲ୍ୟ, ସୌନ୍ଦର୍ଯ୍ୟରେ କାମଦେବତୁଲ୍ୟ ଏବଂ ନିର୍ଭୀକତାରେ ସିଂହ ତୁଲ୍ୟ ଥିଲେ । ୬୦ ।

ସେ ବାତ୍ସଲ୍ୟରେ ମନୁଷ୍ୟ ତୁଲ୍ୟ, ପ୍ରଭୁତ୍ୱରେ ବ୍ରହ୍ମାଙ୍କ ତୁଲ୍ୟ, ବ୍ରହ୍ମତତ୍ତ୍ୱ ବିଚାରରେ ବୃହସ୍ପତିଙ୍କ ତୁଲ୍ୟ ଏବଂ ଜିତେନ୍ଦ୍ରିୟତ୍ୱରେ ସାକ୍ଷାତ୍ ଶ୍ରୀହରିଙ୍କ ତୁଲ୍ୟ ଥିଲେ । ୬୧ ।

ଗୋ, ବ୍ରାହ୍ମଣ, ଗୁରୁ ଓ ବୈଷ୍ଣବଙ୍କ ପ୍ରତି ଭକ୍ତିଦ୍ୱାରା ଲଜ୍ଜା, ବିନୟ ଓ ସୁଶୀଳତା ହେତୁରୁ ସେ ପରକାର୍ଯ୍ୟ ସାଧନରେ ଅତୁଳନୀୟ ଥିଲେ । ୬୨ ।

ତ୍ରୈଲୋକ୍ୟର ସର୍ବସ୍ଥାନରେ ସମସ୍ତପୁରୁଷ ତାହାଙ୍କର କୀର୍ତ୍ତିଗାନ କରୁଥିଲେ, ଭଗବାନ୍ ରାମଚନ୍ଦ୍ର ଯେପରି ସାଧୁମାନଙ୍କ କର୍ଣ୍ଣରନ୍ଧ୍ରରେ ପ୍ରବେଶ କରିଥିଲେ, ରାଜା ପୃଥୁ ସେହିପରି ପୁରୁଷ ଓ କୁଳାଙ୍ଗନାମାନଙ୍କର ଶ୍ରବଣେନ୍ଦ୍ରିୟରେ ବିରାଜମାନ କରୁଥିଲେ । ୬୩ ।

---

କୁବେର ତୁଲେ ଧନେଶ୍ୱର
ରକ୍ଷକେ ଯେସନ୍ତେ ରତ୍ନାକର
ଗୁଣେ ସକଳ ଜୀବେ ପ୍ରାଣ
ଶୀତଳପଣେ ଚନ୍ଦ୍ର ସମ
ଜୀବନ ବଳ ତେଜ ଘେନ
ଏଣୁ ମରୁତ ସମ ମାନ । ୫୯ ।
କ୍ରୋଧରେ କାଳରୁଦ୍ର ସମ
ସୁନ୍ଦରେ ତାଙ୍କ ରୂପୁ କାମ
ପ୍ରାକର୍ମି ସମ ମୃଗଇନ୍ଦ୍ର
ଦୟାରେ ସେ ମନୁ ନରେନ୍ଦ୍ର

ପ୍ରଭୁତ୍ୱପଣେ ଯେସନ୍ତେ ବିଧି
ଗୁରୁ ସମାନେ ବ୍ରହ୍ମବାଦୀ
ହରି ସମାନେ ଜିତେନ୍ଦ୍ରିୟ
ପାଳନେ ଗୋରୁ ବିପ୍ର ପ୍ରିୟ
ବିଷ୍ଣୁ ବୈଷ୍ଣବ ଜନଠାରେ
ସେବନ୍ତି ବିନୟ ବେଭାରେ
ସମେ ପ୍ରତୁଲ୍ୟ କେହି ନାହିଁ
ସର୍ଜ୍ଜନେ ପୁଣି ବ୍ରହ୍ମା ସେହି
ଏ ତିନି ଲୋକେ ତାଙ୍କ ଯଶ
ଯେସନ୍ତେ ଶ୍ରବଣେ ହରିରସ

ଶ୍ରୀରାମ ତୁଲେ କୀର୍ତ୍ତିକାରି
ଗୁଣ ଗାବନ୍ତି ନର ନାରୀ ।୬୦-୬୩
ଶୁଣ ବିଦୁର ଜ୍ଞାନବନ୍ତ
ସେ ପୃଥୁଚରିତ ସବିନ୍ତ
ଅମୃତ ରସମୟ ବାଣୀ
ଚତୁର୍ଥ ସ୍କନ୍ଧେ ଯାହା ଭଣି
କହଇ ବିପ୍ର ଜଗନ୍ନାଥ
ସନ୍ଥଚରଣେ ଦେଇ ଚିତ୍ତ ।

## ତ୍ର ୟୋ ବିଂ ଶ ଅ ଧ୍ୟା ୟ ।

ତ୍ରୟୋବିଂଶେ ସଭାର୍ଯ୍ୟସ୍ୟ ବନେ ନିତ୍ୟଂ ସମାଧିତଃ ।
ବିମାନମଧିରୁହ୍ୟାଥ ବୈକୁଣ୍ଠଗତିରୀର୍ଯ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ଦୃଷ୍ଟ୍ୱାତ୍ମାନଂ ପ୍ରବୟସମେକଦା ବୈଣ୍ୟ ଆତ୍ମବାନ୍ ।
ଆତ୍ମନା ବର୍ଦ୍ଧିତାଶେଷ ସ୍ୱାନୁସର୍ଗଃ ପ୍ରଜାପତିଃ । ୧ ।
ଜଗତସ୍ତସ୍ଥୁଷଶ୍ଚାପି ବୃତ୍ତିଦୋ ଧର୍ମଭୃତ୍ ସତାମ୍ ।
ନିଷ୍ପାଦିତେଶ୍ୱରାଦେଶୋ ଯଦର୍ଥମିହ ଜଜ୍ଞିବାନ୍ । ୨ ।

---

### ପୃଥୁଙ୍କର ତପଶ୍ଚରଣ ।

ତ୍ରୟୋବିଂଶ ଅଧ୍ୟାୟରେ ରାଜା ପୃଥୁ ଭାର୍ଯ୍ୟା ସହିତ ବନରେ ସମାଧିସ୍ଥ ହୋଇ ବୈକୁଣ୍ଠ ପ୍ରାପ୍ତି ବିଷୟ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀମୈତ୍ରେୟ କହିଲେ :—

ଆତ୍ମବିତ୍ ପ୍ରଜାପତି ବେଣନନ୍ଦନ ଅନ୍ନାଦିଦାନ ଓ ପୁରଗ୍ରାମାଦି ଉତ୍ସର୍ଗ ବିଶେଷରୂପେ ବର୍ଦ୍ଧନାନ୍ତର ଏକଦା ଆପଣାକୁ ବୃଦ୍ଧ ଦେଖି ଭାବିଲେ—ମୁଁ ପୃଥିବୀର ସମସ୍ତ ସ୍ଥାବର ଜଙ୍ଗମଙ୍କର ଗ୍ରାସାଚ୍ଛାଦନ ନିର୍ଦ୍ଦିଷ୍ଟ କରି ଦେଇଅଛି, ସାଧୁମାନଙ୍କର ଧର୍ମ ରକ୍ଷା ନିମିତ୍ତ ଓ ପରମେଶ୍ୱରଙ୍କର ପ୍ରଜାପାଳନାଦି ଆଦେଶ ପ୍ରତିପାଳନ ନିମିତ୍ତ ମୁଁ ଅବତୀର୍ଣ୍ଣ ହୋଇଥିଲି, ତାହା ମଧ୍ୟ ସମ୍ପାଦିତ ହୋଇଅଛି । ଏହିପରି ଚିନ୍ତାକରି

---

ଭାର୍ଯ୍ୟାସହିତେ ପଶି ବନେ, ସମାଧି ଯୋଗର ଧାରଣେ । ପୃଥୁ ବୈକୁଣ୍ଠେ ଉପଗତ, ତେଇଶଅଧ୍ୟାୟଚରିତ

ଶ୍ରୀ ବିଦୁର ଉବାଚ—

ଶୁଣି ବିଦୁର କୃତକୃତ୍ୟ
ନମେ ମୈତ୍ରେୟ-ପାଦଗତ
ହେ ମୁନିବର ଜ୍ଞାନସାର
କହ ସଂଶୟ ଯାଉ ଦୂର

ଶ୍ରୀ ମୈତ୍ରେୟ ଉବାଚ—

ଶୁଣ ରାଜନ ଶୁଦ୍ଧ ଚିତ୍ତେ
ରାଜାର କହୁଛାଇ ଅନ୍ତେ
ବୃଦ୍ଧ ଶରୀର ଚିତ୍ତେ ଜାଣି
ଦେଖି ବିଷାଦ ମହୀପାଳ
ମୁଁ ଯେ ଦ୍ୱିତୀୟ ପ୍ରଜାପତି
ଯେଣୁ ମୁଁ କଲି ସର୍ବ ସ୍ଥିତି
ଅନ୍ନାଦି ଉତ୍ପତ୍ତି ମୁଁ କଲି
ନଗର ପୁର ବସାଇଲି
ସ୍ଥାବର ଜଙ୍ଗମାଦି ଯେତେ
ଅନ୍ନ ମୁଁ ଦେଲି ଯେତ୍ତାମତେ
ସାଧୁଙ୍କ ଧର୍ମ ରକ୍ଷା କଲି
ଈଶ୍ୱରବଚନ ପାଳିଲି
ଯେ ଧର୍ମ ରକ୍ଷା ଅର୍ଥେ ମୁହିଁ
ଜନ୍ମ ଲଭିଲି କର୍ମ ଲାଗି
ଏବେ ଶରୀର ବୃଦ୍ଧ ହେଲା
କାମାଦି କର୍ମହିଁ ସରିଲା
ଏବେ କି ଅର୍ଥେ ଥିବି ମୁହିଁ
ବନେ ପଶିବି କୃଷ୍ଣ ଧ୍ୟାୟି
ଦୁହିତା ପ୍ରଭୃତ୍ୟେ ଧରଣୀ
ପୁତ୍ରେ ଜାଣେଣି ନୃପମଣି
ପୁତ୍ରଙ୍କୁ ଦେଇ ସିଂହାସନ
ଦଣ୍ଡ ଛତ୍ରାଦି ନୃପଚିହ୍ନ

ଆତ୍ମଜେଷ୍ୱାତ୍ମଜାଂ ନ୍ୟସ୍ୟ ବିରହାଦ୍ରୁଦତୀମିବ ।
ପ୍ରଜାସୁ ବିମନଃସ୍ୱେକଃ ସଦାରୋଽଗାତ୍ ତପୋବନମ୍ । ୩ ।
ତତ୍ରାପ୍ୟଦାଭ୍ୟନିୟମୋ ବୈଖାନସସୁସମ୍ମତେ ।
ଆରବ୍ଧ ଉଗ୍ରତପସି ଯଥା ସ୍ୱବିଜୟେ ପୁରା । ୪ ।
କନ୍ଦମୂଳଫଳାହାରଃ ଶୁଷ୍କପର୍ଣ୍ଣାଶନଃ କ୍ୱଚିତ୍ ।
ଅବ୍ଭକ୍ଷଃ କତିଚିତ୍ ପକ୍ଷାନ୍ ବାୟୁଭକ୍ଷ ସ୍ତତଃ ପରମ୍ । ୫ ।
ଗ୍ରୀଷ୍ମେ ପଞ୍ଚତପା ବୀରୋ ବର୍ଷାସ୍ୱାସାରଷାଣ୍ମୁନିଃ ।
ଆକଣ୍ଠମଗ୍ନଃ ଶିଶିରେ ଉଦକେ ସ୍ଥଣ୍ଡିଲେଶୟଃ । ୬ ।

ପୃଥୁ ସ୍ୱବିରହରେ ରୋରୁଦ୍ୟମାନା ସ୍ୱୀୟ କନ୍ୟାସ୍ୱରୂପା ପୃଥିବୀକୁ ପୁତ୍ର ହସ୍ତରେ ସମର୍ପଣକରି ତପସ୍ୟା ନିମନ୍ତେ ଭାର୍ଯ୍ୟାସହ ଏକାକୀ ତପୋବନକୁ ଗମନ କରିଥିଲେ, ପ୍ରଜାମାନେ ତାଙ୍କୁ ଛାଡ଼ି ବ୍ୟାକୁଳହେଲେ ।୧,୩

ଅଖଣ୍ଡବ୍ରତ ପୃଥୁ ପୂର୍ବେ ଯେପରି ପୃଥିବୀକୁ ଦମ୍ଭକରିବାକୁ ଚେଷ୍ଟା କରିଥିଲେ । ବର୍ତ୍ତମାନ୍ ସେହିପରି ବନମଧ୍ୟରେ ବାନପ୍ରସ୍ଥାଶ୍ରମୀଗଣଙ୍କ ସୁସମ୍ମତ ଉଗ୍ରତପସ୍ୟାରେ ପ୍ରବୃତ୍ତ ହୋଇଥିଲେ । ୪ ।

ସେ କେତେବେଳେ କନ୍ଦମୂଳ ବା ଅନ୍ୟଫଳ ଆହାରକରି କେତେବେଳେ ବା ଶୁଷ୍କପତ୍ର ଭକ୍ଷଣ କରି ରହୁଥିଲେ । କେତେବେଳେ ଜଳମାତ୍ର ପାନ କରି କେତେକ ପକ୍ଷ କଟାଇଥିଲେ, ତଦନ୍ତର ବାୟୁମାତ୍ର ତାହାଙ୍କର ଆହାର ହୋଇଥିଲା । ୫ ।

ଗ୍ରୀଷ୍ମକାଳରେ ଚତୁର୍ଦ୍ଦିଗରେ ବନାଗ୍ନି ଓ ଊର୍ଦ୍ଧ୍ୱରେ ସୂର୍ଯ୍ୟଙ୍କର ତାପ ସହ୍ୟକରି ସେ ପଞ୍ଚତପା ହୋଇଥିଲେ, ବର୍ଷାକାଳରେ ଅନାବୃତସ୍ଥାନରେ ଜଳାଭିଷିକ୍ତ ହୋଇଥିଲେ, ଶୀତକାଳରେ ଜଳମଧ୍ୟରେ କଣ୍ଠ ଦେଶ ପର୍ଯ୍ୟନ୍ତ ମଗ୍ନ ହୋଇରହୁଥିଲେ ଏବଂ ଭୂମିରେ ଶୟନ କରୁଥିଲେ । ୬ ।

ସକଳ ସମର୍ପି କ୍ରମରେ
ଗମନ କଲେ ବନଘୋରେ
ସଙ୍ଗତେ ଘେନି ଅର୍ଦ୍ଧାଙ୍ଗିନୀ
ରୋଦନ୍ତି ପ୍ରଜା ନର ପୁଣି ।୧-୩।
ସ୍ୱଇଚ୍ଛା ମନେ ଦୁଃଖ ଭ୍ରମେ
ତପ ଆରମ୍ଭି ଯୋଗ ଧର୍ମେ
କଠୋର ଉଗ୍ର ତପେ ରହି
ଯେମନ୍ତ ପୂର୍ବେ ରାଜ୍ୟ ଜୟି
ଯେ ବାନପ୍ରସ୍ଥର ବିଧାନ
ନିୟମ କଲେ ସେ ରାଜନ । ୪ ।
ଫଳାଦି ଶାକ କନ୍ଦମୂଳ
ଭୋଜନ କରନ୍ତି କେବଳ
ଏମନ୍ତେ କେତେ କାଳାନ୍ତରେ
ତାହା ତେଜିଲେ ନୃପବରେ
ନୀରସ ପତ୍ର ଚର୍ବଣ କରି
ଭୁଞ୍ଜନ୍ତି ଆନନ୍ଦେ ପ୍ରାଣ ଧରି
ତାହା ଭକ୍ଷିଲେ କିଛି ଦିନ
ତପ ସାଧନେ ତୋଷମନ
ସେ ପତ୍ରାଶନ ତେଜି ରହି
ଜଳ ଆହାରେ ସୁଖମୟୀ
ଏମନ୍ତେ କେତେ କାଳାନ୍ତରେ
ଜଳ ତେଜିଲେ ନୃପବରେ
ନିର୍ଗୁଣ ତପସ୍ୟା କଠୋର
କେବଳ ପବନ ଆହାର । ୫ ।
ପୁଣି ନିଦାଘ କାଳେ ନୃପ
ତପସ୍ୟା କଲେ ପଞ୍ଚତାପ
ସେ ଚାରିପାଶେ ଅଗ୍ନି ଜାଳି
ମଧ୍ୟେ ବସିଲେ ନିର୍ଦ୍ଧିକାଳୀ
ସୂର୍ଯ୍ୟମଣ୍ଡଳେ ଦୃଷ୍ଟି ଧରି
ପରମବ୍ରହ୍ମେ ଧ୍ୟାନ କରି
କୃଷ୍ଣଚରଣ ପଦ୍ମ ରସ
କଠୋର ତପ ବହୁକ୍ଲେଶ
ବରଷାକାଳେ ମସ୍ତାପରି
ଦୁଃସହ ଜଳଧାରେ ତନ୍ତ୍ରି
ଶିଶିର କାଳେ ତପକରେ
ବୁଡ଼ି ଆକଣ୍ଠ ଶୀତ ନୀରେ
ଶୟନେ ଭୂମିଶଯ୍ୟା କରି
ଏ ଘୋର ତପସ୍ୟା ଆଚରି । ୬ ।

ତତ୍ରାକ୍ଷୁର୍ଯ୍ୟତବାଗ୍‌ଦାନ୍ତଊର୍ଦ୍ଧ୍ୱରେତା ଜିତାନିଳଃ ।
ଆରିରାଧୟିଷୁଃ କୃଷ୍ଣମଚରତ୍ ତପ ଉତ୍ତମଃ । ୭ ।
ତେନ କ୍ରମାନୁସିଦ୍ଧେନ ଧ୍ୱସ୍ତକର୍ମ୍ମାମଲାଶୟଃ ।
ପ୍ରାଣାୟାମୈଃ ସନ୍ନିରୁଦ୍ଧଷଡ୍‌ବର୍ଗଶ୍ଛିନ୍ନବନ୍ଧନଃ । ୮ ।
ସନତ୍କୁମାରୋ ଭଗବାନ୍ ଯଦାହାଧ୍ୟାତ୍ମିକଂ ପରମ୍ ।
ଯୋଗଂ ତେନୈବ ପୁରୁଷମଭଜତ୍ ପୁରୁଷର୍ଷଭଃ । ୯ ।
ଭଗବଦ୍ଧର୍ମିଣଃ ସାଧୋ ଶ୍ରଦ୍ଧୟା ଯତତଃ ସଦା ।
ଭକ୍ତିର୍ଭଗବତି ବ୍ରହ୍ମଣ୍ୟନନ୍ୟବିଷୟାଭବତ୍ । ୧୦ ।
ତସ୍ୟାନୟା ଭଗବତଃ ପରିକର୍ମଶୁଦ୍ଧସତ୍ତ୍ୱାତ୍ମନସ୍ତଦନୁସଂସ୍ମରଣାନୁପୂର୍ତ୍ତ୍ୟା ।
ଜ୍ଞାନଂ ବିରକ୍ତମଦଭୂନ୍ନିଶିତେନ ଯେନ ଚିଚ୍ଛେଦ ସଂଶୟପଦଂ ନିଜଜୀବକୋଶମ୍ ।୧୧।

ସେ ସହିଷ୍ଣୁ, ମୌନୀ, ଜିତେନ୍ଦ୍ରିୟ, ଊର୍ଦ୍ଧ୍ୱରେତା, ଓ ଜିତଶ୍ୱାସ ହୋଇ ଭଗବାନ୍ ଶ୍ରୀକୃଷ୍ଣଙ୍କର ଆରାଧନା ଓ କାମନାରେ ଉତ୍କୃଷ୍ଟ ତପସ୍ୟାନୁଷ୍ଠାନ କରିଥିଲେ । ୭ ।

ଉତ୍କୃଷ୍ଟ ତପଃ ପ୍ରଭାବରେ ତାହାଙ୍କର କର୍ମମାନ କ୍ରମଶଃ କ୍ଷୟପ୍ରାପ୍ତ ହେବାରୁ ତାହାଙ୍କର ହୃଦୟ ନିର୍ମଳ ହେଲା ଏବଂ ପ୍ରାଣାୟାମ ପ୍ରଭାବରେ ଷଡ଼୍‌ରିପୁ ସମ୍ୟକ୍ ଭାବରେ ନିଗୃହୀତ ଓ ସଂସାର ବନ୍ଧନ ଛିନ୍ନ ହୋଇ ଯାଇଥିଲା । ୮ ।

ସେତେବେଳେ ପୁରୁଷଶ୍ରେଷ୍ଠ ପୃଥୁ, ସନତ୍କୁମାରଙ୍କଠାରୁ ପ୍ରାପ୍ତ ଆଧ୍ୟାତ୍ମିକ ଉପଦେଶ ଅନୁସାରେ ପୁରୁଷୋତ୍ତମ ଭଗବାନଙ୍କୁ ଭଜନା କରିଥିଲେ । ୯ ।

ପରମଭାଗବତ ସାଧୁ ପୃଥୁ ଶ୍ରଦ୍ଧାନ୍ୱିତ ହେବାରୁ ଅତଏବ ପରମବ୍ରହ୍ମ ଭଗବାନଙ୍କଠାରେ ତାଙ୍କର ଐକାନ୍ତିକୀ ଭକ୍ତି ଉଦିତ ହେଲା । ୧୦ ।

ଭଗବାନଙ୍କର ଏହିପରି ପରିଚର୍ଯ୍ୟା ଦ୍ୱାରା ଶୁଦ୍ଧଚିତ୍ତ ହେବାରୁ ଭଗବାନଙ୍କୁ ସ୍ମରଣକରିବା ଦ୍ୱାରା ଭକ୍ତିହେତୁରୁ ତାଙ୍କର ପରିପୁଷ୍ଟ ଜ୍ଞାନ ଲାଭ ହେଲା । ତଦ୍ୱାରା ସେ ସଂସାରର ଅହଙ୍କାରଭୂତ ହୃଦୟ ଗ୍ରନ୍ଥି ଛିଣ୍ଡାଇ ପକାଇଥିଲେ । ୧୧ ।

ଜିତବଚନ ଊର୍ଦ୍ଧରେତ
ଜିତସମୀର ଶାନ୍ତ ଦାନ୍ତ
କୃଷ୍ଣଚରଣ ସେବାପାଇଁ
କଠିନ ତପେ ନୃପସାଇଁ
ଲୋକ ଶିଖାଏ ତପ କଲେ
ବିଷୟ କର୍ମ୍ମ ବିନାଶିଲେ
ନିରତେ ପ୍ରାଣାୟାମ କରି
ଇନ୍ଦ୍ରିୟସମୂହ ସଂହରି
ଛୁଟିଲା ଅଶେଷ ବନ୍ଧନ
ତ୍ୟଜେ କଳୁଷ ବାସନାଦିମାନ ।୭,୮।

ଯେ ଶିକ୍ଷା ବ୍ରହ୍ମାଙ୍କ କୁମର
କହି ଯେ ଥିଲେ ଯୋଗସାର
ନିଷ୍ଠାର ତପେ ନୃପବର
ତପ ସାଧନେ ନିଷ୍ଠାପର
ସେ ଯୋଗେ ଗୋବିନ୍ଦଚରଣ
ନିତ୍ୟେ ଆରାଧି ନୃପତ୍ରାଣ
ଶ୍ରଦ୍ଧା ଭକତ ଦୃଢ଼ କରେ
ଭକ୍ତି ଜନ୍ମିଲା ହୃଦଗତେ ।୯,୧୦।
ପ୍ରେମାଙ୍ଗ ଆନନ୍ଦ ଭକତ
ଶ୍ରୀକୃଷ୍ଣେ କଲେ ମଗ୍ନଚିତ୍ତ

ସେ ହରି ଭଜନ ପ୍ରବନ୍ଧ
ହୋଇଲା ମନ ସୁନିଶୁଦ୍ଧ
ନିର୍ମ୍ମଳ ମନ ପ୍ରକାଶିଲା
ବିରକ୍ତ ଜ୍ଞାନ ଉପୁଜିଲା
ସେ ଜ୍ଞାନ-ତୀକ୍ଷ୍ଣ-ଶସ୍ତ୍ରେ ରାୟେ
ଛେଦିଲେ ହୃଦର ସଂଶୟେ
ଯେ କର୍ମ୍ମ ଗ୍ରନ୍ଥି ଜୀବ କୋଷ
ଜ୍ଞାନ ଖଡ଼୍ଗେ ଗଲା ନାଶ ।୧୧।

ଛିନ୍ନାନ୍ୟଧୀରଧିଗତାତ୍ମଗତିର୍ନିରୀହସ୍ତତ୍ ତତ୍ୟଜେଽଚ୍ଛିନଦିଦଂ ବୟୁନେନ ଯେନ ।
ତାବନ୍ନ ଯୋଗଗତିଭିର୍ଯତିରପ୍ରମତ୍ତୋ ଯାବଦ୍ଗଦାଗ୍ରଜକଥାସୁ ରତିଂ ନ କୁର୍ଯ୍ୟାତ୍ ।୧୨।
ଏବଂ ସ ବୀରପ୍ରବରଃ ସଂଯୋଜ୍ୟାତ୍ମାନମାତ୍ମନି ।
ବ୍ରହ୍ମଭୂତୋ ଦୃଢ଼ଂ କାଲେ ତତ୍ୟାଜ ସ୍ୱଂ କଲେବରମ୍ । ୧୩ ।
ସଂପୀଡ୍ୟ ପାୟୁଂ ପାର୍ଷ୍ଣିଭ୍ୟାଂ ବାୟୁମୁତ୍ସାରୟଞ୍ଛନୈଃ ।
ନାଭ୍ୟାଂ କୋଷ୍ଠେଷ୍ୱବସ୍ଥାପ୍ୟ ହୃଦୁରଃକଣ୍ଠଶୀର୍ଷଣି । ୧୪ ।
ଉତ୍ସର୍ପୟଂସ୍ତୁ ତଂ ମୂର୍ଦ୍ଧ୍ନି କ୍ରମେଣାବେଶ୍ୟ ନିଃସ୍ପୃହଃ ।
ବାୟୁଂ ବାୟୌ କ୍ଷିତୌ କାୟଂ ତେଜସ୍ତେଜସ୍ୟୟୂୟୁଜତ୍ । ୧୫ ।

ଦେହାତ୍ମବୁଦ୍ଧି ବିଦୂରିତ ହୁଅନ୍ତେ ଆତ୍ମତତ୍ତ୍ୱ ତାହାଙ୍କର ଅଧିଗତ ହେଲା, ଏବଂ ସେ ସିଦ୍ଧି ପ୍ରଭୃତିରେ ସ୍ପୃହା ନିସ୍ପୃହ ହୋଇ ଯେଉଁ ଜ୍ଞାନଦ୍ୱାରା ସେ ହୃଦୟ ଗ୍ରନ୍ଥି ଛେଦନ କରିଥିଲେ, ତାହା ମଧ୍ୟ ପରିତ୍ୟାଗ କରିଥିଲେ, କାରଣ ଯେତେଦିନ ପର୍ଯ୍ୟନ୍ତ ଗଦାଧର ଶ୍ରୀକୃଷ୍ଣ ବିଷୟକ କଥାରେ ମତି ନ ବଳେ, ସେତେଦିନ ପର୍ଯ୍ୟନ୍ତ ମୋକ୍ଷଗତି ଦ୍ୱାରା ତାହାଙ୍କର ଅପ୍ରମତ୍ତତା ଅସମ୍ଭବ । ୧୨ ।

ସେହି ବୀରଶ୍ରେଷ୍ଠ ପୃଥୁ ବ୍ରହ୍ମସ୍ୱରୂପରେ ଅବସ୍ଥିତ ହୋଇ ଦେହତ୍ୟାଗ କାଳରେ ପରମାତ୍ମା ଶ୍ରୀ ଭଗବାନଙ୍କ ଠାରେ ଦୃଢ଼ରୂପେ ଜୀବାତ୍ମାକୁ ମୁକ୍ତକରି ନିଜର ଦେହ ତ୍ୟାଗ କରିଥିଲେ । ୧୩ ।

ପ୍ରଥମେ ସେ ପଦଦ୍ୱୟଦ୍ୱାରା ଗୁଳ୍ଫଦ୍ୱୟର ମଧ୍ୟବର୍ତ୍ତୀ ଗୁହ୍ୟଦେଶ ନିପୀଡ଼ନ କରି ମୂଳାଧାରରୁ ବାୟୁକୁ କ୍ରମେ ଊର୍ଦ୍ଧ୍ୱକୁ ଉତ୍ତୋଳନ କରି ନାଭିଦେଶସ୍ଥ "ମଣିପୁର" ଚକ୍ରରେ ସ୍ଥାପନ କରିଥିଲେ । ପରେ ସେଠାରୁ ସେହି ବାୟୁକୁ ହୃଦ୍ଦେଶରେ 'ଅନାହତ ଚକ୍ରରେ' ତତ୍ପରେ କଣ୍ଠର ଉପରସ୍ଥ "ଆଜ୍ଞା" ଚକ୍ରରେ ଏବଂ ସେଠାରୁ କ୍ରମେ କ୍ରମେ 'ବ୍ରହ୍ମରନ୍ଧ୍ର' ରେ ସ୍ଥାପନ କରିଥିଲେ, ତଦନନ୍ତର ନିସ୍ପୃହ ପୃଥୁ ଦେହାରମ୍ଭକ ବାୟୁକୁ ବାୟୁରେ ଏବଂ ଶରୀରସ୍ଥ ତେଜକୁ ତେଜରେ ମିଶାଇ ଦେଇଥିଲେ । ୧୪,୧୫ ।

ଦେହରେ ଆତ୍ମବୁଦ୍ଧି ଯେହି
ତକ୍ଷଣେ ଦୂର ଗଲା ସେହି
ଏଣୁ ପାଇଲେ ଆତ୍ମାଗତି
ନିରହଂକାର ହେଲା ମତି
ଏ ସର୍ବ ଜ୍ଞାନ ଯେ ବିନାଶ
ତା ପଛେ କରି ନୃପଈଶ
ଯାବତ ହରିଙ୍କ ଭଜନ
ନୋହିଛି ତାବତ ସାଧନ
ଯେବେ ଶ୍ରୀକୃଷ୍ଣ ଭାବେ ରତ
ଶାନ୍ତ ହୋ ପାଇ ତେବେ ମତି
ଭଜନରସେ ମତ୍ତ ହୋଏ
ସତେ ଶୋକ ମାୟାମୋହେ ।୧୨
ଏମନ୍ତେ ସେହି ନୃପବର
ଅସ୍ତାରେ ନିଜ କଳେବର

ସଂଯୋଗି ଯୋଗାସନବଳେ
ସେ ବ୍ରହ୍ମ ସ୍ୱରୂପ ନିଶ୍ଚଳେ
କାଳେ ଛାଡ଼ିଲେ କଳେବର
ଏ ଅନୁକ୍ରମେ ହେ ବିଦୁର ।୧୩।
ସୁସ୍ଥିରେ ବସି ଯୋଗାସନେ
ଦେହେ ସମୀର ସମାଧାନେ
ବାମ ଦକ୍ଷିଣ ମୂଳାଧାରେ
ନିରୋଧି ସ୍ଥାପିଲେ ନିର୍ଭରେ
ସେ ମୂଳ ଆଧାରୁ ପବନ
ଊର୍ଦ୍ଧ୍ୱକୁ ଟେକିଲେ ରାଜନ
ନାଭିରୁ ହୃଦୟ କମଳେ
ପବନ ରଖିଲେ ସଧୀରେ
ତହୁଁ ଷୋଡ଼ଶଦଳେ ନେଲେ
ତହୁଁ କଣ୍ଠରେ ତହୁଁ ଶିରେ ।୧୪

ଏ ରୂପେ ପ୍ରାଣାଦି ପବନ
ଭେଦିଣ ଏ ଷଡ଼ ଚକ୍ରଣ
ସେ ବ୍ରହ୍ମରନ୍ଧ୍ରେ ଯୋଗବଳେ
ଏ ସର୍ବ କରି ଏକ ଠୂଳେ
ମନ ପବନ ଦୃଢ଼େ ଧରି
ଭିତରେ ରହିଲେ ପାସୋରି
ସେ ବନେ ପୃଥୁ ନୃପନାଥ
ଦେହ ଧାରଣେ ପରିଭୂତ
ଯେଝାନୁକ୍ରମେ ଯୋଗବଳେ
ସମଷ୍ଟି ଭୂତେ ଲୀନ କଲେ
ପବନ ନ୍ୟାସି ସମୀରଣେ
ଯେ କିଛି ଦେହାଦି ଧାରଣେ ।୧୫

ଖାନ୍ୟାକାଶେ ଦ୍ରବଂ ତୋୟେ ଯଥାସ୍ଥାନଂ ବିଭାଗଶଃ ।
କ୍ଷିତିମମ୍ଭସି ତତ୍ତେଜସ୍ୟଦୋ ବାୟୌ ନଭସ୍ୟମୁମ୍ । ୧୬ ।
ଇନ୍ଦ୍ରିୟେଷୁ ମନସ୍ତାନି ତନ୍ମାତ୍ରେଷୁ ଯଥୋଦ୍ଭବମ୍ ।
ଭୂତାଦିନାମୂନ୍ୟୁତ୍କ୍ଷିପ୍ୟ ମହତ୍ୟାତ୍ମନି ସନ୍ଦଧେ । ୧୭ ।
ତଂ ସର୍ବଗୁଣବିନ୍ୟାସଂ ଜୀବେ ମାୟାମୟେ ନ୍ୟଧାତ୍ ।
ତଞ୍ଚାନୁଶୟମାତ୍ମସ୍ଥମସାବନୁଶୟୀ ପୁମାନ୍-
ଜ୍ଞାନବୈରାଗ୍ୟବୀର୍ଯ୍ୟେଣ ସ୍ୱରୂପସ୍ଥୋଽଜହାତ୍ ପ୍ରଭୁଃ । ୧୮ ।
ଅର୍ଚ୍ଚିର୍ନାମ ମହାରାଜ୍ଞୀ ତତ୍ପତ୍ନ୍ୟନୁଗତା ବନମ୍ ।
ସୁକୁମାର୍ଯ୍ୟତଦର୍ହା ଚ ଯତ୍ ପଦ୍ଭ୍ୟାଂ ସ୍ପର୍ଶନଂ ଭୁବଃ । ୧୯ ।

---

ତଦନନ୍ତର ଶରୀରସ୍ଥ ଛିଦ୍ରଗୁଡ଼ିକୁ ଆକାଶରେ ଶରୀରଗତ ଜଳାଂଶକୁ ଜଳରେ, ଏହିପରି ଯଥାଯୋଗ୍ୟ ବିଭାଗ ଅନୁସାରେ ସଂଯୋଜିତ କରିଥିଲେ । ତଦନନ୍ତର ସେ ଉତ୍ପତ୍ତିର କ୍ରମାନୁସାରେ କ୍ଷିତ, ଅପ୍, ତେଜ, ମରୁତ୍, ବ୍ୟୋମ ପ୍ରଭୃତି ମହାଭୂତଗଣଙ୍କୁ ତତ୍ ତତ୍ ତତ୍ତ୍ୱରେ ଲୀନକରି ମନକୁ ଇନ୍ଦ୍ରିୟଗ୍ରାମରେ, ଇନ୍ଦ୍ରିୟକୁ ତାହାର ଉତ୍ପାତ୍ତିସ୍ଥଳ ତନ୍ମାତ୍ରରେ ଯୋଡନ କରିଥିଲେ, ଶେଷରେ ତନ୍ମାତ୍ରକୁ ଅହଂକାରରେ ଏବଂ ଅହଙ୍କାରକୁ ମହତ୍ତତ୍ତ୍ୱରେ ଯୋଜନା କରିଥିଲେ । ୧୬,୧୭ ।

ତଦନନ୍ତର ସର୍ବଗୁଣାଧାର ସ୍ୱରୂପ ମହତ୍ତତ୍ତ୍ୱକୁ ଅବ୍ୟକ୍ତପ୍ରଧାନରେ ଏବଂ ପ୍ରଧାନକୁ ଜୀବର ଉପାଧିଭୂତ ଶରୀରରେ ନ୍ୟସ୍ତ କରିଥିଲେ । ପୂର୍ବେ ଲିଙ୍ଗଶରୀରଭିମାନୀ ଜୀବ ଏହି ଅବସ୍ଥାରେ ଥିଲା, ପରେ ଜ୍ଞାନ ବୈରାଗ୍ୟ ପ୍ରଭାବରୁ ସ୍ୱରୂପସ୍ଥ ହୋଇ ସେହି ଆତ୍ମସ୍ଥ ଅନୁଶୟରୂପେ ଜୀବ ଉପାଧିପରିତ୍ୟାଗ କରିଥିଲା । ୧୮ ।

ମହାରାଜପୃଥୁଙ୍କର ପତ୍ନୀ ଅର୍ଚ୍ଚି ସୁକୁମାରୀ ଥିଲେ ମଧ୍ୟ ଏବଂ ତାହାଙ୍କର ପଦଦ୍ୱୟ କେବେ ଭୂମିସ୍ପର୍ଶ କରି ନ ଥିଲେ ମଧ୍ୟ ସେ ପଦବ୍ରଜରେ ସ୍ୱାମୀଙ୍କର ଅନୁଗାମିନୀ ହୋଇଥିଲେ । ୧୯ ।

---

କ୍ଷିତିକି ଆପ ମଧ୍ୟେ ନ୍ୟାସି
ସେ ଜଳ ଅନଳେ ପ୍ରବେଶି
ତେଜକୁ ପବନେ ସଂହରି
ଆକାଶ ମଧ୍ୟେ ବାୟୁ ଧରି
ଇନ୍ଦ୍ରିୟଗଣେ ଯୁକ୍ତ ମନ
ତାହା ଅକାଶେ କରି ଲୀନ
ଆକାଶ ଶବଦେ ସଂହରି
ଶବଦ ତମଗୁଣେ ଧରି
ଏ ଯେ ତାମସ ଅହଂକାର
କାର୍ଯ୍ୟ ଯେ ମହାଭୂତ ତାର
ଯେ ରୂପେ ଲୟ କଲେ ନୃପ
ଶୁଣ ବିଦୁର ତା ସ୍ୱରୂପ

ପୃଥିବୀ ଲୟ ଗନ୍ଧେ କରି
ଆପକୁ ରସମଧ୍ୟେ ଧରି
ପୁଣି ତେଜକୁ ରୂପେ ଥୋଇ
ପବନ ସ୍ପର୍ଶରେ ଲଗାଇ
ଶବଦେ ଆକାଶ ସଂହରି
ଏ ସର୍ବ ତମଗୁଣେ ଭରି
ଯେ ତମ ସାତ୍ତ୍ୱିକ ରାଜସ
ଏକତ୍ରେ କଲେ ତା ପ୍ରକାଶ
ଇନ୍ଦ୍ରି ସହିତେ ବୁଦ୍ଧି ମନ
ଯେଝାନୁକ୍ରମେ କଲେ ଲୀନ
ଶବଦ ଆଦି ଇନ୍ଦ୍ରିଗଣେ
ଲୀନ କରାଇଲେ ଯେଝାସ୍ଥାନେ

ଏହାଙ୍କ ଅଧିଷ୍ଠାତା ଦେବେ
ଲୟେ ପାଇଲେ ଯେଝାଭାବେ
ଏକତ୍ରେ ଅହଂକାର ନେଇ
ସେ ମହତ୍ତତ୍ତ୍ୱରେ ମିଶାଇ
ଏ ସର୍ବ ତତ୍ତ୍ୱ ଗୁଣେ ନ୍ୟାସି
ମହତ୍ତତ୍ତ୍ୱରେ ପରକାଶି
ସେ ମହତ୍ତତ୍ତ୍ୱ ମାୟାମୟେ
ପ୍ରକୃତି ସଙ୍ଗେ ହେଲେ ଲୟେ
ଜ୍ଞାନ ବୈରାଗ୍ୟ ଯୋଗବଳେ
ଏଜୀବବ୍ରହ୍ମେ ଯାଇଁ ମିଳେ । ୧୬-୧୮
ଏମନ୍ତେ ପୃଥୁ ମହାରାଜ
ଦେହ ତେଜିଲେ ପାଇ କାଜ

ଅତୀବ ଭର୍ତ୍ତୁର୍ବ୍ରତଧର୍ମନିଷ୍ଠୟା ଶୁଶ୍ରୂଷୟା ଆର୍ଷଦେହଯାତ୍ରୟା ।
ନାବିନ୍ଦତାର୍ତ୍ତିଂ ପରିକର୍ଷିତାପି ସା ପ୍ରେୟସ୍କରସ୍ପର୍ଶନମାନନିର୍ବୃତିଃ । ୨୦ ।
ଦେହଂ ବିପନ୍ନାଖିଳଚେତନାଦିକଂ ପତ୍ୟୁଃ ପୃଥିବ୍ୟା ଦୟିତସ୍ୟ ଚାତ୍ମନଃ ।
ଆଲକ୍ଷ୍ୟ କିଞ୍ଚିଚ୍ଚ ବିଲପ୍ୟ ସା ସତୀ ଚିତାମଥାରୋପୟଦଦ୍ରିସାନୁନି । ୨୧ ।
ବିଧାୟ କୃତ୍ୟଂ ହ୍ରଦିନୀଜଲାପ୍ଲୁତା ଦତ୍ତ୍ୱୋଦକଂ ଭର୍ତ୍ତୁରୁଦାରକର୍ମଣଃ ।
ନତ୍ୱା ଦିବିସ୍ଥାଂସ୍ତ୍ରିଦଶାଂସ୍ତ୍ରିଃ ପରୀତ୍ୟ ବିବେଶ ବହ୍ନିଂ ଧ୍ୟାୟତୀ ଭର୍ତ୍ତୃପାଦମ୍ ।୨୨।

---

ସେ ସ୍ୱାମୀଙ୍କର ବ୍ରତରେ ଓ ଧର୍ମରେ ନିଷ୍ଠା ହେବୁ ପତିଙ୍କର ପରିଚର୍ଯ୍ୟା କରି ଓ ଋଷିଗଣଙ୍କର ଯୋଗ୍ୟ ଦେହ ଯାତ୍ରା ଅବଲମ୍ବନ କରି ଅତ୍ୟନ୍ତ କ୍ଷୀଣା ହୋଇ ପଡ଼ିଥିଲେ ମଧ୍ୟ ପ୍ରିୟତମ ପତିଙ୍କର କରସ୍ପର୍ଶ ଓ ସତ୍କାରାଦି ଦ୍ୱାରା ତାହାଙ୍କର ପରମ ଆନନ୍ଦ ଜନ୍ମିଥିଲା, ତେଣୁ ତାଙ୍କର କୌଣସି ଦୁଃଖ ନ ଥିଲା ।୨୦।

ପତିପରାୟଣା ଅର୍ଚ୍ଚି ଯେତେବେଳେ ଦେଖିଲେ ଆପଣାର ପ୍ରିୟତମ ଭର୍ତ୍ତା ପୃଥିବୀପତିଙ୍କ ଦେହରୁ ଚେତନାଦି ବିନଷ୍ଟ ହୋଇଅଛି, ସେତେବେଳେ ସେ କିୟତ୍କାଳ ବିଳାପକରି ଗିରିଶିଖରରେ ଚିତା ରଚନା କରି ତହିଁରେ ସ୍ୱାମୀଙ୍କର କଳେବର ସ୍ଥାପନ କରିଥିଲେ । ୨୧ ।

ତଦନନ୍ତର ଅନ୍ୟାନ୍ୟ କୃତ୍ୟ ସମାପନ କରି ନଦୀଜଳରେ ଅବଗାହନ ପୂର୍ବକ ଉଦାରକର୍ମା ସ୍ୱାମୀଙ୍କ ଉଦ୍ଦେଶ୍ୟରେ ତର୍ପଣ କରିଥିଲେ, ତଦନନ୍ତର ସ୍ୱର୍ଗବାସୀ ଦେବଗଣଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି ତିନିବାର ଚିତା ପ୍ରଦକ୍ଷିଣ କଲେ ଏବଂ ସେହି ଚିତାନଳରେ ପ୍ରବେଶ କଲେ । ୨୨ ।

---

ସେ ଅର୍ଚ୍ଚି ରାଣୀ ସୁକୁମାରୀ
ଦୃଢ଼େ ସେ ପତିବ୍ରତାଚାରୀ
ଦେହ ଶୁଖାଇ ତପେ ଥିଲ
ସ୍ୱାମିର ମରଣ ଦେଖିଲା
ତକ୍ଷଣେ ହୋଇ ହତଜ୍ଞାନ
ଆକୁଳେ କରଇ ରୋଦନ
ହେ ନାଥ ମୋର ପ୍ରାଣନାହା
ମୋତେ ଦେଖାଅ କପଟ ଏହା
କପଟେ ମୁଦ୍ରିତ ଲୋଚନ
ଶ୍ୱାସ ବହଇ ଅତିକ୍ଷୀଣ
ତୁ ସର୍ବ ବିହର୍ତ୍ତା ଈଶ୍ୱର
ଏ ତୋର ମାୟା ଖେଳ ଘର
ସ୍ଥିତି ଉତ୍ପତ୍ତି କରୁ ନାଶ
ତୁ ମାତ୍ର ରହୁ ଅବଶେଷ
ତୁ ସର୍ବକାରଣ ମୁରାରି
କାର୍ଯ୍ୟ କାରଣେ ଦେହ ଧରି

ହେ ଯୋଗେଶ୍ୱର ତୋ ମହିମା
ଜାଣି ନ ପାରେ ହର ବ୍ରହ୍ମା
ଯେ ନାମେ ମୃତ୍ୟୁ ଭୟ ନାଶେ
ମୃତ୍ୟୁ ଅମୃତ୍ୟୁ ପରକାଶେ
ଏବେ କପଟେ ମୃତ୍ୟୁ ଭୟେ
ମୋତେ ଦେଖାଅ ମାୟା ମୋହେ
ଏ ମାୟା ମୋହ ଦୃଢ ପାଶ
ପ୍ରତେକ୍ଷ ତୁମ୍ଭ ପ୍ରତି ଆଶ
ଏବେ ଉପେକ୍ଷି ବନଘୋରେ
ତେଜିଣ ଗଲ ନିଜପୁରେ
ମୁଁ ଯେ ନିରନ୍ତେ ଅପରାଧୀ
ତୋ ପାଦେ ନ ସେବ ଦୁର୍ବୁଦ୍ଧି
ସେ ଅପରାଧ ଦୋଷୁଁ ମୋତେ
ଏବେ ତେଜିଲ ଦୁଃଖ ଚିତେ
ତୁମ୍ଭେ ଯେ ମୋର ମନଦୁଃଖେ
କହ ମୁଦଗ୍ଧେବ ସୁଖେ

ହେ ସଖି ନ ତେଜିବି ତୋତେ
ଯାବତ ପ୍ରାଣ ଦେହଗତେ
ଯେ ଆଜ୍ଞା ଅଭାଗ୍ୟ ମୋହର
ଅବଜ୍ଞା ହେଲା ଯୋଗେଶ୍ୱର
ଏରୂପେ ବିଳାପେ ସୁନ୍ଦରୀ
ଶୋକାର୍ଣ୍ଣବରେ ତନୁ ଘାରି
ସେ ଅର୍ଚ୍ଚିଦେବୀ ଜ୍ଞାନବନ୍ତ
ତକ୍ଷଣେ ସ୍ଥିର କଲା ଚିତ୍ତ
ଅଦ୍ରି ସାନୁରେ ଚିତା କଲା
ସ୍ୱାମିଙ୍କି ତହିଁ ନିବେଶିଲା ॥୧୯-୨୧
ମୁଖାଗ୍ନି କରି ବିଧିମତେ
ସ୍ନାନ ଉଦକକ୍ରିୟା ଯେତେ
ଦେବଙ୍କୁ କରି ନମସ୍କାର
ସମ୍ମୁଖେ ଯୋଡ଼ି ବେନିକର
ଏ ସର୍ବ ସାରିଣ ସୁନ୍ଦରୀ
ଅଗ୍ନିକି ପ୍ରଦକ୍ଷିଣ କରି

ବଲ୍ଲୋକ୍ୟାନୁଗତାଂ ସାଧ୍ୱୀଂ ପୃଥୁଂ ବୀରବରଂ ପତିମ୍ ।
ତୁଷ୍ଟୁବୁର୍ବରଦା ଦେବୈର୍ଦେବପତ୍ନ୍ୟଃ ସହସ୍ରଶଃ । ୨୩ ।
କୁର୍ବତ୍ୟଃ କୁସୁମାସାରଂ ତସ୍ମିନ୍ ମନ୍ଦରସାନୁନି ।
ନଦତ୍ସ୍ୱମରତୂର୍ଯେଷୁ ଗୃଣନ୍ତି ସ୍ମ ପରସ୍ପରମ୍ । ୨୪ ।

ଶ୍ରୀଦେବ୍ୟଊଚୁଃ ।

ଅହୋ ଇୟଂ ବଧୂର୍ଧନ୍ୟା ଯା ଚୈବଂ ଭୂଭୁଜାଂ ପତିମ୍ ।
ସର୍ବାତ୍ମନା ପତିଂ ଭେଜେ ଯଜ୍ଞେଶଂ ଶ୍ରୀର୍ବଧୂରିବ । ୨୫ ।
ସୈଷା ନୂନଂ ବ୍ରଜତ୍ୟୂର୍ଦ୍ଧ୍ୱମନୁବୈଣ୍ୟଂ ପତିଂ ସତୀ ।
ପଶ୍ୟତାସ୍ମାନତୀତ୍ୟାର୍ଚ୍ଚିର୍ଦୁର୍ବିଭାବ୍ୟେନ କର୍ମଣା । ୨୬ ।

---

ସେହି ସାଧ୍ୱୀଙ୍କୁ ସ୍ୱୀୟ ବୀରଶ୍ରେଷ୍ଠ ପତିଙ୍କର ସହମୃତା ହେବାର ଦେଖି ବରଦାନ ସମର୍ଥ ସହସ୍ର ସହସ୍ର ଦେବତା ଓ ଦେବପତ୍ନୀ ସ୍ତବ କରିବାକୁ ଲାଗିଲେ । ୨୩ ।

ଦେବତାମାନେ ଦୁନ୍ଦୁଭି ବାଦ୍ୟ ବଜାଇଲେ ଏବଂ ଦେବପତ୍ନୀଗଣ ମନ୍ଦରପର୍ବତର ସାନୁଦେଶରେ ପୁଷ୍ପବୃଷ୍ଟି କରୁ କରୁ ପରସ୍ପରକୁ କହିଲେ । ୨୪ ।

ଶ୍ରୀଦେବୀମାନେ କହିଲେ :—

ଏହି ବଧୂ ଅଟନ୍ତି ଧନ୍ୟା, କାରଣ ସେ ଯଜ୍ଞେଶ୍ୱର ବନିତା ଲକ୍ଷ୍ମୀଙ୍କ ତୁଲ୍ୟ ନିଜର ସ୍ୱାମୀ ରାଜାଧିରାଜ ପୃଥୁଙ୍କୁ ସର୍ବାନ୍ତଃକରଣରେ ସେବା କରିଅଛନ୍ତି । ୨୫ ।

ଦେଖ ଏହି ପତିବ୍ରତା ଅଚିନ୍ତ୍ୟ ଅନିର୍ବଚନୀୟ ସ୍ୱକର୍ମ ସାଧନ ଦ୍ୱାରା ସ୍ୱୀୟ ପତି ବେଣନନ୍ଦନ ପୃଥୁଙ୍କର ଅନୁଗାମିନୀ ହୋଇଅଛନ୍ତି, ଏତଦ୍ୱାରା ସେ ଆମ୍ଭମାନଙ୍କୁ ଅତିକ୍ରମକରି ଊର୍ଦ୍ଧ୍ୱଲୋକକୁ ଗମନ କରିଅଛନ୍ତି ।୨୬

---

ପ୍ରବେଶ ଅଗ୍ନିମଧ୍ୟେ ଯାଇଁ
ଦେବେ ଦେଖନ୍ତି ଶୂନ୍ୟେ ରହି
ସିଦ୍ଧ ଚାରଣ ବିଦ୍ୟାଧର
ଇନ୍ଦ୍ରାଦି ଯେତେ ଅନୁଚର
ଯେ ଯାହାମତେ କଲେ ସ୍ତୁତି
ଆନନ୍ଦେ ପୁଷ୍ପ ବରଷନ୍ତି
ଦୁନ୍ଦୁଭିବାଦ୍ୟ ନାଦ କରି
ରଙ୍ଗେ ନାଚନ୍ତି ଅପସରୀ
ସେ ପତି ପତ୍ନୀ ଦେଖିଣନେ
ଆକାଶେ ଗଲେ ଦେବଯାନେ
ଦେବେ ଆନନ୍ଦେ ସ୍ତୁତି ଭଣି
ଶିରେ ନାବେଣି ବେନିପାଣି
ପ୍ରଶଂସି ଦେବୀ ଜଣେ ଜଣେ
ଆନନ୍ଦେ ଅଶ୍ରୁ କଲେଚନେ ॥
୨୨-୨୪

ଶ୍ରୀ ଦେବ୍ୟଊଚୁଃ—

ଧନ୍ୟ ସାଧ୍ୱୀ ପତିବ୍ରତା
ସ୍ୱାମିସେବାରେ ଅନୁରତା
ତେଜିଣ ଅଚଳ ବସୁଧା
ସ୍ୱାମିସଙ୍ଗେ ସେ ଚଳନ୍ତି
ଯେଣୁ ଏ ପୂର୍ବେ ତପ କଲେ
ତେଣୁ ଦେବଙ୍କ ଊର୍ଦ୍ଧ୍ୱେ ଗଲେ
ଯେସନେ ଲକ୍ଷ୍ମୀ ନାରାୟଣ
ଏ ବେନି ଦିଶନ୍ତି ତେସନ
ସେ ଅନୁସାରେ ଏ ଯୁବତୀ
ଯେଣୁ ଭଜିଲେ ନିଜପତି ।୨୫,୨୬

ତେଷାଂ ଦୁରାପଂ କିନ୍ତ୍ୱନ୍ୟନ୍ମର୍ତ୍ତ୍ୟାନାଂ ଭଗବତ୍ପଦମ୍ ।
ଭୁବି ଲୋଲାୟୁଷୋ ଯୋ ବୈ ନୈଷ୍କର୍ମ୍ୟଂ ସାଧୟନ୍ତ୍ୟୁତ । ୨୭ ।
ସ ବଞ୍ଚିତୋ ବତାତ୍ମଧ୍ରୁକ୍ କୃଚ୍ଛ୍ରେଣ ମହତା ଭୁବି ।
ଲବ୍ଧ୍ୱାପବର୍ଗ୍ୟଂ ମାନୁଷ୍ୟଂ ବିଷୟେଷୁ ବିଷଜ୍ଜତେ । ୨୮ ।

ଶ୍ରୀମୈତ୍ରେୟ ଉବାଚ ।

ସ୍ତୁବତୀଷ୍ୱମରସ୍ତ୍ରୀଷୁ ପତିଲୋକଂ ଗତା ବଧୂଃ ।
ଯଂ ବା ଆତ୍ମବିଦାଂ ଧୂର୍ଯ୍ୟୋ ବୈଣ୍ୟଃ ପ୍ରାପାଚ୍ୟୁତାଶ୍ରୟଃ । ୨୯ ।
ଇତ୍ଥମ୍ଭୂତାନୁଭାବୋଽସୌ ପୃଥୁଃ ସ ଭଗବତ୍ତମଃ ।
କୀର୍ତ୍ତିତଂ ତସ୍ୟ ଚରିତମୁଦ୍ଦାମଚରିତସ୍ୟ ତେ । ୩୦ ।

---

ଭୂମଣ୍ଡଳରେ ଯେଉଁ ବ୍ୟକ୍ତିମାନେ କ୍ଷଣଭଙ୍ଗୁର ପରମାୟୁ ପ୍ରାପ୍ତ ହୋଇ ଭଗବାନଙ୍କୁ ଲାଭ କରି ପାରନ୍ତି ଏବଂ ତାଦୃଶ ଜ୍ଞାନଲାଭ କରନ୍ତି, ସେମାନଙ୍କ ପକ୍ଷରେ ଦେବାଧିପଦ ଦୁର୍ଲ୍ଲଭ ନୁହେଁ । ୨୭ ।

ବହୁକଷ୍ଟର ଫଳରେ ଅପବର୍ଗର ସାଧକ ମନୁଷ୍ୟଜନ୍ମ ଲାଭ କରିଥାଏ, ମାତ୍ର ଯେଉଁ ବ୍ୟକ୍ତି ଅତ୍ୟନ୍ତ ବିଷୟାସକ୍ତ ହୋଇ ପଡ଼େ, ସେ ନିଶ୍ଚୟ ଆତ୍ମଦ୍ରୋହୀ । ୨୮ ।

ଶ୍ରୀମୈତ୍ରେୟ କହିଲେ :—

ଅମରପତ୍ନୀମାନେ ଏହିପରି ସ୍ତବ କରୁଥାନ୍ତି, ଏଣେ ପୃଥୁପତ୍ନୀ ଅର୍ଚ୍ଚି ଆତ୍ମବିଦ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଭଗବଦ୍‌ଭକ୍ତ ପୃଥୁ ଯେଉଁ ଲୋକ ପ୍ରାପ୍ତ ହୋଇଥିଲେ, ସେହି ଲୋକକୁ ଗମନ କଲେ । ୨୯ ।

ସେହି ଅଲୌକିକ ପ୍ରଭାବ ସମ୍ପନ୍ନ ଉଦାରଚରିତ ପୃଥୁଙ୍କର ଚରିତ ତୁମ୍ଭ ନିକଟରେ କୀର୍ତ୍ତନ କଲି । ୩୦ ।

---

ଧନ୍ୟ ସେ ମର୍ତ୍ତ୍ୟ କର୍ମ୍ମ ଭୂମି
ଅଳ୍ପଆୟୁଷ ପ୍ରାଣୀ ଜନ୍ମି
ସ୍ୱଜାତି କର୍ମ୍ମ ଆଚରନ୍ତି
ସକଳ ଅପଦୁଁ ତରନ୍ତି
ନିଷ୍ପାପୀ ଜନ ଯେବା ନର
ସ୍ୱର୍ଗାପବର୍ଗ ନୋହେ ଦୂର
ଏଣୁ ନିଷ୍କାମ ଯାର ମତ
ସେ ଲଭେ ଏକାନ୍ତ ଭକତ
ସ୍ୱର୍ଗାଦି ଭୋଗ କିବା ତାର
ଯହିଁ ବସନ୍ତି ଭକ୍ତନର

କୃଷ୍ଣ ଚରିତ ନିତ୍ୟେ ଶ୍ରବ
ପ୍ରେମ ପୁଲକେ ଅଶ୍ରୁ ଦ୍ରବ
ନିର୍ମ୍ମଳ ହୋଏ ବୁଦ୍ଧିମତ
ଅଜ୍ଞାନ ମୋହ ବିନାଶନ୍ତ
ଏ ଭାବ ନ ଘେନେ ଯା ଚିତ୍ତ
ସେ ଦୁଃଖସାଗରେ ପୀଡ଼ିତ
ସେ ଆତ୍ମାବଧେ ଭାଗୀ ହୋଇ
ଯେଜାତ୍ୟବିଷୟେମଜ୍ଜଇ । ୨୭, ୨୮

ଶ୍ରୀ ମୈତ୍ରେୟ ଉବାଚ—
ଏମନ୍ତେ ଶୁଣ ହେ ବିଦୁର
ସେ ଦେବକାମିନୀ ପ୍ରଚୁର
ସେ ଦେଖି ଅର୍ଚ୍ଚିକି ସ୍ତୁବନ୍ତି
ପ୍ରବେଶ ପତିଲୋକେ ସତୀ
ସେ ପୃଥୁ ଭକତ ଉତ୍ତମ
ଯାହାର ଚରିତ ଉଦ୍ଦାମ
ବର୍ଣ୍ଣିଲୁଁ ତାହାଙ୍କ ଚରିତ
ଶ୍ରବଣେ ହୋଇ ଶୁଦ୍ଧଚିତ୍ତ

ଯ ଇଦଂ ସୁମହତ୍ପୁଣ୍ୟଂ ଶ୍ରଦ୍ଧୟାବହିତଃ ପଠେତ୍ ।
ଶ୍ରାବୟେଚ୍ଛୃଣୁୟାଦ୍ୱାପି ସ ପୃଥୋଃ ପଦବୀମିୟାତ୍ । ୩୧ ।
ବ୍ରାହ୍ମଣୋ ବ୍ରହ୍ମବର୍ଚସ୍ୱୀ ରାଜନ୍ୟୋ ଜଗତୀପତିଃ ।
ବୈଶ୍ୟଃ ପଠନ୍ ବିଟ୍ପତିଃ ସ୍ୟାତ୍ ଶୂଦ୍ରଃ ସତ୍ତମତାମିୟାତ୍ । ୩୨ ।
ତ୍ରିକୃତ୍ୱ ଇଦମାକର୍ଣ୍ଣ୍ୟ ନରୋ ନାର୍ଯ୍ୟଥବାଦୃତା ।
ଅପ୍ରଜଃ ସୁପ୍ରଜତମୋ ନିର୍ଦ୍ଧନୋ ଧନବତ୍ତମଃ-
ଅସ୍ପଷ୍ଟକୀର୍ତ୍ତିଃ ସୁଯଶା ମୂର୍ଖୋ ଭବତି ପଣ୍ଡିତଃ । ୩୩ ।
ଇଦଂ ସ୍ୱସ୍ତ୍ୟୟନଂ ପୁଂସାମମଙ୍ଗଲ୍ୟନିବାରଣମ୍ ।
ଧନ୍ୟଂ ଯଶସ୍ୟମାୟୁଷ୍ୟଂ ସ୍ୱର୍ଗ୍ୟଂ କଳିମଲାପହମ୍ । ୩୪ ।
ଧର୍ମ୍ମାର୍ଥକାମମୋକ୍ଷଣାଂ ସମ୍ୟକ୍ ସିଦ୍ଧିମଭୀପ୍ସୁଭିଃ ।
ଶ୍ରଦ୍ଧୟୈତଦନୁଶ୍ରାବ୍ୟଂ ଚତୁର୍ଣ୍ଣାଂ କାରଣଂ ପରମ୍ । ୩୫ ।

---

ଯେ ଅବହିତ ହୋଇ ଏହି ସୁମହତ୍ ଚରିତ ପାଠକରନ୍ତି ବା ଅନ୍ୟକୁ ଶ୍ରବଣ କରାନ୍ତି ବା ନିଜେ ଶ୍ରବଣ କରନ୍ତି, ତାହାଙ୍କର ପୃଥୁଙ୍କ ତୁଲ୍ୟ ଗତି ହୁଏ । ୩୧ ।

ଏ ଚରିତ ପାଠକଲେ ବ୍ରାହ୍ମଣମାନେ ବ୍ରହ୍ମତେଜ, କ୍ଷତ୍ରିୟମାନେ ଆଧିପତ୍ୟ, ବୈଶ୍ୟମାନେ ବୈଶ୍ୟାଧି ସ୍ୱାମୀତ୍ୱ ଓ ଶୂଦ୍ରମାନେ ସାଧୁତ୍ୱ ଲାଭ କରନ୍ତି । ୩୨ ।

ନରନାରୀ ଶ୍ରଦ୍ଧାସହକାରେ ଏହି ଆଖ୍ୟାନ ତିନିବାର ଶ୍ରବଣ କଲେ ପୁତ୍ରହୀନ ସତ୍‌ପୁତ୍ରଲାଭ କରେ, ନିର୍ଦ୍ଧନ ଧନୀଶ୍ରେଷ୍ଠ ହୁଏ, ଯଶୋହୀନ ବିପୁଳକୀର୍ତ୍ତିଶାଳୀ ହୁଏ ଏବଂ ମୂର୍ଖ ପଣ୍ଡିତ ହୁଏ । ୩୩ ।

ଏହି ଆଖ୍ୟାନ ପୁରୁଷର ମଙ୍ଗଳଦାୟକ, ଅମଙ୍ଗଳ ନିବର୍ତ୍ତକ, ଯଶ ଓ ଆୟୁବର୍ଦ୍ଧକ ଏବଂ କଳିଦୋଷ ନାଶକ । ୩୪ ।

ଯେଉଁ ବ୍ୟକ୍ତି ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବର୍ଗ ସିଦ୍ଧି କାମନା କରେ, ସେ ତହିଁର ମୂଳ ସ୍ୱରୂପ ଏହି ପୃଥୁ ଚରିତ ପୁନଃ ପୁନଃ ଶ୍ରଦ୍ଧା ସହକାରେ ଶ୍ରବଣ କରିବ । ୩୫ ।

---

ଏ ପୃଥୁ ଗୁଣ ଉପାଖ୍ୟାନ
ଶ୍ରଦ୍ଧାରେ ପଢ଼ାନ୍ତି ଯେ ଜନ
ସେ ପୃଥୁ ପଦକୁ ଲଭନ୍ତି
ଜନ୍ମ ମରଣୁଁ ନିସ୍ତରନ୍ତି ।୨୧-୩୧
ଏ ଚାରିବର୍ଣ୍ଣ ମଧ୍ୟଗତେ
ପଢନ୍ତି ଶୁଣନ୍ତି ଯେ ନିତ୍ୟେ
ତା ସର୍ବକାମ ହୋଏ ସିଦ୍ଧି
ସକଳ ଗୁଣେ ସେ ପ୍ରସିଦ୍ଧି
ଯେ ବିପ୍ରଜନ ଏହା ପଢେ
ବ୍ରହ୍ମପଦକୁ ଲଭେ ଦୃଢେ

କ୍ଷତ୍ରିୟ ଯେବେ ଅଧ୍ୟୟନ
ରାଜତ୍ୱ ପଣେ ସେ ନିପୁଣ
ଗାୟନ କଲେ ବୈଶ୍ୟ ଜନ
କୃଷ୍ୟାଦି ବାଣିଜ୍ୟେ ନିପୁଣ
ସେ ଜ୍ଞାନିଜନେ ଶ୍ରେଷ୍ଠ ହୋଇ
ଧର୍ମ୍ମାର୍ଥ ଜୀବନେ ଜୀଅଇ
ଶ୍ରବଣେ ଶୂଦ୍ର ହୋଏ ସୁଖୀ
ଭକତ ମଧ୍ୟେ ତାକୁ ଲେଖି ।୩୨।
ତ୍ରିକାଳ ଶ୍ରବଣ କୀର୍ତ୍ତନେ
ଯେ ନର ନାରୀ ଶୁଦ୍ଧମନେ

ସକଳ କାମାର୍ଥ ଲଭନ୍ତି
ଭୋଗାନ୍ତେ ବୈକୁଣ୍ଠେ ବସନ୍ତି
ନିର୍ଦ୍ଧନ ଅପୁତ୍ରିକ ଜନ
ଲଭେ ଅପତ୍ୟ ବହୁଧନ ।୩୩।
ଅକୀର୍ତ୍ତିମନ୍ତ ଯେବା ଜନ
ଶ୍ରବଣେ ଲଭେ କୀର୍ତ୍ତିମାନ
ସେ ପୁଣ୍ୟ ପୃଥୁର ଚରିତ
ଶ୍ରବଣେ ମୂର୍ଖହିଁ ପଣ୍ଡିତ
ଯେ ଅନୁଦିନେ ଅଧ୍ୟୟନ୍ତି
ଅଶୁଭ କର୍ମ୍ମ ବିନାଶନ୍ତି

ବିଜୟାଭିମୁଖୋ ରାଜା ଶ୍ରୁତ୍ୱୈତଦଭିଯାତି ଯାନ୍ ।
ବଳିଂ ତସ୍ମୈ ହରନ୍ତ୍ୟଗ୍ରେ ରାଜାନଃ ପୃଥବେ ଯଥା । ୩୬ ।
ମୁକ୍ତାନ୍ୟସଙ୍ଗୋ ଭଗବତ୍ୟମଲାଂ ଭକ୍ତିମୁଦ୍‌ବହନ୍ ।
ବୈଣ୍ୟସ୍ୟ ଚରିତଂ ପୁଣ୍ୟଂ ଶୃଣୁୟାତ୍ ଶ୍ରାବୟେତ୍ ପଠେତ୍ । ୩୭ ।
ବୈଚିତ୍ରବୀର୍ଯ୍ୟାଭିହିତଂ ମହନ୍ମାହାତ୍ମ୍ୟସୂଚକମ୍ ।
ଅସ୍ମିନ୍ କୃତମତିମର୍ତ୍ତ୍ୟଃ ପାର୍ଥବୀଂ ଗତିମାପ୍ନୁୟାତ୍ । ୩୮ ।
ଅନୁଦିନମିଦମାଦରେଣ ଶୃଣ୍ୱନ୍ ପୃଥୁଚରିତଂ ପ୍ରଥୟନ୍ ବିମୁକ୍ତସଙ୍ଗଃ ।
ଭଗବତି ଭବସିନ୍ଧୁପୋତପାଦେ ସ ଚ ନିପୁଣାଂ ଲଭତେ ରତିଂ ମନୁଷ୍ୟଃ ।୩୯।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ
ପୃଥୁଚରିତଂ ନାମ ତ୍ରୟୋବିଂଶୋଽଧ୍ୟାୟଃ । ୨୩ ।

---

ବିଜୟାଭିଳାଷୀ ରାଜା ଏହି ଆଖ୍ୟାନ ଶ୍ରବଣକରି ଯୁଦ୍ଧାଭିଯାନ କଲେ ରାଜାମାନେ ପୃଥୁଙ୍କ ତୁଲ୍ୟ ତାହାଙ୍କୁ ଉପହାର ଦିଅନ୍ତି । ୩୬ ।

ଫଳ କାମନା ରହିତହୋଇ ଭଗବାନଙ୍କଠାରେ ନିର୍ମଳ ଭକ୍ତି ପୂର୍ବକ ପୃଥୁ ଉପାଖ୍ୟାନ ପାଠ ବା ଶ୍ରବଣ ବା ଅନ୍ୟକୁ ଶ୍ରବଣ କରାଇବା ଉଚିତ । ୩୭ ।

ହେ ବିଚିତ୍ରବୀର୍ଯ୍ୟ ପୁତ୍ର ବିଦୁର ! ମୁଁ ତୁମ୍ଭ ନିକଟରେ ଭଗବଦ୍‌ଭକ୍ତ ମହାତ୍ମ୍ୟ ସୂଚକ ଏହି ପୃଥୁ ଚରିତ ବର୍ଣ୍ଣନା କଲି । ଯେଉଁ ମାନବ ମତି ସ୍ଥିରକରି ଏହି ଚରିତ ଅନୁଧ୍ୟାନ କରେ ତାହାର ପୃଥୁଙ୍କ ତୁଲ୍ୟ ଗତି ହୁଏ । ୮ ।

ଯେଉଁ ବ୍ୟକ୍ତି ବିମୁକ୍ତ ସଙ୍ଗହୋଇ ଶ୍ରଦ୍ଧା ସହକାରେ ଅନୁଦିନ ଏହି ପୃଥୁ ଚରିତ୍ର ଶ୍ରବଣ ବା କୀର୍ତ୍ତନ କରନ୍ତି ସେ ଏହି ସଂସାରରୁ ଉତ୍ତୀର୍ଣ୍ଣ ହେବାର ତରଣୀ ସ୍ୱରୂପ ଶ୍ରୀଭଗବତ୍ ପାଦପଦ୍ମ ଲାଭ କରନ୍ତି । ୩୯ ।

---

ଯଶ ଆୟୁଷ ଧନ ତାର
ଶ୍ରବଣେ ବଢ଼ଇ ନିରନ୍ତର
ଅନ୍ତରେ ଧର୍ମ୍ମ ଅର୍ଥ ସ୍ଥିର
ଲଭନ୍ତି ତ୍ରିତାପ ନିବାର ।୩୪-୩୬
ଯେବେ କ୍ଷତ୍ରିୟ ରିପୁ ଭୟେ
ଶ୍ରବଣେ ଚତୁର୍ଦ୍ଦିଗ ଜୟେ
ଏ ସର୍ବ କାମଫଳ ପାଇ
ନିରତେ ଯେ ଦୃଢ଼େ ଶୁଣଇ
ଏ ପୁଣ୍ୟ ପୃଥୁର ଚରିତ
ସଦ୍ୟ ବିଶୁଦ୍ଧ ହୋଏ ଚିତ୍ତ

ପଠନ କରେ ଯେବେ ପ୍ରାଣୀ
ସୁସାଧୁ ମଧ୍ୟେ ତାକୁ ଗଣି
ଶୁଣ ବିଦୁର ସାବଧାନେ
ସେ ପୃଥୁ ଚରିତ ଆଖ୍ୟାନେ
ଅମୃତ ରସମୟ ଗୀତ
ଶ୍ରବଣେ ନିତ୍ୟରେ ପଢ଼ିତ
ପାର୍ଥିବ ଗତି ହୋଏ ତାର
ସ୍ୱର୍ଗାପବର୍ଗ ନୋହେ ଦୂର
ଏଣୁ ଯେ ମୋହିତ ସଂସାରେ
ଅନ୍ୟଜନେ ଦେଖିଉଦ୍ଧାରେ ।୩୭-୩୯

ଚତୁର୍ଥ ସ୍କନ୍ଧେ ଭାଗବତ
ତ୍ରିବିଂଶ ଅଧ୍ୟାୟ ଚରିତ
ମୈତ୍ରେୟ ବିଦୁର ସମ୍ବାଦ
ଶ୍ରବଣେ ଖଣ୍ଡଇ ବିପଦ
କହଇ ଜଗନ୍ନାଥ ଦାସ
ସୁଜନେ ଏହି ରସେ ରସ
ଶୁଣନ୍ତେ ତୁଟେ ଭବବ୍ୟାଧି
ଶ୍ରବଣେ ପାପବନ୍ଧ ଛେଦ
ହରିଚରଣ ଆଶ୍ରେ କର
ସକଳ ପାପ ହେବ ଦୂର ।

# ଚ ତୁ ର୍ବିଂ ଶ ଅ ଧ୍ୟା ୟ ।

ଚତୁର୍ବିଂଶେ ପ୍ରପୌତ୍ରାତ୍ତୁ ପୃଥୋପ୍ରାଚୀନବର୍ହିଷଃ ।
ପ୍ରଚେତସାଂ ଜଳସ୍ଥେଭ୍ୟୋ ରୁଦ୍ରଗୀତଞ୍ଚ ବର୍ଣ୍ଣ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ ।

ବିଜିତାଶ୍ୱୋଽଧିରାଜାସୀତ୍ ପୃଥୁପୁତ୍ରଃ ପୃଥୁଶ୍ରବାଃ ।
ଯବୀୟୋଭ୍ୟୋଽଦଦାତ୍ କାଷ୍ଠା ଭ୍ରାତୃଭ୍ୟୋ ଭ୍ରାତୃବତ୍ସଳଃ । ୧ ।
ହର୍ଯ୍ୟକ୍ଷାୟାଦିଶତ୍ ପ୍ରାଚୀଂ ଧୂମ୍ରକେଶାୟ ଦକ୍ଷିଣାମ୍ ।
ପ୍ରତୀଚୀଂ ବୃକସଂଜ୍ଞାୟ ତୁର୍ଯ୍ୟାଂ ଦ୍ରବିଣସେ ବିଭୁଃ । ୨ ।

---

## ରୁଦ୍ରଗୀତ ବର୍ଣ୍ଣନ ।

ଚତୁର୍ବିଂଶ ଅଧ୍ୟାୟରେ ମହାରାଜ ପୃଥୁଙ୍କର ପ୍ରପୌତ୍ର ଦଶପ୍ରଚେତାଙ୍କୁ ରୁଦ୍ରଗୀତା ଦାନ ବିଷୟ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀମୈତ୍ରେୟ କହିଲେ :—

ବତ୍ସ ବିଦୁର ! ପୃଥୁପୁତ୍ର ମହାଯଶା ବିଜିତାଶ୍ୱ ପୃଥିବୀର ଅଧୀଶ୍ୱର ହେଲେ, ସେହି ଭ୍ରାତୃବତ୍ସଳ ସମ୍ରାଟ୍ ତାହାଙ୍କର ଚାରିଜଣ କନିଷ୍ଠଭ୍ରାତାଙ୍କୁ ଚାରିଗୋଟି ଦିଗ ପ୍ରଦାନ କରିଥିଲେ । ୧ ।

ସେ ହର୍ଯ୍ୟକ୍ଷଙ୍କୁ ପୂର୍ବଦିଗ, ଧୂମ୍ରକେଶଙ୍କୁ ଦକ୍ଷିଣଦିଗ, ବୃକଙ୍କୁ ପଶ୍ଚିମ ଓ ଦ୍ରବିଣଙ୍କୁ ଉତ୍ତରଦିଗ ପ୍ରଦାନ କରିଥିଲେ । ୨ ।

---

ପ୍ରାଚୀନବର୍ହି ପୃଥୁବଂଶେ,ତା ପୁତ୍ର ଦଶ ପ୍ରଚେତସେ । ତାହାଙ୍କୁ ଦେଲେ ରୁଦ୍ରଗୀତା,ଚତୁର୍ବିଂଶରେଏହିକଥା ॥

ଶ୍ରୀମୈତ୍ରେୟ ଉବାଚ—
ମୈତ୍ରେୟ କହନ୍ତି ବିଦୁର
ଯେ ପଅଁ ପୃଥୁର କୁମର
ବିଜିତଅଶ୍ୱ ନାମ ଯାର
ବସିଲା ନୃପାସନେ ଧାର
ତାର ଅନୁଜ ଚାରି ଭ୍ରାତ
ରାଜ୍ୟ ବାଣ୍ଟିଲେ ଯଥୋଚିତ
ଉତ୍ତର ଦକ୍ଷିଣ ପଶ୍ଚିମେ
ପୂର୍ବାଦି ଚାରି ଅନୁକ୍ରମେ । ୧ ।
ହର୍ଯ୍ୟକ୍ଷ ନାମେ ଯେ କୁମର
ତାହାର ପୂର୍ବେ ଅଧିକାର
ଧୂମକେଶୁକୁ ଦେଲେ ଭୂପ
ଦକ୍ଷିଣ ଦିଗେ ସେ ଅଧିପ
ପଶ୍ଚିମେ ବୃକ ନୃପଗ୍ରଣ
ଉତ୍ତର ଦିଗେ ସେ ଦ୍ରବିଣ । ୨ ।

ଅନ୍ତର୍ଦ୍ଧାନଗତିଂ ଶ୍ରକ୍ରାଲ୍ଲବ୍ଧାନ୍ତର୍ଦ୍ଧାନସଂଜ୍ଞିତଃ ।
ଅପତ୍ୟ ତ୍ରୟମାଧତ୍ତ ଶିଖଣ୍ଡିନ୍ୟାଂ ସୁସମ୍ମତାମ୍ । ୩ ।
ପାବକଃ ପବମାନଶ୍ଚ ଶୁଚିରିତ୍ୟଗ୍ନୟଃ ପୁରା ।
ବଶିଷ୍ଠଶାପାଦୁତ୍ପନ୍ନାଃ ପୁନର୍ଯୋଗଗତିଂ ଗତାଃ । ୪ ।
ଅନ୍ତର୍ଦ୍ଧାନୋ ନଭସ୍ୱତ୍ୟାଂ ହବିର୍ଦ୍ଧାନମବିନ୍ଦତ ।
ଯ ଇନ୍ଦ୍ରମଶ୍ୱହର୍ତ୍ତାରଂ ବିଦ୍ୱାନପି ନ ଜଘ୍ନିବାନ୍ । ୫ ।

---

ପୃଥୁନନ୍ଦନ ବିଜିତାଶ୍ୱ ଇନ୍ଦ୍ରଙ୍କ ନିକଟରୁ ଅନ୍ତର୍ଦ୍ଧାନ ବିଦ୍ୟା ଶିକ୍ଷାକରି ଅନ୍ତର୍ଦ୍ଧାନ ନାମ ଗ୍ରହଣ କରିଥିଲେ, ତାହାଙ୍କର ଶିଖଣ୍ଡିନୀ ନାମ୍ନୀ ଭାର୍ଯ୍ୟା ଗର୍ଭରେ ତିନୋଟି ପୁତ୍ର ଜାତ ହୋଇଥିଲେ । ୩ ।

ସେମାନଙ୍କର ନାମ—ପାବକ, ପାବନ ଓ ଶୁଚି । ସେମାନେ ପୂର୍ବେ ଅଗ୍ନି ଥିଲେ, ବଶିଷ୍ଠଙ୍କ ଶାପରେ ଏହିପରି ଉତ୍ପନ୍ନ ହୋଇ ଯୋଗବଳରେ ପୁନଶ୍ଚ ଅଗ୍ନିତ୍ୱ ପ୍ରାପ୍ତ ହୋଇଥିଲେ । ୪ ।

ଅନ୍ତର୍ଦ୍ଧାନ ନଭସ୍ୱତୀ ନାମ୍ନୀ ଅନ୍ୟପତ୍ନୀ ଗର୍ଭରେ ହବିର୍ଦ୍ଧାନ ନାମକ ପୁତ୍ର ଉତ୍ପାଦନ କରିଥିଲେ । ବିଜିତାଶ୍ୱ ଇନ୍ଦ୍ରଙ୍କୁ ଅଶ୍ୱାପହାରୀ ଜାଣି ସୁଦ୍ଧା ତାହାଙ୍କୁ ବିନାଶ କରି ନ ଥିବାରୁ ଇନ୍ଦ୍ର ତାହାଙ୍କୁ ଅନ୍ତର୍ଦ୍ଧାନ ବିଦ୍ୟା ଶିକ୍ଷା ଦେଇଥିଲେ । ୫ ।

---

ବିଜିତଅଶ୍ୱ ନାମ ଯାର
ସେ ଜ୍ୟେଷ୍ଠ ପୃଥୁର କୁମର
କିପାଇଁ ଅନ୍ତର୍ଦ୍ଧାନ ନାମ
ତାହାକୁ ଦେଲେ ସୁରୋତ୍ତମ
ଶୁଣି ବିଦୁର ଆଚମ୍ବିତ
ନମେ ମୈତ୍ରେୟ ପାଦଗତ

ଶ୍ରୀ ବିଦୁର ଉବାଚ—

କିଅର୍ଥେ ଅନ୍ତର୍ଦ୍ଧାନ ନାମ
ତାହାକୁ ଦେଲେ ମଘବାନ
ଏ ବଡ଼ ସଂଶୟ ମୋ ଚିତ୍ତ
ହେ ମୁନି କହିବା ତଦନ୍ତ
ଏମନ୍ତ ତାର ବାକ୍ୟ ଶୁଣି
କହେ ମୈତ୍ରେୟ ମହାମୁନି

ଶ୍ରୀ ମୈତ୍ରେୟ ଉବାଚ—

ଶ୍ରବଣେ ଇଚ୍ଛା ଯେବେ ତୋର
କହିବା ସେ ପୂର୍ବ ବିସ୍ତର
ପୃଥୁ ଯେ ଅଶ୍ୱମେଧ କଲେ
ସକଳ ଦେବଙ୍କୁ ବରିଲେ
ଯତେକ ପୂଜିଲେ ଭଗବାନ
ବେଦୋକ୍ତ କର୍ମର ବିଧାନ
ଯଜ୍ଞ ବିଧାନ ବିଧି ଯେତେ
ସମ୍ଭାର କରି ନାନାମତେ
ଏମନ୍ତେ ଯଜ୍ଞାହୁତକାଳେ
ଅଶ୍ୱ ହରିଲା ଇନ୍ଦ୍ର ଛଳେ
ବିଜିତ ଅଶ୍ୱ ତାହା ଜାଣି
ଇନ୍ଦ୍ର ନ ମାରି ଅଶ୍ୱ ଆଣି
ତା ଦେଖି କହେ ପୁରନ୍ଦର
ହେ ବୀର ବେଗେ ମାଗ ବର
ତା ଶୁଣି ସେ ପୃଥୁନନ୍ଦନ
ଅତି ଆନନ୍ଦେ ତୋଷମନ
ମୋହର ବରେ କାର୍ଯ୍ୟ ନାହିଁ
ଯେବେ ଯାଚିଲ ସୁରସାଇଁ
ଏ ତୋର ଅନ୍ତର୍ଦ୍ଧାନ ଗତି
ପ୍ରସନ୍ନେ ଦିଅ ସୁରପତି
ଶୁଣି ସନ୍ତୋଷ ମଘବାନ
ତାହାକୁ ଦେଲେ ଅନ୍ତର୍ଦ୍ଧାନ
ତେଣୁ ତା ଅନ୍ତର୍ଦ୍ଧାନ ନାମ
ଶୁଣ ବିଦୁର ପୁଣ୍ୟୋତ୍ତମ
ସେ ପୁଣ ନିଜ ରାଜ୍ୟେ ରାଜା
ଧର୍ମେ ପାଳଇ ଜନପ୍ରଜା
ତାର ଶିଖଣ୍ଡୀ ନାମେ ନାରୀ
ରୂପେ କାମିନୀ ମନୋହାରୀ
ତାହାର ଗର୍ଭେ ନୃପବର୍ଯ୍ୟେ
ପୁତ୍ରେ ଜନ୍ମିଲେ ମହାତେଜେ । ୩ ।
ପାବକ ପବମାନ ଶୁଚି
ତେଜ ଶରୀର ଶୁଭ୍ର ରୁଚି
ଅଗ୍ନି ସେ ବଶିଷ୍ଠଶାପରୁ
ଜନ୍ମିଲେ ଏ ତନ୍ତ ଯୋଗରୁ । ୪ ।
ଆର ଯେ ପତ୍ନୀ ନଭସ୍ୱତୀ
ସେ ଅନ୍ତର୍ଦ୍ଧାନର ଯୁବତୀ
ତାହାର ଗର୍ଭେ ଯେ କୁମର
ହବିର୍ଦ୍ଧାନ ନାମ ତାହାର
ତାହାକୁ କଲେ ସେ ନୃପତି
ତା ଅଂଶେ ରାଜାର ସନ୍ତତି । ୫ ।

ଗଣ୍ଡାଂ ବୃତ୍ତିଂ କରାଦାନଦଣ୍ଡଶୁଲ୍କାଦଦାରୁଣାମ୍ ।
ମନ୍ୟମାନୋ ଦୀର୍ଘସତ୍ରବ୍ୟାଜେନ ବିସର୍ଜ ହ । ୬ ।
ତତ୍ରାପି ହଂସ ପୁରୁଷଂ ପରମାତ୍ମାନମାତ୍ମଦୃକ୍ ।
ଯଜଂସ୍ତଲ୍ଲୋକତାମାପ କୁଶଲେନ ସମାଧିନା । ୭ ।
ହବିର୍ଦ୍ଧାନାଦ୍ଧବିର୍ଦ୍ଧାନିର୍ବିଦୁରସୂତ ଷଟ୍‌ସୁତାନ୍ ।
ବର୍ହିଷଦଂ ଗୟଂ ଶୁକ୍ଳଂ କୃଷ୍ଣଂ ସତ୍ୟଂ ଜିତବ୍ରତମ୍ । ୮ ।
ବର୍ହିଷତ୍ ସୁମହାଭାଗୋ ହାବିର୍ଦ୍ଧାନିଃ ପ୍ରଜାପତିଃ ।
କ୍ରିୟାକାଣ୍ଡେଷୁ ନିଷ୍ଣାତୋ ଯୋଗେଷୁ ଚ କୁରୁଦ୍‌ବହ । ୯ ।

---

ଶୁଳ୍କ ଗ୍ରହଣ, ଦଣ୍ଡବିଧାନ ଓ କରଗ୍ରହଣ ପ୍ରଭୃତି ରାଜବୃତ୍ତି କଷ୍ଟକର ଓ କଷ୍ଟର ଶାସନ ବୋଲି ମନେ କରି ସେ ଦୀର୍ଘକାଳବ୍ୟାପି ଯଜ୍ଞରେ ତାହାଙ୍କର ରାଜବୃତ୍ତି ବ୍ୟସ୍ତ କରିଥିଲେ । ୬ ।

ସେ ଯଜ୍ଞକାର୍ଯ୍ୟରେ ବ୍ୟାପୃତ ରହି ମଧ୍ୟ ହଂସପରି ପୂର୍ଣ୍ଣ ପରମାତ୍ମାଙ୍କୁ ଅର୍ଚ୍ଚନା କରି ନିପୁଣଭାବରେ ସମାଧିଅନୁଷ୍ଠାନ ଦ୍ୱାରା ଆତ୍ମଦର୍ଶନ ଲାଭକରି ଭଗବାନଙ୍କର ସାଲୋକ୍ୟ ସ୍ୱରୂପ ମୁକ୍ତିଲାଭ କରିଥିଲେ । ୭ ।

ହେ ବିଦୁର ! ହବିର୍ଦ୍ଧାନଙ୍କର ମହିଷୀ ହବିର୍ଦ୍ଧାନୀଙ୍କଠାରୁ ବର୍ହିଷଦ, ଗୟ, ଶୁକ୍ଳ, କୃଷ୍ଣ, ସତ୍ୟ ଓ ଜିତବ୍ରତ ଏହି ଛଅଗୋଟି ପୁତ୍ର ଜାତ ହୋଇଥିଲେ । ୮ ।

ହେ କୁରୁଶ୍ରେଷ୍ଠ ବିଦୁର ! ହବିର୍ଦ୍ଧାନଙ୍କ ପୁତ୍ର ମହାଭାଗ୍ୟବାନ୍ ପ୍ରଜାପତି ବର୍ହିଷତ୍ କ୍ରିୟାକାଣ୍ଡ ଆଦି ଓ ଯୋଗରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । ୯ ।

---

ସେ ଅନ୍ତର୍ଦ୍ଧାନ ନୃପବରସ୍ୟ
ବିଷୟ ଭୋଗ ନ ଯୋଗାଏ
ସେ ଜ୍ଞାନ ବୈରାଗ୍ୟ ନୃପତି
ତେଣୁ ଅତଳ ବିଭୂତି
ମନେ ବିଚାରେ ନୃପମଣି
ଏ ସବୁ ଅନର୍ଥକାରଣ
ରାଜ ସମ୍ପଦେ ଅନ୍ଧ ହୋଇ
ଅଜ୍ଞାନେ ଧର୍ମ୍ମ ନ ଜାଣଇ
କରଇ ଶତ୍ରୁ ମିତ୍ର ଭାବ
ସକଳ ଘଟେ ଏକ ଜୀବ
ରାଜତ୍ୱ ଅଧର୍ମ୍ମ କୋପ ବହି
ପ୍ରଜା ପୀଡ଼ନ୍ତି ଧନ ନେଇ
ଅଧର୍ମ୍ମମାର୍ଗେ ନୀଅନ୍ତି ବଳେ
ପ୍ରଜା ଶୋଭିତ କ୍ଷୁଧାକୁଳେ

ପ୍ରଜା ବିନାଶେ ଘୋର ପାପ
ନରକେ ପଡ଼ନ୍ତି ଅଧିପ
ମୋତେ ଏ ରାଜ୍ୟ କାର୍ଯ୍ୟ ନାହିଁ
ଯଜ୍ଞ କରିବା ସୁଖେ ରହି
ଯଜ୍ଞରେ ଛଳେ ସେ ରାଜନ
ତେଜିଲେ ନୃପତିଆସନ
ନିଷ୍କାମ ପଥ ଆଶ୍ରେ କଲେ
ପରମ ପୁରୁଷ ଭଜିଲେ
ସେ ହଂସପକ୍ଷାରେ ରାଜନ
ଗମିଲେ ବୈକୁଣ୍ଠ ଭୁବନ । ୬,୭ ।
ସେ ହବିର୍ଦ୍ଧାନ ତା କୁମର
ବସିଲେ ନୃପାସନେ ବୀର
ତା ପତ୍ନୀ ନାମ ହବିର୍ଦ୍ଧାନୀ
ସୁରମୋହନୀ ସୁଲୋଚନୀ

ତାହାର ଗର୍ଭେ ଷଡ଼ପୁତ୍ର
ଜନ୍ମିଲେ ତେଜ ବଳବନ୍ତ
ବର୍ହିଷଦ ଯେ ଶୁକ୍ଳ ସତ୍ୟ
କୃଷ୍ଣ ଗୟ ଯେ ଜିତବ୍ରତ । ୮ ।
ସେ ହବିର୍ଦ୍ଧାନର ସନ୍ତତି
ମହତ ଗୁଣ ତାର ଅତି
ସେ ଭାଗ୍ୟବନ୍ତ ଦଣ୍ଡଧର
ତା ଯଶ ତ୍ରୈଲୋକ୍ୟ ବିସ୍ତାର
ସେ କ୍ରିୟାକାଣ୍ଡରେ ନିପୁଣ
ଅଦ୍ଭୁତ ତାର କର୍ମ୍ମମାନ
ଯେ କର୍ମ୍ମ କଲା ଏ ଜଗତେ
ଶୁଣ ବିଦୁର ଏକଚିତ୍ତେ
ଭୂତ ଭବିଷ୍ୟ ବର୍ତ୍ତମାନେ
ନ ଦେଖି ଏ ତିନି ଭୁବନେ । ୯ ।

ଯସ୍ୟେଦଂ ଦେବଯଜନମନୁଯଜ୍ଞଂ ବିତନ୍ୱତଃ ।
ପ୍ରାଚୀନାଗ୍ରୈଃ କୁଶୈରାସୀଦାସ୍ତୃତଂ ବସୁଧାତଳମ୍ ।୧୦।
ସାମୁଦ୍ରୀଂ ଦେବଦେବୋକ୍ତାମୁପଯେମେ ଶତଦ୍ରୁତିମ୍ ।
ଯାଂ ବୀକ୍ଷ୍ୟ ଚାରୁସର୍ବାଙ୍ଗୀଂ କିଶୋରୀଂ ସୁଷ୍ଠ୍ୱଲଂକୃତାମ୍-
ପରିକ୍ରମନ୍ତୀମୁଦ୍ୱାହେ ଚକମେଽଗ୍ନିଃ ଶୁକୀମିବ ।୧୧।
ବିବୁଧାସୁରଗନ୍ଧର୍ବମୁନିସିଦ୍ଧନରୋରଗାଃ ।
ବିଜିତାଃ ସୂର୍ଯ୍ୟୟା ଦିକ୍ଷୁ କ୍ୱଣୟନ୍ତ୍ୟୈବ ନୂପୁରୈଃ ।୧୨।
ପ୍ରାଚୀନବର୍ହିଷଃ ପୁତ୍ରାଃ ଶତଦ୍ରୁତ୍ୟାଂ ଦଶାଭବନ୍ ।
ତୁଲ୍ୟନାମବ୍ରତାଃ ସର୍ବେ ଧର୍ମସ୍ନାତାଃ ପ୍ରଚେତସଃ ।୧୩।

ସେହି ବର୍ହିଷଦ ଗୋଟିଏ ଯଜ୍ଞାନନ୍ତରରେ ଆଉ ଗୋଟିଏ ଯଜ୍ଞ ବିସ୍ତାରକରି ପୃଥିବୀତଳକୁ ଯଜ୍ଞ ବେଦୀରେ ପୂର୍ଣ୍ଣ କରିଥିଲେ, ଏବଂ ତାହାଙ୍କର ପ୍ରାଚୀନାଗ୍ର କୁଶଦ୍ୱାରା ପୃଥିବୀକୁ ଆଚ୍ଛାଦନ କରିଥିଲେ। ତେଣୁ ଲୋକେ ତାହାଙ୍କୁ ପ୍ରାଚୀନବର୍ହି ଆଖ୍ୟା ଦେଇଥିଲେ ।୧୦।

ବର୍ହିଷଦ ଦେବ ଦେବ ବ୍ରହ୍ମାଙ୍କ ଉପଦେଶରେ ସମୁଦ୍ରକନ୍ୟା ଶତଦ୍ରୁତିଙ୍କୁ ବିବାହ କରିଥିଲେ । ସେହି ସର୍ବାଙ୍ଗସୁନ୍ଦରୀ କିଶୋରୀ ସୁଭୂଷିତା ହୋଇ ବିବାହ କାଳରେ ଅଗ୍ନି ପ୍ରଦକ୍ଷିଣ କରୁଥିଲେ, ଅଗ୍ନି ଶୁକୀଙ୍କ ପ୍ରତି ଯେପରି କାମାତୁର ହୋଇଥିଲେ ସେହିପରି କାମାତୁର ହେଲେ ।୧୧।

ନବବିବାହିତା ସେହି ନାରୀ ନୂପୁର ଧ୍ୱନିରେ ଚତୁର୍ଦ୍ଦିଗସ୍ଥ ସୁର, ଅସୁର, ଗନ୍ଧର୍ବ, ମୁନି ସିଦ୍ଧ, ନର ଉରଗଗଣଙ୍କୁ ପରାଜୟ କରିଥିଲେ ।୧୨।

ଶତଦ୍ରୁତିଙ୍କ ଗର୍ଭରେ ପ୍ରାଚୀନବର୍ହିଙ୍କ ଦଶଗୋଟି ପୁତ୍ର ଜାତ ହୋଇଥିଲେ, ସେମାନେ ସମସ୍ତେ ତୁଲ୍ୟ ନାମ ଓ ବ୍ରତଧାରୀ, ଧର୍ମସ୍ନାତ ଓ ପ୍ରଚେତା ଏହି ସଂଜ୍ଞାରେ ଅଭିହିତ ହୋଇଥିଲେ ।୧୩।

ତା ଯଜ୍ଞେ ପ୍ରାଚୀ-ନଗ୍ର ସ୍ରୁକ
କୁଶାଗ୍ରେ ଆଚ୍ଛାଦି ସକଳ
ଏଣୁ ତା ନାମ ମହୀତଳେ
ପ୍ରାଚୀନ ବରହିଷ ବୋଲେ ।୧୦।
ସେ ଯେ ପ୍ରାଚୀନ ମହୀପତି
ବିବାହି ସମୁଦ୍ରଦୁହିତି
ସେ ଶତଦ୍ରୁତି କନ୍ୟାସାର
କହିଲେକେ ନାହିଁ ପଟାନ୍ତର
ତାର ଚରିତ ପୂର୍ବକଥା
ହୋଇଲା ଯେବଣ ବ୍ୟବସ୍ଥା
ବ୍ରହ୍ମା ତାହାର ପୁରେ ଆସି
କନ୍ୟାକୁ ବରିଲେ ବିଶ୍ୱାସି
ବ୍ରହ୍ମା ବଚନେ ସିନ୍ଧୁପତି
ରାଜାରେ ବରିଲା ଦୁହିତି
ସେ ଯେ ପ୍ରାଚୀନ ନୃପବର
ବିଭା ସଂଯୋଗେ କନ୍ୟା ବର
ଅଗ୍ନି ପ୍ରଦକ୍ଷିଣ କରନ୍ତେ
ଯେହ୍ନେ ଚଞ୍ଚୁଂଶୁ ଭ୍ରମିଗତେ
ତା ରୂପ ଦେଖି ହୁତାଶନ
ଅନଙ୍ଗେହୋଇଲାଅଧୀନ।୧୧,୧୨
ସେ ଶତଦ୍ରୁତି ରୂପବତୀ
ଚରଣେ ନୂପୁର ଶୋଭନ୍ତି
ସେ ମତ୍ତ-ଦ୍ୱିରଦଗମନା
ଚରଣେ ନୂପୁରସୁଧ୍ୱନି-
ଶ୍ରବଣେ ଅନଙ୍ଗ ପୀଡ଼ିତ
ମୂର୍ଚ୍ଛା ପଣ୍ଡିତ ଶୁରବନ୍ତ,
ତା ରୂପ ଦେଖି ବୁଧଜନେ
ମୋହି ପଡ଼ନ୍ତି ହତଜ୍ଞାନେ
ଅମର କିନ୍ନର ଉରଗ
ସିଦ୍ଧ ଚାରଣ ଖଗ ମୃଗ
ଇତ୍ୟାଦି ପଶୁ ଜୀବ ଯେତେ
ତା ରୂପେ ହେଲେ ବିମୋହିତେ
ତା ପ୍ରତିତୁଲ୍ୟ ଏ ଜଗତେ
ନ ଦେଖି ସ୍ୱର୍ଗ ମର୍ତ୍ତ୍ୟ ଗତେ ।୧୩।

ପିତ୍ରାଦିଷ୍ଟାଃ ପ୍ରଜାସର୍ଗେ ତପସେଽର୍ଣ୍ଣବମାବିଶନ୍ ।
ଦଶବର୍ଷ ସହସ୍ରାଣି ତପସାର୍ଚ୍ଚଂସ୍ତପସ୍ପତିମ୍ । ୧୪ ।
ଯଦୁକ୍ତଂ ପଥିରୁଦ୍ରେଣ ଗିରିଶେନ ପ୍ରସୀଦତା ।
ତଦ୍ଧ୍ୟାୟନ୍ତୋ ଜପନ୍ତଶ୍ଚ ପୂଜୟନ୍ତଶ୍ଚ ସଂଯତାଃ । ୧୫ ।

---

ପ୍ରାଚୀନ ବର୍ହି ସେମାନଙ୍କୁ ପ୍ରଜାସୃଷ୍ଟି କରିବାକୁ ଆଦେଶ ଦେବାରୁ ସେମାନେ ତପସ୍ୟା ନିମନ୍ତେ ସମୁଦ୍ରରେ ପ୍ରବେଶ କରିଥିଲେ ଏବଂ ଦଶସହସ୍ର ବର୍ଷ ତପସ୍ୟାରେ ପ୍ରବୃତ୍ତ ହୋଇ ଭଗବାନଙ୍କର ଅର୍ଚ୍ଚନା କରିଥିଲେ । ୧୪ ।

ପଥମଧ୍ୟରେ ମହାଦେବଙ୍କ ସହିତ ସେମାନଙ୍କର ସାକ୍ଷାତ ହେବାରୁ ଶିବ ପ୍ରସନ୍ନ ହୋଇ ସେମାନଙ୍କୁ ତତ୍ତ୍ୱ ଉପଦେଶ ପ୍ରଦାନ କରିଥିଲେ । ସେହି ତତ୍ତ୍ୱ ଧ୍ୟାନ, ଜପ ଓ ପୂଜା କରି ସେମାନେ ସଂଯତଭାବରେ ତପସ୍ପତିଙ୍କୁ ଅର୍ଚ୍ଚନା କରିଥିଲେ । ୧୫ ।

---

ପ୍ରାଚୀନବରହି ରାଜନ
ତାରୁତେ ହୋଇଲା ଅଧୀନ
ସକଳ ଧର୍ମ ପରିହରି
ତା ବଶ ହେଲା ଦଣ୍ଡଧାରୀ
ସେ କ୍ରୀଡ଼ାମୃଗ ଜୀବ ପ୍ରାୟ
ତା ବଚନେ ଧର୍ମ କଲା କ୍ଷୟ
ତା ବିନା ଆଜ୍ଞାରେ ରାଜନ
ନ କରେ ଅନଂକର୍ମମାନ
ରାତ୍ର ଦିବସ ନ ଜାଣିଲା
ତା ରୂପ ଧ୍ୟାନେ ଦିନ ଗଲା
ସେ ପତ୍ନୀଠାରେ ତାରସ୍ୱାଦର୍ଯ୍ୟ
ପୁତ୍ର ଜନ୍ମିଲେ ମହାତେଜେ
ସେ ଦଶ ପୁତ୍ର ଆତ୍ମା ଏକ
ଶୁଦ୍ଧ ସୁନ୍ଦର ସୁ-ବିବେକ
ସମ ଆକୃତି ରୂପବେଶ
ଏଣୁ ନାମ ପ୍ରଚେତସ ।୧୪।
ତାହାଙ୍କୁ କହି ନୃପବର
ବୋଲଇ ପ୍ରଜା ସୃଷ୍ଟି କର

ତକ୍ଷଣେ ପିତାଆଜ୍ଞାପାଇ
ସେ ଯେ ପ୍ରଚେତା ଦଶ ଭାଇ
ତପ ସାଧନେ ଆଗମନ
ପଥରେ ଭେଟିଲେ ଈଶାନ
ବୃଷଭ ବାହନେ ମହେଶ
ଡମ୍ବରୁ ବାଦ୍ୟନାଦ ଘୋଷ
ଶିରେ ସୁଧାଂଶୁ ଶୋଭାକର
ଜାହ୍ନବୀ ସ୍ରବେ ଜଟାଭାର
ଦୀର୍ଘେ ଉଚ୍ଚାରି ଉଚ୍ଚ ନାମ
ରାମ ଗୋବିନ୍ଦ କୃଷ୍ଣ ଶ୍ୟାମ
ଗୋପାଳ ଗୋବିନ୍ଦ ଶ୍ରୀହରି
ହେ ହୃଷୀକେଶ ଦଇତ୍ୟାରି
ଆନନ୍ଦେ ରୋମ ପୁଲକିତ
ପ୍ରେମ ଗଦ୍ଗଦେ ଅଶ୍ରୁପାତ
ଏମନ୍ତ ସମୟେ କୁମର
ଦର୍ଶନ କଲେ ଦେବ ହର
ଭେଟିଲେ ପୂର୍ବ ପୁଣ୍ୟ ଫଳେ
ଯା ନାମ ଧରି ଅନ୍ତକାଳେ

ପ୍ରାଣୀ ତରନ୍ତି ଅଘାର୍ଣ୍ଣବ
ଯେ ଶିବ ଦେବଙ୍କୁ ଦୁର୍ଲଭ
ତାହାଙ୍କୁ ଗୃହ୍ଣିଣ ଗିରିଶ
ବୋଲନ୍ତି ଶୁଣ ବାଳ ଶିଷ୍ୟ
କାହାର ପୁତ୍ର ତୁମ୍ଭେମାନେ
କି ନାମ ଗୋତ୍ର କିବା ମନେ
ବୟସ ଆକୃତି ସମଦୃଶ
ବାଳ ନବୀନ ତୁମ୍ଭେ ଦଶ
କି ଅର୍ଥେ ଶ୍ରମେ ଆଗମନ
କହ ସଂଶୟ ତେଜି ମନ
ସେ ଦେବବାକ୍ୟସୁମଧୁର
ଅମୃତ ଜିଣି ସୁଧାକର
ଶୁଣି ସନ୍ତୋଷ ଦଶଭାଇ
ବୋଲନ୍ତି ଶିରେ କର ଦେଇ
ଶୁଣିବା ପ୍ରଭୁ ଦେବଈଶ
ପ୍ରଚେତା ନାମେ ଆମ୍ଭେ ଦଶ
ସୁପ୍ରାଚୀ ନଗ୍ର ଅଧିପତି
ତା ସୁତେ ଆମ୍ଭେ ଉତପତି

ଶ୍ରୀବିଦୁର ଉବାଚ ।
ପ୍ରଚେତସାଂ ଗିରିତ୍ରେଣ ଯଥାସୀତ୍ ପଥି ସଙ୍ଗମଃ ।
ଯଦୁତାହ ହରଃ ପ୍ରୀତସ୍ତନ୍ନୋ ବ୍ରହ୍ମନ୍ ବଦାର୍ହସି । ୧୬ ।
ସଙ୍ଗମଃ ଖଲୁ ବିପ୍ରର୍ଷେ ଶିବେନେହ ଶରୀରିଣାମ୍ ।
ଦୁର୍ଲଭୋ ମୁନୟୋ ଦଧ୍ୟୁରସଙ୍ଗାଦ୍ୟମଭୀପ୍ସିତମ୍ । ୧୭ ।
ଆତ୍ମାରାମୋଽପି ଯସ୍ତ୍ୱସ୍ୟ ଲୋକକଳ୍ପସ୍ୟ ରାଧସେ ।
ଶକ୍ତ୍ୟା ଯୁକ୍ତୋ ବିଚରତି ଘୋରୟା ଭଗବାନ୍ ଭବଃ । ୧୮ ।
ଶ୍ରୀମୈତ୍ରେୟ ଉବାଚ ।
ପ୍ରଚେତସଃ ପିତୁର୍ବାକ୍ୟଂ ଶିରସାଦାୟ ସାଧବଃ ।
ଦିଶଂ ପ୍ରତୀଚୀଂ ପ୍ରୟୟୁସ୍ତପସ୍ୟାଦୃତଚେତସଃ । ୧୯ ।

---

ଶ୍ରୀବିଦୁର କହିଲେ :—

ହେ ବ୍ରହ୍ମନ୍ ପଥମଧ୍ୟରେ ମହାଦେବ ପ୍ରଚେତାମାନଙ୍କୁ ଦର୍ଶନ ଦେଇ ପ୍ରସନ୍ନ ଭାବରେ ଯାହା କହିଥିଲେ, ତାହା ଆପଣ ସଠିକଭାବରେ କୀର୍ତ୍ତନକରନ୍ତୁ । ୧୬ ।

ମୁନିମାନେ ଯେଉଁ ଶିବଙ୍କୁ ପାଇବା ଲାଗି ସଙ୍ଗ ତ୍ୟାଗକରି ଧ୍ୟାନ କଲେ ସୁଦ୍ଧା ଦର୍ଶନ ଲାଭ କରି ପାରନ୍ତି ନାହିଁ, ସେହି ଶିବଙ୍କ ସହିତ ଶରୀରଧାରୀ ପୁରୁଷମାନଙ୍କର କିପରି ସାକ୍ଷାତ ହେଲା ? । ୧୭ ।

ସେହି ଶିବ ଆତ୍ମାରାମ ହେଲେ ମଧ୍ୟ ଘୋର ଶକ୍ତିସହିତ ଯୁକ୍ତହୋଇ ଏହି ଲୋକସୃଷ୍ଟି ରକ୍ଷାନିମିତ୍ତ ବିଚରଣ କରନ୍ତି । ୧୮ ।

ଶ୍ରୀମୈତ୍ରେୟ କହିଲେ :—ହେ ବିଦୁର ! ପ୍ରଚେତାଗଣ ପିତାଙ୍କର ବାକ୍ୟ ଶିରୋଧାର୍ଯ୍ୟ କରି ତପସ୍ୟା ନିମିତ୍ତ ପରମ ଉତ୍ସାହରେ ପଶ୍ଚିମଦିଗକୁ ଗମନ କରିଥିଲେ । ୧୯ ।

---

ପିତା ବଚନେ ତପ ଅର୍ଥେ
ଅଇଲୁଁ ପ୍ରାଚୀ ଦିଶ ପଥେ
କଠୋର ତପ ସିଦ୍ଧ କରି
ଭବେ ସେବିବୁଁ ନରହରି
ତୁମ୍ଭ ଦର୍ଶନେ ଯୋଗେଶ୍ୱର
ଆମ୍ଭ ସଂଶୟ ହେଲା ଦୂର
ସେ ବାଳ ବାକ୍ୟେ ଉମାସାଇଁ
ସନ୍ତୋଷେ ତାଙ୍କୁ ଦୀକ୍ଷା ଦେଇ
ସେ ତପେ ତୋଷି ଭଗବାନ
ଅନନ୍ଦେ ଗଲେ ନିଜ ସ୍ଥାନ । ୧୫, ୧୬
ଶୁଣି ବିଦୁର ବିସ୍ମୟିତ
ପୁଣି ସଂଶୟ କରି ଚିତ୍ତ

କହେ ମୈତ୍ରେୟ ମୁଖ ଚାହିଁ
ଅଦ୍ଭୁତ କହିଲ ଗୋସାଇଁ
ନର ଅମରେ କାହିଁ ସଙ୍ଗ
କେସନେ ହୋଇଲା ସଂଯୋଗ
ଏ ବଡ ସଂଶୟ ମୋ ଚିତ୍ତେ
ହେ ମୁନି ଫେଡ କହି ମୋତେ
ଯେ କାଳରୁଦ୍ର ରୂପେ ସ୍ଥିତ
ଉତ୍ପତ୍ତି ପାଳଣ ନାଶନ୍ତ
ସେ ଯେ ପ୍ରଚେତା ଭାଇ ଦଶ
କି ରୂପେ ତାଙ୍କୁ କଲେ ତୋଷ
ଦେବ ମାନବେ ଭେଟ କାହିଁ
ସେ ଯେ ଭେଟିଲେ ଉମାସାଇଁ

ଅତି ଦୁର୍ଲଭ ମୋକ୍ଷ ଅଙ୍ଗ
ମନୁଷ୍ୟେ ହୋଇଲେ ସଂଯୋଗ
ଯେ ମୁକ୍ତସଙ୍ଗ ଯୋଗୀଜନେ
ଯାଙ୍କୁ ଭାବନ୍ତି ତତ୍ତ୍ୱଜ୍ଞାନେ
ଧ୍ୟାନ ଧାରଣେ ନ ଦେଖନ୍ତି
କେଉଁ ତୋଷିଲେ କାଳମୂର୍ତ୍ତି
ସେ ଆତ୍ମନିରତ ପୁରୁଷ
ଘୋର ଶକ୍ତିଏ ଯାର ପାଶ
ସେ ଶିବ ମୃତ୍ୟୁ-ଦଣ୍ଡ ଧରେ
ଏ ଚରାଚର-ପ୍ରାଣ ହରେ
ତେଣୁ ସଂଶୟ ମୋର ଚିତ୍ତ
ହେ ମୁନି କହିବା ତଦନ୍ତ । ୧୭-୧୯

ସମୁଦ୍ରମୁପବିସ୍ତୀର୍ଣ୍ଣମପଶ୍ୟନ୍ ସୁମହତ୍ ସରଃ ।
ମହନ୍ମନ ଇବ ସ୍ୱଚ୍ଛଂ ପ୍ରସନ୍ନସଲିଳାଶୟମ୍ । ୨୦ ।
ନୀଲରକ୍ତୋତ୍ପଳାମ୍ଭୋଜକହ୍ଲାରେନ୍ଦୀବରାକରମ୍ ।
ହଂସସାରସଚକ୍ରାହ୍ୱକାରଣ୍ଡବନିକୂଜିତମ୍ । ୨୧ ।
ମତ୍ତଭ୍ରମରସୌସ୍ୱର୍ଯ୍ୟ ହୃଷ୍ଟରୋମଲତାଙ୍ଘ୍ରିପମ୍ ।
ପଦ୍ମକୋଶରଜୋ ଦିକ୍ଷୁ ବିକ୍ଷିପତ୍ପବନୋତ୍ସବମ୍ । ୨୨
ତତ୍ର ଗାନ୍ଧର୍ବମାକର୍ଣ୍ଣ୍ୟ ଦିବ୍ୟମାର୍ଗମନୋହରମ୍ ।
ବିସିସ୍ମ୍ୟୁ ରାଜପୁତ୍ରାସ୍ତେ ମୃଦଙ୍ଗପଣବାଦ୍ୟନୁ । ୨୩ ।

କିୟଦ୍‌ଦୂର ଗମନ କଲା ପରେ ସେମାନେ ଗୋଟିଏ ସୁବୃହତ୍ ସମୁଦ୍ର ତୁଲ୍ୟ ସରୋବର ଦେଖିଲେ, ଏହି ସରୋବରଟିର ଜଳ ମହତ୍ ବ୍ୟକ୍ତିର ମାନସତୁଲ୍ୟ ନିର୍ମଳ ଏବଂ ତହିଁରେ ମତ୍ସ୍ୟାଦି ଜଳଜନ୍ତୁ ପ୍ରସନ୍ନ ଭାବରେ ଅବସ୍ଥାନ କରୁଥିଲେ । ୨୦ ।

ତହିଁରେ ବହୁନୀଳୋତ୍ପଳ, ରକ୍ତୋତ୍ପଳ, ପଦ୍ମ, କହ୍ଲାର ଇତ୍ୟାଦି ଜଳଜପୁଷ୍ପ ପ୍ରସ୍ଫୁଟିତ ହୋଇ ତହିଁର ଶୋଭାବର୍ଦ୍ଧନ କରୁଥିଲା ଏବଂ ହଂସ, ସାରସ, ଚକ୍ରବାକ, କାରଣ୍ଡବ ପ୍ରଭୃତି ଜଳଚର ପକ୍ଷିଗଣ ତହିଁରେ କ୍ରୀଡ଼ା କରି କୋଳାହଳ କରୁଥିଲେ । ୨୧

ତହିଁର ତୀରରେ ବିବିଧ ବଲ୍ଲରୀ ଓ ବିଟପୀ ମତ୍ତମଧୁକରର ମଧୁର ସ୍ୱନରେ ପୁଲକିତ ହୋଇ ରହିଥିଲା, ସେଠାରେ ପୁଷ୍ପରାଗ ଆକର୍ଷଣ କରି ବାୟୁ ଦିଗ ବିଦିଗରେ ଆନନ୍ଦ ପ୍ରବାହ ବିସ୍ତାର କରୁଥିଲା । ୨୨

ସେହି ରାଜପୁତ୍ରମାନେ ସେଠାରେ ମୃଦଙ୍ଗ, ପଣବ ବାଦ୍ୟସହ ମନୋହର ସୁର ସଙ୍ଗୀତ ଶୁଣି ବିସ୍ମିତ ହୋଇଥିଲେ । ୨୩ ।

ଶୁଣ ବିଦୁର ସାବଧାନେ
ଯେ ପୂର୍ବ ଆଦ୍ୟନ୍ତ ବିଧାନେ
ଯେ ଶିବ ଶରୀରେ ଅଶେଷ
ସ୍ଥିତ ପାଳନ କରେ ନାଶ
କର୍ମାନୁସାରେ ପ୍ରାଣିଙ୍କର
ଉତ୍ପତ୍ତି ପାଳନ ସଂହାର
ଅବିଦ୍ୟା କର୍ମ କାଳରୂପୀ
ସେ ଶିବ ମୂର୍ତ୍ତିରୂପେ ବ୍ୟାପି
ସୁବିଦ୍ୟା ଆତ୍ମର ଯାହାର
ତାକୁ ସନ୍ତୋଷ ଶୂଳଧର
ସମ ବିଷମ ତାଙ୍କ ନାହିଁ
ମିତ୍ର ଅରିର ଅବା କାହିଁ
ସେଯେ ପ୍ରଚେତା ଭାଇଦଶ
ଯେଣୁ ସେ ପିତାବାକ୍ୟ ତୋଷ

ତପ ସାଧନେ ଆଗମନ
ତେଜି ଅଚଳ ଦେଶମାନ
ସମୁଦ୍ର ନିକଟେ ମିଳିଲେ
ଦିବ୍ୟ ସରୋବରେ ଦେଖିଲେ
ସେ ଜଳ ଅତ୍ୟନ୍ତ ନିର୍ମଳ
ଦର୍ଶନେ ହରେ ତୃଷାକୁଳ
ନିର୍ମଳ ଯେହ୍ନେ ସାଧୁମନ
ତେସନ ଦିଶଇ ଶୋଭନ । ୨୦, ୨୧
ପୁଷ୍ପସମୂହେ ବିରାଜନ୍ତି
ଯେହ୍ନେ ଆକାଶେ ଗ୍ରହପନ୍ତି
ନୀଳ ଉତ୍ପଳ ଆଦି କରି
ପୁଷ୍ପ ସମୂହେ ଛନ୍ତି ପୂରି
ପଙ୍କଜାରୁଣ ସୁପ୍ରକାଶେ
ଶୋଭନ୍ତି ଇନ୍ଦୀବର ପୁଷ୍ପେ

ସେ ଜଳେ ନାନା ପକ୍ଷିକୁଳେ
କ୍ରୀଡ଼ନ୍ତି କାମେ ମତ୍ତ ହେଳେ
ହଂସ ସାରସ ଚକ୍ରବାକ
କାରଣ୍ଡ କୂଜିତ ଡାହୁକ
ମତ୍ତ ଭ୍ରମରେ ସ୍ୱନ ଦ୍ୟନ୍ତି
ଆନନ୍ଦେ ମଧୁପାନେ ମାତି
ତୀରେ ଶୋଭନ୍ତି ତରୁଗଣେ
ବିବିଧ ଲତା ଆଚ୍ଛାଦନେ
ଶୁକ କୋକିଳ ପକ୍ଷିଗଣେ
ସୁସ୍ୱର ନାଦ ଅନୁକ୍ଷଣେ
ପଦ୍ମକେଶରରଜ ଘେନ
ଶୀତଳ ବହଇ ପବନେ
ସୁଗନ୍ଧ ପୁଷ୍ପ ସୌରଭରେ
ଦିଗେ ବିଦିଗେ ସେ ପ୍ରସରେ

ତର୍ହ୍ୟେବ ସରସସ୍ତସ୍ମାନ୍ନିଷ୍କ୍ରାମନ୍ତଂ ସହାନୁଗମ୍ ।
ଉପଗୀୟମାନମମରପ୍ରବରଂ ବିବୁଧାନୁଗୈଃ । ୨୪ ।
ତପ୍ତହେମନିକାୟାଭଂ ଶିତିକଣ୍ଠଂ ତ୍ରିଲୋଚନମ୍ ।
ପ୍ରସାଦସୁମୁଖଂ ବୀକ୍ଷ୍ୟ ପ୍ରଣେମୁର୍ଜାତକୌତୁକାଃ । ୨୫ ।
ସ ତାନ୍ ପ୍ରପନ୍ନାର୍ତ୍ତିହରୋ ଭଗବାନ୍ ଧର୍ମ୍ମବତ୍ସଳଃ ।
ଧର୍ମଜ୍ଞାନ୍ ଶୀଳସମ୍ପନ୍ନାନ୍ ପ୍ରୀତଃ ପ୍ରୀତାନୁବାଚ ହ । ୨୬ ।

---

ସେହି ସମୟରେ ସେମାନେ ଦେଖିଲେ ଯେ ତପ୍ତ ହେମବର୍ଣ୍ଣ ତୁଲ୍ୟ କାନ୍ତି ନୀଳକଣ୍ଠ ଅମରଶ୍ରେଷ୍ଠ ମହାଦେବ ଅନୁଚର ବର୍ଗଙ୍କ ଦ୍ୱାରା ସ୍ତୂୟମାନ ହୋଇ ଭକ୍ତମାନଙ୍କ ପ୍ରତି ପ୍ରସନ୍ନଭାବରେ ସରୋବରରୁ ଉଠି ଆସୁଥିଲେ, ପ୍ରଚେତାମାନେ ତାହାଙ୍କୁ ଦେଖି କୌତୁହଳାକ୍ରାନ୍ତ ହୋଇ ପ୍ରଣାମ କରିଥିଲେ ।୨୪,୨୫।

ଆଶ୍ରିତ ଜନ ଦୁଃଖହାରୀ ଭକ୍ତବତ୍ସଳ ଭଗବାନ୍ ମହାଦେବ ପ୍ରୀତହୋଇ ଧର୍ମଜ୍ଞ, ସୁଶୀଳ, ନମ୍ରଚିତ୍ତ ପ୍ରଚେତାମାନଙ୍କୁ କହିଲେ । ୨୬ ।

---

ସେ ଗନ୍ଧବାୟୁ ଘ୍ରାଣେ ମୋଦ
ସୁରେଶ ସଙ୍ଗୀତ ବାଦ୍ୟ ନାଦ
ତାଳ ମୃଦଙ୍ଗ ଯନ୍ତ୍ର ବୀଣା
ସ୍ୱର ମୂର୍ଚ୍ଛନା ଜୟଘୋଷଣା
ଗନ୍ଧର୍ବେ ଗାଆନ୍ତି ଆନନ୍ଦେ
ସଙ୍ଗେଣ ଅପସରୀ ବୃନ୍ଦେ
ବୃଷଭ ଆରୋହି ମହେଶ
ସେ ଜଳେ ହୋଇଲେକ ଦୃଶ୍ୟ
ବେଢି ପାର୍ଶ୍ୱେ ଦେବଗଣେ
ସ୍ତବନ୍ତି ବିବିଧ ସ୍ତବନେ
ପ୍ରସାଦମୁଖ ସୁପ୍ରସନ୍ନ
ସେ ଦେବଦେବ ତ୍ରିଲୋଚନ
ତପ୍ତକାଞ୍ଚନ ପ୍ରାୟେ କାନ୍ତି
ରତ୍ନ ସମୂହେ ବିରାଜନ୍ତି
ସୁଗ୍ରୀବ କଣ୍ଠ ସୁଶୋଭନ
ସୁନୀଳ ପ୍ରଭ ତ୍ରିଲୋଚନ
ଏମନ୍ତ ସମୟେ ଜଳରେ
ଦେଖି ଆନନ୍ଦ ସୁଖଭରେ
ସଦ୍ଭାବରେ ଦଣ୍ଡବତ କଲେ
ପ୍ରପନ୍ନରକ୍ଷଣ ! ବୋଇଲେ
ହେ ଧର୍ମ୍ମରକ୍ଷଣ ଈଶାନ
ତୋ ପାଦେ ନ ସେବି ଅଜ୍ଞାନ
ପ୍ରାଣୀ ବୃଜନ ଦୁଃଖାନଳେ
ଦଗ୍‌ଧ ସନ୍ତପ୍ତ ମହାକୁଳେ
ଦାରା ତନୟ ସ୍ନେହେ ଜଡ଼
ଦୁଃଖ ସଙ୍କଟେ ନିତ୍ୟ ପଡ଼
ତୁ ନାଥ ଜଗତ ସୋଦର
ଅଧମ ପାନ ତାପହର
ତୋ ନାମ ଭଜନ୍ତି ଯେ ନିତ୍ୟ
ସେ ତରି ତାରନ୍ତି ଜଗତେ
ଏମନ୍ତେ ପ୍ରଚେତାଙ୍କ ବାଣୀ
ଶୁଣି ସନ୍ତୋଷ ଶୂଳପାଣି
ପ୍ରସନ୍ନ ଚିତ୍ତେ ଶୂଳହସ୍ତ
ଦେଖି ତାହାଙ୍କ ଶୀଳବନ୍ତ
କହନ୍ତି ପ୍ରଚେତସମାନେ
ଜାଣିଲୁଁ ତୁମ୍ଭମନ ଜ୍ଞାନେ
ତେଣୁ ଦର୍ଶନ ଦେଲୁଁ ଆଗେ
ହେ ପୁତ୍ରେ ବର ମାଗ ବେଗେ
ଶୁଣି ସାନନ୍ଦ ପ୍ରଚେତସ
ଯେସନ୍ତେ ଅମୃତ ସୁଧାରସ
ସଦ୍ଭାବରେ ଦଣ୍ଡବତେ ପଡ଼
କହନ୍ତି ଶିରେ କର ଯୋଡ଼
ହେ ପ୍ରଭୁ ତୋ ପାଦକମଳେ
ନ ଭଜି ମଜ୍ଜିଲୁଁ ଶଯ୍ୟଳେ
ବିଫଳେ ଗଲା ଆୟୁଦିନ
ତୋ କୃପାଦୃଷ୍ଟିନେ ଈଶାନ
ଏବେ ଜାଣିଲୁଁ ଆମ୍ଭେ ଚିତ୍ତେ
ତୁମ୍ଭ ଦର୍ଶନ ଆମ୍ଭ ହିତେ
ଅଶେଷ ଦୁଃଖ ଗଲା ନାଶ
ତୁମ୍ଭ ପ୍ରସନ୍ନେ ଦେବଈଶ
ହେ ଦେବ କରୁଣାସାଗର
ପ୍ରପନ୍ନ ଜନ ଦୁଃଖ ହର
ତୁମ୍ଭ ପ୍ରସନ୍ନେ ପ୍ରାଣିଙ୍କର
ସ୍ୱର୍ଗାପବର୍ଗ ନୋହେ ଦୂର
ହେ ଯୋଗେଶ୍ୱର ତୋ ମହିମା
ଜାଣି ନ ପାରେ ସୁର ବ୍ରହ୍ମା
ଆମ୍ଭେ ବାଳକ ଶିଶୁମତି
କାହୁଁ ଜାଣିବୁଁ ତୋର ଗତି
ଏ ଆଜ୍ଞା ହେବ ପ୍ରଭୁ ତୋର
ଧର୍ମ୍ମାର୍ଥ କାମ ମୋକ୍ଷ ଦାର
ଏମନ୍ତେ ନାନା ସ୍ତୁତି କରି
ପ୍ରେମ ଆନନ୍ଦେ ଅଶ୍ରୁ ପୂରି
ଶୁଣି ସାନନ୍ଦ ଉମାକାନ୍ତ
ପ୍ରସନ୍ନେ କହନ୍ତି ତତ୍ତ୍ୱ ।୨୨-୨୬

ଶ୍ରୀରୁଦ୍ର ଉବାଚ ।

ଯୂୟଂ ବେଦିଷଦଃ ପୁତ୍ରା ବିଦିତଂ ବଶ୍ଚିକୀର୍ଷିତମ୍ ।
ଅନୁଗ୍ରହାୟ ଭଦ୍ରଂ ବ ଏବଂ ମେ ଦର୍ଶନଂ କୃତମ୍ । ୨୭ ।
ଯଃ ପରଂ ରଂହସଃ ସାକ୍ଷାତ୍ ତ୍ରିଗୁଣାଜ୍ଜୀବସଂଜ୍ଞିତାତ୍ ।
ଭଗବନ୍ତଂ ବାସୁଦେବଂ ପ୍ରପନ୍ନଃ ସ ପ୍ରିୟୋ ହି ମେ । ୨୮ ।
ସ୍ୱଧର୍ମନିଷ୍ଠଃ ଶତଜନ୍ମଭିଃ ପୁମାନ୍ ବିରିଞ୍ଚତାମେତି ତତଃ ପରଂ ହି ମାମ୍ ।
ଅବ୍ୟାକୃତଂ ଭାଗବତୋଽଥ ବୈଷ୍ଣବଂ ପଦଂ ଯଥାହଂ ବିବୁଧାଃ କଲାତ୍ୟୟେ ।୨୯।

---

ଶ୍ରୀରୁଦ୍ର କହିଲେ :—

ହେ ବତ୍ସଗଣ ! ତୁମ୍ଭେମାନେ ବର୍ହିଷଦ ପୁତ୍ର, ମୁଁ ତୁମ୍ଭମାନଙ୍କର ସଂକଳ୍ପ ଅବଗତ ଅଛି, ତୁମ୍ଭମାନଙ୍କର ମଙ୍ଗଳ ହେଉ । ତୁମ୍ଭମାନଙ୍କ ପ୍ରତି ଅନୁଗ୍ରହ ପ୍ରକାଶ କରିବା ନିମିତ୍ତ ମୁଁ ତୁମ୍ଭମାନଙ୍କୁ ଦର୍ଶନ ଦେଇଅଛି । ଯେଉଁ ବ୍ୟକ୍ତି ଅତି ଗୂଢ଼ ପ୍ରକୃତି ଓ ପୁରୁଷର ନିୟନ୍ତା ସାକ୍ଷାତ୍ ଭଗବାନ୍ ବାସୁଦେବଙ୍କର ଆଶ୍ରିତ ସେ ମୋର ପ୍ରିୟ । ୨୭, ୨୮ ।

ସ୍ୱଧର୍ମନିଷ୍ଠ ପୁରୁଷମାନେ ଶତ ଜନ୍ମରେ ବ୍ରହ୍ମପଦ ପ୍ରାପ୍ତି ହୁଅନ୍ତି, ତଦନନ୍ତର ସେମାନେ ମୋତେ ପ୍ରାପ୍ତ ହୁଅନ୍ତି । କିନ୍ତୁ ଯେଉଁ ବ୍ୟକ୍ତି ଭଗବଦ୍‌ଭକ୍ତ, ସେ ଦେହାନ୍ତରେ ପ୍ରପଞ୍ଚାତୀତ ବୈକୁଣ୍ଠପଦ ପ୍ରାପ୍ତ ହୁଏ, ମୁଁ ପ୍ରତି ମୁହୂର୍ତ୍ତରେ ପ୍ରକାଶମାନ ହୋଇ ତାହାଙ୍କର ସେବା କରଥାଏ । ଆଧିକାରିକ ଶକ୍ତିରୂପୀ ଦେବତାମାନେ ନିଜନିଜର ଅଧିକାର ଶେଷରେ ଲିଙ୍ଗଦେହ ତ୍ୟାଗକରି ଏହି ପଦପ୍ରାପ୍ତ ହୋଇଥାନ୍ତି ।୨୯

---

ଶ୍ରୀ ରୁଦ୍ର ଉବାଚ—
ହେ ପୁତ୍ରେ ଶୁଣ ମୋ ଉତ୍ତର
ହରିଭକତେ ପ୍ରିୟ ମୋର
ଭକତଜନେ ମୋ ହୃଦୟ
ଏଣୁ ଭକତ ମୋର ପ୍ରିୟ
ଯେ ଯୋଗେଶ୍ୱର ବାସୁଦେବ
ଯାହାର ନାମ ଦୟାର୍ଣ୍ଣବ
ତ୍ରିଗୁଣ ପରେ ଯା ବିହାର
ପ୍ରଧାନ ପୁରୁଷ ଈଶ୍ୱର
ତାଙ୍କ ଭକତ ଯେତେ ଜନ
ସେ ମୋର ଅଟନ୍ତି ଜୀବନ
ଏଣୁ ମୁଁ ତୁମ୍ଭରେ ପ୍ରସନ୍ନ
ବୈଷ୍ଣବେ ନୁହନ୍ତି ଅଭିନ୍ନ
ତାଙ୍କ ମହିମା ଯଶ ଗୁଣ
ମୋତହୁଁ ସାବଧାନେ ଶୁଣ ।୨୭,୨୮
ଯେ ପ୍ରାଣୀ ଶତଜନ୍ମାନ୍ତର
ସ୍ୱଧର୍ମ୍ମ ନିଷ୍ଠାରେ ଆତୁର
ତଦନ୍ତେ ବ୍ରହ୍ମପଦ ପାଇ
ଅଶେଷ କଲ୍ମଷ ନାଶଇ
ସେ ବିପ୍ରଦେହେ ନିତ୍ୟାସ୍ଥରେ
ଯେ ପୁଣ୍ୟକରେ ନିରନ୍ତରେ
ଅଶେଷ କର୍ମ୍ମ ପୁଣ୍ୟଫଳେ
ସେ ମୋତେ ଲଭେ ଅନ୍ତକାଳେ
ତେବେ ବୈଷ୍ଣବପଦ ପାଇ
ଏ ଲିଙ୍ଗ ଶରୀର ନାଶଇ
ଲିଙ୍ଗଭଞ୍ଜନେ ମୋକ୍ଷଯୋଗ
ନ ଲଭେ ମୃତ୍ୟୁ ଭୟ ସଙ୍ଗ ।୨୯।

ଅଥ ଭାଗବତା ଯୂୟଂ ପ୍ରିୟାଃ ସ୍ଥ ଭଗବାନ୍ ଯଥା ।
ନ ମଦ୍‌ଭାଗବତାନାଞ୍ଚ ପ୍ରେୟାନନ୍ୟୋଽସ୍ତି କର୍ହିଚିତ୍ । ୩୦ ।
ଇଦଂ ବିବିକ୍ତଂ ଜପ୍ତବ୍ୟଂ ପବିତ୍ରଂ ମଙ୍ଗଳଂ ପରମ୍ ।
ନିଃଶ୍ରେୟସକରଞ୍ଚାପି ଶ୍ରୂୟତାଂ ତଦ୍‌ବଦାମି ବଃ । ୩୧ ।

ଶ୍ରୀମୈତ୍ରେୟ ଉବାଚ ।

ଇତ୍ୟନୁକ୍ରୋଶହୃଦୟୋ ଭଗବାନାହ ତାଞ୍ଛିବଃ ।
ବଦ୍ଧାଞ୍ଜଳୀନ୍ ରାଜପୁତ୍ରାନ୍ ନାରାୟଣପରୋ ବଚଃ । ୩୨ ।

ଶ୍ରୀରୁଦ୍ର ଉବାଚ ।

ଜିତଂ ତ ଆତ୍ମବିଦ୍ଧୁର୍ୟ୍ୟ ସ୍ୱସ୍ତୟେ ସ୍ୱସ୍ତିରସ୍ତୁ ମେ ।
ଭବତା ରାଧସା ରାଦ୍ଧଂ ସର୍ବସ୍ମା ଆତ୍ମନେ ନମଃ । ୩୩ ।

---

ତୁମ୍ଭେମାନେ ପରମଭାଗବତ ବୋଲି ଭଗବାନଙ୍କ ତୁଲ୍ୟ ମୋହର ପ୍ରୀତି ଭାଜନ ହୋଇଅଛ । ଭଗବଦ୍‌ଭକ୍ତଗଣ ମଧ୍ୟ କଦାଚିତ୍ ମୋ ଅପେକ୍ଷା ଅନ୍ୟ କୌଣସି ବ୍ୟକ୍ତିର ଅଧିକ ପ୍ରିୟତର ନୁହନ୍ତି ।୩୦।

ମୁଁ ତୁମ୍ଭମାନଙ୍କୁ ପବିତ୍ର ପରମମଙ୍ଗଳ ଓ ଶ୍ରେୟସ୍କର ମନ୍ତ୍ର କହୁଅଛି, ତାହା ଯେପରି ଅସଂକୀର୍ଣ୍ଣ ଭାବରେ ଜପ କରିବ ତାହା କହୁଅଛି ଶ୍ରବଣ କର । ୩୧ ।

ଶ୍ରୀମୈତ୍ରେୟ କହିଲେ :—ଭଗବାନ୍ ଶିବ ଏହିପରି ଦୟାର୍ଦ୍ର ହୃଦୟରେ କୃତାଞ୍ଜଳି ପୁଟରେ ଦଣ୍ଡାୟମାନ ରାଜପୁତ୍ରଗଣଙ୍କୁ ନାରାୟଣ ବିଷୟକ ଉପଦେଶ ପ୍ରଦାନ କରିଥିଲେ । ୩୨ ।

ଶ୍ରୀରୁଦ୍ର କହିଲେ :—

ହେ ଭଗବାନ୍ ! ଆତ୍ମଜ୍ଞ ଶ୍ରେଷ୍ଠ ବ୍ୟକ୍ତିମାନେ ଆତ୍ମାନନ୍ଦ ଲଭିବାନିମିତ୍ତ ତୁମ୍ଭର ଗୁଣାଦି ପ୍ରକାଶରୂପ ଉତ୍କର୍ଷ ପ୍ରକାଶିତ, ଅତଏବ ମୋହର ଆତ୍ମାନନ୍ଦ ଲଭହେଉ । ତୁମ୍ଭେ ଚିରକାଳ ଆତ୍ମାନନ୍ଦ ସିଦ୍ଧ ହୋଇ ରହିଅଛ, ସୁତରାଂ ସର୍ବାତ୍ମକ ଆତ୍ମସ୍ୱରୂପ ତୁମ୍ଭଙ୍କୁ ମୁଁ ନମସ୍କାର କରେ । ୩୩ ।

---

ତୁମ୍ଭେ ଭକତଜନ-ସାର
ଲକ୍ଷଣ ଜାଣିଲି ତୁମ୍ଭର
ଆତ୍ମର ପ୍ରିୟ ଯେଣୁ ହରି
ତୁମ୍ଭେ ତେସନେ ମୋତେ ସରି
ଏଣୁ ମାନବେ ଭକ୍ତ ଯେହି
ମୋ ପ୍ରିୟ ତହୁଁ କେହି ନାହିଁ
ହେ ପ୍ରଚେତସ ଭାଇଦଶ
ତୁମ୍ଭର ବାକ୍ୟେ ହେଲି ତୋଷ
ହରିଭଜନ ଯେ ପ୍ରକାର
କହିବା ଦୃଢ଼ ଚିତ୍ତେ ଧର
ଯେ ହରି ପ୍ରସନ୍ନ ଯେମନ୍ତେ
ତାହା କହିବା ଆମ୍ଭେ ଓଡ଼ିତେ

ଏ ସର୍ବ ସ୍ତୋତ୍ରମଧ୍ୟେ ସାର
ତୁମ୍ଭେ ସକଳେ ଚିତ୍ତେ ଧର ।୩୦,୩୧
ଶ୍ରୀ ମୈତ୍ରେୟ ଉବାଚ—
ଏମନ୍ତ କହିଣ ମହେଶ
ଶୁଣ ବିଦୁର ଜ୍ଞାନରସ
ନୃପକୁମରେ ଦୟା ବହି
ପ୍ରସନ୍ନେ କହନ୍ତି ଗୋସାଇଁ
ସର୍ବେ ଯୋଡ଼ିଣ ବେନିକର
ଶୁଣନ୍ତି ହୋଇ ଶ୍ରୁତି ଦ୍ୱାର ।୩୨।
ଶ୍ରୀ ରୁଦ୍ର ଉବାଚ—
ଛଇତଶୟ ଯେ ପରମ
ଆନନ୍ଦ ସୂକ୍ଷ୍ମ ନିରଞ୍ଜନ

ସ୍ୱରୂପେ ସିଦ୍ଧ ହୁଅ ତୁମ୍ଭେ
ଏଣୁ ଆନନ୍ଦ ନାମ ଭାବେ
ତୁମ୍ଭର ସେବା ବଡ଼ ପଣ
ଜ୍ଞାନଙ୍କ ଆନନ୍ଦ କାରଣ
ଏଣୁ ଆନନ୍ଦ ଲଭ ମୋର
କରୁଣା କର ଚନ୍ଦ୍ରଧର
ତୁ ସର୍ବଆତ୍ମା ତୋତେ ମୋର
କରତେ ହେଉ ନମସ୍କାର ।୩୩।

ନମଃ ପଙ୍କଜନାଭାୟ ଭୂତସୂକ୍ଷ୍ମେନ୍ଦ୍ରିୟାତ୍ମନେ ।
ବାସୁଦେବାୟ ଶାନ୍ତାୟ କୂଟସ୍ଥାୟ ସ୍ୱରୋଚିଷେ । ୩୪ ।
ସଂଙ୍କର୍ଷଣାୟ ସୂକ୍ଷ୍ମାୟ ଦୁରନ୍ତାୟାନ୍ତକାୟ ଚ ।
ନମୋ ବିଶ୍ୱପ୍ରବୋଧାୟ ପ୍ରଦ୍ୟୁମ୍ନାୟାନ୍ତରାତ୍ମନେ । ୩୫ ।
ନମୋ ନମୋଽନିରୁଦ୍ଧାୟ ହୃଷୀକେଶେନ୍ଦ୍ରିୟାତ୍ମନେ ।
ନମଃ ପରମହଂସାୟ ପୂର୍ଣ୍ଣାୟ ନିଭୃତାତ୍ମନେ । ୩୬ ।

---

ହେ ଭଗବାନ୍ ଲୋକପଦ୍ମ ଆପଣଙ୍କ ନାଭିଦେଶରୁ ଉତ୍ପନ୍ନ, ଆପଣ ପଞ୍ଚଭୂତ, ତନ୍ମାତ୍ର ଓ ଇନ୍ଦ୍ରିୟଗଣଙ୍କର ନିୟନ୍ତା, ଆପଣ ଚିତ୍ତର ଅଧିଷ୍ଠାତା, ଶାନ୍ତ ନିର୍ବିକାର, ସ୍ୱପ୍ରକାଶ ସ୍ୱରୂପ, ଆପଣଙ୍କୁ ମୁଁ ନମସ୍କାର କରେ । ୩୪ ।

ତୁମ୍ଭେ ଅହଙ୍କାରର ଅଧିଷ୍ଠାତ୍ରୀ ଦେବତା, ସଙ୍କର୍ଷଣ ଏବଂ ଅବ୍ୟକ୍ତ, ଅନନ୍ତ ଓ ଅନ୍ତକ, ତୁମ୍ଭଠାରୁ ଏହି ବିଶ୍ୱର ପ୍ରକୃଷ୍ଟ ସ୍ୱରୂପ ଜ୍ଞାନ ଉତ୍ପନ୍ନ ହୁଏ, ତୁମ୍ଭେ ବୁଦ୍ଧିର ଅଧିଷ୍ଠାତା ପ୍ରଦ୍ୟୁମ୍ନ, ମୁଁ ତୁମ୍ଭଙ୍କୁ ନମସ୍କାର କରେ । ୩୫ ।

ତୁମ୍ଭେ ଇନ୍ଦ୍ରିୟମାନଙ୍କର ଅଧିପତି, ମନର ଅଧିଷ୍ଠାତା ଅନିରୁଦ୍ଧ, ତୁମ୍ଭଙ୍କୁ ମୁଁ ନମସ୍କାର କରେ । ତୁମ୍ଭେ ସୂର୍ଯ୍ୟରୂପୀ, ତୁମ୍ଭର ତେଜଦ୍ୱାରା ଏହି ବିଶ୍ୱ ବ୍ୟାପ୍ତ, ତୁମ୍ଭର କ୍ଷୟ ବୃଦ୍ଧି ନାହିଁ, ମୁଁ ତୁମ୍ଭଙ୍କୁ ନମସ୍କାର କରେଁ । ୩୬ ।

---

ତୋ ନାଭିପଦ୍ମ ନାରାୟଣ
ଏ ବିଶ୍ୱଉତ୍ପତ୍ତିକାରଣ
ଏଣୁ ତୋ ନାମ ପଦ୍ମନାଭ
ବୋଲନ୍ତି ସଂସାର ଉଦ୍ଭବ
ସେ ନାମେ ପ୍ରଣତ ମୋହର
ଏ ବିନୁ ନାହିଁ ବାଞ୍ଛା ଆର
ପୃଥିବୀ ଆପ ତେଜ ବାୟୁ
ଆକାଶ ପଞ୍ଚଭୂତ ଯେହୁ
ଶବ୍ଦ ସ୍ପର୍ଶ ରୂପ ରସ
ଗନ୍ଧ ଯେ ଇନ୍ଦ୍ରି ଏକାଦଶ
ଏହାଙ୍କ ଅନ୍ତଃରାତ୍ମା ହୋଇ
ଯେ ବିଶ୍ୱ ସଂସାର ସର୍ଜ୍ଜଇ

ତାହାଙ୍କୁ ପ୍ରଣତ ମୋ ହର
ଏ ଭବୁଁ କରେ ଯେ ନିସ୍ତାର
ଯେ ଅନ୍ତଃକରଣ ଚତ୍ୱାର
ଏ ମନ ବୁଦ୍ଧି ଅହଂକାର
ତାଙ୍କ ଅନ୍ତରଆତ୍ମା ହୋଇ
ପ୍ରକାଶ କରୁ ତୁ ଗୋସାଇଁ
ଯେ ପ୍ରଭୁ ଚିତ୍ତ ଅଧିଷ୍ଠାତା
ଶ୍ରୀବାସୁଦେବ ଶୁଦ୍ଧଚେତା
ସେ ଅତି ଶାନ୍ତ ନିର୍ବିକାରେ
ନମଇଁ ଭକ୍ତିଯୋଗେ ତାରେ ।୩୪
ଅଧିଷ୍ଠ ଅହଙ୍କାରେ ଯେହୁ
ସଙ୍କରଷଣ ମହାବାହୁ

ସେ ଯେ ଅନନ୍ତ ସୂକ୍ଷ୍ମମୟେ
ମୋର ପ୍ରଣାମ ତାଙ୍କ ପାୟେ
ଯେ ପ୍ରଭୁ ବୁଦ୍ଧିଅଧିଷ୍ଠାତା
ପ୍ରଦ୍ୟୁମ୍ନ ରୂପେ ବିସ୍ତରନ୍ତା
ଯେ ବିଶ୍ୱ ପ୍ରବୋଧ କରନ୍ତି
ସେ ପ୍ରଭୁ ପାଦେ ମୋ ପ୍ରଣତି
ତାଙ୍କ ପ୍ରସାଦେ ମୋ ଅଜ୍ଞାନ
ତତ୍କ୍ଷଣେ ହୋଇବ ଦହନ
ଇନ୍ଦ୍ରିୟ ଅଧିପ ଯେ ମନ
ତାହାଙ୍କ ଅଧିଷ୍ଠାତା ନାମ
ସେ ଅନିରୁଦ୍ଧ ଯେ ଈଶ୍ୱର
କରିବେ ସଂସାରୁ ନିସ୍ତାର ।୩୫,୩୬

ସ୍ୱର୍ଗାପବର୍ଗଦ୍ୱାରାୟ ନିତ୍ୟଂ ଶୁଚିଷଦେ ନମଃ ।
ନମୋ ହିରଣ୍ୟବୀର୍ଯ୍ୟାୟ ଚାତୁର୍ହୋତ୍ରାୟ ତନ୍ତବେ । ୩୭ ।
ନମ ଊର୍ଜ ଇଷେ ତ୍ରୟ୍ୟାଃପତୟେ ଯଜ୍ଞରେତସେ ।
ତୃପ୍ତିଦାୟ ଚ ଜୀବାନାଂ ନମଃ ସର୍ବରସାତ୍ମନେ । ୩୮ ।
ସର୍ବସତ୍ତ୍ୱାତ୍ମଦେହାୟ ବିଶେଷାୟ ସ୍ଥବୀୟସେ ।
ନମସ୍ତ୍ରୈଲୋକ୍ୟପାଲାୟ ସହ ଓଜୋବଲାୟ ଚ । ୩୯ ।
ଅର୍ଥଲିଙ୍ଗାୟ ନଭସେ ନମୋଽନ୍ତର୍ବହିରାତ୍ମନେ ।
ନମଃ ପୁଣ୍ୟାୟ ଲୋକାୟ ଆମୁଷ୍ମୈ ଭୂରିବର୍ଚ୍ଚସେ । ୪୦ ।

---

ତୁମ୍ଭେ ହିଁ ସ୍ୱର୍ଗ ଓ ମୋକ୍ଷର ଦ୍ୱାର, ତୁମ୍ଭେ ନିରନ୍ତର ସର୍ବାନ୍ତର୍ଯ୍ୟାମୀ ରୂପେ ଅବସ୍ଥାନ କରୁଅଛ, ତୁମ୍ଭେ ଚାତୁର୍ହୋତ୍ର ହୋମକାର୍ଯ୍ୟର ସାଧକ ଏବଂ ବିସ୍ତାରକ; ମୁଁ ତୁମ୍ଭଙ୍କୁ ନମସ୍କାର କରେ । ତୁମ୍ଭେ ପିତୃ ଲୋକର ଅନ୍ନ, ଦେବତାଙ୍କର ଅନ୍ନ, ସୌମ୍ୟରୂପୀ ଭଗବାନ୍, ତୁମ୍ଭେ ସର୍ବରସାତ୍ମକ, ଜଳତତ୍ତ୍ୱରୂପୀ ସର୍ବ ଜୀବର ତୃପ୍ତି ଦାତା, ତୁମ୍ଭେ ସର୍ବ ବେଦର ଅଧିପତି ଭଗବାନ୍, ତୁମ୍ଭଙ୍କୁ ନମସ୍କାର କରୁଅଛି । ୩୭,୩୮ ।

ତୁମ୍ଭେ ସମସ୍ତପ୍ରାଣୀଙ୍କର ଆତ୍ମାର ଭୋଗାୟତନ, ପ୍ରାଣୀର ପୃଥ୍ୱୀରୂପ ବିରାଟ ଦେହ, ତୁମ୍ଭେ ପ୍ରାଣୀରୂପୀ ଜୀବ ଦେହର ପ୍ରାଣବାୟୁ ସ୍ୱରୂପ, ସହ, ଓଜ ଓ ବଳରୂପେ ବର୍ତ୍ତମାନ୍ ମୁଁ ତୁମ୍ଭଙ୍କୁ ନମସ୍କାର କରେ । ୩୯ ।

ତୁମ୍ଭେ ଆକାଶରୂପେ ବର୍ତ୍ତମାନ୍ ରହି ଶବ୍ଦୋତ୍ପାଦନ ଦ୍ୱାରା ଶବ୍ଦବୋଧ୍ୟ ଅର୍ଥର ଜ୍ଞାନ ସମ୍ପାଦନ କରୁଥାଅ । ତୁମ୍ଭେ ଅନ୍ତର ଓ ବହିରାଲମ୍ବନ ସ୍ୱରୂପ, ତୁମ୍ଭେ ସର୍ବୋତ୍ତମ ସୁପ୍ରସିଦ୍ଧ ଜ୍ୟୋତିଷ୍ମାନ୍, ବୈକୁଣ୍ଠ ଲୋକ ସ୍ୱରୂପ, ମୁଁ ତୁମ୍ଭଙ୍କୁ ନମସ୍କାର କରେଁ । ୪୦ ।

---

ଯେ ସୂର୍ଯ୍ୟରୂପେଣ ସଦୃଶ
ପ୍ରତ୍ୟକ୍ଷେ ସେ ପରମହଂସ
ଯେ ଜ୍ୟୋତିର୍ମ୍ମୟ ରୂପ ଧରି
ଏ ବିଶ୍ୱ ପ୍ରକାଶକୁ କରି
ସ୍ୱର୍ଗାପବର୍ଗ ଦ୍ୱାର ବେନି
ନାହିଁ ଯାହାର ବୁଦ୍ଧି ହାନି
ପବିତ୍ର ଚିତ୍ତେ ଯାର ସ୍ଥିତି
ସେ ପ୍ରଭୁପାଦେ ମୋ ପ୍ରଣତି ।୩୭।
ଯେ ଅଗ୍ନିରୂପୀ ଭଗବାନ
ଯଜ୍ଞାଦି ଯାହାର ସାଧନ
ପ୍ରବୃତ୍ତି ନିବୃତ୍ତି ଯେ କରି
ସେ ହରି ସଂସାରେ ବିହରି
ଯେ ପିତୃଦେବଙ୍କ କାରଣ
ହୋଇଲେ ଅନ୍ନ ସ୍ୱରୂପେଣ
ସେ ସୋମରୂପୀ ନାରାୟଣ
ଧରିଲେ ଏଥିର କାରଣ
ତ୍ରିପତିପାଦେ ମୋ ପ୍ରଣତି
ଯେତେଣ ହୋଇବ ମୋରଗତି ।୩୮।
ଯେ ଆପରୂପ ଭଗବାନ
ରସ ସ୍ୱରୂପେ ଅସ୍ୱାଦାନ
ସେ ପୃଥୀରୂପେ ସର୍ବକାୟେ
ବିଶ୍ୱ ସଂସାର ଯାର ଦେହେ
ସେ ପ୍ରଭୁଚରଣେ ମୋ ମନ
ସ୍ମୃତିରେ ରହୁ ଅନୁକ୍ଷଣ
ବିରାଟରୂପ ଭଗବାନ
ବନ୍ଦଇ ସେ ପ୍ରଭୁ ଚରଣ
ଯାହାର ରୋମ କୂପ ମୂଳେ
ଅଶେଷ ବ୍ରହ୍ମାଣ୍ଡ ନିଶ୍ଚଳେ
ଅଛନ୍ତି ପରମାଣୁବତ
ସେପାଦେ ମୋର ପ୍ରଣିପାତ ।୩୯।
ଯେ ପ୍ରଭୁ ବାୟୁରୂପ ଧରେ
ପ୍ରାଣ ସ୍ୱରୂପେ ସର୍ବଠାରେ
ସେରୂପେ ପାଳନ୍ତି ଜଗତ
ଯେ ସହ ଓଜ ବଳବନ୍ତ
ସେ ପ୍ରଭୁ ରଖନ୍ତୁ ମୋ ପ୍ରାଣ
ସେ ପାଦେ ପଶିଲି ଶରଣ
ଆକାଶରୂପୀ ଭଗବାନ
କରନ୍ତି ଯେ ବିଧି ବିଧାନ
ଶବ୍ଦ ସ୍ୱରୂପେ ଶୂନ୍ୟେ ରହେ
ଯେ ଶବ୍ଦେ ଅର୍ଥବୋଧ ହୋଏ
ଯେ ବାହ୍ୟାନ୍ତରେ ଛନ୍ତି ପୂରି
ସେ ପାଦେ ପ୍ରଣତି ମୋହରି ।୪୦

ପ୍ରବୃତ୍ତାୟ ନିବୃତ୍ତାୟ ପିତୃଦେବାୟ କର୍ମଣେ ।
ନମୋଽଧର୍ମବିପାକାୟ ମୃତ୍ୟବେ ଦୁଃଖଦାୟ ଚ । ୪୧ ।
ନମସ୍ତ ଆଶିଷାମୀଶ ମନବେ କାରଣାତ୍ମନେ ।
ନମୋ ଧର୍ମାୟ ବୃହତେ କୃଷ୍ଣାୟାକୁଣ୍ଠମେଧସେ-
ପୁରୁଷାୟ ପୁରାଣାୟ ସାଂଖ୍ୟଯୋଗେଶ୍ୱରାୟ ଚ । ୪୨ ।
ଶକ୍ତିତ୍ରୟସମେତାୟ ମୀଢୁଷେଽହଂକୃତାତ୍ମନେ ।
ଚେତଆକୂତିରୂପାୟ ନମୋ ବାଚୋ ବିଭୂତୟେ । ୪୩ ।
ଦର୍ଶନଂ ନୋ ଦିଦୃକ୍ଷୂଣାଂ ଦେହି ଭଗବତାର୍ଚ୍ଚିତମ୍ ।
ରୂପଂ ପ୍ରିୟତମଂ ସ୍ୱାନାଂ ସର୍ବେନ୍ଦ୍ରିୟଗୁଣାଞ୍ଜନମ୍ । ୪୪ ।

---

ହେ ଭଗବାନ ! ତୁମ୍ଭେ ପିତୃଲୋକ ଓ ଦେବଲୋକର ପ୍ରାପ୍ତି ହେତୁ କର୍ମ ସ୍ୱରୂପ ପ୍ରବୃତ୍ତି ଓ ନିବୃତ୍ତି ତୁମ୍ଭଠାରେ ବର୍ତ୍ତମାନ । ତୁମ୍ଭେ ଦୁଷ୍କୃତ ଫଳଦାତା, ଦୁଃଖଦ, ମୃତ୍ୟୁ ସ୍ୱରୂପ, ତୁମ୍ଭଙ୍କୁ ନମସ୍କାର କରେ ।୪୧

ହେ ପ୍ରଭୋ ! ତୁମ୍ଭେ ସର୍ବକାଳର ଫଳଦାତା ଏବଂ ସର୍ବଜ୍ଞ, ପରମଧର୍ମାତ୍ମା, ତୁମ୍ଭର ଜ୍ଞାନଶକ୍ତି ଅଲୁପ୍ତ ଏବଂ ତୁମ୍ଭେ ପୁରାତନ ପୁରୁଷରୂପେ ସାଂଖ୍ୟ ଓ ଯୋଗର ଈଶ୍ୱର, ଅତଏବ ହେ ବିଶ୍ୱପାଳକ ବିଷ୍ଣୁ ! ମୁଁ ତୁମ୍ଭଙ୍କୁ ନମସ୍କାର କରେ । ୪୨ ।

ତୁମ୍ଭେ ଅହଂକାରାତ୍ମା, କର୍ତ୍ତା, କର୍ମ, କରଣ ଏହି ଶକ୍ତିତ୍ରୟ ସମ୍ପନ୍ନ ରୁଦ୍ର, ତୁମ୍ଭେ ଜ୍ଞାନ ଓ କ୍ରିୟାରୂପୀ ତୁମ୍ଭଠାରୁ ବେଦଲକ୍ଷଣା ବାଣୀ ପ୍ରକାଶିତ ହୋଇଥାଏ, ମୁଁ ତୁମ୍ଭଙ୍କୁ ନମସ୍କାର କରେ । ୪୩ ।

ହେ ଭଗବନ୍ ! ଆମ୍ଭେମାନେ ତୁମ୍ଭର ଦର୍ଶନ କାମନା କରୁଅଛୁଁ, ଆମ୍ଭମାନଙ୍କୁ ଦର୍ଶନ ଦିଅ । ତୁମ୍ଭର ଯେଉଁରୂପ ଭକ୍ତଗଣଙ୍କର ପ୍ରିୟତମ, ଇନ୍ଦ୍ରିୟରୂପାଦି ଆଚ୍ଛାଦିତ ସେହିରୂପରେ ଆମ୍ଭମାନଙ୍କୁ ଦେଖାଦିଅ । ୪୪ ।

---

ସ୍ୱର୍ଗାଦି ପୁଣ୍ୟଲୋକ ଯେହି
ପ୍ରବୃତ୍ତି ନିବୃତ୍ତିରେ ରହି
ଯେ ସର୍ବକର୍ମ ଫଳଦାତା
ଏ ଭବ ଫଳକୁ ତାରନ୍ତା
ଅଧର୍ମ ମୃତ୍ୟୁରୂପ ଧରି
ଦୁଃଖ ପୀଡ଼ିତ କର୍ମ୍ମ କରି
ଯେ ଶୁଭକର୍ମ ମୋକ୍ଷଦାତା
ସେ ହରି ପାଦେମୋର ଚିନ୍ତା ।୪୧
ନମସ୍ତେ କୃଷ୍ଣରୂପ ହରି
ପୁରାଣ ପୁରୁଷ ମୁରାରି

ନମସ୍ତେ ସାଙ୍ଖ୍ୟଯୋଗେଶ୍ୱର
ପରମାତ୍ମା ରୂପ ଧର
ଯେ କର୍ମ ବିଷ୍ଣୁରୂପ ଧରେ
ବ୍ୟାପକବନ୍ତ ଏ ସଂସାରେ
ଯେ ରୁଦ୍ରରୂପ ଧରିଛନ୍ତି
କ ଲାଗି ତ୍ରୈଲୋକ୍ୟ ନାଶନ୍ତି
ସେ ଦେବ ରୁଦ୍ର ପାଦେମୋର
ପ୍ରଣାମ ହେଉ ନିରନ୍ତର
ସେ ବ୍ରହ୍ମସ୍ୱରୂପ ଗୋସାଇଁ
ଯେ ସୃଷ୍ଟି ସର୍ଜିବାର ପାଇଁ

ଏ ରୂପ ଯେବା ଭଗବାନ
ସେ ପ୍ରଭୁଚରଣେ ପ୍ରଣାମ
ସେ ଆମ୍ଭ ଭକତ ଘେନିବେ
ଦର୍ଶନେ ଆଶା ପୂରାଇବେ
ଯେଉଁରୂପେ ଭକତେ ପୂଜନ୍ତି
ଇନ୍ଦ୍ରିୟଗଣ ପ୍ରକାଶନ୍ତି ।୪୨-୪୪।

ସ୍ନିଗ୍ଧପ୍ରାବୃଡ୍‌ଘନଶ୍ୟାମଂ ସର୍ବସୌନ୍ଦର୍ଯ୍ୟସଂଗ୍ରହମ୍ ।
ଚାର୍ବାୟତଚତୁର୍ବାହୁ ସୁଜାତରୁଚିରାନନମ୍ । ୪୫ ।
ପଦ୍ମକୋଶପଲାଶାକ୍ଷଂ ସୁନ୍ଦରଭ୍ରୂ ସୁନାସିକମ୍ ।
ସୁଦ୍ୱିଜଂ ସୁକପୋଲାସ୍ୟଂ ସମକର୍ଣ୍ଣବିଭୂଷଣମ୍ । ୪୬ ।
ପ୍ରୀତିପ୍ରହସିତାପାଙ୍ଗମଳକୈରୂପଶୋଭିତମ୍ ।
ଲସତ୍‌ପଙ୍କଜକିଞ୍ଜଲ୍କଦୁକୂଳଂ ମୃଷ୍ଟକୁଣ୍ଡଳମ୍ । ୪୭ ।
ସ୍ଫୁରତ୍‌କିରୀଟବଳୟହାରନୂପୁରମେଖଳମ୍ ।
ଶଙ୍ଖଚକ୍ରଗଦାପଦ୍ମମାଳାମଣ୍ୟୁତ୍ତମର୍ଦ୍ଧିମତ୍ । ୪୮ ।

---

ହେ ଭଗବନ୍ ! ତୁମ୍ଭର ଯେଉଁରୂପ ବର୍ଷାକାଳୀନ ସ୍ନିଗ୍ଧ ମେଘ ତୁଲ୍ୟ ଶ୍ୟାମବର୍ଣ୍ଣ, ଯହିଁରେ ସମସ୍ତ ସୌନ୍ଦର୍ଯ୍ୟ ଏକତ୍ରିତ, ସୁନ୍ଦର ସୁବିଶାଳ ବାହୁ ଚତୁଷ୍ଟୟ ଓ ଯୋଗ୍ୟ ଅବୟବ ସମ୍ପନ୍ନ; ସୁନ୍ଦର ମୁଖ ଶୋଭିତ ସେହି ରୂପ ଆମ୍ଭମାନଙ୍କୁ ଦେଖାଅ । ୪୫ ।

ହେ ଭଗବନ୍ ! ତୁମ୍ଭର ଯେଉଁରୂପରେ ପଦ୍ମମଧ୍ୟସ୍ଥିତ ଦଳତୁଲ୍ୟ ସୁନ୍ଦର ଚକ୍ଷୁ, ସୁନ୍ଦରଭ୍ରୂ, ସୁନ୍ଦର ନାସିକା ଓ ସୁନ୍ଦର ଦନ୍ତପଂକ୍ତି ବିରାଜିତ, ସୁନ୍ଦରଗଣ୍ଡସ୍ଥଳ ଶୋଭିତ ମୁଖଯୁକ୍ତ ସମପରିମାଣ କର୍ଣ୍ଣଦ୍ୱୟ ଦ୍ୱାରା ଅଳଂକୃତ, ସେହିରୂପ ଆମ୍ଭମାନଙ୍କୁ ଦେଖାଅ । ୪୬ ।

ହେ ଭଗବନ୍ ! ବାମନେତ୍ର ପ୍ରାନ୍ତରେ ପ୍ରୀତିପ୍ରଯୁକ୍ତ ମଧୁରହାସ୍ୟଯୁକ୍ତ ଅଳକାରାଜି ପରିଶୋଭିତ, ବିକଶିତ ପଦ୍ମକଳତୁଲ୍ୟ ପୀତବସନ ଶୋଭମାନ, ସୁମାର୍ଜିତ ଦୀପ୍ତ ମଣିମୟ କୁଣ୍ଡଳାଳଙ୍କୃତ, ସେହିରୂପ ଆମ୍ଭମାନଙ୍କୁ ଦେଖାଅ । ୪୭ ।

ଉଜ୍ଜ୍ୱଳ କିରୀଟ, ବଳୟ, ହାର, ନୂପୁର ଏବଂ ମେଖଳା ପରିଶୋଭିତ; ଶଙ୍ଖ, ଚକ୍ର, ଗଦା, ପଦ୍ମ, ବନମାଳା ଓ କୌସ୍ତୁଭମଣି ଧାରଣକାରୀ, ସ୍ୱୀୟ ପ୍ରେୟସୀଙ୍କ ସହିତ ବିରାଜମାନ ହୋଇ ଆମ୍ଭମାନଙ୍କୁ ଦର୍ଶନ ଦିଅ । ୪୮ ।

---

ନବ ଜଳଧର ଘନ ଶ୍ୟାମ
ପ୍ରତୁଲ୍ୟ ନୋହେ କୋଟିକାମ
ଆଜାନୁ ଲମ୍ବିତ ଶ୍ରୀଭୁଜ
ସ୍ୱଚ୍ଛ ସୁନ୍ଦର ମହାତେଜ
ନୀଳ ମର୍କତ ଦିବ୍ୟକାନ୍ତି
ଯା କୋଟି ଅଂଶେଣ ଶୋଭନ୍ତି
ହେ ଭୟନାଶନ ଶ୍ରୀକର
ଅଭୟଦାତା ମୋକ୍ଷଧର
ସେ ମୂର୍ତ୍ତି ଜଗ ଭୟ ଯେତେ
ଏ ସର୍ବ ନାଶିବେ ତୁରିତେ
ଅତି ସୁନ୍ଦର ସୁ-ଆନନ
ଅରୁଣ ପଙ୍କଜ ଲୋଚନ

ଶିରେ ସୁନୀଳ ସୁକୁନ୍ତଳ
ଦେଖି ଅନଙ୍ଗ-କୋଟିଭୋଳ
ଚୂଡ଼ାପ୍ରବନ୍ଧେ ଶିଖି ସାଜେ
ରତ୍ନକିରୀଟ-ତେଜପୁଞ୍ଜେ
ସୁସ୍ୱଚ୍ଛ କପୋଳ ଅଳକା
ଯେସନ୍ତେ ଶୋଭିତ ରାହୁରେଖା
ସ୍ୱଚ୍ଛ ସୁନ୍ଦର ସୁକପୋଳ
ଅଳକା ବେଢ଼ି ଭୃଙ୍ଗମେଳ
ଭ୍ରୂଭଙ୍ଗ ଯୁଗଳ ସୁଠାଣି
ଅତନୁ-ଚାପପ୍ରାୟ ଜିଣି
ଶୋଭନେ ନାହିଁ ପଟାନ୍ତର
ମନ ବଚନେ ଅଗୋଚର

ଅତି ସୁସର୍ଥି ନାସାଠାଣି
ତିଳପୁଷ୍ପର ପ୍ରଭା ଜିଣି
ତା ପରେ ସିନ୍ଧୁ ଫଳ ରାଜେ
ଶୋଭାରେ ଅନେ୍ୟା ଅନ୍ୟ ଗଞ୍ଜେ
ଅରୁଣାଙ୍କିତ ବିମ୍ବାଧର
କିବା ସୁନ୍ଦର ମନୋହର
ନବ ଅରୁଣ ଜିଣି ଶୋଭା
ଦେଖି ଅନଙ୍ଗ କୋଟି ଲୋଭା
ଶୋହେ ଦଶନଶ୍ରେଣୀ ଜ୍ୟୋତି
ଜିଣି ଡାଳିମ୍ବ ବୀଜ କାନ୍ତି
ସମ୍ମିତେ ବିମ୍ବାଧର ରାଜେ
ଭକତଜନ ମନ ରଞ୍ଜେ

ସିଂହସ୍କନ୍ଧତ୍ୱିଷୋ ବଭ୍ରତ୍ ସୌଭଗଗ୍ରୀବକୌସ୍ତୁଭମ୍ ।
ଶ୍ରିୟାନପାୟିନ୍ୟାକ୍ଷିପ୍ତ ନିକଷାଶ୍ମୋରସୋଲ୍ଲସତ୍ । ୪୯ ।
ପୂରରେଚକସଂବିଗ୍ନବଲିବଲ୍‌ଗୁଦଲୋଦରମ୍ ।
ପ୍ରତିସଂକ୍ରାମୟଦ୍‌ବିଶ୍ୱଂ ନାଭ୍ୟାବର୍ତ୍ତଗଭୀରୟା । ୫୦ ।
ଶ୍ୟାମଶ୍ରୋଣ୍ୟଧିରୋଚିଷ୍ଣୁ ଦୁକୂଳସ୍ୱର୍ଣ୍ଣମେଖଲମ୍ ।
ସମଚାର୍ବଙ୍ଘ୍ରି ଜଙ୍ଘୋରୁ ନିମ୍ନଜାନୁସୁଦର୍ଶନମ୍ । ୫୧ ।

---

ସିଂହସ୍କନ୍ଧ ତୁଲ୍ୟ ସ୍କନ୍ଧଦ୍ୱୟରେ ନିବିଷ୍ଟ ହାର କୁଣ୍ଡଳାଦି ଦୀପ୍ତି ଧାରଣକାରୀ କୌସ୍ତୁଭମଣି ଦ୍ୱାରା କଣ୍ଠର ସୌନ୍ଦର୍ଯ୍ୟ ବିଧାନକାରୀ, ଅନପାୟିନୀ ଲକ୍ଷ୍ମୀରେଖା ଯୋଗ ହେତୁ ନିକଷ ପାଷାଣ ବିନିନ୍ଦିତ ବକ୍ଷସ୍ଥଳ ଶୋଭମାନ, ସେହିରୂପ ଆମ୍ଭମାନଙ୍କୁ ଦେଖାଅ । ୪୯ ।

ଏହି ମୂର୍ତ୍ତିରେ ତ୍ରିବଳିରେଖା ନିଶ୍ୱାସ ପ୍ରଶ୍ୱାସ ନିବନ୍ଧନ କମ୍ପିତ ହୋଇ ଅଶ୍ୱତ୍ଥପତ୍ର ତୁଲ୍ୟ ସୁଗଠିତ ଉଦରର ଶୋଭା ବିସ୍ତାର କରୁଅଛି, ଗମ୍ଭୀର ଆବର୍ତ୍ତଯୁକ୍ତ ନାଭିପ୍ରଦେଶ ଦେଖି ମନେ ହୁଏ ଯେପରି ଏହି ବିଶ୍ୱ ତହିଁରୁ ଉତ୍ପନ୍ନ ହୋଇ ପୁଣି ତହିଁରେ ପ୍ରବେଶ କରୁଅଛି । ୫୦ ।

ଏହିମୂର୍ତ୍ତିର ଶ୍ୟାମବର୍ଣ୍ଣ ଶ୍ରୋଣୀଭାଗରେ ପଟ୍ଟବସନ ଏବଂ ତହିଁଉପରେ ସୁବର୍ଣ୍ଣମେଖଳା ଆହୁରି ଶୋଭା ବୃଦ୍ଧି କରୁଥିଲା । ତାଙ୍କରଚରଣ ମନୋହର, ଉରୁସୁଶୋଭନ, ଜାନୁଦ୍ୱୟ ଅନୁଚ୍ଚ ଏବଂ ସୁଦର୍ଶନ । ୫୧ ।

---

ଶ୍ରୁତିଯୁଗଳେ ଝଲକନ୍ତି
ମକରକୁଣ୍ଡଳ ସୁକାନ୍ତି
ଈଷିତ ଅପାଙ୍ଗଈକ୍ଷଣ
ମୋହିତ ସୁର ମୁନିଗଣ
ନୀଳ ସୁନ୍ଦର କଳେବର
ତଡ଼ିତ ଜିଣି ପୀତାମ୍ବର
ନୀଳ ସୁନ୍ଦର ଘନେ ଯେହ୍ନେ
ଝଟକ ବସନ ତେସନେ
କାଞ୍ଚି କଙ୍କଣ ନୂପୁର
କଟୀ ମେଖଳା ଶୋଭାକର
ଆଜାନୁ ଲମ୍ବେ ବନମାଳ
ଶୋଭେ ଶ୍ରୀବତ୍ସ ବକ୍ଷସ୍ଥଳ
ସେ ରୂପ କେ ପାରିବ ଛନ୍ତି
ଦେଖି ଅନଙ୍ଗ ଭ୍ରମ ଯାନ୍ତି

ସୁଗ୍ରୀବ କଣ୍ଠ ଯେ ସୁନ୍ଦର
ଶୋଭେ କୌସ୍ତୁଭ ମଣିସାର
ଏମନ୍ତ ରୂପ ଦେଖାଇବ
ଆମ୍ଭର ତାପ ବିନାଶିବ
ଯେ ହୃଦେ କମଳା ଶୋଭନ
ନୀଳ ପାଷାଣେ ଯେହ୍ନେ ହେମ
ରେଚକ ପୂରକ ଯେ ଶ୍ୱାସେ
କି ଜଳଲହରୀ ସଦୃଶେ
ଉଦରେ ତ୍ରିବଳି ଚଳିଲ
ଶୋଭିତ ସୁନାଭି ଗମ୍ଭୀର
ଯେ ଦ୍ୱାରେ ଏ ବିଶ୍ୱ ନିର୍ଗତ
ଫେରି ପ୍ରବେଶେ କି ଆବର୍ତ୍ତ
ସେ ଶ୍ୟାମ କଟିମ୍ବ ଦୁକୂଳ
ବିରାଜେ ସୁବର୍ଣ୍ଣ ମେଖଳ

ସୁସନ୍ଧି ଅଂଘ୍ରି ସ୍ଥିର ଊର
ନିଘନ ଜାନୁ ଶୋଭାକର
ଉରୁଯୁଗଳ ଶୋଭାଠାଣି
ଜଲଟ ରମ୍ଭାକୁ ସେ ଜିଣି
ଶ୍ରୀଯୁତ ଚରଣ କମଳ
ଶୋଭିତ ନଖଶ୍ରେଣୀକୁଳ
କୋଟି ଶଶାଙ୍କ ଶୋଭାକାନ୍ତି
ଜିଣି ସୁଶ୍ରେଣୀ ନଖପନ୍ତି
ସେ ସର୍ବେ ମୋହର ତ୍ରିତାପ
ଦର୍ଶନେ ହରିବେ ଦୁରୂପ
ସେ ଅଂଘ୍ରି ଦରଶନ ପାଇ
ପ୍ରସନ୍ନେ ଭବଭୟ ନାହିଁ
ଏମନ୍ତ ରୂପ ପ୍ରକାଶିବ
ଆମ୍ଭ ସଂଶୟ ବିନାଶିବ

ପଦା ଶରତ୍ପଦ୍ମପଲାଶରୋଚିଷା ନଖଦ୍ୟୁଭିର୍ନୋଽନ୍ତରଘଂ ବିଧୁନ୍ୱତା ।
ପ୍ରଦର୍ଶୟ ସ୍ୱୀୟମପାସ୍ତସାଧ୍ୱସଂ ପଦଂ ଗୁରୋର୍ମାର୍ଗଗୁରୁସ୍ତମୋଜୁଷାମ୍ । ୫୨ ।
ଏତଦ୍ରୂପମନୁଧ୍ୟେୟମାତ୍ମଶୁଦ୍ଧିମଭୀପ୍ସତାମ୍ ।
ଯଦ୍ଭକ୍ତିଯୋଗୋଽଭୟଦଃ ସ୍ୱଧର୍ମମନୁତିଷ୍ଠତାମ୍ । ୫୩ ।
ଭବାନ୍ ଭକ୍ତିମତା ଲଭ୍ୟୋ ଦୁର୍ଲଭଃ ସର୍ବଦେହିନାମ୍
ସ୍ୱାରାଜ୍ୟସ୍ୟାପ୍ୟଭିମତ ଏକାନ୍ତେନାତ୍ମବିଦ୍ଗତିଃ । ୫୪ ।
ତଂ ଦୁରାରାଧ୍ୟମାରାଧ୍ୟ ସତାମପି ଦୁରାପୟା ।
ଏକାନ୍ତଭକ୍ତ୍ୟା କୋ ବାଞ୍ଛେତ୍ ପାଦମୂଳଂ ବିନା ବହିଃ । ୫୫ ।

---

ତମୋଗୁଣାବଲମ୍ବୀ ଅଜ୍ଞବ୍ୟକ୍ତିମାନଙ୍କର ପଥପ୍ରଦର୍ଶକ ଗୁରୁ ସ୍ୱରୂପ ଶରତ୍କାଳୀନ ପଦ୍ମପତ୍ର ତୁଲ୍ୟ ଦୀପ୍ତିଶାଳୀ ଆପଣଙ୍କର ଚରଣଯୁଗ୍ମର ନଖଦୀପ୍ତିଦ୍ୱାରା ଆମ୍ଭମାନଙ୍କର ଅନ୍ତରର ଅନ୍ଧକାର ବିନାଶ କରନ୍ତୁ ।୫୨

ଯେଉଁମାନେ ଆତ୍ମଶୁଦ୍ଧି ଲାଭ କରିବା ନିମନ୍ତେ ଅଭିଳାଷୀ କେବଳ ସେହିମାନେ ଏହା ଧ୍ୟାନ କରିବାକୁ ସମର୍ଥ । କିନ୍ତୁ ସେମାନଙ୍କ ପକ୍ଷରେ ସୁଦ୍ଧା ଏହା ପ୍ରତ୍ୟକ୍ଷ ଦର୍ଶନ କରିବା ସମ୍ଭବ ନୁହେଁ, କିନ୍ତୁ ଯେଉଁମାନେ ଭକ୍ତିଯୋଗକୁ ସ୍ୱଧର୍ମସ୍ୱରୂପ ଅନୁଷ୍ଠାନ କରନ୍ତି; ସେହିମାନେହିଁ ଅଭୟପଦ ପ୍ରାପ୍ତ ହୁଅନ୍ତି । ୫୩ ।

ସ୍ୱର୍ଗରାଜ୍ୟର ଅଧୀଶ୍ୱର ଇନ୍ଦ୍ରାଦି ଦେବଗଣଙ୍କର ମଧ୍ୟ ଆପଣ ଅଭିପ୍ସିତ, ଯେଉଁମାନେ ଐକାନ୍ତିକ ଭାବରେ ତୁମ୍ଭର ଆରାଧନା କରନ୍ତି, ତୁମ୍ଭେ ସେହି ଆତ୍ମବିଦ୍ମାନଙ୍କର ଗତି, ତୁମ୍ଭେ ସର୍ବଦେହିଙ୍କ ନିକଟରେ ଦୁର୍ଲଭ ହେଲେ ମଧ୍ୟ ଭକ୍ତଜନ ସୁଲଭ ଅଟ । ୫୪ ।

ତୁମ୍ଭେ ଦୁରାରାଧ ହେଲେ ମଧ୍ୟ ସାଧୁମାନଙ୍କର ଦୁର୍ଲଭ ଐକାନ୍ତିକୀ ଭକ୍ତିଦ୍ୱାରା ପ୍ରସନ୍ନ ହୋଇ ଥାଅ; ତୁମ୍ଭର ପାଦପଦ୍ମ ବ୍ୟତୀତ ସ୍ୱର୍ଗାଦି ବାହ୍ୟବସ୍ତୁ ପାଇବାକୁ କିଏ ଅଭିଳାଷ କରିବ । ୫୫ ।

---

ତୁ ଗୁରୁରୂପେ ନାରାୟଣ
ମୂଢ଼ଅଜ୍ଞାନଙ୍କ କାରଣ
ସକଳ ଘଟେ ତୁମ୍ଭେ ଥାଇ
ପ୍ରାଣିଙ୍କି ଜ୍ଞାନଦୀକ୍ଷା ଦେଇ
ସେ ଜ୍ଞାନେ ପ୍ରାଣିଙ୍କି ନିସ୍ତାର
ଅଜ୍ଞାନେମଜ୍ଜେ ଏ ସଂସାର ।୪୫-୫୨
ଆତ୍ମାର ସିଦ୍ଧି ଯେ ଇଛନ୍ତି
ତା ରୂପ ଦର୍ଶନ ବାଞ୍ଛନ୍ତି

ଯେ ନିତ୍ୟେ ସ୍ୱଧର୍ମ୍ମ ଆଚରେ
ତୁମ୍ଭ ଭଜନ ନିଷ୍ଠାପରେ
ତୋ ପଦେ ଅଭୟ ଭକତ
ସୁ ସ୍ଥିରେ ରହେ ତାର ମତ ।୫୩।
ସକଳ ଦେହେ ତୁ ଦୁର୍ଲଭ
ଭକତେ ହେଉ ତୁ ସୁଲଭ
ଯେ ସ୍ୱର୍ଗରାଜ୍ୟ ଭୋଗକରେ
ସେ କାହିଁ ଦେଖିବ ତୋହରେ

କେବଳ ଆତ୍ମଜ୍ଞାନୀ ଜନ
ସେ ତୋତେ ଲଭେଭଗବାନ ।୫୪
ଏକାନ୍ତ ଭକ୍ତିଯୋଗେ ନର
ଯେ ଭଜେ ତୁମ୍ଭର ପୟର
ସ୍ୱର୍ଗାଦି ନ ବାଞ୍ଛନ୍ତି ମନେ
ତୋ ପାଦପଦ୍ମ ସୁଧାପାନେ ।୫୫।

ଯତ୍ର ନିର୍ବିଷ୍ଟମରଣଂ କୃତାନ୍ତୋନାଭିମନ୍ୟତେ ।
ବିଶ୍ୱଂ ବିଧ୍ୱଂସୟନ୍ ବୀର୍ଯ୍ୟଶୌର୍ଯ୍ୟବିସ୍ଫୂର୍ଜିତଭ୍ରୁବା । ୫୬ ।
କ୍ଷଣାର୍ଦ୍ଧେନାପି ତୁଲୟେ ନ ସ୍ୱର୍ଗଂ ନାପୁନର୍ଭବମ୍ ।
ଭଗବତ୍ ସଙ୍ଗିସଙ୍ଗସ୍ୟ ମର୍ତ୍ତ୍ୟାନାଂ କିମୁତାଶିଷଃ । ୫୭ ।
ଅଥାନଘାଙ୍ଘ୍ରେସ୍ତବ କୀର୍ତ୍ତିତୀର୍ଥୟୋରନ୍ତର୍ବହିଃ ସ୍ନାନବିଧୂତପାପ୍ମନାମ୍ ।
ଭୂତେଷ୍ୱନୁକ୍ରୋଶସୁସତ୍ତ୍ୱଶୀଳିନାଂ ସ୍ୟାତ୍ ସଙ୍ଗମୋଽନୁଗ୍ରହ ଏଷ ନସ୍ତବ । ୫୮ ।
ନ ଯସ୍ୟ ଚିତ୍ତଂ ବହିରର୍ଥବିଭ୍ରମଂ ତମୋଗୁହାୟାଞ୍ଚ ବିଶୁଦ୍ଧମାବିଶତ୍ ।
ଯଦ୍ଭକ୍ତିଯୋଗାନୁଗୃହୀତମଞ୍ଜସା ମୁନିର୍ବିଚଷ୍ଟେ ନନୁ ତତ୍ର ତେ ଗତିମ୍ । ୫୯ ।

---

ବୀର୍ଯ୍ୟ, ଶୌର୍ଯ୍ୟ, ବିସ୍ଫୁରିତ ଭ୍ରୂକୁଟି ଦ୍ୱାରା କାଳ ବିଶ୍ୱକୁ ଧ୍ୱଂସ କଲେ ମଧ୍ୟ ଯେଉଁ ବ୍ୟକ୍ତି ତୁମ୍ଭର ଚରଣରେ ଶରଣ ନିଏ, ତାହାକୁ କେହି ବଶୀଭୂତ କରିବାକୁ ସାହାସୀ ହୁଅନ୍ତି ନାହିଁ । ୫୬ ।

କ୍ଷଣାର୍ଦ୍ଧ ନିମିତ୍ତ ଯଦି ଭଗବତ୍ ସଙ୍ଗଲାଭ ହୁଏ ତେବେ ତାହା ନିକଟରେ ସ୍ୱର୍ଗ ବା ମୋକ୍ଷ ସୁଖ ତୁଳନା ଯୋଗ୍ୟ ନୁହେଁ । ମର୍ତ୍ତ୍ୟର ସୁଖ ଭୋଗାଦି ତାହାଙ୍କ ନିକଟରେ ଗଣ୍ୟ ହୋଇ ପାରେ ନାହିଁ । ୫୭ ।

ତୁମ୍ଭର ଚରଣ ସର୍ବପାପହାରୀ, ଅଭ୍ୟନ୍ତରରେ ତୁମ୍ଭର କୀର୍ତ୍ତି ଓ ବହିର୍ଦ୍ଦେଶରେ ତୁମ୍ଭର ପାଦତୀର୍ଥ ଗଙ୍ଗା ସ୍ନାନ ସ୍ୱରୂପ ପାପରାଶି ନାଶ କରେ । ଏବଂ ଯେଉଁମାନଙ୍କର ଚିତ୍ତ ରାଗ ବିରହିତ ଓ ସରଳତାଦି ଗୁଣଯୁକ୍ତ, ତୁମ୍ଭର ଅନୁଗ୍ରହରୁ ଆମ୍ଭେମାନେ ଯେପରି ସେମାନଙ୍କ ସଙ୍ଗରେ ମିଳିତ ହେଉ । ୫୮ ।

ଯେତେବେଳେ ସାଧୁମାନଙ୍କ ପ୍ରତି ଭକ୍ତି ହେତୁରୁ ପୁରୁଷର ଚିତ୍ତ ଅନୁଗୃହୀତ ଓ ବିଶୁଦ୍ଧ ହୋଇ ବାହ୍ୟ ବିଷୟ ଦ୍ୱାରା ଆକୃଷ୍ଟ ନ ହୁଏ ଏବଂ ଅଜ୍ଞାନ ଗୁହାରେ ଲୀନ ନ ହୁଏ, ସେତେବେଳେ ସେ ପୁରୁଷ ତୁମ୍ଭର ତତ୍ତ୍ୱଜ୍ଞାନ ଲାଭ କରେ । ୫୯ ।

---

ଯେ ତୁମ୍ଭ ଚରଣେ ଭଜିଲା
ସେ କାଳଭୟ ନିବାରିଲା
ଭ୍ରୂକୁଟୀ କୁଟିଳ ପ୍ରକାଶେ
ତକ୍ଷଣେ ସଂସାର ବିନାଶେ
ଯେ କାଳ ଅତି ଭୟଙ୍କର
ତୋର ସେବକେ ସେ କିଙ୍କର ।୫୬
ଏଣୁ ଭକତସଙ୍ଗ ତୋର
କ୍ଷଣେ ନିମିଷେ ଯେଉଁ ନର
ସେ ସଙ୍ଗ ଯେବା ସୁଖ ହୋଇ
ସ୍ୱର୍ଗାପବର୍ଗ ସମ ନୋହି
ଏ ମର୍ତ୍ତ୍ୟ ଭୋଗ ତୁଚ୍ଛ ମଣି
ତୋ ଭକ୍ତ ସଙ୍ଗେ ଯେତେ ପ୍ରାଣୀ ।୫୭
ତୋର ପଙ୍କଜ ଅଙ୍ଘ୍ରି ରସ
ଯେ ରସ କଳୁଷ ବିନାଶ
ଯେବା ପିବନ୍ତି ଅନୁଦିନେ
ବ୍ରହ୍ମଆନନ୍ଦସୁଧାପାନେ
ଯେ ଗଙ୍ଗାସ୍ନାନ ନିତ୍ୟେ କରେ
ଅଶେଷ ପାପୁଁ ସେ ନିସ୍ତରେ
ତୋର ଭକତ ସଙ୍ଗେ ଯେବେ
ଯେ କ୍ଷଣେ ବସେ ଶୁଦ୍ଧ ହେବେ
ପବିତ୍ର ହୋନ୍ତି ତତକ୍ଷଣେ
ଜନ୍ମମରଣ ନିବାରଣେ
ଏ ସାଧୁ ସଙ୍ଗ ଭାଗ୍ୟେ ପାଇ
ସକଳ ଭୂତେ ଦୟା ବହି
ସୁସାଧୁ ଜନଙ୍କ ସଙ୍ଗତ
ଯେ ପ୍ରାଣୀ କରେ ଅବିରତ
ତେବେ ତୁମ୍ଭର କୃପା ହୋଇ
ମାୟାପଟଳୁ ନିସ୍ତରଇ
ଯେ ଶୁଦ୍ଧ ଭକ୍ତିରେ ଭଜନ୍ତି
ବିଶୁଦ୍ଧ ହୋଏ ତାଙ୍କ ମତି
ବିଷୟ ଭ୍ରମେ ଭ୍ରମ ନୋହେ
ଅଜ୍ଞାନବୁଦ୍ଧି ଦୂରେ ରହେ
ଏଣୁ ଭକତ ସଙ୍ଗ ମେଳେ
ଲଭେ ଭକତସୁଜନସ୍ଥଳେ ।୫୮,୫୯

ଯଦେବେଦଂ ବ୍ୟଜ୍ୟତେ ବିଶ୍ୱଂ ବିଶ୍ୱସ୍ମିନ୍ନବଭାତି ଯତ୍ ।
ତତ୍ତ୍ୱଂ ବ୍ରହ୍ମ ପରଂ ଜ୍ୟୋତିରାକାଶମିବ ବିସ୍ତୃତମ୍ । ୭୦ ।
ଯୋ ମାୟୟେଦଂ ପୁରୁରୂପୟାସୃଜତ୍ ବିଭର୍ତ୍ତି ଭୂୟଃ କ୍ଷପୟତ୍ୟବିକ୍ରିୟଃ ।
ଯଦ୍ଭେଦବୁଦ୍ଧିଃ ସଦିବାତ୍ମଦୁଃସ୍ଥୟା ତମାତ୍ମତନ୍ତ୍ରଂ ଭଗବନ୍ ପ୍ରତୀମହି । ୭୧ ।
କ୍ରିୟାକଲାପୈରିଦମେବ ଯୋଗିନଃ ଶ୍ରଦ୍ଧାନ୍ୱିତାଃ ସାଧୁ ଯଜନ୍ତି ସିଦ୍ଧୟେ ।
ଭୂତେନ୍ଦ୍ରିୟାନ୍ତଃକରଣୋପଲକ୍ଷିତଂ ବେଦେ ଚ ତନ୍ତ୍ରେ ଚ ତ ଏବ କୋବିଦାଃ ।୭୨।
ତ୍ୱମେକ ଆଦ୍ୟଃ ପୁରୁଷଃ ସୁପ୍ତଶକ୍ତିସ୍ତୟା ରଜଃସତ୍ତ୍ୱତମୋ ବିଭିଦ୍ୟତେ ।
ମହାନହଂ ଖଂ ମରୁଦଗ୍ନି ବାର୍ଦ୍ଧରାଃ ସୁରର୍ଷୟୋ ଭୂତଗଣା ଇଦଂ ଯତଃ । ୭୩ ।

ଏହି ବିଶ୍ୱର ଆଧାର ସ୍ୱରୂପ ତୁମ୍ଭଠାରେ ଚରାଚରାତ୍ମକ ସମଗ୍ର ବିଶ୍ୱ ଅବସ୍ଥିତ, ସେହି ତତ୍ତ୍ୱହିଁ ପରମାତ୍ମାରୂପେ ସମଗ୍ର ଜଗତରେ ବିସ୍ତାର ଲାଭ କରେ ଓ ସେହି ପରଂବ୍ରହ୍ମ ଓ ପରଂଜ୍ୟୋତି ସ୍ୱରୂପ ଆକାଶ ତୁଲ୍ୟ ସର୍ବବ୍ୟାପୀ ତତ୍ତ୍ୱ ତୁମ୍ଭ ଭିନ୍ନ କେହି ନୁହେଁ । ୭୦ ।

ହେ ଈଶ୍ୱର ! ଯେ ବହୁରୂପା ମାୟାଦ୍ୱାରା ଏହି ବିଶ୍ୱକୁ ସୃଜନ, ପାଳନ ଓ ସଂହାର କରୁଅଛନ୍ତି, କିନ୍ତୁ ସ୍ୱୟଂ ବିକାର ହୀନ, ଯାହାଙ୍କର ମାୟା ଅନ୍ୟଠାରେ ଭେଦ ବୁଦ୍ଧି ଜନ୍ମାଏ କିନ୍ତୁ ତୁମ୍ଭଠାରେ ତାହାର ପ୍ରଭାବ ବିସ୍ତାର କରି ନ ପାରେ । ହେ ପ୍ରଭୋ ! ତୁମ୍ଭେ ସେହି ସ୍ୱତନ୍ତ୍ର ପୁରୁଷ, ତୁମ୍ଭର ତତ୍ତ୍ୱ ଜାଣିବା ଲାଗି ଆମ୍ଭମାନଙ୍କୁ ଶକ୍ତି ଦିଅ । ୭୧ ।

ଯେଉଁ ସମସ୍ତ ଯୋଗୀ ଶ୍ରଦ୍ଧାନ୍ୱିତ ହୋଇ ଭୂତ,ଇନ୍ଦ୍ରିୟ ଏବଂ ଅନ୍ତଃକରଣ ଦ୍ୱାରା ଉପଲକ୍ଷିତ ଅଥଚ ଏମାନଙ୍କର ନିୟନ୍ତା ତୁମ୍ଭର ଏହି ସାକାର ରୂପକୁ ସମ୍ୟକ୍ ଭାବରେ ସିଦ୍ଧିଲାଭ କରିବା ନିମିତ୍ତ ପୂଜାଦି କ୍ରିୟାକଳାପଦ୍ୱାରା ଭଜନ କରନ୍ତି, ସେହିମାନେହିଁ ବେଦ ଓ ଶାସ୍ତ୍ରରେ ସୁପଣ୍ଡିତ ବୋଲି ଗଣ୍ୟ ।୭୨

ପ୍ରଭୋ ତୁମ୍ଭେହିଁ ଏକମାତ୍ର ଆଦି ପୁରୁଷ, ମାୟା ଶକ୍ତି ତୁମ୍ଭ ନିକଟରେ ସୁପ୍ତ ହେଲେହେଁ ତୁମ୍ଭେ ଏହି ମାୟାଶକ୍ତି ବଳରେ ସତ୍ତ୍ୱ, ରଜ, ତମ, ତ୍ରିଗୁଣକୁ ବିଭିନ୍ନ କରିଥାଅ, ଅବଶେଷରେ ତହିଁରୁ ମହତ୍ତତ୍ତ୍ୱ, ଅହଂକାରତତ୍ତ୍ୱ, ଆକାଶ, ବାୟୁ, ଅଗ୍ନି, ଜଳ, ପୃଥିବୀ, ଦେବ, ଋଷି, ଭୂତଗଣ ଓ ଏହି ଜଗତ୍ସୃଷ୍ଟି ହୋଇଥାଏ । ୭୩ ।

ଯେ ତତ୍ତ୍ୱେ ଏ ବିଶ୍ୱ ବ୍ୟକତ
ବିଶ୍ୱେ ଶୋଭିତ ଯେଉଁ ତତ୍ତ୍ୱ
ତତ୍ତ୍ୱ ପରମ ବ୍ରହ୍ମ ଜ୍ୟୋତି
ଆକାଶ ପ୍ରାୟେ ବ୍ୟାପିଛନ୍ତି ।୭୦।
ଏ ବିଶ୍ୱ ମିଥ୍ୟା ସତ୍ୟ କରି
ସର୍ଜ୍ଜି ପାଳଣ ତା ସଂହରି
ଯା ମାୟା ବହୁରୂପ ଧରେ
ଜୀବରେ ଭେଦବୁଦ୍ଧି କରେ
ମାୟା ସ୍ମରଣ ଯାର ନାହିଁ
ଜାଣିବି ବ୍ରହ୍ମରୂପ ସେହି
ଯେ ଅନ୍ତ ବିକାର ବିହୀନ
ନ ପାଇ ଏଣୁ ତତ୍ତ୍ୱ ଜ୍ଞାନ ।୭୧।
ନିର୍ଗୁଣେ ସଗୁଣ ବୋଲନ୍ତି
କ୍ରିୟା କଳାପେ ଯୋଗୀ ଭଜନ୍ତି
ଏହାଙ୍କ ପ୍ରାୟେ ଭଜେ ଯେହୁ
ପଣ୍ଡିତ ବେଦାଗମେ ସେହୁ ।୭୨।
ପୁରୁଷ ଆଦି ତୁମ୍ଭେ ପର
ଅଶେଷ ବ୍ରହ୍ମାଣ୍ଡ ଈଶ୍ୱର
ତୁମ୍ଭର ଶକ୍ତି ସୁପ୍ତେ ଥିଲା
କାଳାନ୍ତେ ଶଯ୍ୟନୁ ଉଠିଲା
ସେ ଶକ୍ତି ତୋର ଆଜ୍ଞା ଲଭେ
ସତ୍ତ୍ୱାଦି ଭେଦ କଲା ତେବେ
ତହୁଁ ମହତ ଅହଙ୍କାର
ଜଳାଗ୍ନି ଆକାଶ ସମୀର
ଭୂ ଦେବ ଋଷି ସର୍ବ ଭୂତ
ଜନ୍ମିଲେ ଏ ନାନା ଜଗତ ।୭୩।

ସୃଷ୍ଟ୍ୱଂ ସ୍ୱଶକ୍ତ୍ୟେଦମନୁପ୍ରବିଷ୍ଟଶ୍ଚତୁର୍ବିଧଂ ପୁରମାତ୍ମାଂଶକେନ ।
ଅଥୋ ବିଦୁସ୍ତଂ ପୁରୁଷଂ ସନ୍ତମନ୍ତର୍ଭୁଙ୍କ୍ତେ ହୃଷୀକୈର୍ମଧୁ ସାରଘଂ ଯଃ । ୬୪ ।
ସ ଏଷ ଲୋକାନତିଚଣ୍ଡବେଗୋ ବିକର୍ଷସି ତ୍ୱଂ ଖଲୁ କାଲଯାନଃ ।
ଭୂତାନି ଭୂତୈରନୁମେୟତତ୍ତ୍ୱୋ ଘନାବଲୀର୍ବାୟୁରିବାବିଷହ୍ୟଃ । ୬୫ ।
ପ୍ରମତ୍ତମୁଚ୍ଚୈରିତିକୃତ୍ୟଚିନ୍ତୟା ପ୍ରବୃଦ୍ଧଲୋଭଂ ବିଷୟେଷୁ ଲାଲସମ୍ ।
ତ୍ୱମପ୍ରମତ୍ତଃ ସହସାଭିପଦ୍ୟସେ କ୍ଷୁଲ୍ଲେଲିହାନୋଽହିରିବାଖୁମନ୍ତକଃ । ୬୬ ।

---

ଏହିପରି ତୁମ୍ଭେ ନିଜର ଶକ୍ତିରେ ଜରାୟୁଜ, ଅଣ୍ଡଜ, ସ୍ୱେଦଜ, ଉଦ୍‌ଭିଦଜ ଏହି ଚତୁର୍ବିଧ ଶରୀର ସୃଷ୍ଟିକରି ସ୍ୱୀୟ ଅଂଶଦ୍ୱାରା ଏହି ସମସ୍ତରେ ପ୍ରବିଷ୍ଟ ହୋଇ ତହିଁରେ ଅବସ୍ଥାନ କର । ପୁର ବା ଶରୀର ମଧ୍ୟରେ ଶୟନ ହେତୁ ପଣ୍ଡିତମାନେ ତୁମ୍ଭଙ୍କୁ ପୁରୁଷବୋଲି କହିଥାନ୍ତି । କିନ୍ତୁ ତୁମ୍ଭେ ଜୀବ ନୁହଁ । ଯେପରି ପୁରମଧ୍ୟରେ ମଧୁମକ୍ଷିକାମାନେ ଆପଣାର ସୃଷ୍ଟ ମଧୁପାନ କରିଥାନ୍ତି, ସେହିପରି ଯେ ଅବିଦ୍ୟାରେ ମୁଗ୍ଧ ହୋଇ କ୍ଷୁଦ୍ର ବିଷୟ ସୁଖ ଭୋଗ କରେ, ସେହି ଜୀବ । ୬୪ ।

ହେ ପ୍ରଭୋ ! ଯେ ଏହି ବିଶ୍ୱସୃଷ୍ଟି କରି ତନ୍ମଧ୍ୟରେ ଅନ୍ତର୍ଯ୍ୟାମିରୂପେ ପ୍ରବିଷ୍ଟ, ତୁମ୍ଭେ ସେହି ପୁରୁଷ । ତୁମ୍ଭର ସ୍ୱରୂପ ଅଲକ୍ଷ୍ୟ ଏବଂ ବେଗ ଅତି ପ୍ରଚଣ୍ଡ । ସୁଦୁଃସହ ବାୟୁ ଯେପରି ମେଘଶ୍ରେଣିକୁ ଚତୁର୍ଦ୍ଦିଗରେ ଛିନ୍ନ ଭିନ୍ନ କରେ, ତୁମ୍ଭେମଧ୍ୟ ସେହିପରି ଭୂତଦ୍ୱାରାଭୂତ ସମୂହକୁ ସଂହାର କରୁଅଛ । ୬୫ ।

ବିଷୟାସକ୍ତ ହେତୁ ମନୁଷ୍ୟର ଲୋଭ କ୍ରମଶଃ ବୃଦ୍ଧିପାଏ, କେଉଁକାର୍ଯ୍ୟ କିପରି ଭାବରେ କରିବି, ସେହି ଚିନ୍ତାରେ ସେ ଅତିଶୟ ପ୍ରମତ୍ତ ହୋଇ ଉଠେ । ତୁମ୍ଭେ ପ୍ରମତ୍ତ ହୋଇ ସେମାନଙ୍କର ଯମରୂପେ କ୍ଷୁଧାତୁର ଲେଲିହାନ ସର୍ପ ମୂଷିକଙ୍କୁ ଆକ୍ରମଣ କଲାପରି ଜୀବକୁ ଆକ୍ରମଣ କରିଥାଅ । ୬୬ ।

---

ମାୟାରୁ ଯେ ଚାରି ପ୍ରକାର
ଯେ ଦେହେ ପଶିଁରନ୍ତି ପୁର
ନିର୍ମିତ କଲେ ଭଗବାନ
ଯେ ପ୍ରଭୁ ଜଗତଜୀବନ
ଅଶେଷ ଶରୀରେ ପ୍ରବେଶ
ଏଣୁ ଜୀବନାମ ପୁରୁଷ
ଅବିଦ୍ୟା ବନ୍ଧେ ବଦ୍ଧ ହୋଇ
ଏ ଦୁଃଖ ସୁଖ ସେ ଭୁଞ୍ଜଇ
ମାୟାରୁ ସର୍ଜ୍ଜନା ସେ କଲ
ଭିନ୍ନରୂପ ପୁରୁଷ ହୋଇଲ ।୬୪।
ଭୂତଙ୍କୁ ଭୂତରେ ସ୍ୱଜନ୍ତି
ଯେସନ୍ତେ ଆକାଶେ ଘନପନ୍ତି

ପବନେ ନାନା ଦିଗେ ଯାନ୍ତି
ଏ ଭାବେ ଭୂତେ ସଞ୍ଚରନ୍ତି
ଜୀବକୁ କର୍ମ୍ମବଳେ ଟାଣି
ସଂହାରି ନିସ୍ତାରୁ ତୁ ପୁଣି
ଏ ଜୀବ କଦର୍ମ୍ମ ହୋଇ ମତ୍ତ
ଲୋଭେ ବିଷୟେ ଦେଇ ଚିତ୍ତ
ତୁ ହେଉ ଅପ୍ରମିତ ଅସି
ତକ୍ଷଣେ ଜୀବକୁ ବିନାଶି
କାଳ ସ୍ୱରୂପେ ପ୍ରାଣହର
ଯେ ତୋତେ ନ ଭଜେ ପାମର
ଏମନ୍ତ ପ୍ରଭୁ ତୋର ମାୟା
ଜୀବ ନ ଜାଣି ଭୋଗେ ସ୍ୱେହା

କ୍ଷୁଧା ଅନଳେ ଓଷ୍ଠ ଅହି
ଗ୍ରହଣ ମୂଷା ଯେହ୍ନେ ଖାଇ
ତେସନ ଅନ୍ତକ ତୁ ହୋଇ
ଜୀବ ବିନାଶୁ ଭୋଗେକରି
ତୋ ମାୟାଭୋଗେ ଜୀବ ବଶ
ଏ ଘେନି ତୁ କାଳ ପୁରୁଷ
ଏ ଘେନି ତୋ ପାଦ କମଳେ
ଶରଣରଖରୁତମ୍ଭେ ବଳେ । ୬୫।୬୬।

କସ୍ତ୍ୱତ୍‌ପଦାବ୍‌ଜଂ ବିଜହାତି ପଣ୍ଡିତୋ ଯସ୍ତେଽବମାନବ୍ୟୟମାନକେତନଃ ।
ବିଶଙ୍କୟାସ୍ମଦ୍‌ଗୁରୁରର୍ଚ୍ଚତି ସ୍ମ ଯଦ୍‌ବିନୋପପତ୍ତିଂ ମନବଶ୍ଚତୁର୍ଦ୍ଦଶ । ୬୭ ।
ଅଥ ତ୍ୱମସି ନୋ ବ୍ରହ୍ମନ୍ ପରମାତ୍ମନ୍ ବିପଶ୍ଚିତାମ୍ ।
ବିଶ୍ୱଂ ରୁଦ୍ରଭୟଧ୍ୱସ୍ତମକୁତଶ୍ଚିଦ୍‌ଭୟା ଗତିଃ । ୬୮ ।
ଇଦଂ ଜପତ ଭଦ୍ରଂ ବୋ ବିଶୁଦ୍ଧା ନୃପନନ୍ଦନାଃ ।
ସ୍ୱଧର୍ମମନୁତିଷ୍ଠନ୍ତୋ ଭଗବତ୍ୟର୍ପିତାଶୟାଃ । ୬୯ ।
ତମେବାତ୍ମାନମାତ୍ମସ୍ଥଂ ସର୍ବଭୂତେଷ୍ୱବସ୍ଥିତମ୍ ।
ପୂଜୟଧ୍ୱଂ ଗୃଣନ୍ତଶ୍ଚ ଧ୍ୟାୟନ୍ତଶ୍ଚାସକୃଦ୍ଧରିମ୍ । ୭୦ ।

ତୁମ୍ଭପ୍ରତି ଅନାଦର କଲେ ମାନବଦେହ କ୍ଷୟପ୍ରାପ୍ତ ହୁଏ, ସୁତରାଂ କେଉଁ ପଣ୍ଡିତ ତୁମ୍ଭର ପାଦପଦ୍ମ ପରିତ୍ୟାଗ କରିବ ? ବିନାଶ ଭୟରେ ଆମ୍ଭମାନଙ୍କର ଗୁରୁ ବ୍ରହ୍ମା ମଧ୍ୟ ତୁମ୍ଭର ଚରଣକମଳ ପୂଜା କରିଥାନ୍ତି ଏବଂ ଚତୁର୍ଦ୍ଦଶମନୁ ମଧ୍ୟ ଦୃଢ଼ ବିଶ୍ୱାସରେ ତୁମ୍ଭର ପାଦପଦ୍ମ ଅର୍ଚ୍ଚନା କରିଥାନ୍ତି । ୬୭ ।

ହେ ବ୍ରହ୍ମନ୍ ! ଏହିବିଶ୍ୱ ରୁଦ୍ରଭୟରେ ବିଧ୍ୱସ୍ତ ହେଲେ, ତୁମ୍ଭେ ଆମ୍ଭମାନଙ୍କର ଗତି, ସୁତରାଂ ଆମ୍ଭମାନଙ୍କର କୌଣସି ଭୟର ଆଶଙ୍କା ନ ଥାଏ । ୬୮ ।

ହେ ନୃପନନ୍ଦନଗଣ ! ତୁମ୍ଭେମାନେ ବିଶୁଦ୍ଧଚିତ୍ତରେ ଭଗବାନଙ୍କଠାରେ ଚିତ୍ତ ସମର୍ପଣ କରି ଭଗବଦ୍‌ଭକ୍ତି ଅନୁଷ୍ଠାନ କରୁ କରୁ ଏହି ସ୍ତୋତ୍ର ଜପ କର । ଏଥିରେ ତୁମ୍ଭମାନଙ୍କର ମଙ୍ଗଳ ହେବ, ଯେଉଁ ଆତ୍ମସ୍ଥ ହରି ଅନ୍ତର୍ଯ୍ୟାମିରୂପରେ ସର୍ବଭୂତ ଅନ୍ତଃକରଣରେ ଅଧିଷ୍ଠିତ ତୁମ୍ଭେମାନେ ନିରନ୍ତର ତାହାଙ୍କର ଗୁଣ କୀର୍ତ୍ତନ ଓ ସ୍ମରଣ କରି ତାଙ୍କର ଆରାଧନା କର । ୬୯,୭୦ ।

ଆମ୍ଭେ ବ୍ରହ୍ମାଦି ଯା ଚରଣେ
ସେବୁଁ ଏ ସୃଷ୍ଟିର କାରଣେ
ତୋ ପାଦ ବନ୍ଦି ନରହରି
ଉପେକ୍ଷି ନ ପାରୁ ଯେ କରି
ଏଣୁ ଏ ମନୁ ଚତୁର୍ଦ୍ଦଶ
ତୋ ପାଦେ ଭଜେ ହୃଷୀକେଶ
ସେ ଘେନି ତୋ ପାଦ କମଳ
କେ ବୁଧ ଛାଡ଼େ ଆଦମୂଳ
ଯାବତ ଜୀବ ଏ ଶରୀରେ
ଛାଡ଼ି ନ ପାରନ୍ତି କର୍ତ୍ତରେ ।୬୭।
ଏ ବିଶ୍ୱ ଭୟେ ରୁଦ୍ର କୋପେ
ବିନାଶ କରେ କାଳ ରୂପେ
ଏଣୁ ତୁମ୍ଭରେ କରୁଁ ସ୍ତୁତି
ହେ ନାଥ ତୁମ୍ଭେ ବିଅ ଗତି
ଏ ତୁମ୍ଭ ପଙ୍କଜ ଚରଣ
ଯେ ପ୍ରାଣୀ ପଶନ୍ତି ଶରଣ
ଅଶେଷ ଦ୍ୱନ୍ଦ ମାୟା ଭୟେ
ଖଣ୍ଡନ୍ତି ପ୍ରଭୁ ଦେବରାୟେ ।୬୮।

ଶ୍ରୀ ରୁଦ୍ର ଉବାଚ—

ସେ ରୁଦ୍ର କହନ୍ତି କୁମର !
ଏ ଗୀତା ଦୃଢ଼ ଚିତ୍ତେ ଧର
ଏ ସ୍ତବ ପଢ଼ନ୍ତେ ତୁମ୍ଭର
ଅଜ୍ଞାନ ତମ ହେବ ଦୂର
ନିତ୍ୟେ ସ୍ୱଧର୍ମ ମାର୍ଗେ ଥିବ
ସକଳ କୃଷ୍ଣେ ସମର୍ପିବ
ମନ ନିବେଶି ତାଙ୍କ ପାଦେ
ଭଜୁଁ ତରିବ ଅପ୍ରମାଦେ ।୬୯।
ସେ ଆତ୍ମା ସର୍ବଘଟେ ଧରି
ଦୃଶ୍ୟ ଅଦୃଶ୍ୟ ଛନ୍ତି ପୂରି
ତାଙ୍କୁ ଏ ରୂପେ ଧ୍ୟାନ କରି
ବଦନେ ତା ନାମ ଉଚ୍ଚାରି
ଶ୍ରବଣ କରି ନିରବଧି
ତା ପାଦେ ଦେଇ ଚିତ୍ତ ବୁଦ୍ଧି ।୭୦

ଯୋଗାଦେଶମୁପାସାଦ୍ୟ ଧାରୟନ୍ତୋ ମୁନିବ୍ରତାଃ ।
ସମାହିତଧିୟଃ ସର୍ବ ଏତଦଭ୍ୟସତାଦୃତାଃ । ୭୧ ।
ଇଦମାହ ପୁରାସ୍ମାକଂ ଭଗବାନ୍ ବିଶ୍ୱସୃକ୍ପତିଃ ।
ଭୃଗ୍ୱାଦୀନାମାତ୍ମଜାନାଂ ସିସୃକ୍ଷୁଃ ସଂସିସୃକ୍ଷତାମ୍ । ୭୨ ।
ତେ ବୟଂ ନୋଦିତାଃ ସର୍ବେ ପ୍ରଜାସର୍ଗେ ପ୍ରଜେଶ୍ୱରାଃ ।
ଅନେନାଧ୍ୱସ୍ତତମସଃ ସିସୃକ୍ଷ୍ମୋ ବିବିଧାଃ ପ୍ରଜାଃ । ୭୩ ।
ଅଥେଦଂ ନିତ୍ୟଦା ଯୁକ୍ତୋ ଜପନ୍ନବହିତଃ ପୁମାନ୍ ।
ଅଚିରାଚ୍ଛ୍ରେୟ ଆପ୍ନୋତି ବାସୁଦେବପରାୟଣଃ । ୭୪ ।
ଶ୍ରେୟସାମିହ ସର୍ବେଷାଂ ଜ୍ଞାନଂ ନିଃଶ୍ରେୟସଂ ପରମ୍ ।
ସୁଖଂ ତରତି ଦୁଷ୍ପାରଂ ଜ୍ଞାନନୌର୍ବ୍ୟସନାର୍ଣ୍ଣବମ୍ । ୭୫ ।
ଯ ଇମଂ ଶ୍ରଦ୍ଧୟା ଯୁକ୍ତୋ ମଦ୍‌ଗୀତଂ ଭଗବତ୍ ସ୍ତବମ୍ ।
ଅଧୀୟାନୋ ଦୁରାରାଧ୍ୟଂ ହରିମାରାଧୟତ୍ୟସୌ । ୭୬ ।

ତୁମ୍ଭେମାନେ ମୋ ନିକଟରୁ ଯୋଗାଦେଶ ନାମକ ଏହି ସ୍ତୋତ୍ର ଶିକ୍ଷାକରି ହୃଦୟରେ ଧାରଣ କର । ମୁନିବ୍ରତ ଓ ସଯତଚିତ୍ତ ହୋଇ ଆଦରରେ ଏହି ସ୍ତୋତ୍ର ଅଭ୍ୟାସ କର । ପ୍ରଜା ସୃଷ୍ଟି ଇଚ୍ଛାରେ ଭଗବାନ୍ ବ୍ରହ୍ମା ପୂର୍ବେ ଆମ୍ଭମାନଙ୍କୁ ସୃଷ୍ଟିକାର୍ଯ୍ୟରେ ଇଚ୍ଛୁକ ଭୃଗୁ ପ୍ରଭୃତି ଆତ୍ମଜମାନଙ୍କୁ ଏହି ସ୍ତୋତ୍ର କହିଥିଲେ । ୭୧,୭୨ ।

ସେହି ପ୍ରଜାପତିଗଣ ଓ ଆମ୍ଭେମାନେ ବ୍ରହ୍ମାଙ୍କଠାରୁ ପ୍ରଜାସୃଷ୍ଟି କରିବାକୁ ପ୍ରେରିତ ହୋଇ ଏହି ସ୍ତୋତ୍ରବଳରେ ଅଜ୍ଞାନ ବିନଷ୍ଟ କରି ବିବିଧ ପ୍ରଜା ସୃଷ୍ଟି କରିଅଛୁ । ୭୩ ।

ବାସୁଦେବ ପରାୟଣ ବ୍ୟକ୍ତି ଏକାଗ୍ରଚିତ୍ତରେ ଏହି ସ୍ତୋତ୍ର ନିତ୍ୟ ଜପ କଲେ, ତାହାର ଅଚିରେ ମଙ୍ଗଳ ହୁଏ, ଇହଲୋକରେ ସର୍ବବିଧ ମଙ୍ଗଳମଧ୍ୟରେ ଜ୍ଞାନହିଁ ଶ୍ରେଷ୍ଠ; ଯେ ଜ୍ଞାନରୂପ ତରଣି ଆଶ୍ରୟ କରେ ସେ ଦୁସ୍ତର ବାସନା ପୂର୍ଣ୍ଣ ସଂସାର ସାଗର ସହଜରେ ଲଙ୍ଘିପାରେ । ୭୪,୭୫ ।

ଯେ ଶ୍ରଦ୍ଧା ପୂର୍ବକ ମଦ୍‌ଗୀତ ଏହି ସ୍ତୋତ୍ର ଅଧ୍ୟୟନ କରେ, ସେ ଦୁରାରାଧ୍ୟ ଶ୍ରୀହରିଙ୍କୁ ମଧ୍ୟ ଏହି ସ୍ତୋତ୍ରଦ୍ୱାରା ପ୍ରସନ୍ନ କରିପାରେ । ଯେଉଁ ପୁରୁଷ ସ୍ଥିରଚିତ୍ତରେ ମଦଗୀତ ଏହି ସ୍ତୋତ୍ରଦ୍ୱାରା ନିଖିଳ ମଙ୍ଗଳକର ହେତୁ ସ୍ୱରୂପ ଶ୍ରୀଭଗବାନଙ୍କୁ ପ୍ରସନ୍ନ କରେ ତାହାଙ୍କୁ ସେ ପ୍ରାପ୍ତ ହୁଏ । ୭୬,୭୭ ।

ଏ ଯୋଗ ସର୍ବେ ଚିତ୍ତେ ଧର
ଏ ମୁନିବ୍ରତ ଦୃଢ଼େ କର
ସମତା ଭାବେଣ ଆଗ୍ରହି
ହୃଦରେ ଧର ନିରବଧି । ୭୧ ।
ଏ ଗୀତା ପୂର୍ବେ ବ୍ରହ୍ମା ମୋତେ
କହିଲେ ଭୃଗାଦି ସହିତେ ।

ଏ ସ୍ତବ ପଢ଼ନ୍ତେ ଅମ୍ଭର
ଅଜ୍ଞାନ ଦଶା ଗଲା ଦୂର
ଅଜ୍ଞାନ ହତେ ଜ୍ଞାନ ଦୃଶ୍ୟ
ସକଳେ ହୋଇଲୁଁ ହରଷ
ତେବେ ବିବିଧ ମତେ ଆମ୍ଭେ
ସୃଷ୍ଟି ସର୍ଜିଲୁଁ ନିଶ୍ଚୟ ଦମ୍ଭେ । ୭୨,୭୩ ।

ହେ ପୁତ୍ରେ ସ୍ତୋତ୍ର ଫଳ ଯେତେ
କହିବା ଶୁଣ ଏକଚିତ୍ତେ
ଏହା ଯେ ନିରତେ ପଢ଼ନ୍ତି
ତ୍ରିବିଧ ତାପ ବିନାଶନ୍ତି
ଯେବା ଆଦରେ ଦୃଢ଼ଚିତ୍ତ ସ୍ମରେ
ସକଳ ଆପଦୁଁ ଉଦ୍ଧରେ

ବାଦତେ ପୁରୁଷୋଽମୁଷାଦ୍ ଯଦ୍‌ଯଦଚ୍ଛତ୍ୟସତ୍ତ୍ୱରନ୍ ।
ମଦ୍‌ଗୀତଗୀତାତ୍ ସୁପ୍ରୀତାଚ୍ଛ୍ରେୟସାମେକବଲ୍ଲଭାତ୍ । ୭୭ ।
ଇଦଂ ଯଃ କଲ୍ୟ ଉତ୍ଥାୟ ପ୍ରାଞ୍ଜଳିଃ ଶ୍ରଦ୍ଧୟାନ୍ୱିତଃ ।
ଶୃଣୁୟାଚ୍ଛ୍ରାବୟେନ୍ମର୍ତ୍ତ୍ୟୋ ମୁଚ୍ୟତେ କର୍ମବନ୍ଧନୈଃ । ୭୮ ।
ଗୀତଂ ମୟେଦଂ ନରଦେବନନ୍ଦନାଃ ପରସ୍ୟ ପୁଂସଃ ପରମାତ୍ମନଃ ସ୍ତବମ୍ ।
ଜପନ୍ତ ଏକାଗ୍ରଧିୟସ୍ତପୋ ମହଚ୍ଚରଧ୍ୱମନ୍ତେ ତତ ଆପ୍‌ସ୍ୟଥେପ୍‌ସିତମ୍ । ୭୯ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ରୁଦ୍ରଗୀତଂ ନାମ ଚତୁଃବିଂଶୋଽଧ୍ୟାୟଃ । ୨୪ ।

---

ଯେଉଁ ପୁରୁଷ ପ୍ରାତଃ କାଳରେ ଗାତ୍ରୋତ୍ଥାନ କରି ଶ୍ରଦ୍ଧାରେ କୃତାଞ୍ଜଳିପୂର୍ବରେ ଏହି ସ୍ତୋତ୍ର ଶ୍ରବଣ କରିବ ବା କରାଇବ ତାହାର କର୍ମବନ୍ଧନ ମୋଚନ ହେବ । ୭୮ ।

ହେ ନରଦେବନନ୍ଦନ ! ମୁଁ ପରମପୁରୁଷ ପରମାତ୍ମାଙ୍କର ଏହି ସ୍ତୋତ୍ର ତୁମ୍ଭ ନିକଟରେ କୀର୍ତ୍ତନ କଲି, ଏହା ଏକାଗ୍ରଚିତ୍ତରେ ଜପକରି ତପସ୍ୟାଚରଣ କର । ତାହା ହେଲେ ଶୀଘ୍ର ଅଭୀଷ୍ଟ ଫଳ ଲାଭ କରିବ । ୭୯ ।

---

ଏ ସର୍ବ ଧର୍ମ ମଧ୍ୟେ ସାର
ଏ ବିନୁ ନାହିଁ ଶ୍ରେୟ ଆର
ହେ ପୁତ୍ରେ ! ଦୃଢ଼ ଚିତ୍ତେ ଧର
ଦୁଃଖ ସାଗରୁ ହେବ ପାର
ଏ ସ୍ତବେ ପୂଜ ହରିପାଦ
ଖଣ୍ଡିବ ଅଶେଷ ଆପଦ
ତୁମ୍ଭର ଭକ୍ତି ସେ ଘେନିବେ
କାମାଦି ଶତ୍ରୁ ନିବାରିବେ
ଯେ କାମ ବେଗେ ଇଚ୍ଛା ଯାର
ସମ୍ପୂର୍ଣ୍ଣେ ଲଭିବେ ସେ ନର

ପ୍ରଭାତ ସନ୍ଧ୍ୟାରେ ନିରତେ
ଯେତୁ ପଢ଼ିବେ ଦୃଢ଼ଚିତ୍ତେ
କର୍ମ୍ମଜ ପ୍ରକାଶିବ ଜ୍ଞାନ
ଅସତ୍ୟ ଦେଖ ଭୋଗମାନ
ଯେ ଶ୍ରଦ୍ଧା ବଧାନେ ପଢନ୍ତି
ଅଜ୍ଞାନ ଭ୍ରମେ ନ ପଡ଼ନ୍ତି ।୭୪-୭୯
ମହେଶ କହିଲେ କର୍ଣ୍ଣରେ
ଆନନ୍ଦେ ଧରି ତା ଭୁମରେ
ସାଷ୍ଟାଙ୍ଗେ ତାହାଙ୍କ ଚରଣେ
ନମିଲେ ପ୍ରଚେତସଗଣେ

କଲ୍ୟାଣ କଲେ ଶୂଳଧର
ସକଳ ବାଞ୍ଛା ପୂର୍ଣ୍ଣକର
ସେ ଗୁରୁ ଶିଷ୍ୟଙ୍କ ଚରିତ
ମୈତ୍ରେୟ ବିଦୁର କଥିତ
କହିଲୁଁ ତୁମ୍ଭଙ୍କୁ ପ୍ରସଙ୍ଗେ
ଯେ ଏହା ପଢ଼େ ଶୁଦ୍ଧମନେ
ଏ ଘୋର ସଂସାରୁ ତରନ୍ତି
ମରଣେ ନାହିଁ ତାଙ୍କ ଭ୍ରାନ୍ତି
କହଇ ବିପ୍ର ଜଗନ୍ନାଥ
ଚତୁର୍ଥ ସ୍କନ୍ଧେ ଭାଗବତ ।



## ପ ଞ୍ଚ ବିଂ ଶ ଅ ଧ୍ୟା ୟ ।

ପୁରଞ୍ଜନକଥାବ୍ୟାଜାତ୍ ପଞ୍ଚବିଂଶେ ତୁ ନାରଦଃ ।
ଆତ୍ମନୋ ବୁଦ୍ଧିସଙ୍ଗେନ ବିବଧାମାହ ସଂସୃତିମ୍ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀମୈତ୍ରେୟ ଉବାଚ । ଇତି ସଂଦିଶ୍ୟ ଭଗବାନ୍ ବାର୍ହିଷଦୈରଭିପୂଜିତଃ ।
ପଶ୍ୟତାଂ ରାଜପୁତ୍ରାଣାଂ ତତ୍ରୈବାନ୍ତର୍ଦଧେ ହରଃ । ୧ ।
ରୁଦ୍ରଗୀତଂ ଭଗବତଃ ସ୍ତୋତ୍ରଂ ସର୍ବେ ପ୍ରଚେତସଃ ।
ଜପନ୍ତସ୍ତେ ତପସ୍ତେପୁର୍ବର୍ଷାଣାମୟୁତଂ ଜଲେ । ୨ ।
ପ୍ରାଚୀନବର୍ହିଷଂ କ୍ଷତ୍ତଃ କର୍ମସ୍ୱାସକ୍ତମାନସମ୍ ।
ନାରଦୋଽଧ୍ୟାତ୍ମତତ୍ତ୍ୱଜ୍ଞଃ କୃପାଳୁଃ ପ୍ରତ୍ୟବୋଧୟତ୍ । ୩ ।

---

### ପୁରଞ୍ଜନ ଉପାଖ୍ୟାନ ।

ପଞ୍ଚବିଂଶ ଅଧ୍ୟାୟରେ ମହାମୁନି ନାରଦ ପ୍ରାଚୀନବର୍ହୀଙ୍କ ନିକଟରେ ପୁରଞ୍ଜନୋପାଖ୍ୟାନ ଛଳରେ ବନ୍ଧବିଧଜ୍ଞାନୋପଦେଶ ଦେବା ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀମୈତ୍ରେୟ କହିଲେ :—ବର୍ହିଷଦ ପୁତ୍ର ପ୍ରଚେତାମାନେ ଭଗବାନ୍ ରୁଦ୍ରଙ୍କଠାରୁ ଏହିସବୁ ଉପଦେଶ ଗ୍ରହଣ କରିସାରେ ସେମାନେ ତାହାଙ୍କୁ ପୂଜା କଲାଉତ୍ତାରୁ ଶିବ ଅନ୍ତର୍ହିତ ହେଲେ । ୧ ।

ପ୍ରଚେତାମାନେ ରୁଦ୍ରଗୀତ ନାମକ ଭଗବାନଙ୍କର ଏହି ସ୍ତୋତ୍ର ଜପ କରୁ କରୁ ଦଶସହସ୍ର ବର୍ଷ ଜଳ ମଧ୍ୟରେ ଅବସ୍ଥାନ କରି ତପସ୍ୟା କରିଥିଲେ । ୨ ।

ହେ ବିଦୁର ! ଏହି ସମୟରେ ରାଜା ପ୍ରାଚୀନ ବର୍ହୀଙ୍କର ଚିତ୍ତ କର୍ମାସକ୍ତ ଥିବାରୁ ଆତ୍ମତତ୍ତ୍ୱବିତ୍ ନାରଦ ତାହାଙ୍କ ପ୍ରତି କୃପାପ୍ରକାଶ କରି ତାହାଙ୍କୁ ଜ୍ଞାନ ଉପଦେଶ ଦେଇଥିଲେ । ୩ ।

---

ପଚଶେ ପ୍ରାଚୀନ ବରହି, ପାଶେ ନାରଦମୁନି ଯାଇ । ପୁରଞ୍ଜନର କଥାଛଳେ, ଅନେକ ଜ୍ଞାନ ବୁଝାଇଲେ ॥

ଶ୍ରୀମୈତ୍ରେୟ ଉବାଚ—
ଶୁଣ ସୁମନେ ହେ ବିଦୁର
ଏମନ୍ତେ ମହେଶ ଠାକୁର
କୃପା ଯେ କଲେ ସେମାନଙ୍କୁ
କହିଲେ ରୁଦ୍ରଗୀତା ତାଙ୍କୁ
ସେ ସର୍ବେ ହରଷ ହୋଇଲେ
ବିଧାନେ ଶିବଙ୍କୁ ପୂଜିଲେ
ତାହାଙ୍କୁ ଦେଇ ଦିବ୍ୟଜ୍ଞାନ
ଶିବ ହୋଇଲେ ଅନ୍ତର୍ଦ୍ଧାନ । ୧ ।
ସେ ଦଶ ଭାଇ ପ୍ରଚେତସ
ଜଳରେ ହୋଇଲେ ହରଷ
ବୁଡ଼ଣ ସମୁଦ୍ର ସଲିଳେ
ସେ ଘୋର ତପସ୍ୟା କରିଲେ
ଅୟୁତେ ସମ୍ବତ୍ସରେ ଶେଷ
ତପ ସାଧନେ ଭାଇ ଦଶ
ରହିଲେ ଷଡ଼ରିପୁ ମାରି
ମନ ପବନ ହୃଦେ ଧରି
ନିତ୍ୟେ ପଢ଼ନ୍ତି ରୁଦ୍ରଗୀତା
ତପେ ହୋଇଲେ ଊର୍ଦ୍ଧ୍ୱରେତା । ୨ ।
ତଦନ୍ତେ ଶୁଣ ହେ ବିଦୁର
ସେ ଯେ ପ୍ରାଚୀନ ନୃପବର
ରାଜ୍ୟ କରଇ ଅବିବେକ
ସ୍ୱଭାବେ ଅଜ୍ଞାନୀ କାମୁକ
ହିଂସକ କର୍ମ୍ମ ଜାଣି ତାର
ମନେ ଚିନ୍ତନ୍ତି ମୁନିବର
ଏ ମହୀପତି ପୃଥୁବଂଶ
ଏ କର୍ମ୍ମମାର୍ଗେ ଗଲା ନାଶ
ବିପ୍ରବଚନେ ଧ୍ୱଂସ ହେଲା
ଅନେକ ପଶୁ ବଧକଲା
ଅଦୋଷୀ ଜୀବ ଯଜ୍ଞେ ମାରି
ସେ ତାର ନୁହନ୍ତି ବଇରୀ
ଦୁର୍ଲ୍ଲଭ ଜନ୍ମ କଲା ନାଶ
କର୍ମ୍ମେ ହୋଇଲା ଜ୍ଞାନ ଧ୍ୱଂସ
ଏମନ୍ତ ସ୍ମରି ଦୟାଚିତ୍ତେ
ସେ ମୁନି ସତ୍ୱରେ ଆଗତେ
ସେ ସର୍ବ ଘଟେ ଦୟାସର
ଅଧ୍ୟାତ୍ମବିଦ୍ୟା ଜ୍ଞାନେ ସାର
କରୁଣା କରି ସେ ରାଜାଙ୍କୁ
ଦର୍ଶନ ଦେଲେ ଆସି ତାଙ୍କୁ । ୩ ।

ଶ୍ରେୟସ୍ତ୍ୱଂ କତମଦ୍ରାଜନ୍ କର୍ମଣାତ୍ମନ ଈହସେ ।
ଦୁଃଖହାନିଃ ସୁଖାବାପ୍ତିଃ ଶ୍ରେୟସ୍ତନ୍ନେହ ଚେଷ୍ୟତେ । ୪ ।
ଶ୍ରୀରାଜୋବାଚ । ନ ଜାନାମି ମହାଭାଗ ପରଂ କର୍ମାପବିଦ୍ଧଧୀଃ ।
ବ୍ରୂହି ମେ ବିମଲଂ ଜ୍ଞାନଂ ଯେନ ମୁଚ୍ୟେୟଂ କର୍ମଭିଃ । ୫ ।
ଗୃହେଷୁ କୂଟଧର୍ମେଷୁ ପୁତ୍ରଦାରଧନାର୍ଥଧୀଃ ।
ନ ପରଂ ବିନ୍ଦତେ ମୂଢୋ ଭ୍ରାମ୍ୟନ୍ ସଂସାରବର୍ତ୍ମସୁ । ୬ ।

---

ଦେବର୍ଷି ନାରଦ ତାହାଙ୍କୁ ପ୍ରଶ୍ନ କଲେ—ହେ ରାଜନ୍ ! ତୁମ୍ଭେ ଏହି କାମ୍ୟ କର୍ମଦ୍ୱାରା କୌଣସି ଶ୍ରେୟ କାମନା କରୁଅଛ, ଦୁଃଖ ନିବୃତ୍ତି ଓ ସୁଖପ୍ରାପ୍ତି ଏ ଉଭୟ ମଙ୍ଗଳକର୍ମ; କିନ୍ତୁ ତୁମ୍ଭର କର୍ମଦ୍ୱାରା ଏହି ଦୁଇଟି ଲାଭ ହେବ ନାହିଁ । ୪ ।

ପ୍ରାଚୀନ ବର୍ହି କହିଲେ—ହେ ମହାଭାଗ ! ମୋର ବୁଦ୍ଧି କର୍ମାସକ୍ତ ହେବାରୁ ମୋପକ୍ଷରେ କଅଣ ମଙ୍ଗଳଜନକ, ତାହା ମୁଁ ଜାଣିପାରୁ ନାହିଁ, ଆପଣ ମୋତେ ଏହି କର୍ମବନ୍ଧନରୁ ମୁକ୍ତିଲାଭ କରିବାଲାଗି ନିର୍ମଳ ଉପଦେଶ ପ୍ରଦାନ କରନ୍ତୁ । ୫ ।

ଗୃହବ୍ରତ ବ୍ୟକ୍ତିମାନେ ପୁତ୍ର, କଳତ୍ର ଓ ଧନକୁ ପୁରୁଷାର୍ଥ ବୋଲି ମନେ କରନ୍ତି, ଯେଉଁ ମୂଢ ବ୍ୟକ୍ତି କାମ୍ୟ କର୍ମରେ ଆସକ୍ତ ହୋଇ ସଂସାରପଥରେ ଭ୍ରମଣ କରେ, ସେ କଦାପି ପରମପଦାର୍ଥ ଲାଭ କରି ପାରେ ନାହିଁ । ୬ ।

---

ମୁନିଙ୍କି ଦେଖି ସେ ରାଜନ
ତେକ୍ଷଣେ ଉଠିଲା ଆସନ
ସତ୍ୱରେ କଲା ନମସ୍କାର
ଆନନ୍ଦେ ପୂଜିଲା ପୟର
ଆସନେ ବସାଇଲା ନେଇ
ପାଦକମଳ ଦେଲା ଧୋଇ
ତାର ଭକତି ଭାବେ ତୋଷ
ସେ ମୁନିବର ହେଲେ ବଶ
କହନ୍ତି ତାକୁ ଦୟା ବହି
ହେ ନୃପ ତୋର ଜ୍ଞାନ ନାହିଁ
ତୁ କର୍ମ୍ମମାର୍ଗେ ହେଲୁ ହୀନ
ବିଅର୍ଥେ ଗଲା ତୋର ଦିନ
ନିରତେ କର୍ମ୍ମେ ନିମଜ୍ଜିଲୁ
ତୁ ଆତ୍ମାହିତ ନ ଜାଣିଲୁ
ଯେ କର୍ମ୍ମେ ମୋକ୍ଷମାର୍ଗ ହାନି
ତୁ ତାହା ଶ୍ରେୟ ପ୍ରାୟ ମଣି

ଯେ ସଙ୍ଗ ଦୋଷେ ଜ୍ଞାନ ଯାଏ
ବୁଝି ତୁ ନ ପାରିଲୁ ରାଏ
ତୁ ଅତି ସ୍ନେହେ ତହିଁ ବଦ୍ଧ
ଯେ ସଙ୍ଗ ଦୋଷେ ଧର୍ମ୍ମବାଧ ।୪।

ଶ୍ରୀ ରାଜୋବାଚ—

ତା ଶୁଣି ଭଣେ ନୃପମଣି
ବଜ୍ର ନିର୍ଘାତ ପ୍ରାୟେ ମଣି
ଉତ୍ତରେ କହଇ ନୃପତି
ହେ ମୁନି ମୁଁ ଯେ ମୂଢମତି
ବିଷୟ ଜଡ଼ ମୋହ ହୋଇ
ମୁଁ ମୂଢ ଜ୍ଞାନ ନ ଜାଣଇ
ଯେବେ ଅଇଲ ମୋର ହିତେ
ମୋ ଭାଗ୍ୟବଶେ ଦୟାଚିତ୍ତେ
ଯେଣୁ ତୁମ୍ଭର ଦରଶନ
ହରଇ ବିଷୟ ବନ୍ଧନ

ଏ ଘୋର ଜଡ଼ କର୍ମ୍ମ ମୋର
କହି ଅଜ୍ଞାନ ପରିହର
ତୁମ୍ଭେ ସଂସାର ପ୍ରାଣୀହିତେ
ଭ୍ରମଣ କରୁଥାଅ ନିତ୍ୟେ
ଅବ୍ୟକ୍ତ ଗତି ଯେ ତୁମ୍ଭର
ଦେବ ମାନବେ ଅଗୋଚର
ଯେଣେ ନୋହିବ କର୍ମ୍ମେ ବଦ୍ଧ
ହୋଇବ ମୋକ୍ଷମାର୍ଗ ସାଧ
ହେ ମୁନି ମୁଁ ମୂଢ ଦୁର୍ମ୍ମତି
ଦାର ତନୟ ସ୍ନେହେ ମାତି
ଏଣୁ ନୋହିଲା ଜ୍ଞାନେ ସଧ
ରାଜବର୍ତ୍ମ-ମଦେ ଅନ୍ଧ
ଇନ୍ଦ୍ରିୟ ରସ ଭୋଗ ମୁହିଁ
ନିର୍ବନ୍ଧେ ଛାଡ଼ ନ ପାରଇ
ଯେବେ ସୁଦୟା ତୁମ୍ଭ ଚିତ୍ତେ
ଏବେ ଘୋର ବନ୍ଧୁ ଫେଡ଼ ମୋତେ ।୫,୬

**ଶ୍ରୀନାରଦ ଉବାଚ ।**

**ଭୋ ଭୋ ପ୍ରଜାପତେ ରାଜନ୍ ପଶୂନ୍ ପଶ୍ୟ ତ୍ୱୟାଧ୍ୱରେ ।**
**ସଂଜ୍ଞାପିତାନ୍ ଜୀବସଂଘାନ୍ ନିର୍ଘୃଣେନ ସହସ୍ରଶଃ । ୭ ।**

ଶ୍ରୀନାରଦ କହିଲେ :—

ହେ ପ୍ରଜାପାଳକ ! ତୁମ୍ଭେ ନିଷ୍ଠୁର ଭାବରେ ଯଜ୍ଞରେ ସହସ୍ର ସହସ୍ର ପଶୁହତ୍ୟା କରିଅଛ, ସେହି ସେହି ଜୀବମାନଙ୍କୁ ଏହି ଦେଖ । ୭ ।

ଶ୍ରୀ ନାରଦ ଉବାଚ—

ଏମନ୍ତେ ରାଜାବାକ୍ୟ ଘେନି
ଅତି ଆନନ୍ଦେ ଦେବମୁନି
କହନ୍ତି ଚିତ୍ତେ ଦୟା ବହି
ଶୁଣ ପ୍ରାଚୀନ ପୁଣ୍ୟଦେହୀ
ତୁ କର୍ମକାଣ୍ଡେ ବିଶାରଦ
ତେଣୁ ହୋଇଲୁ କର୍ମ ବଦ୍ଧ
ତୁ ଯେ ଜଗତେ ପ୍ରଜାପତି
ଏ ଯଜ୍ଞ କର୍ମେ ଦୃଢମତି
ଯେ ପୂର୍ବ ପୁଣ୍ୟ ତୋର ଥିଲା
ଏ ଯଜ୍ଞ କର୍ମେ ନଷ୍ଟ ଗଲା
ତୁ ବିପ୍ରବାକ୍ୟେ ହେଲୁ ଅନ୍ଧ
ଅନେକ କଲୁ ପଶୁବଧ
ଅଦୋଷୀ ଜୀବ ଯଜ୍ଞେ ମାରି
ସେ ତୋର ନୁହନ୍ତି ବଇରୀ
ତୁ ରାଜା ଏଡ଼େ ଅବିବେକ
ଦୟା ନ ବସିଲା ତିଳେକ
ଏ ପଶୁଗଣେ କୋପ ବହି
ତୋ ମୃତ୍ୟୁବାଟ ଛନ୍ତି ରହି
ଏ ତୋତେ ନିଶ୍ଚେ ବିନାଶିବେ
ତୁ ନୃପ ବୋଲି ନ ଡରିବେ
ତୁ ପୀଡ଼ା ଦେଇଅଛୁ ଯେତେ
ସେ କୋପେ ସୁମରନ୍ତି ନିତ୍ୟେ
ତାହାଙ୍କ ଯାଇନାହିଁ କ୍ରୋଧ
ଦୁଃଖ ସେ ନିଶ୍ଚେ ଦେବେ ମଧ୍ୟ
ତୋତେ ପାଇଲେ ପରଲୋକେ
କାଟି ଭକ୍ଷିବେ ଏକେ ଏକେ
ତାହାଙ୍କ ଶୃଙ୍ଗ ତୀକ୍ଷ୍ଣ ଧାର
ସେ ଲୌହ ସମାନେ କଠୋର
ସେ ଶୃଙ୍ଗେ ତୋ ଦେହ କାଟିବେ
ତେବେ ସେ କ୍ରୋଧ ଉପେକ୍ଷିବେ
ଆମ୍ଭେ ଦେଖିଲୁଁ ସ୍ୱର୍ଗପଥେ
ତୋ ପ୍ରତିଆଶେ ପଶୁଯୂଥେ
ଦଶନେ ଅଧର କାମୋଡ଼ି
କୋପେ କରନ୍ତି ଘୋରରଡ଼ି
ଦଶନ ଧରି ବିକରାଳ
ଖୁରେ ଖୋଳନ୍ତି ମହୀସ୍ଥଳ
ସେ ତୋତେ ପାଇଲେ ରାଜନ
କରିବେ ଅବଶ୍ୟ ଭୋଜନ
ତାହାଙ୍କ ମୁଖରେ ରାଜନ
ସହି କେ ପାଇବ ଜୀବନ
ଆମ୍ଭେ ଦେଖିଣ ଭୟ ଚିତ୍ତେ
ଶୀଘ୍ରେ ଆଇଲୁଁ ତୋର ହିତେ
କହିଲୁଁ ସତ୍ୟ ନିରଧାରି
ଏ ମିଥ୍ୟା ନୋହେ ନୃପବର
ଯେବେ ସଂଶୟ ତୋର ଚିତ୍ତେ
ପ୍ରତ୍ୟକ୍ଷ ଦେଖାଇବା ତୋତେ
ଏମନ୍ତ କହି ମୁନିବର
ଯୋଗନିଦ୍ରାଏ ତା ଶରୀର
ହରିଲେ ମନ ବୁଦ୍ଧି ଜ୍ଞାନ
ତକ୍ଷଣେ ନୃପତି ଅଜ୍ଞାନ
ସେ ଯୋଗନିଦ୍ରାଏ ସ୍ୱପନେ
ପ୍ରବେଶ ଯମର ଭୁବନେ
ଦେଖିଲା ତହିଁ ନୃପଗଣେ
ଦୁଃଖିତ ଇତ୍ୟାଦି କାରଣେ
ଯେ ଯାହା ଭାବ କର୍ମଦ୍ୱାରେ
ପୀଡ଼ନ୍ତି ଶତ୍ରୁ ଓଜ ଯାହାରେ
ଯେ ଶସ୍ତ୍ରେ ଯାକୁ ଯେବା ମାରି
ସେ ଅନୁସାରେ ଶୃଙ୍ଗ ଧରି
ଗଦା ମୁଦ୍ଗର ଅସିବର
କୁନ୍ତ କୁଠାର ଶକ୍ତି ଶୂଳ
ଏ ଆଦି ଶସ୍ତ୍ର ନାନାମତେ
ପ୍ରକୋପେ ପ୍ରହାରନ୍ତି ନିତ୍ୟ
ଯେ ଯାର ଶତ୍ରୁ କର୍ମ ଦ୍ୱାରେ
ସୁମରି ଦଣ୍ଡ ଦ୍ୟନ୍ତି ତାରେ
କେ ବୃକ୍ଷେ ବାନ୍ଧଣ ପିଟନ୍ତି
କେ ବଳେ ତୋଳି କଚାଡ଼ନ୍ତି
ଅଧୋବଦନେ ଊର୍ଦ୍ଧ୍ୱେ ପାଦ
ଏ ଆଦି ଅଶେଷ ବିଷାଦ
ନାନା କଦର୍ଥନେ ପୀଡ଼ନ୍ତି
ନୟନେ ପ୍ରକୋପେ ଚାହାନ୍ତି
ଅଧର ଚାପି ଦନ୍ତେ ଭିଡ଼ି
କୋପେ କରନ୍ତି ଘୋର ରଡ଼ି
ପଶୁଙ୍କ ଦଣ୍ଡ ଉପତାପେ
ତରେଣ ଭେଦନ୍ତି ଅଧିପେ
ଦୁଃସହ ଭୟେ ଦୁଃଖେ ଛନ୍ତି
ସ୍ରବିତ ମୂତ୍ରଦ୍ୱାରମାନ

**ଏତେ ତ୍ୱାଂ ସଂପ୍ରତୀକ୍ଷନ୍ତେ ସ୍ମରନ୍ତୋ ବୈଶସଂ ତବ ।**
**ସମ୍ପରେତମୟୂଃ କୂଟୈଶ୍ଛିନ୍ଦନ୍ତ୍ୟୁତ୍ଥିତମନ୍ୟବଃ ।୮।**

ସେହି ପଶୁମାନେ ତୁମ୍ଭର ମୃତ୍ୟୁ ପ୍ରତୀକ୍ଷା କରୁଅଛନ୍ତି, ତୁମ୍ଭର ମୃତ୍ୟୁ ହେଲାମାତ୍ରେ ସେମାନେ ତୁମ୍ଭଙ୍କୁ ଲୌହ ଶୃଙ୍ଗ ଦ୍ୱାରା ଛିନ୍ନ ବିଛିନ୍ନ କରିବେ ।୮।

ଦେଖି ପ୍ରାଚୀନ ନୃପବର
ଭୟେ ଉଦ୍ବର୍ଗ ପଞ୍ଚପ୍ରାଣ
ଭ୍ରମ ହୋଇଲା ବୁଦ୍ଧି ମତି
ପଳାଇ ଗଲେ ନୃପତି
ତା ଯାଗେ ବଧ ପଶୁଗଣେ
ସେ ଆସି ବେଢିଲେ ତକ୍ଷଣେ
ସେ ନିଜ ଶତ୍ରୁ ପାଇ କୋପେ
ବେଗେ ଭକ୍ଷିଲେ କ୍ଷୁଧା ତାପେ
ବୃକସମୂହ ମୃଗ ଯେସନ୍ତେ
ରାଜାକୁ ବେଢିଲେ ତେସନେ
ଆଚ୍ଛୋର ଶତେ ଶରେ କରି
ଏକ ଆରକେ ବଳେ ଧରି
ଦଶନେ ଧରି ଓଟାରନ୍ତି
ଏକ ଆରକେ ମୁଖେ ନିଅନ୍ତି
ଦୁଃସହ ଦୁଃଖେ ସେ ରାଜନ
ବ୍ୟାକୁଳେ କରଇ ରୋଦନ
ନିର୍ଦ୍ଦୟ ପଶୁ ଦୁଷ୍ଟପଣେ
ମାଂସ ଭକ୍ଷନ୍ତି ଅନୁକ୍ଷଣେ
ଭକ୍ଷନ୍ତି ଅସ୍ଥି ଶେଷ ଯାଏ
ଯାବତ କ୍ରୋଧ ଶାନ୍ତ ନୋହେ
ଛେଦନ୍ତି ଅନ୍ୟ ପଶୁଗଣେ
ସେ ବେଢି ଭକ୍ଷନ୍ତି ତକ୍ଷଣେ
ମାୟାରେ ପୁନରପି କାୟେ
ପ୍ରକାଶେ ପୂର୍ବ ତନୁ ପ୍ରାୟେ
ଅଜ୍ଞାନେ ନ ଜାଣେ ନୃପତି
ଭୟେ ପଳାଇ ଚକିତ
ତେଣେ ଗୋଡ଼ାନ୍ତି ପଶୁଗଣେ
ବେଢି ଭକ୍ଷନ୍ତି ଜଣେ ଜଣେ
ଏମନ୍ତେ ଦୁଃଖ ମହାଘୋରେ
ରୋଦନ କରେ ଉଚ୍ଚସ୍ୱରେ

ତାରେ ରକ୍ଷକ କେହି ନାହିଁ
ଶତ୍ରୁ ସମୂହେ ପୀଡ଼େ ଦେହି
ସଭୟେ ଭ୍ରମଇ ରାଜନ
ନିଶ୍ଚେ ନାଶିବେ ମୋ ଜୀବନ
ଏମନ୍ତେ ଭ୍ରମନ୍ତେ ଆକୁଳେ
ମୁନି ଜାଣିଲେ ଯୋଗବଳେ
ଏ ମିଥ୍ୟାଭୟେ ନୃପ ଛନ୍ନ
ଅବଶ୍ୟ ଛାଡ଼ିବ ଜୀବନ
ତକ୍ଷଣେ ଭକ୍ତିଁ ମୁନିବର
ହରିଲେ ଯୋଗନିଦ୍ରା ତାର
ତକ୍ଷଣେ ସେ ଜ୍ଞାନ ଲଭିଲା
ବନ୍ଧୁଙ୍କ ସଦ୍ଧରେ ଉଠିଲା
ମୁନିଙ୍କି କୋଳାଗ୍ରତ କରି
ସେ ମିଥ୍ୟା ଭୟେ ନୃପ ଡରି
କମ୍ପିତ କାତରେ ରାଜନ
ବ୍ୟଥିତେ ହୋଇ ଛନ୍ନ ଛନ୍ନ
ଏ ଦୁଷ୍ଟ ପଶୁ ଭୟଙ୍କର
ନିଶ୍ଚେ ଭକ୍ଷିବେ ମୋ ଶରୀର
ଏମନ୍ତ କହି ସେ ରାଜନ
ଉଚ୍ଚସ୍ୱନେ କରଇ ରୋଦନ
ଅତି ବିଭ୍ରମ ଦେଖି ତାର
କହି ବୋଧନ୍ତି ନୃପବର
ଏ ମିଥ୍ୟା ଭୟେ ତୁ ରାଜନ
ବ୍ୟଥିତ ହେଉ କପାଁ ଛନ୍ନ
ଏବେ ପ୍ରତ୍ୟକ୍ଷେ ଦେଖ ରାୟେ
ନୟନ ଫେଡି ତୁ ନିର୍ଭୟେ
ଯେ ଘୋର ଭୟ ପାଁଡ଼ା ତୋତେ
ଅଜ୍ଞାନେ ଦେଉଥିଲେ ସତ୍ୟେ
ଅଦୃଶ୍ୟ ହେଲେ ଆମ୍ଭ ତରେ
ତୋ ଅନ୍ତେ ପୀଡ଼ିବେ ସେ ପୁରେ

ତୁ ଦୁଃଖ ଦେଇଅଛୁ ଯେତେ
ଅବଶ୍ୟ ସେହୁ ଦେବେ ତୋତେ
ଶୁଣି ସଭ୍ରମେ ନୃପବର
ଏ କଷ୍ଟୁ ରଖ ମୁନିବର
ଏ ଯେତେ ଦୁଷ୍ଟ ପଶୁ ଘୋର
କରୁ ଏଥୁଁ ମୁଁ ନିସ୍ତାର
କହିବା ଏଥିର କାରଣ
ତୁମ୍ଭେ ସର୍ବଙ୍କ ସର୍ବ ଜାଣ
ତା ଶୁଣି ଦେବ ମହର୍ଷି
ରାଜା ବିଭ୍ରମେ ମନେ ହସି
ଶୁଣ ସୁମନେ ନୃପବର
କହିବା ଏଥିର ବିସ୍ତର
ଏବେ ତୁ ଛାଡ଼ ସୁତ ବିତ୍ତ
ଦାର ବନ୍ଧୁରେ ସ୍ନେହ ଚିତ୍ତ
ଅଷ୍ଟ ଐଶ୍ୱର୍ଯ୍ୟ ଭୋଗ ଯେତେ
ଏ ରାଜବିଭୂତି ସହିତେ
ଏ ସର୍ବ ତେଜି କୃଷ୍ଣପାଦେ
ଏକାନ୍ତେ ଭଜ ଅପ୍ରମାଦେ
ତେବେ ଏ ହତ୍ୟା ଦୁଃଖ ଘୋର
ବେଗେ ଛାଡ଼ିବ ନୃପବର
ଏ ବନେ ଅନ୍ୟ ଚୋର ଗଣ
ଅପରେ ନ ଦେଖି ନୃପତି
ତା ଶୁଣି ସଭୟେ ରାଜନ
ହେ ମୁନି ମୁଁ ମୂଢ଼ ଅଜ୍ଞାନ
ଏ ପୁତ୍ର ଦାର ସ୍ନେହ ଅତି
ଇନ୍ଦ୍ରିୟ ଭୋଗ ରସେ ମାତି
ଇତ୍ୟାଦି ଗୃହ ବସ୍ତୁ ଯେତେ
ମୁଁ ଛାଡ଼ି ପାରିବି କେମନ୍ତେ
ଉପାୟ ଥିଲେ ମୁନିବର
କହି ଅଜ୍ଞାନ ଦୂର କର । ୨୫

ଅଥ ତେ କଥୟିଷ୍ୟେଽମୁମିତିହାସଂ ପୁରାତନମ୍ ।
ପୁରଞ୍ଜନସ୍ୟ ଚରିତଂ ନିବୋଧ ଗଦତୋ ମମ । ୯ ।
ଆସୀତ୍ ପୁରଞ୍ଜନୋ ନାମ ରାଜା ରାଜନ୍ ବୃହଚ୍ଛ୍ରବାଃ ।
ତସ୍ୟାବିଜ୍ଞାତ ନାମାସୀତ୍ ସଖାଽବିଜ୍ଞାତଚେଷ୍ଟିତଃ । ୧୦ ।
ସୋଽନ୍ୱେଷମାଣଃ ଶରଣଂ ବଭ୍ରାମ ପୃଥିବୀଂ ପ୍ରଭୁଃ ।
ନାନୁରୂପଂ ଯଦାବିନ୍ଦଦଭୂତ୍ ସ ବିମନା ଇବ । ୧୧ ।
ନ ସାଧୁ ମେନେ ତାଃ ସର୍ବା ଭୂତଲେ ଯାବତୀଃ ପୁରଃ ।
କାମାନ୍ କାମୟମାନୋଽସୌ ତସ୍ୟ ତସ୍ୟୋପପତ୍ତୟେ । ୧୨ ।
ସ ଏକଦା ହିମବତୋ ଦକ୍ଷିଣେଷ୍ୱଥ ସାନୁଷୁ ।
ଦଦର୍ଶ ନବଭିର୍ଦ୍ୱାର୍ଭିଃ ପୁରଂ ଲକ୍ଷିତଲକ୍ଷଣାମ୍ । ୧୩ ।

---

ମୁଁ ବର୍ତ୍ତମାନ୍ ତୁମ୍ଭ ନିକଟରେ ପୁରଞ୍ଜନଙ୍କର ପୁରାତନ ଇତିହାସ ବର୍ଣ୍ଣନା କରୁଅଛି ଶ୍ରବଣକର ।୯।

ହେ ରାଜନ୍ ! ପୂର୍ବକାଳରେ ପୁରଞ୍ଜନ ନାମକ ଜଣେ ଯଶସ୍ୱୀ ରାଜା ଥିଲେ, ତାହାଙ୍କର ଏକମାତ୍ର ମିତ୍ରଙ୍କର ନାମ ଓ କର୍ମ କାହାର ନିକଟରେ ଅବଗତ ନ ଥିଲା । ୧୦ ।

ସେହି ପୁରଞ୍ଜନ ସ୍ୱୀୟ ଆଶ୍ରୟସ୍ଥାନ ଅନ୍ୱେଷଣ କରି ସମଗ୍ରପୃଥିବୀ ଭ୍ରମଣ କରିଥିଲେ, ମାତ୍ର କୌଣସିଠାରେ ଆଶ୍ରୟ ନ ପାଇ ବିମନା ହୋଇଥିଲେ । ୧୧ ।

ବିଷୟ ଭୋଗ କାମନାକରି ପୁରଞ୍ଜନ ସେହି କାମନା ସିଦ୍ଧି ନିମିତ୍ତ ପୃଥିବୀରେ ନାନାସ୍ଥାନ ଅନ୍ୱେଷଣ କରିଥିଲେ, କିନ୍ତୁ କୌଣସିଟି ତାଙ୍କର ଆଶାନୁରୂପ ହେଲ ନାହିଁ । ୧୨ ।

ତଦନନ୍ତର ସେ ହିମାଳୟର ଦକ୍ଷିଣ ସାନୁପ୍ରଦେଶସ୍ଥ କର୍ମକ୍ଷେତ୍ର ଭାରତଭୂମିରେ ନବଦ୍ୱାର ଯୁକ୍ତ ସର୍ବଲକ୍ଷଣ ସମ୍ପନ୍ନ ଗୋଟିଏ ପୁର ଦେଖିଲେ । ୧୩ ।

---

ତା ବାକ୍ୟେ ହସି ମୁନି ତୋଷ
କହିବା ତୋତେ ଇତିହାସ
ଶ୍ରବଣେ ହେବ ତୋର ଜ୍ଞାନ
ଚରିତ ପୁରଞ୍ଜନାଖ୍ୟାନ
ଏ ଘୋର ସ୍ନେହ ଭୟ ତୋର
ଶ୍ରବଣେ ବେଗେ ହେବ ଦୂର । ୯
ସେ ପୁରଞ୍ଜନ ଏକ ରାଜା
ପୂର୍ବେ ସେ ଥିଲା ମହାତେଜା
ଅଜ୍ଞାତ ନାମ ଚେଷ୍ଟା ଯାର
ଏମନ୍ତ ସଖା ଥାଇ ତାର । ୧୦
ସେ ନିଜ ସଖା ପରିହରି
ଇନ୍ଦ୍ରିୟଭୋଗେ ଇଚ୍ଛା କରି
ନିରତେ ଭବ ଅନୁଦିନ
ଇନ୍ଦ୍ରିୟବଶେ ହୋଇ ଛନ୍ନ
ସେ ରାଜା ପୃଥିବୀ ଭ୍ରମଇ
ଉତ୍ତମ ସ୍ଥାନ ସେ ଇଚ୍ଛଇ
ନ ପାଇ ନିଜ ରୂପେ ସ୍ଥିତ
ବିଷାଦମନ ସେ ନୃପତ । ୧୧ ।
ଯାବତ ପୁର ମହୀତଳେ
ସେ ରାଜା ଦେଖଇ ଶୟନେ
ତା ନିଜ କାମ ପୂର୍ଣ୍ଣ ନୋହି
ସେ ରାଜା ସନ୍ତେ ଭ୍ରମଇ । ୧୨ ।
ଏମନ୍ତେ ଏକାନ୍ତେ ଭ୍ରମନ୍ତେ
ଗଲେ ସେ ହିମାଳୟ ଅନ୍ତେ
ସେ ଗିରି ଦକ୍ଷିଣ ଭାଗରେ
ପ୍ରବେଶ ହୋଇଲେ ସଧୀରେ
ସୁଦିବ୍ୟ ପୁର ତହିଁ ଥିଲା
ସେ ରାଜା ସନ୍ତୋଷେ ଦେଖିଲା
ନାନା ଲକ୍ଷଣେ ଶୋଭା ପାଇ
ସେ ନବଦ୍ୱାର ବିରାଜଇ । ୧୩ ।

ପ୍ରାକାରୋପବନାଟ୍ଟାଲପରିଖୈରକ୍ଷତୋରଣୈଃ ।
ସ୍ୱର୍ଣ୍ଣରୌପ୍ୟାୟସୈଃ ଶୃଙ୍ଗୈଃ ସଂକୁଲାଂ ସର୍ବତୋ ଗୃହୈଃ । ୧୪ ।
ନୀଳସ୍ଫଟିକବୈଦୂର୍ଯ୍ୟମୁକ୍ତାମରକତାରୁଣୈଃ ।
କ୍ଳୃପ୍ତହର୍ମ୍ୟସ୍ଥଲୀଂ ଦୀପ୍ତାଂ ଶ୍ରିୟା ଭୋଗବତୀମିବ । ୧୫ ।
ସଭାଚତ୍ୱରରଥ୍ୟାଭିରାକ୍ରୀଡ଼ାୟତନାପଣୈଃ ।
ଚୈତ୍ୟଧ୍ୱଜପତାକାଭିର୍ୟୁକ୍ତାଂ ବିଦ୍ରୁମବେଦୀଭିଃ । ୧୬ ।
ପୂର୍ଯ୍ୟାସ୍ତୁ ବାହ୍ୟୋପବନେ ଦିବ୍ୟଦ୍ରୁମଲତାକୁଲେ ।
ନଦଦ୍ବିହଙ୍ଗାଳିକୁଲକୋଳାହଳଜଳାଶୟେ । ୧୭ ।
ହିମନିର୍ଝରବିପ୍ରୁଷ୍ମତ୍ କୁସୁମାକରବାୟୁନା ।
ଚଳତ୍ପ୍ରବାଳବିଟପ ନଳିନୀତଟସମ୍ପଦି । ୧୮ ।

---

ଏହି ପୁର ପ୍ରାଚୀର, ଉପବନ, ଅଟ୍ଟାଳିକା, ପରିଖା, ଗବାକ୍ଷ ଓ ବହିର୍ଦ୍ୱାର ସୁଶୋଭିତ ଏବଂ ସ୍ୱର୍ଣ୍ଣ, ରୌପ୍ୟ ଓ ଲୌହମୟ ଶିଖର ଯୁକ୍ତ ଗୃହ ସମୂହରେ ସର୍ବତୋଭାବରେ ପରିବେଷ୍ଟିତ ହୋଇଥିଲା ।୧୪।

ଏହି ହର୍ମ୍ୟସ୍ଥଳୀର ଅଭ୍ୟନ୍ତର ନୀଳକାନ୍ତମଣି, ସ୍ଫଟିକ, ବୈଦୁର୍ଯ୍ୟ, ମୁକ୍ତା ପ୍ରଭୃତି ଦ୍ୱାରାରଚିତ ଏବଂ ପୁରଟି ଅତ୍ୟନ୍ତ ରମଣୀୟ ହୋଇଥିଲା । ୧୫ ।

ସଭା, ଚତୁଷ୍ପଥ, ରାଜପଥ, କ୍ରୀଡ଼ାଭୂମି, ହାଟ, ବିଶ୍ରାମସ୍ଥଳୀ, ଧ୍ୱଜ, ପତାକା, ବିଦ୍ରୁମ ନିର୍ମିତ ବେଦି ସମୂହଦ୍ୱାରା ଏହି ପୁରୀ ଶୋଭା ପାଉଥିଲା । ୧୬ ।

ଏହି ପୁରର ବହିର୍ଭାଗରେ ଗୋଟିଏ ମନୋହର ଉପବନ ସେହି ଉପବନରେ ବିବିଧ ସୁନ୍ଦର ବୃକ୍ଷଲତା ପୂର୍ଣ୍ଣ ହୋଇଥିଲା । ଜଳାଶୟମାନଙ୍କରେ ଜଳଚର ପକ୍ଷୀଗଣ କୋଳାହଳ କରୁଥିଲେ । ଯେପରି ଜଳାଶୟ ନିଜେ କୋଳାହଳ କରୁଥିବାର ବୋଧ ହେଉଥିଲା । ୧୭ ।

ଏହି ସରୋବରର ତଟଦେଶରେ ଯେଉଁ ବୃକ୍ଷମାନ ଶୋଭାପାଉଥିଲା, ସେହିବୃକ୍ଷମାନଙ୍କର ଶାଖା ଓ ପଲ୍ଲବ ହିମକଣା ବାହୀ ବିବିଧକୁସୁମ ଗନ୍ଧବାହୀ ସମୀରଣ ଦ୍ୱାରା ବିଚଳିତ ହେଉଥିଲା । ଯେପରି ତରୁସକଳର ନବପଲ୍ଲବ ପରିଚାଳିତ ହୋଇ ତାହାର ସମୃଦ୍ଧି ବଢାଉଥିଲା । ୧୮ ।

---

ସେ ପୁରେ ପାଚେରି ଶୋଭନ
ତା ଚୌପାଶେ ଉପବନ
ଗୃହାଦି ଅଟ୍ଟାଳ ଶୋଭନ୍ତି
ପରିଖା ତୋରଣା ବିରାଜନ୍ତି
ହେମ ରଜତ ଲୌହ ଶୃଙ୍ଗ
ବିଚିତ୍ର ବର୍ଣ୍ଣେ ନାନାରଙ୍ଗ ।୧୪।
ରତ୍ନ ସମୂହେ ବିରାଜନ୍ତି
ଶୁଭ୍ର ସୁନ୍ଦର ପୁର କାନ୍ତି
ନୀଳାଦି ସ୍ଫଟିକ ଯୋଏନା
ମୋତି ମର୍କତ ଆଦି ହୀରା
ନିର୍ମିତ ହେମମୟ ସ୍ଥଳୀ
କାନ୍ତି ସମୂହ ଅଛି ଝଳି
ସେ ପୁର ଦେଖିଣ ନୃପତି
କି ଏହୁ ପୁର ଭୋଗବତୀ ।୧୫।
ସଭା ଚତ୍ୱର ରାଜବାଟ
ପଶା ଖେଳନ ସ୍ଥାନ ହାଟ
ବିଶ୍ରାମ ସ୍ଥାନ ପ୍ରାଣୀଙ୍କର
ଏ ଆଦି ଅଛି ସେ ମନ୍ଦିର
ପତାକା ଶୋଭେ ନାନା ବିଧି
ଶୁଭ୍ର ସୁନ୍ଦର ଶୋଭେ ବେଦି ।୧୬
ସେ ପୁର ବାହ୍ୟେ ଉପବନ
ଶୋଭିତ ନାନା ଦ୍ରୁମମାନ
ପୁଷ୍ପିତ ସରୋବର ଶୋହି
ବିହଙ୍ଗକୁଳ କୂଜେ ଯହିଁ ।୧୭।
ହିମନିର୍ଝର-ବିନ୍ଦୁଯୋଗେ
କୁସୁମାକର ବାୟୁ ବେଗେ
ପ୍ରଚଳେ ଦଳ ବିଟପିରେ
ସରସୀତଟ ସମ୍ପଦରେ ।୧୮।

ନାନାରଣ୍ୟମୃଗବ୍ରାତୈରନାବାଧେ ମୁନିବ୍ରତୈଃ ।
ଆହୂତଂ ମନ୍ୟତେ ପାନ୍ଥୋ ଯତ୍ର କୋକିଳକୂଜିତୈଃ । ୧୯ ।
ଯଦୃଚ୍ଛୟାଗତାଂ ତତ୍ର ଦଦର୍ଶ ପ୍ରମଦୋତ୍ତମାମ୍ ।
ଭୃତ୍ୟୈର୍ଦଶଭିରାୟାନ୍ତୀମେକୈକଶତନାୟକୈଃ । ୨୦ ।
ପଞ୍ଚଶୀର୍ଷାହିନା ଗୁପ୍ତାଂ ପ୍ରତିହାରେଣ ସର୍ବତଃ ।
ଅନ୍ୱେଷମାଣାମୃଷଭମପ୍ରୌଢ଼ାଂ କାମରୂପିଣୀମ୍ । ୨୧ ।
ସୁନାସାଂ ସୁଦତୀଂ ବାଲାଂ ସୁକପୋଲାଂ ବରାନନାମ୍ ।
ସମବିନ୍ୟସ୍ତ କର୍ଣ୍ଣାଭ୍ୟାଂ ବିଭ୍ରତୀଂ କୁଣ୍ଡଳଶ୍ରିୟମ୍ । ୨୨ ।

---

ଏହି ସ୍ଥାନରେ ବିବିଧ ବନ୍ୟଜନ୍ତୁ ବାସ କରୁଥିଲେ ମଧ୍ୟ ସେମାନଙ୍କର ସ୍ୱଭାବ ମୁନିଗଣଙ୍କ ତୁଲ୍ୟ ହିଂସା ବର୍ଜିତ ଥିଲା । ସୁତରାଂ ହିଂସ୍ର ପଶୁ ଭୟରେ ବନମଧ୍ୟରେ ପ୍ରବେଶ କରିବାକୁ କେହି ଭୀତ ହେଉ ନ ଥିଲେ । କୋକିଳମାନେ ଏହି ବନମଧ୍ୟରେ ଏପରି କୂଜନ କରୁଥିଲେ ଯେ ସେମାନେ ପଥିକମାନଙ୍କୁ କାନନ ମଧ୍ୟକୁ ଆହ୍ୱାନ କଲାପରି ବୋଧ ହେଉଥିଲା । ୧୯ ।

ପୁରଞ୍ଜନ ଦେଖିଲେ ଗୋଟିଏ କାମିନୀ ରତ୍ନ ସ୍ୱଇଚ୍ଛାକ୍ରମେ ଏଣେ ତେଣେ ଭ୍ରମଣ କରୁ କରୁ ଉପବନ ମଧ୍ୟରେ ପ୍ରବେଶ କଲା । ତାହାଙ୍କ ସହିତ ଦଶଜଣ ଭୃତ୍ୟ ଥିଲେ, ସେମାନେ ପ୍ରତ୍ୟେକ ଶତ ଶତ ନାୟିକାଙ୍କର ପତି । ୨୦ ।

ସେହି ନାରୀରତ୍ନ ଯୁବତୀ ଏବଂ କାମରୂପିଣୀ ଏବଂ ସ୍ୱାମୀଙ୍କର ଅନ୍ୱେଷଣରେ ନିରତା ପଞ୍ଚଶୀର୍ଷ ବିଶିଷ୍ଟ ଗୋଟିଏ ସର୍ପ ଦ୍ୱାରପାଳରୂପେ ଦ୍ୱାର ରକ୍ଷା କରୁଥିଲା । ୨୧ ।

ଏହି ନବବାଳାର ନାସିକା ଓ ଦନ୍ତରାଜି ଅତୀବ ସୁନ୍ଦର, କପୋଳଦ୍ୱୟ ମନୋହର, ବଦନ ଅତୀବ ଉତ୍କୃଷ୍ଟ । ସେ ସମାନ ଭାବରେ ବିନ୍ୟସ୍ତ କୁଣ୍ଡଳ ଧାରଣ କରିଥିଲେ, ତାହାଙ୍କର ବର୍ଣ୍ଣ ଶ୍ୟାମ, ନୀବ

---

ନାନାବର୍ଣ୍ଣରେ ମୃଗମାନେ
ବିହରୁଛନ୍ତି ଉପବନେ
ଯହିଁ କୋକିଳ ଡାକୁଛନ୍ତି
ଭବା ଯେ ପାନ୍ଥକୁ ଲୋଡନ୍ତି
ଏମନ୍ତେ ନାନା ଜୀବକୁଳେ
ହୀନନ୍ତି କାମ ମତ୍ତ ହେଲେ ।୧୯
ସେ ଦିବ୍ୟ ପୁରେ ହେ ସୁଜନ
କହିବା ଅପରେ ବିଧାନ
କାମିନୀରତ୍ନ ସେହି ପୁରେ
ଅସି ଯେ ଥିଲ ସ୍ୱଇଚ୍ଛାରେ

ରମଣୀରତ୍ନ ସେହି ବାଳା
ତାହାକୁ ନୃପତି ଦେଖିଲା
ସଙ୍ଗେ ତା ଦଶ ପରିବାରି
ସେଜଣ ଆସିଛି ସୁନ୍ଦରୀ
ଭୃତ୍ୟମାନଙ୍କ ଏକେ ଏକେ
ସଙ୍ଗତେ ଶତଶ ନାୟିକେ । ୨୦
ପଞ୍ଚମସ୍ତକ ଏକ ଅହି
ସେ ନାରୀଦ୍ୱାରପାଳ ସେହି
ସେ କାମରୂପୀ ଦିବ୍ୟ ନାରୀ
ବିବାହ ନୋହିଛି ସୁନ୍ଦରୀ

ତେଣୁ ସେ ସ୍ୱାମିଙ୍କି ଖୋଜୁଛେ
ତା ଯୋଗ୍ୟ ବର ନାହିଁ ମିଳେ ।୨୧
ଲାବଣ୍ୟ ସମୂହେ ତରୁଣୀ
କେ ତା ନିର୍ମାଣିଲା ନ ଜାଣି
ସୁସଞ୍ଚ ନାସା ଦନ୍ତପନ୍ତି
ଯେସନ୍ତେ ସିନ୍ଦୁରେ ଗଜମୋତି
ଅରୁଣ ବିମ୍ବାଧର ରାଜେ
ପକ୍ୱ ଡାଳିମ୍ବ ବୀଜ ଗଞ୍ଜେ
ଅରୁଣ ପଙ୍କଜ ଲୋଚନ
ସୁଧାଂଶୁ ଆନନ ଶୋଭନ

ପିଶଙ୍ଗନୀବୀଂ ସୁଶ୍ରୋଣୀଂ ଶ୍ୟାମାଂ କନକମେଖଲାମ୍ ।
ପଦ୍‌ଭ୍ୟାଂ କ୍ୱଣଦ୍‌ଭ୍ୟାଂ ଚଲନ୍ତୀଂ ନୂପୁରୈର୍ଦେବତାମିବ । ୨୩ ।
ସ୍ତନୌ ବ୍ୟଞ୍ଜିତକୈଶୋରୌ ସମବୃତ୍ତୌ ନିରନ୍ତରୌ ।
ବସ୍ତ୍ରାନ୍ତେନ ନିଗୂହନ୍ତୀଂ ବ୍ରୀଡ଼ୟା ଗଜଗାମିନୀମ୍ । ୨୪ ।
ତାମାହ ଲଳିତଂ ବୀରଃ ସବ୍ରୀଡ଼ସ୍ମିତଶୋଭନାମ୍ ।
ସ୍ନିଗ୍‌ଧେନାପାଙ୍ଗପୁଙ୍ଖେନ ସ୍ପୃଷ୍ଟଃ ପ୍ରେମୋଦ୍‌ଭ୍ରମଦ୍‌ଭ୍ରୁବା । ୨୫ ।
କା ତ୍ୱଂ କଞ୍ଜପଲାଶାକ୍ଷି କସ୍ୟାସୀହ କୁତଃ ସତି ।
ଇମାମୁପପୁରୀଂ ଭୀରୁ କିଂ ଚିକୀର୍ଷସି ଶଂସ ମେ । ୨୬ ।

ପିଙ୍ଗଳବର୍ଣ୍ଣ, ନିତମ୍ବ ସୁନ୍ଦର ଏବଂ କନକମୟ ମେଖଳା ଦ୍ୱାରା ଅଳଂକୃତ । ସେ ଚଥିଳ ଚରଣରେ ନୂପୁର ଧ୍ୱନି କରି ଦେବାଙ୍ଗନା ତୁଲ୍ୟ ଇତସ୍ତତ ଭ୍ରମଣ କରୁଥିଲେ । ୨୨,୨୩ ।

ତାହାଙ୍କର ଈଷତ୍ ଉଦ୍‌ଗତ କୁଚଦ୍ୱୟ ନବଯୌବନ ଆଗମନର ସୂଚନା ଦେଉଥିଲା । ଏହି ସୁଗୋଲକୁଚକଳସ ଏପରି ସମଭାବରେ ବୃଦ୍ଧି ପ୍ରାପ୍ତ ହୋଇଥିଲା ଯେ ଉଭୟ ମଧ୍ୟରେ କିଞ୍ଚିନ୍ମାତ୍ର ବ୍ୟବଧାନ ନ ଥିଲା । ଗଜଗାମିନୀ ଲଜ୍ଜାରେ ବସ୍ତ୍ରାଞ୍ଚଳ ଦ୍ୱାରା ବାରମ୍ବାର ତାହା ଆଚ୍ଛାଦନ କରି ଗୋପନ କରୁଥିଲା ।୨୪

ଏହି ଷୋଡ଼ଶୀର ସ୍ନିଗ୍‌ଧ କଟାକ୍ଷ ବ୍ୟାଧର ବାଣତୁଲ୍ୟ ତାହାର ଚକ୍ଷୁଦ୍ୱୟର ପ୍ରାନ୍ତଭାଗ ବାଣାଗ୍ର ତୁଲ୍ୟ, ତାହାର ପ୍ରେମଦ୍ୱାରା ଭ୍ରାମ୍ୟମାଣ ଭ୍ରୂଲତା ଧନୁତୁଲ୍ୟ । ବୀର ପୁରଞ୍ଜନ ସେହି କାମିନୀର କଟାକ୍ଷ ଶରବିଦ୍ଧ ହୋଇ ଈଷତ୍ ଲଜ୍ଜା ଓ ହାସ୍ୟଯୁକ୍ତ ବାକ୍ୟରେ ସେହି ସୁନ୍ଦରୀଙ୍କୁ ପ୍ରଶ୍ନ କରିଥିଲେ । ୨୫ ।

ହେ ପଦ୍ମପଲାଶଲୋଚନେ ! ତୁମ୍ଭେ କିଏ ? କାହାର କନ୍ୟା ? କେଉଁ ସ୍ଥାନରୁ ଏଠାକୁ ଆସିଅଛ; ଏହି ପୁରୀ ସନ୍ନିହିତ ଉପବନରେ କି କାର୍ଯ୍ୟ କରିବାକୁ ଆସିଅଛ ? । ୨୬ ।

ସୁବକ୍ର ଭ୍ରୂଭଙ୍ଗ ସୁନ୍ଦର
ଅତନୁ ରୂପ ପଟାନ୍ତର
ଦଗ୍‌ଧ ହାଟକ ସୁକପୋଳ
ଅଳକା ସନ୍ତ ସୁନିର୍ମଳ
ତା ପ୍ରତି ଲକ୍ଷଣେ ଶୋଭନ
ନ ଦେଖି ଏ ତିନି ଭୁବନ
ଶ୍ରବଣେ କୁଣ୍ଡଳ ଝଲକେ
ଜୁଳନା ନାହିଁ ତିନି ଲୋକେ
କନକ ମେଖଳା ନିତମ୍ବୀ
ସ୍ୱଚ୍ଛ ସୁସର୍ପ ତାର ନାଭି
ଝୁଲଇ ମତ୍ତ ଗଜ ଠାଣି
ଚରଣେ ନୂପୁର ବାଜେଣି
କଣ୍ଠାଭିରାମ ସୁମଧୁର
ଶ୍ରବଣେ କାମଦର୍ପହର
ରତ୍ନ ସମୂହେ ଝଟକନ୍ତି
ପଦେ କି ଦେବତା ଗମନ୍ତି ।୨୨,୨୩
ସେ ନବଯୌବନେ ଶୋଭନୀ
ସମ ବର୍ତ୍ତୁଳ ପୀନସ୍ତନୀ
ତା ବସ୍ତ୍ର ଅଞ୍ଚଳେ ଢାଙ୍କନ୍ତି
ଚଳଇ ଯେହ୍ନେ ଗଜଗତି ।୨୪।
ଅପାଙ୍ଗ ବିଷମ ବିଶିଖ
ଭୃକୁଟୀ କମାଣେ ସନ୍ଧି ଲଖ
ରାଜାକୁ ସଦ୍ୟରେ ବିନ୍ଧିଲା
ତକ୍ଷଣେ ରାଜା ମୋହି ଗଲା
ସେ ବୀର ଲଜ୍ଜା ପାଇ ମନେ
ନାରୀକି ପଚାରେ ଅଜ୍ଞାନେ ।୨୫।
ହେ ସଖି ! ନାମ ଗୋତ୍ର ତୋର
କହି କପାଇଁ ବନ ଘୋର
ଭ୍ରମଣ କରୁ ତୁ ସୁନ୍ଦରୀ
ସୁର ମୁନୀନ୍ଦ୍ର ମନୋହାରୀ
ଏ ଦିବ୍ୟ ପୁରି ଉପବନେ
କହି କି ଅଛି ତୋର ମନେ
କି ନାମ ଧାମ କି କାରଣ
ବିହରୁ ଏ ଘୋର କାନନ
ମୋ କାମ-ଶତ୍ରୁ ବିନାଶନେ
ସଦନ ତେଜି ଏ ବିପିନେ
ମୁଁ ନିଶ୍ଚେ ଜାଣିଲଇଁ ତୋତେ
ସ୍ୱଗଣ ଘେନି ମୋର ହିତେ
ଏ ପୁରେ କରୁ ତୁ ବିହାର
ମୁଁ ଏଣୁ ତୋର ପରିଚାର । ୨୬।

କ ଏତେଽନୁପଥା ଯେ ତ ଏକାଦଶ ମହାଭଟାଃ ।
ଏତା ବା ଲଲନାଃ ସୁଭ୍ରୁ କୋଽୟଂ ତେଽହି ପୁରଃସରଃ । ୨୭
ତ୍ୱଂ ହ୍ରୀର୍ଭବାନ୍ୟସ୍ୟଥ ବାଗ୍ରମା ପତିଂ ବିଚିନ୍ୱତୀ କିଂ ମୁନିବଦ୍ରହୋ ବନେ ।
ତ୍ୱଦଙ୍ଘ୍ରିକାମାପ୍ତସମସ୍ତକାମଂ କ୍ୱ ପଦ୍ମକୋଶଃ ପତିତଃ କରାଗ୍ରାତ୍ । ୨୮ ।
ନାସାଂ ବରୋର୍ବନ୍ୟତମା ଭୁବିସ୍ପୃକ୍ ପୁରୀମିମାଂ ବୀରବରେଣ ସାକମ୍ ।
ଅର୍ହସ୍ୟଲଙ୍କର୍ତ୍ତୁମଦଭ୍ରକର୍ମଣା ଲୋକଂ ପରଂ ଶ୍ରୀରିବ ଯଜ୍ଞପୁଂସା । ୨୯ ।

---

ହେ ସୁଭ୍ରୁ ! ତୁମ୍ଭର ଅନୁବର୍ତ୍ତୀ ଏହି ଯୋଦ୍ଧାମାନେ କିଏ ? ଏବଂ ସେମାନଙ୍କ ମଧ୍ୟରେ ବଳିଷ୍ଠ ଏକାଦଶବ୍ୟକ୍ତି ଓ ସମ୍ମୁଖ ବର୍ତ୍ତୀ ସର୍ପ ବା କିଏ । ୨୭ ।

ହେ ସାଧ୍ୱି ! ତୁମ୍ଭେ କଅଣ ଲଜ୍ଜା, ନା ଭବାନୀ, ନା ସରସ୍ୱତୀ, ନା ଲକ୍ଷ୍ମୀ ? ମୁନିବତ୍ ଏକାକୀ ହୋଇ ଏହି ନିର୍ଜନ ବନରେ କଅଣ ଅନ୍ୱେଷଣ କରୁଅଛ ? ତୁମ୍ଭର ଚରଣଯୁଗଳର ସେବାଦ୍ୱାରା ତୁମ୍ଭର ସ୍ୱାମୀର ସମସ୍ତ କାମନା ପୂର୍ଣ୍ଣ ହୋଇ ପାରେ । ତୁମ୍ଭେ କରାଗ୍ରରେ ଯେଉଁ ଲୀଳା କମଳ ଧରିଥିଲ ତାହା କେଉଁଠାରେ ପତିତ ହେଲା । ୨୮ ।

ତୁମେ କଅଣ ଏମାନଙ୍କର କେହି ନୁହଁ ? ତେଣୁ ଭୂମି ସ୍ପର୍ଶକରି ଅବସ୍ଥାନ କରୁଅଛ । ହେ ସୁନ୍ଦରି ! ମୁଁ ଶ୍ରେଷ୍ଠ, ମୋର କର୍ମ ମଧ୍ୟ ଅତି ମହତ୍ । ସୁତରାଂ ତୁମ୍ଭେ ମୋ ସହିତ ମିଳିତ ହୋଇ ଲକ୍ଷ୍ମୀନାରାୟଣଙ୍କ ସହିତ ମିଳିତ ହବରେ ବୈକୁଣ୍ଠପୁରୀ ମଣ୍ଡନ କଲାପରି ଏହି ପୁରୀ ଅଳଂକୃତ କର । ୨୯ ।

---

ହେ ସଖି ! ଏ ତୋ ସଖୀଜନ
କହ କାହାର କିସ ନାମ
ଏ ଦଶ ଏକୁଁ ଏକ ଶୋଭା
ତୁମ୍ଭଙ୍କୁ କ କରନ୍ତି ସେବା
ଏ ସର୍ପ କେ ତୁମ୍ଭ ଆଗର
ପଥିଁ ମସ୍ତକ କର୍ଣା ତାର
ଏହାଙ୍କ ନାମ କର୍ମ ଯେତେ
ହେ ସଖି ! କହ ମୋ ଅଗ୍ରତେ ।୨୭
ତୁମ୍ଭେ କି ଲଜ୍ଜା ରୂପ ଧରି
ଧର୍ମ୍ମପତିକି ଗୁହ୍ନ ଫେରି
କି ଅବା ତୁମ୍ଭେ ଗୋ ଭବାନୀ
ଖୋଜୁଅଛ ଶୂଳପାଣି
କି ଅବା ତୁମ୍ଭେ ପଦ୍ମାଳୟା
ଲେଡ଼ୁଛ ପତିପାଦ-ଛାୟା
କି ତୁମ୍ଭେ ଅଟ ଅଦ୍ଭୁତଗା
ବାଣୀ କି କର ନିଜ ପତି
ହେ ସଖି ! ତୋର ଗୁଣ ପ୍ରଭୁ
ଦେଖି ଝିଲିବେ ସୁରଦେବା ।୨୮।
ତୋର ଚରଣେ କାମୀ ଯେବେ
ଆଶ୍ରିତ ପୂର୍ଣ୍ଣକାମ ତେବେ
ଅଶେଷ ସୁଖ ସେ ଲଭନ୍ତି
କାମାଦି ଶତ୍ରୁ ନିବାରନ୍ତି
ତୁ ମୁନିମୋହିନୀ ସୁନ୍ଦରୀ
ଏକାନ୍ତେ ଭ୍ରମୁ ତୁ କିଶୋରୀ
ତୋ ଗୁଣ ଜାଣି ପ୍ରଭୁ ସ୍ୱହିଁ
ଦେବତା ପ୍ରାୟେ ମୁଁ ମଣଇ
ଭୂମିରେ ନ ଛୁଇଲେ ଦେବତା
ଏଣୁ ମୋ ମନେ ଗଲୁ ଚିନ୍ତା
ତୋ ଗୁଣ ବର୍ଣ୍ଣିବଇଁ କେତେ
ତୋ ସମ ନାହିଁ ଏ ଜଗତେ
ଏବେ ନିଶ୍ଚୟେ ମୋତେ ଘେନ
ଏ ପୁରେ ବିହର କାମିନ । ୨୯ ।

ଯଦେଷ ମାଽପାଙ୍ଗବିଖଣ୍ଡିତେନ୍ଦ୍ରିୟଂ ସବ୍ରୀଡ଼ଭାବସ୍ମିତବିଭ୍ରମଦ୍‌ଭ୍ରୁବା ।
ତ୍ୱୟୋପସୃଷ୍ଟୋ ଭଗବାନ୍ ମନୋଭବଃ ପ୍ରବାଧତେଽଥାନୁଗୃହାଣ ଶୋଭନେ ।୩୦।
ତ୍ୱଦାନନଂ ସୁଭ୍ରୁ ସୁତାରଲୋଚନଂ ବ୍ୟାଲମ୍ବିନୀ ନୀଲକବୃନ୍ଦସଂବୃତମ୍ ।
ଉନ୍ନୀୟ ମେ ଦର୍ଶୟ ବଲ୍‌ଗୁବାଚକଂ ଯଦ୍‌ବ୍ରୀଡୟା ନାଭିମୁଖଂ ଶୁଚିସ୍ମିତେ ।୩୧।

ଶ୍ରୀନାରଦ ଉବାଚ ।

ଇତ୍ଥଂ ପୁରଞ୍ଜନଂ ନାରୀ ଯାଚମାନମଧୀରବତ୍ ।
ଅଭ୍ୟନନ୍ଦତ ତଂ ବୀରଂ ହସନ୍ତୀ ବୀରମୋହିତା । ୩୨ ।

---

ହେ ଶୋଭନେ ! ତୁମ୍ଭର ଅପାଙ୍ଗ ବିକ୍ଷେପ ମୋର ମନକୁ ଖଣ୍ଡ ବିଖଣ୍ଡ କରିଅଛି, ପୁଣି ତୁମ୍ଭର ସଲଜ୍ଜ ହାସ୍ୟରେ ଭ୍ରମଣ କାରିଣୀ ଭ୍ରୂଲତା ଦ୍ୱାରା ପ୍ରେରିତ କନ୍ଦର୍ପ ମୋତେ ସମଧିକ ପୀଡ଼ା ଦେଉଅଛି, ଅତଏବ ମୋ ପ୍ରତି କୃପାକର । ୩୦ ।

ତୁମ୍ଭର ବଦନ ମଣ୍ଡଳ ସୁନ୍ଦର, ଭ୍ରୂଦ୍ୱୟ ମନୋହର, ତାରଦ୍ୱୟ ସମନ୍ୱିତ ନୟନ ଯୁଗଳ ଭୂଷିତ ଏବଂ ସୁଦୀର୍ଘ ନୀଳବର୍ଣ୍ଣ ଅଳକା ଜଳରେ ଆବୃତ୍ତ, ତାହା ମନୋହର ବାକ୍ୟାବଳି ବିଳମ୍ବିତ, ହେ ସ୍ମିତହାସିନି ! ଲଜ୍ଜାରେ ତୁମ୍ଭର ମୁଖ ମୋର ଅଭିମୁଖ ହେଉ ନାହିଁ, ତାହା ଥରେ ମୋତେ ଦେଖାଅ । ୩୧ ।

ଶ୍ରୀନାରଦ କହିଲେ :—

ହେ ବୀର ! ପୁରଞ୍ଜନ ଏହିପରି ଅଧୀର ହୋଇ ସେହି ରମଣୀ ନିକଟରେ କାମଭିକ୍ଷା କରିବାକୁ ଲାଗିଲେ । ସେହି ଲଳନା ମଧ୍ୟ ମୋହିତା ହୋଇ ହାସ୍ୟ କରି ସାଦର ସମ୍ଭାଷଣରେ ତାହାଙ୍କୁ କହିଲା ।୩୨

---

ତୋହର ଲଜ୍ଜା ଭାବ ସ୍ମିତ
ଏ କାମିଜନଙ୍କୁ ପୀଡ଼ିତ
ଅନଙ୍ଗଶର ବାଧେ ମୋତେ
ମୁଁ ଏବେ କହିଲଇଁ ତୋତେ
ତୁ ଅନୁରାଗ ମୋତେ କର
ଏ କାମଅଗ୍ନି ମୋ ନିବାର
ମୁଁ ଦହି ସେ ତାପେ ମରୁଛି
ତୁ ଶାନ୍ତ କର ଗୋ ମୃଗାକ୍ଷି ! ।୩୦
ହେ ସଖି ! ତୋ ଚନ୍ଦ୍ରାନନ
ଶୁଭ୍ର ସୁନ୍ଦର ସୁଲୋଚନ
ଅଳକା କପୋଳେ ଝୁଲିଲେ
କେଣେ ନ ଚାହୁଁ ସଲଜ୍ଜେ
କହ ତୁ ମଧୁର ବଚନ
ମୁଁ କଷ୍ଟେ ଧରିବି ଜୀବନ
ତୁ ଲଜ୍ଜା ଭୟେ ନ ଚାହୁଁଛୁ
ହେ ସଖି ! ପ୍ରାଣେ ତୁ ମାରୁଛୁ
ତୁ ସଖି ! ସୁମଧୁରେ ଭାଷ
ମୁଁ ନିଶ୍ଚେ ହେବି ତୋର ଦାସ
ଅନେକ ବିନୟ ବଚନ
ସେ ନାରୀବଶେ ପୁରଞ୍ଜନ ।୩୧।

ଶ୍ରୀ ନାରଦ ଉବାଚ—

ହେ ନୃପ ତୋର ପ୍ରାୟେ ସେହି
ସ୍ତ୍ରୀସ୍ୱବଶ ଜନ ଦେଖି
ପ୍ରବୁଦ୍ଧ ପଣ ସେ ତେଜିଲେ
ତୋ ବଶେ ଜନ ପାସୋରିଲେ
ଯେ ସ୍ତ୍ରୀବଶ ହୋଏ ପ୍ରାଣୀ
ତାହାକୁ ମନୁଷ୍ୟେ ନ ଗଣି
ସେ ଅଶ୍ୱ ବଡ଼ାଳ ଗର୍ଦ୍ଦଭ
ତାଙ୍କ ସମାନେ ସେହୁ ଜୀବ
ପଣ୍ଡିତ ବୋଲି ତା ନ ଗଣି
ସ୍ତ୍ରୀରୀ ସ୍ୱବଶ ଯେତେ ପ୍ରାଣୀ
ହେ ନୃପ ମନେ ତୁ ବିଚାର
କାହିଁ ପଣ୍ଡିତଜ୍ଞାନ ତାର
ଏମନ୍ତେ ସେ ଯେ ପୁରଞ୍ଜନ
ବୋଧିଲେ ଯଷ୍ଟି ବାକ୍ୟେ ମନ
ସନ୍ତୋଷ ଭଜିଲା ତରୁଣୀ
ତାର କାରୁଣ୍ୟ ବାକ୍ୟ ଶୁଣି
ସେ ନ ରି ବୁଝିଲ ଏ ବୀର
ଏ କାମଅଞ୍ଜନେ ଅସ୍ଥିର ।୩୨।

ନ ବିଦାମ ବୟଂ ସମ୍ୟକ୍ କର୍ତ୍ତାରଂ ପୁରୁଷର୍ଷଭ ।
ଆତ୍ମନଶ୍ଚ ପରସ୍ୟାପି ଗୋତ୍ରଂ ନାମ ଚ ଯତ୍କୃତମ୍ । ୩୩ ।
ଇହାଦ୍ୟ ସନ୍ତମାତ୍ମାନଂ ବିଦାମ ନ ତତଃ ପରମ୍ ।
ଯେନେୟଂ ନିର୍ମିତା ବୀର ପୁରୀ ଶରଣମାତ୍ମନଃ । ୩୪ ।
ଏତେ ସଖାୟଃ ସଖ୍ୟୋ ମେ ନରା ନାର୍ଯ୍ୟଶ୍ଚ ମାନଦ ।
ସୁପ୍ତାୟାଂ ମୟି ଜାଗର୍ତ୍ତି ନାଗୋଽୟଂ ପାଳୟନ୍ ପୁରୀମ୍ । ୩୫ ।

---

ହେ ପୁରୁଷ ଶ୍ରେଷ୍ଠ ! ମୋର ନିଜର ଏବଂ ଅନ୍ୟର କର୍ତ୍ତା କିଏ ତାହା ମୁଁ ଜାଣେ ନାହିଁ, ଯଦ୍ଦ୍ୱାରା ଗୋତ୍ର ଏବଂ ନାମ ଉତ୍ପତ୍ତି ହୁଏ, ତାହା ମଧ୍ୟ ମୁଁ ଅବଗତ ନୁହେଁ । ୩୩ ।

ଏହି ପୁରୀ ମୋର ଆବାସସ୍ଥଳୀ, ମୁଁ ଏଠାରେ ଯେ ଅଛି ଏବଂ ଏ ପୁର କିଏ ନିର୍ମାଣ କରିଅଛି, ଏହାପରେ ଯେ କଅଣ ହେବ ତାହା ମଧ୍ୟ ମୁଁ ଜାଣେ ନାହିଁ । ୩୪ ।

ଏହି ମନୁଷ୍ୟମାନେ ମୋର ସହଚର ଓ ସଖା, ଏହି ନାରୀମାନେ ମୋର ସଖୀ । ଏହି ସର୍ପ ଏହି ପୁରୀର ରକ୍ଷାକର୍ତ୍ତା ଏହି ସର୍ପ ମୋର ନିଦ୍ରିତା ଅବସ୍ଥାରେ ଜାଗ୍ରତ ଥାଏ । ୩୫ ।

---

କହେ ଲଳିତ ସୁବଚନ
ଶୁଣ ହେ ବୀର ପୁରଞ୍ଜନ
ଆମ୍ଭର କର୍ତ୍ତା କେହି ନାହିଁ
ବିହରୁଁ ଏହି ପୁରେ ରହି
ସ୍ୱନାମ ଗୋତ୍ରତ ନ ଜାଣି
ଏ ତନୁ କେ ଅଛି କର୍ମ୍ମାଣି ।୩୩।
ଏତେକ ଜାଣୁ ଆମ୍ଭମାନେ
ସକଳେ ଅଛୁଁ ଏ ଭୁବନେ
ଅପରେ ନ ଜାଣୁ ନା କିଛି
ଏ ପୁରେ କେ ମୋତେ ରଖିଛି ।୩୪
ଦେଖ ଏ ଯେତେ ପରିଜନ
ଏ ମୋର ନୁହନ୍ତି ଅଭିନ୍ନ
ଏହାଙ୍କ ନାମ କର୍ମ୍ମ ଗୁଣ
ପୁଛିଲେ ଶୁଣ ନୃପଗଣ
ମୁଁ ଯେବେ ନିଦ୍ରାଗତ ହୋଇ
ଏ ସର୍ପ ପୁର ଜଗିଥାଇ

ଏ ଆମ୍ଭ ପାଳକ ପୁରର
ସକଳ କାର୍ଯ୍ୟରେ ତତ୍ପର
କରନ୍ତି ଆମ୍ଭ ଅନୁମତେ
ଯେ ଭୋଗ ବାଞ୍ଛା ଯାର ଚିତ୍ତେ
ଯେ ଶୁଦ୍ଧ ଶୁଭ ଫଳ ଦେଇ
ବିଧି ନିଷେଧ ମାର୍ଗେ ନେଇ
ଏଣୁ ଆମ୍ଭର ପ୍ରିୟ ମୋର
ଯେଣୁ ଏ ସେବେ ନିରନ୍ତର
ଏହାର ବେନି ପତ୍ନୀ ନାମ
ପ୍ରବୃତ୍ତି ନିବୃତ୍ତି ସୁଜନ
ପ୍ରବୃତ୍ତି ପତ୍ନୀ ନାମ ଯାର
ସେ ସେବେ ପ୍ରବୃତ୍ତି ମାର୍ଗର
ନିବୃତ୍ତି ନାମେ ଯେ ଯୁବତୀ
ସେ ଧର୍ମ୍ମ ମାର୍ଗେ ସେବେ ପତି
ସେ ବେନି ନାରୀଙ୍କ କୁମର
କେ ସାଧୁ କେବା ଦୁରାଚାର

ଏ ଯେତେ ପ୍ରବୃତ୍ତିନନ୍ଦନ
ଏ କାମ କ୍ରୋଧ ଅଭିମାନ
ଅଜ୍ଞାନ ଲୋଭ ମୋହ ହିଂସା
ବିବାଦ ତର୍କ ମିଥ୍ୟା ଭାଷା
ଅପରେ କହିବଇଁ କେତେ
ଏ ଆଦି ପୁତ୍ରେ ଛନ୍ତି ଯେତେ
ସେ ସର୍ବେ ଧର୍ମ୍ମରେ ବିବାଦୀ
ପିତୃ ସେବନ୍ତି ନିରବଧି
ସ୍ୱ ଅଧର୍ମମାର୍ଗେ ନିରନ୍ତର
ସେବା ସେ କରନ୍ତି ପିତର
ଯେ କାମ ଭୋଗେ ତୁମ୍ଭ ଇଚ୍ଛା
ସେ ଦେଇ ପୂରେଇବେ ବାଞ୍ଛା
ଏଣୁ ଏ ତୁମ୍ଭ ସଙ୍ଗେ ଥିବେ
ସେବାରେ କର୍ମ୍ମରେ ତୋଷିବେ
ଏହାଙ୍କୁ କ୍ଷଣେ ନ ଛାଡ଼ିବ
ଆମ୍ଭରେ ଦୟା ଯେବେ ଥିବ

ଏ ଯେତେ ନିବୃତ୍ତି-ନନ୍ଦନ
ଦୟା ବିବେକ ଧର୍ମ୍ମ ଜ୍ଞାନ
କ୍ଷମା ସନ୍ତୋଷ ଧୀର ଶାନ୍ତ
ଏ ଅନୁକ୍ରମେ ଯେ ଅଛନ୍ତି
ଅଧର୍ମ୍ମ ମାର୍ଗେ ଏ ଦାରୁଣ
ଇଛନ୍ତି ପିତାର ମରଣ
ଏ ନିଶ୍ଚେଁ ମାରି ନିଜ ତାତ
ରଖିବେ ପିତୃର ପିତାନ୍ତ
ଏଣୁ ଏହାଙ୍କୁ ପ୍ରତେଜିବ
ଭୋଗାଦି ବାଞ୍ଛା ଯେବେ ଥିବ
ଏ ଦୁଷ୍ଟ-ଅଜ୍ଞାନ-ବିନାଶ
ଏଣେ ଭୋଗାଦି ହୋଏ ଧ୍ୱଂସ
ଏ ପିତୃବଧେ ଛିଦ୍ର ବାଞ୍ଛି
ତୁମ୍ଭେ ପାଇବ କାହୁଁ ରକ୍ଷା
ତୁମ୍ଭେ ନଜାଣ ନିରଞ୍ଜନ
କେ ସାଧୁ କେ ଅବା ଦୁର୍ଜ୍ଜନ
ଆମ୍ଭର କହିବା ଉଚିତ
ତୁମ୍ଭେ ଯେ ଆମ୍ଭ ନିଜକାନ୍ତ
ସ୍ୱାମି-କପଟୀ ଯେବା ନାରୀ
ସେହି ଅଜ୍ଞାନ ବ୍ୟଭିଚାରୀ
ତୁମ୍ଭେ ଯେ ଭୋଗାଦି ଈଶ୍ୱର
ଇତ୍ୟାଦି ଭୋଗେ ବାଞ୍ଛାକର
ଏ ସର୍ବେ ଭୋଗ ବିନାଶିବେ
କାମାଦି ବାଞ୍ଛା ଏ ନ ଦେବେ
ଏହାଙ୍କ ସଙ୍ଗତେ ରାଜନ
ପଡ଼ି ହୋଇବୁ ଭୋଗହୀନ
ଏ ପୁରେ ଭୋଗ ବାଞ୍ଛା ଯାର
ଏ ସଙ୍ଗ ନୁହେ ନୃପବର
ଏ ସଙ୍ଗ ବେଗେ ପରିହର
ନିଶ୍ଚିନ୍ତେ ଏ ପୁରେ ବିହର

ଏବେ ଆମ୍ଭର ସଙ୍ଗେ ତୁମ୍ଭେ
ସୁକୃତ କରି ରହ ଦମ୍ଭେ
ସେ ନାରୀବାକ୍ୟେ ନୃପମଣି
ଅଜ୍ଞାନେ ମଜ୍ଜିଲା ନ ଜାଣି
ଅଜ୍ଞାନ ମାର୍ଗେ ଚିତ୍ତ ଦେଲା
ସ୍ୱ ପର ଭେଦ ବୁଦ୍ଧି କଲା
ତାର ସ୍ୱବଶେ ନେଲା ଦନ
ଅଜ୍ଞାନ ପୁରୁଷ ଯେସନ
ହେ ସଖି ! ଯାବତ ଏ ପୁରେ
ଥିବ ତୋ ଆଜ୍ଞା ଅନୁସାରେ
ଶୁଣି ପ୍ରତୋଷ ପୁର-ନାରୀ
ରାଜାଙ୍କୁ ଘେନିଲା ଆଦରି
ହେ ନୃପ ଶୁଣ ପୁରଞ୍ଜନ
ଏ ମୋର ଯେତେ ପରିଜନ
ସୁସେବା କରିବେ ନିରତେ
ଯେତେକ ବାଞ୍ଛା ତୁମ୍ଭ ଚିତ୍ତେ
ଏ ସର୍ବ ଆଜ ନିଯୋଜିବେ
ତୁମ୍ଭଙ୍କୁ କ୍ଷଣେ ନ ଛାଡ଼ିବେ
ଭଜିବ ଯେଝା ନିଜ ସ୍ଥାନେ
ନିର୍ଭୟ ଚିତ୍ତେ ତୋଷ ମନେ
ଏ ରୂପ ପ୍ରବୋଧ ବଚନ
କହିଣ ତୋଷିଲା ରାଜନ
ସେ ବାକ୍ୟେ ରାଜା ବିମୋହିତ
କନ୍ଦର୍ପ ପ୍ରତିମା ଯେମନ୍ତ
ତା ବଶେ ସ୍ତବେ ସ୍ତୁତିବାଣୀ
ହେ କାମାନନ୍ଦଉଦ୍ଧାରଣି !
ପ୍ରମଦାକୁଳ ମଧ୍ୟେ ସାର
ତୋ ତୁଲେ ନାହିଁ ପଟାନ୍ତର
ତୋ ରୂପ ନିର୍ମ୍ମାଣିଲା ବିଧି
ଦେଖି ଅନଙ୍ଗ ଚିତ୍ତ ମୋହି

ତୁ କାମଶତ୍ରୁ-ବିନାଶନେ
ଅଇଲୁ ଏ ମର୍ତ୍ତ୍ୟ ଭୁବନେ
ମୋହର ତୁଲ କାମୀ ଯେତେ
ନିସ୍ତାର ହେବେ ଏ ଜଗତେ
ହେ ପ୍ରିୟବର-ସିମନ୍ତିନି !
କେ ତୁମ୍ଭ ପିଅର ଜନନୀ
କହ ତାହାଙ୍କ ନାମ ଗୁଣ
ଶ୍ରବଣେ ମୋର ନିସ୍ତାରଣ
ତା ବାକ୍ୟେ ଭ୍ରମଣେ ପ୍ରତୋଷି
ସେ ନାରୀ କହେ ପ୍ରେମେ ହସି
ଶୁଣ ହେ ଦେବ 'ପୁରଞ୍ଜନ
କହିବା ପୂର୍ବର ବିଧାନ
ଆମ୍ଭର ଯେବା ତାତମାତ
ନ ଜାଣୁଁ ପୂର୍ବର ତଦନ୍ତ
ତୁମ୍ଭ ଆମ୍ଭର ଦେହଧାରୀ
ସଚରାଚର ଆଦିକରି
ଏ ପଞ୍ଚଭୂତ ଦେହେ ଯେତେ
କେ ଜାଣି ପାରେ ତା ତଦନ୍ତେ
ଯେସନେ ତୁମ୍ଭେ ନୃପରାଣ
ନ ଜାଣ ଜନ୍ମାଦି କାରଣ
ଆମ୍ଭର ଏଣେ ନାହିଁ ଜ୍ଞାନ
ବିବେକ ବୁଦ୍ଧି ହେ ରାଜନ
ତୁମ୍ଭେ କି ନ ଜାଣ ତୁମ୍ଭଙ୍କୁ
ଏ ଭେଦ ପଚାର ଆମ୍ଭଙ୍କୁ
ଏକଇ ଆତ୍ମା ବେନି ଅଂଶ
ପ୍ରକୃତିଭେଦେ ବହୁଦୃଶ୍ୟ
ଈଶ୍ୱର ସ୍ୱଇଚ୍ଛା ବିହରେ
ପ୍ରକୃତିଭେଦେ ସୃଷ୍ଟି କରେ
ଏ ଘେନି କେ ଜାଣେ ତଦନ୍ତ
ଏ ମାୟା ଜଡ଼େ ବିମୋହିତ ।୩୫।

ଦିଷ୍ଟ୍ୟାଗତୋଽସି ଭଦ୍ରଂ ତେ ଗ୍ରାମ୍ୟାନ୍ କାମାନଭୀପ୍ସସେ ।
ଉଦ୍‌ବହିଷ୍ୟାମି ତାଂସ୍ତେଽହଂ ସ୍ୱବନ୍ଧୁଭିରରିନ୍ଦମ । ୩୬ ।
ଇମାଂ ତ୍ୱମଧିତିଷ୍ଠସ୍ୱ ପୁରୀଂ ନବମୁଖୀଂ ବିଭୋ ।
ମୟୋପନୀତାନ୍ ଗୃହ୍ଣାନଃ କାମଭୋଗାନ୍ଶତଂ ସମାଃ । ୩୭ ।
କଂ ନୁ ତ୍ୱଦନ୍ୟଂ ରମୟେ ହ୍ୟରତିଜ୍ଞମକୋବିଦମ୍ ।
ଅସମ୍ପରାୟାଭିମୁଖମଶ୍ୱସ୍ତନାବିଦଂ ପଶୁମ୍ । ୩୮ ।
ଧର୍ମୋ ହ୍ୟତ୍ରାର୍ଥକାମୌ ଚ ପ୍ରଜାନନ୍ଦୋଽମୃତଂ ଯଶଃ ।
ଲୋକା ବିଶୋକା ବିରଜା ଯାନ୍ ନ କେବଳିନୋ ବିଦୁଃ । ୩୯ ।

---

ମୋର ସୌଭାଗ୍ୟବଶତଃ ତୁମ୍ଭେ ଏଠାକୁ ଆଗମନ କରିଅଛ । ତୁମ୍ଭର ମଙ୍ଗଳ ହେଉ, ତୁମ୍ଭେ ଇନ୍ଦ୍ରିୟସୁଖ ଅଭିଳାଷ କରୁଅଛ । ମୁଁ ମୋର ସଖା ଓ ସଖୀମାନଙ୍କର ସାହାଯ୍ୟରେ ତାହା ସମ୍ପାଦନ କରାଇବି । ୩୬ ।

ପ୍ରଭୋ ! ମୁଁ ତୁମ୍ଭଙ୍କୁ ଯେଉଁ ଭୋଗ୍ୟବସ୍ତୁମାନ ପ୍ରଦାନ କରୁଅଛି ତୁମ୍ଭେ ସେ ସମସ୍ତ ଉପଭୋଗ କରି ଶତବର୍ଷ ଏହି ନବଦ୍ୱାରଯୁକ୍ତ ପୁରରେ ଅବସ୍ଥାନ କର । ୩୭ ।

ତୁମ୍ଭ ବ୍ୟତୀତ ଅନଭିଜ୍ଞ ସୁଖତ୍ୟାଗୀ ପରଲୋକ ଚିନ୍ତାଶୂନ୍ୟ ପଶୁତୁଲ୍ୟ ଅନ୍ୟ କୌଣସି ବ୍ୟକ୍ତି ସହିତ ମୁଁ ବିହାର କରିବି ? । ୩୮ ।

ଏହି ଗୃହାଶ୍ରମ ଧର୍ମ ଅର୍ଥ, କାମ, ପୁତ୍ର ପୌତ୍ରାଦି, ଯଜ୍ଞାବଶେଷ ଉପଭୋଗ ଯଶଃ ଏବଂ ବିଶୋକ ଓ ନିର୍ମଳ ଯେଉଁ ସମସ୍ତ ଲୋକ ବିଦ୍ୟମାନ, କୈବଲ୍ୟ ବାଦୀ ଯତିମାନେ ସେମାନଙ୍କର ନାମ ସୁଦ୍ଧା ଜାଣନ୍ତି ନାହିଁ । ୩୯ ।

---

ସୁ ନାମ ଗୋଟିଏ କବା ଫଳ
ମୋ ଭାଗ୍ୟ ତୁମ୍ଭେ ଯେ ମିଳିଲ
ଆଜ ମୋ ଭାଗ୍ୟ ଅଗୋଚର
ଦେଖିଲି ନୟନ ଗୋଚର
ଯାକୁ ଅଷ୍ଟାଙ୍ଗ ଯୋଗଧ୍ୟାନେ
ଯୋଗୀ ଭାବନ୍ତି ଅନୁଦିନେ
ସେ ତୁମ୍ଭେ ମୋ ଭାଗ୍ୟ ଆଗତ
ଯେଣୁ ମିଳିଲ ଅଦ୍ଭୁତ
ଏ ପୁରେ କରିବା ବିଶ୍ରାମ
ଭୁଞ୍ଜି ସ୍ୱଇଚ୍ଛା ସୁଖେ କାମ
ମୁଁ ଆଣି ସର୍ବ ଯୋଗାଇବି
ଏହାଙ୍କ ତୁଲେ ମୁଁ ସେବିବି ।୩୬।

ଏ ମୋର ନବମୁଖ ପୁର
ଏ ପୁରେ ଅଧିଷ୍ଠାନ କର
ମୋ ତୁଲେ କର ରତିଯୋଗ
ଏ ଶତ ସମ୍ବତ୍ସର ଭୋଗ ।୩୭।
ଏ ତୁମ୍ଭବିନୁ ଯେବା ଜନ
କେ ରତି କରେ ତା ସଙ୍ଗେଣ
ସେ ଅପଣ୍ଡିତ ହୀନ ଦେହ
ତା ରତିସୁଖେ ଜ୍ଞାନ ନାହିଁ
ନାହିଁ ତା ପରଲୋକ ଚିନ୍ତା
ନ ଜାଣେ କର୍ତ୍ତା ଅକରତା
କେବଳ ପଶୁ ତୁଲ୍ୟ ସେହି
ତା ସଙ୍ଗେ କେବା ବିଳସଇ ।୩୮।

ଏ ପୁରେ ସର୍ବ କର୍ମ ସାଧି
ଧର୍ମାର୍ଥ କାମ ମୋକ୍ଷ ଆଦି
ପୁତ୍ର ଆନନ୍ଦ ସୁଖ ଯଶ
ଏ ସର୍ବ ଏ ପୁରେ ପ୍ରକାଶ
ଏ ଲୋକ ନିର୍ମଳ ବିଶୋକ
ତାକୁ ଭାବନ୍ତି ଜ୍ଞାନୀ ଲୋକ
ସେ ଲୋକ ଏଥି ସାଧି ପାଇ
ଯେଣୁ ଏ ପୁର ସୁଖମୟୀ । ୩୯ ।

ପିତୃଦେବର୍ଷିମର୍ତ୍ତ୍ୟାନାଂ ଭୂତାନାମାତ୍ମନଶ୍ଚ ହ ।
କ୍ଷେମଂ ବଦନ୍ତି ଶରଣଂ ଭବେଽସ୍ମିନ୍ ଯଦ୍‌ଗୃହାଶ୍ରମଃ । ୪୦ ।
କା ନାମ ବୀର ବିଖ୍ୟାତଂ ବଦାନ୍ୟଂ ପ୍ରିୟଦର୍ଶନମ୍ ।
ନ ବୃଣୀତ ପ୍ରିୟଂ ପ୍ରାପ୍ତଂ ମାଦୃଶୀ ତ୍ୱାଦୃଶଂ ପତିମ୍ । ୪୧ ।
କସ୍ୟା ମନସ୍ତେ ଭୁବି ଭୋଗିଭୋଗୟୋଃ ସ୍ତ୍ରିୟା ନ ସଜ୍ଜେଦ୍‌ଭୁଜୟୋର୍ମହାଭୁଜ ।
ଯୋଽନାଥବର୍ଗାଧିମଲଂ ଘୃଣୋଦ୍ଧତସ୍ମିତାବଲୋକେନ ଚରତ୍ୟପୋହିତୁମ୍ । ୪୨ ।
ଶ୍ରୀନାରଦ ଉବାଚ ।
ଇତି ତୌ ଦମ୍ପତୀ ତତ୍ର ସମୁଦ୍ୟ ସମୟଂ ମିଥଃ ।
ତାଂ ପ୍ରବିଶ୍ୟ ପୁରୀଂ ରାଜନ୍ ମୁମୁଦାତେ ଶତଂ ସମାଃ । ୪୩ ।

---

ଶାସ୍ତ୍ରଜ୍ଞମାନେ କହନ୍ତି ଏହି ଗୃହାଶ୍ରମ, ପିତୃ, ଦେବ, ଋଷି, ମାନବ ଭୂତଗଣ ଓ ଆତ୍ମାର କଲ୍ୟାଣକର ଆଶ୍ରୟ ସ୍ଥଳ । ୪୦ ।

ହେ ବୀର ମୋପରି କେଉଁ କାମିନୀ ତୁମ୍ଭପରି ବିଖ୍ୟାତ ବଦାନ୍ୟ ସୁନ୍ଦର ଏବଂ ସ୍ୱୟଂ ଉପସ୍ଥିତ ପତିଙ୍କୁ ବରଣ ନ କରିବ ? ।୪୧।

ହେ ମହାବାହୁ ! ପୃଥିବୀରେ ଏପରି କୌଣସି ରମଣୀ ଅଛି ଯାହାର ମନ ତୁମ୍ଭର ସର୍ପ ଦେହ ସଦୃଶ ସୁଗଠିତ ବାହୁଦ୍ୱୟ ପ୍ରତି ଆସକ୍ତ ନ ହେବ ? ତୁମ୍ଭେ କୃପାପୂର୍ଣ୍ଣ ସହାସ୍ୟ ଅବଲୋକନ ଦ୍ୱାରା ଅନାଥ ଜନର ମନୋବ୍ୟଥା ଦୂର କରିବା ନିମିତ୍ତ ଯେପରି ଭ୍ରମଣ କରୁଅଛ । ୪୨ ।

ଶ୍ରୀନାରଦ କହିଲେ :—

ଏହି ଦମ୍ପତୀ ଏହିପରି ପ୍ରତିଜ୍ଞା କରି ଏହିପୁରୀ ମଧ୍ୟରେ ପ୍ରବେଶ କଲେ ଏବଂ ଆମୋଦ ପ୍ରମୋଦରେ ଶତବର୍ଷ ଅତିବାହିତ ହେଲା । ୪୩ ।

---

ପିତୃ ଦେବତା ମହର୍ଷି
ସୁଖ ଲଭନ୍ତି ଯହିଁ ଆସି
ଏ ଭାବେ ଗୃହସ୍ଥ ଆଶ୍ରମ
ରଖଇ ସର୍ବ ଲୋକ ଧର୍ମ
ଏଣୁ ଏ ପୁରେ କର୍ମେ ଥାଇ
ଯେ ଭୋଗବାଞ୍ଛା ନ ଇଛଇ
ତାହାକୁ ବୋଲନ୍ତି ଅଜ୍ଞାନ
ବିବେକ ନୋହେ ତାର ମନ ।୪୦।
କେ ଅବା ଅଜ୍ଞାନ ଯୁବତୀ
ତୁମ୍ଭର ପ୍ରାୟେ ପାଇ ପତି
ବିହାର ନ କରେ ତା ଭୁଲେ
ତା ସ୍ୱାମୀ ଆସି ଯେବେ ମିଳେ
ବ୍ୟର୍ଥ ସେ ନାରୀର ଜୀବନ
ନ କଲା ଭୁଜେ ଆଲିଙ୍ଗନ
ସ୍ୱଇଚ୍ଛା ଆସି ଯେବେ ମିଳେ
ବରଣ ନ କରେ ଯେ ଭଲେ
ଧିକ ସେ ନାରୀର ଜୀବନ
ତାଙ୍କ ଦଶାରେ ଧର୍ମ ହୀନ
ଯେ ସୁଖଭୋଗ ନ ଇଚ୍ଛିବ
ସେ ବ୍ୟର୍ଥ ଜୀବନେ ବଞ୍ଚିବ
ତୁମ୍ଭେ ଯେ ବଡ଼ ଭାଗ୍ୟବନ୍ତ
ଦୀନଉଦ୍ଧାରଣେ ସମର୍ଥ
ଏବେ ଯେ ତୁମ୍ଭେ ଦୟା କରି
ଅଇଲ ମୋ ଦୁଃଖ ଉଦ୍ଧରି
ଯେବେ ସୁଦୟା ମୋତେ ହେବ
ଶତେ ବରଷ ଏଥି ଥିବ ।୪୧,୪୨।
ଏମନ୍ତେ ତା ବାକ୍ୟେ ରାଜନ
ସେ ନାରୀବଶେ ପୁରଞ୍ଜନ
କଲେକ ସେ ପୁରେ ବସତି
ଶତେ ବରଷ ରଙ୍ଗେ ମାତି ।୪୩।

ଉପଗୀୟମାନୋ ଲଳିତଂ ତତ୍ର ତତ୍ର ଚ ଗାୟକୈଃ ।
କ୍ରୀଡ଼ନ୍ ପରିବୃତଃ ସ୍ତ୍ରୀଭିର୍ହ୍ରଦିନୀମାବିଶଚ୍ଛୁଚୌ । ୪୪ ।
ସପ୍ତୋପରି କୃତା ଦ୍ୱାରଃ ପୁରସ୍ତସ୍ୟାସ୍ତୁ ଦ୍ୱେ ଅଧଃ ।
ପୃଥଗ୍‌ବିଷୟଗତ୍ୟର୍ଥଂ ତସ୍ୟାଂ ଯଃ କଶ୍ଚନେଶ୍ୱରଃ । ୪୫ ।
ପଞ୍ଚଦ୍ୱାରସ୍ତୁ ପୌରସ୍ତ୍ୟା ଦକ୍ଷିଣୈକା ତଥୋତ୍ତରା ।
ପଶ୍ଚିମେ ଦ୍ୱେ ଅମୂଷାଂ ତେ ନାମାନି ନୃପ ବର୍ଣ୍ଣୟେ । ୪୬ ।
ଖଦ୍ୟୋତାବିର୍ମୁଖୀ ଚ ପ୍ରାଗ୍‌ଦ୍ୱାରାବେକତ୍ର ନିର୍ମିତେ ।
ବିଭ୍ରାଜିତଂ ଜନପଦଂ ଯାତି ତାଭ୍ୟାଂ ଦ୍ୟୁମତ୍ସଖଃ । ୪୭ ।
ନଳିନୀ ନାଳିନୀ ଚ ପ୍ରାଗ୍ ଦ୍ୱାରାବେକତ୍ର ନିର୍ମିତେ ।
ଅବଧୂତସଖସ୍ତାଭ୍ୟାଂ ବିଷୟଂ ଯାତି ସୌରଭମ୍ । ୪୮ ।

---

ଏହି ପୁରମଧ୍ୟରେ ସ୍ଥାନେ ସ୍ଥାନେ ଗାୟକମାନେ ମନୋହର ସ୍ୱରରେ ପୁରଞ୍ଜନଙ୍କର ଯଶୋଗାନ କରୁଥିଲେ । ସେ ସ୍ତ୍ରୀଗଣଙ୍କ ଦ୍ୱାରା ପରିବୃତ୍ତ ହୋଇ କ୍ରୀଡ଼ା କରିବାକୁ ଲାଗିଲେ ଏବଂ ଗ୍ରୀଷ୍ମକାଳରେ ସେମାନଙ୍କ ସହିତ ଜଳମଧ୍ୟରେ ପ୍ରବେଶ କରି ଜଳ କେଳି କଲେ । ୪୪ ।

ଏହି ପୁରର ଅଧୀଶ୍ୱରଙ୍କ ପାଇଁ ପୃଥକ ପୃଥକ୍ ସ୍ଥାନକୁ ଗମନ କରିବା ନିମିତ୍ତ ସେହିପୁରର ଉପରିଭାଗରେ ସାତୋଟି ଓ ନିମ୍ନଭାଗରେ ଦୁଇଟି ଦ୍ୱାର ଥିଲା । ୪୫ ।

ହେ ରାଜନ୍ ! ତନ୍ମଧ୍ୟରୁ ପୂର୍ବଦିଗରେ ପାଞ୍ଚଟି, ଦକ୍ଷିଣଦିଗରେ ଗୋଟିଏ, ଉତ୍ତର ଦିଗରେ ଗୋଟିଏ ଏବଂ ପଶ୍ଚିମଦିଗରେ ଦୁଇଟି ଏହି ଦ୍ୱାରମାନଙ୍କର ନାମ ଶ୍ରବଣକର । ୪୬ ।

ପୂର୍ବଦିଗର ଦ୍ୱାରର ନାମ ଖଦ୍ୟୋତ, ଓ ଆବିର୍ମୁଖୀ । ଏହି ଦୁଇଟି ଏକତ୍ର ନିର୍ମିତ, ଏହି ଦ୍ୱାରବାଟେ ଦ୍ୟୁମାଣ ନାମକ ସଖା ସହିତ ପୁରଞ୍ଜନ ବିଭ୍ରାଜିତ ନାମକ ଜନପଦକୁ ଗମନ କରନ୍ତି । ୪୭ ।

ପୂର୍ବଦିଗର ଆଉଦୁଇଟି ଦ୍ୱାରର ନାମ ନଳିନୀ ଓ ନାଳିନୀ, ଏହି ଦ୍ୱାର ଦୁଇଟି ମଧ୍ୟ ଏକତ୍ର ନିର୍ମିତ, ଏହି ଦ୍ୱାରରେ ଅବଧୂତ ନାମକ ସଖା ସାହାଯ୍ୟରେ ପୁରଞ୍ଜନ ସୌରଭ ଦେଶକୁ ଗମନ କରନ୍ତି । ୪୮ ।

---

ଗାୟକମାନେ ଯେ ଗାବନ୍ତି
ସେ ବେଳ ବିହାର କରନ୍ତି
ସେ ସଖୀମାନଙ୍କୁ ଘେନିଣ
ଗ୍ରୀଷ୍ମକାଳରେ ପଶିଣ
ଜଳାଶୟକାଳେ ଯେ କ୍ରୀଡନ୍ତି
ସେ ପୁର କେବେହେଁ ନ ଛାଡନ୍ତି ।୪୪
ଏବେ ସେ ପୁରଦ୍ୱାର ଶୁଣ
କହିବା ଯେ ଦିଗେ ଯେ ପୁଣ,

ଊର୍ଦ୍ଧ୍ୱେ ସପତ ଦ୍ୱାର ତ ର
ତା ଅଧୋଭାଗେ ବେନିଦ୍ୱାର
ଏ ଦ୍ୱାରମାନଙ୍କେ ନୃପତି
ଯେଝା ବିଷୟ ଆସ୍ୱାଦନ୍ତି
ଏ ପୁରେ ଈଶ୍ୱରଟି ଯେହି
ତାହାକୁ ନ ଜାଣନ୍ତି କେହି ।୪୫।
ଉପର ସପ୍ତ ଦ୍ୱାର ଶୁଣ
ଯେରୂପେ ହୋଇଛି ନିର୍ମାଣ

ଯେ ପୂର୍ବେ ତହିଁ ପଞ୍ଚଦ୍ୱାର
ଅଗ୍ରେ କହିବ ନାମ ତାର
ଖଦ୍ୟୋତ ଆବିର୍ମୁଖୀ ଦୁଇ
ଯେଦ୍ୱାରେ ରୂପସମ୍ପାଦଇ ।୪୬,୪୭
ନଳିନୀ ନାଳିନୀ ଯେ ଦ୍ୱାର
ଏ ପୂର୍ବଭାଗେ ଅଛି ତାର
ଏ ଦ୍ୱାର ଅବଧୂତ ସଖା
ସୁଗନ୍ଧ ଘେନୁଥାଇ ଏକା । ୪୮ ।

ମୁଖ୍ୟା ନାମ ପୁରସ୍ତାଦ୍ଵାସ୍ତୟାପଣବହୂଦନୌ ।
ବିଷୟୌ ଯାତି ପୁରରାଡ଼ ରସଜ୍ଞବିପଣାନ୍ଵିତଃ । ୪୯ ।
ପିତୃହୂର୍ନୃପ ପୂର୍ଯ୍ୟା ଦ୍ଵାର୍ଦକ୍ଷିଣେନ ପୁରଞ୍ଜନଃ ।
ରାଷ୍ଟ୍ରଂ ଦକ୍ଷିଣପଞ୍ଚାଲଂ ଯାତି ଶ୍ରୁତଧରାନ୍ଵିତଃ । ୫୦ ।
ଦେବହୂର୍ନାମ ପୂର୍ଯ୍ୟା ଦ୍ଵାରୁତ୍ତରେଣ ପୁରଞ୍ଜନଃ ।
ରାଷ୍ଟ୍ରମୁତ୍ତରପଞ୍ଚାଲଂ ଯାତି ଶ୍ରୁତଧରାନ୍ଵିତଃ । ୫୧ ।
ଆସୁରୀ ନାମ ପଶ୍ଚାଦ୍ଵାସ୍ତୟା ଯାତି ପୁରଞ୍ଜନଃ ।
ଗ୍ରାମକଂ ନାମ ବିଷୟଂ ଦୁର୍ମଦେନ ସମନ୍ଵିତଃ । ୫୨ ।
ନିର୍ଋତିର୍ନାମ ପଶ୍ଚାଦ୍ଵାସ୍ତୟା ଯାତି ପୁରଞ୍ଜନଃ ।
ବୈଶସଂ ନାମ ବିଷୟଂ ଲୁବ୍ଧକେନ ସମନ୍ଵିତଃ । ୫୩ ।

ଏହି ପୁରର ସମ୍ମୁଖବର୍ତ୍ତୀ ଦ୍ଵାରର ନାମ ମୁଖ୍ୟା । ପୁରଞ୍ଜନ ରସଜ୍ଞ ଓ ବିପଣ ନାମକ ସଖାମାନଙ୍କ ସାହାଯ୍ୟରେ ବହୂଦନ ଏବଂ ଆପଣ ନାମକ ପ୍ରଦେଶକୁ ଗମନ କରନ୍ତି । ୪୯ ।

ହେ ନୃପ ! ଏହି ପୁରର ଦକ୍ଷିଣ ଦିଗସ୍ଥ ଦ୍ଵାରର ନାମ ପିତୃହୂ । ପୁରଞ୍ଜନ ଏହି ଦ୍ଵାରବାଟେ ଶ୍ରୁତଧର ନାମକ ସଖା ସହିତ ଦକ୍ଷିଣ ପାଞ୍ଚାଳ ନାମକ ରାଜ୍ୟକୁ ଗମନ କରନ୍ତି । ୫୦ ।

ଏହି ପୁରସ୍ଥ ଉତ୍ତର ଦ୍ଵାରର ନାମ ଦେବହୂ, ଏହି ଦ୍ଵାରବାଟେ ଶ୍ରୁତଧର ନାମକ ସଖା ସହିତ ଉତ୍ତର ପାଞ୍ଚାଳରାଜ୍ୟକୁ ଗମନ କରନ୍ତି । ୫୧ ।

ଏହି ପୁରର ପଶ୍ଚିମଦିଗରେ ଆସୁରୀନାମରେ ଗୋଟିଏ ଦ୍ଵାର ଅଛି, ସେହିବାଟେ ପୁରଞ୍ଜନ ଦୁର୍ମଦ ସହିତ ଗ୍ରାମକ ଦେଶକୁ ଗମନ କରନ୍ତି । ୫୨ ।

ପଶ୍ଚିମଦିଗସ୍ଥ ଅନ୍ୟ ଦୁଇଟି ଦ୍ଵାରର ନାମ ନିଋତ, ପୁରଞ୍ଜନ ଏହି ଦ୍ଵାରବାଟେ ଲୁବ୍ଧକ ନାମକ ସଖାସହ ବୈଶସ ନାମକ ରାଜ୍ୟକୁ ଗମନ କରନ୍ତି । ଏହି ସମସ୍ତ ପୁର ଦ୍ଵାର ମଧ୍ୟରେ ନିର୍ବାକ୍ ଓ ପେଶସ୍କୃତ

ମୁଖ ନାମେଣ ଏକ ଦ୍ଵାର
ଜିହ୍ଵା କର୍ମ୍ମ ସାଧକର
ବିବିଧ ଆସ୍ଵାଦ ବଚନ
ଏ ଦ୍ଵାରେ ଘେନେ ପୁରଞ୍ଜନ
ରସ ଆସ୍ଵାଦ ବାକ୍ୟ ଦୁଇ
ଏ ବେନି ସେ ଦ୍ଵାରେ ଘେନଇ ।୪୯
ଦେବହୂ ପିତୃହୂ ଯେ ନାମ
ଏ ବେନି ଦ୍ଵାର ଦକ୍ଷ ବାମ

ସେ ଦ୍ଵାର ବିଷୟେ ଗ୍ରହଣ
ଶବ୍ଦାଦି କରେ ସମ୍ପାଦନ
ଦକ୍ଷିଣ ଉତ୍ତର ପଞ୍ଚାଳ
ରାଜ୍ୟ ଘେନଇ ମହୀପାଳ ।୫୦,୫୧
ପଶ୍ଚିମ ଆସୁରି ତା ନାମ
ସେ ବେନି ଦ୍ଵାରେ ଯେବା କର୍ମ୍ମ
ଗ୍ରାମିକ ନାମେ ଯେ ବିଷୟ
ଯାହାକୁ ବୋଲନ୍ତି ବ୍ୟବାୟ

ସେ ଦ୍ଵାରେ ପ୍ରଜା ଉତପତି
ଦୁର୍ମ୍ମଦ ସହିତେ ନୃପତି ।୫୨ ।
ନିର୍ଋତି ନାମଟି ଯାହାର
ମଳ ଉତ୍ସର୍ଗେ ସେହୁ ଦ୍ଵାର
ବୈଶସ ବିଷୟକୁ ଯାଇ
ଲୁବ୍ଧକ ମନ୍ତ୍ରୀ ସଙ୍ଗେ ଥାଇ ।୫୩।

ଅନ୍ଧାବମୀଷାଂ ପୌର୍‌ଣାଂ ନର୍ବାକ୍‌ପେଶସ୍କୃତାବୁଭୌ ।
ଅକ୍ଷଣ୍ୱତାମଧିପତିସ୍ତାଭ୍ୟାଂ ଯାତି କରୋତି ଚ । ୫୪ ।
ସ ଯର୍ହ୍ୟନ୍ତଃ ପୁରଗତୋ ବିଷୂଚୀନ ସମନ୍ୱିତଃ ।
ମୋହଂ ପ୍ରସାଦଂ ହର୍ଷଂ ବା ଯାତି ଜାୟାତ୍ମଜୋଦ୍ଭବମ୍ । ୫୫ ।
ଏବଂ କର୍ମସୁ ସଂସକ୍ତଃ କାମାତ୍ମା ବଞ୍ଚିତୋଽବୁଧଃ ।
ମହିଷୀ ଯଦ୍ ଯଦୀହେତ ତତ୍ତଦେବାନ୍ୱବର୍ତ୍ତତ । ୫୬ ।
କ୍ୱଚିତ୍ ପିବନ୍ତ୍ୟାଂ ପିବତି ମଦିରାଂ ମଦବିହ୍ୱଳଃ ।
ଅଶ୍ନନ୍ତ୍ୟାଂ କ୍ୱଚିଦଶ୍ନାତି ଜକ୍ଷତ୍ୟାଂ ସହ ଜକ୍ଷିତି । ୫୭ ।
କ୍ୱଚିଦ୍‌ଗାୟତି ଗାୟନ୍ତ୍ୟାଂ ରୁଦନ୍ତ୍ୟାଂ ରୁଦତି କ୍ୱଚିତ୍ ।
କ୍ୱଚିଦ୍ଧସନ୍ତ୍ୟାଂ ହସତି ଜଳ୍ପନ୍ତ୍ୟାମନୁଜଳ୍ପତି । ୫୮ ।

ନାମକ ଦ୍ୱାର ହିଁ ଅନ୍ଧ ଇନ୍ଦ୍ରିୟବାନ୍ ଦ୍ୱାରଦ୍ୱୟର ଅଧିପତି, ପୁରଞ୍ଜନ ଏହି ଦ୍ୱାରବାଟେ ଗମନ ଓ କର୍ମ କରିଥାନ୍ତି । ୫୩,୫୪ ।

ସେ ବିଷୂଚୀନ ସହିତ ହୋଇ ଯେତେବେଳେ ଅନ୍ତଃପୁରକୁ ଗମନ କରନ୍ତି, ସେତେବେଳେ ପତ୍ନୀ ଓ ପୁତ୍ରଗଣଙ୍କ ଦ୍ୱାରା ସମୁଦ୍‌ଭୂତ ମୋହ ଓ ହର୍ଷ ପ୍ରାପ୍ତ ହୋଇଥାନ୍ତି । ୫୫ ।

ଏହିପରି କର୍ମାସକ୍ତ ପୁରଞ୍ଜନ ମୂର୍ଚ୍ଛାତୁଲ୍ୟ ବଞ୍ଚିତ ଓ ମୁଗ୍‌ଧ ହୋଇ ତାହାଙ୍କର ମହିଷୀର କାର୍ଯ୍ୟକଳାପ ଅନୁସରଣ କରିଥାନ୍ତି । ୫୬ ।

ଭାର୍ଯ୍ୟା ମଦିରା ପାନ କଲେ ସେ ମଦିରାପାନକରି ମଦ ବିହ୍ୱଳ ହୁଅନ୍ତି । ମହିଷୀ ଅନ୍ନାଦି ଭୋଜନ କଲେ, ସେ ଅନ୍ନାଦି ଭୋଜନ କରନ୍ତି । ମହିଷୀ ମୋଦକ ଚର୍ବଣ କଲେ ସେ ମୋଦକ ଚର୍ବଣକରନ୍ତି ।୫୭

ଭାର୍ଯ୍ୟା ଗାନ କଲେ ସେ ଗାନ କରନ୍ତି, ରୋଦନ କଲେ ରୋଦନ କରନ୍ତି, ହାସ୍ୟକଲେ ହାସ୍ୟ କରନ୍ତି, ଗଳ୍ପକଲେ ଗଳ୍ପ କରନ୍ତି । ୫୮ ।

ଏ ପୁରେ ଯେତେକ ଅଛନ୍ତି
ଏ କେହି ଅନ୍ଧ ଯେ ନୁହନ୍ତି
ନର୍ବାକ ପେଶସ୍କୃତ ଦୁଇ
ଏ ଦୁଇ ଅନ୍ଧ ରୂପେ ତହିଁ
ଏକଇ ଅନ୍ଧ ସେ ରାଜନ
କରଇ ଆଦାନ ପ୍ରଦାନ
ଯେ ଆଉ ଅନ୍ଧ ତା ପଦ୍ମର
ତହିଁ ଗମଇ ନୃପବର । ୫୪ ।
ସେ ରାଜା ଅନ୍ତଃପୁରେ ବସେ
ବିଷୂଚୀ ଘେନିଥାଇ ପାଶେ
ବିଷୂଚୀ ନାମେ ଯେହୁ ଏକ
ତାହାର ସଙ୍ଗ ହିଁ ମୂଖ
କଦାଚ୍ୟ ସେ ରାଜା ସଙ୍ଗେ ଥାଇ
ଯେଉଁଣେ ପେଷଇ ତେଣେ ଯାଇ
ସେ କ୍ଷଣେ ନ ଛାଡ଼ଇ ତାକୁ
ଅନାଇ ଥାଇ ତା ଆଜ୍ଞାକୁ
ଏମନ୍ତେ ସେ ଯେ ପୁରଞ୍ଜନ
ସେ ପୁରେ ଥାଇ ଅନୁକ୍ଷଣ
କେବେ ବା ମୋହ ଯାଉଥାଇ
କେବେ ହରଷହିବ ହୋଇ
କ୍ଷଣକେ ହୋଇ ହତଜ୍ଞାନ
କ୍ଷଣକେ ଲଭଇ ଚେତନ । ୫୫ ।
ସେ କାମକର୍ମେ ଦେଇ ଚିତ୍ତ
ଏଣୁ ହୋଇଲା ଜ୍ଞାନହତ
ତା ପତ୍ନୀ ଯାହା ପ୍ରବର୍ତ୍ତାଇ
ସେ ମାର୍ଗେ ରାଜନ ଗମଇ ।୫୬।
ସେ ମଦ୍ୟ ପାନ ଯେବେ କରେ
ରାଜା ପିବଇ ସ୍ନେହଭରେ
ଯେବେ ସେ କରଇ ଭୋଜନ
ତା ପ୍ରୀତେ ଭୁଞ୍ଜଇ ରାଜନ
ସେ ଯେବେ ଆନନ୍ଦ ଭଜଇ
ତା ଲାଗି ରାଜା ମୋଦ ହୋଇ
ସେ ଯେବେ କରଇ ରୋଦନ
ତା ପଛେ ବିଳାପେ ରାଜନ
ସେ ଗୀତ ଗାବନ୍ତେ ସୁନ୍ଦରୀ
ରାଜନ ଗାବେ ଅନୁସରି

କ୍ୱଚଦ୍ଧାବତି ଧାବନ୍ତ୍ୟାଂ ତିଷ୍ଠନ୍ତ୍ୟାମନୁତିଷ୍ଠତି ।
ଅନୁଶେତେ ଶୟାନାୟାମନ୍ୱାସ୍ତେ କ୍ୱଚଦାସତୀମ୍ । ୫୯ ।
କ୍ୱଚିତ୍ ଶୃଣୋତି ଶୃଣ୍ୱନ୍ତ୍ୟାଂ ପଶ୍ୟନ୍ତ୍ୟାମନୁପଶ୍ୟତି ।
କ୍ୱଚିଜ୍ଜିଘ୍ରତି ଜିଘ୍ରନ୍ତ୍ୟାଂ ସ୍ପୃଶନ୍ତ୍ୟାଂ ସ୍ପୃଶତି କ୍ୱଚିତ୍ । ୬୦ ।
କ୍ୱଚଚ୍ଚ ଶୋଚତୀଂ ଜାୟାମନୁଶୋଚତି ଦୀନବତ୍ ।
ଅନୁ ହୃଷ୍ୟତି ହୃଷ୍ୟନ୍ତ୍ୟାଂ ମୁଦିତାମନୁମୋଦତେ । ୬୧ ।
ବିପ୍ରଲବ୍ଧୋ ମହିଷ୍ୟୈବଂ ସର୍ବପ୍ରକୃତିବଞ୍ଚିତଃ ।
ନେଚ୍ଛନ୍ନନୁକରୋତ୍ୟଜ୍ଞଃ କ୍ଲୈବ୍ୟାତ୍ କ୍ରୀଡ଼ାମୃଗୋ ଯଥା । ୬୨ ।
ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ ନାମ ପଞ୍ଚବିଂଶୋଽଧ୍ୟାୟଃ । ୨୫ ।

---

ସେ ଯିଏ ଦୌଡିଲେ ଦୌଡନ୍ତି, ବସିଲେ ବସନ୍ତି, ଶୋଇଲେ ଶୁଅନ୍ତି, ଠିଆହେଲେ ଠିଆ ହୁଅନ୍ତି ।୫୯

ପତ୍ନୀ କୌଣସି କଥା କାନଡେରି ଶୁଣିଲେ ସେ ଶୁଣନ୍ତି, ଦର୍ଶନ କଲେ ଦର୍ଶନ କରନ୍ତି, ଘ୍ରାଣ କଲେ ଘ୍ରାଣ କରନ୍ତି, ସ୍ପର୍ଶ କଲେ ସ୍ପର୍ଶ କରନ୍ତି । ୬୦ ।

କେତେବେଳେ ପତ୍ନୀ ଶୋକ କଲେ ସେ ଦୀନବତ୍ ଶୋଚନା କରନ୍ତି, ହୃଷ୍ଟହେଲେ ସେ ହୃଷ୍ଟ ହୁଅନ୍ତି, ଆନନ୍ଦିତା ହେଲେ ସେ ଆନନ୍ଦ ପ୍ରକାଶ କରନ୍ତି । ୬୧ ।

ପୁରଞ୍ଜନ ଏହିପରି ଆପଣାର ସ୍ତ୍ରୀକର୍ତ୍ତୃକ ପ୍ରତାରିତ ହୋଇ ନିଜର ସ୍ୱଭାବରୁ ବିଚଳିତ ହେଲେ ଏବଂ କ୍ରୀଡ଼ା ମୃଗତୁଲ୍ୟ ଅନିଚ୍ଛା ସତ୍ତ୍ୱେ ସ୍ତ୍ରୀର ଅନୁକରଣ କରିବାକୁ ଲାଗିଲେ । ୬୨ ।

---

ଆନନ୍ଦେ ହସେ ଯେବେ ରାଣୀ
ତା ସଙ୍ଗେ ହସେ ନୃପମଣି
ବଚନ କହନ୍ତେ ରମଣୀ
ସେ ସଙ୍ଗେ କହେ ନୃପମଣି
ସେ ଯେବେ ବ୍ୟସ୍ତଗତେ ଯାଇ
ସେ ସଙ୍ଗେ ସ୍ୱଜନ ଗମଇ
ତା ପତ୍ନୀ କରନ୍ତେ ଆସନ
ତେବେ ସେ କରଇ ଶୟନ
ଏମନ୍ତେ ସେ ରାଣୀ ରାଜାକୁ
ଭ୍ରମଣ କଲା ସର୍ବଠାକୁ ।୫୭-୬୧
ତା ବିନା ଆଜ୍ଞାରେ ରାଜନ
ନ କରେ ଅନ୍ୟ ଚେଷ୍ଟାମାନ
ତା' ବଶେ ହୋଇଲା ଆୟୁଷ
ରାଜାର ଜନ୍ମ ହେଲା ବ୍ୟର୍ଥ
ସେ କ୍ରୀଡ଼ାମୃଗ ଭାବପ୍ରାୟେ
ସ୍ତ୍ରୀଷ୍ୱ ବଶରେ ରହେ ରାୟେ ।୬୨।

ଭ୍ରମ୍ଭ ଯେସନେ ହେ ରାଜନ
ହାରିଲ ସ୍ତ୍ରିୟବଶେ ଧନ
ସେ ସଙ୍ଗେ ପୁରଞ୍ଜନ ରାୟେ
ସ୍ତ୍ରିୟଅଧୀନେ ଜ୍ଞାନ କ୍ଷୟେ
ତା ପତ୍ନୀବଶେ ଗଲା ଧନ
ଏ ମିଥ୍ୟା ଭୋଗେ ସେ ରାଜନ
ଯେ ସ୍ତ୍ରିୟବଶ ପ୍ରାଣୀ ହୋନ୍ତି
ସେ ପୂର୍ବ ପୁଣ୍ୟ ବିନାଶନ୍ତି
ଇହ ଲୋକରେ ଅପଯଶ
ମଲେ ନରକେ ପରବେଶ
ସ୍ତ୍ରିୟଙ୍କ ସଙ୍ଗ ଦୋଷେ ରାୟେ
ଧର୍ମାଦି ଜ୍ଞାନମାର୍ଗ କ୍ଷୟେ
ସ୍ତ୍ରିୟଙ୍କସଙ୍ଗ ଫଳ ଏହି
କଦାଚିତ ଶ୍ରେୟ ନାହିଁ ଯହିଁ
ଏହା ତୁ ଶୁଦ୍ଧ ଚିତ୍ତେ ଧର
ଏ ସଙ୍ଗ ଦୂରେ ପରିହର

ତୁ ଶାସ୍ତ୍ରମାର୍ଗେ ହେ ରାଜନ
ବିଚାରି କର ଅନୁମାନ
ଏମନ୍ତେ ନାନା ଧର୍ମ ବାଟେ
ସେ ମନ ବୁଝାଇ ଛଡାଟେ
ପ୍ରାଚୀନବର୍ହି ନାରଦ
ଏ ପୁରଞ୍ଜନର ସମ୍ବାଦ
ଯେ ଏହା ଶ୍ରବଣେ ଶୁଣନ୍ତି
ଅଥବା ବଦନେ ଭଣନ୍ତି
ଖଣ୍ଡିଇ ମାୟାଦ୍ୱନ୍ଦ ବନ୍ଧ
ଜ୍ଞାନ ବର୍ଦ୍ଧିତ ଆତ୍ମା ଶୁଦ୍ଧ
ଭଣଇ ବିପ୍ର ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ ।



## ଷ ଡ୍‌ ବିଂ ଶ ଅ ଧ୍ୟା ୟ ।

ଷଡ୍‌ବିଂଶେ ମୃଗୟାବ୍ୟାଜାତ୍ ସ୍ୱପ୍ନଜାଗରଣୋକ୍ତିତଃ ।
ସଦ୍‌ବୁଦ୍ଧିସ୍ତ୍ୟାଗଯୋଗାଭ୍ୟାଂ ସଂସୃତଃ ସା ପ୍ରପଞ୍ଚ୍ୟତେ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀନାରଦ ଉବାଚ ।

ସ ଏକଦା ମହେଷ୍ୱାସୋ ରଥଂ ପଞ୍ଚାଶ୍ୱମାଶୁଗମ୍ ।
ଦ୍ୱୀଷଂ ଦ୍ୱିଚକ୍ରମେକାକ୍ଷଂ ତ୍ରିବେଣୁଂ ପଞ୍ଚ ବନ୍ଧୁରମ୍ । ୧ ।
ଏକରଶ୍ମ୍ୟେକଦମନମେକନୀଡ଼ଂ ଦ୍ୱିକୂବରମ୍ ।
ପଞ୍ଚପ୍ରହରଣଂ ସପ୍ତ ବରୂଥଂ ପଞ୍ଚବିକ୍ରମମ୍ । ୨ ।

---

### ପୁରଞ୍ଜନଙ୍କର ମୃଗୟା ।

ଷଡ୍‌ବିଂଶ ଅଧ୍ୟାୟରେ ପୁରଞ୍ଜନଙ୍କର ମୃଗୟା ଏବଂ ଜ୍ଞାନଭ୍ରଂଶ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି ।୦।

ଶ୍ରୀନାରଦ କହିଲେ :—

ଏକଦା ସେହି ପୁରଞ୍ଜନ ରଜୋଗୁଣମୟ ସ୍ୱର୍ଣ୍ଣକବଚ, ଅକ୍ଷୟତୂଣୀର, ମହାଧନୁଧାରଣ କରି ରଥାରୋହଣ ପୂର୍ବକ ଏକାଦଶ ସୈନ୍ୟ ଦଳର ଅଧିପତି ସେନାପତିସହ ପଞ୍ଚପ୍ରସ୍ଥନାମକ ବନକୁ ଗମନ କରିଥିଲେ । ତାଙ୍କ ରଥରେ ପାଞ୍ଚୋଟି ଅଶ୍ୱ ଲାଗିଥିଲେ, ସେମାନେ ଦ୍ରୁତଗାମୀ, ଦୁଇଟିଦଣ୍ଡରେ ନିବଦ୍ଧ ତାହାଙ୍କର ଦୁଇଟି ଚକ୍ର, ଗୋଟିଏ ଅକ୍ଷ, ବା ଧୁର, ତିନୋଟି ଧ୍ୱଜଦଣ୍ଡ, ପାଞ୍ଚଟି ବନ୍ଧନ, ଗୋଟିଏରଜ୍ଜୁ, ଜଣେ ସାରଥି, ଗୋଟିଏମାତ୍ର ରଥୀଙ୍କର ଉପବେଶନ ସ୍ଥାନ ଥିଲା, ଦୁଇଟି ଯୁଗ ବନ୍ଧସ୍ଥାନରେ ପାଞ୍ଚଗୋଟି

---

ଷଡ଼ବିଂଶରେ ପୁରଞ୍ଜନ । ମୃଗୟା ଅର୍ଥେ ଗଲା ବନ ॥

ଶ୍ରୀ ମୈତ୍ରେୟଉବାଚ—
ପୁଣି ନାରଦ ମହାମୁନି
କହନ୍ତି ହରଷିତ ହୋଇ
ଶୁଣ ପ୍ରାଚୀନ ନୃପବର
ସେ ପୁରଞ୍ଜନ ସେ ମନ୍ଦିର
ରହିଲା ସ୍ତ୍ରିୟ ବଶ ହୋଇ
ଅଜ୍ଞାନ ମୋହ ଅନୁରାଗେ
ସେ ଏକ ଦିନେ ନୃପବର
ମୃଗୟା ଅର୍ଥେ ବନଘୋର
ଉଦ୍ୟମ କଲା ସେ ରାଜନ
ସଙ୍ଗେ ଦୁର୍ଜୟ ଭଟମାନ

ରଥ ଆରୋହି ଶୀଘ୍ରଗତି
ଅରଣ୍ୟେ ପ୍ରବେଶ ନୃପତି
ସେ ପୁରଞ୍ଜନ ଦିବ୍ୟ ଯାନ
ଅତି ସୁନ୍ଦର ନିରୁପମ
ପଞ୍ଚ ତୁରଙ୍ଗ ରଥ ବହେ
ଗମନ୍ତି ପଞ୍ଚମାର୍ଗେ ହୟେ
ଅଶେଷ ବେଗ ଯେ ତାହାର
ଗମନେ ନ ପାରେ ସମୀର
ସେ ବେନି ଚକ୍ରେ ଶୋଭିବନ
ଏକଇ ଅକ୍ଷେ ନିବନ୍ଧନ
ଧ୍ୱଜ ତ୍ରିବର୍ଣ୍ଣ ରୂପସାଜେ
ସେ ରଥ ଉପରେ ବିରାଜେ

ପଞ୍ଚମ ବନ୍ଧନେ ଶୋଭିତ
ରଥ ସାରଥି ତେଜବନ୍ତ
ଏକଇ ନୀଡ଼ ଶୋଭିବନ
ସେ ରାଜା ବସିବା ଆସନ
ସେ ବେନି କୂବରେ ଶୋଭିତ
ପଞ୍ଚ ପ୍ରହରଣ ସଂଯୁକ୍ତ
ସପ୍ତ ଆବରଣ ସଙ୍ଗତ
ଏ ରୂପେ ସେ ରଥେ ଶୋଭନ୍ତି
ସେ ହେମ ଭୂଷଣେ ଶୋଭନ
ସାଞ୍ଜୁଆ ପିନ୍ଧି ସେ ରାଜନ
ବସିଲେ ମନୋଜ୍ଞ ଜାନେ
ଦେଖି ଶଙ୍କନ୍ତି ରିପୁ ଜନେ

ହୈମୋପସ୍କରମାରୁହ୍ୟ ସ୍ୱର୍ଣ୍ଣବର୍ମାକ୍ଷୟେଷୁଧିଃ ।
ଏକାଦଶଚମୂନାଥଃ ପଞ୍ଚପ୍ରସ୍ଥମଗାଦ୍‌ବନମ୍ ।୩।
ଚଚାର ମୃଗୟାଂ ଭଦ୍ର ଦୃପ୍ତ ଆତ୍ତେଷୁକାର୍ମୁକଃ ।
ବିହାୟ ଜାୟାମତଦର୍ହାଂ ମୃଗବ୍ୟସନଲାଲସଃ ।୪।
ଆସୁରୀଂ ବୃତ୍ତିମାଶ୍ରିତ୍ୟ ଘୋରାତ୍ମା ନିରନୁଗ୍ରହଃ ।
ନ୍ୟହନନ୍ନିଶିତୈର୍ବାଣୈର୍ବନେଷୁ ବନଗୋଚରାନ୍ ।୫।
ତୀର୍ଥେଷୁ ପ୍ରତିଦୃଷ୍ଟେଷୁ ରାଜା ମେଧ୍ୟାନ୍ ପଶୂନ୍ ବନେ ।
ଯାବଦର୍ଥମଲଂ ଲୁବ୍ଧୋ ହନ୍ୟାଦିତି ନିୟମ୍ୟତେ ।୬।

---

ବିଷୟ ପ୍ରକ୍ଷିପ୍ତ ହୋଇଥିଲା, ଏହି ରଥର ଚର୍ମମୟ ଆବରଣ, ତାହାର ଗଡ ସାଞ୍ଚିପ୍ରକାର, ଏହା ସ୍ୱର୍ଣ୍ଣମୟ ଅଳଙ୍କାର ଭୂଷିତ ।୧-୩।

ମୃଗୟା ପ୍ରତି ଅତ୍ୟନ୍ତ ଆସକ୍ତ ହେତୁ ରାଜା ପୁରଞ୍ଜନ ତ୍ୟାଗ ଅଯୋଗ୍ୟା ପତ୍ନୀଙ୍କୁ ତ୍ୟାଗକରି ଧନୁ ଧାରଣ ପୂର୍ବକ ଅହଂକାର ଯୁକ୍ତ ହୋଇ ସେହି ବନମଧ୍ୟରେ ମୃଗୟା କରିବାକୁ ଲଗିଲେ ।୪।

ନିର୍ଦ୍ଦୟ ପୁରଞ୍ଜନ ଆସୁରୀ ବୃତ୍ତି ଅବଲମ୍ବନ କରି ଭୟଙ୍କର ମୂର୍ତ୍ତିଧାରଣ ପୂର୍ବକ ଶାଣିତଶର ଦ୍ୱାରା ବନମଧ୍ୟସ୍ଥ ପଶୁମାନଙ୍କୁ ସଂହାର କରିଥିଲେ ।୫।

ରାଜା ନିତାନ୍ତ ମାଂସାଶୀ ହେଲେ ଶାସ୍ତ୍ରୋପଦେଶ ପାଳନକରି ଶ୍ରାଦ୍ଧ ସମ୍ପାଦନାର୍ଥ ରାଜା ପ୍ରସିଦ୍ଧ ତୀର୍ଥରେ ପବିତ୍ର ପଶୁମାନଙ୍କୁ ଆବଶ୍ୟକ ଅନୁସାରେ ବଧକରି ପାରନ୍ତି ଏହାହିଁ ବିଧି ।୬।

---

ଅକ୍ଷୟ ତୂଣୀର ବାନ୍ଧଣ
ଭୂପତି ଅତି ହରଷେଣ
ସେ ଏକାଦଶ ସେନାପତି
ସଙ୍ଗତ କରିଣ ନୃପତି
ଚଳନ୍ତି ଅତ୍ୟନ୍ତ ହରଷେ
ଦଶ ବିଦଗ ସ୍ୱହିଁ ତୋଷେ
ପଞ୍ଚମ ପ୍ରସ୍ଥ ନାମ ଯେହି
ପ୍ରତିବଶ ଅରଣ୍ୟରେ ଯାଇ
ଜଡ଼ରଣ ଧରି ଶରାସନ
ମୃଗୟା ଛଳେ ସେ ରାଜନ
ଛାଡ଼ିଣ ପ୍ରିୟବତୀ ନାରୀ
ଏକାକୀ ଗଲେ ନ ବିସ୍ମରି ।୧-୪।

ଆସୁରୀ ବୃତ୍ତି ଧରି ରଙ୍ଗେ
କଠୋର ହୃଦୟ ନିର୍ଦ୍ଦୟେ
ନାହିଁ ତା ଅନୁଗ୍ରହ ଚିତ୍ତେ
ମୃଗୟା ଛଳେ ବନମାହନ୍ତେ
ଶାଣିତ ବାଣ ଶରାସନ
ବଧିଲେ ବନପଶୁମାନ
ଯେ ରାଜା ହୋଏ ଅପଣ୍ଡିତ
କରେ ଅତ୍ୟାଶୀ ଜୀବ ହତ
ଯେ ପ୍ରାଣୀ ଜୀବ ବଧ କରେ
ସେ ପଶୁ ଯୋନିରେ ବିହରେ
ସେ ନୃପ ଅଜ୍ଞାନ ଅଧମ
ତାର ଆୟୁଷ ବୃଦ୍ଧି ହୀନ

ଅଜ୍ଞାନେ ଯେବା ଜୀବ ମାରେ
ସେ ରାଜା ନରକେ ପଶିରେ ।୫।
ଯେ ପିତୃଦେବ ଶ୍ରାଦ୍ଧ ଅର୍ଥେ
ପଶୁ ବଧିବ ବେଦପଥେ
ତେବେ ସେ ପଶୁବଧ ତାର
କେବଳ ଦୁଃଖମାତ୍ର ସାର
ଯେ ବେଦକର୍ମ ନ କରନ୍ତି
ସେ ଆତ୍ମାବଧେ ଭାଗୀ ହୋନ୍ତି
ଯେ ବିଧିହୀନେ ଯଜ୍ଞ କରେ
ସେ ପ୍ରାଣୀ ସଂସାରୁ ନ ତରେ
ଅଜ୍ଞାନେ ଧର୍ମମାର୍ଗ ଛାଡ଼ି
ସେ ପଶୁ ବଧେ ଚିତ୍ତ ବଳି

ଯ ଏବଂ କର୍ମନିୟତଂ ବିଦ୍ୱାନ୍ କୁର୍ବୀତ ମାନବଃ ।
କର୍ମଣା ତେନ ରାଜେନ୍ଦ୍ର ଜ୍ଞାନେନ ନ ସ ଲିପ୍ୟତେ । ୭ ।
ଅନ୍ୟଥା କର୍ମ କୁର୍ବାଣୋ ମାନାରୂଢ଼ୋ ନିବଧ୍ୟତେ ।
ଗୁଣପ୍ରବାହପତିତୋ ନଷ୍ଟପ୍ରଜ୍ଞୋ ବ୍ରଜତ୍ୟଧଃ । ୮ ।
ତତ୍ର ନିର୍ଭିନ୍ନଗାତ୍ରାଣାଂ ଚିତ୍ରବାଜୈଃ ଶିଲୀମୁଖୈଃ ।
ବିପ୍ଲବୋଽଭୂଦ୍ଦୁଃଖିତାନାଂ ଦୁଃସହଃ କରୁଣାତ୍ମନାମ୍ । ୯ ।
ଶଶାନ୍ ବରାହାନ୍ ମହିଷାନ୍ ଗବୟାନ୍ ରୁରୁଶଲ୍ୟକାନ୍ ।
ମେଧ୍ୟାନନ୍ୟାଂଶ୍ଚ ବିବିଧାନ୍ ବିନିଘ୍ନନ୍ ଶ୍ରମମଧ୍ୟଗାତ୍ । ୧୦ ।
ତତଃ କ୍ଷୁତ୍‌ତୃଟ୍‌ପରିଶ୍ରାନ୍ତୋ ନିବୃତ୍ତୋ ଗୃହମେୟିବାନ୍ ।
କୃତସ୍ନାନୋଚିତାହାରଃ ସଂବିବେଶ ଗତକ୍ଲମଃ । ୧୧ ।

---

ହେ ରାଜେନ୍ଦ୍ର ! ଯେଉଁ ମାନବ ଶାସ୍ତ୍ରଦର୍ଶୀ ସେ ଏହିପରି ଶାସ୍ତ୍ରନିୟନ୍ତ୍ରିତ କାର୍ଯ୍ୟ କରେ, ସେହି ବ୍ୟକ୍ତିର କର୍ମ ହେତୁ ବିମଳ ଜ୍ଞାନ ଉତ୍ପତ୍ତି ହେବାରୁ ସେ କର୍ମରେ ଲିପ୍ତ ହୁଏ ନାହିଁ । ୭ ।

ମନୁଷ୍ୟ ଯେତେବେଳେ ଶାସ୍ତ୍ରଜ୍ଞାନ ପରିହାରକରି ଅଭିମାନଯୁକ୍ତ ହୋଇ କର୍ମ ସାଧନକରେ, ସେତେବେଳେ ସେ କର୍ମଦ୍ୱାରା ବିନଷ୍ଟ ହୁଏ, ତଦନନ୍ତର ଗୁଣ ପ୍ରବାହରେ ପତିତ ହୋଇ ଜ୍ଞାନନଷ୍ଟ ହେବାରୁ ନରକଗାମୀ ହୁଏ । ୮ ।

ସେହି ବନମଧ୍ୟରେ ପୁରଞ୍ଜନ ବିଚିତ୍ର ପକ୍ଷଶାଳୀ ବାଣ ଦ୍ୱାରା ଛିନ୍ନ ଦେହ ଆର୍ତ୍ତମୃଗକୁଳଙ୍କୁ ବିନାଶ କରିବାରୁ କରୁଣ ହୃଦୟ ସାଧୁମାନଙ୍କ ପକ୍ଷରେ ତାହା ଅତ୍ୟନ୍ତ ଅସହନୀୟ ହେଲା । ୯ ।

ସେହି ବନମଧ୍ୟରେ ସେ ଶଶକ, ଶୂକର, ମହିଷ, ଗବୟ, ରୁରୁ, ଶଲ୍ୟକ, ଓ ଅନ୍ୟାନ୍ୟ ବିବିଧ ପଶୁ ବିନାଶ କରି ଅତ୍ୟନ୍ତ କ୍ଳାନ୍ତ ହୋଇ ପଡ଼ିଲେ । ୧୦ ।

ତଦନନ୍ତର କ୍ଷୁଧା ତୃଷ୍ଣା ପରିଶ୍ରାନ୍ତ ହୋଇ ସେ ମୃଗୟାରୁ ନିବୃତ୍ତ ହେଲେ, ଏବଂ ଗୃହକୁ ଫେରି ଆସି ଯଥାବିଧି ସ୍ନାନ ଓ ଆହାର କରି ଶ୍ରାନ୍ତି ଦୂର କରିଥିଲେ । ୧୧ ।

---

ତାହାର ମୋକ୍ଷ ନାହିଁ ଆଉ
ମନୁଷ୍ୟ ଜନ୍ମ ହୋଏ ଦୂର
ସେ ପଶୁ ଯୋନିରେ ଭ୍ରମଇ
ଯାତନା କର୍ମ ନ ଛାଡ଼ଇ
ପଶୁର ଦେହେ ପ୍ରେମ ଯେତେ
ଜନ୍ମ ଲଭଇ ସେହିମତେ ।୭-୮।
ଏହା ନ ଜାଣି ନୃପବର
ସେ ପଶୁ ବଧିଲ ଅପାର

ତାହାର ଘୋର ତୀକ୍ଷ୍ଣ ବାଣେ
ପଶୁଏ ଲଭିଲେ କଷଣେ । ୯ ।
ବରାହ ଗୟଳ ହରିଣ
ଶଶା ମହିଷ ପଶୁଗଣ
ମେଧ୍ୟ ଅମେଧ୍ୟ ପଶୁ ଯେତେ
ଇତ୍ୟାଦି ଜୀବ ଯେ ବନସ୍ତେ
ଏମନ୍ତେ ନାନା ଜୀବ ମାରି
ସେ ଧର୍ମ୍ମପଥ ନ ବିଚାରି

ବନ ଭ୍ରମଣେ ନୃପବର
ବହୁତ ଶ୍ରମ ହେଲା ତାର ।୧୦।
କ୍ଷୁଭିତ କ୍ଷୁଧା-ତୃଷାକୁଳେ
ଆତ୍ମା ପୀଡ଼ିତ ଶ୍ରମବଳେ
ସତ୍ୱରେ ସଦନେ ପ୍ରବେଶ
ସ୍ନାନାଦି ଭୋଜନେ ସୁବେଶ
ସୁଶାନ୍ତ କରିଣ ଶରୀର
ଅତି ଆନନ୍ଦେ ନୃପବର

ଆମ୍ଳାନମର୍ହସ୍ରାଙ୍ଗକେ ଧୂପାଲେପସ୍ରଟାଦଭିଃ ।
ସାଧ୍ୱଲଙ୍କୃତସର୍ବାଙ୍ଗୋ ମହିଷ୍ୟାମାଦଧେ ମନଃ । ୧୨ ।
ତୃପ୍ତୋ ହୃଷ୍ଟଃ ସୁଦୃପ୍ତଶ୍ଚ କନ୍ଦର୍ପାକୃଷ୍ଟମାନସଃ ।
ସ ବ୍ୟାଚଷ୍ଟ ବରାରୋହାଂ ଗୃହିଣୀଂ ଗୃହମେଧିନୀମ୍ । ୧୩ ।
ଅନ୍ତଃପୁରସ୍ତ୍ରିୟୋଽପୃଚ୍ଛଦ୍‌ବିମନା ଇବ ବେଦିଷାତ୍ ।
ଅପି ବଃ କୁଶଳଂ ରାମାଃ ସେଶ୍ୱରୀଣାଂ ଯଥା ପୁରା । ୧୪ ।
ନ ତଥୈତର୍ହି ରୋଚନ୍ତେ ଗୃହେଷୁ ଗୃହସମ୍ପଦଃ ।
ଯଦି ନ ସ୍ୟାଦ୍‌ଗୃହେ ମାତା ପତ୍ନୀ ବା ପତିଦେବତା-
ବ୍ୟଙ୍ଗେ ରଥ ଇବ ପ୍ରାଜ୍ଞଃ କୋ ନାମାସୀତ ଦୀନବତ୍ । ୧୫ ।

ତଦନନ୍ତର ସେ ଧୂପ, ଗନ୍ଧାନୁଲେପନ, ଏବଂ ମାଲ୍ୟାଦିଦ୍ୱାରା ନିଜଶରୀର ଅଳଂକୃତ କରିଥିଲେ, ଏବଂ ସମ୍ୟକ୍ ପ୍ରକାରେ ସୁସଜ୍ଜିତ ହୋଇ ମହିଷୀଙ୍କ ପ୍ରତି ଚିତ୍ତ ନିବେଶ କରିଥିଲେ । ୧୨ ।

ରାଜା ପୁରଞ୍ଜନ ଉଲ୍ଲାସଯୁକ୍ତ ଆହାରାଦିଗ୍ରହଣ ହେତୁ ହୃଷ୍ଟହୋଇ କାମବ୍ୟାକୁଳ ଚିତ୍ତ ହୋଇ ନିଜର ଶ୍ରେଷ୍ଠା ସହଧର୍ମିଣୀଙ୍କୁ ଦେଖିଲେ ନାହିଁ । ୧୩ ।

ହେ ପ୍ରାଚୀନବର୍ହି ! ରାଜା ପୁରଞ୍ଜନ ସେତେବେଳେ ବିମନାହୋଇ ଅନ୍ତଃପୁର ବାସିନୀ ନାରୀଗଣଙ୍କୁ ପଚାରିଲେ ହେ ରମଣୀଗଣ ! ତୁମ୍ଭମାନଙ୍କର ସ୍ୱାମିନୀଙ୍କ ସହିତ ତୁମ୍ଭମାନଙ୍କର ସମସ୍ତ କୁଶଳତ ? ଗୃହ ମଧ୍ୟରେ ଯେଉଁ ଭୋଗୋପକରଣ ରହିଅଛି, ତାହା ତୁମ୍ଭମାନଙ୍କର ସ୍ୱାମିନୀଙ୍କର ଉପସ୍ଥିତିରେ ମୋର ହୃଦୟରେ ଯେପରି ଆନନ୍ଦୋତ୍ପାଦନ କରୁଥିଲା । ତାହାଙ୍କ ବିରହରେ ସେପରି ଆନନ୍ଦଦାୟକ ହେଉନାହିଁ । ଗୃହରେ ଯଦି ମାଂ ବା ପତିବ୍ରତା ଭାର୍ଯ୍ୟା ନ ଥାଏ ତେବେ ସେ ଗୃହରେ କେଉଁ ବ୍ୟକ୍ତି ସ୍ୱାଭାବିକରେ ସୁଖା ଅବସ୍ଥାନ କରି ପାରିବ ? । ୧୪,୧୫ ।

ସୁଗନ୍ଧ ଦ୍ରବ୍ୟ ପୁଷ୍ପମାଳ
ଭୂଷଣ ହୋଇଲ ମହୀପାଳ
ଖଞ୍ଜିଣ ନାନା ଆଭରଣ
ସ୍ୱକାମ ଭୋଗେ ନୃପରାଣ
ଇଚ୍ଛଇ ପତ୍ନୀର ସଙ୍ଗତ
ଅନଙ୍ଗପୀଡ଼ାରେ ନୃପତ
ପ୍ରବେଶ ଅନ୍ତଃପୁରେ ଯାଇ
ପତ୍ନୀବିଷୟ ମନେ ଧ୍ୟାୟି
ସକଳ ପୁରେ ସେ ରାଜନ
ପତ୍ନୀକି ଜୋଡ଼ଇ ଉସ୍ତନ । ୧୧-୧୩
ନ ପାଇ ସେ ନିଜ ଯୁବତୀ
ସଖୀଙ୍କୁ ରାଇ ପଚାରନ୍ତି
ବିଷାଦେ ପୁଚ୍ଛଇ ରାଜନ
ଶୁଣ ହୋ ଏ ମୋର ବଚନ

ମୋ ପ୍ରାଣସଖୀ ଛନ୍ତି କାହିଁ
କହି ସନ୍ତୋଷ କର ଦେହି
ସେ ଅର୍ଦ୍ଧ ଆତ୍ମାଟି ମୋହର
ଅର୍ଦ୍ଧକେ କେ ଧରେ ଶରୀର
ସଦନେ ଅଛନ୍ତି ନା ଭଲେ
ସଖୀଗଣଙ୍କ ସଙ୍ଗ ମେଳେ
ତୁମ୍ଭେ ଯେ ତାଙ୍କ ଅନୁଚର
କହ କୁଶଳ ତାହାଙ୍କର । ୧୪ ।
ଏମନ୍ତ ବିହ୍ୱଳ ରାଜନ
ଅନ୍ୟୋନ୍ୟେ କହଇ ବଚନ
ଶୁଣ ଗୋ ସଖିଗଣ ମୋର
ଏ ଗୃହାଶ୍ରମ ଯେ ବେଭାର

ପତ୍ନୀ ନ ଥିଲେ ନ ଶୋଭନ୍ତି
ଏ ରାଜସମ୍ପଦ ବହୁତ
ସେ ଗୃହେ ନାହିଁ ଯେବେ ମାତା
ପୁତ୍ରବତୀ ପତିବ୍ରତା
ସେ ଗୃହପତି ଜୀବହୀନ
ସୁଖେ ତା କାହିଁ ପ୍ରୟୋଜନ
ଯେସନେ ଚକ୍ରହୀନେ ରଥ
ବସିଲେ କାହିଁ ସୁଖ ଜାତ
ତେସନେ ଗୃହିଣୀ ବିହୀନେ
ଗୃହସ୍ଥ ନ ଶୋହେ ସଦନେ
ଯେସନେ ପ୍ରାଣହୀନେ ଦେହ
ତା ଗୃହ ତେହ୍ନେ ନ ଶୋଭଇ । ୧୫

କ୍ୱ ବର୍ତ୍ତତେ ସା ଲଲନା ମଜ୍ଜନ୍ତଂ ବ୍ୟସନାର୍ଣ୍ଣବେ ।
ଯା ମାମୁଦ୍ଧରତେ ପ୍ରଜ୍ଞାଂ ଦୀପୟନ୍ତୀ ପଦେ ପଦେ । ୧୬ ।

ରାମା ଊଚୁଃ ।

ନରନାଥ ନ ଜାନୀମ ସ୍ତ୍ୱତ୍ପ୍ରିୟା ଯଦ୍‌ବ୍ୟବସ୍ୟତ ।
ଭୂତଲେ ନିରବସ୍ତାରେ ଶୟାନାଂ ପଶ୍ୟ ଶତ୍ରୁହନ୍ । ୧୭ ।

ଶ୍ରୀନାରଦ ଉବାଚ ।

ପୁରଞ୍ଜନଃ ସ୍ୱମହିଷୀଂ ନିରୀକ୍ଷ୍ୟାବଧୁତାଂ ଭୁବି ।
ତତ୍‌ସଙ୍ଗୋନ୍ମଥିତଜ୍ଞାନୋ ବୈକ୍ଲବ୍ୟଂ ପରମଂ ଯଯୌ । ୧୮ ।
ସାନ୍ତ୍ୱୟନ୍ ଶ୍ଲକ୍ଷ୍ଣୟା ବାଚା ହୃଦୟେନ ବିଦୂୟତା ।
ପ୍ରେୟସ୍ୟାଃ ସ୍ନେହସଂରମ୍ଭଲିଙ୍ଗମାତ୍ମନି ନାଧ୍ୟଗାତ୍ । ୧୯ ।

---

ମୁଁ ଦୁଃଖସାଗରରେ ମଗ୍ନ ହେଲେ ମୋତେ ପ୍ରତିପଦରେ ଯେ ଉଦ୍ଧାର କରିଥାନ୍ତି, ଯେ ମୋର ପ୍ରଜ୍ଞାକୁ ସମୁଜ୍ଜ୍ୱଳ କରିଥାନ୍ତି, ସେହି ରମଣୀ କେଉଁଠାରେ ଅବସ୍ଥାନ କରୁଅଛନ୍ତି ? । ୧୬ ।

ରମଣୀଗଣ କହିଲେ :—

"ହେ ନରନାଥ ! ଆପଣଙ୍କ ପ୍ରେୟସୀ କଅଣ କରିବାକୁ ଚାହାନ୍ତି ତାହା ଆମ୍ଭେମାନେ ଅବଗତ ନୋହୁଁ । ହେ ଅରିଦମ ! ଏଇ ଦେଖନ୍ତୁ ସେ ଅନାବୃତ ଭୂତଳରେ ଶୟାନ ହୋଇ ରହିଅଛନ୍ତି" ।୧୭।

ଶ୍ରୀନାରଦ କହିଲେ :—

"ତହୁଁ ପୁରଞ୍ଜନ ସ୍ୱୀୟ ଭାର୍ଯ୍ୟାଙ୍କୁ ଦେହ ପ୍ରତି ଅନାଦର ଯୁକ୍ତ ହୋଇ ଭୂତଳରେ ପତିତା ହୋଇଥିବାର ଦେଖିଲେ ଏବଂ ପତ୍ନୀଙ୍କ ସହିତ ମିଳିତ ହେବା ଲାଗି ବ୍ୟାକୁଳ ହୋଇ ପଡ଼ିଲେ । ୧୮ ।

ସେ ଦୁଃଖ ପୂର୍ଣ୍ଣ ହୃଦୟରେ ମନୋଜ୍ଞ ସୁମଧୁର ବଚନରେ ପ୍ରେୟସୀଙ୍କୁ ସାନ୍ତ୍ୱନା ଦେବାକୁ ଲାଗିଲେ କିନ୍ତୁ ତାହାଙ୍କର ପ୍ରଣୟ କୋପର କୌଣସି ଲକ୍ଷଣ ମଧ୍ୟ ବୁଝିପାରିଲେ ନାହିଁ । ୧୯ ।

---

କହ ଗୋ କାହିଁ ସୁଲକ୍ଷଣୀ
ସେ ମୋର ପ୍ରାଣର ଘରଣୀ
ତା ବିନୁ ନ ସ୍ଫୁରଇ ଜ୍ଞାନ
କହ ଗୋ ରଖ ମୋ ଜୀବନ
ବୁଡ଼ଇ ମୁଁ ଦୁଃଖ ସାଗରେ
ଉଦ୍ଧରି ରଖ ପ୍ରାଣ ଭରିଲି ।୧୬।
ତା ଶୁଣି ସଖୀଗଣେ ଭୟେ
ବୋଲନ୍ତି ଶୁଣ ମହାଶୟେ
ଆମ୍ଭେ ତା ନ ଜାଣୁ କପାଇଁ
ଭୂମିଶଯ୍ୟାରେ ଛନ୍ତି ଶୋଇ

ଦେଖିଲେ ଦେଖ ମହାଶୟେ
ଆମ୍ଭେ ନ ଜାଣୁଁ ଅଭିପ୍ରାୟେ
ତକ୍ଷଣେ ସତ୍ୱରେ ରାଜନ
ରାଣୀଙ୍କି କଲା ଆଲିଙ୍ଗନ
ଭୂମିରୁ କୋଳରେ ବସାଇ
ଅନେକ ଚାଟୁ ବାକ୍ୟ କହି
ସେ ନାରୀ ଦୁଃଖ ବିମୋଚନେ
କହେ କାକୁସ୍ଥ ଭୟଚିତ୍ତନେ
ହେ ସଖି ! ମୁଁ ଯେ ଅପରାଧୀ
ତୋ ସଙ୍ଗ ତେଜି ମୁଁ ବୁଲୁଛି

ମୃଗୟା ଛଳେ ବନେ ଗଲି
ଏଣୁ ଦୁଃଖିତ ତୋତେ କଲି
ତୁ କ୍ଷମା ନ କଲେ ସୁନ୍ଦରୀ
ମୁଁ ପ୍ରାଣ ନ ପାରିବି ଧରି
ପତିବଚନୟ ବାକ୍ୟ ଶୁଣି
ସେ ମାନ ନ ତେଜେ ତରୁଣୀ
ଅନେକ ବିନୟ ବଚନେ
ଚରଣେ ପଡ଼ିଲା ତକ୍ଷଣେ
ଚରଣ ଧରି ତାର ରାୟେ
ଅତି ବିଭ୍ରମ ଶୋକେ କହେ

ଅନୁନୟେଽଥ ଶନକୈର୍ବୀରୋଽନୁନୟକୋବଦଃ ।
ପସ୍ପର୍ଶ ପାଦଯୁଗଲମାହ ଚୋତ୍ସଙ୍ଗଲାଳିତାମ୍ । ୨୦ ।

ଶ୍ରୀପୁରଞ୍ଜନ ଉବାଚ ।

ନୂନଂ ତ୍ୱକୃତପୁଣ୍ୟାସ୍ତେ ଭୃତ୍ୟା ଯେଷ୍ୱୀଶ୍ୱରାଃ ଶୁଭେ ।
କୃତାଗଃ ସ୍ୱାତ୍ମସାତ୍ କୃତ୍ୱା ଶିକ୍ଷାଦଣ୍ଡଂ ନ ଯୁଞ୍ଜତେ । ୨୧ ।
ପରମୋଽନୁଗ୍ରହୋ ଦଣ୍ଡୋ ଭୃତ୍ୟେଷୁ ପ୍ରଭୁଣାର୍ପିତଃ ।
ବାଲୋ ନ ବେଦ ତତ୍ ତନ୍ୱି ବନ୍ଧୁକୃତ୍ୟମମର୍ଷଣଃ । ୨୨ ।
ସା ତ୍ୱଂ ମୁଖଂ ସୁଦତି ସୁଭ୍ର୍ୱନୁରାଗଭାରବ୍ରୀଡ଼ାବିଲମ୍ବବିଲସଦ୍ଧସିତାବଲୋକମ୍ ।
ନୀଲାଲକାଲିଭିରୁପସ୍କୃତମୁନ୍ନସଂ ନଃ ସ୍ୱାନାଂ ପ୍ରଦର୍ଶୟ ମନସ୍ୱିନି ବଲ୍ଗୁବାକ୍ୟମ୍ ।୨୩।

---

ଅନନ୍ତର ଅନୁନୟ ନିପୁଣ ହୋଇ ରାଜା ରାଣୀଙ୍କୁ ନାନାପ୍ରକାରେ ଅନୁନୟ କରିବାକୁ ଲାଗିଲେ ସେ ରାଣୀଙ୍କର ପଦଦ୍ୱୟ ସ୍ପର୍ଶକରି ତାହାଙ୍କୁ କୋଡ଼କୁ ନେଇ ଆଦର କରିବାକୁ ଲାଗିଲେ । ୨୦ ।

ଶ୍ରୀପୁରଞ୍ଜନ କହିଲେ :— "ହେ କଲ୍ୟାଣି ! ପ୍ରଭୁମାନେ ଅପରାଧୀ ଭୃତ୍ୟଙ୍କୁ ଆପଣାର ମନେକରି ଶିକ୍ଷାଦାନ ନିମିତ୍ତ ଦଣ୍ଡ ଦେଇ ନ ଥାନ୍ତି, ହେଲେ ସେହି ଭୃତ୍ୟଗଣ ସୁକୃତହୀନ । ୨୧ ।

ହେ କୃଶାଙ୍ଗି ! ପ୍ରଭୁ ଭୃତ୍ୟ ପ୍ରତି ଯେପରି ଦଣ୍ଡବିଧାନ କରନ୍ତି, ହେଲେହେଁ ତାହା ପ୍ରଭୁର ଭୃତ୍ୟପ୍ରତି ପରମ ଅନୁଗ୍ରହ, ସେଥିରେ ଯେ କ୍ରୁଦ୍ଧ ହୁଏ, ସେ ଅତ୍ୟନ୍ତ ଅଜ୍ଞ, ସେ ବନ୍ଧୁର ଉପକାର ଅବଗତ ନୁହେଁ । ୨୨ ।

ହେ ସୁଦର୍ଶନେ ! ହେ ମନସ୍ୱିନି ! ହେ ସୁଭ୍ରୂ ! ତୋହର ସେହି ସୁନ୍ଦର ଭ୍ରୂଯୁକ୍ତ ଅନୁରାଗ ଉତ୍ପନ୍ନ ଲଜ୍ଜା ହେତୁ ବିଳମ୍ବରେ ପ୍ରକାଶମାନ ହାସ୍ୟାଲୋକରେ ସମୁଦ୍ଭାସିତ ନୀଳବର୍ଣ୍ଣ ଚୂର୍ଣ୍ଣ କୁନ୍ତଳ ବିମଣ୍ଡିତ ମନୋଜ୍ଞ ବାକ୍ୟଯୁକ୍ତ ମୁଖକୁ ତୁମ୍ଭର ନିଜଜନଙ୍କୁ ଦେଖାଅ । ୨୩ ।

---

ହେ ସଖି ତୋର ଚିନ୍ତାରେ
ମୋ ପ୍ରାଣ ନ ରହେ ଶରୀରେ
ତୁ ହସି ବାକ୍ୟ ଏବେ କହ
ମୋ ପ୍ରାଣ ଛାଡ଼େ ନିଜ ଦେହ
ହେ ପ୍ରିୟରମଣିଶିରୋମଣି
ମୋ କାମଦୁର୍ଗତିତାରିଣୀ
ତୋ ବିନୁ ଅନ୍ୟ କେବା ପାରେ
ଏଦୋଷ କ୍ଷମାକରିବାରେ ।୧୭-୨୦
ଯେ ପୁଣ୍ୟବନ୍ତ ଭୃତ୍ୟଠାରେ
ଦୋଷେ ଦଣ୍ଡନ୍ତି ପ୍ରଭୁ ତାରେ
ଦୋଷାନୁକ୍ରମେ ପାଇ ଦଣ୍ଡ
ତା ଅପରାଧ ହୋଏ ଖଣ୍ଡ

ଯେ ସ୍ୱାମୀ ଭୃତ୍ୟେ ନ ଦଣ୍ଡନ୍ତି
କପଟଭାବ ତାଙ୍କ ମତି
ସେ ନିତ୍ୟେ ଭୟ ଦୁଃଖେ ଦହେ
ସେବକଭାବ କାହିଁ ରହେ
ସ୍ୱାମୀ ସେବକେ ଯେବା ଦଣ୍ଡି
ଥାଅନ୍ତି ଅନୁଗ୍ରହେ ମଣ୍ଡି
ତା ଯେବେ ଭୃତ୍ୟ ନ ବୁଝିଲ
ସେ ମୂଢ଼ ଅଧମ ଅଟଇ
ତାହାର କାହିଁ ଜ୍ଞାନ ବୁଦ୍ଧି
ଚିନ୍ତା କରନ୍ତେ ନିରବଧି

ଯେସନେ ପିତା ଅଭିମାନେ
ବାଳକ ରୋଦେ ଭୟ ମନେ
ସେ ପୁତ୍ର ଦୋଷ ନ ଧରନ୍ତି
ପୁଣ ବାଳକେ ଆଶ୍ୱାସନ୍ତି
ସେ ରୂପେ ମୋର ଅଭିମାନ
ହେସଖି ! କରିବମୋଚନ ।୨୧,୨୨
ମୁଁ ଯେ ତୁମ୍ଭର ନିଜପତି
ମୃଗୟାଛଳେ ଦୁଃଖ ଅତି
ଏବେ ତୁ ତେଜ ଅଭିମାନ
ଆପଣା କରି ମନେ ଘେନ ।୨୩।

ତସ୍ମିନ୍ ଦଧେ ଦମମହଂ ତବ ବୀରପତ୍ନି
ଯୋଽନ୍ୟତ୍ର ଭୂସୁରକୁଲାତ୍ କୃତକିଲ୍‌ବିଷସ୍ତମ୍ ।
ପଶ୍ୟେ ନ ବୀତଭୟମୁନ୍ମୁଦିତଂ ତ୍ରିଲୋକ୍ୟା—
ମନ୍ୟତ୍ର ବୈ ମୁରରିପୋରିତରତ୍ର ଦାସାତ୍ । ୨୪ ।
ବକ୍ତ୍ରଂ ନ ତେ ବିତିଲକଂ ମଳିନଂ ବିହର୍ଷଂ—
ସଂରମ୍ଭଭୀମମବିମୃଷ୍ଟମପେତରାଗମ୍ ।
ପଶ୍ୟେ ସ୍ତନାବପି ଶୁଚୋପହତୌ ସୁଜାତୌ—
ବିମ୍ବାଧରଂ ବିଗତକୁଙ୍କୁମପଙ୍କରାଗମ୍ । ୨୫ ।

---

ହେ ବୀରପତ୍ନି ! ବ୍ରାହ୍ମଣବଂଶଧର ଅବା ବିଷ୍ଣୁ ଦାସ ବ୍ୟତୀତ ଯେଉଁବ୍ୟକ୍ତି ତୁମ୍ଭ ନିକଟରେ ଅପରାଧ କରିଅଛି, ମୁଁ ଅବିଳମ୍ବେ ତାହାର ଯୋଗ୍ୟ ଦଣ୍ଡ ବିଧାନ କରିବି ! ତ୍ରିଭୁବନମଧ୍ୟରେ ବା ବାହାରେ ଏପରି କେହି ନାହିଁ, ଯେ ତୁମ୍ଭପ୍ରତି ଅନ୍ୟାୟ ଆଚରଣ କରି ନିଃଶଙ୍କ ଚିତ୍ତରେ ବା ଆନନ୍ଦରେ ଅବସ୍ଥାନ କରିପାରେ । ୨୪ ।

ହେ ପ୍ରିୟେ ! ଏଥିପୂର୍ବେ ମୁଁ ତୁମ୍ଭର ଏପରି ତିଳକ ଶୂନ୍ୟ ହର୍ଷବିରହିତ କ୍ରୋଧଭୀଷଣ ଅନୁଜ୍ଜ୍ୱଳ ସ୍ନେହରସଶୂନ୍ୟ ମୁଖ କେବେ ଦେଖି ନ ଥିଲି । ତୁମ୍ଭର ଅତ୍ୟନ୍ତ ସୁନ୍ଦର ସ୍ତନଦ୍ୱୟ, ଶୋକାଶ୍ରୁସିକ୍ତହେବାର କେବେ ଦେଖି ନାହିଁ । ତୁମ୍ଭର ବିମ୍ବାଧରକୁ ମଧ୍ୟ କୁଙ୍କୁମପଙ୍କ ତୁଲ୍ୟ ତାମ୍ବୁଳରାଗ ଶୂନ୍ୟ ଦେଖି ନାହିଁ ।୨୫।

---

ହେ ନାରୀବର ଶୁଣ ଏବେ
ତୋ ଅପରାଧୀ ଜନ ଯେବେ
ପଳାଇ ଏ ତିନି ଭୁବନେ
ଯେବେ ପଶିବ ଭୟ ଛଳେ
ତାରେ ଶରଣ ରଖେ କେବା
ତୋ ବିନୁ ଅନ୍ୟ ସୁରଦେବା
ଯେ ବିପ୍ର-ବଇଷ୍ଣବ-କୁଳେ
ଦଣ୍ଡ ନ ସହେ କେବା କେଳେ
ଏ ବିନେ ଅନ୍ୟ ସୁର ନର
ମୃତ୍ୟୁ ଜୀବନ ତାହାଙ୍କର
ଅପରେ ଚରାଚର ଯେତେ
ଚେ ଅଛ ମୋ ଭୟ ରହିତେ ।୨୪।

ଏବେ ମୋ ଚିନ୍ତା ତାପ ଜ୍ୱର
ତୋହର କଟାକ୍ଷେ ଦୂର କର
ହେ ସଖି ! ତୁହର ଆନନ
ତିଳେ ନ ଦେଖି ମୋର ମନ
ମୋର ଜୀବନ ବହୁ ଦୁଃଖୀ
ସ୍ନାନ ଭୋଜନ ଦୂରେ ସେଖି
ସୁନ୍ଦର ତନୁ ତୋ ଧୂସର
ଶୟନ କରୁ ତୁ ଭୂମିର
କେ କାମୀ ଧରିବ ଜୀବନ
ଦେଖି ତୋ ବିବର୍ଣ୍ଣ ବଦନ
ସୁନ୍ଦର ସୁକାନ୍ତି ତୋ ସ୍ତନ
ଦେଖି ଟଳିବେ ସୁର ଦେବା

ତୋହର ପଙ୍କଜାଭ୍ରଣାଧର
ଅଶେଷ ଭୁବନ ସୁନ୍ଦର
ସେ ମୁଖେ ହସି ମୃଦୁ ବାଣୀ
କହ ତୁ ରସ ପ୍ରାଣମଣି
ମୁଁ ଯେ ତୁମ୍ଭର ପ୍ରାଣସଖା
ମୃଗୟାଶ୍ରମେ ଭ୍ରମି ଏକା
ତୁ ଶାନ୍ତ କର ଗୋ ମୃଗାକ୍ଷି
ମୋ ପ୍ରାଣ ଶରୀରୁଁ ଯାଉଛି
ବିପଦ କାଳେ ଯେ ଯୁବତୀ
ଯେ ନିଜ ସ୍ୱାମୀ ନ ସେବନ୍ତି

ତନ୍ମେ ପ୍ରସୀଦ ସୁହୃଦଃ କୃତକିଲ୍‌ବିଷସ୍ୟ ସ୍ୱୈରଂଗତସ୍ୟ ମୃଗୟାଂ ବ୍ୟସନାତୁରସ୍ୟ ।
କା ଦେବରଂ ବଶଗତଂ କୁସୁମାସ୍ତ୍ରବେଗବିସ୍ରସ୍ତପୌଂସ୍ନମୁଶତୀ ନ ଭଜେତ କୃତ୍ୟେ ।୨୭।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ
ପୁରଞ୍ଜନୋପାଖ୍ୟାନେ ଷଡ଼ୁବିଂଶୋଽଧ୍ୟାୟଃ । ୨୬ ।

---

ଅତଏବ ଯଦି ସ୍ୱେଚ୍ଛାସ୍ୱର୍ଗ ଭାବରେ ମୁଁ ମୃଗୟାବ୍ୟସନ ଆସକ୍ତ ହୋଇ ତୁମ୍ଭ ନିକଟରେ ଅପରାଧ କରିଥାଏ, ତେବେ ତୁମ୍ଭେ ଆତ୍ମୀୟ ଜ୍ଞାନରେ ମୋର ସେ ଅପରାଧ ମାର୍ଜନା କର, କ୍ଷମା ଦିଅ, ମୋ ପ୍ରତି ପ୍ରସନ୍ନ ହୁଅ । ଅନଙ୍ଗବାଣରେ ଯେଉଁ ସ୍ୱାମୀର ଧୈର୍ଯ୍ୟ ଚ୍ୟୁତ ହୋଇଅଛି, ସେହି ସ୍ୱାମୀ ପ୍ରିୟତମାର ଅଭୀଷ୍ଟ ସାଧନରେ ଇଚ୍ଛୁକ । ଏପରି ବଶୀଭୂତ ସ୍ୱାମୀକୁ ରତି ପ୍ରାର୍ଥନା କେଉଁ ସ୍ତ୍ରୀ ଉପଯୁକ୍ତ ସମୟ ଓ ଉପଯୁକ୍ତ ସ୍ଥାନରେ ପ୍ରାପ୍ତହୋଇ ଭଜନା ନ କରେ ? । ୨୭ ।

---

ସେ ନାରୀ ଜ୍ଞାନହୀନ ମତ
ଜନାପବାଦେ ସେ ମରନ୍ତି
ସେ ସ୍ତ୍ରୀଗୁଡ଼ିକେ ଲଜ୍ଜା ପାଇ
ଇହଲୋକେ ତାର ନାହିଁ ।୨୫,୨୬
ଅନେକ ପ୍ରବୋଧ ବଚନ
କହିଣ ତୋଷିଲେ ରାଜନ
ସେ ରାଣୀ ମାନ ଦୂର କଲେ
ସନ୍ତୋଷେ ସହିତରେ ଉଠିଲେ

ଏମନ୍ତେ ଶୁଣ ହେ ବିଦୁର
ସେ ପୁରଞ୍ଜନ ନୃପବର
ତା ବଶେ ହୋଇଲେ ଆତୁର
ବିଭ୍ରମ ହେଲା ତାର ଚିତ୍ତ
ଏ ସର୍ବ ଅନୁଭବ ବାଣୀ
ନାରଦ ନୃପରେ ବଖାଣି
କହିଲେ ବିପ୍ର ଜଗନ୍ନାଥ
ଅମୃତ ଜ୍ଞାନମୟ ଗୀତ

ଶ୍ରବଣେ ହରଇ ପ୍ରମାଦ
ନ ଲାଗେ ଗୃହବନ୍ଧ ଦୃଢ଼
ବିବେକ ହୋଏ ବୁଦ୍ଧିମନ୍ତ
କୃଷ୍ଣ ବିଷୟେ ବଢ଼େ ମତି
ଏ ସାଧୁ ଜନଙ୍କ ବେଭାର
ସଂସାର ବନ୍ଧ ହୋଏ ଦୂର
ଚତୁର୍ଥସ୍କନ୍ଧେ ଭାଗବତ
ଷଡ଼୍ବିଂଶ ଅଧ୍ୟାୟ ଚରିତ ।



## ସପ୍ତବିଂଶ ଅଧ୍ୟାୟ ।

ସପ୍ତବିଂଶେ ପ୍ରିୟାପୁତ୍ରାଦ୍ୟାସକ୍ତ୍ୟା ବିସ୍ମୃତାତ୍ମନଃ ।
କାଲକନ୍ୟାଦ୍ୟୁପାଖ୍ୟାନୈର୍ଜରାରୋଗାଦ୍ୟୁଦୀର୍ଯ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀନାରଦ ଉବାଚ ।

ଇତ୍ଥଂ ପୁରଞ୍ଜନଂ ସଧ୍ର୍ୟଗ୍ବଶମାନୀୟ ବିଭ୍ରମୈଃ ।
ପୁରଞ୍ଜନୀ ମହାରାଜ ରେମେ ରମୟତୀ ପତିମ୍ । ୧ ।
ସ ରାଜା ମହିଷୀଂ ରାଜନ୍ ସୁସ୍ନାତାଂ ରୁଚିରାନନାମ୍ ।
କୃତସ୍ୱସ୍ତ୍ୟୟନାଂ ତୃପ୍ତାମଭ୍ୟନନ୍ଦଦୁପାଗତାମ୍ । ୨ ।

---

### ପୁରଞ୍ଜନଙ୍କର ଆତ୍ମବିସ୍ମୃତି ।

ସପ୍ତବିଂଶ ଅଧ୍ୟାୟରେ ରାଜା ପୁରଞ୍ଜନ ସ୍ତ୍ରୀ ପୁତ୍ରାଦଙ୍କର ଆସକ୍ତିରେ ପଡ଼ି କାଳକ୍ରମରେ ଜରାରୋଗଗ୍ରସ୍ତ ହେବା ବିଷୟ ବର୍ଣ୍ଣିତ ହୋଇଅଛି । ● ।

ଶ୍ରୀନାରଦ କହିଲେ :—

ହେ ମହାରାଜ ! ପୁରଞ୍ଜନ ମହିଷୀ ଏହିପରି ପତିପୁରଞ୍ଜନଙ୍କୁ ବିଳାସ ଦ୍ୱାରା ସମ୍ୟକ୍‌ରୂପେ ବଶୀଭୂତ କରି ପ୍ରୀତି ସାଧନ କଲେ, ସ୍ୱୟଂ ମଧ୍ୟ ପ୍ରୀତି ଅନୁଭବ କରିଥିଲେ । ୧ ।

ହେ ରାଜନ୍ ! ରାଜା ପୁରଞ୍ଜନ ସୁସ୍ନାତା, ବିଚିତ୍ରବସନପରିହିତା, ସିନ୍ଦୁରାଦି ମଙ୍ଗଳୋପକରଣ ସଜ୍ଜିତା, ତୃପ୍ତା ( ସମ୍ମୁଖରେ ) ଉପସ୍ଥିତା ପୁରଞ୍ଜନୀଙ୍କୁ ଲାଭକରି ଅଭିନନ୍ଦନ କରିଥିଲେ । ୨ ।

---

ଦାରା ତନୟନ ସଙ୍ଗେ ପଡ଼ି, ସେ ପୁରଞ୍ଜନ ପଥ ଛାଡ଼ି । କାଳର କନ୍ୟା ଜରାପାଶେ, ମିଳିଲେ ବୋଲି ସପ୍ତବିଂଶେ

ଶ୍ରୀ ନାରଦ ଉବାଚ—

କହନ୍ତି ବ୍ରହ୍ମାଙ୍କ ନନ୍ଦନ
ତଦନ୍ତେ ସେ ଯେ ପୁରଞ୍ଜନ
ଅନେକ ମତେ ପ୍ରବୋଧିଲା
ରାଣୀର ମାନ ଦୂର କଲା
ପ୍ରସନ୍ନବଦନେ ସୁନ୍ଦରୀ
ସ୍ନାନ ମାର୍ଜ୍ଜନ ବେଗେ କରି
କୁଙ୍କୁମ କସ୍ତୁରୀ ଲଗାଇ
ସୁବାସ ଜଳେ ଅଙ୍ଗ ଧୋଇ
କଜ୍ଜଳ ସିନ୍ଦୂର ମଣ୍ଡିଲା
ସୁଦିବ୍ୟ ବସନ ପିନ୍ଧିଲା
ସୁଗନ୍ଧ ପୁଷ୍ପମାଳ ଦେଇ
କବରୀ ବାନ୍ଧିଲା ସଜାଇ
ଖଞ୍ଜିଣ ନାନା ଅଳଙ୍କାର
ମୁକୁରେ ନିରେଖି ଶରୀର
ଭୋଜନ କରି ଷଡ଼ ରସେ
ତାମ୍ବୁଳ ଭୁଞ୍ଜିଲା ହରଷେ
ନୃପତିସମୀପେ ମିଳିଲା
ହସି ପଲଙ୍କେ ବିଜେ କଲା ।୧,୨।

ତୟୋପଗୂଢ଼ଃ ପରିରବ୍ଧକନ୍ଧରୋ ରହୋଽନୁମନ୍ତ୍ରୈରପକୃଷ୍ଟଚେତନଃ ।
ନ କାଲରଂହୋ ବୁବୁଧେ ଦୁରତ୍ୟୟଂ ଦିବା ନିଶେତି ପ୍ରମଦାପରିଗ୍ରହଃ । ୩ ।
ଶୟାନ ଉନ୍ନଦ୍ଧମଦୋ ମହାମନା ମହାର୍ହତଳ୍ପେ ମହିଷୀଭୁଜୋପଧିଃ ।
ତାମେବ ବୀରୋ ମନୁତେ ପରଂ ଯତସ୍ତମୋଽଭିଭୂତୋ ନ ନିଜଂ ପରଞ୍ଚ ଯତ୍ ।୪।
ତୟୈବଂ ରମମାଣସ୍ୟ କାମକଶ୍ମଳଚେତସଃ ।
କ୍ଷଣାର୍ଦ୍ଧମିବ ରାଜେନ୍ଦ୍ର ବ୍ୟତିକ୍ରାନ୍ତଂ ନବଂ ବୟଃ । ୫ ।
ତସ୍ୟାମଜନୟତ୍ ପୁତ୍ରାନ୍ ପୁରଞ୍ଜନ୍ୟାଂ ପୁରଞ୍ଜନଃ ।
ଶତାନ୍ୟେକାଦଶ ବିରାଡ଼ାୟୁଷୋଽର୍ଦ୍ଧମଥାତ୍ୟଗାତ୍ । ୬ ।
ଦୁହିତୃର୍ଦଶୋତ୍ତରଶତଂ ପିତୃମାତୃଯଶସ୍କରୀ ।
ଶୀଳୌଦାର୍ଯ୍ୟଗୁଣୋପେତାଃ ପୌରଞ୍ଜନ୍ୟଃ ପ୍ରଜାପତେ । ୭ ।

ମହିଷୀ ପୁରଞ୍ଜନଙ୍କୁ ଆଲିଙ୍ଗନ କଲେ, ସେ ମଧ୍ୟ ମହିଷୀଙ୍କୁ ଆଲିଙ୍ଗନ କରିଥିଲେ । ଉଭୟ ନିଭୃତରେ ବହୁପ୍ରକାର ଗୁହ୍ୟ ପ୍ରଣୟାଳାପ କରିଥିଲେ, ଏଥିରେ ତାହାଙ୍କର ବିବେକ ଶୂନ୍ୟ ହୋଇ ଯାଉଥିଲା, ଏହିପରି ନାରୀସଙ୍ଗ କରି ମୁହୂର୍ତ୍ତେ ମୁହୂର୍ତ୍ତେ ତାଙ୍କର ପରମାୟୁ କ୍ଷୟ ହେବାକୁ ଲାଗିଲା । ତାହା ସେ ଜାଣି ପାରିଲେ ନାହିଁ । ୩ ।

ସେହି ମହାମନା ନରପତିଙ୍କର ଆସକ୍ତି ବୃଦ୍ଧି ହେବାରୁ ସେ ମହାମୂଲ୍ୟ ଶଯ୍ୟାରେ ଶାୟିତ ହୋଇ ମହିଷୀଙ୍କ ଭୁଜଲତାକୁ ଉପାଧାନ (ତକିଆ) କରି ସ୍ତ୍ରୀସଙ୍ଗକୁ ପରମପୁରୁଷାର୍ଥ ଜ୍ଞାନ କରିଥିଲେ ଏବଂ ନିଜେ ପରମେଶ୍ୱରଙ୍କୁ ଭୁଲିଯାଇଥିଲେ । ୪ ।

ହେ ରାଜେନ୍ଦ୍ର ! ଏହିପରି କାମମୋହିତ ଚିତ୍ତରେ ସ୍ତ୍ରୀ ସହିତ କ୍ରୀଡ଼ା କରୁ କରୁ ତାଙ୍କର ଯୌବନକାଳ କ୍ଷଣାର୍ଦ୍ଧତୁଲ୍ୟ ଅତିକ୍ରାନ୍ତ ହେଲା । ୫ ।

ରାଣୀ ପୁରଞ୍ଜନୀଙ୍କ ଗର୍ଭରେ ପୁରଞ୍ଜନଙ୍କର ଏଗାରଶ ପୁତ୍ର ଜାତ ହେଲେ, ଏହିପରି ତାଙ୍କର ପରମାୟୁର ଅର୍ଦ୍ଧେକ ଅତୀତ ହେଲା । ୬ ।

ହେ ପ୍ରଜାପତେ ! ତଦନନ୍ତର ରାଜାଙ୍କର ଏକଶତ କନ୍ୟା ଜନ୍ମିଲେ । କନ୍ୟାମାନେ ଶୀଳ ଓ ଔଦାର୍ଯ୍ୟ ଗୁଣରେ ସୁଭୂଷିତା ଓ ପିତାମାତାଙ୍କର ଯଶୋବର୍ଦ୍ଧିନୀହୋଇ ପୌରଞ୍ଜନୀ ନାମରେ ଖ୍ୟାତିଲାଭକରିଥିଲେ ।୭

ସେ କାମବିକାରେ ରାଜନ
ରାଣୀକି କଲା ଆଲିଙ୍ଗନ
ବିବିଧ ସକାମ ବିକାରେ
ହାସ କଟାକ୍ଷ ମନୋହରେ
ଏକାନ୍ତ ରତିରସ ରଙ୍ଗେ
ସେ ପୁରଞ୍ଜନ ରାଣୀ ସଙ୍ଗେ
ରାତ୍ର ଦିବସ ନ ଜାଣିଲା
ଅଜ୍ଞାନେ ମୋହେ ନିମଜ୍ଜିଲା ।୩।
ସେ କାମବେଗେଣ ନୃପତି
ଦୂଷଣ ଭ୍ରମ ହେଲା ଅତି

ଉପାଧି କରି ପତ୍ନୀ କର
ସୁଖେ ଶୋଇଲା ନୃପବର
ପଲଙ୍କେ ବହୁ ନିଦ୍ରା ଗଲା
ସେ କାଳଗତି ନ ଜାଣିଲା
ଅଜ୍ଞାନେ ସ୍ତ୍ରୀଙ୍କ ବଶେ ରତ
ନ ଦେଖିଲା ଜ୍ଞାନମାର୍ଗେ ଚିତ୍ତ । ୪ ।
ନବୀନ ବୟସ ରାଜନ
ନାଶିଲା ଏ ସ୍ତ୍ରୀଙ୍କ ବେଗେଣ

କ୍ଷଣକ ପ୍ରାୟେ ସେ ମଣିଲା
ଏ ଯୁବାକାଳ ବିନାଶିଲା । ୫ ।
ବେଗାନ୍ତେ ପୁରଞ୍ଜନଠାରେ
ଜନ୍ମିଲେ କନ୍ୟା ଯେ କ୍ରମରେ
ଏଗାର ଶତ ଯେ କୁମର
ଜନ୍ମ ଲଭିଲେ ତାହା ଠାରୁ
ଦଶ ଉତ୍ତର କନ୍ୟା ଶତ
ସୁଗୁଣ ଶୀଳେ ହେଲେ ଜାତ ।୬-୭

ସ ପଞ୍ଚାଳପତେଃ ପୁତ୍ରୀଂ ପିତୃବଂଶବିବର୍ଦ୍ଧନୀଂ ।
ଦାରୈଃ ସଂଯୋଜୟାମାସ ଦୁହିତୃଃ ସଦୃଶୈର୍ବରୈଃ ।୮।
ପୁତ୍ରାଣାଞ୍ଚାଭବନ୍ ପୁତ୍ରା ଏକୈକସ୍ୟ ଶତଂ ଶତମ୍ ।
ଯୈ ର୍ବୈ ପୌରଞ୍ଜନୋ ବଂଶଃ ପଞ୍ଚାଳେଷୁ ସମେଧିତଃ ।୯।
ତେଷୁ ତଦ୍ରିକ୍‌ଥହାରେଷୁ ଗୃହକୋଶାନୁ ଜୀବିଷୁ ।
ନିରୂଢ଼େନ ମମତ୍ୱେନ ବିଷୟେଷ୍ୱନ୍ୱବଧ୍ୟତ ।୧୦।
ଈଜେ ଚ କ୍ରତୁଭିର୍ଘୋରୈର୍ଦୀକ୍ଷିତଃ ପଶୁମାରକୈଃ ।
ଦେବାନ୍ ପିତୃନ୍ ଭୂତପତୀନ୍ ନାନାକାମୋ ଯଥା ଭବାନ୍ ।୧୧।
ଯୁକ୍ତେଷ୍ୱେବଂ ପ୍ରମତ୍ତସ୍ୟ କୁଟୁମ୍ବାସକ୍ତଚେତସଃ ।
ଆସସାଦ ସ ବୈ କାଲୋ ଯୋଽପ୍ରିୟଃ ପ୍ରିୟଯୋଷିତାମ୍ ।୧୨।

---

ହେ ପାଞ୍ଚାଳପତେ ! ପୁରଞ୍ଜନ ପୁତ୍ରମାନଙ୍କୁ ଉପଯୁକ୍ତ ପତ୍ନୀସହ ବିବାହ କରାଇଥିଲେ ଏବଂ କନ୍ୟାମାନଙ୍କୁ ଉପଯୁକ୍ତ ବର ହସ୍ତରେ ପ୍ରଦାନ କରିଥିଲେ ।୮।

ପ୍ରତ୍ୟେକ ପୁତ୍ରଙ୍କର ଶତପୁତ୍ର ଜନ୍ମିଲେ, ପାଞ୍ଚାଳଦେଶରେ ଏହିପରି ପୁରଞ୍ଜନ ବଂଶ ବର୍ଦ୍ଧିତ ହୋଇଥିଲା ।୯।

ପୁତ୍ର, ପୌତ୍ର, ଗୃହ, ଭଣ୍ଡାର ଓ ଭୃତ୍ୟବର୍ଗଙ୍କ ପ୍ରତି ପୁରଞ୍ଜନଙ୍କର ପ୍ରଗାଢ଼ ମମତା ଜନ୍ମିଲା ଏବଂ ଏହିପରି ପ୍ରଗାଢ଼ ମମତା ଦ୍ୱାରା ସେ ବିଷୟ ପାଶରେ ଆବଦ୍ଧ ହୋଇଥିଲେ । ଅବଶେଷରେ ସେ ପଶୁଘାତୀ ଯଜ୍ଞରେ ଦୀକ୍ଷିତହୋଇ ବିବିଧ କାମନାରେ ଦେବତା ପିତୃ, ଓ ଭୂତପତିଗଣଙ୍କୁ ଅର୍ଚ୍ଚନା କରିବାକୁ ଲାଗିଲେ ।୧୦,୧୧।

ଏହିପରି କୁଟୁମ୍ବାସକ୍ତ ଚିତ୍ତ ପୁରଞ୍ଜନ ଆତ୍ମହିତ ସାଧନରେ ଉଦାସୀନ ହୋଇ ରହିଥିବା ସମୟରେ କାମିନୀମୁଗ୍‌ଧ ବ୍ୟକ୍ତି ପକ୍ଷରେ ଅପ୍ରିୟକାଳ ଆସି ନିକଟବର୍ତ୍ତୀ ହେଲା ।୧୨।

---

ସେ କନ୍ୟା ପୁତ୍ରେ ବିଭା ନେଇ
ସତ୍ପରେ କଲା ନୃପସାଇଁ
ବଂଶ ନିବନ୍ଧେ ଜନମିଲା
ଅର୍ଦ୍ଧେ ଆୟୁଷ ତାର ଗଲା
ପୁତ୍ର କନ୍ୟାଙ୍କ ପୁତ୍ର ହୋଏ
ପାଞ୍ଚାଳେ ବର୍ଦ୍ଧିଲ୍ଲ ସେ ସ୍ୱୟେ ।୮,୯
ସେ ସର୍ବେ ଘରର ଭଣ୍ଡାର
ଲୁଣ୍ଠଣ କଲେ ସେ ବିହାର

ବିଷୟେ ମମତା ବଢ଼ାଇ
ବନ୍ଦୀ ହୋଇଲା ନୃପସାଇଁ ।୧୦।
ତଦନ୍ତେ ଘୋର ଯଜ୍ଞ କଲା
ଅନେକ ପଶୁ ବଧ କଲା
ଦେବତା ପିତୃ ଭୂତପତି
ସେ ଯଜ୍ଞେ ପୂଜିଲା ନୃପତି
ଯେ ରୂପେ ତୁମ୍ଭେ ହେ ରାଜନ
କରୁଛ ଘୋର ଯଜ୍ଞମାନ

ସେ ରୂପେ ପୁରଞ୍ଜନ ସ୍ୱୟେ
ଅନେକ ପଶୁ କଲା କ୍ଷୟେ ।୧୧।
ବିଷୟ ଜଡ଼େ ଉନମତ୍ତ
କୁଟୁମ୍ବେ ବନ୍ଦୀ କଲା ଚିତ୍ତ
ତଦନ୍ତେ ପ୍ରବେଶିଲା କାଳ
ଯେ ହରେ ପ୍ରାଣି ଆୟୁବଳ ।୧୨।

ଚଣ୍ଡବେଗ ଇତି ଖ୍ୟାତୋ ଗନ୍ଧର୍ବାଧିପତିର୍ନୃପ ।
ଗନ୍ଧର୍ବାସ୍ତସ୍ୟ ବଳିନଃ ଷଷ୍ଟ୍ୟୁତ୍ତରଶତତ୍ରୟମ୍ । ୧୩ ।
ଗନ୍ଧର୍ବ୍ୟସ୍ତାଦୃଶୀରସ୍ୟ ମୈଥୁନ୍ୟଶ୍ଚ ସିତାସିତାଃ ।
ପରିବୃତ୍ତ୍ୟା ବିଲୁମ୍ପନ୍ତି ସର୍ବକାମବିନିର୍ମିତାମ୍ । ୧୪ ।
ତେ ଚଣ୍ଡବେଗାନୁଚରାଃ ପୁରଞ୍ଜନପୁରଂ ଯଦା ।
ହର୍ତ୍ତୁମାରେଭିରେ ତତ୍ର ପ୍ରତ୍ୟଷେଧତ୍ ପ୍ରଜାଗରଃ । ୧୫ ।
ସ ସପ୍ତଭିଃ ଶତୈରେକୋ ବିଂଶତ୍ୟା ଚ ଶତଂ ସମାଃ ।
ପୁରଞ୍ଜନପୁରାଧ୍ୟକ୍ଷୋ ଗନ୍ଧର୍ବୈର୍ଯୁଯୁଧେ ବଳୀ । ୧୬ ।
କ୍ଷୀୟମାଣେ ସ୍ୱ ସମ୍ବନ୍ଧ ଏକସ୍ମିନ୍ ବହୁଭିର୍ଯୁଧା ।
ଚିନ୍ତାଂ ପରାଂ ଜଗାମାର୍ତ୍ତଃ ସରାଷ୍ଟ୍ରପୁରବାନ୍ଧବଃ । ୧୭ ।

ସେହିକାଳ ଚଣ୍ଡବେଗ ନାମରେ ବିଖ୍ୟାତ ଏବଂ ଗନ୍ଧର୍ବଗଣଙ୍କର ଅଧିପତି, ତାହାଙ୍କର ତିନିଶହ ଷାଠିଏ ଗନ୍ଧର୍ବ ଓ ତିନିଶହ ଷାଠିଏ ଗନ୍ଧର୍ବୀ ଥିଲେ । ୧୩ ।

ସେମାନେ ଶୁକ୍ଳ ଓ କୃଷ୍ଣ ବର୍ଣ୍ଣ, ସେମାନେ ମିଥୁନୀ ଭୂତହୋଇ ପର୍ଯ୍ୟାୟକ୍ରମେ ଭ୍ରମଣ କରି କାମ ନିର୍ମିତ ପୁରୀକୁ ଲୁଣ୍ଠନ କରୁଥାନ୍ତି । ୧୪ ।

ଚଣ୍ଡବେଗଙ୍କର ଅନୁଚର ଏହି ଗନ୍ଧର୍ବମାନେ ଯେତେବେଳେ ପୁରଞ୍ଜନପୁରୀ ଲୁଣ୍ଠନ କରିବାକୁ ଆରମ୍ଭ କଲେ; ସେତେବେଳେ ପ୍ରଜାମାନେ ସେମାନଙ୍କୁ ନିଷେଧ କଲେ । ବଳବାନ୍ ପୁରଞ୍ଜନପୁରୀର ଅଧ୍ୟକ୍ଷ ଏକାକୀ ହେଲେ ମଧ୍ୟ ଏହି ସାତଶହ କୋଡ଼ିଏଜଣ ଗନ୍ଧର୍ବ ଓ ଗନ୍ଧର୍ବୀଙ୍କ ସହିତ ଶହେବର୍ଷ ପର୍ଯ୍ୟନ୍ତ ଯୁଦ୍ଧ କରିଥିଲେ । ୧୫,୧୬ ।

ଏକ ପକ୍ଷରେ ବହୁବ୍ୟକ୍ତି ଓ ଅନ୍ୟପକ୍ଷରେ ଜଣେ ଏପରି ଯୁଦ୍ଧ ହେବାରୁ ପୁରରକ୍ଷକ କ୍ଷୀଣହୋଇ ପଡ଼ିଲେ, ପୁରବାସୀ, ରାଷ୍ଟ୍ରବାସୀ ଏବଂ ବାନ୍ଧବଗଣ ଦୁଃଖିତହୋଇ ଚିନ୍ତାକୁଳ ହୋଇଥିଲେ । ୧୭ ।

ତାହାର ନାମ ଚଣ୍ଡବେଗ
ଗନ୍ଧର୍ବ ରାଜ୍ୟ କରେ ବେଗ
ଗନ୍ଧର୍ବମାନଙ୍କର ପତି
ଅତି ପ୍ରଚଣ୍ଡ ତାର ଗତି
ତ୍ରିଶତ ଷାଠୀ ଯେ ପ୍ରମାଣ
ଗନ୍ଧର୍ବେ ଅତି ବଳବାନ । ୧୩ ।
ମିଥୁନ ଭାବେ କରି ସ୍ଥିତ
ଏତେ ଗନ୍ଧର୍ବୀ ତହିଁ ଥାନ୍ତି

ଗନ୍ଧର୍ବୀ ଗନ୍ଧର୍ବ ପ୍ରବଳ
କେ କୃଷ୍ଣ କେ ଅବା ଶୁକଳ । ୧୪ ।
ଏ ସର୍ବେ ଚଣ୍ଡବେଗଙ୍କର
ଅଟନ୍ତି ତାଙ୍କ ଅନୁଚର
ସେ ଚଣ୍ଡବେଗଆଜ୍ଞା ପାଇ
ବେଢ଼ିଲେ ରାଜାପୁର ଯାଇ
ସେ ପୁରଞ୍ଜନ ଦିବ୍ୟ ପୁରୀ
ଗନ୍ଧର୍ବେ ବଳେ ଲୁଟ କରି

ସେ ନଗ୍ରେ ସେନାପତି ଏକ
ରକ୍ଷଣେ ଥିଲା ସେ ଅଧ୍ୟକ୍ଷ
ତାହାର ନାମ ପ୍ରଜାଗର
ସେ ବେଗେ ମିଳିଲା ଆଗର
ତାହାକୁ ମାରି ଘଉଡ଼ିଲା
ଅନେକ ଘୋର ଯୁଦ୍ଧ କଲା
ସେ ଶତ ସମ୍ବତ୍ସର ନିତ୍ୟେ
ଯୁଝିଲା ଗନ୍ଧର୍ବ ସଙ୍ଗତେ । ୧୫,୧୬ ।

ସ ଏବ ପୂର୍ଯ୍ୟାଂମଧୁଭୁକ୍ ପଞ୍ଚାଳେଷୁ ସ୍ୱପାର୍ଷଦୈଃ ।
ଉପନୀତଂ ବଳଂ ଗୃହ୍ଣନ୍ ସ୍ତ୍ରୀଜିତୋ ନାବଦଦ୍‌ଭୟମ୍ । ୧୮ ।
କାଳସ୍ୟ ଦୁହିତା କାଚିତ୍ ତ୍ରୈଲୋକ୍ୟଂ ବରମିଚ୍ଛତୀମ୍ ।
ପର୍ଯ୍ୟଟନ୍ତୀଂ ନ ବର୍ହିଷ୍ମନ୍ ପ୍ରତ୍ୟନନ୍ଦତ କଶ୍ଚନ । ୧୯ ।
ଦୌର୍ଭାଗ୍ୟେନାତ୍ମନୋ ଲୋକେ ବିଶ୍ରୁତା ଦୁର୍ଭଗେତି ସା ।
ଯା ତୁଷ୍ଟା ରାଜର୍ଷୟେ ତୁ ବୃତାଦାତ୍ ପୂରବେ ବରମ୍ । ୨୦ ।

ହେ ରାଜନ୍ ! ପୂର୍ବେ ସେ ସ୍ତ୍ରୀ-ବଶୀଭୂତ ହୋଇ ଏବଂ କ୍ଷୁଦ୍ରସୁଖରେ ଆସକ୍ତହୋଇ ପଞ୍ଚାଳ ଦେଶରେ ଏବଂ ଆପଣାର ପୁରମଧ୍ୟରେ ସ୍ୱୀୟ ପାର୍ଷଦଗଣ କର୍ତ୍ତୃକ ଆହୃତ ଭୋଗ୍ୟବସ୍ତୁ ଗ୍ରହଣ କରି ମଧୁକର ତୁଲ୍ୟ ବାସ କରୁଥିଲେ, ଏପରି ଭୋଗବାନ୍ ହୋଇ ସେ ପରକାଳରେ ଭୟ ଉପସ୍ଥିତ ହେବା କଥା ଅବଗତ ନ ଥିଲେ । ୧୮ ।

ହେ ପ୍ରାଚୀନ ବର୍ହି ! କାଳର ଗୋଟିଏ କନ୍ୟାଅଛି । ସେ ଆପଣା ତୁଲ୍ୟ ବର ଖୋଜି ତ୍ରିଲୋକ ଭ୍ରମଣ କଲେ ମଧ୍ୟ କେହି ତାହାଙ୍କୁ ବିବାହ କରିବାକୁ ସ୍ୱୀକୃତ ହେଲେ ନାହିଁ । ୧୯ ।

ସ୍ୱୀୟ ଦୁର୍ଭାଗ୍ୟବଶତଃ ଏହିକନ୍ୟା ଦୁର୍ଭଗା ବୋଲି ପ୍ରସିଦ୍ଧିଲାଭ କରିଥିଲା, ରାଜର୍ଷି ପୁରୁ ତାହାଙ୍କୁ ବିବାହ କରିବାରୁ ସେ ସନ୍ତୁଷ୍ଟ ହୋଇରେ ବର ପ୍ରଦାନ କରିଥିଲା । ୨୦ । ✽

ଗନ୍ଧର୍ବେ ଅତିବଳବାନ
ତାହାଙ୍କୁ ନାରି କଲେ କ୍ଷୀଣ
କ୍ଷୀଣ ହୁଅନ୍ତେ ପ୍ରଜାଗଣ
ଘୋର ଚିନ୍ତାଏ ନୃପବର
ସେ ପୁରବାସୀ ଯେତେ ଥିଲେ
ସେ ସର୍ବେ ଅଳ୍ପକେ ଶୋଚିଲେ
ଆନେ ଯେ ନ ପାରନ୍ତି ଯାଇ
ଦୁଃଖେ ରୋଦନ୍ତି ଶୋକ ପାଇ । ୧୭
ସେ ପୁରେ ନୃପ ପୁରଞ୍ଜନ
ସଙ୍ଗତେ ଥିଲେ ପ୍ରଜାଗଣ
ପଞ୍ଚାଳ ଦେଶେ ନାନା ଦୁଃଖ
ଯେଣୁ ଲଭିଲେ ଅବିବେକ
ସତ୍ରୀବଶରେ ମନ ଗଲା
ଅଳପ ସୁଖେ ରମିଥିଲା
ନ କଲା ସେ ଭୟ ଇଶ୍ୱର
ଏଣୁ ହୋଇଲା ଦୁଃଖ ଘୋର । ୧୮
ପ୍ରାଚୀନ ଅଗ୍ରତେ ନାରଦ
କହିଲେ ଅପୂର୍ବ ସମ୍ବାଦ
କାଳର କନ୍ୟା ଏକ ଥିଲା
ତାହାଙ୍କୁ କେହି ନ ବରିଲା
ଏ ତିନିଲୋକେ ସେ ଭ୍ରମଇ
ତରେ ତା କେହି ବର ନୋହି
ସେ ଯାହାରେ ବର ଇଚ୍ଛା କରେ
ସେ ଦେଖି କମ୍ପେ ଥରହରେ । ୧୯
ସେ ସର୍ବ ଅଭାଗ୍ୟର ଧାମ
ଦୁର୍ଭଗା ଏଣୁ ତାର ନାମ
ସେ କନ୍ୟା ପୂର୍ବେ ଏକକାଳେ
ଯଯାତି ବଳେ ବିଭା ହେଲେ
ତାଠାରେ ବଇଭୋଗ ସାରି
ପୁତ୍ରଙ୍କୁ ବରେ ଇଚ୍ଛା କରି
ତାହାଙ୍କୁ ଯଯାତି ରାଜନ
ପୁତ୍ରଙ୍କୁ କଲେ ସମର୍ପଣ
ତା ଜ୍ୟେଷ୍ଠ ଯେତେକ କୁମର
କେହି ନ କଲେ ଅଙ୍ଗୀକାର
କନିଷ୍ଠ ପୁତ୍ର ପୁରୁ ଥିଲା
ସେ ପିତାଆଜ୍ଞାରେ ବରିଲା
ଏମନ୍ତେ ସେ କାଳଦୁହିତ
ସେ ବରେ ତୁଷ୍ଟ ହୋଇ ମତ
ତା କାମଭୋଗେ ବଳ ହରି
ତଦନ୍ତେ ସଂସାରେ ବିହରି । ୨୦ ।

✽ ମହର୍ଷି ଶୁକ୍ରଙ୍କଶାପରେ ଯଜାତିଜରାଗ୍ରସ୍ତ ହୋଇଥିଲେ । ପରେ ଶୁକ୍ରଙ୍କୁ ପ୍ରାର୍ଥନା କରିବାରୁ ସେ ଯଯାତିଙ୍କୁ ଏହିବର ପ୍ରଦାନ କରିଥିଲେ ଯେ କେହି ଇଚ୍ଛାକରି ନେବାକୁ ଚାହିଁଲେ ସେ ଏହି ଜରା ନେଇପାରେ । ଯଯାତିଙ୍କର କନିଷ୍ଠପୁତ୍ରପୁରୁ ପିତାଙ୍କ ଆଦେଶ ପାଳନ କରି ଜରାଗ୍ରହଣ କରିବାରୁ ଯଯାତି ତାହାଙ୍କୁ ସ୍ୱୀୟ ରାଜ୍ୟର ଉତ୍ତରାଧିକାରୀ ମନୋନୀତ କରିଥିଲେ ଏବଂ ଅନ୍ୟସବୁପୁତ୍ରଙ୍କୁ ରାଜ୍ୟଚ୍ୟୁତ କରିଥିଲେ ।

କଦାଚିଦଟମାନା ସା ବ୍ରହ୍ମଲୋକାନ୍ମହୀଂ ଗତମ୍ ।
ବବ୍ରେ ବୃହଦ୍‌ବ୍ରତଂ ମାନ୍ତୁ ଜାନତୀ କାମମୋହିତା । ୨୧ ।
ମୟି ସଂରଭ୍ୟ ବିପୁଳମଦାଚ୍ଛାପଂ ସୁଦୁଃସହମ୍ ।
ସ୍ଥାତୁମର୍ହସି ନୈକତ୍ର ମଦ୍‌ଯାଚ୍‌ଞାବିମୁଖୋ ମୁନେ । ୨୨ ।
ତତୋ ବିହତସଂକଳ୍ପା କନ୍ୟକା ଯବନେଶ୍ୱରମ୍ ।
ମୟୋପଦିଷ୍ଟମାସାଦ୍ୟ ବବ୍ରେ ନାମ୍ନା ଭୟଂ ପତିମ୍ । ୨୩ ।

---

ସେହିକାଳକନ୍ୟା ଭ୍ରମଣ କରୁ କରୁ ଥରେ ମୋତେ ପୃଥିବୀକୁ ଆଗମନ କରୁଥିବାର ଦେଖିଲେ ଏବଂ ମୋତେ ନୈଷ୍ଠିକବ୍ରହ୍ମଚାରୀ ଜାଣି ସୁଦ୍ଧା କାମ ମୋହିତା ହୋଇ ମୋତେ ବରଣକଲେ । ୨୧ ।

ମୁଁ ତାହାକୁ ପ୍ରତ୍ୟାଖ୍ୟାନ କରନ୍ତେ ସେ ମୋ ପ୍ରତି କ୍ରୁଦ୍ଧହୋଇ ମୋତେ ଏହିମହାନ୍ ସୁଦୁଃସହ ଶାପ ପ୍ରଦାନ କଲେ—"ହେ ମୁନେ ! ତୁମ୍ଭେ ମୋର ପ୍ରାର୍ଥନା ପୂରଣ କଲ ନାହିଁ, ତେଣୁ ତୁମ୍ଭେ କୌଣସି ସ୍ଥାନରେ ସ୍ଥିରହୋଇ ରହିପାରିବ ନାହିଁ" । ୨୨ ।

ଏହି କାଳ କନ୍ୟାର ଅଭିଳାଷ ପୂର୍ଣ୍ଣ ନ ହେବାରୁ ସେ ମୋର ଉପଦେଶଅନୁସାରେ ଭୟନାମକ ଯବନେଶ୍ୱର ନିକଟକୁ ଯାଇ ତାହାକୁ ପତିରୂପେ ବରଣକରିବାକୁ ପ୍ରାର୍ଥୀ ହୋଇଥିଲେ । ୨୩ ।

---

ମୁଁ ଥରେ ବ୍ରହ୍ମଲୋକଠାରୁ
ଏ ମହୀ ଭ୍ରମଣ ଇଚ୍ଛାରୁ—
ଆସନ୍ତେ କୃଷ୍ଣ ରସେ ରସି
ମୋତେ ଭେଟିଲା ଦୁଷ୍ଟା ଆସି
ବୋଇଲା ଶୁଣ ମୁନିବର
ମୋ କାମଦୁଃଖ ପରିହର
ଯଦ୍ୟପି ପଣ ମୋର ଜାଣେ
ତଥାପି ବରିଲା ଭ୍ରମଣେ
ହେ ମୁନିଶ୍ରେଷ୍ଠ ଯୋଗେଶ୍ୱର !
ମୋ ତୁଲେ ଗୃହକର୍ମ କର
ତୁମ୍ଭେ ମୋହର ନିଜପତି
ଏଣୁ ଅଳକ୍ ତୁମ୍ଭ କତି
ପୁରୁଷ ସ୍ୱଧର୍ମ୍ମଟି ଏହି
ପ୍ରାପତ କନ୍ୟା ନ ତେଜଇ
ଯାଚକ କନ୍ୟା ପ୍ରତେଜିଲେ
ସେ ସୁଖ ନ ଲଭଇ ଭୂଲେ
ଏମନ୍ତ ବାକ୍ୟ ତାର ଶୁଣି
ଆମ୍ଭେ ପ୍ରକୋପେ ତାକୁ ଭଣି
ବୋଇଲୁ ତୁ ନୀଚ ଯୁବତୀ
ପ୍ରମଦାକୁଳେ ନୋହୁ ସତୀ
କୁଳ ଦୂଷଣ କର୍ମ୍ମ ତୋର
ନ ମର ଧରିଛୁ ଶରୀର
ପାତ୍ର ଅପାତ୍ର ତୁ ନ ଜାଣୁ
ଦୂଷଣ କଥା କେଉଁେ ଭଣୁ
ଶୁଣ ତୁ ଜେ ମୂଢ଼ୀ ଅଜ୍ଞାନୀ
ଆମ୍ଭେ ଯେ ଅଟୁ ବ୍ରହ୍ମଜ୍ଞାନୀ
ଗୃହସ୍ଥ ଧର୍ମ୍ମ ଆମ୍ଭ ନାହିଁ
ତୋର ବରଣ ରକ୍ଷା କାହିଁ
ତୋହର ବରେ ଯେବେ ଇଚ୍ଛା
କହିବା ପୁରୁ ତୋର ବାଞ୍ଛା
ଯବନମାନଙ୍କ ଈଶ୍ୱର
ତୁ ଯାଇ ବେଗେ ତାକୁ ବର
ସେ କାମ ବେଗେ ତୋର ଇଚ୍ଛା
ସେ ତୋର ପୂରାଇବେ ବାଞ୍ଛା ।୨୧
ତା ଶୁଣି ବିମୁଖେ ତରୁଣୀ
ସେ କୋପେ ମୋତେ ଶାପ ଭଣି
ବୋଇଲା ଶୁଣ ମୁନିବର
ମୋ ପ୍ରତି ଆଶା କଲୁ ଦୂର
ତୁ ଏକ ଠାବେ ନ ରହିବୁ
ଜୀବନ୍ତେ ଯେତେ କାଳଥିବୁ
ବ୍ରହ୍ମାଣ୍ଡ ମଧ୍ୟେ ସ୍ଥାନ ଯେତେ
ଭ୍ରମଣ କରୁଥିବୁ ନିତ୍ୟେ
କାହିଁ ତୁ ନ ଲଭିବୁ ସୁଖ
ଇତ୍ୟାଦି ସୁଖେ ତୁ ବିମୁଖ ।୨୨।
ଏ ଘୋର ଶାପ ମୋତେ ଦେଇ
ବରିଲା ଭୟ ପତି ଯାଇ ।୨୩।

ଋଷଭଂ ଯବନାନାଂ ତ୍ୱାଂ ବୃଣେ ବୀରେପ୍ସିତଂ ପତିମ୍ ।
ସଂକଳ୍ପସ୍ତ୍ୱୟି ଭୂତାନାଂ କୃତଃ କିଲ ନ ରିଷ୍ୟତି । ୨୪ ।
ଦ୍ୱାବିମାବନୁଶୋଚନ୍ତି ବାଲାବସଦବଗ୍ରହୌ ।
ଯଲ୍ଲୋକଶାସ୍ତ୍ରୋପନତଂ ନ ରାତି ନ ତଦିଚ୍ଛତି । ୨୫ ।
ଅଥୋ ଭଜସ୍ୱ ମାଂ ଭଦ୍ର ଭଜନ୍ତୀଂ ମେ ଦୟାଂ କୁରୁ ।
ଏତାବାନ୍ ପୌରୁଷୋ ଧର୍ମୋ ଯଦାର୍ତ୍ତାନନୁକମ୍ପତେ । ୨୬ ।
କାଳକନ୍ୟୋଦିତବଚୋ ନିଶମ୍ୟ ଯବନେଶ୍ୱରଃ ।
ଚିକୀର୍ଷୁର୍ଦେବଗୁହ୍ୟଂ ସ ସସ୍ମିତଂ ତାମଭାଷତ । ୨୭ ।

ସେ କହିଲା "ହେ ଯବନେଶ୍ୱର ! ମୁଁ ତୁମ୍ଭଙ୍କୁ ମୋର ଅଭିଳଷିତ ପତିରୂପେ ବରଣ କଲି । ମୁଁ ଜାଣେ ଜୀବମାନେ ତୁମ୍ଭଙ୍କୁ ଆଶ୍ରୟକରି ଯେଉଁ ସଂକଳ୍ପ କରନ୍ତି, ତାହା ଅପୂର୍ଣ୍ଣ ରହେ ନାହିଁ" ।୨୪।

ଲୋକରେ ଓ ଶାସ୍ତ୍ରରେ କଥିତଅଛି ଯେଉଁ ବସ୍ତୁ ଦେୟ ଓ ଗ୍ରାହ୍ୟ ବୋଲି କଥିତ, ତାହା ପ୍ରାର୍ଥନା କଲେ ଯେ ନ ଦିଏ ବା ଦେଲେ ଯେ ଗ୍ରହଣ ନ କରେ, ସେ ଉଭୟଙ୍କପାଇଁ ସ୍ୱଜନମାନେ ଶୋକ କରିଥାନ୍ତି । ୨୫ ।

ଅତଏବ ହେ ଭଦ୍ର ! ତୁମ୍ଭର ଭଜନା କଲି, ତୁମ୍ଭେ ମୋତେ ଭଜନା କର । ଆର୍ତ୍ତବ୍ୟକ୍ତି ପ୍ରତି ଦୟା ପ୍ରକାଶ ପୁରୁଷର ଧର୍ମ । ୨୬ ।

ଯବନେଶ୍ୱର କାଳ କନ୍ୟାର ବାକ୍ୟ ଶ୍ରବଣକରି ସ୍ମିତହାସ୍ୟରେ ତାହାକୁ ସମ୍ବୋଧନ କରି କହିଲେ ।୨୭

ହେ ଦେବ ଯବନଈଶ୍ୱର
ତୁ ବୀର ବଳେ ବଳୀଶ୍ୱର
ଏଣୁ ବରିଲି ମୁହିଁ ତୋତେ
ମୋର ବିନୟ ଘେନ ଚିତ୍ତେ
ତୁମ୍ଭଙ୍କୁ ଯେ ମାଗଇ ଯାହା
ବିନାଶ ନୋହେ କାମ ତାହା ।୨୪।
ଶୁଣ ଯବନଅଧିପତି
ଏ ବେନି ଲୋକେ ଶିଶୁମତି
ଯେ ଲୋକ ଶାସ୍ତ୍ରର ଉଚିତ-
ଦ୍ରବ୍ୟ, ହୋଇଲେ ଉପଗତ-
ଯାଚକ ଜନେ ତା ନ ଦେଇ
ଅଥବା ଦେଲେ ନ ଘେନଇ
ଏ ବେନି ଶିଶୁ ସଙ୍ଗେ ସରି
ଏଣୁ ତାହାକୁ ଶୋକ କରି ।୨୫।
ତୁ ଯେ ଦୟାଳୁ ଶୁଚିବନ୍ତ
ଯବନମାନଙ୍କ ସାମନ୍ତ
ମୁଁ କାମେ ତୁମ୍ଭଙ୍କୁ ଭଜିଲି
ଲଜ୍ଜା ସଙ୍କୋଚ ଉପେକ୍ଷିଲି
ମୋ ସଙ୍ଗେ କରି ବଇଭୋଗ
ହରି ଦୁଃସହ କାମ ବେଗ
ପୁରୁଷ ସ୍ୱଧର୍ମଟି ଏହି
ଦୀନ ଜନଙ୍କୁ ଦୟା ବହି
ମୁଁ ଜନ୍ମକାଳୁଁ କାମଦୁଃଖେ
ତୁ ମୋତେ ନ ତେଜ ବିମୁଖେ ।୨୬
ତାର କାର୍ପଣ୍ୟ ବାକ୍ୟ ଶୁଣି
ଯବନେଶ୍ୱର ମନେ ଗୁଣି
ଦେବଙ୍କ ଗୁପ୍ତ ଯେ ମରଣ
ଏହାରେ ସାଧିବି ପ୍ରମାଣ
ଏମନ୍ତ ମନେ ବିଚାରିଲା
କନ୍ୟାକୁ ପ୍ରତି-ବାକ୍ୟ ଦେଲା ।୨୭

ମୟା ନିରୂପିତସ୍ତୁଭ୍ୟଂ ପତିରାତ୍ମସମାଧିନା ।
ନାଭିନନ୍ଦତି ଲୋକୋଽୟଂ ତ୍ୱାମଭଦ୍ରାମସମ୍ମତାମ୍ । ୨୮ ।
ତ୍ୱମବ୍ୟକ୍ତଗତିର୍ଭୁଙ୍କ୍ଷ୍ୱ ଲୋକଂ କର୍ମବିନିର୍ମିତମ୍ ।
ଯା ହି ମେ ପୃତନାଯୁକ୍ତା ପ୍ରଜାନାଶଂ ପ୍ରଣେଷ୍ୟସି । ୨୯ ।
ପ୍ରଜ୍ୱାରୋଽୟଂ ମମ ଭ୍ରାତା ତ୍ୱଞ୍ଚ ମେ ଭଗିନୀ ଭବ ।
ଚରାମ୍ୟୁଭାଭ୍ୟାଂ ଲୋକେଽସ୍ମିନ୍ନବ୍ୟକ୍ତୋ ଭୀମସୈନିକଃ । ୩୦ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଚତୁର୍ଥସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ ନାମ ସପ୍ତବିଂଶୋଽଧ୍ୟାୟଃ । ୨୭ ।

---

ତୁମ୍ଭର ଯେ ପତିହେବ, ମୁଁ ତାହା ଧ୍ୟାନରେ ନିର୍ଦ୍ଧାରିତ କରି ସାରିଅଛି । ତୁମ୍ଭଙ୍କୁ ଅମଙ୍ଗଳରୂପା ଓ ଅପ୍ରିୟ ବୋଲି କେହି ଗ୍ରହଣ କରୁ ନାହାନ୍ତି । ୨୮ ।

ତୁମ୍ଭେ ଅଲକ୍ଷିତ ଗତିହୋଇ କର୍ମ ବିନିର୍ମିତ ଲୋକ ଭୋଗକର । ତୁମ୍ଭେ ମୋହର ସେନାଙ୍କସହିତ ମିଳିତ ହୋଇ ଯାଅ, ତୁମ୍ଭେ ନିଶ୍ଚୟ ପ୍ରଜାନାଶ କରିବାକୁ ସମର୍ଥ ହେବ । ୨୯ ।

ଏହି ପ୍ରଜ୍ୱାର ( ବିଷ୍ଣୁଜ୍ୱରପ୍ରଭୃତି ) ମୋର ଭ୍ରାତା, ତୁମ୍ଭେ ମୋର ଭଗ୍ନୀହୁଅ । ତୁମ୍ଭ ଉଭୟଙ୍କୁ ସୈନିକ ଶ୍ରେଣୀଭୁକ୍ତ କରି ମୁଁ ସସୈନ୍ୟରେ ଲୋକଜଗତର ଭୟ ଉତ୍ପାଦନ କରି ଅଲକ୍ଷିତଭାବରେ ବିଚରଣ କରିବି । ୩୦ ।

---

ଶୁଣ ଗୋ କାଳର ଦୁହିତ
ତୋ ସମେ ବରିଅଛି ପତି
ଆପଣା ସମାଧି ଯୋଗରେ
ମୁଁ ବର ବରିଅଛି ତୋରେ
ଏ ଯେତେ ଲୋକବୃନ୍ଦ ଛନ୍ତି
ତୋର ସମୀପେ ନ ଗଛନ୍ତି
ତୋ ରୂପ ଦେଖି ଅମଙ୍ଗଳ
ଡରନ୍ତି ଏ ଲୋକ ସକଳ ।୨୮।
ତୁ ଯେ ଅଲକ୍ଷ୍ୟ ଗତି ଧରି
ଏହାଙ୍କୁ ଭୋଗ କର ବରି
ଏକାକୀ ବୋଲୁ ତୁମ୍ଭେ ଯେବେ
ମୋ ସେନା ସଙ୍ଗେ ଜାଅ ତେବେ
ଏମନ୍ତେ ପ୍ରଜାଙ୍କୁ ବିନାଶ
ଏ ସର୍ବେ ହୋନ୍ତୁ ତୋର ବଶ ।୨୯
ମୋହର ଭାଇ ଯେ ପ୍ରଜ୍ୱର
ତୁ ଭଗ୍ନୀ ହେବୁ ଯେ ମୋହର
ଏକତ୍ରେ ଭାଇ ଭଗ୍ନୀ ଥିବ
ମୋ ସେନାଗଣ ସଙ୍ଗେ ନେବ
ଲୋକେ ନ ଜାଣିବେ ତୋ ଗତି
ଭ୍ରମୁଣ ଥିବୁ ଚହଟତି
ଜୀବକୁ ଭୋଗ ଅନୁସାରେ
ପୀଡ଼ିବୁ ଲୋକଙ୍କ ବ୍ୟାଧିରେ ।୩୦।
ଏମନ୍ତ ଶିକ୍ଷା ତାକୁ ଦେଇ
ଅଗ୍ରେ ପେଷିଲ ଭଗ୍ନୀ ଭାଇ
ଚତୁର୍ଥସ୍କନ୍ଧେ ଭାଗବତ
ନାରଦ ପ୍ରାଚୀନ ଭକତ
ଏ ପୁରଞ୍ଜନର ଚରିତ
ଭଣଇ ବିପ୍ର ଜଗନ୍ନାଥ ।



## ଅ ଷ୍ଟା ବିଂ ଶ ଅ ଧ୍ୟା ୟ ।

ଅଷ୍ଟାବିଂଶେ ତୁ ବୈଦର୍ଭ୍ୟାଖ୍ୟାନେନ ସ୍ତ୍ରୀତ୍ୱଚନ୍ତ୍ୟ୍ତା ।
ସ୍ତ୍ରୀତ୍ୱଂ ପ୍ରାପ୍ତସ୍ୟ ଦୈବେନ କଦାଚନ୍ମୁକ୍ତିରୁଚ୍ୟତେ ।୦। (ଶ୍ରୀଧରସ୍ୱାମୀ)

ଶ୍ରୀନାରଦ ଉବାଚ ।

ସୈନିକା ଭୟନାମ୍ନୋ ଯେ ବର୍ହିଷ୍ମନ୍ ଦିଷ୍ଟକାରିଣଃ ।
ପ୍ରଜ୍ୱାରକାଲକନ୍ୟାଭ୍ୟାଂ ବିଚେରୁରବନୀମିମାମ୍ । ୧ ।
ତ ଏକଦା ତୁ ରଭସା ପୁରଞ୍ଜନପୁରୀଂ ନୃପ ।
ରୁରୁଧୁର୍ଭୌମଭୋଗାଢ୍ୟାଂ ଜରତ୍ପନ୍ନଗପାଳିତାମ୍ । ୨ ।

---

## ପୁରଞ୍ଜନଙ୍କର ସ୍ତ୍ରୀତ୍ୱ ପ୍ରାପ୍ତି ଓ ମୁକ୍ତିଲାଭ ।

ଅଷ୍ଟାବିଂଶ ଅଧ୍ୟାୟରେ ରାଜା ପୁରଞ୍ଜନ ନିରନ୍ତର ବିଷୟ ଚିନ୍ତା ହେତୁ ବିଦର୍ଭଦେଶରେ ସ୍ତ୍ରୀରୂପେ ଜନ୍ମଲାଭ କରି ଶେଷରେ ମୁକ୍ତିଲାଭ କରିଥିଲେ । ० ।

ଶ୍ରୀନାରଦ କହିଲେ :—

ହେ ପ୍ରାଚୀନବର୍ହି ! ଭୟନାମକ ଯବନାଧିପତିଙ୍କର ଆଜ୍ଞାକାରୀ ଯେଉଁ ସେନା, ସେମାନେ ପ୍ରଜ୍ୱାର ଓ କାଳ କନ୍ୟା ସହିତ ମିଳିତ ହୋଇ ତ୍ରିଭୁବନ ଭ୍ରମଣ କଲେ । ୧ ।

ହେ ରାଜନ୍ ! ତଦନେ ଏହି ଯବନ ସୈନ୍ୟଗଣ ଜରାଗ୍ରସ୍ତ ସର୍ପଦ୍ୱାରା ରକ୍ଷିତ ପାର୍ଥିବ ଭୋଗୋପକରଣ ସଜ୍ଜିତ ରାଜା ପୁରଞ୍ଜନଙ୍କ ପୁରୀ ପ୍ରବଳ ପରାକ୍ରମରେ ଆକ୍ରମଣ କଲେ । ୨ ।

---

ସ୍ତ୍ରୀ ଚିନ୍ତା ଯୋଗେ ପୁରଞ୍ଜନ, ବିଦର୍ଭେ ଜାଇ ସ୍ତ୍ରୀଶରୀରନ୍ତ । ମୁକତିଲଭ କଲେଶେଷେ,ଏହିଚରିତ ଅଷ୍ଟବିଂଶେ

ଶ୍ରୀମୈତ୍ରେୟ ଉବାଚ—
ତଦନନ୍ତ ଶୁଣ ହେ ବିଦୁର
ସେ ପୁରଞ୍ଜନର ବିସ୍ତର
ନାରଦ କହନ୍ତି ବଚନ
ଏବେ କହିବା ଆର ଶୁଣ
ଯବନଅଧିପତି ଯେହି
ତାହାର ନାମ ଭୟ କହି
ସୈନ୍ୟାଦି ବ୍ୟାଧିଗଣେ ତାର
ସଙ୍ଗତେ ଥାନ୍ତି ନିରନ୍ତର
ପ୍ରଜ୍ୱର କାଳକନ୍ୟା ବେନି
ଏହାଙ୍କୁ ରାଜା ସଙ୍ଗେ ଘେନି
ଏ ସର୍ବେ ସଙ୍ଗତେ ଚଳନ୍ତି
ଯେ ଦିଗେ ବିଜୟେ ନୃପତି ।୧।
ସେ ଏକ ଦିନେ ନୃପବର
ସଙ୍ଗତେ ସୈନ୍ୟ ଜରା ଜ୍ୱର
ମତ୍ତ ସେ ଭ୍ରମଣ କରନ୍ତି
ଦେଖିଲେ କାଳ କର୍ମ ଗତି
ସେ ପୁରେ ଥିଲେ ପୁରଞ୍ଜନ
ତା ବେଗେ ବେଢ଼ିଲେ ଯବନ । ୨ ।

କାଳକନ୍ୟାପି ବୁଭୁଜେ ପୁରଞ୍ଜନପୁରଂ ବଳାତ୍ ।
ଯୟାଭିଭୂତଃ ପୁରୁଷଃ ସଦ୍ୟୋ ନିଃସାରତାମିୟାତ୍ । ୩ ।
ତୟୋପଭୁଜ୍ୟମାନାଂ ବୈ ଯବନାଃ ସର୍ବତୋ ଦିଶମ୍ ।
ଦ୍ୱାର୍ଭିଃ ପ୍ରବିଶ୍ୟ ସୁଭୃଶଂ ପ୍ରାର୍ଦ୍ଦୟନ୍ ସକଳାଂ ପୁରୀମ୍ । ୪ ।
ତସ୍ୟାଂ ପ୍ରପୀଡ୍ୟମାନାୟାମଭିମାନୀ ପୁରଞ୍ଜନଃ ।
ଅବାପୋରୁବିଧାଂସ୍ତାପାନ୍ କୁଟୁମ୍ବୀମମତାକୁଳଃ । ୫ ।
କନ୍ୟୋପଗୂଢ଼ୋ ନଷ୍ଟଶ୍ରୀଃ କୃପଣୋ ବିଷୟାତ୍ମକଃ ।
ନଷ୍ଟପ୍ରଜ୍ଞୋ ହୃତୈଶ୍ୱର୍ଯ୍ୟୋ ଗନ୍ଧର୍ବୈର୍ଯବନୈର୍ବଳାତ୍ । ୬ ।

---

ସେହି କାଳକନ୍ୟା କର୍ତ୍ତୃକ ଆକ୍ରାନ୍ତ ହେବାମାତ୍ରେ ଜୀବିତ ଲୋକ ନିର୍ଜୀବିତ୍ୱ ପ୍ରାପ୍ତ ହୁଏ, ସେହି କାଳନନ୍ଦିନୀ ମଧ୍ୟ ବଳପୂର୍ବକ ପୁରଞ୍ଜନପୁରୀ ଅଧିକାର ପୂର୍ବକ ଭୋଗ କଲା । ୩ ।

କାଳକନ୍ୟା ପୁରୀଭୋଗ କରୁଥିବାର ଦେଖି ଯବନସୈନ୍ୟଗଣ ପୁରୀର ସର୍ବତ୍ର ପ୍ରବେଶ କରି ଅତ୍ୟନ୍ତ ପୀଡ଼ା ପ୍ରଦାନ କରିବାକୁ ଲାଗିଲେ । ୪ ।

ଯେତେବେଳେ ଯବନ ସେନାଗଣ ପୁରଞ୍ଜନପୁରୀକୁ ପୀଡ଼ିତ କଲେ ସେତେବେଳେ ପୁରପ୍ରତି ଆସକ୍ତ କୁଟୁମ୍ବ ପରିବେଷ୍ଟିତ, କୁଟୁମ୍ବଗଣଙ୍କ ମମତାରେ ଆକୁଳ ପୁରଞ୍ଜନ ଭୀଷଣ ଦୁଃଖ ଅନୁଭବକଲେ ।୫।

କାଳକନ୍ୟା ଆଲିଙ୍ଗନ କରିବାରୁ ପୁରଞ୍ଜନ ହୃତଶ୍ରୀ ହେଲେ । ଦୀନ, ବିଷୟାସକ୍ତ, ନଷ୍ଟପ୍ରଜ୍ଞ ପୁରଞ୍ଜନ, ଗନ୍ଧର୍ବ, ଓ ଯବନଗଣଙ୍କ କର୍ତ୍ତୃକ ଆକ୍ରାନ୍ତ ହୋଇ ସମସ୍ତ ଐଶ୍ୱର୍ଯ୍ୟରୁ ବିଚ୍ୟୁତ ହେଲେ ।୬।

---

ଯେ ଭକ୍ତ ପୃଥ୍ୱୀରେ ବୈଭୋଗ
ସକଳ ସେ ପୁରେ ସଂଯୋଗ
ସେ ପୁରଦ୍ୱାରୀ ବୃଦ୍ଧ ଅହି
ନିର୍ଭରେ ପୁର ଜଗିଥାଇ
ଏ ସାକ୍ଷୀରୂପେ ଦେହ ଯେତେ
ତାଙ୍କୁ ନ ଛାଡ଼େ କଦାଚିତେ
ବ୍ରହ୍ମାଣ୍ଡ ମଧ୍ୟେ ଦେହ ବହି
ତାକୁ ଜାଣନ୍ତା କେହି ନାହିଁ
ବ୍ରହ୍ମାଦି ସୁର ମୁନି ଦେବା
ଭୟେ କରନ୍ତି ତାକୁ ସେବା
ତାକୁ ଜାଣନ୍ତା ଯେବା ଜନ
ଜଗତ୍ରେ ରହେ ନିଜସ୍ଥାନ

ଅଜ୍ଞାନେ ସେପୁର ନାଶିଲେ
ଯେ ପୁରେ ପୁରଞ୍ଜନ ଥିଲେ ।୩।
ସେ କାଳକନ୍ୟା ସଙ୍ଗେ ଥିଲା
ସେ ପୁରେ ସତ୍ୱରେ ପଶିଲା
ବଳେ ସେ କଲା ବଇଭୋଗ
କାନ୍ତି ବଳ ବୀର୍ଯ୍ୟ ସଂଯୋଗ
ସେ ନାରୀ ଯାରେ ସ୍ପର୍ଶଇ
ସେ ପ୍ରାଣୀ ଉଠି ନପାରଇ
ଅଗ୍ରେ ସେ ନାରୀ ପ୍ରବେଶିଲା
ଯେତେ ଯବନବଳ ଥିଲା
ସର୍ବେ ସେ ପୁରମାର୍ଗେ ଗଲେ
ପ୍ରବେଶି ପୁର ବିନାଶିଲେ । ୪ ।

ପୁର ଉଜାଡ଼େ ଭସ୍ମ କରି
ସେ ପୁରଞ୍ଜନ ଦଣ୍ଡଧାରୀ
ବହୁତ ସନ୍ତାପ ସେ କଲା
ନିର୍ବଳେ ଭୁଗିତେ ରହିଲା
ସେ ରାଜା କ୍ରୋଧେ ଅଭିମାନୀ
ଦେଖିଲା ସ୍ୱକୁଟୁମ୍ବ ହାନି
ସ୍ନେହାନୁବନ୍ଧ ନ ଛାଡ଼ଇ
ଆକୁଳେ ସନ୍ତାପେ ଶୋଚଇ ।୫।
ସେ କାଳକନ୍ୟା ଆସି ବେଗେ
ରାଜାକୁ କୋଳ କଲା ଯୋଗେ
ତାର ସ୍ପର୍ଶନେ ମହାରାଜେ
ହୋଇଲା ନଷ୍ଟ କାନ୍ତି କାର୍ଯ୍ୟେ

ବଶୀଶ୍ଚାଂ ସ୍ୱପୁରୀଂ ବୀକ୍ଷ୍ୟ ପ୍ରତିକୂଳାନନାଦୃତାନ୍ ।
ପୁତ୍ରାନ୍ ପୌତ୍ରାନୁଗାମାତ୍ୟାନ୍ ଜାୟାଞ୍ଚ ଗତସୌହୃଦାମ୍ । ୭ ।
ଆତ୍ମାନଂ କନ୍ୟୟା ଗ୍ରସ୍ତଂ ପଞ୍ଚାଳାନରିଦୂଷିତାନ୍ ।
ଦୁରନ୍ତଚିନ୍ତାମାପନ୍ନୋ ନ ଲେଭେ ତତ୍ ପ୍ରତିକ୍ରିୟାମ୍ । ୮ ।
କାମାନଭିଲଷନ୍ ଦୀନୋ ଯାତଯାମାଂଶ୍ଚ କନ୍ୟୟା ।
ବିଗତାତ୍ମଗତିସ୍ନେହଃ ପୁତ୍ରଦାରାଂଶ୍ଚ ଲାଳୟନ୍ । ୯ ।
ଗନ୍ଧର୍ବଯବନାକ୍ରାନ୍ତାଂ କାଳକନ୍ୟୋପମର୍ଦ୍ଦିତାମ୍ ।
ହାତୁଂ ପ୍ରଚକ୍ରମେ ରାଜା ତାଂ ପୁରୀମନକାମତଃ । ୧୦ ।

---

ପୁରଞ୍ଜନ ଦେଖିଲେ—ନିଜର ପୁରୀ ବଶୀଣ୍ଣ, ପୁତ୍ର ପୌତ୍ର, ଭୃତ୍ୟ, ମନ୍ତ୍ରୀଗଣ ପ୍ରତିକୂଳ ଏବଂ ଆଉ ପୂର୍ବପରି ଆଦର କରୁନାହାନ୍ତି, ପତ୍ନୀଙ୍କର ମଧ୍ୟ ତାଙ୍କପ୍ରତି ପୂର୍ବବତ୍ ସ୍ନେହନାହିଁ ।୭।

ନିଜେ କାଳକନ୍ୟାକର୍ତ୍ତୃକ ଅଧିକୃତ, ପାଞ୍ଚାଳରାଜ୍ୟ ମଧ୍ୟ ଶତ୍ରୁକର୍ତ୍ତୃକ ଲୁଣ୍ଠିତ ହୋଇଥିବାର ଦେଖି ସେ ଘୋର ଚିନ୍ତାରେ ମଗ୍ନ ହେଲେ, କିନ୍ତୁ ତହିଁର କୌଣସିପ୍ରକାର ପ୍ରତିକାରର- ଉପାୟ ଖୋଜି ପାଇଲେ ନାହିଁ । ୮ ।

ପୁରଞ୍ଜନ ଦେଖିଲେ ଯେ କାଳକନ୍ୟା ଯେଉଁ ସମସ୍ତ ଭୋଗ୍ୟବସ୍ତୁ ଭୋଗକରି ପରିତ୍ୟାଗ କରିଅଛି ସେହି ସାରହୀନ ଉଚ୍ଛିଷ୍ଟ ଭୋଗକରିବାକୁ ହେଉଅଛି, ଆତ୍ମା ଐହିକ ଓ ପାରତ୍ରିକ ଗତି ଏବଂ ବନ୍ଧୁ ବାନ୍ଧବ ମାନଙ୍କର ସ୍ନେହ ମମତାରୁ ବଞ୍ଚିତ ହୋଇ ପୁତ୍ରକଳତ୍ରାଦିଙ୍କୁ ଲାଳନ ପାଳନ କରିବାକୁ ହେଉଅଛି ।୯।

ଗନ୍ଧର୍ବ ଓ ଯବନସେନାମାନଙ୍କ କର୍ତ୍ତୃକ ଆକ୍ରାନ୍ତ ଏବଂ କାଳକନ୍ୟାକର୍ତ୍ତୃକ ମର୍ଦ୍ଦିତ ( ବିଧ୍ୱଂସିତ ) ପୁରୀକୁ ଅନିଚ୍ଛାସତ୍ତ୍ୱେ ସେ ପରିତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । ୧୦ ।

---

କୃପଣ ବିଷୟୀ ରାଜନ
ହୋଇଲି ତା ସଙ୍ଗ ପାଇଣ
ପ୍ରଜ୍ଞା ଯେ ହେଲା ତାର ନାଶ
ସଘନେ ଛାଡ଼ଇ ନିଶ୍ୱାସ
ଯବନ ଗନ୍ଧର୍ବ ପଶିଲେ
ରାଜାର ସମ୍ପଦ ଲୁଟିଲେ
ସେ ପୁର କ୍ଷୀଣ ଦେଖି ତାର
ପୁତ୍ରାଦି ଛାଡ଼ିଲେ ଆଦର
ଆତ୍ମୀୟ ଲୋକ ଯେତେ ତହିଁ
ଦେଖିଲା ପୂର୍ବ ସ୍ନେହ ନାହିଁ
ତା ପତ୍ନୀଠାରେ ଯେ ପୀରତି
ଦେଖଇ ଅସ୍ନେହ ଅମିତି
ଆତ୍ମାକୁ ଜ୍ୱରଗ୍ରସ୍ତ କଲି
ପାଞ୍ଚାଳ ବିଷୟ ତା ଗଲା
ଦୁରନ୍ତ ଚିନ୍ତା ପାଇ ରାୟେ
ନ ଦେଖଣ ତରିବା ଉପାୟେ ।୭-୮
ସେ କନ୍ୟାସ୍ମରଣେ ନିର୍ବଳ
ଏକାନ୍ତେ ହିତୁରେ ମନ୍ତ୍ରୀପାଳ
ନିର୍ବଳ ଦେଖି ଛାଡ଼ ଦେହ
ଛାଡ଼ିଲା ପୁତ୍ରଆଦି ସ୍ନେହ
ସ୍ୱ-ପର ଲୋକ ଚିନ୍ତା ଗଲା
ସେ କାଳକନ୍ୟା ଏହା କଲା
ସେ ପୁର ଛାଡ଼ିବାରେ ମନ
ବେଦନ କରେ ଅନୁକ୍ଷଣ
ନ ପାରେ ସହି ଦୁଃଖ ଘୋର
ସେ ନିଚେଣ୍ଟ ଛାଡ଼ିବ ଶରୀର
ଭ୍ରମ ତା ହେଲା ବୁଦ୍ଧିମତି
ଆତୁରେ କାନ୍ଦଇ ନୃପତି ।୯,୧୦

ଭୟନାମ୍ନୋଽଗ୍ରଜୋ ଭ୍ରାତା ପ୍ରଜ୍ୱାରଃ ପ୍ରତ୍ୟୁପସ୍ଥିତଃ ।
ଦଦାହ ତାଂ ପୁରୀଂ କୃତ୍ସ୍ନାଂ ଭ୍ରାତୁଃ ପ୍ରିୟଚିକୀର୍ଷୟା । ୧୧ ।
ତସ୍ୟାଂ ସନ୍ଦହ୍ୟମାନାୟାଂ ସପୌରଃ ସପରିଚ୍ଛଦଃ ।
କୌଟୁମ୍ବିକଃ କୁଟୁମ୍ବିନ୍ୟା ଉପାତପ୍ୟତ ସାନ୍ୱୟଃ । ୧୨ ।
ଯବନୋପରୁଦ୍ଧାୟତନୋ ଗ୍ରସ୍ତାୟାଂ କାଲକନ୍ୟୟା ।
ପୂର୍ଯ୍ୟାଂ ପ୍ରଜ୍ୱାରସଂସୃଷ୍ଟଃ ପୁରପାଲୋଽନ୍ୱତପ୍ୟତ । ୧୩ ।
ନ ଶେକେ ସୋଽବିତୁଂ ତତ୍ର ପୁରୁକୃଚ୍ଛ୍ରୋରୁବେପଥୁଃ ।
ଗନ୍ତୁମୈଚ୍ଛତ୍ତତୋ ବୃକ୍ଷକୋଟରାଦିବ ସାନଲାତ୍ । ୧୪ ।

ସେତେବେଳେ ଭୟର ଅଗ୍ରଜ ଭ୍ରାତା ପ୍ରଜ୍ୱାର ( ବିଷ୍ଣୁଜ୍ୱର ଆଦି ) ଉପସ୍ଥିତ ହୋଇ ଭ୍ରାତା ଯବନେଶ୍ୱରର ପ୍ରିୟକାର୍ଯ୍ୟ କରିବା ଇଚ୍ଛାରେ ସମସ୍ତପୁରୀକୁ ଦଗ୍‌ଧ କରିବାକୁ ଲଗିଲେ । ୧୧ । ✻

ଏହି ପୁରୀ ଏପରି ଦଗ୍‌ଧ ହୁଅନ୍ତେ ପୁରଞ୍ଜନପୁରବାସୀ, ପୌରଞ୍ଜନ ଭୃତ୍ୟବର୍ଗ, କୁଟୁମ୍ବ, ଭାର୍ଯ୍ୟା ଓ ପୁତ୍ର ପୌତ୍ରାଦିଙ୍କ ସହିତ ଅତ୍ୟନ୍ତ ସନ୍ତପ୍ତ ହେଲେ । ୧୨ ।

କାଳକନ୍ୟା ଏହି ପୁରୀ ଅଧିକାର କରନ୍ତେ ଯବନ ସୈନ୍ୟଗଣ ତାହା ଅବରୋଧ କଲେ, ଏବଂ ପ୍ରଜ୍ୱାର ତାହାଙ୍କୁ ଦଗ୍‌ଧ କଲେ । ପୁରରକ୍ଷକ ତହିଁରେ ଅତ୍ୟନ୍ତ ଶୋକଗ୍ରସ୍ତ ହେଲେ । ୧୩ ।

ବହୁକ୍ଲେଶ ହେତୁ ତାହାଙ୍କର କମ୍ପ ଉପସ୍ଥିତ ହେଲା । ସେତେବେଳେ ସେ ଏହି ପୁରମଧ୍ୟରେ ଅବସ୍ଥିତ ହୋଇ ସେହିପୁରୀ ରକ୍ଷ କରିବାକୁ ସମର୍ଥ ହେଲେନାହିଁ । ଅଗ୍ନି ଯୁକ୍ତବୃକ୍ଷ କୋଟରରୁ ଯେପରି ଅନ୍ୟତ୍ର ଗମନକରିବାକୁ ଆକୁଳ ହୁଏ, ସେ ସେହିପରି ଅନ୍ୟତ୍ର ଗମନ କରିବାକୁ ଉଦ୍ୟତ ହେଲେ ।୧୪।

ଭୟର ଅଗ୍ରଜ ପ୍ରଜ୍ୱର
ଆଚ୍ଛାଦି ରହିଲା ସେ ପୁର
ଏ ସର୍ବେ ପୁରମାର୍ଗେ ରହି
ପ୍ରଚଣ୍ଡ ତେଜେ କୋପ ବହି
ସାନ ଭ୍ରାତର ପ୍ରିୟ ଅର୍ଥେ
ସେ ପୁର ଦହିଲେ ତୁରିତେ
ପୁର ଦହନ ଯହୁଁ ହେଲା
ସେ ରାଜା ମହା ଭୟ କଲା
ସେ ପୁରବାସୀ ଯେତେ ଥିଲେ
ସେସର୍ବେଭୟେଣକମ୍ପିଲେ।୧୧,୧୨

ଯବନେ ପୁର ଦେଲେ ଦହି
କାଳକନ୍ୟାର ପଛେ ରହି
ସଭୟେ ନ ପାରନ୍ତି ଯାଇ
ଦୁଃଖେ ରୋଦନ୍ତି ଛନ୍ନ ହୋଇ
ଯବନେ ପୁର ନେଲେ ବେଗେ
ସେ କାଳକନ୍ୟା ଘେନି ସଙ୍ଗେ
ଭୟର ଅଗ୍ରଜ ପ୍ରଜ୍ୱର
ପୁର ଜାଣିଲେ ବେଗେ ତାର
ଦେଖିଣ ବିଷାଦ ନୃପତି
ରୋଦନ କଲା ଭୟେ ଅତି

ବହୁତ କଷ୍ଟେ ସେ ରାଜନ
ପୁର ଛାଡିତେ କଲା ମନ
ଯେସନେ ବୃକ୍ଷକୋଟେ ଅଗ୍ନି
ଅନଳ ତେଜେ ତାପେ ଦହି
ସେ ଯେଝେ ସେ ସ୍ଥାନ ଉପେକ୍ଷି
ରହେ ଅତ୍ୟନ୍ତ ମନେ ଦୁଃଖୀ
ତେସନେ ଛାଡ଼ି ନିଜ ପୁରୀ
ସେ ରାଜାବ ହୁଇଲାକରି ।୧୩,୧୪

✻ ପ୍ରଜ୍ୱାର—ମୃତ୍ୟୁର ପୂର୍ବଜାତ ବିଷ୍ଣୁଜ୍ୱର । ଯବନେଶ୍ୱର—ମୃତ୍ୟୁ । ମୃତ୍ୟୁପୂର୍ବରୁ ଏ ବିଷ୍ଣୁଜ୍ୱର ଜାତହୁଏ ।

ଶିଥିଳାବୟବୋ ଯର୍ହି ଗନ୍ଧର୍ବୈର୍ହୃତପୌରୁଷଃ ।
ଯବନୈରରିଭୀ ରାଜନ୍ନୁପରୁଦ୍ଧୋ ରୁରୋଦ ହ । ୧୫ ।
ଦୁହିତୃଃ ପୁତ୍ରପୌତ୍ରାଂଶ୍ଚ ଯାମିଜାମାତୃପାର୍ଷଦାନ୍ ।
ସ୍ୱତ୍ୱାବଶିଷ୍ଟଂ ଯତ୍କିଞ୍ଚିଦ୍ ଗୃହକୋଷପରିଚ୍ଛଦମ୍ । ୧୬ ।
ଅହଂ ମମେତି ସ୍ୱୀକୃତ୍ୟ ଗୃହେଷୁ କୁମତିର୍ଗୃହୀ ।
ଦଧ୍ୟୌ ପ୍ରମଦୟା ଦୀନୋ ବିପ୍ରୟୋଗ ଉପସ୍ଥିତେ । ୧୭ ।
ଲୋକାନ୍ତରଂ ଗତବତି ମୟ୍ୟନାଥା କୁଟୁମ୍ବିନୀ ।
ବର୍ତ୍ତିଷ୍ୟତେ କଥଂତ୍ୱେଷା ବାଲକାନନୁଶୋଚତୀ । ୧୮ ।
ନ ମୟ୍ୟନାଶିତେ ଭୁଂକ୍ତେ ନାସ୍ନାତେ ସ୍ନାତି ମତ୍ପରା ।
ମୟି ରୁଷ୍ଟେ ସୁସଂତ୍ରସ୍ତା ଭର୍ତ୍ସିତେ ଯତବାଗ୍ଭୟାତ୍ । ୧୯ ।

---

ହେ ରାଜନ୍ ! ଯେତେବେଳେ ଗନ୍ଧର୍ବମାନେ ପୁରଞ୍ଜନଙ୍କର ପୌରୁଷ ଅପହରଣ କରି ତାହାଙ୍କର ଅଙ୍ଗ ପ୍ରତ୍ୟଙ୍ଗ ଶିଥିଳ କରିପକାଇଲେ ଏବଂ ଯବନମାନେ ଆସି କଣ୍ଠଦେଶ ମାଡି ବସିଲେ, ସେତେବେଳେ ପୁରରକ୍ଷକ ରୋଦନ କରିବାକୁ ଲାଗିଲେ । ୧୫ ।

କୁମତି ଗୃହବ୍ରତୀ ପୁରଞ୍ଜନ ସ୍ତ୍ରୀ ବିଚ୍ଛେଦରେ ଅତ୍ୟନ୍ତ କାତର ହେଲେ । ଏବଂ ଗୃହାଦିରେ 'ମୁଁ' ଓ 'ମୋର' ବୁଦ୍ଧିକରି କନ୍ୟା ପୁତ୍ର, ପୌତ୍ର ବଧୂ, ଜାମାତା, ପାର୍ଷଦଗଣ ଏବଂ ଗୃହଭଣ୍ଡାର ଓ ପରିଚ୍ଛଦାଦି ଯାହା ସତ୍ତ୍ୱମାତ୍ର ଅବଶିଷ୍ଟଥିଲା, ତାହା ଏହି ଚିନ୍ତାଗ୍ରସ୍ତ ହେଲେ । ୧୬,୧୭ ।

ସେ ଭାବିଲେ—"ମୁଁ ଲୋକାନ୍ତରକୁ ଗମନ କଲେ ମୋର ପତ୍ନୀ ଅନାଥା ହେବ ଏବଂ ପୁତ୍ର କନ୍ୟାମାନଙ୍କର ଦୁର୍ଦ୍ଦଶା ଦର୍ଶନକରି କିପରି କାଳ ଯାପନ କରିବ ?" । ୧୮ ।

"ମୋର ଅର୍ଦ୍ଧାଙ୍ଗ ଏହି କାମିନୀ, ମୁଁ ସ୍ନାନ ଆହାର ନ କଲେ ସ୍ନାନାହାର କରେ ନାହିଁ, ମୁଁ କ୍ରୁଦ୍ଧ ହେଲେ ସେ ଅତ୍ୟନ୍ତ ସନ୍ତ୍ରସ୍ତହୁଏ, ମୁଁ ତିରସ୍କାରକଲେ ସେ କଥା ପଦେସୁଦ୍ଧା ଉଚ୍ଚବାଚ୍ୟ କରେନାହିଁ ।୧୯

---

ହସ୍ତ ଚରଣ ନ ଚଳଇ
ପୌରୁଷ ଗନ୍ଧର୍ବ ହରିଲ
ଯବନ ଶତ୍ରୁ ବ୍ୟାଧି ରୂପେ
କଣ୍ଠ ନିରୋଧ କଲେ କୋପେ
ମୂଢ ଦୁର୍ମ୍ମତି ସେ ରାଜନ
ରୋଦଇ ନ ଛାଡ଼ି ଜୀବନ । ୧୫ ।
ନ ଛାଡ଼ିପାରେ ସ୍ନେହ ଚିତ୍ତେ
ରାତ୍ରି ଦିବସ ଭାବେ ନିତ୍ୟେ
ଏ ମୋର ପୁତ୍ର କନ୍ୟା ଯେତେ
ମୋ ବିନା ବଞ୍ଚିବେ କେମନ୍ତେ

ଜାମାତା ବନ୍ଧୁ ପାରିଷଦ
ଅପରେ ଗୃହାଦି ସମ୍ପଦ
ମୁଁ ଏବେ ପୁର ପ୍ରତେଜିଲେ
ଏ ସର୍ବେ ନ ବଞ୍ଚିବେ ଭଲେ
ସ୍ୱପତ୍ନୀ ସହିତେ ରାଜନ
ଅନେକ କରନ୍ତି ରୋଦନ
ମୁଁ ଏବେ କିଷ୍ଟଙ୍କ ମରିବି
ଏ ବହୁ ଦୁଃଖ ନ ସହିବି
ମୋର ଅଭାବେ ଏ କାମିନୀ
ଖଳିବ ସ୍ୱକୁଟୁମ୍ବ ଘେନି

ବାଳକେ ହୋଇବେ ଅନାଥ
ତା ଦେଖି ରୋଦିବ ବହୁତ ।୧୬-୧୮
ସ୍ନାନ ଭୋଜନ ମୁଁ ନ କଲେ
ଏ ରାଣୀ ନ କରେ ବିକଳେ
ଏହାର ଗୁଣ ଅଛି ଯେତେ
ମୁଁ କହି ପାରିବଇଁ କେତେ
ସେ ମୋର କ୍ରୋଧକାଳ ଜାଣି
ଜ୍ଞାନେ ପ୍ରବୋଧେ ସେ ତରୁଣୀ
ମୁଁ ଗାଳି ରୋଷେ ଦେଇ ଯେବେ
ସଭୟ ଚିତ୍ତେ ରହେ ତେବେ

ପ୍ରବୋଧସ୍ୟତି ମା ବିଜ୍ଞଂ ବ୍ୟୁଷିତେ ଶୋକକର୍ଶିତା ।
ବର୍ତ୍ମୈତଦ୍ ଗୃହମେଧୀୟଂ ବୀରସୂରପି ନେଷ୍ୟତି । ୨୦ ।
କଥଂ ନୁ ଦାରକା ଦୀନା ଦାରକୀର୍ବା ପରାୟଣାଃ ।
ବର୍ତ୍ତିଷ୍ୟନ୍ତେ ମୟି ଗତେ ଭିନ୍ନନାବ ଇବୋଦଧୌ । ୨୧ ।
ଏବଂ କୃପଣୟା ବୁଦ୍ଧ୍ୟା ଶୋଚନ୍ତମତଦର୍ହଣମ୍ ।
ଗ୍ରହୀତୁଂ କୃତଧୀରେନଂ ଭୟନାମାଭ୍ୟପଦ୍ୟତ । ୨୨ ।
ପଶୁବଦ୍ୟବନୈରେଷ ନୀୟମାନଃ ସ୍ୱକଂ କ୍ଷୟମ୍ ।
ଅନ୍ୱଦ୍ରବନ୍ନନୁପଥାଃ ଶୋଚନ୍ତୋ ଭୃଶମାତୁରାଃ । ୨୩ ।
ପୁରୀଂ ବିହାୟୋପଗତ ଉପରୁଦ୍ଧୋ ଭୁଜଙ୍ଗମଃ ।
ଯଦା ତମେବାନୁ ପୁରୀ ବିଶୀର୍ଣ୍ଣା ପ୍ରକୃତିଂ ଗତାଃ । ୨୪ ।

"ମୋର ଯେତେବେଳେ ବିବେକ ନଷ୍ଟ ହୁଏ ଏ ମୋତେ ସୁବୁଦ୍ଧି ଦିଏ, ମୁଁ ପ୍ରବାସକୁ ଗଲେ, ଏ ଶୋକଗ୍ରସ୍ତା ହୁଏ, ଏ ବୀରପୁତ୍ର ପ୍ରସବ କରିଥିଲେ ମଧ୍ୟ ମୋର ବିୟୋଗ ସହ୍ୟକରି ଏ କଅଣ ଗୃହଧର୍ମ ପାଳନ କରିପାରିବ ?" । ୨୦ ।

"ସମୁଦ୍ର ମଧ୍ୟରେ ନୌକା ଭଗ୍ନହେଲେ ଆରୋହୀଗଣ ବିପନ୍ନହେଲା ପରି ମୋ ଅନ୍ତେ ମୋର ପୁତ୍ର କନ୍ୟାଗଣ କିପରି ପରମୁଖାପେକ୍ଷୀ ହୋଇ ଜୀବନ ଯାପନ କରିବେ ? । ୨୧ ।

ପୁରଞ୍ଜନ ଯଥାର୍ଥରେ ଚୈତନ୍ୟସ୍ୱରୂପ, ଅତଏବ ଶୋକାଦିର ଅଯୋଗ୍ୟ । କିନ୍ତୁ ସେ ଏହିପରି ଦୀନଭାବରେ ଶୋକକରନ୍ତେ ଭୟ ତାହାଙ୍କୁ ଗ୍ରହଣ କରିବାର ସଂକଳ୍ପ କଲା । ୨୨ ।

ଯବନମାନେ ତାହାଙ୍କୁ ବନ୍ଧନକରି ସ୍ୱସ୍ଥାନକୁ ନେବାକୁ ଗ୍ଲହିଁଲେ, ତାହାଙ୍କର ଅନୁଚରମାନେ ଶୋକାକୁଳ ହୋଇ ପଶ୍ଚାତ୍ ଅନୁସରଣ କଲେ । ୨୩ ।

ଏହି ପୁରୀମଧ୍ୟସ୍ଥ ପୁରରକ୍ଷକ ସର୍ପ ମଧ୍ୟ ଅବଶେଷରେ ତାଙ୍କୁ ପରିତ୍ୟାଗ କଲା, ତହୁଁ ସେ ପୁରୀ ବିଶୀର୍ଣ୍ଣ ହୋଇ ସ୍ୱୀୟ ପ୍ରକୃତି ପ୍ରାପ୍ତ ହେଲେ । ପ୍ରବଳ ପରାକ୍ରାନ୍ତ ଯବନଦୂତମାନେ ଯେତେବେଳେ

ମୋର ପ୍ରବାସେ ଏ ସୁନ୍ଦରୀ
ବିରହ ଦୁଃଖେ ଛାଡ଼ିବ ଝୁରି
ଏ ଧର୍ମ୍ମ ଗୃହସ୍ଥମାନଙ୍କ
ତଥାପି ପାଳିବେ ଆତଙ୍କ ।୧୯,୨୦
ଏ ପୁତ୍ର କନ୍ୟା ନ ରହିବେ
ମୁଁ ମଲେ ଅବଶ୍ୟ ମରିବେ
ମୋ ଅନ୍ତେ ଏ ସର୍ବେ ମରିବେ
କିବା ଭକ୍ଷିବେ କାହିଁଥିବେ
ଯେହ୍ନେ ସମୁଦ୍ର ମଧ୍ୟେ ନାବ
ଭଙ୍ଗେ ଜଳସ୍ଥ ପ୍ରାଣୀ ସର୍ବ
ତେସନେ ଏ ସର୍ବେ ମରିବେ
ଆଉ ଏ କେହି ନ ବଞ୍ଚିବେ ।୨୧।
ଏମନ୍ତେ କାର୍ପଣ୍ୟ ବୁଦ୍ଧିରେ
ସେ ରାଜା ବହୁ ଶୋକ କରେ
ଏମନ୍ତେ ଭଜନ୍ତେ ରାଜନ
କାଳ ହୋଇଲା ଅବସାନ
ରାଜାକୁ ଧରି ନେବାପାଇଁ
ଭୟ ମିଳିଲା ବେଗ ହୋଇ
ପଶୁର ପ୍ରାୟେ ବନ୍ଦୀ କଲା
ତକ୍ଷଣେ ଉଦ୍ରୋଧ ଛାଡ଼ିଲା
ଧରିଣ ଯବନଙ୍କୁ ବଳେ
ଆପଣା ନିଜସ୍ଥାନେ ନେଲେ
ତା ଅନୁଚର ସଙ୍ଗେ ଯେହି
ସପକ୍ଷ ତାକୁ କେହି ନାହିଁ
ସେ ସର୍ବେ ଆକୁଳେ ଶୋଚନ୍ତି
ରାଜାକୁ ସୁମରି କାନ୍ଦନ୍ତି ।୨୨,୨୩
ଦ୍ୱାରେ ଯେ ଥିଲା ବୃଦ୍ଧ ଅହି
ତକ୍ଷଣେ ଛାଡ଼ି ଅଗ୍ରେ ସେହି
ସେ ରାଜା ସଙ୍ଗତେ ଗମିଲା
ତା ଅନ୍ତେ ପୁର ନଷ୍ଟ ଗଲା ।୨୪।

ବିକୃଷ୍ୟମାଣଃ ପ୍ରସଭଂ ଯବନେନ ବଲୀୟସା ।
ନାବିନ୍ଦତ୍ ତମସାବିଷ୍ଟଃ ସଖାୟଂ ସୁହୃଦଂ ପୁରଃ । ୨୫ ।
ତଂ ଯଜ୍ଞପଶବୋଽନେନ ସଂଜ୍ଞପ୍ତା ଯେଽଦୟାଳୁନା ।
କୁଠାରୈଶ୍ଚିଚ୍ଛିଦୁଃ କ୍ରୁଦ୍ଧାଃ ସ୍ମରନ୍ତୋଽମୀବମସ୍ୟ ତତ୍ । ୨୬ ।
ଅନନ୍ତପାରେ ତମସି ମଗ୍ନୋ ନଷ୍ଟସ୍ମୃତିଃ ସମାଃ ।
ଶାଶ୍ୱତୀରନୁଭୂୟାର୍ତ୍ତିଂ ପ୍ରମଦାସଙ୍ଗଦୂଷିତଃ । ୨୭ ।

---

ପୁରଞ୍ଜନଙ୍କୁ ବଳପୂର୍ବକ ଆକର୍ଷଣ କଲେ, ସେତେବେଳେ ଅଜ୍ଞାନାନ୍ଧକାରାଚ୍ଛନ୍ନ ପୁରଞ୍ଜନ ତାହାଙ୍କର ପୂର୍ବ ହିତକାମୀ ବନ୍ଧୁଙ୍କୁ ମଧ୍ୟ ସ୍ମରଣକରି ପାରିଲେ ନାହିଁ । ୨୪;୨୫ ।

ରାଜା ନିର୍ଦ୍ଦୟ ଭାବରେ ଯଜ୍ଞରେ ଯେଉଁ ପଶୁମାନଙ୍କୁ ବଧ କରିଥିଲେ, ସେ ପରଲୋକରେ ଉପସ୍ଥିତ ହୁଅନ୍ତେ ସେମାନେ ପୂର୍ବ ନିଷ୍ଠୁରତା ସ୍ମରଣକରି କୁଠାର ହସ୍ତରେ ତାଙ୍କୁ ଛିନ୍ନ ଭିନ୍ନ କରିବାକୁ ଉପସ୍ଥିତ ହେଲେ । ୨୬ ।

ନାରୀ ସଙ୍ଗଦୋଷ ହେତୁରୁ ସେ ଅନ୍ଧକାରରେ ନିମଗ୍ନ ଥିବାରୁ ତାହାଙ୍କର ସ୍ୱରୂପ ସ୍ମୃତି ନଷ୍ଟ ହୋଇ ଥିବାରୁ ସେ ବହୁକାଳଯାଏ କଷ୍ଟ ଭୋଗକଲେ । ୨୭ ।

---

ଯବନପତି ବଳବନ୍ତେ
ରାଜାକୁ ଧରି ଓଟାରନ୍ତେ
ସେ ଅତି ବ୍ୟାକୁଳେ ରାଜନ
ରୋଦନ କରଇ ଉଚସ୍ୱନ
ସେ ମୃତ୍ୟୁ ଦଣ୍ଡେ ପୀଡ଼େ ଦେହ
ସେ ଦୁଃଖ କେବା ପାରେ ସହି
ଯେସନେ ସୂତ-ରନ୍ଧ୍ରଗତେ
ମତ୍ତ ବାରଣ ଉଚ୍ଛୁଡ଼ନ୍ତେ
ତେସନେ ପୀଡ଼ିତ ଶରୀରେ
ଦୁଃସହ ଦୁଃଖ ମୃତ୍ୟୁ ଘୋରେ
ସେ ରାଜା ଅଜ୍ଞାନ ହୋଇଲା
ଅଗ୍ରତେ ହରି ନ ଭଜିଲା
ତାହାଙ୍କୁ ନ ଭଜିଲା ଯେଣୁ
ସେ ମୃତ୍ୟୁଭୟ ଦଣ୍ଡ ତେଣୁ ।୨୫।
ଯଜ୍ଞାଦି ପୁଣ୍ୟ କର୍ମ୍ମ ଯେତେ
ରକ୍ଷଣେ ନୋହିଲେ ସମର୍ଥେ

ସେକାମ୍ୟ କର୍ମ୍ମେ ଯଜ୍ଞକରି
ଅନେକ ପଶୁ ଥିଲା ମାରି
ନିର୍ଦ୍ଦୋଷ ଜୀବଙ୍କୁ ରାଜନ
ଯଜ୍ଞେ ବଧିଲା ପ୍ରତିଦିନ
ସେ ଦୋଷ ମନେ ଧରିଥିଲେ
ତକ୍ଷଣେ ରାଜାକୁ ଭେଟିଲେ
ବେଗେ ବେଢ଼ିଲେ ପଶୁଗଣେ
କୋପେ କୁଠାରି ତୀକ୍ଷ୍ଣ ବାଣେ
ନାନାଦି ତୀକ୍ଷ୍ଣ ଶସ୍ତ୍ର ଧରି
କାଟନ୍ତି ସେ ଦୁଃଖ ସୁମରି
ତୁଳା ପ୍ରମାଣେ ଅବଶେଷେ
ସେ ପଶୁଗଣେ ଦନ୍ତେ ରୋଷେ
ଭକ୍ଷନ୍ତି ଅସ୍ଥି ଶେଷ ଯାଏ
ନିର୍ଦ୍ଦୟ ଚିତ୍ତେ ସେ ନିର୍ଭୟେ ।୨୬
ଦୁଃସହ ଦୁଃଖ ପୀଡ଼ା ଯେତେ
ସେ ସହେ କର୍ମ୍ମର ଆୟତ୍ତେ

ଯେଣୁ ସେ କୁସଙ୍ଗେ ରାଜନ
ପଡ଼ି ବିଷୟ ଦ୍ୱନ୍ଦେ କ୍ଷୀଣ
ହରି ଚରଣ ନ ଭଜିଲା
ସେ ଘେନି ଏ କଷ୍ଟ ଲଭିଲା
ପଡ଼ିଲା ଅନ୍ଧତମ ଘୋରେ
କିଛି ନ ସ୍ଫୁରେ ତା ମନରେ
କୃଷ୍ଣ ଅଭାବେ ମୂଢ଼ମତି
ଏଣୁ ଦୁରନ୍ତ ମ୍ଳେଚ୍ଛ ଗତି
ନରକେ ବହୁ ସମ୍ବତ୍ସର
ସେ ଭୋଗ କଲା ନୃପବର
ଏମନ୍ତେ ନାନା ଦୁଃଖେ ପଡ଼ି
ଯେଣୁ ସ୍ୱଧର୍ମ୍ମ ମାର୍ଗ ଛାଡ଼ି
ଈଶ୍ୱରବାକ୍ୟ ବେଦବାଣୀ
ଅଜ୍ଞାନେ ତେଜିଲା ନ ଜାଣି
ତେଣୁ କର୍ମ୍ମାନୁସାରେ ତାର
ଜନ୍ମିଲା ବଦର୍ଭ ମନ୍ଦିର

ତାମେବ ମନସା ଗୃହ୍ଣନ୍ ବଭୂବ ପ୍ରମଦୋତ୍ତମା ।
ଅନନ୍ତରଂ ବିଦର୍ଭସ୍ୟ ରାଜସିଂହସ୍ୟ ବେଶ୍ମନି । ୨୮ ।
ଉପୟେମେ ବୀର୍ଯ୍ୟପଣାଂ ବୈଦର୍ଭୀଂ ମଲୟଧ୍ୱଜଃ ।
ଯୁଧି ନିର୍ଜିତ୍ୟ ରାଜନ୍ୟାନ୍ ପାଣ୍ଡ୍ୟଃ ପରପୁରଞ୍ଜୟଃ । ୨୯ ।
ତସ୍ୟାଂ ସ ଜନୟାଞ୍ଚକ୍ରେ ଆତ୍ମଜାମସିତେକ୍ଷଣାମ୍ ।
ଯବୀୟସଃ ସପ୍ତ ସୁତାନ୍ ସପ୍ତଦ୍ରବିଡ଼ଭୂଭୃତଃ । ୩୦ ।
ଏକୈକସ୍ୟାଭବତ୍ ତେଷାଂ ରାଜନ୍ନର୍ବୁଦମର୍ବୁଦମ୍ ।
ଭୋକ୍ଷ୍ୟତେ ଯଦ୍‌ବଂଶଧରୈର୍ମହୀ ମନ୍ୱନ୍ତରଂ ପରମ୍ । ୩୧ ।

---

ଏହି ନାରୀମାନଙ୍କୁ ମନେ ମନେ ଚିନ୍ତାକରି ସେ ଦେହତ୍ୟାଗ କରିଥିଲେ । ପରଜନ୍ମରେ ସେ ବିଦର୍ଭ ରାଜେଶ୍ୱରଙ୍କ ଗୃହରେ ଗୋଟିଏ ଉତ୍ତମ ଲଳନା ହୋଇ ଜାତ ହେଲେ । ୨୮ ।

ତାହାଙ୍କ ବିବାହରେ ପରାକ୍ରମହିଁ ପଣ୍ୟ ସ୍ୱରୂପ ନିର୍ଦ୍ଦିଷ୍ଟ ହୋଇଥିଲା, ପାଣ୍ଡ୍ୟଦେଶର ପରପୁରଞ୍ଜୟୀ ମଳୟଧ୍ୱଜ ଯୁଦ୍ଧରେ କ୍ଷତ୍ରୀୟମାନଙ୍କୁ ପରାଜିତ କରି ତାହାଙ୍କ କରଗ୍ରହଣ କରିଥିଲେ । ୨୯ ।

ରାଜା ତାହାଙ୍କ ଗର୍ଭରେ ଗୋଟିଏ ଅସିତ ଲୋଚନା କନ୍ୟା ଓ ସାତୋଟି ପୁତ୍ର ଉତ୍ପାଦନ କରିଥିଲେ, ଏହି ସାତପୁତ୍ର ପରେ ଦ୍ରବିଡ଼ଦେଶର ରାଜା ହୋଇଥିଲେ । ୩୦ ।

ସେମାନଙ୍କର ପ୍ରତ୍ୟେକଙ୍କର ଏକ ଏକ ଅର୍ବୁଦ ପରିମାଣ ପୁତ୍ର ଜନ୍ମିଥିଲେ । ଏହି ପୁତ୍ର ପୌତ୍ରାଦି ସମଗ୍ର ଭୂମଣ୍ଡଳ ମନ୍ୱନ୍ତରରେ ଏବଂ ତତ୍‌ପରେ ମଧ ଭୋଗ କରିବେ । ୩୧ ।

---

ସେ ରାଜା ମରଣ ସମୟେ
ସ୍ତ୍ରୀସଙ୍ଗ ଭାବିଲା ହୃଦୟେ
ତେଣୁ ସେ ପ୍ରମଦା ହୋଇଲା
ପୁରୁଷଅଙ୍ଗ ପ୍ରତେଜିଲା
ସେ ପତିବ୍ରତା-ସଙ୍ଗଫଳେ
ଜନ୍ମ ଲଭିଲା ସାଧୁକୁଳେ
ତେଣୁ ସେ ସାଧୁସଙ୍ଗେ ପୁଣି
ଜ୍ଞାନ ଭକତି ପରିମାଣି
ବିଦର୍ଭମନ୍ଦିରେ ସୁନ୍ଦରୀ
ଜନ୍ମ ଲଭିଲା ଦେହ ଧରି ।୨୭,୨୮
ମଳୟଧ୍ୱଜନାମେ ରାଜା
ସେ ବଇଷ୍ଣବ ମହାତେଜା

କନ୍ୟାର ରୂପ ଗୁଣ ଶୁଣି
ଚିତ୍ତେ କଳିଲା ନୃପମଣି
ସେ ସୈନ୍ୟ ସାମନ୍ତ ସାଜିଲା
ବିଦର୍ଭ ଦେଶେ ବିଜେ କଲା
ସେ ରାଜାସଙ୍ଗତେ ରାଜନ
ଯୁଦ୍ଧେ ଜିଣିଲା ରାଜ୍ୟ ଧନ
ବଳେ ହରିଲା ତା ଦୁଲଣୀ
ବିବାହ ହେଲା ନୃପମଣି
ମଳୟଧ୍ୱଜ ନୃପବର
ଦ୍ରବିଡ଼ ଦେଶେ ଅଧିକାର ।୨୯।
ସେ ପତ୍ନୀଗର୍ଭଗତେ ତାର
କନ୍ୟାଏ ଜନ୍ମିଲା ସୁନ୍ଦର

ଶ୍ରୀକୃଷ୍ଣସେବାରୁଚି ନାମ
ତା ନାମ ଦେଲା ସେ ରାଜନ
ସପତ ତନୟ ଅନ୍ତରେ
ଜନ୍ମିଲେ ତା ନାରୀ ଉଦରେ
ଶ୍ରବଣ କୀର୍ତ୍ତନ ସେ ଆଦି
ଯେ ସପ୍ତ ନାମେ ଭକ୍ତି ସିଦ୍ଧି ।୩୦।
ଏବଂ ଅନେକ ତାହାଙ୍କର
ଅର୍ବୁଦ ଅର୍ବୁଦ କୁମର
ବଂଶର ସଂଖ୍ୟା ତା ନଯାଇ
ଅସଂଖ୍ୟ ଅପ୍ରମିତ ହୋଇ
ଏ ସର୍ବେ ମହୀ ଭୋଗ କଲେ
ଆନନ୍ଦେ କୃଷ୍ଣଙ୍କୁ ଭଜିଲେ ।୩୧।

ଅଗସ୍ତ୍ୟଃ ପ୍ରାଗ୍‌ଦୁହିତରମୁପଯେମେ ଧୃତବ୍ରତାମ୍ ।
ଯସ୍ୟାଂ ଦୃଢ଼ଚ୍ୟୁତୋ ଜାତ ଇଧ୍ମବାହାତ୍ମଜୋ ମୁନିଃ । ୩୨ ।
ବିଭଜ୍ୟ ତନୟେଭ୍ୟଃ କ୍ଷ୍ମାଂ ରାଜର୍ଷିର୍ମଲୟଧ୍ୱଜଃ ।
ଆରିରାଧୟିଷୁଃ କୃଷ୍ଣଂ ସ ଜଗାମ କୁଲାଚଳମ୍ । ୩୩ ।
ହିତ୍ୱା ଗୃହାନ୍ ସୁତାନ୍ ଭୋଗାନ୍ ବୈଦର୍ଭୀ ମଦିରେକ୍ଷଣା ।
ଅନ୍ୱଧାବତ ପାଣ୍ଡ୍ୟେଶଃ ଜ୍ୟୋତ୍ସ୍ନେବ ରଜନୀକରମ୍ । ୩୪ ।
ତତ୍ର ଚନ୍ଦ୍ରବସା ନାମ ତାମ୍ରପର୍ଣ୍ଣୀ ବଟୋଦକା ।
ତତ୍‌ପୁଣ୍ୟସଲିଳୈର୍ନିତ୍ୟମୁଭୟତ୍ରାତ୍ମନୋ ମୃଜନ୍ । ୩୫ ।
କନ୍ଦାଷ୍ଟିଭିର୍ମୂଲଫଲୈଃ ପୁଷ୍ପପର୍ଣ୍ଣୈସ୍ତୃଣୋଦକୈଃ ।
ବର୍ତ୍ତମାନଃ ଶନୈର୍ଗାତ୍ରକର୍ଷଣଂ ତପ ଆସ୍ଥିତଃ । ୩୬ ।

---

ତଦନନ୍ତର ଅଗସ୍ତ୍ୟ ଧୃତବ୍ରତା ସେହି ପ୍ରଥମା ଦୁହିତାଙ୍କୁ ବିବାହ କରିଥିଲେ । ଏହାଙ୍କର ଅପର ନାମ ଇଧ୍ମବାହ ହେବାରୁ ସେ ଇଧ୍ମବାହାତ୍ମଜ ବୋଲି ଖ୍ୟାତିଲାଭ କରିଥିଲେ । ୩୨ ।

ରାଜର୍ଷି ମଳୟଧ୍ୱଜ ଶ୍ରୀକୃଷ୍ଣ ଆରାଧନାଭିଳାଷୀ ହୋଇ ନିଜର ପୁତ୍ରମାନଙ୍କ ମଧ୍ୟରେ ପୃଥିବୀ ଭାଗ କରିଦେଇ ତପସ୍ୟା କରିବାକୁ କୁଳାଚଳକୁ ଗମନକରିଥିଲେ । ଜ୍ୟୋତ୍ସ୍ନା ଚନ୍ଦ୍ରାନୁଗାମିନୀ ହେଲାପରି ବିଦର୍ଭ ରାଜକନ୍ୟା ଗୃହ, ପୁତ୍ର ଓ ଅନ୍ୟାନ୍ୟ ଭୋଗବିଳାସ ତ୍ୟାଗକରି ପତି ପାଣ୍ଡ୍ୟରାଜଙ୍କୁ ଅନୁଗମନ କରିଥିଲେ । ୩୩,୩୪ ।

ପାଣ୍ଡ୍ୟରାଜା କୁଳାଚଳକୁ ଗମନକରି ତତ୍ରତ୍ୟ ଚନ୍ଦ୍ରବସା, ତାମ୍ରପର୍ଣ୍ଣୀ, ବଟୋଦକା ପ୍ରଭୃତି ନଦୀର ପୁଣ୍ୟ ଜଳରେ ନିତ୍ୟ ସ୍ନାନକରି ବାହାରଭ୍ୟନ୍ତର ମଳଦୂରୀକରଣ, ଓ ପାନାଦିଦ୍ୱାରା ମଳକ୍ଷାଳନ ପୂର୍ବକ କନ୍ଦ, ଅଷ୍ଟି, ମୂଳ, ଫଳ, ପୁଷ୍ପ, ପତ୍ର, ତୃଣ ଏବଂ ଜଳମାତ୍ର ଭୋଜନ ଓ ପାନକରି ତପସ୍ୟାକଲେ, ତପଶ୍ଚରଣରେ ତାହାଙ୍କର ଶରୀର କୃଶ ହୋଇଗଲା । ୩୫,୩୬ ।

---

ମଳୟଧ୍ୱଜର ଦୁହିତା
ସେ ଗୁଣବତୀ ଧୃତବ୍ରତା
ଅଗସ୍ତି ତାରେ ବିଭା ହେଲେ
ତା ଗର୍ଭେ ଦୃଢ଼ଚ୍ୟୁତ ହେଲେ ।୩୨
ମଳୟଧ୍ୱଜ ରାଜଋଷି
ପୁତ୍ରଙ୍କୁ ଡକାଇଲେ ବସି
ବିଭାଗ କରି ରାଜ୍ୟ ଖଣ୍ଡ
ପୁତ୍ରଙ୍କୁ ଦେଲେ ଛତ୍ର ଦଣ୍ଡ
କୃଷ୍ଣଭଜନେ ନରସାଇଁ
ରହିଲେ କୁଳାଚଳେ ଯାଇଁ ।୩୩।
ତାର ବୈଦର୍ଭୀ ନାମେ ଜାୟା
ଛାଡ଼ିଣ ଗୃହ ସୁତ ମାୟା

ସେ ରାଜାପଛେ ଗୋଡ଼ାଇଲା
ସୁଧାଂଶୁ ପ୍ରାୟେ ଶୋଭା କଲା ।୩୪
ସେ କୁଳାଚଳ ଗିରିବର
ସକଳ ତୀର୍ଥଙ୍କ ମନ୍ଦିର
ତୀର୍ଥର ନାମ ଏକ ଏକ
ଯେ ତାମ୍ରପର୍ଣ୍ଣୀ ବଟୋଦକ
ଅପରେ ଚନ୍ଦ୍ରବସା ନାମ
ଏ ଆଦି ପୁଣ୍ୟ ତୀର୍ଥ ଧାମ
କୃଷ୍ଣ ଭକତ ସୁସାଧନେ
ତପ ଆଚରି ଶୁଦ୍ଧ ମନେ
ସେ ପୁଣ୍ୟ ତୀର୍ଥ ଜଳେ ନିତ
ସ୍ନାନାଦି ମାର୍ଜ୍ଜନ କରନ୍ତ

ଦୂରନ୍ତ ବାହ୍ୟ ଅନ୍ତ ମଳ
ସେ ଜଳେ ହୋଇଲା ନିର୍ମ୍ମଳ
ତପ ସାଧନେ ଅତିରେକ
ଭକ୍ଷଣେ ଫଳ ମୂଳ ଶାକ
ପୁଷ୍ପ କୋମଳ ପତ୍ର ଜଳ
ତୃଣାଦି ଶଯ୍ୟାରେ ନିଶ୍ଚଳ
କଠୋର ତପ ଆଚରିଲେ
ଶରୀର ତପେ ଶୁଖାଇଲେ ।୩୫,୩୬

ଶୀତୋଷ୍ଣବାତବର୍ଷାଣି କ୍ଷୁତ୍‌ପିପାସେ ପ୍ରିୟାପ୍ରିୟେ ।
ସୁଖଦୁଃଖେ ଇତି ଦ୍ୱନ୍ଦ୍ୱାନ୍ୟଜୟତ୍ ସମଦର୍ଶନଃ । ୩୭ ।
ତପସା ବିଦ୍ୟୟା ପକ୍ୱକଷାୟୋ ନିୟମୈର୍ଯମୈଃ ।
ଯୁଯୁଜେ ବ୍ରହ୍ମଣ୍ୟାତ୍ମାନଂ ବିଜିତାକ୍ଷାନିଲାଶୟଃ । ୩୮ ।
ଆସ୍ତେ ସ୍ଥାଣୁରିବୈକତ୍ର ଦିବ୍ୟଂ ବର୍ଷଶତଂ ସ୍ଥିରଃ ।
ବାସୁଦେବେ ଭଗବତି ନାନ୍ୟଦ୍‌ବେଦୋଦ୍‌ବହନ୍ ରତିମ୍ । ୩୯ ।
ସ ବ୍ୟାପକତୟାତ୍ମାନଂ ବ୍ୟତିରିକ୍ତତୟାତ୍ମନି ।
ବିଦ୍ୱାନ୍ ସ୍ୱପ୍ନ ଇବାମର୍ଶସାକ୍ଷିଣଂ ବିରରାମ ହ । ୪୦ ।
ସାକ୍ଷାଦ୍‌ଭଗବତୋକ୍ତେନ ଗୁରୁଣା ହରିଣା ନୃପ ।
ବିଶୁଦ୍ଧଜ୍ଞାନଦୀପେନ ସ୍ଫୁରତା ବିଶ୍ୱତୋ ମୁଖମ୍ । ୪୧ ।

---

ସେ ଶୀତ, ଉଷ୍ଣ, ବାତ, ବର୍ଷା, କ୍ଷୁଧାପିପାସା, ପ୍ରିୟ, ଅପ୍ରିୟ, ସୁଖ, ଦୁଖ ଇତ୍ୟାଦି ଦ୍ୱନ୍ଦ୍ୱଭାବମାନ ଜୟକରି ସମଦର୍ଶୀ ହୋଇଥିଲେ । ତପସ୍ୟା ଉପାସନା, ଯମ ନିୟମାଦିଦ୍ୱାରା ତାଙ୍କର କାମାଦି ବାସନା ଦଗ୍ଧ ହୋଇ ଥିଲା ଏବଂ ସେ ଇନ୍ଦ୍ରିୟ,ପ୍ରାଣ ଓ ଚିତ୍ତଜୟକରି ଆତ୍ମାକୁ ପରଂବ୍ରହ୍ମଙ୍କଠାରେ ଯୋଜନା କରିଥିଲେ ।୩୭,୩୮।

ଏହାପରେ ସ୍ଥାଣୁତୁଲ୍ୟ ସ୍ଥିର ହୋଇ ସେ ଏକସ୍ଥାନରେ ଶହେବର୍ଷ ଅତିବାହିତ କଲେ ଏବଂ ଭଗବାନ୍ ବାସୁଦେବଙ୍କଠାରେ ନିରତହୋଇ ଅନ୍ୟ ସମସ୍ତ ବସ୍ତୁରୁ ଆସକ୍ତି ତ୍ୟାଗ କଲେ । ୩୯ ।

ହେ ରାଜନ୍ ! ରାଜା ମଳୟଧ୍ୱଜ ଗୁରୁରୂପୀ ଭଗବାନ୍ ପରମେଶ୍ୱର ବିଷ୍ଣୁଙ୍କ ଉପଦେଶ ଲାଭକରି ବିଶୁଦ୍ଧ ଜ୍ଞାନଦୀପ ସାହାଯ୍ୟରେ ଅନ୍ତଃକରଣବୃତ୍ତି ପ୍ରକାଶକ ଆତ୍ମାକୁ ସ୍ୱପ୍ନାବସ୍ଥା ତୁଲ୍ୟ ଦେହାଦି ପ୍ରକାଶକ ଓ ଦେହାଙ୍ଗଭିନ୍ନରୂପେ ଆତ୍ମାରେ ଅନୁଭବ କରି ସଂସାରରୁ ଦୃଢରୂପେ ବିରତି ଲାଭ କରିଥିଲେ ।୪୦,୪୧।

---

ଶୀତ ଉଷ୍ଣାଦି କ୍ଷୟତାପ
କ୍ଷୁଧା ପିପାସା ଚେଷ୍ଟ ରୂପ
ଦୁଃଖ ସୁଖାଦି ସମ ତାହାରେ
ଶୋକ ହରଷ ଏକ କରେ
ଏ ସର୍ବ ଜିଣି ସେ ରାଜନ
ଭର୍ଜିତ ପ୍ରକାଶିକି ମନ
ମିତ୍ର ଅରିର ସମ ତାର
ଲାଭ ଅଲାଭ ଏକାକାର । ୩୭ ।
ଏରୂପେ ସାଧନ ସେ କଲେ
ବ୍ରହ୍ମରେ ଆତ୍ମା ନିବେଶିଲେ
ମନ ପବନ ବଶ କରି
ଦୁର୍ଜୟ ଇନ୍ଦ୍ରିୟ ନିବାରି । ୩୮ ।

ଦୃଢ଼ ଆସନେ ନୃପବର
ସ୍ଥାଣୁ ସମାନେ ହୋଇ ସ୍ଥିର
ଶତେ ବରଷ ଦେବମାନେ
ନିଶ୍ଚଳେ ବସି ଯୋଗଧ୍ୟାନେ
ଶ୍ରୀବାସୁଦେବେ କରି ରତି
ଦେହ ବିଷୟ ନ ଜାଣନ୍ତି
ଆତ୍ମାରେ ଆତ୍ମାକୁ ଦେଖିଲେ
ଆନନ୍ଦସାଗରେ ବୁଡ଼ିଲେ
ସେ ଆତ୍ମା ବ୍ୟାପିତ ସକଳ
ନ ଜାଣେ ବିଷୟ ଜଞ୍ଜାଳ
ନିଶ୍ଚେ ଜାଣିଲେ ମିଥ୍ୟାମୟେ
ଏ ସର୍ବ ସ୍ୱପ୍ନାବସ୍ଥା ପ୍ରାୟେ

ଯେସନେ ସ୍ୱପ୍ନେଣ ଦେଖଇ
ଆପଣା ଶିରଚ୍ଛେଦ ହୋଇ
ପ୍ରତ୍ୟକ୍ଷେ ମଣେ ତାହା ସତ୍ୟ
ଅଜ୍ଞାନ ଭ୍ରମେ ମୋହ ଚିତ୍ତ
ତହିଁ ଆତ୍ମାର ଲିପ୍ତ ନାହିଁ
ଏରୂପେ ଆତ୍ମା ସର୍ବଦେହ ।୩୯,୪୦
ହରି ଯେ ଗୁରୁ ଭଗବାନ
କହି ଯେ ଥିଲେ ଦିବ୍ୟ ଜ୍ଞାନ
ସେ ଜ୍ଞାନ-ଦୀପ ଦୀପ୍ତା ପାଇ
ଦେଖିଲେ ଆତ୍ମା ସର୍ବ ଦେହ
ଆତ୍ମାକୁ ବ୍ରହ୍ମରେ ଦେଖିଲେ
ବ୍ରହ୍ମ ଆତ୍ମାରେ ନିବେଶିଲେ

ପରେ ବ୍ରହ୍ମଣି ଚାତ୍ମାନଂ ପରଂ ବ୍ରହ୍ମ ତଥାତ୍ମନି ।
ଈକ୍ଷମାଣୋ ବିହାୟେକ୍ଷାମସ୍ମାଦୁପରରାମ ହ । ୪୨ ।
ପତିଂ ପରମଧର୍ମଜ୍ଞଂ ବୈଦର୍ଭୀ ମଳୟଧ୍ୱଜମ୍ ।
ପ୍ରେମ୍ଣା ପର୍ଯ୍ୟଚରଦ୍ଧିତ୍ୱା ଭୋଗାନ୍ ସା ପତିଦେବତା । ୪୩ ।
ଚୀରବାସା ବ୍ରତକ୍ଷାମା ବେଣୀଭୂତଶିରୋରୁହା ।
ବଭାବୁପପତିଂ ଶାନ୍ତା ଶିଖା ଶାନ୍ତମିବାନଲମ୍ । ୪୪ ।
ଅଜାନତୀ ପ୍ରିୟତମଂ ଯଦୋପରତମଙ୍ଗନା ।
ସୁସ୍ଥିରାସନମାସାଦ୍ୟ ଯଥାପୂର୍ବମୁପାଚରତ୍ । ୪୫ ।
ଯଦା ନୋପଲଭେତାଙ୍ଘ୍ରାବୁଷ୍ମାଣଂ ପତ୍ୟୁରର୍ଚ୍ଚତୀ ।
ଆସୀତ୍ ସଂବିଗ୍ନହୃଦୟା ଯୂଥଭ୍ରଷ୍ଟା ମୃଗୀ ଯଥା । ୪୬ ।

---

ନୃପତି ତେଣୁ ନିଜକୁ ପରଂବ୍ରହ୍ମରେ ଏବଂ ପରଂବ୍ରହ୍ମକୁ ନିଜଠାରେ ଦର୍ଶନ କରିଥିଲେ । କିନ୍ତୁ ଅବଶେଷରେ ସେପରି ଦର୍ଶନ ମଧ୍ୟ ପରିତ୍ୟାଗ କରି ସଂସାରରୁ ବିରତ ହୋଇଥିଲେ । ୪୨ ।

ପତିଦେବତା ବିଦର୍ଭନନ୍ଦିନୀ ଯାବତୀୟ ଭୋଗବିଳାସ ପରିତ୍ୟାଗ କରି ପ୍ରେମପୂର୍ଣ୍ଣ ହୃଦୟରେ ପରମଧର୍ମଜ୍ଞ ପତି ମଳୟଧ୍ୱଜଙ୍କ ସେବା କରୁଥିଲେ । ୪୩ ।

ସେ ଚୀରବାସ (ବଳ୍କଳବସନ) ପରିଧାନ କରୁଥିଲେ, ବ୍ରତାନୁଷ୍ଠାନଦ୍ୱାରା ତାହାଙ୍କ ଶରୀର କ୍ଷୀଣ ହୋଇଥିଲା । ଶିର ଦେଶରେ କେଶପାଶ ବେଣୀରୂପେ ଲମ୍ବମାନ ହୋଇଥିଲା । ସେ ସ୍ୱାମିଙ୍କ ନିକଟରେ ନିର୍ଦ୍ଧୂମ ଅନଳ ଶିଖା ତୁଲ୍ୟ ଶାନ୍ତଭାବରେ ଅବସ୍ଥାନ କରୁଥିଲେ । ୪୪ ।

ମଳୟ ଧ୍ୱଜ ଯେ ପରଲୋକ ଗମନ କରିଅଛନ୍ତି ଏହା ନ ଜାଣିବା ପର୍ଯ୍ୟନ୍ତ ସେହି ଅଙ୍ଗନା ସ୍ଥିରାସନରେ ଉପବେଶନ କରି ପୂର୍ବପରି ପତିସେବା କରିବାକୁ ଲାଗିଲେ । ୪୫ ।

ପତିଙ୍କର ପଦସେବା କରୁ କରୁ ତାହା ଶୀତଳ ହୋଇଥିବାର ଅନୁଭବ କରି ସେ ଯୂଥଭ୍ରଷ୍ଟ ମୃଗୀ ତୁଲ୍ୟ ସେ ବ୍ୟାକୁଳିତା ହେଲେ । ୪୬ ।

---

ଯେ କିଛି ଭେଦବୁଦ୍ଧି ଥିଲା
ଏ ସର୍ବ ଅଜ୍ଞାନ ଖଣ୍ଡିଲା
ଏ ରୂପେ ଛାଡ଼ି କଳେବର
ଯେ ଯୋଗବନ୍ତ ଯୋଗେଶ୍ୱର
ନିର୍ମ୍ମଳ ଯୋଗାସନେ ବସି
ବିଶନ୍ତି ଧ୍ୟାନେ ଥିଲାପ୍ରାୟେ । ୪୧,୪୨
ବିଦର୍ଭ ସୁତା ପତିବ୍ରତା
ଛାଡ଼ି ବିଷୟ ଭୋଗ ଚିନ୍ତା

ଖଣ୍ଡି ଅମ୍ବର ପରିଧାନ
ବେଣୀ ପ୍ରବନ୍ଧେ କେଶମାନ
ପତି ସମୀପେ ବସି ଥାଇ
ଦେଖନ୍ତେ ଅତି ଶୋଭା ପାଇ
ଯେ ରୂପେ ଅଗ୍ନି ଶିଖାହୀନ
ସେ ରୂପେ ଦିଶନ୍ତି ରାଜନ
ରାଜା ହୋଇଲେ ମୃତ୍ୟୁଗତ
ରାଣୀକି ସେ ନୋହେ ବିଦିତ

ସୁସ୍ଥିର ଆସନେ ନୃପତି
ରାଣୀସେବାରେନଜାଣନ୍ତି । ୪୩-୪୫
ସ୍ୱାମିଚରଣେ ହସ୍ତ ଦେଲେ
ଉଷ୍ଣତା ଭାବ ନ ଜାଣିଲେ
ଦେଖିଲେ ପ୍ରାଣ ନାହିଁ ଦେହେ
ରାଣୀ ଅଜ୍ଞାନ ଶୋକ ମୋହେ
ଯେସନେ କୁରଙ୍ଗ ସଙ୍ଗହୀନ
ଏକାକେ ଭ୍ରମଇ ଯେସନ

ଆତ୍ମାନଂ ଶୋଚତୀ ଦୀନମବନ୍ଧୁଂ ବିକ୍ଳବାଶ୍ରୁଭିଃ ।
ସ୍ତନାବାସିଚ୍ୟ ବିପିନେ ସୁସ୍ୱରଂ ପ୍ରରୁରୋଦ ସା । ୪୭ ।
ଉତ୍ତିଷ୍ଠୋତ୍ତିଷ୍ଠ ରାଜର୍ଷେ ଇମାମୁଦଧିମେଖଳାମ୍ ।
ଦସ୍ୟୁଭ୍ୟଃ କ୍ଷତ୍ରବନ୍ଧୁଭ୍ୟୋ ବିଭ୍ୟତୀଂ ପାତୁମର୍ହସି । ୪୮ ।
ଏବଂ ବିଲପତୀ ବାଲା ବିପିନେଽନୁଗତା ପତିମ୍ ।
ପତିତା ପାଦୟୋର୍ଭର୍ତ୍ତୂ ରୁଦତ୍ୟଶ୍ରୂଣ୍ୟବର୍ତ୍ତୟତ୍ । ୪୯ ।
ଚିତିଂ ଦାରୁମୟୀଂ ଚିତ୍ୱା ତସ୍ୟାଂ ପତ୍ୟୁଃ କଳେବରମ୍ ।
ଆଦୀପ୍ୟ ଚାନୁମରଣେ ବିଲପନ୍ତୀ ମନୋ ଦଧେ । ୫୦ ।

---

ତଦନନ୍ତର ସେହି ଅରଣ୍ୟମଧ୍ୟରେ ବନ୍ଧୁହୀନ ଦଶାକୁ ନିଜ ଶୋକ କରୁ କରୁ ଅଶ୍ରୁଧାରାରେ ସ୍ୱୀୟ ସ୍ତନଯୁଗଳ ଅଭିଷିକ୍ତ କରି ସୁସ୍ୱରରେ ରୋଦନ କରିବାକୁ ଲାଗିଲେ । ୪୭ ।

ହେ ରାଜର୍ଷେ ! ଉଠ, ଦେଖ, ଜଳଧିବେଷ୍ଟିତା ଏହି ଧରଣୀ ଅଧାର୍ମିକ ଦସ୍ୟୁ ଓ କ୍ଷତ୍ରୀୟମାନଙ୍କ ଭୟରେ ଭୀତାହୋଇ ଅଛି, ଏହାକୁ ରକ୍ଷାକରିବା ଆପଣଙ୍କର କର୍ତ୍ତବ୍ୟ । ୪୮ ।

ପତିଅନୁଗତ ବିଦର୍ଭ ରାଜକନ୍ୟା ବନମଧ୍ୟରେ ଏହିପରି ପତିଙ୍କର ପାଦପଦ୍ମରେ ପତିତ ହୋଇ ରୋଦନ କରୁ କରୁ ଅଶ୍ରୁବର୍ଷଣ କଲେ । ୪୯ ।

ତହୁଁ ଉତ୍ତାରୁ ସେ ଦାରୁମୟୀ ଚିତାରଚନାକରି ତହିଁରେ ପତିଙ୍କର କଳେବର ସ୍ଥାପନକରି ଅଗ୍ନିସଂଯୋଗ କଲେ ଏବଂ ଜାତର ସହି ମରଣସଂକଳ୍ପ କଲେ । ୫୦ ।

---

ତେସନେ ରାଣୀ ଛନ୍ନ ହୋଇ
କାନ୍ଦଇ ଅତି ଦୁଃଖେ ମୋହି
ନିକଟଃ ଜ୍ଞାତି ବନ୍ଧୁଜନ
ନ ଦେଖି ଅତି ଭୟେ ଛନ୍ନ
ରୋଦଇ ବିଚିତ୍ର ବିଳାପେ
ସେଘୋରବନେମନତାପେ ।୪୬,୪୭
ଉଠ ହେ ନୃପତିକେଶରି !
ଏ ଘୋର ନିଦ୍ରା ପରିହରି
କ୍ଷତ୍ରିୟ ଧର୍ମ୍ମ ଏ ନୁହଇ
ଶତ୍ରୁ ହସିବେ ନିନ୍ଦାବହି
ଏ ଯେ ଦୁର୍ଜ୍ଜୟ ଶୋକ ମୋର
ହେ ନାଥ ବେଗେ ଦୂର କର
ଉଦଧିମେଖଳା ଏ ମହୀ
ଦୁଷ୍ଟେ ନାଶିବେ କୋପ ବହି
ପ୍ରଜାଏ ହୋଇବେ କାତରେ
ଆଶ୍ରୟ ନ ପାଇ ବିମୁଖ
ରାଜଧର୍ମ ଏ ଭୂମିର
ଆରତଜନ-ଦୁଃଖହର । ୪୮ ।
ଏରୂପେ ନାନା ମନ ତାପେ
ରୋଦଇ ଉଚ୍ଚେ ସେ ବିଳାପେ
ତା ଅଶ୍ରୁ ଉଦକ ନିର୍ଝରେ
ନୟନୁ ପଡ଼ଇ ଭୂମିରେ
ହିମାଦ୍ରି ଶିଖେ ଚନ୍ଦ୍ର ଯେସନ୍ତେ
ତା ମୁଖପଙ୍କଜ ତେସନେ
କୁଚଅମ୍ବର ଧୌତ କରି
ଯେସନ୍ତେ ସ୍ରବତ ସୁରବାରି
ଏ ରୂପେ ଶନ୍ତାର୍ଣ୍ଣବ ଘୋରେ
ସେ ରାଣୀ ବୁଡ଼ିଲା ନିର୍ଭରେ
କଷ୍ଟେ ଭୂମିଗତେ ପଡ଼ି
କାନ୍ଦଇ ଶିରେ କର ତାଡ଼ି
ଏମନ୍ତେ କରନ୍ତେ ରୋଦନ
ଦିନ ହୋଇଲା ଅବସାନ
ଦେଖଇ ସଙ୍ଗେ କେହି ନାହିଁ
ରୋଦନକାଳ ଏ ନୁହଇ । ୪୯ ।
ଏମନ୍ତେ ସଧୀରେ ତରୁଣୀ
ଶୁଷ୍କ ଇନ୍ଧନ ବନୁ ଆଣି
ଚିତା ସଂଯୋଗି ବେଗବନ୍ତେ
ସେ ଘନେ ନିର୍ଜନେ ଏକାନ୍ତେ
ସ୍ୱାମିଙ୍କି ତହିଁ ନିବେଶିଲା
ବିଧାନେ ମୁଖାଗ୍ନି ସେ ଦେଲା
ଅନୁଗମନ ଯିବାପାଇଁ
ବସିଲା ସ୍ୱାମି ପଦଧ୍ୟାୟି । ୫୦ ।

ତନ୍ନ ପୂର୍ବତରଃ କଶ୍ଚିତ୍ ସଖା ବ୍ରାହ୍ମଣ ଆତ୍ମବାନ୍ ।
ସାନ୍ତ୍ୱୟନ୍ ବଲ୍ଗୁନା ସାମ୍ନା ତାମାହ ରୁଦତୀଂ ପ୍ରଭୋ । ୫୧ ।

ଶ୍ରୀବ୍ରାହ୍ମଣ ଉବାଚ ।

କା ତ୍ୱଂ କସ୍ୟାସି କୋ ବାୟଂ ଶୟାନୋ ଯସ୍ୟ ଶୋଚସି ।
ଜାନାସି କିଂ ସଖାୟଂ ମାଂ ଯେନାଗ୍ରେ ବିଚଚର୍ଥ ହ । ୫୨ ।
ଅପି ସ୍ମରସି ଚାତ୍ମାନମବିଜ୍ଞାତସଖଂ ସଖେ ।
ହିତ୍ୱା ମାଂ ପଦମନ୍ୱିଚ୍ଛନ୍ ଭୌମଭୋଗରତୋ ଗତଃ । ୫୩ ।

---

ହେ ରାଜନ୍ ! ସେଠାରେ ସେସମୟରେ ସ୍ୱସ୍ୱରୂପରେ ଅବସ୍ଥିତ କୌଣସି ପୂର୍ବତନସଖା ଗୋଟିଏ ବ୍ରାହ୍ମଣ ରୋଦନପରାୟଣା ବିଦର୍ଭରାଜକନ୍ୟାଙ୍କୁ ସାନ୍ତ୍ୱନା ଦେଇଥିଲେ । ୫୧ ।

ଶ୍ରୀବ୍ରାହ୍ମଣ କହିଲେ :—

"ତୁମ୍ଭେ କିଏ ଏବଂ କାହାର ପତ୍ନୀ ? ତୁମ୍ଭେ ଏ ଯେଉଁ ଶାୟିତ ପୁରୁଷପାଇଁ ରୋଦନ କରୁଅଛ, ସେବା କିଏ ? ତୁମ୍ଭେ ମୋତେ ଚହ୍ନିପାରୁଅଛ ? ମୁଁ ତୁମ୍ଭ ସଖା । ପୂର୍ବେ ତୁମ୍ଭେ ମୋ ସହିତ ସଖ୍ୟ ସୁଖ ଅନୁଭବ କରିଥିଲ । ୫୨ ।

ହେ ସଖେ ! ତୁମ୍ଭର କଣ ସ୍ମରଣ ହେଉନାହିଁ ଯେ ତୁମ୍ଭ ଅବିଜ୍ଞାତ କୌଣସି ସଖା ଥିଲା ? ତୁମ୍ଭେ ପାର୍ଥିବ ସୁଖରତ ହୋଇ ମୋତେ ତ୍ୟାଗକରି ଭୋଗସ୍ଥାନ ଅନ୍ୱେଷଣ କରିବାକୁ ଆସିଥିଲ ? । ୫୩ ।

---

ଅନନ୍ତ କରି ପ୍ରଦକ୍ଷିଣ
ସେ ତହୁଁ ପଡ଼ନ୍ତେ ହେଉଁଣ
ତକ୍ଷଣେ ବିପ୍ରେକ ମିଳିଲେ
ସେ ତାର ପୂର୍ବେ ସଖା ଥିଲେ
ସେ ତାର ହସ୍ତ ବେଗେ ଧରି
କହେ ପ୍ରବୋଧ ଶାନ୍ତ କରି ।୫୧।

ଶ୍ରୀ ବ୍ରାହ୍ମଣ ଉବାଚ—

ଶୁଣ ସୁନ୍ଦରି ମନୋହାରି !
କେ ତୁମ୍ଭେ କାହାର ତୁ ନାରୀ
ଏ କେ ଶୟନ ତୋର କନ୍ତ
କା ପାଇଁ କାନ୍ଦୁ ଯୁବତୀ ?
ସୁମରି କାନ୍ଦୁ ଯାର ପାଇଁ
ଏ ତୋର ଦୁଃଖ ନ ଘେନଇ
ତୁ ଯେ ବିଜ୍ଞାପୂ ଅବସ୍ଥରେ
ଏ ତୋର ସ୍ନେହ ଛାଡ଼ି ଦୂରରେ
ଗମିଲା ନିଜ କର୍ମ ବଶେ
ତୋତେ ଉପେକ୍ଷି ବନଦେଶେ
ତୁ ତାହା ନ ବୁଝି ସୁନ୍ଦରି
ବୃଥା ମରୁ ଶୋକ କରି
ଏ ପତି ହୋଇଥିଲା ତୋର
ସେ ଜୀବ ଅଂଶ ଆତ୍ମା ମୋର
ଯେଣୁ ତୁ ଆତ୍ମା ନ ଚହ୍ନିଲୁ
ଏଣୁ ଅଜ୍ଞାନେ ନିମଜ୍ଜିଲୁ
ମୁଁ ପୂର୍ବ ସଖାଟି ତୋହର
ତୁ ଜୀବ ଆତ୍ମା ଅଟୁ ମୋର
ଆପଣା ସଖା ନ ଚହ୍ନିଲୁ
ତୋ ଆତ୍ମା ଆପେ ନ ବୁଝିଲୁ
ତୁ ମୋତେ ଛାଡ଼ି ଏକା କରି
ଅଇଲୁ ମୃତ୍ୟୁ ଭୂମି ପୁରୀ
ଏ ଭୂମି ବହିଭୋଗ କଲୁ
ଏଣୁ ମୋସଙ୍ଗ ତୁ ତେଜିଲୁ ।୫୨,୫୩

ହଂସାବହଞ୍ଚ ତ୍ୱଞ୍ଚାର୍ଯ୍ୟ ସଖାୟୌ ମାନସାୟନୌ ।
ଅଭୂତାମନ୍ତରା ବୌକଃ ସହସ୍ରପରିବତ୍ସରାନ୍ । ୫୪ ।
ସ ତ୍ୱଂ ବିହାୟ ମାଂ ବନ୍ଧୋ ଗତୋ ଗ୍ରାମ୍ୟମତିର୍ମହୀମ୍ ।
ବିଚରନ୍ ପଦମଦ୍ରାକ୍ଷୀଃ କୟାଚିନ୍ନିର୍ମିତଂ ସ୍ତ୍ରିୟାମ୍ । ୫୫ ।
ପଞ୍ଚାରାମଂ ନବଦ୍ୱାରମେକପାଲଂ ତ୍ରିକୋଷ୍ଠକମ୍ ।
ଷଟ୍‌କୁଲଂ ପଞ୍ଚବିପଣଂ ପଞ୍ଚପ୍ରକୃତିସ୍ତ୍ରୀଧବମ୍ । ୫୬ ।
ପଞ୍ଚେନ୍ଦ୍ରିୟାର୍ଥା ଆରାମା ଦ୍ୱାରଃ ପ୍ରାଣା ନବ ପ୍ରଭୋ ।
ତେଜୋଽବନ୍ନାନି କୋଷ୍ଠାନି କୁଲମିନ୍ଦ୍ରିୟସଂଗ୍ରହଃ । ୫୭ ।

---

ହେ ଆର୍ଯ୍ୟ ! ତୁମ୍ଭେ ଓ ମୁଁ ଏ ଦିଓଟିହଂସ ମାନସରୋବରରେ ଏକତ୍ର ବାସ କରୁଥିଲୁ । ଆମ୍ଭେମାନେ ଗୃହଶୂନ୍ୟ ସହସ୍ରବର୍ଷ ବାସ କରିଥିଲୁ । ୫୪ ।

ହେ ସଖେ ! ତୁମ୍ଭେ ମୋତେ ଛାଡି ବିଷୟସୁଖ ଅନ୍ୱେଷଣକରି ପୃଥିବୀକୁ ଆଗମନକଲ ଏବଂ ବିଚରଣ କରୁ କରୁ କୌଣସି ସ୍ତ୍ରୀ କର୍ତ୍ତୃକ ବିନିର୍ମିତ ଗୋଟିଏ ପୁରୀ ଦର୍ଶନ କରିଥିଲ । ୫୫ ।

ଏହି ପୁରୀର ପାଞ୍ଚୋଟି ଉପବନ, ନଅଟିଦ୍ୱାର, ଗୋଟିଏ ରକ୍ଷକ, ତିନୋଟିକୋଷ୍ଠ, ଛଅଟିକୂଳ, ପାଞ୍ଚଟି ହଟ୍ଟ, ପାଞ୍ଚଟି ଉପାଦାନ ଏବଂ ଗୋଟିଏ ସ୍ତ୍ରୀ ଏହାର ଅଧୀଶ୍ୱରୀ ଥିଲେ । ୫୬ ।

ପଞ୍ଚେନ୍ଦ୍ରିୟ ଏହାର ପାଞ୍ଚଟି ଉପବନ, ନବପ୍ରାଣ ନବଦ୍ୱାର, ତେଜ, ଅନ୍ନ, ଜଳ ଏହିତିନୋଟି କୋଷ୍ଠ, ଛଅଟି ଇନ୍ଦ୍ରିୟ ଛଅଟି କୂଳ । ୫୭ ।

---

ତୋ ଆମ୍ଭ ଏକ ଦେହ ଅଂଶ
ଏ ମାନସରୋବରରେ ବାସ
ଏ ଦେହ ଅଂଶ ହଂସ ହୋଇ
ସେ ଗୃହ ଛାଡ଼ ଯେ ନ ଯାଇ
ସହସ୍ରେ ଯୁଗ ପର୍ଯ୍ୟନ୍ତେ
ମାନସେ ରହିଲୁ ଏକାନ୍ତେ ।୫୪।
ତୁ ମୋତେ ଛାଡ଼ଣ ସେଠାରେ
ଅଇଲୁ ଏ ପୃଥ୍ୱୀ ଭୋଗରେ
ପ୍ରବେଶି ଏ ମର୍ତ୍ତ୍ୟ ମଣ୍ଡଳ
ଏଥି ଦେଖିଲୁ ଦିବ୍ୟସ୍ଥଳ
ସେ ପୁରେ ନାରୀ ଏକ ଥିଲା
ସେ ତୋର ମନ ବନ୍ଦୀ କଲା
ତା ବଶେ ନୋହେ ତୋ ଆୟତ୍ତ
ମିଥ୍ୟାଭଳାଷେ ପ୍ରେମ ରତ ।୫୫।
ସେ ନଗ୍ର ପଞ୍ଚ ଉପବନ
ସେ ନବଦ୍ୱାରେ ସୁଶୋଭନ
ତହିଁ ଯେ ଏକ ଦ୍ୱାରପାଳ
ସେ ତ୍ରୟ କୋଠାରେ ବିଶାଳ
ଅପରେ ଅଛୁ କୁଳ ଷଟ
ବସଇ ଭଲେ ପଞ୍ଚହାଟ
ପଞ୍ଚ ଯେ ପ୍ରକାରେ ପ୍ରକୃତ
ସେ ଏକନାରୀ ରୂପବତୀ ।୫୬।
ଏ ପଞ୍ଚ ଇନ୍ଦ୍ରିଙ୍କ ବିଷୟ
ଆରାମ ତହିଁରେ ନିଶ୍ଚୟ
ଏକଇ ପ୍ରାଣ ତହିଁ ଦ୍ୱାରୀ
ସେ ନବଦ୍ୱାର ରକ୍ଷାକରି
ପୃଥ୍ୱୀ ଆପ ତେଜମାନ
ଏକା ସେ ତାହାର ସଦନ
ଜ୍ଞାନଇନ୍ଦ୍ରିୟ ପାଞ୍ଚମନ
ତହିଁରେ ଷଟ କୁଳ ଜାଣ

ଷପଣିସ୍ତୁ କ୍ରିୟାଶକ୍ତିର୍ଭୂତପ୍ରକୃତିରବ୍ୟୟା ।
ଶକ୍ତ୍ୟଧୀଶଃ ପୁମାନତ୍ର ପ୍ରବିଷ୍ଟୋ ନାବବୁଧ୍ୟତେ । ୫୮ ।
ତସ୍ମିଂସ୍ତ୍ୱଂ ରାମୟା ସ୍ପୃଷ୍ଟୋ ରମମାଣୋଽଶ୍ରୁତସ୍ମୃତିଃ ।
ତତ୍ସଙ୍ଗାଦୀଦୃଶୀଂ ପ୍ରାପ୍ତୋ ଦଶାଂ ପାପୀୟସୀଂ ପ୍ରଭୋ । ୫୯ ।
ନ ତ୍ୱଂ ବିଦର୍ଭଦୁହିତା ନାୟଂ ବୀରଃ ସୁହୃତ୍ ତବ ।
ନ ପତିସ୍ତ୍ୱଂ ପୁରଞ୍ଜନ୍ୟା ରୁଦ୍ଧୋ ନବମୁଖେ ଯୟା । ୬୦ ।
ମାୟା ହ୍ୟେଷା ମୟା ସୃଷ୍ଟା ଯତ୍ ପୁମାଂସଂ ସ୍ତ୍ରିୟଂ ସତୀମ୍ ।
ମନ୍ୟସେ ନୋଭୟଂ ଯଦ୍ବୈ ହଂସୌ ପଶ୍ୟାବୟୋର୍ଗତିମ୍ ।୬୧।
ଅହଂ ଭବାନ୍ ନ ଚାନ୍ୟସ୍ତ୍ୱଂ ତ୍ୱମେବାହଂ ବିଚକ୍ଷ୍ୱ ଭୋଃ ।
ନ ନୌ ପଶ୍ୟନ୍ତି କବୟଶ୍ଛିଦ୍ରଂ ଜାତୁ ମନାଗପି । ୬୨ ।

ପଞ୍ଚକ୍ରିୟାଶକ୍ତି ବା କାର୍ମେନ୍ଦ୍ରିୟ ତାହାର ପଞ୍ଚହଳ, ପ୍ରଳୟକାଳ ପର୍ଯ୍ୟନ୍ତ ଅବିନାଶୀ ପଞ୍ଚମହାଭୂତ ଏହାର ଉପାଦାନର କାରଣ, ପୁରୁଷଶକ୍ତିର ବଶୀଭୂତ ହୋଇ ଏହିପୁରରେ ପ୍ରବେଶକରି ଆତ୍ମସ୍ୱରୂପ ଜାଣିପାରେ ନାହିଁ । ୫୮ ।

ହେ ସଖେ ! ରମଣୀ ଅଙ୍ଗସ୍ପର୍ଶ ଓ ତାହାସହିତ କ୍ରୀଡ଼ାକରିବାରୁ ତୁମ୍ଭର ଏପରି ବ୍ରହ୍ମ ବିସ୍ମୃତି ଘଟିଅଛି ଓ ତେଣୁ ଏପରିଦୁର୍ଦ୍ଦଶା ହୋଇଅଛି । ୫୯ ।

ତୁମ୍ଭେ ବିଦର୍ଭ ରାଜଦୁହିତା ନୁହଁ । ଏହିଭୂତଳଶାୟୀ ବୀର ତୁମ୍ଭର ସ୍ୱାମୀ ନୁହେଁ । ଯେଉଁ ପୁରଞ୍ଜନୀ ତୁମ୍ଭଙ୍କୁ ନବଦ୍ୱାରପୁର ମଧ୍ୟରେ ଆବଦ୍ଧକରି ରଖିଥିଲି, ତୁମ୍ଭେ ତାହାର ମଧ୍ୟ ସ୍ୱାମୀ ନୁହଁ । ୬୦ ।

ତୁମ୍ଭେ ଯେ ଆତ୍ମାକୁ କେତେବେଳେ ପୁରୁଷବୋଲି ଅଭିମାନ କରିଥିଲ, କେତେବେଳେ ସତୀ ସ୍ତ୍ରୀ କେତେବେଳେ ନପୁଂସକ ବୋଲି ଅଭିମାନ କରିଥିଲ, ତହିଁର କାରଣ ତୁମ୍ଭର ବିରଚିତମାୟା । ବସ୍ତୁତଃ ଆମ୍ଭେମାନେ ଉଭୟ ହଂସ ବା ଶୁଦ୍ଧ ସ୍ୱରୂପ ଅତଏବ ଆତ୍ମମାନଙ୍କର ସ୍ୱରୂପ ବର୍ଣ୍ଣନା କରୁଅଛି ଉପଲବ୍ଧିକର । ୬୧ ।

ତୁମ୍ଭେ ଓ ମୁଁ ଭିନ୍ନ ନୋହୁଁ । ତୁମ୍ଭଙ୍କୁ ମୁ 'ମୁଁ' ବୋଲି ଜାଣେ । ତତ୍ତ୍ୱଦର୍ଶୀମାନେ ତୁମ୍ଭ ଓ ମୋ ମଧ୍ୟରେ କଦାପି ତିଳେମାତ୍ର ଭେଦ ଦେଖନ୍ତିନାହିଁ । ପୁରୁଷ ଯେପରି ମଣିମୟ ଦର୍ପଣରେ ପ୍ରତିବିମ୍ବିତ

| | | |
|---|---|---|
| ଏ କ୍ରିୟାଶକ୍ତି ତହିଁ ହାଳ | ତୁ ଭୋଗ କଲୁ ତାକୁ ତହିଁ | ମୁଁ କରିଅଛି ଏହୁ ମାୟା |
| ପଞ୍ଚ ବିଷୟ ତହିଁ ବାଟ | ତୁ ମୋତେ ସମ୍ଭାଳିଲୁ ନାହିଁ | ପୁରୁଷ ପ୍ରକୃତିରେ କାୟା |
| ପ୍ରକୃତି ପଞ୍ଚବିଂଶ ଗୁଣ | ଏକାନ୍ତେ ନାରୀସଙ୍ଗ କଲୁ | ଛାଡ଼ ଏ ମାୟା ମୋହମତି |
| ଏ ରୂପେ ସେ ହାଟ ଉଆଣ | ଏ ପାପ ଦଶା ତୁ ଲଭିଲୁ ।୫୯। | ଆମ୍ଭେ ବେନି ହଂସ ସଙ୍ଗତି ।୬୧। |
| ଏ ପାପ ପୁଣ୍ୟ କର୍ମ ଦୁଇ | ନୋହୁ ତୁ ବିଦର୍ଭଦୁହିତ | ଏ ତୁମ୍ଭ ଆମ୍ଭ ନୋହେ ଭିନ୍ନ |
| ଜନ୍ମ ବନ୍ଧନ୍ୟ ତହିଁ ହୋଇ ।୫୭,୫୮ | ଏ ବୀର ନୋହେ ତୋର କାନ୍ତ | ଏ ବେନି ଏକ କରି ଚିହ୍ନ |
| ସେ ହାଟେଶ୍ୱରୀ ବୁଦ୍ଧି ଥିଲା | ନୋହୁ ତୁ ପୁରଞ୍ଜନୀପତି | ଯେବା ପଣ୍ଡିତ ଜ୍ଞାନମତି |
| ସେ ତୋର ମନ ବନ୍ଦୀ କଲା | ତା ଲାଗି ଏ ତୋର ଦୁର୍ଗତି ।୬୦। | ଏ ବେନି ଭେଦ ନ କରନ୍ତି ।୬୨। |

ଯଥା ପୁରୁଷ ଆତ୍ମାନମେକମାଦର୍ଶଚକ୍ଷୁଷୋଃ ।
ଦ୍ୱିଧାଭୂତମବେକ୍ଷେତ ତଥୈବାନ୍ତରମାବୟୋଃ । ୬୩ ।
ଏବଂ ସ ମାନସୋ ହଂସୋ ହଂସେନ ପ୍ରତିବୋଧିତଃ ।
ସ୍ୱସ୍ଥସ୍ତଦ୍‌ବ୍ୟଭିଚାରେଣ ନଷ୍ଟାମାପ ପୁନଃସ୍ମୃତିମ୍ । ୬୪ ।
ବର୍ହିଷ୍ମନ୍ନେତଦଧ୍ୟାତ୍ମଂ ପାରୋକ୍ଷେଣ ପ୍ରଦର୍ଶିତମ୍ ।
ଯତ୍‌ପରୋକ୍ଷପ୍ରିୟୋ ଦେବୋ ଭଗବାନ୍ ବିଶ୍ୱଭାବନଃ । ୬୫ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ
ପୁରଞ୍ଜନୋପାଖ୍ୟାନେଽଷ୍ଟାବିଂଶୋଽଧ୍ୟାୟଃ । ୨୮ ।

---

ନିଜ ଦେହକୁ ଆପଣାଠାରୁ ଅଭିନ୍ନ ହେଲେ ମଧ୍ୟ ଭିନ୍ନପରି ଦର୍ପଣ ବୋଲି ଦେଖେ, ଆମ୍ଭମାନଙ୍କ ମଧ୍ୟରେ ଭେଦ ସେହିପରି । ୬୨,୬୩ ।

ଶ୍ରୀନାରଦ କହିଲେ :—

ମାନସରୋବରରେ ଅବସ୍ଥିତ ଅନ୍ୟ ହଂସ ଅର୍ଥାତ୍ ପରମାତ୍ମାଙ୍କ କର୍ତ୍ତୃକ ପ୍ରତିବୋଧିତ ହୋଇ ସାଧନା ଜନିତ ଧୈର୍ଯ୍ୟ ହୋଇ ସେହି ସଖା ସହିତ ବିଚ୍ଛେଦ ହେତୁ ଯେ ସ୍ମୃତିନଷ୍ଟ ହୋଇଥିଲା, ତାହା ସେ ପୁନର୍ବାର ପ୍ରାପ୍ତ ହେଲେ । ୬୪ ।

ହେ ପ୍ରାଚୀନବର୍ହି ! ମୁଁ ଉପାଖ୍ୟାନ ଛଳରେ ଏହି ଅଧ୍ୟାତ୍ମଯୋଗ ତୁମ୍ଭଙ୍କୁ ଦେଖାଇଲି । କାରଣ ବିଶ୍ୱଭାବକ ଶ୍ରୀହରିଙ୍କର ପରୋକ୍ଷଭାବନାହିଁ ପ୍ରିୟ । ୬୫ ।

---

| | | |
|---|---|---|
| ଅଜ୍ଞାନେ ଜ୍ଞାନଧର୍ମ୍ମ ଭେଦ | ନାରଦ କହନ୍ତି ସଦୟେ | ଚତୁର୍ଥ ସ୍କନ୍ଧେ ଭାଗବତ |
| ଅବିଦ୍ୟା ବିଦ୍ୟାରି ଏ ଖେଦ | ଶୁଣ ପ୍ରାଚୀନ ନୃପରାୟେ | ଏ ପୁରଞ୍ଜନର ଚରିତ |
| ଯେସନ୍ତେ ମୁକୁରେ ତନ୍ତେ ଦେଖି | ଏ ଯେ ଅଧ୍ୟାତ୍ମ ଦିବ୍ୟଜ୍ଞାନ | ଏ ଅଷ୍ଟବିଂଶତି ଅଧ୍ୟାୟରେ |
| ନିର୍ମ୍ମଳେ ସର୍ବାଙ୍ଗ ଦିଶଇ | କହିଲୁଁ ପରୋକ୍ଷ ବାଦେଣ | ପ୍ରାକୃତ ଏ ଭାଷା ପ୍ରକାରେ |
| ସେ ପର ଚକ୍ଷୁରେ ନ ଦିଶେ | ପରୋକ୍ଷବାଦପ୍ରିୟ ହରି | ବର୍ଣ୍ଣିଲି ବିପ୍ର ଜଗନ୍ନାଥ |
| ଏମନ୍ତେ ଏ ଭେଦ ବିଶେଷେ ।୬୩ | ଏଣୁ ତା କହିଲୁ ବିଚାରି ।୬୪,୬୫ | ସନ୍ଥ ଚରଣେ ଦେଇ ଚିତ୍ତ । |



# ଊ ନ ତ୍ରିଂ ଶ ଅ ଧ୍ୟା ୟ ।

ଊନତ୍ରିଂଶେ ପରୋକ୍ଷାର୍ଥ ବ୍ୟାଖ୍ୟାନେନୋପସଂହୃତମ୍ ।
ସ୍ତ୍ରୀସଙ୍ଗତୋ ଭବନ୍ତୀଶସଙ୍ଗାନ୍‌ମୁକ୍ତିରତ ସ୍ଫୁଟମ୍ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀପ୍ରାଚୀନବର୍ହିରୁବାଚ ।

ଭବଦ୍ଭସ୍ତେ ବଚୋଽସ୍ମାଭିର୍ନ ସମ୍ୟଗବଗମ୍ୟତେ ।
କବୟସ୍ତଦ୍‌ବିଜାନନ୍ତି ନ ବୟଂ କର୍ମମୋହିତାଃ । ୧ ।

ଶ୍ରୀନାରଦ ଉବାଚ । ପୁରୁଷଂ ପୁରଞ୍ଜନଂ ବିଦ୍ୟା ଯଦ୍‌ବ୍ୟନକ୍ତ୍ୟାତ୍ମନଃ ପୁରମ୍ ।
ଏକଦ୍ୱିତ୍ରିଚତୁଷ୍ପାଦଂ ବହୁପାଦମପାଦକମ୍ । ୨ ।

## ପୁରଞ୍ଜନ ଉପାଖ୍ୟାନର ବ୍ୟାଖ୍ୟା ।

ଊନତ୍ରିଂଶ ଅଧ୍ୟାୟରେ ପୁରଞ୍ଜନଚରିତର ବ୍ୟାଖ୍ୟାକରି ସ୍ତ୍ରୀ ସଙ୍ଗରେ ସଂସାର ବନ୍ଧନ ଏବଂ ଭଗବତ୍‌ସଙ୍ଗରେ ମୁକ୍ତ ହୁଏ ଏହା ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀପାଚୀନବର୍ହି କହିଲେ :—

'ମହାଭାଗ ! ମୁଁ ଆପଣଙ୍କ ବାକ୍ୟ ସମ୍ପୂର୍ଣ୍ଣ ବୁଝିପାରୁନାହିଁ । ଅଧ୍ୟାତ୍ମ ତତ୍ତ୍ୱଜ୍ଞବ୍ୟକ୍ତିମାନେ ଏହା ବୁଝିପାରନ୍ତି, ଆମ୍ଭେମାନେ କର୍ମମୁଗ୍ଧ, ସୁତରାଂ ଏହା ଆମ୍ଭମାନଙ୍କ ପକ୍ଷରେ ବୁଝିବା ସହଜ ନୁହେଁ ।୧।

ଶ୍ରୀନାରଦ କହିଲେ :—

ହେ ପ୍ରାଚୀନ ବର୍ହି ! ପୁରୁଷ ଅର୍ଥାତ୍ ଜୀବାତ୍ମା ସ୍ୱୀୟ କର୍ମାନୁସାରେ ଏକପାଦ, ଦ୍ୱିପାଦ, ତ୍ରିପାଦ, ଚତୁଷ୍ପାଦ ଅଥବା ଅଧିକପାଦ ଶୂନ୍ୟଶରୀର ପ୍ରକଟନ କରିଥାଏ, 'ପୁରଞ୍ଜନ'ଙ୍କୁ ପୁରୁଷ ବୋଲି ଜାଣିବ ।୨।

ଊନତ୍ରିଂଶରେ ପୁରଞ୍ଜନ । ଆଖ୍ୟାନ ତତ୍ତ୍ୱର ବ୍ୟାଖ୍ୟାନ ॥

ଶ୍ରୀ ମୈତ୍ରେୟ ଉବାଚ—

ସେ ଯେ ପ୍ରାଚୀନ ନୃପବର
ନାରଦପାଦେ ଦେଇ ଶିର
ହେ ମୁନି ତୁମ୍ଭେ ଜ୍ଞାନପର
କହିଲ ଅଧ୍ୟାତ୍ମ ବିସ୍ତର
ତୁମ୍ଭେ ଯେ ପରୋକ୍ଷ ବାଦେଣ
କହିଲ ଯେ ସାଙ୍ଖ୍ୟ କାରଣ
ମୁଁ ହେଜି ନ ପାରିଲି ଚିତ୍ତେ
ଛେଦ ସଂଶୟ କହ ମୋତେ
ଯେ ମାର୍ଗେ ବୁଝିବଇଁ ମୁହିଁ
ସେ ମାର୍ଗେ କହିବା ଗୋସାଇଁ
ଯେବା ପଣ୍ଡିତ ଦୃଢମତ
ଏ ଅନୁଭବ ସେ ଜାଣନ୍ତି
ଆମ୍ଭର ଏଣେ ନାହିଁ ଜ୍ଞାନ
ବିଷୟ ଜଡ଼େ ମନ ଛନ୍ନ
ଏଣୁ ନ ଧରେ ଜ୍ଞାନେ ରତ
ବିବେକ ନୋହେ ଆତ୍ମ ମତ
ହେ ମୁନି ସେହି ପୁଣ ତାହା
ମୋ ଅର୍ଥେ କହ ପୁଣ୍ୟ ଦେହା
ସେ ପୁରଞ୍ଜନର ବିସ୍ତର
ଶ୍ରବଣେ ଜ୍ଞାନ ହେବ ମୋର
ଶୁଣି ନାରଦ ମହାଋଷି
ତା ଭାବେ କହନ୍ତି ବିଶେଷି । ୧ ।

ଶ୍ରୀ ନାରଦ ଉବାଚ—

ଶୁଣ ରାଜନ ସାବଧାନ
କହିବା ପରୋକ୍ଷ ଯେ ଜ୍ଞାନ
ପୁରୁଷ ପୁରଞ୍ଜନ ଯେହି
କର୍ମରୁ ପୁର କଲା ସେହି
କେ ଏକ ଦ୍ୱିତ୍ରୟ ବେନି ପାଦ
ବହୁ ଚତ୍ୱାର କେ ଚଷ୍ପାଦ
ଏମନ୍ତେ ନାନା ପୁର କରି
ଏ ଜୀବ ତା ମଧ୍ୟେ ବିହରି । ୨ ।

ଯୋଽବିଜ୍ଞାତାହୃତସ୍ତସ୍ୟ ପୁରୁଷସ୍ୟ ସଖେଶ୍ୱରଃ ।
ଯନ୍ନ ବିଜ୍ଞାୟତେ ପୁଂଭିର୍ନାମଭିର୍ବା କ୍ରିୟାଗୁଣୈଃ । ୩ ।
ଯଦା ଜିଘୃକ୍ଷନ୍ ପୁରୁଷଃ କାର୍ତ୍ସ୍ନ୍ୟେନ ପ୍ରକୃତେର୍ଗୁଣାନ୍ ।
ନବଦ୍ୱାରଂ ଦ୍ୱିହସ୍ତାଙ୍ଘ୍ରିଂ ତତ୍ରାମନୁତ ସାଧ୍ୱିତି । ୪ ।
ବୁଦ୍ଧିଂ ତୁ ପ୍ରମଦାଂ ବିଦ୍ୟାନ୍ମମାହମିତି ଯତ୍କୃତମ୍ ।
ଯାମଧିଷ୍ଠାୟ ଦେହେଽସ୍ମିନ୍ ପୁମାନ୍ ଭୁଂକ୍ତେଽକ୍ଷଭିର୍ଗୁଣାନ୍ । ୫ ।
ସଖାୟ ଇନ୍ଦ୍ରିୟଗଣା ଜ୍ଞାନଂ କର୍ମ ଚ ଯତ୍କୃତମ୍ ।
ସଖ୍ୟସ୍ତଦ୍‌ବୃତ୍ତୟଃ ପ୍ରାଣଃ ପଞ୍ଚବୃତ୍ତିର୍ଯଥୋରଗଃ । ୬ ।

---

ଯାହାଙ୍କୁ ମୁଁ 'ଅବିଜ୍ଞାତ' ବୋଲି କହିଲି, ସେ ପୁରୁଷର ସଖା ଈଶ୍ୱର । ଅଶାସ୍ତ୍ରଜ୍ଞ ମୂଢବ୍ୟକ୍ତି ତାହାର ନାମ ଓ କ୍ରିୟା ଉପଲବ୍ଧି କରି ନ ପାରେ । ୩ ।

ଜୀବ ଯେତେବେଳେ ପ୍ରକୃତିର ସୁଖ ଦୁଃଖାଦି ଗୁଣସମୂହ ସମ୍ପୂର୍ଣ୍ଣରୂପେ ଉପଭୋଗ କରିବାକୁ ଅଭିଳାଷୀ ହୁଏ, ସେତେବେଳେ ସେ ନବଦ୍ୱାର, ହସ୍ତଦ୍ୱୟ, ପାଦଦ୍ୱୟ ଯୁକ୍ତ ମାନବଦେହକୁ ଭିନ୍ନ ଦେହ ଗୁଡ଼ିକ ମଧ୍ୟରେ ଶ୍ରେଷ୍ଠ ମନେକରି, ଉକ୍ତଦେହକୁ ଆଶ୍ରୟ କରେ । ୪ ।

ଯେଉଁ ନାରୀ ପ୍ରସଙ୍ଗ ବୋଲଯାଇଅଛି, ବୁଦ୍ଧିହିଁ ସେହି ନାରୀ, ତଦ୍ୱାରା 'ମୁଁ' ଓ 'ମୋର' ଏହି ଅଭିମାନ ଜନ୍ମିଥାଏ, ଏହି ବୁଦ୍ଧିରେ ଅଧିଷ୍ଠିତ ହୋଇ ପୁରୁଷ ଏହି ଦେହରେ ଇନ୍ଦ୍ରିୟମାନଙ୍କଦ୍ୱାରା ପ୍ରାକୃତିକ ଗୁଣଗ୍ରାମ ଭୋଗ କରିଥାଏ । ୪,୫ ।

ଇନ୍ଦ୍ରିୟମାନେ ତାହାର ସଖା, ଜ୍ଞାନ ଓ କର୍ମ ସେମାନଙ୍କ ଦ୍ୱାରା ଉତ୍ପନ୍ନ ହୁଏ, ଏମାନଙ୍କର ବୃତ୍ତିମାନ ସଖୀମାନେ, ପଞ୍ଚବୃତ୍ତି ପ୍ରାଣ ପୁରପାଳକ ପଞ୍ଚଶିର ବିଶିଷ୍ଟ ସର୍ପ । ୬ ।

---

ଅଜ୍ଞାତ ସଖା ଯାକୁ କହି
ଈଶ୍ୱର ନାମ ଅଟେ ସେହି
ସେ ନାମ ରୂପରୁ ବାହାର
ଏଣୁ ଅଜ୍ଞାତ ନାମ ତାର । ୩ ।
ସମସ୍ତ ପ୍ରକୃତି ଗୁଣକୁ
ପୁରୁଷ ଇଚ୍ଛିଲେ ଭୋଗକୁ
ତେବେ ଏ ପୁର ନବଦ୍ୱାରେ
ରଚନା କରେ ସେ ବେଗରେ
ଯେ ପୁରେ ପଦ ହସ୍ତ ଘେନି
କରଇ କର୍ମ ଲାଭ ହାନି
ସେ ପୁରେ ଥାଇ କରେ ଭୋଗ
ମାୟା ବନ୍ଧନେ ଅନୁରାଗ
ଏ ପୁରୁଁ ଅନ୍ୟ ପୁର ଯେହି
ଭୋଗ ସୁଖାଦି ନୋହେ ତହିଁ

ଏ ଯେ ମାନବ କଳେବର
ଅଶେଷ ଦେହମଧ୍ୟେ ସାର
ଏ ପୁର ମଧ୍ୟେ ଜୀବ ରହି
ଇନ୍ଦ୍ରି ବିଷୟ ରସେ ମୋହି
ବିବିଧ ସୁଖ ଭୋଗ ସାର
ଜୀବ ଭୁଞ୍ଜଇ ଏ ମନ୍ଦିର । ୪ ।
ଏ ପୁର ମଧ୍ୟେ ବୁଦ୍ଧି ନାରୀ
ଏକା ସେ ସର୍ବତ୍ର ବିହରି
ସେ ଯେ ମମତ୍ୱେ ହୋଏ ଛନ୍ନ
ବୋଲଇ ଏ ମୋର ସଦନ
ସେ ନାରୀବଶେ ଜୀବ ଥାଇ
ଇନ୍ଦ୍ରିୟଭୋଗେ ତୋଷ ହୋଇ ।୫
ଇନ୍ଦ୍ରିୟଗଣେ ବୁଦ୍ଧିସଖା
ବିଷୟମାନେ ସଖୀ ଲେଖା

ଯେ ଜ୍ଞାନ-କର୍ମ ଇନ୍ଦ୍ରିଗଣେ
ପୁରୁଷ ଭୋଗବଶେ ଟାଣେ
ଏ ଜ୍ଞାନ କର୍ମ ଇନ୍ଦ୍ରି ଦଶ
ଏହାଙ୍କ ଭୋଗେ ଜୀବ ବଶ
ଏ ପାପ ପୁଣ୍ୟ ଆଦି କରି
ବଳେ ଭୁଞ୍ଜଇ କର୍ମ ଧରି
ଏ ପୁରଦ୍ୱାରୀ ସର୍ପ ଯେହି
ଏ ଦେହେ ପ୍ରାଣ ଅଟେ ସେହି
ସେ ପଞ୍ଚ ବୃତ୍ତିରେ ସଞ୍ଚାରି
ଏଣୁ କହିଲୁ ପଞ୍ଚଶିର । ୬ ।

ବୃହଦ୍‌ବଳଂ ମନୋ ବିଦ୍ୟାଦୁଭୟେନ୍ଦ୍ରିୟନାୟକମ୍ ।
ପଞ୍ଚାଳାଃ ପଞ୍ଚ ବିଷୟା ଯନ୍ମଧ୍ୟେ ନବଖଂ ପୁରମ୍ । ୭ ।
ଅକ୍ଷିଣୀ ନାସିକେ କର୍ଣ୍ଣୌ ମୁଖଂ ଶିଶ୍ନଗୁଦାବିତି ।
ଦ୍ୱେ ଦ୍ୱେ ଦ୍ୱାରୌ ବହିର୍ଯାତି ଯସ୍ତଦିନ୍ଦ୍ରିୟସଂଯୁତଃ । ୮ ।
ଅକ୍ଷିଣୀ ନାସିକେ ଆସ୍ୟମିତି ପଞ୍ଚ ପୁରଃ କୃତାଃ ।
ଦକ୍ଷିଣା ଦକ୍ଷିଣଃ କର୍ଣ୍ଣ ଉତ୍ତରା ଚୋତ୍ତରଃ ସ୍ମୃତଃ । ୯ ।
ପଶ୍ଚିମେ ଇତ୍ୟଧୋଦ୍ୱାରୌ ଗୁଦଂ ଶିଶ୍ନମିହୋଚ୍ୟତେ ।
ଖଦ୍ୟୋତାବିର୍ମୁଖୀ ଚାତ୍ର ନେତ୍ରେ ଏକତ୍ର ନିର୍ମିତେ-
ରୂପଂ ବିଭ୍ରାଜିତଂ ତାଭ୍ୟାଂ ବିଚଷ୍ଟେ ଚକ୍ଷୁଷେଶ୍ୱରଃ । ୧୦ ।

---

ଏକାଦଶନାୟକ—ମନ, ମନର ବଳମଧ୍ୟ ମହତ୍, ସେ ଉଭୟ ପ୍ରକାର ଇନ୍ଦ୍ରିୟର ନାୟକ; ପଞ୍ଚାଳଦେଶ ପ୍ରଭୃତି ପଞ୍ଚବିଷୟ; ଏ ବିଷୟ ମଧ୍ୟରେ ନବଦ୍ୱାର ପୁର ବର୍ତ୍ତମାନ ଥାଏ । ୭ ।

ଯେଉଁ ଦୁଇଟି ଦ୍ୱାରର ପ୍ରସଙ୍ଗ ଉଲ୍ଲେଖ କରାଯାଇଅଛି, ତାହା ଚକ୍ଷୁଦ୍ୱୟ, ନାସିକାଦ୍ୱୟ, କର୍ଣ୍ଣଦ୍ୱୟ, ମୁଖ, ପାୟୁ ଓ ଉପସ୍ଥ, ଇନ୍ଦ୍ରିୟଯୁକ୍ତ ଆତ୍ମା ଏହିଦ୍ୱାରବାଟେ ବହିର୍ଗମନ କରେ । ୮ ।

ଦୁଇଚକ୍ଷୁ, ଦୁଇନାସିକା, ଏବଂ ମୁଖ ଏହି ପାଞ୍ଚଟି ପୂର୍ବଭାଗସ୍ଥ, ଦକ୍ଷିଣକର୍ଣ୍ଣ ଦକ୍ଷିଣଭାଗସ୍ଥ, ବାମକର୍ଣ୍ଣ ବାମଭାଗସ୍ଥ, ପାୟୁ ଓ ଉପସ୍ଥ ଏହି ଦଓଟି ଅଧୋଦ୍ୱାର ପଶ୍ଚିମଭାଗସ୍ଥ ବୋଲି କଥିତ । ୯ ।

ଏକତ୍ର ନିର୍ମିତ ନେତ୍ର ଦୁଇଟି ଖଦ୍ୟୋତା ଓ ଆବିର୍ମୁଖୀ, ବିଭ୍ରାଜିତ ଜନପଦ ରୂପ। ଇନ୍ଦ୍ରିୟାଧିଶ୍ୱର ଚକ୍ଷୁଦ୍ୱାରା ଦର୍ଶନ କରିଥାନ୍ତି । ୧୦ ।

---

ମହତ୍ତ ଉଚ୍ଚ ଯାହା କହି
ମନର ନାମ ଅଟେ ସେହି
ସେ ଦଶ ଇନ୍ଦ୍ରିୟଙ୍କ ନାୟକ
ତାକୁ ଜାଣନ୍ତି ନାହିଁ ଲୋକ
ତାକୁ ଜାଣନ୍ତି ଯେତେବେ ଜନ
ସେ ଯୋଗୀ ଏ ତିନି ଭୁବନ
ଉତ୍ତର ଦକ୍ଷିଣ ଯା କହି
ରାଜ୍ୟ ପଞ୍ଚାଳ ଦେଶ ଯେହି
ଏ ପଞ୍ଚ ବିଷୟର ଆଳ
ଏହା ତୁ ବୁଝି ମହୀପାଳ
ଇନ୍ଦ୍ରିୟ ଛିଦ୍ର ଯେତେ କହି
ଏ ପୁରେ ନବଦ୍ୱାର ସେହି । ୭ ।

ଏ ବେନି ଚକ୍ଷୁ ନାସା କର୍ଣ୍ଣ
ଯେ ମୁଖ ଗୁହ୍ୟ ଲିଙ୍ଗସ୍ଥାନ
ଏହାକୁ ନବଦ୍ୱାର କହି
ଇନ୍ଦ୍ରିୟଗଣସ୍ଥାନ ଏହି
ଏ ପଥେ ଜୀବର ଗମନ
ବିଷୟ କରେ ଆସ୍ୱାଦନ । ୮ ।
ନୟନ ମୁଖ ନାସା ତାର
ଏ ପୂର୍ବଦିଗ ପଞ୍ଚଦ୍ୱାର
ଉତ୍ତର ଦକ୍ଷିଣ ଯା କହି
ଏ ବେନି କର୍ଣ୍ଣ ଦ୍ୱାର ସେହି
ପଶ୍ଚିମଦିଗେ ବେନି ଦ୍ୱାର
ଏ ଲିଙ୍ଗ ଗୁହ୍ୟ ନୃପବର

ଏ ନବ ଦ୍ୱାରେଣ ନିର୍ମିତ
ଯେଉଁ ବିଷୟେ ଆସ୍ୱାଦିତ
ସେବନ୍ତି ଆତ୍ମା ଦେହ ହୋଇ
ଏକ ଆରକେ ଅନ୍ତସରି
ଖଦ୍ୟୋତ ଆବିର୍ମୁଖୀ ଦୁଇ
ଚକ୍ଷୁର ନାମ ସେ ଅଟଇ
ଏ ବେନି ଦ୍ୱାରେ ପୁରଞ୍ଜନ
କରଇ ରୂପ ଆସ୍ୱାଦନ । ୯,୧୦ ।

ନଳିନୀ ନାଳିନୀ ନାସେ ଗନ୍ଧଃ ସୌରଭ ଉଚ୍ୟତେ ।
ଘ୍ରାଣୋଽବଧୂତୋ ମୁଖ୍ୟାସ୍ୟଂ ବିପଣୋ ବାଗ୍ରସବିଦ୍ରସଃ । ୧୧ ।
ଆପଣୋ ବ୍ୟବହାରୋଽତ୍ର ଚିତ୍ରମନ୍ଧୋ ବହୂଦନମ୍ ।
ପିତୃହୂର୍ଦକ୍ଷିଣଃ କର୍ଣ୍ଣ ଉତ୍ତରୋ ଦେବହୂଃ ସ୍ମୃତଃ । ୧୨ ।
ପ୍ରବୃତ୍ତଂ ଚ ନିବୃତ୍ତଞ୍ଚ ଶାସ୍ତ୍ରଂ ପଞ୍ଚାଲ ସଂଜ୍ଞିତମ୍ ।
ପିତୃଯାନଂ ଦେବଯାନଂ ଶ୍ରୋତ୍ରାଚ୍ଛ୍ରୁତଧରାଦ୍ ବ୍ରଜେତ୍ । ୧୩ ।
ଆସୁରୀ ମେଢ୍ରମର୍ବାଗ୍ଦ୍ୱାର୍ବ୍ୟବାୟୋ ଗ୍ରାମିଣାଂ ରତିଃ ।
ଉପସ୍ଥୋ ଦୁର୍ମଦଃ ପ୍ରୋକ୍ତୋ ନିରୃତିର୍ଗୁଦ ଉଚ୍ୟତେ । ୧୪ ।

---

ନଳିନୀ ଓ ନାଳିନୀ ଏହି ଦୁଇଟି ନାସିକା, ଗନ୍ଧହେଉଅଛି ସୌରଭ, ଅବଧୂତଶବ୍ଦ ଘ୍ରାଣେନ୍ଦ୍ରିୟ, ମୁଖ୍ୟା ମୁଖ ଓ ବିପଣ ବାଗିନ୍ଦ୍ରିୟ ରସବିତ୍ ରସେନ୍ଦ୍ରିୟ । ୧୧ ।

'ଆପଣ' ଅର୍ଥ ଭୂଷଣ, ବହୁଡନ ଅର୍ଥ ବିଚିତ୍ର ଅନ୍ନ, ପିତୃହୂ ଶବ୍ଦ ଦକ୍ଷିଣ କର୍ଣ୍ଣ, ଏବଂ ଦେବହୂ ଶବ୍ଦ ବାମକର୍ଣ୍ଣ । ୧୨ ।

ପ୍ରବୃତ୍ତି ଓ ନିବୃତ୍ତି ବିଷୟକ ଶାସ୍ତ୍ରର ନାମ ପାଞ୍ଚାଳକ, ଏହି ଦୁଇଶାସ୍ତ୍ରରେ ପିତୃଯାନ ଓ ଦେବଯାନ ଅର୍ଥାତ୍ ଶବ୍ଦ ଗ୍ରାହକ—ଶ୍ରବଣେନ୍ଦ୍ରିୟ ଦ୍ୱାରା ପୁରୁଷ ଏହି ଦୁଇଶାସ୍ତ୍ରଗ୍ରହଣ କରି ପିତୃ ଲୋକପାଳକ ପିତୃଯାନ ଓ ଦେବଲୋକପାଳକ ଦେବଯାନ ପ୍ରାପ୍ତ ହୁଏ । ୧୩ ।

ଆସୁରୀ ନାମକ ପଶ୍ଚିମଦ୍ୱାର-ମେଢ୍ର ବା ଉପସ୍ଥ । ଗ୍ରାମକ ନାମକ ବିଷୟ ବ୍ୟବାୟ ବା ସ୍ତ୍ରୀସଙ୍ଗ । ଦୁର୍ମଦ ବୋଇଲେ ଉପସ୍ଥ, ନିର୍ଋତି ବୋଇଲେ ଗୁଦ ବା ମଳଦ୍ୱାର ବୋଲିଯାଏ । ୧୪ ।

---

ନଳିନୀ ନାଳିନୀ ଯେ ଦୁଇ
ନାସିକା ନାମ ସେ ଅଟଇ
ଏ ଦ୍ୱାରେ ଅବଧୂତ ନାମ
ଗନ୍ଧାଢ୍ୟ ଆମୋଦେ ପବନ
ସୁଗନ୍ଧ ଦୁର୍ଗନ୍ଧ ସହିତେ
ଏ ଦ୍ୱାରେ ଘେନଇ ନିରତେ
ବଦନ ନାମେ ମୁଖ ଦ୍ୱାର
ରସଜ୍ଞ ବାକ୍ୟ ତା ମଧୁର
ସ୍ୱାଦୁ ଅସ୍ୱାଦୁ ଦ୍ରବ୍ୟ ଯେତେ
ଏ ଦ୍ୱାରେ ଆସ୍ୱାଦେ ନିରତେ

ପିତୃହୂ ଦେବହୂ ଯେ ନାମ
ଏ ଦେନି କର୍ଣ୍ଣ ଦକ୍ଷ ବାମ
ଏ ଶ୍ରୁତିଯୁଗ ପୁରଞ୍ଜନ
କରଇ ଶବ୍ଦ ଆସ୍ୱାଦନ
ନିନ୍ଦା ସ୍ତବନ ବାକ୍ୟ ଯେତେ
ଏ ଦ୍ୱାରେ ଘେନେ କ୍ରମେ ନିତ୍ୟେ
ପ୍ରବୃତ୍ତି ନିବୃତ୍ତି ଏ ଦୁଇ
ଶାସ୍ତ୍ର ପଞ୍ଚାଳ ବୋଲି କହି
ଏ ପିତୃଯାନ ଦେବଯାନ
ଗତିରେ କରନ୍ତି ଗମନ

ଏ ମାର୍ଗେ ଥାନ୍ତି ନିରନ୍ତର
ସେ ଇଚ୍ଛା ସୁଖେନୃପବର । ୧୧-୧୩
ଆସୁରୀ ଦ୍ୱାର ଲିଙ୍ଗ ସ୍ଥାନ
ଦୁର୍ମ୍ମଦ ଉପସ୍ଥର ନାମ
ବ୍ୟବାୟ ନାମ ରତି କହି
ପ୍ରଜା ସର୍ଜ୍ଜନ କରେ ତହିଁ
ତା ଅଧୋଭାଗେ ଗୁହ୍ୟ ଦ୍ୱାର
ନିର୍ଋତି ନାମଟି ତାହାର । ୧୪ ।

ବୈଶସଂ ନରକଂ ପାୟୁର୍ଲୁବ୍ଧକୋଽନ୍ଧୌ ତୁ ମେ ଶୃଣୁ ।
ହସ୍ତପାଦୌ ପୁମାଂସ୍ତାଭ୍ୟାଂ ଯୁକ୍ତୋ ଯାତି କରୋତି ଚ । ୧୫ ।
ଅନ୍ତଃପୁରଞ୍ଚ ହୃଦୟଂ ବିଷୂଚିର୍ମନ ଉଚ୍ୟତେ ।
ତତ୍ର ମୋହଂ ପ୍ରସାଦଂ ବା ହର୍ଷଂ ପ୍ରାପ୍ନୋତି ତଦ୍‌ଗୁଣୈଃ । ୧୬ ।
ଯଥା ଯଥା ବିକ୍ରିୟତେ ଗୁଣାକ୍ତୋ ବିକରୋତି ବା ।
ତଥା ତଥୋପଦ୍ରଷ୍ଟାତ୍ମା ତଦ୍ ବୃତ୍ତିରନୁକାର୍ଯ୍ୟତେ । ୧୭ ।
ଦେହୋ ରଥସ୍ତ୍ୱିନ୍ଦ୍ରିୟାଶ୍ୱଃ ସମ୍ବତ୍ସରରୟୋଽଗତିଃ ।
ଦ୍ୱିକର୍ମଚକ୍ରସ୍ତ୍ରିଗୁଣଧ୍ୱଜଃ ପଞ୍ଚାସୁବନ୍ଧୁରଃ । ୧୮ ।

---

ବୈଶସ ବୋଲି ଯା କୁହାଯାଇଅଛି, ତାହା ନରକ, ଲୁବ୍ଧକ ଗୁହ୍ୟଦ୍ୱାର; ଯେଉଁ ଅନ୍ଧଦ୍ୱୟଙ୍କ କଥା କୁହାଯାଇ ଅଛି, ସେମାନେ ହସ୍ତପଦ । ଏ ବିଷୟ ମୋଠାରୁ ଶ୍ରବଣକର, ଏହି ହସ୍ତପଦଯୁକ୍ତ ହୋଇ ପୁରୁଷ ଗ୍ରହଣାଦିକାର୍ଯ୍ୟ ଏବଂ ଗମନାଗମନ କରେ, ଅର୍ଥାତ୍ ଅଚେତନ ହସ୍ତ ସାହାଯ୍ୟରେ ଗ୍ରହଣ, ଏବଂ ଅଚେତନ ପାଦ ସାହାଯ୍ୟରେ ଗମନ କରିଥାଏ । ୧୫ ।

ଅନ୍ତଃପୁର ବୋଇଲେ ହୃଦୟ, ବିଷୂଚୀନ ବୋଇଲେ ମନ, । ଜୀବ ଏହି ମନର ଗୁଣ—ସତ୍ତ୍ୱ, ରଜଃ ଓ ତମଃ ଦ୍ୱାରା ଯଥାକ୍ରମେ ପ୍ରସାଦ, ହର୍ଷ, ମୋହ ପ୍ରାପ୍ତ ହୁଏ । ୧୬ ।

ସ୍ୱପ୍ନାବସ୍ଥାରେ ବୁଦ୍ଧି ଯେପରି ବିକୃତ ପ୍ରାପ୍ତ ହୁଏ, ଜାଗ୍ରତ ଅବସ୍ଥାରେ ଯେପରି ବିସ୍ତାର ଜନ୍ମାଏ ବୁଦ୍ଧି-ଗୁଣଲିପ୍ତ ହୋଇ ଆତ୍ମା କେବଳ ସାକ୍ଷୀରୂପେ ତଦୀୟ ବୃତ୍ତିର ଅନୁକରଣରେ ପ୍ରବର୍ତ୍ତିତ ହୋଇଥାଏ । ୧୭ ।

ପୂର୍ବେ ଯେଉଁ ପଞ୍ଚଅଶ୍ୱଯୁକ୍ତ ରଥ ବିଷୟ କୁହାଯାଇଅଛି, ତାହା ପଞ୍ଚଜ୍ଞାନେନ୍ଦ୍ରିୟଯୁକ୍ତ ଦେହ, ସମ୍ବତ୍ସର ସ୍ୱରୂପ କାଳ ଏହି ରଥର ବେଗ, ବାସ୍ତବିକ ତାହା ଗତିସମ୍ପନ୍ନ ନୁହେଁ । ପାପ ଓ ପୁଣ୍ୟ ଏହାର

---

ବୈଶସ ନାମ ନର୍କ କହି
ସେ ଦ୍ୱାରେ ମଳ ଉତ୍ସର୍ଗଇ
ଅନ୍ଧ ବୋଲି ବୋଇଲୁ ଯାହା
ଏ ପାଣି ପାଦ ବୋଲି ତାହା
ଏ ବେନି ଇନ୍ଦ୍ରିୟଙ୍କ ବିଷୟ
କହିବା ଶୁଣ ତା ନିର୍ଣ୍ଣୟ
ଆଦାନ ପ୍ରଦାନ ସେ କରେ
ଯେହ୍ନୋ ବିଷୟ ଅଧିକାରେ
ଦ୍ୱିତୀୟ ଅନ୍ଧ ଯେ ପଦ୍ମର
କହିବା ଏଥିର ବିସ୍ତର
ଏ ଇନ୍ଦ୍ରି ଯୋଗେ ପୁରଞ୍ଜନ
ତାମାର୍ଥେ କରଇ ଗମନ । ୧୫ ।

ଅନ୍ତର ପୁର ବୋଲି ଯାହା
ହୃଦୟପଦ୍ମ ବୋଲି ତାହା
ବିଷୂଚି ନାମଟି ଯାହାର
ଏ ମନ ନାମ ନୃପବର
ତା ବଶେ ଥାଇ ଯେ ପୁରୁଷ
ଭଜଇ ହରଷ ବିରସ । ୧୬ ।
ଏ ଜୀବ ପ୍ରକାଶ କରଇ
ବୁଦ୍ଧି ଯନ୍ତ୍ର କ ଚଳାଉଛି
ତା ବଶେ ପୁରୁଷ ଅଧୀନ
କରଇ ନାନା କର୍ମ୍ମମାନ । ୧୭ ।
ଏ ଦେହ ରଥ ସ୍ୱରୂପେଣ
ତୋତେ କହୁଛି ନୃପଗଣ

ଏ ରଥେ ଅଶ୍ୱରୂପ ହୋଇ
ଇନ୍ଦ୍ରିୟଗଣେ ଛନ୍ତି ରହି
ପଞ୍ଚ ବିଷୟ ମାର୍ଗେ ହୁନ୍ତେ
ଗମନ୍ତି ସମ୍ବତ୍ସର ଯାଏ
ଈଶ୍ୱର ଆଜ୍ଞାରେ ନିର୍ମ୍ମିତ
ଏ ରଥ ସକଳ ସଂଯୁକ୍ତ
ପୁଣ୍ୟ ପାତକ ଚକ ଦୁଇ
ଈଶ୍ୱରେ ଅହଂକାର ବହି
ଧ୍ୱଜ ସ୍ୱରୂପେ ତିନି ଗୁଣ
ରଥ ବନ୍ଧନ ପଞ୍ଚ ପ୍ରାଣ । ୧୮ ।

ମନୋରଶ୍ମି ରବ୍ଚୁଦ୍ଧିସୂତୋ ହୃନ୍‌ନୀଡ଼ୋ ଦ୍ୱନ୍ଦ୍ୱକୁବରଃ ।
ପଞ୍ଚେନ୍ଦ୍ରିୟାର୍ଥପ୍ରକ୍ଷେପଃ ସପ୍ତଧାତୁବରୁଥକଃ । ୧୯ ।
ଆକୂତିର୍ବିକ୍ରମୋ ବାହ୍ୟୋ ମୃଗତୃଷ୍ଣାଂ ପ୍ରଧାବତି ।
ଏକାଦଶେନ୍ଦ୍ରିୟଚମୂଃ ପଞ୍ଚସୂନାବନୋଦକୃତ୍-
ସମ୍ବତ୍‌ସରଶ୍ଚଣ୍ଡବେଗଃ କାଲୋ ଯେନୋପଲକ୍ଷିତଃ । ୨୦ ।
ତସ୍ୟାହାନୀହ ଗନ୍ଧର୍ବା ଗନ୍ଧର୍ବ୍ୟୋ ରାତ୍ରୟଃ ସ୍ମୃତାଃ ।
ହରନ୍ତ୍ୟାୟୁଃ ପରିକ୍ରାନ୍ତ୍ୟା ଷଷ୍ଟ୍ୟୁତ୍ତରଶତତ୍ରୟମ୍ । ୨୧ ।
କାଲକନ୍ୟା ଜରା ସାକ୍ଷାଲ୍ଲୋକସ୍ତାଂ ନାଭିନନ୍ଦତି ।
ସ୍ୱସାରଂ ଜଗୃହେ ମୃତ୍ୟୁଃ କ୍ଷୟାୟ ଯବନେଶ୍ୱରଃ । ୨୨ ।

---

ଦୁଇଟି ଚକ୍ର, ସତ୍ତ୍ୱ, ରଜ, ତମଃ ଏହାର ତନୋଟି ଧ୍ୱଜ, ପଞ୍ଚପ୍ରାଣ ଏହାର ବନ୍ଧନ, ମନ ଏହାର ରଶ୍ମି, ବୁଦ୍ଧି ଏହାର ସାରଥି, ରଥୀର ଉପବେଶନ ସ୍ଥାନ ହୃଦୟ ପୁଣ୍ଡରୀକ, ଯୁଗ ବନ୍ଧସ୍ଥାନ ଶୋକ ଓ ମୋହ, ତାହାର ପ୍ରକ୍ଷେପ ସ୍ଥାନ ଶବ୍ଦାଦପଞ୍ଚଇନ୍ଦ୍ରିୟାର୍ଥ ରଥରକ୍ଷା ନିମିତ୍ତ ଚର୍ମାଦ ଆବରଣ ସପ୍ତଧାତୁ, ଏହା ଜାଣି ରଖ । ୧୮,୧୯ ।

ପୁରୁଷ ଏହି ରଥରେ ଆରୋହଣ କରି ମୃଗତୃଷ୍ଣା ସ୍ୱରୂପ ମୃଗସ୍ୱାକୁ ଗମନ କରେ, ପଞ୍ଚକର୍ମେନ୍ଦ୍ରିୟ ତାହାର ବିକ୍ରମ; ଏକାଦଶ ଇନ୍ଦ୍ରିୟ ତାହାର ସେନା, ପଞ୍ଚେନ୍ଦ୍ରିୟଦ୍ୱାରା ସେ ବିଷୟ ଭୋଗ କରିଥାଏ, ଚଣ୍ଡବେଗ ନାମକ ଯେଉଁ କାଳ ପ୍ରସଙ୍ଗ ଉଲ୍ଲେଖ କରାଯାଇଅଛି, ତାହା ସମ୍ବତ୍ସର । ୨୦ ।

ଦିବସମାନେ ଗନ୍ଧର୍ବ ଓ ରାତ୍ରିମାନେ ଗନ୍ଧର୍ବୀ, ଏମାନ ତନିଶଷାଠିଏ ସଂଖ୍ୟାରେ ଭ୍ରମଣକରି ପୁରୁଷର ଆୟୁ ହରଣ କରୁଅଛନ୍ତି । ୨୧ ।

କାଳକନ୍ୟା ଜରା, ଲୋକେ ତାହାକୁ ସାକ୍ଷାତ୍‌ଭବରେ ସ୍ୱୀକାର କରିବାକୁ ଚାହାନ୍ତି ନାହିଁ । ଯବନେଶ୍ୱର ମୃତ୍ୟୁ, ଲୋକବିନାଶାର୍ଥ ତାହାକୁ ଭଗ୍ନୀରୂପ ଗ୍ରହଣ କରିବାକୁ ହୁଏ, ଆଧି ଓ ବ୍ୟାଧି ନାମକ

---

ବୁଦ୍ଧି ସାରଥି ରୂପେ ରହି
ଏ ମନ ରଶ୍ମି ଅଟେ ତହିଁ
ହୃଦୟ ପଙ୍କଜରେ ରଥୀ
ବସିବା ଆସନ ତା ତଥି
ରଥ କୁବର ଦ୍ୱନ୍ଦ ଧୁର
ଇନ୍ଦ୍ରି ବିଷୟ ତହିଁ ଶର
ସପତ ଧାତୁ ଆବରଣ
ତାର ବିକ୍ରମ ମୂର୍ତ୍ତି ଜାଣ
ଇନ୍ଦ୍ରିୟ ରଥେ ରଥୁ ଥାଇ
ସେ ମୃଗ ତୃଷ୍ଣାରେ ଧାମଇ

ଇନ୍ଦ୍ରିଙ୍କ ଅନ୍ୟାୟ ବିଷୟେ
ଭୁଞ୍ଜଇ ମୃଗୟାର ପ୍ରାୟେ
ଏ ସମ୍ବତ୍ସର ରୂପେ କାଳ
ଚଣ୍ଡବେଗ ନାମେ ଭୂପାଳ ।୧୯,୨୦
ଗନ୍ଧ-ଗନ୍ଧର୍ବୀ ଦିବା ନିଶି
ତ୍ରିଶତ ଷାଠିଏ ପ୍ରକାଶି
ଏ ସର୍ବେ କାଳସଙ୍ଗେ ଥାନ୍ତି
ପୁରୁଷଆୟୁଷ ହରନ୍ତି । ୨୧ ।
କାଳଦୁହିତା ଯାକୁ କହି
ଜରାର ନାମ ଅଟେ ସେହି

ଯେ ପ୍ରାଣୀ ରୂପ କାନ୍ତି ହରେ
ଦେଖିଲେ ପ୍ରାଣୀ ତାକୁ ଡରେ
ଏଣୁ ତାହାକୁ କେହି ଭଲେ
ବରଣେ କେହି ନ ଗଛନ୍ତେ
ସେ ମୃତ୍ୟୁ ତାରେ ଭଗ୍ନୀ ପ୍ରାୟେ
ସ୍ନେହେ ଆବୋରି ନିତ୍ୟେ ରହେ
ଯବନଅଧିପତି ଯେହି
ମୃତ୍ୟୁର ନାମ ଅଟେ ସେହି
ଏ ମୃତ୍ୟୁ ଯମରୂପ ଧରି
ଜୀବବିନାଶେ ଅଧିକାରୀ ।୨୨।

ଆଧୟୋ ବ୍ୟାଧୟସ୍ତସ୍ୟ ସୈନିକା ଯବନାଶ୍ଚରାଃ ।
ଭୂତୋପସର୍ଗାଶୁରୟଃ ପ୍ରଜ୍ୱାରୋ ଦ୍ୱିବିଧୋ ଜ୍ୱରଃ । ୨୩ ।
ଏବଂ ବହୁବିଧୈର୍ଦୁଃଖୈର୍ଦୈବଭୂତାତ୍ମସମ୍ଭବୈଃ ।
କ୍ଲିଶ୍ୟମାନଃ ଶତଂ ବର୍ଷଂ ଦେହେ ଦେହୀ ତମୋବୃତାଃ । ୨୪ ।
ପ୍ରାଣେନ୍ଦ୍ରିୟମନୋଧର୍ମାନାତ୍ମନ୍ୟଧ୍ୟସ୍ୟ ନିର୍ଗୁଣାଃ ।
ଶେତେ କାମଲବାନ୍ ଧ୍ୟାୟନ୍ ମମାହମିତି କର୍ମକୃତ୍ । ୨୫ ।
ଯଦାତ୍ମାନମବିଜ୍ଞାୟ ଭଗବନ୍ତଂ ପରଂ ଗୁରୁମ୍ ।
ପୁରୁଷସ୍ତୁ ବିଷଜ୍ଜେତ ଗୁଣେଷୁ ପ୍ରକୃତେଃ ସ୍ୱଦୃକ୍ । ୨୬ ।
ଗୁଣାଭିମାନୀ ସ ତଦା କର୍ମାଣି କୁରୁତେଽବଶଃ ।
ଶୁକ୍ଳଂ କୃଷ୍ଣଂ ଲୋହିତଂ ବା ଯଥା କର୍ମାଭିଜାୟତେ । ୨୭ ।

---

ସୈନ୍ୟମାନେ ସେହି ଯବନେଶ୍ୱରର ଅନୁଚର, ପୂର୍ବେ ଯେଉଁ ଦୁଇପ୍ରକାର ଜ୍ୱର ବିଷୟ ବର୍ଣ୍ଣିତ କରାଯାଇ ଅଛି, ତନ୍ମଧ୍ୟରେ ଯେ ପ୍ରଜ୍ୱାର, ତାହାର ବେଗ ଅତ୍ୟନ୍ତ ଭୀଷଣ, ସେହି ପ୍ରଜ୍ୱାର ଲୋକର ମୃତ୍ୟୁର କାରଣ ।୨୨,୨୩

ଦେହୀ ଅଜ୍ଞାନାବୃତ ହୋଇ ଏହି ଦେହରେ ବିବିଧ ଆଧିଭୌତିକ ଆଧିଦୈବିକ, ଓ ଆଧ୍ୟାତ୍ମିକ ଦୁଃଖ ଭୋଗକରି ଶତବର୍ଷର ଜୀବିତ ରହେ । ୨୪ ।

ତାହାର ଆତ୍ମା ନିର୍ଗୁଣ, ମୋହ ବଶତଃ ପ୍ରାଣର ସ୍ୱଭାବ ସ୍ୱରୂପ ଅଶନ ପିପାସାଦି, ଇନ୍ଦ୍ରିୟର ଧର୍ମ ସ୍ୱରୂପ କାମାଦି ଏବଂ ମନର ଧର୍ମ ସ୍ୱରୂପ ସଂକଳ୍ପାଦି, ଏହି ଆତ୍ମାରେ ଆରୋପକରି ବିଷୟସୁଖ ଧ୍ୟାନ ପୂର୍ବକ 'ମୁଁ' ଓ 'ମୋର' ଏହି ଜ୍ଞାନରେ ପ୍ରବୃତ୍ତ ହୁଏ । ୨୫ ।

ବସ୍ତୁତଃ ପୁରୁଷ ସ୍ୱପ୍ରକାଶ ସ୍ୱଭାବ ହେଲେ ମଧ୍ୟ ଯେତେବେଳେ ନିଜର ପରମଗୁରୁ ଭଗବାନଙ୍କୁ ଜାଣି ନ ପାରି ପ୍ରକୃତିର ଗୁଣମାନଙ୍କରେ ଆସକ୍ତ ହୁଏ, ସେତେବେଳେ ସେ ଗୁଣାଭିମାନ ହେତୁରୁ ଅବଶ ହୋଇ ସାତ୍ତ୍ୱିକ ରାଜସିକ ଓ ତାମସିକକର୍ମରେ, ଏବଂ ତଦ୍ଦ୍ୱାର ଫଳରେ କର୍ମାନୁରୂପ ଜନ୍ମଗ୍ରହଣ କରେ । ୨୬,୨୭ ।

---

ଯବନେ ତାର ସେନାପତି
ଏ ଆଧି ବ୍ୟାଧି ଯେତେ ଛନ୍ତି
ଏ ଜୀବ ଶରୀରେ ପୀଡ଼ନ୍ତି
ଏଣୁ ଏ ମୃତ୍ୟୁର ସଙ୍ଗତି
ପ୍ରଜ୍ୱର ଆଦି ଯେତେ ଜ୍ୱର
ପ୍ରବେଶେ ନାଶନ୍ତି ଶରୀର ।୨୩।
ବିବିଧ ଦୁଃଖେ ତାପତ୍ରୟେ
ପୀଡ଼ନ୍ତି ପ୍ରାଣ ଶେଷ ଯାଏ
ପ୍ରାଣଇନ୍ଦ୍ରିୟ ମନ ଧର୍ମ
ନିର୍ଗୁଣ ଆତ୍ମାରେ ଅର୍ପଣ

ଏ କାମ-ସୁଖଲବମାନେ
ଭୁଞ୍ଜଇ ଦୁଃଖ ସୁଖଗାନେ
ଏ ମୋର ବୋଲି ଅହଙ୍କାର
ବହନ୍ତି ଦୁଃଖ ନିରନ୍ତର ।୨୪,୨୫
ପରମ ଆତ୍ମା ଭଗବାନ
ସେ ସର୍ବ ହେତୁ ଚଇତନ
ଯାବତ ତାଙ୍କୁ ନ ଜାଣଇ
ଏ ଜୀବ ଭ୍ରମେ ଭ୍ରମୁ ଥାଇ

ତାବତ ପ୍ରକୃତି ଗୁଣରେ
ଏ ଜୀବ ପଡ଼ି ଅହଂକାର
ଗୁଣାଭିମାନୀ କରନ୍ତିରେ
ଅବଶେ କର୍ମରେ ପଶିରେ
ସାତ୍ତ୍ୱିକ ରଜ ତମ ଆଦି
କର୍ମେ ଯେ ହୋଏ ଦ୍ରବ୍ୟ ବିଧି
ପୁରୁଷ ଯେ କର୍ମ କରଇ
ସେଅନୁସାରେଦେହବହଇ।୨୬,୨୭

ଶୁକ୍ଲାତ୍ ପ୍ରକାଶଭୂයିଷ୍ଠାଂଲ୍ଲୋକାନାପ୍ନୋତି କର୍ହିଚିତ୍ ।
ଦୁଃଖୋଦର୍କାନ୍ କ୍ରିୟାୟାସାଂସ୍ତମଃଶୋକୋତ୍କଟାନ୍ କ୍ୱଚିତ୍ ।୨୮।
କ୍ୱଚିତ୍ ପୁମାନ୍ କ୍ୱଚିଚ୍ଚ ସ୍ତ୍ରୀ କ୍ୱଚିନ୍ନୋଭୟମନ୍ଧଧୀଃ ।
ଦେବୋ ମନୁଷ୍ୟସ୍ତିର୍ଯ୍ୟଗ୍‌ବା ଯଥାକର୍ମଗୁଣଂ ଭବଃ । ୨୯ ।
କ୍ଷୁତ୍‌ପରୀତୋ ଯଥା ଦୀନଃ ସାରମେୟୋ ଗୃହଂ ଗୃହମ୍ ।
ଚରନ୍ ବିନ୍ଦତି ଯଦ୍ଦିଷ୍ଟଂ ଦଣ୍ଡମୋଦନମେବ ବା । ୩୦ ।
ତଥା କାମାଶୟୋ ଜୀବ ଉଚ୍ଚାବଚପଥା ଭ୍ରମନ୍ ।
ଉପର୍ଯ୍ୟଧୋ ବା ମଧ୍ୟେ ବା ଯାତି ଦିଷ୍ଟଂ ପ୍ରିୟାପ୍ରିୟମ୍ । ୩୧ ।

---

ତାହାର କର୍ମ ସାତ୍ତ୍ୱିକ ହେଲେ ସେ ପ୍ରକାଶ ଭୂୟିଷ୍ଠ ଦେବାଦିଲୋକ, ରାଜସିକ ହେଲେ ସେ ଦୁଃଖ ଓ ଆୟାସ ବହୁଳ ନରଲୋକ ପ୍ରାପ୍ତହୁଏ, ଯେଉଁମାନେ ତାମସିକ କର୍ମକରନ୍ତି, ସେମାନେ ଉତ୍କଟ ଶୋକ ମୋହାଦି ପ୍ରଧାନ ତିର୍ଯ୍ୟଗାଦି ଲୋକପ୍ରାପ୍ତ ହୁଅନ୍ତି । ଏହିପରି ଅଜ୍ଞାନାବୃତ ବୁଦ୍ଧି ବିଶିଷ୍ଟ ହୋଇ ସେ କେତେବେଳେ ପୁରୁଷ, କେତେବେଳେ ସ୍ତ୍ରୀ, କେତେବେଳେ କ୍ଲୀବ, କେତେବେଳେ ଦେବ, କେତେବେଳେ ମନୁଷ୍ୟ, କେତେବେଳେ ବା ତିର୍ଯ୍ୟକ୍ ହୋଇ ଜନ୍ମ ଗ୍ରହଣ କରେ, କର୍ମର ଗୁଣାନୁସାରେ ଏହିପରି ଜନ୍ମ ହୋଇଥାଏ । ୨୮,୨୯ ।

ଯେପରି ଦୀନ କୁକ୍କୁର କ୍ଷୁଧାତୁର ହୋଇ ଘରେ ଘରେ ବୁଲୁଥାଏ, ଏବଂ ଭାଗ୍ୟବଳରେ କେଉଁଠାରେ ଦଣ୍ଡପାଏ ବିତାଡ଼ିତ ହୁଏ, କେଉଁଠାରେ ମୁଠାଏ ଭାତପାଏ, ସେହିପରିକର୍ମାଶୟ ଜୀବ ଉଚ୍ଚ ନୀଚ ବା ମଧ୍ୟ ଯୋନିରେ ଭ୍ରମଣ କରି କରି ପୂର୍ବାର୍ଜିତ କର୍ମାନୁସାରେ କୌଣସିଠାରେ ସୁଖ, କୌଣସିଠାରେ ଦୁଃଖ ପ୍ରାପ୍ତ ହୁଏ । ୩୦-୩୧ ।

---

ସାତ୍ତ୍ୱିକ କର୍ମ ଯେବା କରେ
ଅଧିକ ପ୍ରକାଶ ଲୋକରେ
ଏ ତିନି ଲୋକେ ଯଶ ତାର
ଗାବନ୍ତି ଦେବାସୁର ନର
ରାଜସ କର୍ମ ଯେ କରନ୍ତି
ଆଦ୍ୟରେ ସୁଖ ସେ ଲଭନ୍ତି
ପଶ୍ଚାତେ ଲଭନ୍ତି ବହୁ ଦୁଃଖ
ଏ ଭାବ ନ ଜାଣେ ମୂରୁଖ
ତାମସ କର୍ମ ତପ ଫଳ
ଯେ ଶୋକ ଦୁଃଖମୋହଆକୁଳ ।୨୮
ଅଜ୍ଞାନ ଭାବେ ମୂଢ଼ ଦେହୀ
ସ୍ୱକର୍ମ ବଶେ ଭ୍ରମୁ ଥାଇ
କେବା ପୁରୁଷ ନାରୀ ଦେହୀ
ଏ ଚରାଚର ଭ୍ରମେ ସେହି

ନପୁଂସ ଜନ୍ମ କେବେ ଧରେ
ଏ ରୂପେ କର୍ମ ଅନୁସାରେ
କେବେ ବା ଦେବତନୁ ପାଇ
ମନୁଷ୍ୟଯୋନି କେ ଲଭଇ
ଖଗାଦି ପଶୁଚରାଚରେ
ସ୍ୱକର୍ମ ଭୁଞ୍ଜନ୍ତି ପାମରେ । ୨୯ ।
ଯେସନେ କ୍ଷୁଧାତୁର ହୋଇ
ବିକଳେ କୁକ୍କୁର ଭ୍ରମଇ
ଆହାର ଅର୍ଥେ ନଗରରେ
ପଶଇ ନାନା ପୁର ଦ୍ୱାରେ
କାହିଁ ବା ଆହାର ମିଳଇ
କାହିଁ ନିର୍ଘାତେ ଦଣ୍ଡ ପାଇ
ସର୍ବେ ବୋଲନ୍ତି ମାର ମାର
ଦୁଷ୍ଟ ସଜ୍ଜନ ଆଦି ନର

ତା ଭାବେ କର୍ମ ଶତ୍ରୁପଣେ
ଜୀବେ ଦଣ୍ଡେ ଅନୁକ୍ଷଣେ
ପ୍ରାରବ୍ଧ ଭର୍ତ୍ସନା ଅନେକେ
ପାଇ ସେ ଭ୍ରମେ ଅତିରେକେ
ସେ ରୂପେ ଏ ଜୀବ ଜଞ୍ଜାଳ
ସ୍ୱକର୍ମ ବଳେ ଅଛି ଯାତ
ଏଣୁ ଏ କାମ ଅଶେ ମୋହ
ଜୀବେ କର୍ମେ ଭ୍ରମେ ଦେହୀ
କେବେ ବା ଉର୍ଦ୍ଧ୍ୱେ ଲୋକ ଭରେ
କେବେ ବା ଅଧୋ ମଧ୍ୟ ପୁରେ
ଏମନ୍ତେ ଉଚ୍ଚ ନୀଚେ ଭ୍ରମି
କର୍ମ ଭୁଞ୍ଜଇ ଦୁଃଖ-କ୍ଷମୀ
ସ୍ୱବଶ ନୋହେ ପ୍ରିୟାପ୍ରିୟେ
କାହିଁବା ଦୁଃଖ ସୁଖ ଭୟେ ୩୦,୩୧

ଦୁଃଖେଷ୍ୱେକତରେଣାପି ଦୈବଭୂତାତ୍ମହେତୁଷୁ ।
ଜୀବସ୍ୟ ନ ବ୍ୟବଚ୍ଛେଦଃ ସ୍ୟାଚ୍ଚେତ୍ ତତ୍ତତ୍ପ୍ରତିକ୍ରିୟା । ୩୨ ।
ଯଥା ହି ପୁରୁଷୋ ଭାରଂ ଶିରସା ଗୁରୁମୁଦ୍‌ବହନ୍ ।
ତଂ ସ୍କନ୍ଧେନ ସ ଆଧତ୍ତେ ତଥା ସର୍ବାଃ ପ୍ରତିକ୍ରିୟାଃ । ୩୩ ।
ନୈକାନ୍ତତଃ ପ୍ରତୀକାରଃ କର୍ମଣାଂ କର୍ମ କେବଲମ୍ ।
ଦ୍ୱୟଂ ହ୍ୟବିଦ୍ୟୋପସୃତଂ ସ୍ୱପ୍ନେ ସ୍ୱପ୍ନ ଇବାନଘ । ୩୪ ।
ଅର୍ଥେ ହ୍ୟବିଦ୍ୟମାନେଽପି ସଂସୃତିର୍ନ ନିବର୍ତ୍ତତେ ।
ମନସା ଲିଙ୍ଗରୂପେଣ ସ୍ୱପ୍ନେ ବିଚରତୋ ଯଥା । ୩୫ ।

ସେହି ଦୁଃଖାଦିର ପ୍ରତିକାର ଶାସ୍ତ୍ରରେ ପ୍ରଦର୍ଶିତ ହୋଇଥିଲେ ମଧ୍ୟ ତ୍ରିବିଧ ଦୁଃଖମଧ୍ୟରୁ କୌଣସି ହେଲେ ତାହାକୁ ଘେରି ରହିଥାଏ, ତହିଁରୁ ନିସ୍ତାର ଲାଭ କରିବାର ତାର ଉପାୟ ନାହିଁ । ମନୁଷ୍ୟ ମସ୍ତକରେ ଗୁରୁତରଭାର ବହନ କରି ଅତ୍ୟନ୍ତ କ୍ଳେଶ ବୋଧ କଲେ, ଯେତେବେଳେ ତହିଁର ପ୍ରତିକାର ନିମିତ୍ତ ତାହା ସ୍କନ୍ଧରେ ସ୍ଥାପନ କରେ, କିନ୍ତୁ ଯଥାର୍ଥରେ ତାହାର ଆତ୍ୟନ୍ତିକ ପ୍ରତିକାର ହୁଏ ନାହିଁ; ସମସ୍ତ ଦୁଃଖ ସ୍ଥଳର ପ୍ରତିକାର ମଧ୍ୟ ସେହିପରି । ୩୨,୩୩ ।

ହେ ଅନଘ ! ଜ୍ଞାନାଦିରହିତ କର୍ମଦ୍ୱାରା କଦାପି ସକାମକର୍ମମାନଙ୍କର ଐକାନ୍ତିକ ପ୍ରତିକାର ହୋଇ ନ ପାରେ । ଯେହେତୁ ଦୁଃଖମୟ କର୍ମ ଓ ତାହାର ପ୍ରତିକାରର ଉପାୟ ସ୍ୱରୂପ କର୍ମ ଉଭୟ ଅବିଦ୍ୟା ଜନିତ, ଯେପରି ସ୍ୱପ୍ନରେ ସ୍ୱପ୍ନ ଦୃଷ୍ଟ ସ୍ୱପ୍ନର ପ୍ରତିକାର ହୋଇ ନ ପାରେ, ପରନ୍ତୁ ଜାଗରଣହିଁ ତହିଁର ପ୍ରତିକାର; ସେହିପରି ସଂସାର ନିବୃତ୍ତି ସମସ୍ତଦୁଃଖର ପ୍ରତିକାର । ୩୪ ।

ଉପାଧିଭୂତ ମନଦ୍ୱାରା ସ୍ୱପ୍ନରେ ବିଚରଣଶୀଳ ପୁରୁଷର ଯେପରି ସର୍ପ ବ୍ୟାଘ୍ରାଦି ବସ୍ତୁ ବର୍ତ୍ତମାନ ନଥିଲେ ମଧ୍ୟ ଜାଗରଣ ଦ୍ୱାରା ନିଦ୍ରାଦୋଷରେ ଅପଗମ ବ୍ୟତୀତ ଯେପରି ଏ ଦୁଃଖର ନିବୃତ୍ତି ନ ହୁଏ, ସେହିପରି ଅବିଦ୍ୟାର ନିବୃତ୍ତି ବ୍ୟତୀତ ସଂସାରର ନିବୃତ୍ତି ହୋଇ ନ ପାରେ । ୩୫ ।

ଯାବତ ତାପତ୍ରୟ ଅଛି
ତାବତ ସୁଖ ନାହିଁ କିଛି
ଯେତେ ପ୍ରତିକାର ଇଚ୍ଛଇ
ଅତି ଦୁଃଖରେ ଦୁଃଖୀ ହୋଇ
ଯେସନେ ପ୍ରାଣୀ ଶିରଭାର
ଉଶ୍ୱାସି ରଖଇ କନ୍ଧର
ସେ କି ତାହାରେ ସ୍ଥିର ନୋହେ
ତେସନପ୍ରତିଦୁଃଖଦେହେ ।୩୨,୩୩

କାମିକ କର୍ମ୍ମଟି କେବଳ
ନୋହେ ଏକାନ୍ତ ପ୍ରତୀକାର
ଅବିଦ୍ୟାମାର୍ଗ କର୍ମ୍ମ ଦୁଇ
କିଏ କର୍ମ୍ମ କି କର୍ମ୍ମ ନାଶ ହୋଇ ?
ଯେସନେ ଶୟନେ ସ୍ୱପନ
ଦେଖଇ ବିବିଧ ବିଧାନ
ପ୍ରତୀତ ହୋଏ ନିଦ୍ରାଗତେ
ଅସତ୍ୟ ମଣେ ତା ଜାଗ୍ରତେ

ତେସନେ କର୍ମ୍ମେ କର୍ମ୍ମ ନାଶେ
ଧାମଣି ମିଥ୍ୟା ଅଭିଳାଷେ
ଯାବତ ଆତ୍ମଜ୍ଞାନ ନାହିଁ
ସଂସାର ନିବୃତ୍ତି ତା କାହିଁ
ଉପାଧି ବିଷୟକୁ ମନ
ବଳେ ଆଣଇ ସନ୍ନିଧାନ
ସ୍ୱପନ ପ୍ରତ୍ୟକ୍ଷ ସେ କରେ
ଭ୍ରମତ ଜନ ଏ ସଂସାରେ ।୩୪,୩୫

ଅଥାତ୍ମନୋଽର୍ଥଭୂତସ୍ୟ ଯତୋଽନର୍ଥପରମ୍ପରା ।
ସଂସୃତିସ୍ତଦ୍‌ବ୍ୟବଚ୍ଛେଦୋ ଭକ୍ତ୍ୟା ପରମୟା ଗୁରୌ । ୩୬ ।
ବାସୁଦେବେ ଭଗବତି ଭକ୍ତିଯୋଗଃ ସମାହିତଃ ।
ସଧ୍ରୀଚୀନେନ ବୈରାଗ୍ୟଂ ଜ୍ଞାନଞ୍ଚ ଜନୟିଷ୍ୟତି । ୩୭ ।
ସୋଽଚିରାଦେବ ରାଜର୍ଷେ ସ୍ୟାଦଚ୍ୟୁତକଥାଶ୍ରୟଃ ।
ଶୃଣ୍ୱତଃ ଶ୍ରଦ୍ଦଧାନସ୍ୟ ନିତ୍ୟଦା ସ୍ୟାଦଧୀୟତଃ । ୩୮ ।
ଯତ୍ର ଭାଗବତା ରାଜନ୍ ସାଧବୋ ବିଶଦାଶୟାଃ ।
ଭଗବଦ୍ ଗୁଣାନୁକଥନଶ୍ରବଣବ୍ୟଗ୍ରଚେତସଃ । ୩୯ ।
ତସ୍ମିନ୍ ମହନ୍ମୁଖରିତା ମଧୁଭିଚ୍ଚରିତ୍ରପୀୟୂଷଶେଷସରିତଃ ପରିତଃ ସ୍ରବନ୍ତି ।
ତା ଯେପିବନ୍ତ୍ୟବିତୃଷୋନୃପଗାଢ଼କର୍ଣ୍ଣୈସ୍ତାନ୍‌ନସ୍ପୃଶନ୍ତ୍ୟଶନତୃଡ୍‌ଭୟଶୋକମୋହାଃ ।୪୦

ଅତଏବ ପୁରୁଷାର୍ଥ ସ୍ୱରୂପ ଆତ୍ମାର ଜ୍ଞାନ ହେତୁ ଅନର୍ଥ ପରଂପରା ସ୍ୱରୂପ ସଂସାର ଜାତ ହୋଇ ଥାଏ, କିନ୍ତୁ ଗୁରୁସ୍ୱରୂପ ବାସୁଦେବଙ୍କଠାରେ ପରମାଭକ୍ତି ହେଲେ ତହିଁର ବିନାଶ ହୁଏ । ୩୬ ।

ଭଗବାନ୍ ବାସୁଦେବଙ୍କଠାରେ ସମ୍ୟକ ପ୍ରବୃତ୍ତି ହେଲେ ଅତିଶୀଘ୍ର ଜ୍ଞାନ ଓ ବୈରାଗ୍ୟ ଜାତହୁଏ ।୩୭

ହେ ରାଜର୍ଷେ ! ଯେ ଶ୍ରଦ୍ଧା ଯୁକ୍ତ ହୋଇ ନିରନ୍ତର ଭଗବତ୍ ପ୍ରସଙ୍ଗ ଶ୍ରବଣ ଓ ଅଧ୍ୟୟନକରେ, ଭଗବାନ୍ ଅଚ୍ୟୁତଙ୍କ ପ୍ରସଙ୍ଗ ଆଶ୍ରୟକରେ ତାହାର ଭକ୍ତି ଅବିଳମ୍ବେ ଉତ୍ପନ୍ନ ହୁଏ । ୩୮ ।

ମହାରାଜ ! ଯେଉଁଠାରେ ଭଗବାନଙ୍କର ଗୁଣାନୁବାଦ ଓ ଗୁଣ ଶ୍ରବଣ ବିଷୟରେ ବ୍ୟଗ୍ରଚିତ୍ତ ନିର୍ମଳାନ୍ତଃକରଣ ଭଗବଦ୍‌ଭକ୍ତ ସଜ୍ଜନଗଣ ଅବସ୍ଥାନ କରନ୍ତି, ସେହିସ୍ଥାନରେ ମହାଜନକୀର୍ତ୍ତିତ ନାରାୟଣ ଚରିତାମୃତ ବାହିନୀ ନଦୀ ଚାରିଆଡ଼େ ପ୍ରବାହିତ ହୁଏ, ଯେଉଁମହାତ୍ମାଗଣ ଅହଂବୁଦ୍ଧି ଶୂନ୍ୟ ହୋଇ ଅଭିନିବିଷ୍ଟ ଚିତ୍ତରେ କର୍ଣ୍ଣପୁଟରେ ସେହି ପୀୟୂଷ ବାହିନୀ ସ୍ରୋତସ୍ୱତୀର ସେବା କରନ୍ତି, ସେମାନଙ୍କୁ କ୍ଷୁଧା ପିପାସା, ଭୟ, ଶୋକ, ମୋହ ସ୍ପର୍ଶ କରି ପାରେ ନାହିଁ । ୩୯,୪୦ ।

ଅନର୍ଥ ହେତୁ ଏ ସଂସାର
ନିରତେ ଘୋର ଭୟଙ୍କର
ନିରତେ ଗତାଗତେ ଭ୍ରମି
ଜନ୍ମ ମରଣେ ପଥଶ୍ରମୀ
ଏ ଜୀବ ପାର କେବେ ନାହିଁ
ଏ ଚରାଚରେ ଭ୍ରମେ ସେହି
ପରମ ଗୁରୁ ଭଗବାନ
ତା ପାଦେ ଭକ୍ତି ଭାବେ ଧ୍ୟାନ
ତେତେବେ ଏ ସଂସାର ବିନାଶ
ଏ ବିନେ ବନ୍ଧ ମୋହପାଶ ।୩୬।
ଯାବତ କୃଷ୍ଣ ନ ଭଜଇ
ତାବତ ଗତି ଜୀବେ ନାହିଁ

ଯେତେବେ ଭକତିଯୋଗେ ନର
ଭଜଇ ଗୋବିନ୍ଦପୟର
ତେତେବେ ବୈରାଗ୍ୟ ଜ୍ଞାନ ଜାତ
ପ୍ରକାଶି ନାଶଇ ଦୁରିତ ।୩୭।
ସେ ଜ୍ଞାନେ କୃଷ୍ଣପାଦେ ମତି
ହରି ଭଜନେ ହୋଇ ରତି
ଶ୍ରଦ୍ଧାନ୍ ଭାବେ ଗୁଣ ଗାଇ
ପ୍ରେମ ପୁଲକ ଅଶ୍ରୁ ବହି
ତେତେବେ ସେ ଜ୍ଞାନଯୋଗେ ହରି
ଲଭଇ କର୍ମ ପରିହରି ।୩୮।
ଯେ ଭାଗବତ ସାଧୁଜନ
ବିଶ୍ରାମ କରନ୍ତି ଯେ ସ୍ଥାନେ

କୃଷ୍ଣଚରିତ ଅନୁକ୍ଷଣେ
ଗାବନ୍ତି ଶୁଣନ୍ତି ଶ୍ରବଣେ
ବିଷୟସୁଖ ନ ଭୋଗନ୍ତି
ନିରତେ ନାମ ଆସ୍ୱାଦନ୍ତି
ଯେ ସ୍ଥାନେ ନାମସୁଧା-ନଦୀ
ଶ୍ରବଣେ ଦଣ୍ଡଦଣ୍ଡେ ଯାଇ
ଯେ ଶ୍ରୁତି ଦ୍ୱାରେ ତା ପିବନ୍ତି
ଏ ମାୟାବନ୍ଧୁ ନିସ୍ତରନ୍ତି
ଏ ଶୋକ ମୋହ ପରିହରେ
ସନ୍ତୁଷ୍ଟେ ଭଗସିନ୍ଧୁ ତରେ ।୩୯,୪୦

ଏତୈରୁପଦ୍ରୁତୋ ନିତ୍ୟଂ ଜୀବଲୋକଃ ସ୍ୱଭାବଜୈଃ ।
ନ କରୋତି ହରେର୍ନୂନଂ କଥାମୃତନିଧୌ ରତିମ୍ । ୪୧ ।
ପ୍ରଜାପତିପତିଃ ସାକ୍ଷାଦ୍ ଭଗବାନ୍ ଗିରିଶୋ ମନୁଃ ।
ଦକ୍ଷାଦୟଃ ପ୍ରଜାଧ୍ୟକ୍ଷା ନୈଷ୍ଠିକାଃ ସନକାଦୟଃ । ୪୨ ।
ମରୀଚିରତ୍ର୍ୟଙ୍ଗିରସୌ ପୁଲସ୍ତ୍ୟଃ ପୁଲହଃ କ୍ରତୁଃ ।
ଭୃଗୁର୍ବଶିଷ୍ଠ ଇତ୍ୟେତେ ମଦନ୍ତା ବ୍ରହ୍ମବାଦିନଃ । ୪୩ ।
ଅଦ୍ୟାପି ବାଚସ୍ପତୟସ୍ତପୋବିଦ୍ୟାସମାଧିଭିଃ ।
ପଶ୍ୟନ୍ତୋଽପି ନ ପଶ୍ୟନ୍ତି ପଶ୍ୟନ୍ତଂ ପରମେଶ୍ୱରମ୍ । ୪୪ ।
ଶବ୍ଦବ୍ରହ୍ମଣି ଦୁଷ୍ପାରେ ଚରନ୍ତ ଉରୁବିସ୍ତରେ ।
ମନ୍ତ୍ରଲିଙ୍ଗୈର୍ବ୍ୟବଚ୍ଛିନ୍ନଂ ଭଜନ୍ତୋ ନ ବିଦୁଃ ପରମ୍ । ୪୫ ।

---

ଜୀବ ତାହାର ସ୍ୱଭାବଜ କ୍ଷୁଧା ତୃଷ୍ଣା ଭୟ ଶୋକାଦିରେ ଉପଦ୍ରୁତ ହୋଇ ହରିକଥାମୃତ ସିନ୍ଧୁରେ ଆଶକ୍ତି ପ୍ରକାଶ କରି ପାରେ ନାହିଁ । ୪୧ ।

ପ୍ରଜାପତିମାନଙ୍କର ପତି ସାକ୍ଷାତ୍ ବ୍ରହ୍ମା, ଭଗବାନ୍ ଗିରିଶ, ମନୁ ଦକ୍ଷାଦି ପ୍ରଜାପତିଗଣ, ସନକାଦି ନୈଷ୍ଠିକ ବ୍ରହ୍ମର୍ଷି, ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ଭୃଗୁ, ବଶିଷ୍ଠ ଏବଂ ମୋ ତୁଲ୍ୟ ବ୍ରହ୍ମବାଦୀ ପୁରୁଷମାନେ ଓ ବାଚସ୍ପତିମାନେ ତପସ୍ୟା, ବିଦ୍ୟା, ସମାଧି ପ୍ରଭୃତିଦ୍ୱାରା ସତତ ଅନ୍ୱେଷଣ କରି ସୁଦ୍ଧା ଅଦ୍ୟାପି ସର୍ବସାକ୍ଷୀ ପରମେଶ୍ୱରଙ୍କ ସାକ୍ଷାତ୍ ଲାଭ କରିପାରି ନାହାନ୍ତି । ୪୨,୪୪ ।

ଅପାର ଅନନ୍ତ ବେଦମନ୍ତ୍ର ବାହୁଲ୍ୟରେ ବିଚରଣ କରି ସୁଦ୍ଧା ଏବଂ ବେଦର ମନ୍ତ୍ରାର୍ଥ ଅନୁଯାୟୀ ବଜ୍ରାଦି ଚିହ୍ନଦ୍ୱାରା ବ୍ୟବଚ୍ଛିନ୍ନ ଦେବଗଣଙ୍କୁ ଉପାସନା କରି ସୁଦ୍ଧା ସେମାନେ ପରମ ପୁରୁଷଙ୍କୁ ବିଦିତ ହୋଇ ପାରି ନାହାନ୍ତି । ୪୫ ।

---

ଯେଣୁ ଅଜ୍ଞାନ ଶୋକ ମୋହେ
ବିବେକହୀନେ ଦୁଃଖ ସହେ
ଏଣୁ ତା କୃଷ୍ଣେ ନୋହେ ରତି
ତା ନାମେ ନ ବଳଇ ମତି
ଯାବତ ସାଧୁସଙ୍ଗ ତାର
ନୋହିଛି ଶୁଣ ନୃପବର
ତାବତ ନୋହେ ସଦଗତି
ଯଜ୍ଞାଦି କର୍ମେ ନ ତରନ୍ତି
ଜଣୁଥିଲେ କହିଲୁଁ ସ୍ୱଜନ
ସତ୍ସଙ୍ଗ ଭକ୍ତି-ଉପାଦାନ
କୃଷ୍ଣାନୁମାର୍ଗ ପଥ ଏହି
ଅନ୍ୟହିଁ ଗତି ଜୀବେ କାହିଁ ।୪୧।

ବ୍ରହ୍ମା ଶଙ୍କର ଦକ୍ଷ ମନୁ
ବିଶୁଦ୍ଧ ସନକାଦି ତନୁ
ମରୀଚି ଆଦି ଅଙ୍ଗିରସ
ପୁଲହ ପୁଲସ୍ତ୍ୟ ପ୍ରକାଶ
କ୍ରତୁ ଅଗସ୍ତି ବଶିଷ୍ଠାଦି
ଅପରେ ଯେତେ ବ୍ରହ୍ମବାଦୀ
ଭୃଗ୍ୱାଦି ଆମ୍ଭେ ଯେତେ ମୁନି
ଅଦ୍ୟାପି ନ ପାରିଲୁ ଚିହ୍ନି
ଆତ୍ମେ ସମାଧି ଯୋଗବଳେ
ଦେଖୁଁ ନ ଦେଖୁଁ ତାଙ୍କୁ ତୋଳେ
ସେ ଦେଖି ଦେଖାନ୍ତି ସର୍ବଙ୍କୁ
ଦୃଷ୍ଟିର ଦୃଷ୍ଟି ବୋଲି ତାଙ୍କୁ

ଯେ ଆତ୍ମା ସର୍ବ ଜୀବ ହେତୁ
ଜୀବ ନଜାଣି ଭ୍ରମେ ତହୁଁ ।୪୨-୪୪
ସେ ବେଦ ଶାସ୍ତ୍ରେ ଅଗୋଚର
ଅଦୃଶ୍ୟ ଅତି ସୂକ୍ଷ୍ମତର
ଏଣୁ କେ ବେଦମାର୍ଗେ ଜାଣେ
ଅବ୍ୟକ୍ତ ବ୍ରହ୍ମ ସୁରଗଣେ
ସେ ବେଦ ଦୁସ୍ତର ବିସ୍ତାର
ତାହାର ନାହିଁ ଅନ୍ତ ପାର
ବେଦବିହିତ ଯେତେ କର୍ମ
ଯଜ୍ଞ ଆଚରି ମୁନି ଭ୍ରମ
ଇନ୍ଦ୍ରାଦି ଦେବଙ୍କୁ ପୂଜନ୍ତି
ଏଣୁ ଏ ବ୍ରହ୍ମ ନ ଜାଣନ୍ତି ।୪୫।

ଯଦା ଯମନୁଗୃହ୍ଣାତି ଭଗବାନାତ୍ମଭାବିତଃ ।
ସ ଜହାତି ମତିଂ ଲୋକେ ବେଦେ ଚ ପରିନିଷ୍ଠିତାମ୍ । ୪୬ ।
ତସ୍ମାତ୍ କର୍ମସୁ ବର୍ହିଷ୍ମନ୍ନଜ୍ଞାନାଦର୍ଥକାଶିଷୁ ।
ମାର୍ଥଦୃଷ୍ଟିଂ କୃଥାଃ ଶ୍ରୋତ୍ରସ୍ପର୍ଶିଷ୍ୱସ୍ପୃଷ୍ଟବସ୍ତୁଷୁ । ୪୭ ।
ସ୍ୱଂ ଲୋକଂ ନ ବିଦୁସ୍ତେ ବୈ ଯତ୍ର ଦେବୋ ଜନାର୍ଦ୍ଦନଃ ।
ଆହୁର୍ଧୂମ୍ରଧିୟୋ ବେଦଂ ସକର୍ମକମତଦ୍ୱିଦଃ । ୪୮ ।
ଆସ୍ତୀର୍ଯ୍ୟ ଦର୍ଭୈଃ ପ୍ରାଗଗ୍ରୈଃ କାର୍ତ୍ସ୍ନ୍ୟେନ କ୍ଷିତିମଣ୍ଡଳମ୍ ।
ସ୍ତବ୍ଧୋ ବୃହଦ୍ୱଧାନ୍ମାନୀ କର୍ମ୍ମ ନାବୈଷି ଯତ୍ ପରମମ୍-
ତତ୍କର୍ମ୍ମ ହରିତୋଷଂ ଯତ୍ ସା ବିଦ୍ୟା ତନ୍ମତିର୍ଯ୍ୟୟା । ୪୯ ।

---

ଯେତେବେଳେ ଭଗବାନ୍ ବାସୁଦେବ ପ୍ରସନ୍ନ ହୋଇ ଯାହାପ୍ରତି ଅନୁଗ୍ରହକରନ୍ତି, ସେତେବେଳେ ତାହାର ଲୋକବ୍ୟବହାର ଓ କର୍ମମାର୍ଗ ପରିନିଷ୍ଠିତା ବୁଦ୍ଧି ଦୂରୀଭୂତା ହୋଇ ଯାଏ । ୪୬ ।

ହେ ବର୍ହିଷ୍ମନ୍ ! ଏଣୁ ଅଜ୍ଞାନବଶତଃ ପରମାର୍ଥରୂପେ ପ୍ରତୀୟମାନ ଶ୍ରୋତ୍ରପ୍ରିୟ (ଅର୍ଥାତ୍ ଯାହାର ଯଥାର୍ଥ ବସ୍ତୁ ସହିତ ସମ୍ପର୍କ ନ ଥାଏ) ସେହି କର୍ମ ସମୂହକୁ ପରମାର୍ଥ ବୋଲି ମନେ କରେ ନାହିଁ ।୪୭।

ଯେଉଁମାନଙ୍କର ବୁଦ୍ଧି ମଳିନ, ସେମାନେ ବେଦକୁ କର୍ମପର ବୋଲି ବ୍ୟାଖ୍ୟା କରିଥାନ୍ତି, ପରନ୍ତୁ ସେମାନେ ବେଦର ଯଥାର୍ଥ ଅର୍ଥ ବିଷୟରେ ଅନଭିଜ୍ଞ, କାରଣ ଯେଉଁ ବୈକୁଣ୍ଠ ଲୋକରେ ସ୍ୱୟଂ ଜନାର୍ଦ୍ଦନ ବାସ କରନ୍ତି, ସେ ସ୍ଥାନକୁ ନିଜର ପ୍ରାପ୍ୟ ଲୋକବୋଲି ମନେ କରନ୍ତି ନାହିଁ, ( ପରନ୍ତୁ ସେମାନେ ସ୍ୱର୍ଗାଦିଲୋକକୁ ପ୍ରାପ୍ୟ ଲୋକ ବୋଲି ଭାବନ୍ତି ) । ୪୮ ।

ହେ ରାଜନ୍ ! ପୂର୍ବାଗ୍ର କୁଶଦ୍ୱାରା କ୍ଷିତିମଣ୍ଡଳ ଆଚ୍ଛାଦନ ପୂର୍ବକ ଅସଂଖ୍ୟ ପଶୁବଧ କରି ଆପଣାକୁ ମହାଯଜ୍ୱା ବୋଲି ଅହଙ୍କାର କରୁଛ, ଅତଏବ ସ୍ତବ୍ଧ ହୋଇ କର୍ମଦ୍ୱାରା ପ୍ରାପ୍ୟ ଯେଉଁଲୋକ ତାହା ତୁମ୍ଭେ ଜାଣି ପାରୁ ନାହିଁ, ଯଦ୍ୱାରା ଭଗବାନ୍ ହରିଙ୍କର ପରିତୋଷ ହୁଏ, ସେହି କର୍ମହିଁ କର୍ମ ଏବଂ ଯଦ୍ୱାରା ଭଗବାନଙ୍କଠାରେ ମତି ଜନ୍ମେ, ସେହି ବିଦ୍ୟାହିଁ ବିଦ୍ୟା । ୪୯ ।

---

ସେ ହରି ଯାରେ କରେ ଦୟେ
ତା ମତିବେଦେ ନିଷ୍ଠାନୋହେ ।୪୬
ଭ୍ରମଣମନ୍ତ୍ରେ କର୍ମ୍ମ ଫଳ
କର୍ମ୍ମ ବିନାଶେ ଜ୍ଞାନ ବଳ ।୪୭।
ମଳିନ ବୁଦ୍ଧି ଯେବା ହୋନ୍ତି
ସେମାନେ ବେଦକର୍ମ୍ମ ରତି
ଅଜ୍ଞାନୀ ବୋଲି ତାଙ୍କୁ ଜାଣ
ଯେ ଆତ୍ମା ନ ଜାଣି ପ୍ରମାଣ
ଯେ ଆତ୍ମାତତ୍ତ୍ୱେ ହରି ପାଇ
ତାହା ନ ବୁଝି କର୍ମ୍ମେ ବାଇ ।୪୮
ତୁ ରାଜା କର୍ମ୍ମକାଣ୍ଡେ ଭୋଳ
ତୋ ଯଜ୍ଞକର୍ମ୍ମ ମହୀସ୍ଥଳ
ଆଚ୍ଛାଦି ପ୍ରାଚୀ ନଗ୍ର ତୋର
କୁଶେ ପୂରିଲି ନୃପବର
ପ୍ରଜାଏ ଶସ୍ୟ କରଷଣେ
ନ ପାରି କ୍ଷୁଧା ପ୍ରତୋଷଣେ
ଅନ୍ନବିହୀନେ ସର୍ବଜନ୍ତୁ
ଦୁର୍ଭିକ୍ଷେ ମଲେ ତୋର ହେତୁ
ଏ ସର୍ବ ଜୀବ ବିନାଶିଲୁ
ଏ ହତ୍ୟାଦୋଷେଭାଗୀହେଲୁ ।୪୯

ହରିର୍ଦେହଭୃତାମାତ୍ମା ସ୍ୱୟଂ ପ୍ରକୃତିରୀଶ୍ୱରଃ ।
ତତ୍ପାଦମୂଲଂ ଶରଣଂ ଯତଃ କ୍ଷେମୋ ନୃଣାମିହ । ୫୦ ।
ସ ବୈ ପ୍ରିୟତମଶ୍ଚାତ୍ମା ଯତୋ ନ ଭୟମଣ୍ୱପି ।
ଇତି ବେଦ ସ ବୈ ବିଦ୍ୱାନ୍ ଯୋ ବିଦ୍ୱାନ୍ ସ ଗୁରୁର୍ହରିଃ । ୫୧ ।

ଶ୍ରୀନାରଦ ଉବାଚ ।

ପ୍ରଶ୍ନ ଏବଂ ହି ସଞ୍ଛିନ୍ନୋ ଭବତଃ ପୁରୁଷର୍ଷଭ ।
ଅତ୍ର ମେ ବଦତୋ ଗୁହ୍ୟଂ ନିଶାମୟ ସୁନିଶ୍ଚିତମ୍ । ୫୨ ।

ଶ୍ରୀହରିହିଁ ସମସ୍ତର କାରଣ ଏବଂ ସେ ଦେହଧାରୀ ଜୀବଜଗତର ଆତ୍ମା ଏବଂ ସ୍ୱୟଂ ଭଗବାନ୍, ତାହାଙ୍କ ପାଦମୂଳହିଁ ଏହି ଜଗତରେ ମାନବର ଏକମାତ୍ର ଆଶ୍ରୟ, ତହିଁରୁ ସେମାନେ ମଙ୍ଗଳଲାଭ କରିଥାନ୍ତି ।।

ଭଗବାନ୍ ଶ୍ରୀହରିହିଁ ପ୍ରିୟତମ ଆତ୍ମା, ତାହାଙ୍କଠାରୁ ଲେଶମାତ୍ର ଭୟର କାରଣ ନାହିଁ, ଏହା ଯେଉଁ ବ୍ୟକ୍ତି ଜାଣେ, ସେହି ବିଦ୍ୱାନ୍, ସେହିହିଁ ଗୁରୁ, ସେହିହିଁ ହରି । ୫୧ ।

ଶ୍ରୀନାରଦ କହିଲେ :—ହେ ପୁରୁଷ ଶ୍ରେଷ୍ଠ, ତୁମ୍ଭର ପ୍ରଶ୍ନର ଉତ୍ତର ଦେଲି, ବର୍ତ୍ତମାନ ତୁମ୍ଭଙ୍କୁ ଗୋଟିଏ ସୁଗୁପ୍ତ ରହସ୍ୟ କହୁ ଅଛି ଶ୍ରବଣ କର । ୫୨ ।

ତୁ ବିପ୍ରବାକ୍ୟେ ବିମୋହିତ
ନ ଜାଣି ବେଦର ବୃତ୍ତାନ୍ତ
ଅଜ୍ଞାନ କର୍ମେ ହେଲୁ ବନ୍ଧ
ତୁ ଆତ୍ମା ନଜାଣୁ ଦୁର୍ବୋଧ
ଏ କର୍ମେ ମୋକ୍ଷମାର୍ଗ ଦୂର
ତୁ ତାହା ନ କଲୁ ବିଚାର
ପରମ ତତ୍ତ୍ୱେ ନୋହେ ମତି
ଲଭିବୁ ଦୁଃସହ ଦୁର୍ଗତି
ଏ ବିପ୍ରେ ତୋ ହିତ ନଜାଣି
ନରକମାର୍ଗେ ତୋତେ ଟାଣି
ଏହାଙ୍କ ବାକ୍ୟେ ତୁ ରାଜନ
ତୁମେ ହୋଇଲୁ ହତଜ୍ଞାନ
ତୁ ଗୃହକୂପେ ଜନ୍ମଅନ୍ଧ
ଏ ବିପ୍ରେ କର୍ମକାଣ୍ଡେ ବନ୍ଧ
ଯେସନେ ଅନ୍ଧେ ଅନ୍ଧ ବାହି
ସେ ଯେହ୍ନେ କାର୍ଯ୍ୟେ ନ ଘଟଇ
ତେସନେ ଏହାଙ୍କ ବଚନ
ହେ ରାଜା ଘଟେ ତୁ ନ ଘେନ

ତୋତେ ଭଣ୍ଡିଲେ ଧନଆଶେ
ଇନ୍ଦ୍ରିୟ ସୁଖେ ଗୃହବାସେ
ତୋ ପୂର୍ବ ପୁଣ୍ୟ ବିନାଶିଲେ
ଜୀବ-ହିଂସନେ ଶିକ୍ଷା ଦେଲେ
ହରି ଆଶ୍ରୟ କର୍ମ ଯେତେ
ନ କହି ଭୁମାଇଲେ ତୋତେ
ଏ ବିପ୍ରେ ନ ଜାଣନ୍ତି ତାହା
ତେଣୁ ଭଣ୍ଡିଲେ ନରନାହା
ତୁ ତର୍କି ନ ପାରି ରାଜନ
ବିଅର୍ଥେ ଗଲା ତୋର ଦିନ
ଯେ କର୍ମେ ହରି ତୋଷ ହୋଏ
ତାହାକୁ କର୍ମ ବୋଲି ଗାଏ
ଉତ୍ତମ ବିଦ୍ୟା ସେ ରାଜନ
ଯେ ହରି କରନ୍ତି ଭଜନ
ସେ ଜ୍ଞାନୀ ଅଟେ ନୃପବର
ଯେ ହରିକର୍ମରେ ତତ୍ପର
ଯଜ୍ଞାଦି ଦାନ ପୁଣ୍ୟ ସେହି
ଜୀବହିଂସନ ଯେବେ ନାହିଁ

ଯେ ସର୍ବଭୂତଆତ୍ମା ହରି
ପ୍ରକୃତି ସ୍ୱରୂପେ ବିହରି
ସେ ଏକ ଆତ୍ମା ବେନି ଅଂଶ
ପ୍ରକୃତି ଭେଦେ ବହୁ ଦୃଶ୍ୟ
ଏମନ୍ତ ହରିରେ ଶରଣ
ତୁ ଯାଇ ପଶ ନୃପଗଣ । ୫୦ ।
ସେ ସର୍ବ ଆତ୍ମା ପ୍ରିୟ ହରି
ଯା ନାମ ଆଶ୍ରେ ଭୟୁଁ ତରି
ଏ କଥା ଯେ ବୁଝେ ପଣ୍ଡିତ
ସେ ସର୍ବ ଗୁରୁଟି ଅଚ୍ୟୁତ ।୫୧।
ଏ ତୁମ୍ଭ ସନ୍ଦେହ ଫେଡ଼ିଲୁଁ
ଯେ ଆତ୍ମାଜ୍ଞାନ ଶିକ୍ଷା ଦେଲୁଁ
ଅପରେ ଗୁପ୍ତ ଦୃଷ୍ଟାନ୍ତର
ତୋତେ କହିବା ନୃପବର
ତା ତୋତେ ବୁଝାନ୍ତେ ରାଜନ
ତେବେ ନୋହିଲା ତୋର ଜ୍ଞାନ ।୫୨

**କ୍ଷୁଦ୍ରଶ୍ଚରଂ ସୁମନସାଂ ଶରଣେ ମିଥିତ୍ୱା ରକ୍ତଂ ଷଡ଼ଙ୍ଘ୍ରିଗଣସାମସୁ ଲୁବ୍ଧକର୍ଣ୍ଣମ୍ ।**
**ଅଗ୍ରେ ବୃକାନସୁତୃପୋଽବିଗଣଯ୍ୟ ଯାନ୍ତଂ ପୃଷ୍ଠେ ମୃଗଂ ମୃଗୟ ଲୁବ୍ଧକବାଣଭିନ୍ନମ୍ ।୫୩।**

**ସୁମନଃସମଧର୍ମଣାଂ ସ୍ତ୍ରୀଣାଂ ଶରଣ ଆଶ୍ରମେ ପୁଷ୍ପମଧୁଗନ୍ଧବତ୍ କ୍ଷୁଦ୍ରତମଂ କାମ୍ୟକର୍ମ-ବିପାକଜଂ କାମସୁଖଲବଂ ଜୈହ୍ୱୌପସ୍ଥ୍ୟାଦିବିଚିନ୍ୱନ୍ତଂ ମିଥୁନୀଭୂୟ ତଦଭିନିବେଶିତମନସଂ ଷଡ଼ଙ୍ଘ୍ରିଗଣସାମଗୀତବଦତିମନୋହରବନିତାଦିଜନାଲାପେଷ୍ୱତିତରାମତିପ୍ରଲୋଭିତ-**

ହେ ରାଜନ୍ ! ପୁଷ୍ପୋଦ୍ୟାନରେ ଏହି ତୃଣଚର ହରିଣଟି ଚରି ବୁଲୁ ଅଛି, ତାହାକୁ ଦେଖ, ସହଚରୀ ହରିଣୀ ସହିତ ମିଳିତ ହୋଇ ତାହାଠାରେ ଆସକ୍ତ,ମଧୁଲୁବ୍ଧ ମଧୁକର ଗାନରେ ତାହାର ଚିତ୍ତ ନିମଗ୍ନ, ତାହାର ଅଗ୍ରଭାଗରେ ପରପ୍ରାଣହାରୀ ବ୍ୟାଘ୍ରାଦିଙ୍କୁ ସମ୍ମୁଖରେ ଦେଖି ମଧ୍ୟ ସେମାନଙ୍କ ପ୍ରତି ଦୃଷ୍ଟିପାତ ନ କରି ସେମାନେ ବୁଲୁଛନ୍ତି, ତାହାଙ୍କ ପଶ୍ଚାତରେ ମୃଗୟାଲୁବ୍ଧ ବ୍ୟାଧ ସେମାନଙ୍କୁ ବଧ କରିବାକୁ ଉଦ୍ୟତ ।୫୩

ପୁଷ୍ପର ସମାନ ଧର୍ମ ଶାଳିନୀ ( ଅର୍ଥାତ୍ ପୁଷ୍ପତୁଲ୍ୟ ପରିଣାମ ବିରସ ) ନାରୀଗଣ ଆଶ୍ରମରେ ରହି ପୁଷ୍ପଗନ୍ଧପରି ଅତି ତୁଚ୍ଛ ଏବଂ କାମ୍ୟକର୍ମରେ ପରିଣାମୋତ୍ପନ୍ନ କାମ ସୁଖର ବିନ୍ଦୁ ଜିହ୍ୱା ଓ ଉପସ୍ଥାଦି ଦ୍ୱାରା ସତତ ଅନ୍ୱେଷଣ କରୁଅଛନ୍ତି ଏବଂ ସ୍ତ୍ରୀ ସହିତ ସମ୍ମିଳିତ ହୋଇ ତାହାଙ୍କଠାରେ ମନୋନିବେଶ ପୂର୍ବକ

କୁସୁମବାଡ଼ୀମଧ୍ୟେ ମୃଗ
ଇଚ୍ଛଇ ମଇଥୁନ ଯୋଗ
ହରିଣୀବଶେ ବଶ ହୋଇ
ଅଜ୍ଞାନେ ମୃତ୍ୟୁ ନଜାଣଇ
ଅଳପ ସୁଖ ଲୋଭେ ମାତି
ଭ୍ରମରଗୀତେ ଡେରି ଶ୍ରୁତି
ତା ଅଗ୍ରେ ବୃକମାନେ ଛନ୍ତି
ସେ ମାଂସ ଭକ୍ଷଣ କରନ୍ତି
ତାହାଙ୍କ ମୁଖକୁ ରାଜନ
ସହିରେ କରଇ ଗମନ
ତା ପଛେ ବ୍ୟାଧ ଗୋଡ଼ାଇଛି
ସଘନେ ବାଣ ସେ ବିନ୍ଧୁଛି
ତାହାକୁ ନକରିଣ ଭୟେ
ଆନନ୍ଦେ ମୃଗୀ-ରସେ ରହେ
ଭେଦିଣ ବ୍ୟାଧ ତୀକ୍ଷ୍ଣ ଶର-
ମିଳାଇ ଅର୍ଦ୍ଧ ତା ଶରୀର-
ଗଲା, ନଜାଣେ କାମସୁଖେ
ତେବେ ଉଚ୍ଛୁଡ଼ ଲତା ଭକ୍ଷେ
କାହାକୁ ନ କରିଣ ଭୟେ
ସଧୀରେ ଲତା ଚୁମ୍ବି ଖାଏ

ଏମନ୍ତ ମୃଗ କେ ରାଜନ
ବିବେକ ଖୋଜ ତୁ ବହନ
ତେବେ ଜାଣିବା ଧୃତମତି
ବିଷୟ-ରସୁଁ ତ୍ୟାଗ ଗତି
ଏ ଅନୁଭବ ବୁଝି ରାୟେ
ବିବେକ ଜାଣିରୁ ଥୋକାଏ ।୫୩।
ତା ଶୁଣି ସମ୍ଭ୍ରମେ ରାଜନ
ମୁନିଙ୍କି ସ୍ତୁତି ତୋଷମନ
କହେ ବିନୟ ଶୁଦ୍ଧ ଚିତ୍ତେ
ଅତି ଆନନ୍ଦେ ହରଷିତେ
ଆମ୍ଭର ଏଣେ ନାହିଁ ମତି
ବିବେକ ନୋହେ ଆତ୍ମଗତି
ଯେବେ ମୋହରେ ଦୟା ବହ
ଏ କଥା ଫେଡ଼ି ମୋତେ କହ
ତୁମ୍ଭେ ଦୟାଳୁ ଯୋଗେଶ୍ୱର
ସକଳ ଘଟେ ଦୟାପର
ମୁଁ ବୁଝି ନ ପାରିଲି ଚିତ୍ତେ
ଛାଡ଼ୁ ସଂଶୟ କହ ମୋତେ
କେ ମୃଗ ବୃକ ବ୍ୟାଧ କେହି
ହେ ମୁନିବର ଦେବା କହି

ଶ୍ରୀନାରଦ ଉବାଚ—

ଶୁଣ ରାଜନ ଏକ ଚିତ୍ତେ
ତା ଫେଡ଼ି କହିଦେବା ତୋତେ
ହେ ରାଜା ମୃଗରୂପ ତୁହି
ତୋ ପତ୍ନୀଗଣେ ପୁଷ୍ପ ଦେହି
ସେ ତୋତେ ବେଢ଼ି ଅଛେ ଛନ୍ତି
ତୋ ପ୍ରାଣ ବିବାଦେ ନାଶନ୍ତି
ତୁ ତାହା ତର୍କି ନ ପାରୁଛୁ
ସୁବେଶେ ତାହାଙ୍କୁ ପୂଜୁଛୁ
ସର୍ପାଗ୍ନି ସ୍ତ୍ରୀରେ ଏ ତ୍ରିକ ନ
ବିଶ୍ୱାସ ନ ଯିବ ଏମାନ
ତୁ ତାଙ୍କ ତୁଟେଲ ନିମନ୍ତ୍ରିଲୁ
ପ୍ରାଣୁ ଅଧିକ ସ୍ନେହ କଲୁ
ସେ ତୋର ବଶ କଲେ ମନ
ବନ୍ଧନେ ପଶୁଏ ଯେସନ
ଏ ତୋତେ ନିଶ୍ଚୟେ ନାଶିବେ
ତୋ ସ୍ନେହଭରେ ପ୍ରାଣ ନେବେ
ଏ ପଙ୍କୁ ତୁମ୍ଭେ ନୃପବର
ଉଦ୍ଧାରିବ ମୋକ୍ଷମାର୍ଗୁଁ ଦୂର

**କର୍ଣ୍ଣମଗ୍ରେ ବୃକଯୂଥବଦାତ୍ମନ ଆୟୁର୍ହରତୋଽହୋରାତ୍ରାନ୍ କାଲଲବବିଶେଷାନବି-ଗଣୟ୍ୟ ଗୃହେଷୁ ବିହରନ୍ତଂ ପୃଷ୍ଠତ ଏବ ପରୋକ୍ଷମନୁପ୍ରବୃତ୍ତୋ ଲୁବ୍ଧକଃ କୃତାନ୍ତୋଽନ୍ତଃ ଶରେଣ ଯମିହ ପରାବିଧ୍ୟତି ତମିମମାତ୍ମାନମହୋ ରାଜନ୍ ଭିନ୍ନହୃଦୟଂ ଦ୍ରଷ୍ଟୁମର୍ହସୀତି ଯଥା ମୃଗୟୂଥତଂ ମୃଗମିତି । ୫୪ ।**

**ସ ତ୍ୱଂ ବିଚକ୍ଷ୍ୟ ମୃଗଚେଷ୍ଟିତମାତ୍ମନୋଽନ୍ତଶ୍ଚିତ୍ତଂ ନିୟଚ୍ଛ ହୃଦି କର୍ଣ୍ଣଧୁନୀଞ୍ଚ ଚିତ୍ତେ ।**
**ଜହ୍ୟଙ୍ଗନାଶ୍ରମମସତ୍ତମଯୂଥଗାଥଂ ପ୍ରୀଣୀହି ହଂସଶରଣଂ ବିରମ କ୍ରମେଣ । ୫୫ ।**

---

ଭ୍ରମର ଗଣଙ୍କର ସଙ୍ଗୀତ ତୁଲ୍ୟ ସ୍ତ୍ରୀ କଳନାଦଙ୍କର ଅତି ମନୋହର ଆଳାପ ଶ୍ରବଣ ନିମିତ୍ତ ତାହାଙ୍କର କର୍ଣ୍ଣ ପ୍ରଲୋଭିତ ହେଉଅଛି, ସମ୍ମୁଖରେ ବ୍ୟାଘ୍ରପଲପରି ଅହୋରାତ୍ର ନିୟତ ସେମାନଙ୍କର ଆୟୁହରଣ କରୁଅଛି, ସେ ସେମାନଙ୍କ ପ୍ରତି ଭ୍ରୂକ୍ଷେପ ନ କରି ଗୃହ ମଧ୍ୟରେ ବିହାର କରୁଅଛନ୍ତି, ବ୍ୟାଧପରି ଯମଦୂତ ମାନେ ତାହାର ପୃଷ୍ଠଦେଶରେ ବା ଅପରୋକ୍ଷରେ ରହି ଦୂରରୁ ଶରସନ୍ଧାନ ପୂର୍ବକ ତତ୍‌କ୍ଷଣାତ୍ ବାଣ ବିନ୍ଧିବେ ବୋଲି ବସିଅଛନ୍ତି । ହେ ରାଜନ୍ ! ତୁମ୍ଭେ ନିଜର ହୃଦୟରେ ଆତ୍ମାର ମୃଗତୁଲ୍ୟ ଚେଷ୍ଟାବିଷୟ ବିଚାର କର । ୫୪ ।

ହେ ରାଜନ୍ ! ତୁମ୍ଭେ ମୃଗଚେଷ୍ଟିତ ବିଷୟ ବିଚାର କରି ଆତ୍ମାରେ ଚିତ୍ତ ସନ୍ନିବେଶିତ କର ଏବଂ କର୍ଣ୍ଣର ନଦୀ ସ୍ୱରୂପ ଚିତ୍ତର ବହିର୍ବୃତ୍ତିକୁ ଚିତ୍ତ ମଧ୍ୟରେ ନିରୋଧ କର ଏବଂ ନାରୀମାନଙ୍କର ଆଶ୍ରମ ଅତି କାମୁକ ବ୍ୟକ୍ତିମାନଙ୍କର କଥାରେ ପରିପୂର୍ଣ୍ଣ, ତାହା ପରିତ୍ୟାଗ କରି ଜୀବମାନଙ୍କର ଆଶ୍ରୟ ସ୍ୱରୂପ ଈଶ୍ୱରଙ୍କ ଠାରେ ପ୍ରୀତିସ୍ଥାପନ ପୂର୍ବକ ସମସ୍ତ କାମନାରୁ ବିରତ ହୁଅ । ୫୫ ।

---

ତୁ ଅନୁଭବ ଏହା ବେଗେ
ଆଉ କହିବା ତୋର ଆଗେ
କୁସୁମବନ ବୋଲି ଯାହା
ନାରୀଙ୍କ ଧର୍ମ୍ମ ବୋଲି ତାହା
ତା ସଙ୍ଗେ ଏ ପୁରୁଷ ଘର
ଆନନ୍ଦେ କରଇ ବେଭାର
ବିଷୟ ସୁଖେ ଉନମତ୍ତ
ସୁରତି ରସେ ଦେଇ ଚିତ୍ତ
ଭ୍ରମର ଯେହ୍ନେ ଗୁଞ୍ଜୁ ଥାନ୍ତି
ତେସନେ ଶିଶୁଏ ଭଷନ୍ତି
ଏସ ବାକ୍ୟେ କର୍ଣ୍ଣ ଡେରି ଥାଇ
କାଳ ବୃକକୁ ଭୟ ନାହିଁ
ତା ପଛେ କାଳ ଗୋଡ଼ାଇଛି
ଏ କଥା ଜୀବ ନ ବୁଝୁଛି
ଏବେ ତୁ ବୁଝି ମହୀପତି
ଏ ମୃଗବୃଷ୍ଟା ଜୀବଗତି
ଆପଣେ ଚିତ୍ତେ ତୁ ବିଚାର
ଏ ଚିତ୍ତ ଆଣି ହୃଦେ ଧର
ଶ୍ରବଣେ ନ ଦେଇ ବିଷୟେ
ଏ ସର୍ବ ଚିତ୍ତ କର ଲୟେ
କାମୁକ କାମସୁଖ ପାଇ
ଗୃହକାରଣେ ବନ୍ଦୀ ହୋଇ
ଯେହ୍ନେ ପଙ୍କଜେ ମଧୁଆଶେ
ଭ୍ରମର ତୁମ୍ଭେ ପୁଷ୍ପବାସେ
ସ୍ନେହାନୁବନ୍ଧ ନ ଛାଡ଼ନ୍ତି
ପଦ୍ମ ମୁଦ୍ରିତେ ପ୍ରାଣ ଦେନ୍ତି
ସେ ରୂପେ ସ୍ତ୍ରୀମୁଖାମ୍ବୁଜେ
ଯନ୍ତି ଯୋଗୀନ୍ଦ୍ର ଯୋଗଭଞ୍ଜେ
ପୁଣ୍ୟାଦି ଧର୍ମ୍ମ କରେ ନାଶ
ଏଣୁ ଏ ସ୍ତ୍ରୀ ସଙ୍ଗ ଦୋଷ
ସତ୍ୟ ଶଉଚ ଦୟା ଧର୍ମ୍ମ
ଅପରେ ଯେବା ଶ୍ରେୟ କର୍ମ୍ମ
ଏ ସର୍ବ କରଇ ବିନାଶ
ସେ ସଙ୍ଗେ ନାହିଁ ସୁଖ ଲେଶ
ତୁ ଗୃହ ଛାଡ଼ି ହରି ଭଜ
ବିଷୟ ଧ୍ୟାନ କର୍ମ୍ମ ତେଜ ।୫୪,୫୫

ଶ୍ରୀରାଜୋବାଚ ।।

ଶ୍ରୁତମନ୍ୱୀକ୍ଷିତଂ ବ୍ରହ୍ମନ୍ ଭଗବାନ୍ ଯଦଭାଷତ ।
ନୈତଜ୍ଜାନନ୍ତ୍ୟୁପାଧ୍ୟାୟାଃ କିଂ ନ ବ୍ରୁୟୁର୍ବିଦୁର୍ଯଦି । ୫୬ ।
ସଂଶୟୋଽତ୍ର ତୁ ମେ ବିପ୍ର ସଞ୍ଛିନ୍ନସ୍ତତ୍କୃତୋ ମହାନ୍ ।
ଋଷୟୋଽପି ହି ମୁହ୍ୟନ୍ତି ଯତ୍ର ନେନ୍ଦ୍ରିୟବୃତ୍ତୟଃ । ୫୭ ।
କର୍ମଣ୍ୟାରଭତେ ଯେନ ପୁମାନିହ ବିହାୟ ତମ୍ ।
ଅମୁତ୍ରାନ୍ୟେନ ଦେହେନ ଜୁଷ୍ଟାନି ସ ଯଦଶ୍ନୁତେ । ୫୮ ।

---

ଶ୍ରୀରାଜା କହିଲେ—

ହେ ବ୍ରହ୍ମନ୍ ! ଆପଣ ଯାହା କହିଲେ ତାହା ଶ୍ରବଣ କଲି, ବିଚାର କରି ମଧ୍ୟ ଦେଖିଲି, ଆପଣ ଯାହା କହିଲେ ବୋଧହୁଏ, ମୋର ଉପଦେଶକ ଉପାଧ୍ୟାୟମାନେ ଏ କଥା ଜାଣନ୍ତି ନାହିଁ । ସେମାନେ ଜାଣିଥିଲେ ମୋତେ କିଣ କହି ନ ଥାନ୍ତେ । ୫୬ ।

ହେ ବିପ୍ରର୍ଷେ ! ମୋର ଯେଉଁ ମହତ୍ ସଂଶୟ ଥିଲା, ଆପଣ ତାହା ଦୂରକରି ଦେଇଅଛନ୍ତି, ଏ ସମସ୍ତ ବିଷୟରେ ଇନ୍ଦ୍ରିୟ ବୃତ୍ତିର ପ୍ରଭାବ ନାହିଁ, ସୁତରାଂ ଋଷିଗଣ ସୁଦ୍ଧା ଏଥିରେ ମୋହ ପ୍ରାପ୍ତ ହୋଇଥାନ୍ତି । ୫୭ ।

ଜୀବ ଇହଲୋକରେ ଯେଉଁ ଦେହ ସାହାଯ୍ୟରେ କର୍ମ କରେ, ସେହି ଦେହକୁ ଏହିଠାରେ ପରିତ୍ୟାଗ କରି ଯାଏ, ପରେ କର୍ମାନୁସାରେ ଅନ୍ୟ ଏକ ଦେହ ଲାଭକରି ତଦ୍ୱାରା ସେ କୃତକର୍ମର ଫଳ ଭୋଗ କରିଥାଏ । ୫୮ ।

---

ଶ୍ରୀରାଜୋବାଚ ।
ତା ଶୁଣି ବୋଲଇ ରାଜନ
ହେ ମୁନି ଏ ତୁମ୍ଭ ବଚନ
ବିଚାର ବୁଝିଲଇଁ ଚିତ୍ତେ
ମୋ ରାଜ୍ୟେ ବିପ୍ରେ ଛନ୍ତି ଯେତେ
ଏ ସର୍ବେ ନ ଜାଣନ୍ତି ଜ୍ଞାନ
ବିଦ୍ୟା ବିତ୍ତେ ମେ ଅଭିମାନ
ସେ ଯେବେ ଜାଣନ୍ତେ ନା ଏହା
କିପାଇଁ ନ କହନ୍ତେ ତାହା
ଏଣୁ ଏ କର୍ମ୍ମ ମାର୍ଗ ଟେକି
ଯେଣୁ ଅଟନ୍ତି ଅବିବେକି
ହେ ମୁନି ତୁମ୍ଭ ପ୍ରାୟ ଯେତେ
ସେ ସାଧୁ ଅଛନ୍ତି ଜଗତେ
ସେ ତୁମ୍ଭ ପ୍ରାୟେ ଦୟା କରି
କେହି ନ ଆସନ୍ତି ମୋ ପୁରି
ଏ କଥା କହି ମୁନିବର
ମୋର ସଂଶୟ ଯାଉ ଦୂର
ଏମନ୍ତେ ଦେବମହର୍ଷି
କହନ୍ତି ତା ବାକ୍ୟ ପ୍ରଶଂସି

ଶ୍ରୀନାରଦ ଉବାଚ
ତୁ ଯାହା ପୁଚ୍ଛିଲୁ ରାଜନ
କହିବା ଏଥିର ବିଧାନ
ଯେ ପଦ୍ମନାଭପଦାଶ୍ରିତ
ଏଣେ ଭାବିତ ଯାର ଚିତ୍ତ
ସ୍ୱର୍ଗାପବର୍ଗ ତୁଚ୍ଛ ମଣି
ତୋ ରାଜଭୋଗ ମୃଷ୍ଟ ଗଣି
ଏଣୁ ସାଧବେ ତାହା ଦେଖି
ଭୟେ ବିମୁଖେ ତା ଉପେକ୍ଷି
ଆମ୍ଭ ବିଯୋଗ ତେଣୁ ଯେଉଁ
ସଭୟେ ତେଜନ୍ତି ଯେସନେ
ତେସନେ ଯେ ରାଜ ବିଭୂତି
ଭୟେ ସାଧବେ ନ ଗଛନ୍ତି
ତୁ ରାଜା ଚିତ୍ତେ ପରିମାଣ
ଭୋଗାଦି ଅନର୍ଥ କାରଣ

ଶ୍ରୀରାଜୋବାଚ
ତା ଶୁଣି ସତ୍ତମ ରାଜନ
ଚିନ୍ତା ବିମୁଖେ ଖେଦମନ
ଏ ବିପ୍ରଗଣେ ଅନୁକ୍ଷଣେ
କହନ୍ତି ଯଜ୍ଞାଦି କାରଣେ
ଏହାଙ୍କ ଶିକ୍ଷା କର୍ମ୍ମ ଯେତେ
ଛାଡ଼ିଲି ତୁମ୍ଭ ବାକ୍ୟମତେ
ଏ କର୍ମ୍ମେ ଯୋଗୀଜନ ମୋହେ
ଏଣୁ ପଣ୍ଡିତ ସର୍ବଠାଏ
ଏକ ସଂଶୟ ମୋର ଅଛି
ହେ ମୁନି କହି ପଚାରୁଛି

ଇତି ବେଦବିଦାଂ ବାଦଃ ଶ୍ରୂୟତେ ତତ୍ର ତତ୍ର ହ ।
କର୍ମ୍ମ ଯତ୍ କ୍ରିୟତେ ପ୍ରୋକ୍ତଂ ପରୋକ୍ଷଂ ନ ପ୍ରକାଶତେ । ୫୯ ।
ଶ୍ରୀନାରଦ ଉବାଚ ।
ଯେନୈବାରଭତେ କର୍ମ ତେନୈବାମୁତ୍ର ତତ୍ ପୁମାନ୍ ।
ଭୁଂକ୍ତେ ହ୍ୟବ୍ୟବଧାନେନ ଲିଙ୍ଗେନ ମନସା ସ୍ୱୟମ୍ । ୬୦ ।
ଶୟାନମିମମୁତ୍ସୃଜ୍ୟ ଶ୍ୱସନ୍ତଂ ପୁରୁଷୋ ଯଥା ।
କର୍ମ୍ମାତ୍ମନ୍ୟାହିତଂ ଭୁଂକ୍ତେ ତାଦୃଶେନେତରେଣ ବା । ୬୧ ।

---

ବେଦବିତ୍‌ମାନଙ୍କ ଠାରୁ ତତ୍ର ତତ୍ର ପ୍ରସଙ୍ଗରେ ଶୁଣାଯାଇ ଥାଏ ଯେ ବେଦୋକ୍ତ କର୍ମ ପରକ୍ଷଣରେ ଅଦୃଶ୍ୟ ହୁଏ । ପରେ ତାହା ପୁଣି ପ୍ରକାଶିତ ହୁଏ ନାହିଁ । ୫୯ ।

ଶ୍ରୀନାରଦ କହିଲେ—

ଜୀବ ଇହଲୋକରେ ଯେ ଲିଙ୍ଗ ଦେହ ଦ୍ୱାରା ବା ସଂକଳ୍ପାଦିଦ୍ୱାରା କର୍ମ ଆରମ୍ଭ କରେ, ପରଲୋକରେ କର୍ତ୍ତା ଓ ଭୋକ୍ତାର ବିଚ୍ଛେଦ ନ ହେଉଥିବାରୁ, ମନଃ ପ୍ରଧାନ ଲିଙ୍ଗଦେହଦ୍ୱାରା ସ୍ୱୟଂ ତାହାର ଫଳ ଭୋଗ କରିଥାଏ । ୬୦ ।

ଜାଗ୍ରତାବସ୍ଥାରେ ଏହି ଦେହ ବର୍ତ୍ତମାନ ରହିଅଛି, ଏତଦଭିମାନୀ ଜୀବ ସୁପ୍ତ ହେଲେ ଯେପରି ଜାଗ୍ରତ ଦେହ ପରିତ୍ୟାଗ କରି ମନମଧ୍ୟରେ ସ୍ୱପ୍ନାବସ୍ଥାରେ କର୍ମଭୋଗ କରେ, ସେହିପରି ପଶୁ ପ୍ରଭୃତିଙ୍କ ଦେହ ଅଥବା ଅନ୍ୟ କୌଣସି ଦେହ ଦ୍ୱାରା ଲୋକାନ୍ତରରେ ବିଷୟ ଭୋଗ କରିଥାଏ । ୬୧ ।

---

ଯେ ଦେହେ ପ୍ରାଣୀ କର୍ମ୍ମ କରେ
ତା ଛାଡ଼ି ପରଲୋକେ ଗଲେ
କର୍ମ୍ମ ଭୁଞ୍ଜଇ ଅନ୍ୟ ଦେହେ
ଏ କଥା ସବୁ ବେଦ କହେ
କର୍ତ୍ତା ଭୋକତା ଭିନ୍ନ ଭେଦ
ଏ ଭିନ୍ନ ସଂଶୟ ମୋ ଛେଦ
ଫେଡ଼ିଣ କହିବା ଗୋସାଇଁ
ଆଉରି ସଂଶୟ ଅଛଇ
ତାହା ପୁଛଇ ମୂଢ଼ ଭାବେ
ମୋ ମନେ ଘୂମରୁଛି ଏବେ
ବେଦବିହିତ ଯେତେ କର୍ମ୍ମ
ଲୋକ ଆଚରେ ବୋଲି ଧର୍ମ୍ମ
କର୍ମ୍ମ ଲୀଳାରେ ତା ନ ଜାଣି
କି ରୂପେ କର୍ମ୍ମ ଭୁଞ୍ଜେ ପ୍ରାଣୀ
ଅଦୃଷ୍ଟ କର୍ମ୍ମ ସଂଯୋଗଇ
ଏଣେ ସଂଶୟ ମୋର ହୋଇ
୫୬-୫୯

ଶ୍ରୀନାରଦଉବାଚ
ଶୁଣ କହିବା ନୃପବର
ଏ ଭିନ୍ନ ସଂଶୟ ଫେଡ଼ିଣ
ଯେ ଦେହେ ଜୀବ କର୍ମ୍ମ କରେ
ପରଲୋକେ ତା ଭୋଗ କରେ
ଏ ସ୍ଥୂଳ ଦେହ ଗଲେ ନାଶ
ଏ ଅନ୍ୟ-ଲିଙ୍ଗଦେହେ ବାସ
କର୍ତ୍ତା ଭୋକତା ନୋହେ ଭିନ୍ନ
ସ୍ୱପ୍ନ ଦୃଷ୍ଟାନ୍ତର ଯେସନ
ଶୟନେ ଦେହ ପଡ଼ିଥାଇ
ଶ୍ୱାସ କ୍ଷେପଣ ନ ଜାଣଇ
ଏ ଦେହ ସ୍ନେହ-ପରିହରି
ଏ ମନ ଲିଙ୍ଗଦେହ ଧରି
ଅନ୍ୟଲୋକ କର୍ମ ବ୍ୟାପାର
ଏ ମନ କରେ ଅଙ୍ଗୀକାର
ଏମନ୍ତ ଜାଣି ଦୃଷ୍ଟାନ୍ତରେ
ଏ ମନ ଅନ୍ୟତ୍ର ଶରୀରେ ।୬୦,୬୧

ମମୈତେ ମନସା ଯଦ୍ୟଦସାବହମିତି ବ୍ରୁବନ୍ ।
ଗୃହ୍ଣୀୟାତ୍ ତତ୍ ପୁମାନ୍ ରାଦ୍ଧଂ କର୍ମ ଯେନ ପୁନର୍ଭବଃ । ୬୨ ।
ଯଥାନୁମୀୟତେ ଚିତ୍ତମୁଭୟୈରିନ୍ଦ୍ରିୟେହିତୈଃ ।
ଏବଂ ପ୍ରାଗ୍‌ଦେହଜଂ କର୍ମ ଲକ୍ଷ୍ୟତେ ଚିତ୍ତବୃତ୍ତିଭିଃ । ୬୩ ।
ନାନୁଭୂତଂ କ୍ୱ ଚାନେନ ଦେହେନାଦୃଷ୍ଟମଶ୍ରୁତମ୍ ।
କଦାଚିଦୁପଲଭ୍ୟେତ ଯଦ୍ରୂପଂ ଯାଦୃଗାତ୍ମନି । ୬୪ ।

---

'ମୁଁ ଏହି ବ୍ୟକ୍ତି', 'ମୋର ଏହି କର୍ମ' ମନମଧ୍ୟରେ ଏହିପରି ଭାବି ମନଦ୍ୱାରା ଜୀବ ଯେଉଁ କର୍ମ ଗ୍ରହଣ କରେ ସେହିକର୍ମ ତାହାର ନିଶ୍ଚିନ୍ତ ରୂପେ ସିଦ୍ଧ ହୁଏ ଏବଂ ସେ ତାହାର ଫଳ ପାଇଥାଏ, ସେହି ସମସ୍ତ କର୍ମ ଅହଂକାର ଗୃହୀତ ହେବାରୁ ତଦ୍ୱାରା ପୁନର୍ଜନ୍ମ ହୋଇଥାଏ । ୬୨ ।

ଯେପରି ଇନ୍ଦ୍ରିୟମାନଙ୍କର ଜ୍ଞାନ ଓ କର୍ମରୂପ ଦ୍ୱିବିଧ ପ୍ରବୃତ୍ତି ଦ୍ୱାରା ଚିତ୍ତର ଅନୁମାନ କରାଯାଏ, ସେହିପରି ଚିତ୍ତବୃତ୍ତିଦ୍ୱାରା ପୂର୍ବଦେହ ନିମିତ୍ତ କର୍ମ ସମୂହ ଅନୁମାନ କରାଯାଏ । ୬୩ ।

ଏ ଦେହଦ୍ୱାରା ପୂର୍ବେ ଯେଉଁ ପ୍ରକାର ବସ୍ତୁ କେବେହେଲେ ଅନୁଭୂତ ହୋଇନାହିଁ ବା ଯାହା ଏ ଦେହଦ୍ୱାରା ଅଦୃଷ୍ଟ ଓ ଅଶ୍ରୁତ, ସେହି ବସ୍ତୁର ପ୍ରକାର ଓ ସ୍ୱରୂପ ବେଳେ ବେଳେ ସ୍ୱପ୍ନ ମନୋରଥାଦିରେ ଉଦିତ ହୋଇଥାଏ । ୬୪ ।

---

ଧରିଣ ସ୍ଥୂଳ ଦେହ ମନ
ମୁଁ କୁଳଶ୍ରେଷ୍ଠ ବହୁଜ୍ଞନ
ଏ ପୁତ୍ର ଦାରାଦି ମୋହର
ବୋଲିଣ କରେ ଅଙ୍ଗୀକାର
ଏ ଅଭିମାନେ କର୍ମ କରେ
ସ୍ୱକର୍ମ ବଶେ ଦେହ ଧରେ
କର୍ମ ନ ଥିଲେ ଜନ୍ମ ନାହିଁ
ତା ପୂର୍ବ କର୍ମ ଭୋଗ କାହିଁ
ଏ ମନ ଲିଙ୍ଗଦେହ ବେନି
ଭୋଗାର୍ଥେ ସ୍ଥୂଳଦେହ ଘେନି । ୬୨
ଯାହା ବୁ ଝୁଚ୍ଛିଲୁ ନୃପତି
ବିନଷ୍ଟ କର୍ମ ଉତପତି
ତା ଫେଡ଼ କହିବାକ ତୋତେ
ସଂଶୟ ଫିଟିବ ଯେମନ୍ତେ
ଏ ଜ୍ଞାନ କର୍ମ ଭେଦେ ଦୁଇ
ଇନ୍ଦ୍ରିୟ କର୍ମାଦି କରଇ
ଏ ପୁଣ୍ୟ ପାପାଦି ବିଷୟ
କରନ୍ତି ଏ ମନ ଇନ୍ଦ୍ରିୟ
ଚିତ୍ତ ବିଷୟୁଁ କର୍ମ ଜାଣି
ନୋହିଲେ କେବା ପରିମାଣି
ଏରୂପେ ଜାଣ ଚିତ୍ତ ଶୁଦ୍ଧି
ଦେଖାଏ ପୂର୍ବ କର୍ମ ସିଦ୍ଧି
କର୍ମ ନ ଥିଲେ ଭୋଗ କାହିଁ
ବିବେକ ବୁଝି ନୃପସାଇଁ । ୬୩ ।
ଏ ପ୍ରତି ଲକ୍ଷ୍ୟ ଦୃଷ୍ଟାନ୍ତର
ତୋତେ କହିବା ନୃପବର
ତୋ ଅନ୍ୟ ଦେହ ଥାଉ ଏବେ
ଏ ଦେହେ ବୁଝି ଅନୁଭବେ
ଜାଗ୍ରତେ ଯେତେ ରୂପମାନ
ଏ ଦେହେ ହୁଏ ଥାଇ ମନ
ଦୃଷ୍ଟି ଶ୍ରବଣେ ଯେ ବିଷୟ
ସ୍ୱପନଗତେ ସେ ଉଦୟ
ଏ ଲିଙ୍ଗ ଦେହ ଧରି ମନ
ବିଷୟ କର୍ମ କରେ ଧ୍ୟାନ
ଯେ କଥା ଅନୁଭବ ନାହିଁ
ସ୍ୱପନେ ଦେଖିବ ତା କାହିଁ

ତେନାସ୍ୟ ତାଦୃଶଂ ରାଜନ୍ ଲିଙ୍ଗିନୋ ଦେହସମ୍ଭବମ୍ ।
ଶ୍ରଦ୍ଧତ୍ସ୍ୱାନନୁଭୂତୋଽର୍ଥୋ ନ ମନଃ ସ୍ପ୍ରଷ୍ଟୁମର୍ହତି । ୬୫ ।
ମନ ଏବ ମନୁଷ୍ୟସ୍ୟ ପୂର୍ବରୂପାଣି ଶଂସତି ।
ଭବିଷ୍ୟତଶ୍ଚ ଭଦ୍ରନ୍ତେ ତଥୈବ ନ ଭବିଷ୍ୟତଃ । ୬୬ ।
ଅଦୃଷ୍ଟମଶ୍ରୁତଞ୍ଚାତ୍ର କ୍ୱଚନ୍ମନସି ଦୃଶ୍ୟତେ ।
ଯଥା ତଥାନୁମନ୍ତବ୍ୟଂ ଦେଶକାଲକ୍ରିୟାଶ୍ରୟମ୍ । ୬୭ ।
ସର୍ବେ କ୍ରମାନୁରୋଧେନ ମନସୀନ୍ଦ୍ରିୟଗୋଚରାଃ ।
ଆୟାନ୍ତି ବହୁଶୋ ଯାନ୍ତି ସର୍ବେ ସମନସୋ ଜନାଃ । ୬୮ ।

ଅତଏବ ହେ ରାଜନ୍ ! କାମନାମୟ ଲିଙ୍ଗ ଦେହଧାରୀ ଜୀବର ତାଦୃଶ ଅନୁଭୂତ ବିଷୟ ଦେହସମ୍ଭୂତ, ଅର୍ଥାତ୍ ପୂର୍ବ ଦେହଜ । କାରଣ ଯାହା ପୂର୍ବେ କେବେ ହେଲେ ଅନୁଭୂତ ହୋଇନାହିଁ, ସେପରି କୌଣସି ବ୍ୟାପାର ମନମଧ୍ୟରେ ଉଠି ନ ପାରେ । ମନହିଁ ମନୁଷ୍ୟର ସମସ୍ତ ପୂର୍ବରୂପ ପ୍ରକାଶ କରିଥାଏ ଏବଂ ଭବିଷ୍ୟତରେ ଯାହା ଘଟିବ ଅର୍ଥାତ୍ ଉନ୍ନତି ବା ଅବନତିଦ୍ୱାରା କଣ ଘଟିବ, ମନହିଁ ତାହା ଔଦାର୍ଯ୍ୟ ବା କାର୍ପଣ୍ୟାଦିଦ୍ୱାରା ଜଣାଇ ଦେଇଥାଏ । ହେ ରାଜନ୍ ! ତୁମ୍ଭର ମଙ୍ଗଳ ହେଉ । ୬୫, ୬୬ ।

ଇହଲୋକରେ ଅଦୃଷ୍ଟ ଓ ଅଶ୍ରୁତ ପୂର୍ବ ବିଷୟ ମଧ୍ୟ ମନମଧ୍ୟରେ ପ୍ରକାଶ ପାଇଥାଏ; ସେହି ଅସମ୍ଭବ ବିଷୟମାନ ମଧ୍ୟ ଦେଶକାଳ ଓ କ୍ରିୟା ଆଶ୍ରୟ କରି ନିଦ୍ରା ଦୋଷରେ ସ୍ୱପ୍ନାବସ୍ଥାରେ ପ୍ରତୀୟମାନ ହୁଏ ।୬୭।

ମନୁଷ୍ୟ ମାତ୍ରେ ବହୁଜନ୍ମର ସଂସ୍କାର ଯୁକ୍ତ ମନ ଅଛି ଏବଂ ବହୁ ଦ୍ରବ୍ୟ କ୍ରମାନୁରୋଧରେ ମନ ଓ ଇନ୍ଦ୍ରିୟର ଭୋଗ୍ୟରୂପେ ଅବସ୍ଥିତ ହୁଏ, ପୁଣି ଲୀନ ହୋଇଯାଏ, ଅତଏବ କୌଣସି ପଦାର୍ଥ ଏକାନ୍ତ ଅନୁଭୂତ ହୁଏ ନାହିଁ । ୬୮ ।

ଏହାର ପୂର୍ବ କର୍ମ ଦୋଷ
ଯାବତ ନୋହିଛି ବିନାଶ
ତା ଅନ୍ୟ ଦେହେ ଭୋଗ କରେ
ସେ ଶୁଭାଶୁଭ ତା ବେଭାରେ
ପୂର୍ବ ଅକର୍ମ ଉଦାସେ ଜୀବ
ଜନ୍ମ ଲଭଇ ମୃତଭବ
ସଂଜ୍ଞାନୁସାରେ ଦେହ ପାଇ
ପୁଣ ସେ କର୍ମେ ପ୍ରବେଶଇ
ଯାହା ଏ ଅନୁଭବ ନାହିଁ
ଏମନ ଦୁର୍ଲଭତା ନାହିଁ ।୬୪,୬୫
ଶୁଣ ରାଜନ ସାବଧାନ
ସକଳ କର୍ମେ ସାକ୍ଷୀ ମନ
ମନଟି ସୁଖ ଦୁଃଖ ଦାତା
ଏ ପାପ ପୁଣ୍ୟର କରତା

ମନହୁଁ କର୍ତ୍ତା ପରେ ନାହିଁ
ଇନ୍ଦ୍ରିୟ ଗୁଣ ଅର୍ଥ ବହି
ତା ପୂର୍ବ ଶୁଭାଶୁଭ କର୍ମ
ସେ ଅନୁସାରେ ଲଭେ ଜନ୍ମ
କେ ଦାତା କୃପଣ ଈଶ୍ୱର
ସାଧୁ ଦୁର୍ଜନ କେବା ଚୋର
ଏ ମନ କର୍ମର ଆୟତେ
ଭ୍ରମଇ ଦୁଃଖ ସୁଖେ ନିତ୍ୟେ
ଏ ବର୍ତ୍ତମାନ ଦେହେ ଯାହା
ଯେ ରୂପେ ଦେଖି କରେ ସ୍ନେହା
ତା ଅନାଗତ ଦେହେ ଦେଖେ
ଏ ବର୍ତ୍ତମାନ ଦେହ ସେଷେ ।୬୬।
ଯେ କଥା ଅନୁଭବ ନାହିଁ
ସ୍ୱପ୍ନରେ କେବେ ବା ଦିଶଇ

ସମୁଦ୍ର ଗିରି ଶିଖେ ଯେତେକେ
ପ୍ରଗଟ କରଇ ସେ ମନେ
ନକ୍ଷତ୍ର ଆଦି ଗ୍ରହମାନେ
ଦିବସେ ଦୃଶ୍ୟ ଦୁର୍ଘଟନେ
ଆପଣା ଶିର ଛେଦ ହୋଇ
ଏ ବିପରୀତ ସେ ଦେଖଇ
ମିଥ୍ୟାଭିଳାଷେ ଏହୁ ଭ୍ରମ
ପ୍ରତ୍ୟକ୍ଷ କରେ ତାହା ମନ
ଏ ସର୍ବ ନିଦ୍ରା ଦୋଷେ ଜାଣେ
ଦେଶ କାଳ କ୍ରିୟା ପ୍ରମାଣେ
ଇନ୍ଦ୍ରିୟ ବିଷୟ ସକଳ
ମନରେ ହୋନ୍ତି ସବୁ ଠୁଳ
ସେ ସର୍ବ ହୋନ୍ତି ଯାନ୍ତି ନିତ୍ୟେ
ଏଣୁ ଏ ମନ ବିପରୀତେ ।୬୭,୬୮

ସତ୍ତ୍ୱୈକନିଷ୍ଠେ ମନସି ଭଗବତ୍ ପାର୍ଶ୍ୱବର୍ତ୍ତିନି ।
ତମଶ୍ଚନ୍ଦ୍ରମସୀବେଦମୁପରଜ୍ୟାବଭାସତେ । ୬୯ ।
ନାହଂ ମମେତି ଭାବୋଽୟଂ ପୁରୁଷେ ବ୍ୟବଧୀୟତେ ।
ଯାବଦ୍‌ବୁଦ୍ଧିମନୋଽକ୍ଷାର୍ଥଗୁଣବ୍ୟୂହୋ ହ୍ୟନାଦିମାନ୍ । ୭୦ ।
ସୁପ୍ତିମୂର୍ଚ୍ଛୋପତାପେଷୁ ପ୍ରାଣାୟନବିଘାତତଃ ।
ନେହତେଽହମିତି ଜ୍ଞାନଂ ମୃତ୍ୟୁପ୍ରଜ୍ୱାରୟୋରପି । ୭୧ ।
ଗର୍ଭେ ବାଲ୍ୟେଽପ୍ୟପୌଷ୍କଲ୍ୟାଦେକାଦଶବିଧଂ ତଦା ।
ଲିଙ୍ଗଂ ନ ଦୃଶ୍ୟତେ ଯୂନଃ କୁହ୍ୱାଂ ଚନ୍ଦ୍ରମସୋ ଯଥା । ୭୨ ।

---

ଯେପରି ଗ୍ରହଣ କାଳରେ ରାହୁ ଚନ୍ଦ୍ର ସହିତ ସଂଯୁକ୍ତ ହୋଇ ପ୍ରକାଶ ପାଏ, ପ୍ରତ୍ୟକ୍ଷ ପରିଦୃଶ୍ୟମାନ ଏହି ବିଶ୍ୱ ମଧ୍ୟ ସେହିପରି ସତ୍ତ୍ୱୈକ ନିଷ୍ଠ ଭଗବତ୍‌ଧ୍ୟାନ ପରାୟଣ ମନ ସହିତ ସଂଯୁକ୍ତ ହେଲାପରି ବେଳେ ବେଳେ ପ୍ରକାଶ ପାଇଥାଏ । ୬୯ ।

ବୁଦ୍ଧି ମନ ଇନ୍ଦ୍ରିୟ ବିଷୟ ଓ ଗୁଣ ବ୍ୟୂହ ଓ ତାହାର ପରିଣାମ ନିଜ ଦେହରେ ଯେତେଦିନ ବର୍ତ୍ତମାନ ଥାଏ ସେ ପର୍ଯ୍ୟନ୍ତ ଜୀବର 'ଅହଂ' ଭାବ ସ୍ଥୂଳଦେହର ସମ୍ବନ୍ଧ ବିଚ୍ଛିନ୍ନ ହୁଏ ନାହିଁ । ୭୦ ।

ନିଦ୍ରା, ମୂର୍ଚ୍ଛା, ଆତ୍ୟନ୍ତିକ କ୍ଳେଶ, ମୃତ୍ୟୁ ଓ ପ୍ରବଳ ଜ୍ୱରରେ ମଧ୍ୟ ଜୀବର ଜ୍ଞାନରେ ବିଶେଷ ରୂପେ ବାଧା ହୁଏ ବୋଲି ସେ ସମୟରେ ଏହି ଦେହହିଁ ମୁଁ, ଏପରି ଜ୍ଞାନ ପ୍ରକାଶ ପାଏ ନାହିଁ । ୭୧ ।

ହେ ରାଜନ୍ ! ଯୁବା ପୁରୁଷର ଏକାଦଶ ଇନ୍ଦ୍ରିୟ ଦ୍ୱାରା ଲିଙ୍ଗ ଦେହ ବା ଅହଂକାର ଜ୍ଞାନ ଯେପରି ସୁସ୍ପଷ୍ଟ ହୁଏ ଗର୍ଭ ଓ ବାଲ୍ୟାବସ୍ଥାରେ ଅମାବାସ୍ୟାର କ୍ଷୀଣଚନ୍ଦ୍ର କଳାପରି ଇନ୍ଦ୍ରିୟମାନ ଅସ୍ପଷ୍ଟ ବୋଲି ସେପରି ପରିଲକ୍ଷିତ ହୁଏ ନାହିଁ । ୭୨ ।

---

ଯେ ମନ କୃଷ୍ଣପାଦମୂଳେ
ସତ୍ତ୍ୱ ନିଷ୍ଠାରେ ଥାଇଲେ
ଏ ବିଶ୍ୱ ପ୍ରକାଶ ହୁଅଇ
ସଂଯୋଗ ପରି ପ୍ରକାଶଇ
ତଥାପି ବିଷୟ ପ୍ରବଳ
ମନକୁ କରଇ ଚଞ୍ଚଳ
ଯେସନ୍ତେ ଚନ୍ଦ୍ରକୁ ରାହୁ ଗ୍ରାସେ
ତେସନ ଗ୍ରାସେ ମନ ମିଶେ ।୬୯

ଏ ଗୁଣ ସମୂହ ଅନାଦି
ଯାବତ ଅଛି ମନ ବୁଦ୍ଧି
ତାବତ ଅହଂକାର ବହେ
ଯେଣୁ ତ୍ରିଗୁଣ ଅଛି ଦେହେ
ଏ ପ୍ରାଣ ମାର୍ଗର ସନ୍ତାପେ
ସ୍ୱପନ ମୂର୍ଚ୍ଛା ଉପତାପେ
ଏ ଗୁଣ ଜ୍ଞାନ ନ ଛାଡଇ
ମୃତ୍ୟୁ ପ୍ରଜ୍ୱରକାଳେସେହି ।୭୦,୭୧

ଏ ଗର୍ଭବାସେ ଥିଲେ ଯେବେ
ବାଲ୍ୟ ଅବସ୍ଥା ଅବା ଯେବେ
ଏ ଲିଙ୍ଗ ସୂକ୍ଷ୍ମରୂପେ ରହେ
କେବଳ ପ୍ରକାଶିତ ନୋହେ
ଯେସନେ କୁହୂ ତିଥି ପାଇ
ଚନ୍ଦ୍ର କିରଣ ନ ଦିଶଇ
ସେରୂପେ ବାଲ୍ୟାଦି କାଳରେ
ଏ ଗୁଣ ପ୍ରକାଶ ନ କରେ ।୭୨

ଅର୍ଥେ ହ୍ୟବିଦ୍ୟମାନେଽପି ସଂସୃତିର୍ନ ନିବର୍ତ୍ତତେ ।
ଧ୍ୟାୟତୋ ବିଷୟାନସ୍ୟ ସ୍ୱପ୍ନେଽନର୍ଥାଗମୋ ଯଥା । ୭୩ ।
ଏବଂ ପଞ୍ଚବିଧଂ ଲିଙ୍ଗଂ ତ୍ରିବୃତ୍ ଷୋଡ଼ଶବିସ୍ତୃତମ୍ ।
ଏଷ ଚେତନୟା ଯୁକ୍ତୋ ଜୀବ ଇତ୍ୟଭିଧୀୟତେ । ୭୪ ।
ଅନେନ ପୁରୁଷୋ ଦେହାନୁପାଦତ୍ତେ ବିମୁଞ୍ଚତି ।
ହର୍ଷଂ ଶୋକଂ ଭୟଂ ଦୁଃଖଂ ସୁଖଞ୍ଚାନେନ ବିନ୍ଦତି । ୭୫ ।
ଯଥା ତୃଣଜଲୌକେୟଂ ନାପୟାତ୍ୟପୟାତି ଚ ।
ନ ତ୍ୟଜେନ୍ମ୍ରିୟମାଣୋଽପି ପ୍ରାଗ୍‌ଦେହାଭିମତିଂ ଜନଃ । ୭୬ ।
ଯାବଦନ୍ୟଂ ନ ବିନ୍ଦେତ ବ୍ୟବଧାନେନ କର୍ମଣାମ୍ ।
ମନ ଏବ ମନୁଷ୍ୟେନ୍ଦ୍ର ଭୂତାନାଂ ଭବଭାବନମ୍ । ୭୭ ।

---

ସ୍ୱପ୍ନରେ ବିଷୟ ଅବିଦ୍ୟମାନରେ ମଧ୍ୟ ଯେପରି ଅନର୍ଥାଗମ ହୁଏ, ସେହିପରି ବିଷୟ ଧ୍ୟାନକାରୀ ପୁରୁଷର ଲିଙ୍ଗ ଦେହର ସଙ୍କୋଚାବସ୍ଥାରେ ସଂସାରର ନିବୃତ୍ତି ଘଟେ ନାହିଁ । ୭୩ ।

ହେ ରାଜନ୍ ! ପଞ୍ଚତନ୍ମାତ୍ରାତ୍ମକ ତ୍ରିଗୁଣାତ୍ମକ ଷୋଡଶ ବିକାରରେ ପରିବ୍ୟାପ୍ତ ଲିଙ୍ଗଦେହ ଏହିପରି ଚୈତନ୍ୟ ଯୁକ୍ତ ହେଲେ ତାହାକୁ ଜୀବ ବୋଲାଯାଏ । ୭୪ ।

ଏହି ଲିଙ୍ଗ ଦେହଦ୍ୱାରା ପୁରୁଷ ସ୍ଥୂଳଦେହ ଗ୍ରହଣ ଓ ପରିତ୍ୟାଗ କରିଥାଏ ଏବଂ ତଦ୍ଦ୍ୱାରା ହର୍ଷ, ଶୋକ, ଭୟ, ସୁଖ, ଦୁଃଖ ଲାଭ କରିଥାଏ । ୭୫ ।

ଯେପରି ତୃଣ ଜଳୌକା (କୀଟ ବିଶେଷ) ଅନ୍ୟ ତୃଣ ଧାରଣ ନ କରି, ପୂର୍ବ ତୃଣ ପରିତ୍ୟାଗ ନ କରେ, ସେହିପରି ପୁରୁଷ ମ୍ରିୟମାଣ ହେଲେ ମଧ୍ୟ ଅନ୍ୟ ଦେହାରମ୍ଭକ କର୍ମମାନ ଅବଲମ୍ବନ ନ କରିବା ଯାଏ, ପୂର୍ବ ଦେହାଭିମାନ ପରିତ୍ୟାଗ କରେ ନାହିଁ । ହେ ରାଜନ୍ ! ବସ୍ତୁତଃ ମନହିଁ ପ୍ରାଣିମାନଙ୍କର ସଂସାରର କାରଣ । ୭୬,୭୭ ।

---

ରାଣେ ବନ୍ଧନ ଲିଙ୍ଗ ଦେହ
କର୍ମରେ କରୁ ଥାଇ ସ୍ନେହ
ଏ ଦେହ ଯେ କାଳେ ନ ଥାଇ
ତେବେ ତା ଜନ୍ମ ଅବା କାହିଁ
ବିଷୟ ଧ୍ୟାନ ଯେଣୁ ଅଛି
ତେଣୁ ଏ ଶରୀର ଧରିଛି
ସ୍ୱପ୍ନ ଦୃଷ୍ଟାନ୍ତର କରଣ
ଭୋଗାଦି ବୁଝି ନୃପରାଣ । ୭୩

ଶ୍ରୀରାଜୋବାଚ

ହେ ମୁନିବର ତୁମ୍ଭେ ଶୁଣ
ଜୀବର କି କି କହ ଗୁଣ
ଯାହାକୁ ଜୀବ ବୋଲି କହ
ତାହାର କିବା ବର୍ଣ୍ଣି ଦେହ
ମୁନି ବୋଲନ୍ତି ନୃପବର
କହିବା ସ୍ୱରୂପ ଜୀବର
ଶବଦ ଆଦି ମାତ୍ରା ପଞ୍ଚ
ଅପରେ ତ୍ରିଗୁଣ ପ୍ରପଞ୍ଚ
ଦଶ ଇନ୍ଦ୍ରିୟ ପଞ୍ଚ ପ୍ରାଣ
ଯେ ମନ ବୁଦ୍ଧି ସଙ୍ଗତେଣ
ଏହାକୁ ଲିଙ୍ଗ ଦେହ କହି
ଯାବତ ଚେତନା ଏ ଦେହି
ତାବତ ଜୀବ ବୋଲି ଜାଣ
ତେଣୁ ଏ ଘେନେ ଦେହ ଗୁଣ
ଦେହାଦି ଛାଡ଼େ ଘେନେ ଏହି
ଶୋକ ହରଷ ବେନି ବହି । ୭୪,୭୫
ଯେସନେ ଜଳୌକା ତୃଣେ ଥାନ୍ତି
ଏକ ଧରି ଆରେ ଛାଡ଼ନ୍ତି
ସେ ରୂପେ ଏ ଲିଙ୍ଗ ଶରୀର
ଦେହ ସମ୍ଭବ ଏ ପ୍ରକାର
ଯାବତ ଅନ୍ୟ ଦେହି ନୋହେ
ତାବତ ଅଛି ପୂର୍ବ ଦେହେ
ଏ ପୂର୍ବ କର୍ମ ନ ଛାଡ଼ଇ
ସଙ୍ଗତେ ଘେନି ତା ଭୁଞ୍ଜଇ
ଯାବତ ଅଛି ମାୟା ଦ୍ୱନ୍ଦ୍ୱ
ତାବତ ଏ କର୍ମେ ସେ ବନ୍ଧ ।

ଯଦାକ୍ଷୈଶ୍ଚରିତାନ୍ ଧ୍ୟାୟନ୍ କର୍ମାଣ୍ୟାଚନୁତେଽସକୃତ୍ ।
ସତି କର୍ମଣ୍ୟବିଦ୍ୟାୟାଂ ବନ୍ଧଃ କର୍ମଣ୍ୟନାତ୍ମନଃ । ୭୮ ।
ଅତସ୍ତଦପବାଦାର୍ଥଂ ଭଜ ସର୍ବାତ୍ମନା ହରିମ୍ ।
ପଶ୍ୟଂସ୍ତଦାତ୍ମକଂ ବିଶ୍ୱଂ ସ୍ଥିତ୍ୟୁତ୍ପତ୍ତ୍ୟପ୍ୟୟା ଯତଃ । ୭୯ ।
ଶ୍ରୀମୈତ୍ରେୟ ଉବାଚ ।
ଭାଗବତମୁଖ୍ୟୋ ଭଗବାନ୍ ନାରଦୋ ହଂସୟୋର୍ଗତିମ୍ ।
ପ୍ରଦର୍ଶ୍ୟ ହ୍ୟମୁମାମନ୍ତ୍ର୍ୟ ସିଦ୍ଧଲୋକଂ ତତୋଽଗମତ୍ । ୮୦ ।
ପ୍ରାଚୀନବର୍ହୀ ରାଜର୍ଷିଃ ପ୍ରଜାସର୍ଗାଭିରକ୍ଷଣେ ।
ଆଦିଶ୍ୟ ପୁତ୍ରାନଗମତ୍ ତପସେ କପିଲାଶ୍ରମମ୍ । ୮୧ ।

---

ଯେତେବେଳେ ଅବିଦ୍ୟାବସ୍ଥାରେ ଦେହାଦିର ଶୁଦ୍ଧ ଶୁଭ କର୍ମ ଓ ତଜ୍ଜନିତ ଭୋଗ ହୋଇଥାଏ, ସେତେବେଳେ ଇନ୍ଦ୍ରିୟମାନଙ୍କ ଦ୍ୱାରା ଉପଭୁକ୍ତ ବିଷୟ ଧ୍ୟାନକରି ପୁରୁଷ ପୁନଃ ପୁନଃ କର୍ମ ଆରମ୍ଭ କରିଥାଏ, ସେହି କର୍ମଦ୍ୱାରା ଜୀବର ବନ୍ଧନ ହୋଇଥାଏ । ୭୮ ।

ଶ୍ରୀ ଭଗବାନଙ୍କଠାରୁ ବିଶ୍ୱର ସୃଷ୍ଟି, ସ୍ଥିତି ଓ ଲୟ ହୋଇଥାଏ, ଅତଏବ ଏହି ବିଶ୍ୱକୁ ତାହାର ଅଧୀନ ରୂପେ ଦର୍ଶନ କରି ଅବିଦ୍ୟା ଦୂର କରିବା ନିମନ୍ତେ ସର୍ବାନ୍ତଃକରଣରେ ଭଗବାନ୍ ଶ୍ରୀହରିଙ୍କର ଭଜନ କର । ୭୯ ।

ଶ୍ରୀମୈତ୍ରେୟ କହିଲେ ।—ବତ୍ସ ବିଦୁର ! ଭାଗବତ ଶ୍ରେଷ୍ଠ ଭଗବାନ୍ ନାରଦ ଏହିପରି ଜୀବ ଓ ଈଶ୍ୱରଙ୍କ ସ୍ୱରୂପ ବିଷୟରେ ଉପଦେଶ ଦେଇ ରାଜାଙ୍କୁ ଆମନ୍ତ୍ରଣ କରି ସିଦ୍ଧ ଲୋକକୁ ଗମନ କଲେ ।୮୦।

ରାଜର୍ଷି ପ୍ରାଚୀନ ବର୍ହୀମଧ୍ୟ ପ୍ରଜାସୃଷ୍ଟି ଓ ରକ୍ଷା ବିଷୟରେ ପୁତ୍ରମାନଙ୍କୁ ଆଦେଶ ଦେଇ ତପସ୍ୟା ନିମିତ୍ତ କପିଳାଶ୍ରମକୁ ଗମନ କରିଥିଲେ । ୮୧ ।

---

ଏ ଜୀବ ପଡ଼ି ମାୟାବନ୍ଧେ
କର୍ମ୍ମ କରଇ ମୋହ ଦ୍ୱନ୍ଦ୍ୱେ
ଏ ମାୟାବନ୍ଧ ଛାଡ଼େ ଯେବେ
କୃଷ୍ଣ ଚରଣେ ଭଜେ ତେବେ
ଏ ସର୍ବ ଘଟେ ଆତ୍ମା ରୂପେ
ବିହରୁଛନ୍ତି ଦେହ କୂପେ
ସୃଷ୍ଟି ପାଳନ ସଂହାରଣ
ଏହାର ତହିଁ ଏ ଭିଆଣ
ତା ପାଦେ ଭକ୍ତିଲେ ମୁକତି
ତା ବିନୁ ନାହିଁ ଅନ୍ୟଗତି ।୭୮-୭୯

ଶ୍ରୀ ମୈତ୍ରେୟଉବାଚ—
କହେ ମୈତ୍ରେୟ ମୁନିବର
ଶୁଣ ସୁମତିନ ହେ ବିଦୁର
ଜୀବ ଆତ୍ମାର ଗତି ମାନ
ନାରଦ ମୁନି ପ୍ରତିଭେଦେଣ
ରାଜାଙ୍କୁ କହିଦେଲ ବୁଝାଇ
ଏ ଲିଙ୍ଗ ଶରୀର ଭେଦାଇ
ଶୁଣି ସାନନ୍ଦ ନୃପବର
ଉଠି ଯୋଡ଼ିକ ବେନି କର

ସାଷ୍ଟାଙ୍ଗେ କରି ଦଣ୍ଡବତ
ବୋଲେ ଆନନ୍ଦେ ହରଷିତ
ହେ ମୁନିବର ଯୋଗେଶ୍ୱର
ମୋ ମୋହବନ୍ଧ କଲ ଦୂର
ଏବେ ନିଷ୍କାମ ହୁଅ ମୁହିଁ
କରୁପେ କରିବ ଗୋସାଇଁ
ତୋ ସଙ୍ଗ ଛାଡ଼ିଲେ ଗୋସାଇଁ
ମୋ ମନ ନ ରହିବ କାହିଁ
ଏଥିକୁ କହିବା କାରଣ
ତୁମ୍ଭେ ସର୍ବଜ୍ଞ ସର୍ବଜାଣ

ତସ୍ମିନ୍ନେକାଗ୍ରମନା ଧୀରୋ ଗୋବିନ୍ଦଚରଣାମ୍ବୁଜମ୍ ।
ବିମୁକ୍ତସଙ୍ଗୋଽନୁଭଜନ୍ ଭକ୍ତ୍ୟା ତତ୍ ସାମ୍ୟତାମଗାତ୍ । ୮୨ ।
ଏତଦଧ୍ୟାତ୍ମପାରୋକ୍ଷ୍ୟଂ ଗୀତଂ ଦେବର୍ଷିଣାନଘ ।
ଯଃ ଶ୍ରାବୟେଦ୍ ଯଃ ଶୃଣୁୟାତ୍ ସ ଲିଙ୍ଗେନ ବିମୁଚ୍ୟତେ । ୮୩ ।
ଏତନ୍ମୁକୁନ୍ଦଯଶସା ଭୁବନଂ ପୁନାନଂ ଦେବର୍ଷିବର୍ଯ୍ୟମୁଖନିଃସୃତମାତ୍ମଶୌଚମ୍ ।
ଯଃ କୀର୍ତ୍ତ୍ୟମାନମଧିଗଚ୍ଛତି ପାରମେଷ୍ଠ୍ୟଂ ନାସ୍ମିନ୍ ଭବେ ଭ୍ରମତି ମୁକ୍ତସମସ୍ତବନ୍ଧଃ ।୮୪

---

ରାଜା ସେହି ଆଶ୍ରମରେ ନିଃସଙ୍ଗ ଓ ଏକାଗ୍ରମନା ହୋଇ ଭଗବାନ୍ ଗୋବିନ୍ଦଙ୍କର ଚରଣକମଳ ଭଜନ କରୁ କରୁ ଶ୍ରୀଭଗବତ୍ ସାରୂପ୍ୟ ଲାଭ କରିଥିଲେ । ୮୨ ।

ହେ ଅନଘ ! ଦେବର୍ଷି ନାରଦ ଏହିପରି ପରୋକ୍ଷ ଅଧ୍ୟାତ୍ମ ତତ୍ତ୍ୱ ବର୍ଣ୍ଣନା କରିଥିଲେ—ତାହା ଯେ ଶ୍ରବଣ କରିବେ ଏବଂ ଅନ୍ୟକୁ ଶ୍ରବଣ କରାଇବେ, ସେ ଲିଙ୍ଗ ଦେହରୁ ବିମୁକ୍ତ ହେବେ । ୮୩ ।

ଦେବର୍ଷି ନାରଦଙ୍କ ମୁଖନିଃସୃତ ଏହି ଆଖ୍ୟାନ ମୁକୁନ୍ଦଙ୍କ ଯଶରେ ପରିପୂର୍ଣ୍ଣ—ଅତଏବ ଏହା ଭୁବନପାବନ ଚିତ୍ତସାଧକ ଓ ପରମାତ୍ମପଦ ପ୍ରାପକ । ଯେ ଏହା କୀର୍ତ୍ତନ କରିବ ସେ ସମସ୍ତ ବନ୍ଧନରୁ ମୁକ୍ତ ହେବ, ତାକୁ ଆଉ ଏ ସଂସାରରେ ଭ୍ରମଣ କରିବାକୁ ପଡ଼ିବ ନାହିଁ । ୮୪ ।

---

ଏମନ୍ତେ ତାର ବାକ୍ୟେ ତୋଷି
କହେ ନାରଦ ମହାଋଷି
ନରତେ ସାଧୁସଙ୍ଗ ଯେବେ
ମନ ନିଶ୍ଚଳ ହେବ ତେବେ
ଏ ବିନେ ଅନ୍ୟତ୍ର ରାଜନ
ନ ଦେଖି ମନ ସମାଧାନ
ସେ ସାଧୁସଙ୍ଗ ସେବା ଫଳେ
ତୋ ମନ ରହିବ ନିଶ୍ଚଳେ
ଅପରେ ନାହିଁ ମୋକ୍ଷ ଆଉ
ନ ଦେଖି ଶୁଣି ନୃପବର
ତା ଶୁଣି ସଭକ୍ତେ ନୃପତି
କରୁଚେ ସାଧୁଙ୍କୁ ସେବନ୍ତି
କହ ବିଧାନ ମୁନିବର
ଅଛଟେ ସାଧୁ ମୋକ୍ଷଦ୍ୱାର
ହସି ନାରଦ ମହାଋଷି
ତାବାକ୍ୟେ କହନ୍ତି ପ୍ରତୋଷି
ଏକାଗ୍ର ଚିତ୍ତେ ତୁ ନିଶ୍ଚଳେ
ବସ ତୁ ହୃଦୟ ନିର୍ମଳେ
ଯେ ଧର୍ମାଶ୍ରୟ ସାଧୁଜନ
ସେ ଧର୍ମ କର ତୁ ରାଜନ
ଉତ୍ତମ ଶ୍ଳୋକ ଯଶ ଗୁଣ
ନିରନ୍ତେ ତାଙ୍କ ମୁଖୁଁ ଶୁଣ
ସେ ନାମାମୃତ ପାନେ ମତ୍ତ
ଯେ ପ୍ରାଣୀ ଭଜେ ଅବିରତ
ତାଙ୍କୁ ପ୍ରତୋଷ ସାଧୁଜନେ
ଯେଣୁ ଦୟାକୁ ନିଷ୍ଠିଥିନେ
ସାଧୁଙ୍କ ସେବା କର୍ମ ଏହି
ଯେ କୃଷ୍ଣରସ ଆସ୍ୱାଦଇ
ଏବେ ତୁ ଶୁଣ ମହୀପାଳ
କପିଳାଶ୍ରମେ ବେଗେ ଚଳ
ସେ ମୁନିବର ଆଶ୍ରେ ତୋର
ଖଣ୍ଡିବ ଜନ୍ମ ବନ୍ଧ ଘୋର
ତା ଶୁଣି ହରଷେ ରାଜନ
ପୁତ୍ରକୁ ଡକାଇ ବହନ
ରାଜ୍ୟ ପାଳନେ ଆଜ୍ଞାଦେଲା
ଦଣ୍ଡ ଛତ୍ରାଦି ସମର୍ପିଲା
ସେ ସବୁ ତେଜି ନୃପବର
ମୁନିଙ୍କି କହେ ଯୋଡ଼ିକର
ହେ ମୁନି ଆଜ୍ଞା ଯେବେ ହୋଇ
ମୋ ପତ୍ନୀ ପ୍ରବୋଧି ଆସଇ
ରାଜ୍ୟ ବିଭାଗ ଦେଇ ତାକୁ
ନିଶ୍ଚିନ୍ତେ ଯିବଇଁ ବନକୁ
ଏମନ୍ତ ବାକ୍ୟ ଶୁଣି ତାର
କୋପେ ବୋଲନ୍ତି ମୁନିବର
ତୁ ବଡ଼ ଜ୍ଞାନହୀନ ମୂର୍ଖ
ନ ଜାଣୁ ପରଲୋକ ଦୁଃଖ
ଏମନ୍ତ କହି ମୁନିବର
ଶ୍ୱାସ ଉପେକ୍ଷି ଚଳ୍ୟାଭର

ଅଧ୍ୟାତ୍ମପାରୋକ୍ଷ୍ୟମିଦଂ ମୟାଧିଗତମଦ୍‌ଭୁତମ୍ ।
ଏବଂ ସ୍ତ୍ରିୟାଶ୍ରମଃ ପୁଂସଶ୍ଛିନ୍ନୋଽମୁତ୍ର ଚ ସଂଶୟଃ । ୮୫ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ
ପ୍ରାଚୀନବର୍ହିର୍ନାରଦସମ୍ବାଦୋ ନାମ ଏକୋନତ୍ରିଂଶୋଽଧ୍ୟାୟଃ । ୨୯ ।

---

ଏହି ପରୋକ୍ଷ ଅଦ୍ଭୁତ ଅଧ୍ୟାତ୍ମ ତତ୍ତ୍ୱପୂର୍ଣ୍ଣ ଉପାଖ୍ୟାନ ମୁଁ ଶ୍ରୀଗୁରୁଙ୍କ ଠାରୁ ପାଇଥିଲି, ଏହି ଉପାଖ୍ୟାନଦ୍ୱାରା ବୁଦ୍ଧିଯୁକ୍ତ ଆତ୍ମାର ଅହଂକାର ଛିନ୍ନ ହୁଏ ଏବଂ ପରଲୋକରେ କପଟ କର୍ମଫଳ ଭୋଗ ହୁଏ, ସେ ବିଷୟରେ ସଂଶୟ ମଧ୍ୟ ଦୂର ହୋଇଯାଏ । ୮୫ ।

---

ସେ ସ୍ତ୍ରୀଙ୍କ ମୁଖାବଲୋକନ
କେ କାମୀ ତେଜିବ ଅଜ୍ଞାନ
ଯହିଁ ଯୋଗୀନ୍ଦ୍ର ଭ୍ରମ ଯାନ୍ତି
ତା ମୁଖୁଁ କେ ମୂଢ଼ ତରନ୍ତି
ଲୁବଧ ହୁତାଶନେ ଯେସନ୍ତି
ସ୍ମରଣେ ହୋନ୍ତି ଦଗ୍ଧମାନେ
ତେମନ୍ତେ ସ୍ତ୍ରୀସଙ୍ଗ ଦୋଷ
ଦେଖନ୍ତେ ଜ୍ଞାନ ହେବ ଧ୍ୱଂସ
ଯେଣୁ ପ୍ରମଦା ନାମ ତାର
ତା ମୁଖେ ପଡ଼ କେ ନସ୍ତାର
ଏମନ୍ତ କହି ଅନୁରାଗେ
ତା କର ଧରି ମୁନି ବେଗେ
ପଶ୍ଚିମ ଦ୍ୱାର ମାର୍ଗେ ନେଇ
ବାହାର କରି ବେଗେ ଦେଇ
ତକ୍ଷଣେ ନିଜ ଲୋକେ ଗଲେ
ବ୍ରହ୍ମାଙ୍କ ଛାମୁରେ ମିଳିଲେ

ସେ ଯେ ପ୍ରାଚୀନ ନୃପବର
ମୁନିଙ୍କ ଉକ୍ତେ ଛନ୍ନାତୁର
ପ୍ରବେଶ କପିଳ ଆଶ୍ରମେ
ଗମିଲା ଦୁଃଖ ପଦଶ୍ରମେ
ସେ ମୁନିବର ପାଶେ ଯାଇ
ତପ ଆଚରି ଯୋଗ ଧ୍ୟାଇ
ଏକାଗ୍ର ଚିତ୍ତେ ମହାରାଜ
ଭଜିଲା ହରି ପଦାମ୍ବୁଜ
ମନ ପବନ ଦୃଢ଼ େ ଧରି
ସର୍ବ କୁସଙ୍ଗ ପରିହରି
ସେ ହରି ଚରଣ ପ୍ରସନ୍ନେ
ଗମିଲା ବୈକୁଣ୍ଠ ଭୁବନେ
ଶୁଣ ବିଦୁର ଜ୍ଞାନମୟେ
ନାରଦ ନୃପବରେ ସଦୟେ
ପରୋକ୍ଷ ବାଦେ ଆତ୍ମଜ୍ଞାନ
କହିଲେ ଦିବ୍ୟ କଥାମାନ

ଯେ ଏହା ଶ୍ରବଣ କରନ୍ତି
ଅଥବା ବଦନେ ଗୁଣନ୍ତି
ସେ ସର୍ବେ ହୋନ୍ତି ମୋକ୍ଷ ପର
କହିଲୁ ବ୍ରହ୍ମ ତତ୍ତ୍ୱ ସାର
ଆତ୍ମା ବନ୍ଧନୁ ମୁକ୍ତହୋଏ
ଅଜ୍ଞାନେନଗୃହବାସନୋହେ ।୮୦-୮୫
ପରୋକ୍ଷ ତତ୍ତ୍ୱଜ୍ଞାନ ସାର
ତୋ ଆଗେ କହିଲୁ ବିଦୁର
ଏବେ ଶ୍ରବଣେ କିବା ଇଚ୍ଛା
କହ ସଂଶୟ ତେଜ ବାଞ୍ଛା
ଏମନ୍ତ ମୁନି ମୁଖୁଁ ଶୁଣି
ଶିରେ ଜନେଣି ଦେଲା ପାଣି
କହଇ ବିପ୍ର ଜଗନ୍ନାଥ
ମୈତ୍ରେୟ ବିଦୁର ଚରିତ
ଚତୁର୍ଥ ସ୍କନ୍ଧେ ଏହୁବାଣୀ
ଶୁଣି ସଂସାରୁ ତର ପ୍ରାଣୀ ।



## ତ୍ରିଂ ଶ ଅ ଧ୍ୟା ୟ ।

ଅତ୍ର ତ୍ରିଂଶେ ତପସ୍ତୁଷ୍ଟାଦୀଶାଲ୍ଲବ୍‌ଧବରାସ୍ତତଃ ।
ଆଗତ୍ୟବାର୍କ୍ଷୀମୁଦ୍‌ବାହ୍ୟ ରାଜ୍ୟଂ ଚକ୍ରୁ ରତୀର୍ଯ୍ୟତେ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀବିଦୁର ଉବାଚ ।

ଯେ ତ୍ୱୟାଭିହିତା ବ୍ରହ୍ମନ୍ ସୁତାଃ ପ୍ରାଚୀନବର୍ହିଷଃ ।
ତେ ରୁଦ୍ରଗୀତେନ ହରିଂ ସିଦ୍ଧିମାପୁଃ ପ୍ରତୋଷ୍ୟ କାମ୍ । ୧ ।
କିଂ ବାର୍ହସ୍ପତ୍ୟେହ ପରତ୍ର ବାଥ କୈବଲ୍ୟନାଥପ୍ରିୟପାର୍ଶ୍ୱବର୍ତ୍ତିନଃ ।
ଆସାଦ୍ୟ ଦେବଂ ଗିରିଶଂ ଯଦୃଚ୍ଛୟା ପ୍ରାପୁଃ ପରଂ ନୂନମଥ ପ୍ରଚେତସଃ । ୨

---

### ପ୍ରଚେତାମାନଙ୍କୁ ଭଗବାନଙ୍କର ବରଦାନ ।

ତ୍ରିଂଶ ଅଧ୍ୟାୟରେ ପ୍ରଚେତାଗଣ ତପସ୍ୟାରେ ଶ୍ରୀହରିଙ୍କୁ ସନ୍ତୁଷ୍ଟ କରି ବାର୍କ୍ଷୀକନ୍ୟାଙ୍କୁ ବିଭା ହୋଇ ରାଜ୍ୟ ଭୋଗ କଲେ । ୦ ।

ଶ୍ରୀବିଦୁର କହିଲେ :—

ହେ ବ୍ରହ୍ମନ୍ ! ଆପଣ ଯେଉଁ ପ୍ରାଚୀନବର୍ହୀଙ୍କ ପୁତ୍ରମାନଙ୍କ କଥା କହିଲେ, ସେମାନେ ରୁଦ୍ର ଗୀତ ଦ୍ୱାରା ଶ୍ରୀହରିଙ୍କୁ ବିଶେଷ ସନ୍ତୁଷ୍ଟ କରିବାରୁ କି ଫଳଲାଭ କରିଥିଲେ ? । ୧ ।

ହେ ବୃହସ୍ପତିଶିଷ୍ୟ ! ପ୍ରଚେତା ଯଦୃଚ୍ଛାକ୍ରମେ ଦେବାଧିଦେବ ଗିରିଶଙ୍କୁ ପ୍ରାପ୍ତ ହୋଇ କୈବଲ୍ୟଦାତା ଶ୍ରୀହରିଙ୍କ ପ୍ରିୟପାର୍ଷଦ ହେଲେ ମାତ୍ର ତାହାଙ୍କ କୃପାରେ ନିଶ୍ଚୟ ପରମପଦ ପ୍ରାପ୍ତ ହୋଇଥିଲେ, କିନ୍ତୁ ତତ୍‌ପୂର୍ବରୁ ଇହଲୋକରେ ବା ପରଲୋକରେ ସେମାନେ କି ଫଳ ପାଇଥିଲେ ? । ୨ ।

---

ତରିଶେ ଦଶ ପ୍ରଚେତସ, ହରିଙ୍କି କରି ତପେତୋଷ । ବାର୍କ୍ଷୀକନ୍ୟାଙ୍କୁ ବିଭାହେଲେ, ସାନନ୍ଦେ ରାଜ୍ୟଭୋଗକଲେ ॥

ଶ୍ରୀ ବିଦୁର ଉବାଚ—

ତଦନ୍ତେ ପଚ୍ଛିରେ ବିଦୁର
ଶୁଣ ମୈତ୍ରେୟ ମୁନିବର
ତୁମ୍ଭେ ଯେ କହିଥିଲ ପୂର୍ବେ
ନୃପ ପ୍ରଚେତା ଭାଇ ସର୍ବେ
ସେମାନେ ରୁଦ୍ରଗୀତା ସ୍ତବେ
ହରି ଭଜିଲେ ଏକ ଭାବେ
କହ ହେ ଦେବଗୁରୁ ଶିଷ୍ୟ
ତାହାଙ୍କ ସିଦ୍ଧି ହେଲା କିସ
ସେମାନେ ବଡ଼ ଭାଗ୍ୟବନ୍ତ
ଦେଖିଲେ ଉମାଦେବୀ କାନ୍ତ
ସେ ତାଙ୍କୁ ରୁଦ୍ରଗୀତା ଦେଲେ
ସେ ତହିଁ ଯୋଗ ଶିକ୍ଷା କଲେ
ହରିଙ୍କି ପାଇଲେ କେମନ୍ତେ
ଇହ କାଳରେ କିବା ଅନ୍ତେ
ଏ କଥା କହ ମୁନିବର
ଶୁଣି ସଂଶୟ ଯାଉ ଦୂର । ୧,୨।

ଶ୍ରୀମୈତ୍ରେୟ ଉବାଚ ।
ପ୍ରଚେତସୋଽନ୍ତରୁଦଧୌ ପିତୁରାଦେଶକାରିଣଃ ।
ଜପଯଜ୍ଞେନ ତପସା ପୁରଞ୍ଜନମତୋଷୟନ୍ । ୩ ।
ଦଶବର୍ଷସହସ୍ରାନ୍ତେ ପୁରୁଷସ୍ତୁ ସନାତନଃ ।
ତେଷାମାବିରଭୂତ୍ କୃଚ୍ଛ୍ରଂ ଶାନ୍ତେନ ଶମୟନ୍ ରୁଚା । ୪ ।
ସୁପର୍ଣ୍ଣସ୍କନ୍ଧମାରୂଢ଼ୋ ମେରୁଶୃଙ୍ଗମିବାମ୍ବୁଦଃ ।
ପୀତବାସା ମଣିଗ୍ରୀବଃ କୁର୍ବନ୍ ବିତିମିରା ଦିଶଃ । ୫ ।
କାଶିଷ୍ଣୁନା କନକବର୍ଣ୍ଣବିଭୂଷଣେନ ଭ୍ରାଜତ୍କପୋଲବଦନୋ ବିଲସତ୍କିରୀଟଃ ।
ଅଷ୍ଟାୟୁଧୈରନୁଚରୈର୍ମୁନିଭିଃ ସୁରେନ୍ଦ୍ରୈରାସେବିତୋ ଗରୁଡ଼କିନ୍ନରଗୀତକୀର୍ତ୍ତିଃ । ୬ ।

---

ଶ୍ରୀମୈତ୍ରେୟ କହିଲେ:—ପ୍ରଚେତାମାନେ ଆପଣାର ପିତାଙ୍କ ଆଦେଶ ଅନୁସାରେ ପ୍ରଜାସୃଷ୍ଟି କାମନାରେ ସମୁଦ୍ର ଗର୍ଭରେ ଜପ, ଯଜ୍ଞ ଓ ତପସ୍ୟା ଦ୍ୱାରା ଶ୍ରୀହରିଙ୍କର ତୁଷ୍ଟି ସାଧନ କରିଥିଲେ । ୩ ।

ଦଶସହସ୍ର ବର୍ଷ ଅତୀତ ହୁଅନ୍ତେ ସନାତନ ବିଷ୍ଣୁ ସ୍ୱୟଂ ଆବିର୍ଭୂତ ହୋଇ ଶାନ୍ତ ଅଙ୍ଗ କାନ୍ତି ଦ୍ୱାରା ସେମାନଙ୍କର ତପଃ କ୍ଳେଶ ପ୍ରଶମନ କରିଥିଲେ । ୪ ।

ସୁମେରୁ ଶିଖରାରୂଢ଼ ଜଳଧର ତୁଲ୍ୟ ସେ ଗରୁଡ଼ ସ୍କନ୍ଧରେ ଆରୋହଣ କରି ପୀତବସନ ପରିଧାନ କରି ସ୍ୱକୀୟ ଗଳଦେଶରେ କୌସ୍ତୁଭମଣି ଧାରଣ କରି ଉପସ୍ଥିତ ହୋଇଥିଲେ, ତାଙ୍କର ଅଙ୍ଗ କାନ୍ତିରେ ସମସ୍ତ ଅନ୍ଧକାର ଦୂରୀଭୂତ ହୋଇ ଯାଇଥିଲା । ୫ ।

ତେଜୋମୟ ସ୍ୱର୍ଣ୍ଣାଳଙ୍କାର ଦ୍ୱାରା ତାଙ୍କର କପୋଳ ଓ ମୁଖମଣ୍ଡଳ ଦୀପ୍ତ ହୋଇଥିଲା, ତାଙ୍କର ଶିରୋଦେଶରେ କିରୀଟ ଶୋଭାପାଉଥିଲା, ତାଙ୍କର ଅଷ୍ଟହସ୍ତରେ ପ୍ରହରଣ, ଅନୁଚରବୃନ୍ଦ, ମୁନିଗଣ ଓ ସୁରଶ୍ରେଷ୍ଠଗଣ ତାଙ୍କର ସେବା କରୁଥିଲେ, ଗରୁଡ଼ ସ୍ୱୟଂ କିନ୍ନରରୂପେ ପଦଧ୍ୱନି ଦ୍ୱାରା ତାଙ୍କର କୀର୍ତ୍ତିଗାନ କରୁଥିଲେ ।୬।

---

ଶ୍ରୀମୈତ୍ରେୟ ଉବାଚ—
ଶୁଣ ବିଦୁର ସୁଚେତନ
ତଦନ୍ତେ ଯେବଣ ବିଧାନ
ସେ ପିତା ବାକ୍ୟେ ହୋଇ ତୋଷ
ତପ ସାଧନେ ଭାଇ ଦଶ
ବାଟେଣ ଭେଟିଲେ ଈଶାନ
ସେ ତାଙ୍କୁ ଦେଲେ ଦିବ୍ୟଜ୍ଞାନ
ସେ ଦୀକ୍ଷା ପାଇ ଦଶ ଭାଇ
ସମୁଦ୍ରେ ପ୍ରବେଶିଲେ ଯାଇ
ଲୁଣ ସମୁଦ୍ର ମଧ୍ୟରେ
ତପ ସାଧିଲେ ଜଳାହାରେ
ଅୟୁତ ସମ୍ବତ୍ସର ଯାଏ
ତପ ସାଧିଲେ ଏକ ଠାଏଁ
ତଦନ୍ତେ ଦେବ ନାରାୟଣ
ଦର୍ଶନ ଦେଲେ ତତକ୍ଷଣ । ୩,୪ ।
ହରିଙ୍କ କାନ୍ତି ଶୋଭା କଲା
ତା ଦେଖି ତାଙ୍କ ଦୁଃଖ ଗଲା
ଖଗେନ୍ଦ୍ର ସ୍କନ୍ଧେ ଦିବ୍ୟ ଅଙ୍ଗେ
ଯେସନେ ଜୀମୂତ ମେରୁ ଶୃଙ୍ଗେ
ପୀତ ବସନ ପରିଧାନେ
ଯେସନେ ତଡ଼ିତ ନବଘନେ
ଅତି ସୁନ୍ଦର ସୁଲକ୍ଷଣ
ସୁଗ୍ରୀବ କଣ୍ଠେ ମଣିଗଣ
ରତ୍ନ ସମୂହ ଶୁଦ୍ଧ କାନ୍ତି
ସେ ଦିଗ ତମିର ନାଶନ୍ତି । ୫ ।
ଶୋଭନେ ନାହିଁ ପଟାନ୍ତର
ଗଣ୍ଡ ଶୋଭନ ମନୋହର
ମକର କୁଣ୍ଡଳ ଶ୍ରବଣେ
ଶୋଭିତ ନାନା ମଣିଗଣେ
କାନ୍ତି ବଦନ ଶୋଭାକର
ଅନଙ୍ଗ କୋଟି ଦର୍ପହର
ଶିରେ କିରୀଟ ଶୋଭମାନ
କାମନନ୍ଦିତ ତନୁ ବର୍ଣ୍ଣ
ଅଷ୍ଟ ଆୟୁଧ କରେ ଛନ୍ତି
ସେବକ ସେବନ କରନ୍ତି

ପୀନାୟତାଷ୍ଟଭୁଜମଣ୍ଡଳମଧ୍ୟଲକ୍ଷ୍ମ୍ୟା ସ୍ପର୍ଦ୍ଧିଶ୍ରିୟା ପରିବୃତୋ ବନମାଲୟାଦ୍ୟଃ ।
ବର୍ହିଷ୍ମତଃ ପୁରୁଷ ଆହ ସୁତାନ୍ ପ୍ରପନ୍ନାନ୍ ପର୍ଜ୍ଜନ୍ୟନାଦରୁତୟା ସଘୃଣାବଲୋକଃ ।୭

ଶ୍ରୀଭଗବାନୁବାଚ ।

ବରଂ ବୃଣୀଧ୍ୱଂ ଭଦ୍ରଂ ବୋ ଯୂୟଂ ମେ ନୃପନନ୍ଦନାଃ ।
ସୌହାର୍ଦ୍ଦେନାପୃଥଗ୍‌ଧର୍ମାସ୍ତୁଷ୍ଟୋଽହଂ ସୌହୃଦେନ ବଃ । ୮ ।
ଯୋଽନୁସ୍ମରତି ସନ୍ଧ୍ୟାୟାଂ ଯୁଷ୍ମାନନୁଦିନଂ ନରଃ ।
ତସ୍ୟ ଭ୍ରାତୃଷ୍ୱାତ୍ମସାମ୍ୟଂ ତଥା ଭୂତେଷୁ ସୌହୃଦମ୍ । ୯ ।

---

ତାଙ୍କର ଗଳାରେ ବନମାଳା ବିଲମ୍ବିତ, ତଦ୍ଦ୍ବାର ଶୋଭା ତାଙ୍କର ପୀନାୟତ ଅଷ୍ଟଭୁଜର ମଧ୍ୟଭାଗରେ ଅବସ୍ଥିତା କମଳାଙ୍କ କାନ୍ତି ସହିତ ପ୍ରତିଦ୍ୱନ୍ଦୀ ହେଉଥିଲା, ଏହିପରି ବନମାଳା ବିଭୂଷିତ ସେହି ଆଦିପୁରୁଷ କରୁଣାର୍ଦ୍ର ଚକ୍ଷୁରେ ଅବଲୋକନ କରି ଜଳଦ ଗମ୍ଭୀର ସ୍ୱରରେ ପ୍ରାଚୀନ ବର୍ହିଙ୍କ ପୁତ୍ରମାନଙ୍କୁ ସମ୍ବୋଧନ କରିଥିଲେ । ୭ ।

ଶ୍ରୀଭଗବାନ୍ କହିଲେ:—

ହେ ନୃପତନୟଗଣ ! ତୁମ୍ଭମାନଙ୍କର ପରସ୍ପର ସୌହାର୍ଦ୍ଦ୍ୟ ହେତୁ ତୁମ୍ଭମାନଙ୍କର ଧର୍ମ ମଧ୍ୟ ଏହିପରି, ତୁମ୍ଭମାନଙ୍କ ସୌହାର୍ଦ୍ଦ୍ୟରେ ମୁଁ ପ୍ରୀତ ହୋଇଅଛି । ଅତଏବ ତୁମ୍ଭେମାନେ ମୋ ଠାରୁ ବର ଗ୍ରହଣ କର, ତୁମ୍ଭମାନଙ୍କର ମଙ୍ଗଳ ହେଉ । ୮ ।

ପ୍ରତିଦିନ ସାୟଂକାଳରେ ଯେଉଁ ବ୍ୟକ୍ତି ତୁମ୍ଭମାନଙ୍କୁ ସ୍ମରଣ କରିବ, ତାହାର ଭ୍ରାତୃଗଣଙ୍କଠାରେ ଓ ସର୍ବପ୍ରାଣୀଠାରେ ଆତ୍ମ ସମଜ୍ଞାନ ଓ ସୌହାର୍ଦ୍ଦ୍ୟ ଜନ୍ମିବ । ୯ ।

---

ଦେବ ସମୂହେ ମୁନି ଜନେ
ସ୍ତୁବନ୍ତି ନିଗମ ବଚନେ
ଖଗେନ୍ଦ୍ର ପକ୍ଷୀ ନାଦ ସ୍ୱର
ସୁର ମୁନୀନ୍ଦ୍ର ମନେ ହର
ଶୁଭଇ ସାମଗାନ ପ୍ରାୟେ
ଶୁଣି କିନ୍ନର ଜନ ମୋହେ
ପୀନ ଆୟତ ଅଷ୍ଟ ଭୁଜ
ସୁର ଅଇଶ୍ୱ ନାଶେ ଖାଜ
ତା ମଧ୍ୟେ ଶୋଭେ ବନମାଳ
ମଧ୍ୱ ଲୋଭିତ ଭୃଙ୍ଗକୁଳ
ଭ୍ରମର ଧ୍ୱନି କରେ ପାଶେ
ଲୋଭିତ ମକରନ୍ଦ ଆଶେ

ଶୋଭନ୍ତେ ନାହିଁ ସନ୍ତାନ୍ତର
ମନ ବଚନେ ଅଗୋଚର
ନ ଦେଖି ଲକ୍ଷ୍ୟ ଅନ୍ୟ ଶୋଭା
ଅଗ୍ରେ ହୋଇଲେ ଆସି ଉଭା
ତାହାଙ୍କୁ ଦେଖି ଦଶଭାଇ
ନମିଲେ ଦଣ୍ଡ ପ୍ରାୟ ହୋଇ
ସନ୍ତୋଷେ ତାଙ୍କୁ ଦାମୋଦର
କହନ୍ତି ବଚନ ମଧୁର । ୬,୭ ।
ଶୁଣ ହେ ନୃପତି ନନ୍ଦନ
ତୁମ୍ଭରେ ହୋଇଲି ପ୍ରସନ୍ନ
ଯେଣୁ କଠୋର ତପ କଲ
ଏଣୁ ହୋଇବ ତୁମ୍ଭ ଭଲ

ହେ ପୁତ୍ରେ ! ବରମାଗ ଦେବା
ଯେଣୁ ଆମ୍ଭରେ କଲ ସେବା
ଏକହି ଭାବେ ଦଶଭାଇ
କାହାର ଭେଦାଭେଦ ନାହିଁ
ସମାନ ଧର୍ମ ସମଶୀଳ
ଏଣୁ ଆମ୍ଭଙ୍କୁ ତୋଷ କଲ । ୮ ।
ତୁମ୍ଭର ଗୁଣ କୀର୍ତ୍ତିଯଶ
ଶ୍ରବଣେ କଳ୍ମଷ ବିନାଶ
ଯେ ନର ଶଯ୍ୟାରୁ ଉଠିଣ
ତୁମ୍ଭରେ କରିବ ସ୍ମରଣ
ନୋହିବ ତାର ଭାଇଭେଦ
ସେମାନେ ନ ପାଇବେ ଖେଦ

ୟେ ତୁ ମାଂ ରୁଦ୍ରଗୀତେନ ସାୟଂ ପ୍ରାତଃ ସମାହିତାଃ ।
ସ୍ତୁବନ୍ତ୍ୟହଂ କାମବରାନ୍ ଦାସ୍ୟେ ପ୍ରଜ୍ଞାଂ ଚ ଶୋଭନାମ୍ । ୧୦ ।
ଯଦ୍ ଯୂୟଂ ପିତୁରାଦେଶମଗ୍ରହୀଷ୍ଟ ମୁଦାନ୍ୱିତାଃ ।
ଅଥୋ ବ ଉଶତୀ କୀର୍ତ୍ତିର୍ଲୋକାନନୁଭବିଷ୍ୟତି । ୧୧ ।
ଭବିତା ବଶ୍ଚ ସୁତଃ ପୁତ୍ରୋଽନବମୋ ବ୍ରହ୍ମଣୋ ଗୁଣୈଃ ।
ଯ ଏତାମାତ୍ମବୀର୍ଯ୍ୟେଣ ତ୍ରିଲୋକୀଂ ପୂରୟିଷ୍ୟତି । ୧୨ ।
କଣ୍ଡୋଃ ପ୍ରାମ୍ଳୋଚେୟା ଲବ୍ଧା କନ୍ୟା କମଲଲୋଚନା ।
ତାଞ୍ଚାପବିଦ୍ଧାଂ ଜଗୃହୁର୍ଭୂରୁହା ନୃପନନ୍ଦନାଃ । ୧୩ ।

ଯେଉଁମାନେ ଏକାଗ୍ରଚିତ୍ତରେ ସାୟଂ ଓ ପ୍ରାତଃକାଳରେ ରୁଦ୍ର ଗୀତ ଦ୍ୱାରା ମୋତେ ସ୍ତୁତି କରିବେ, ମୁଁ ସେମାନଙ୍କୁ ଅଭିଳଷିତ ବର ଓ ଶୋଭନା ପ୍ରଜ୍ଞା ଓ ବୁଦ୍ଧି ପ୍ରଦାନ କରିବି । ତୁମ୍ଭେମାନେ ସନ୍ତୁଷ୍ଟ ଚିତ୍ତରେ ତୁମ୍ଭମାନଙ୍କର ପିତାଙ୍କ ଆଦେଶ ପାଳନ କରିଅଛ, ତେଣୁ ତୁମ୍ଭମାନଙ୍କର ଏହି କମନୀୟ କୀର୍ତ୍ତି ଲୋକ ମଣ୍ଡଳରେ ବିସ୍ତାରଲାଭ କରିବ । ୧୦,୧୧ ।

ତୁମ୍ଭମାନଙ୍କର ଗୋଟିଏ ପୁତ୍ର ଜନ୍ମଗ୍ରହଣ କରିବ, ସେ ବ୍ରହ୍ମାଙ୍କ ଅପେକ୍ଷା ଗୁଣରେ ଶ୍ରେଷ୍ଠ ହେବ, ଏବଂ ତାହାର ସନ୍ତାନ ସନ୍ତତିଦ୍ୱାରା ତ୍ରିଲୋକ ପୂର୍ଣ୍ଣ ହେବ । ୧୨ ।

ହେ ନୃପନନ୍ଦନଗଣ ! ପ୍ରମ୍ଳୋଚାନାମ୍ନୀ ଅପ୍ସରା କଣ୍ଡୁ ଋଷିଙ୍କ ସହଯୋଗରେ ଗୋଟିଏ ପଦ୍ମପଳାଶ ଲୋଚନା କନ୍ୟା ପ୍ରସବକରି ତାହାକୁ ବୃକ୍ଷମଧ୍ୟରେ ପରିତ୍ୟାଗ କରିବାରୁ ବୃକ୍ଷମାନେ ସେହି ପରିତ୍ୟକ୍ତା କନ୍ୟାକୁ ଗ୍ରହଣ କରିଥିଲେ । ୧୩ ।

ସକଳ ଭୂତେ ସମଭାବ
ଖଣ୍ଡିବେ ଦୁଃଖ ପରାଭବ
ଯେ ନିତ୍ୟେ ପ୍ରଭାତ ସନ୍ଧ୍ୟାରେ
ଏ ରୁଦ୍ର-ଗୀତା ସ୍ତବ କରେ
ମୁଁ ତାରେ ଦେଇ କାମ୍ୟ ବର
ଶୋଭନ ହେବ ମତି ତାର ।୯,୧୦
ଯେଣୁ ଏ ତୁମ୍ଭେ ଦଶଭାଇ
ପିତାର ଆଜ୍ଞା ଶିରେ ବହି
ସନ୍ତୋଷେ ତପ ଆଚରିଲ
ଏଣୁ ଲଭିବ କୀର୍ତ୍ତି ଭଲ
ବିମଳ ସୁଯଶ ତୁମ୍ଭର
ବିଖ୍ୟାତ ରହିବ ସଂସାର । ୧୧ ।
ତଦନ୍ତେ କିଛି କାଳ ଅନ୍ତେ
ଏ ତୁମ୍ଭ ପତ୍ନୀ ଗର୍ଭଗତେ
ହୋଇବ ଏକ ଯେ ତନୟେ
ସେ ହେବ ବ୍ରହ୍ମଗୁଣମୟେ
ସେ ପୁତ୍ର ଆତ୍ମ ବୀର୍ଯ୍ୟ ବଳେ
ପୂରିବ ଏ ଲୋକ ଶସ୍ୟଳେ ।୧୨।
ଯେ କନ୍ୟା ବଧୂ ହେବ ତୁମ୍ଭେ
କହିବା ତାର ଜନ୍ମ ଏବେ
ଶୁଣ ହେ ନୃପତି ନନ୍ଦନେ
ସେ କଣ୍ଡୁ ଋଷି ତପ ବନେ
ତାଙ୍କ ଭୁବନେ ଅନୁସରି
ଥିଲା ଏକାଇ ସୁନ୍ଦରୀ
ପ୍ରମ୍ଳୋଚା ନାମ ଯେ ତାହାର
ଅପ୍ସରା ଗଣେ ଶ୍ରେଷ୍ଠ ଯାର
ତାହାଙ୍କୁ ଦେଖି ମୁନିବର
ଅନଙ୍ଗେ ହୋଇଲେ ଅସ୍ଥିର
ଛାଡ଼ି ତପସ୍ୟା ଆଦି ଧ୍ୟାନ
ତା ରୂପେ ପାସୋରିଲେ ଜ୍ଞାନ
ତା ଅନୁସଙ୍ଗେ ମୁନିବର
ଗୃହସ୍ଥ ଧର୍ମେ ସୁବିସ୍ମର
ଏମନ୍ତେ କିଛି କାଳାନ୍ତରେ
ଅମୋଘ ବୀର୍ଯ୍ୟ ତା ଉଦରେ
ରହିଲା କାଳ କର୍ମ ଫଳେ
ବିଧି ସଂଯୋଗ କର୍ମ ବଳେ
ତାହାର ଗର୍ଭେ ଏକ କନ୍ୟା
ହୋଇଲା ଗୁଣଶୀଳେ ଧନ୍ୟା
ସେ କନ୍ୟା ବନେ ତେଜ୍ୟା କରି
ତକ୍ଷଣେ ଗଲା ନିଜପୁରୀ
ସେ ବନେ ଯେତେ ବୃକ୍ଷ ଥିଲେ
ସର୍ବେ କନ୍ୟାକୁ ଘେନିଗଲେ । ୧୩

କ୍ଷୁତ୍‌କ୍ଷାମାୟା ମୁଖେ ରାଜା ସୋମଃ ପୀୟୁଷବର୍ଷିଣୀମ୍ ।
ଦେଶିନୀଂ ରୋଦମାନାୟା ନିଦଧେ ସ ଦୟାନ୍ୱିତଃ । ୧୪ ।
ପ୍ରଜାବିସର୍ଗ ଆଦିଷ୍ଟାଃ ପିତ୍ରା ମାମନୁବର୍ତ୍ତିତା ।
ତତ୍ର କନ୍ୟାଂ ବରାରୋହାଂ ତାମୁଦ୍‌ବହତ ମା ଚିରମ୍ । ୧୫ ।
ଅପୃଥଗ୍ ଧର୍ମଶୀଳାନାଂ ସର୍ବେଷାଂ ବଃ ସୁମଧ୍ୟମା ।
ଅପୃଥଗ୍‌ଧର୍ମଶୀଳେୟଂ ଭୂୟାତ୍ ପତ୍ନ୍ୟର୍ପିତାଶୟା । ୧୬ ।
ଦିବ୍ୟବର୍ଷସହସ୍ରାଣାଂ ସହସ୍ରମହତୌଜସଃ ।
ଭୌମାନ୍ ଭୋକ୍ଷ୍ୟଥ ଭୋଗାନ୍ ବୈ ଦିବ୍ୟାଂଶ୍ଚାନୁଗ୍ରହାନ୍ମମ । ୧୭ ।
ଅଥ ମୟ୍ୟନପାୟିନ୍ୟା ଭକ୍ତ୍ୟା ପକ୍ୱଗୁଣାଶୟାଃ ।
ଉପଯାସ୍ୟଥ ମଦ୍ଧାମ ନିର୍ବିଦ୍ୟ ନିରୟାଦତଃ । ୧୮ ।

---

ଏହି କନ୍ୟା କ୍ଷୁଧାତୁର ହୋଇ ରୋଦନ କରୁଥିଲା, ବନସ୍ପତିମାନଙ୍କ ରାଜା ସୋମ ଦୟାପୂର୍ବକ ସ୍ୱୀୟ ଅମୃତ ସ୍ରବଣୀ ତର୍ଜନୀ ଅଙ୍ଗୁଳି ତାହାର ମୁଖରେ ଦେଇ ଏହି କନ୍ୟାକୁ ପାଳନ କରିଥିଲେ ।୧୪।

ମୋର ଆଜ୍ଞାରେ ତୁମ୍ଭମାନଙ୍କର ପିତା ତୁମ୍ଭମାନଙ୍କୁ ପ୍ରଜାସୃଷ୍ଟି କରିବାକୁ ଆଦେଶ ଦେଇଅଛନ୍ତି, ତୁମ୍ଭେମାନେ ସେହି ଆଦେଶ ପାଳନ କରି ସେହି ଉତ୍ତମା କନ୍ୟାର ପାଣିଗ୍ରହଣ କର । ୧୫ ।

ତୁମ୍ଭେମାନେ ସମସ୍ତେ ଯେପରି ଏକଧର୍ମ ଓ ଶୀଳସମ୍ପନ୍ନ, ଏ କନ୍ୟା ମଧ୍ୟ ସେହିପରି ଧର୍ମ ଓ ଚରିତ୍ର ସମ୍ପନ୍ନା, ସେ ମଧ୍ୟ ତୁମ୍ଭମାନଙ୍କ ମଙ୍ଗଳକାମୀ, ସେହି କନ୍ୟା ତୁମ୍ଭମାନଙ୍କ ପତ୍ନୀ ହେଉ । ୧୬ ।

ତୁମ୍ଭେମାନେ ମୋ ଅନୁଗ୍ରହରେ ଦିବ୍ୟବର୍ଷ ସହସ୍ର ପର୍ଯ୍ୟନ୍ତ ଅପ୍ରତିହତ ପ୍ରଭାବ ସମ୍ପନ୍ନ ହୋଇ ସହସ୍ର ପ୍ରକାର ପାର୍ଥିବ ଓ ଦିବ୍ୟ ଭୋଗ ସମୂହ ଭୋଗକର । ୧୭ ।

ଅନନ୍ତର ମୋ ପ୍ରତି ଯେତେବେଳେ ତୁମ୍ଭମାନଙ୍କର ଅବ୍ୟଭିଚାରିଣୀ ଭକ୍ତି ଜନ୍ମିବ, ସେତେବେଳେ ତୁମ୍ଭମାନଙ୍କର ଅନ୍ତର କାମାଦିମଳ ନଷ୍ଟ ହେବ ଏବଂ ତୁମ୍ଭେମାନେ ଏହି ଭୋଗ ସ୍ୱରୂପ ନରକରୁ ନିବୃତ୍ତି ଲାଭ କରି ମୋର ନିତ୍ୟଧାମକୁ ଗମନ କରିବ । ୧୮ ।

---

ସେ କନ୍ୟା କ୍ଷୁଧାରେ ବିକଳେ
ରୋଦନ କରେ ବୃକ୍ଷମୂଳେ
ତାହାକୁ ଦେଖି ପୁରନ୍ଦର
ଦୟା ବସିଲା ତା କଣ୍ଠର
ତର୍ଜ୍ଜନୀ ଅଙ୍ଗୁଳି ତାଙ୍କର
ସେ ଇନ୍ଦ୍ର ଦେଲେ ରସଭର
ଇନ୍ଦୁର କରେ ସୁଧାଥିଲା
ସେ ପାନେ କ୍ଷୁଧା ତା ଲଭିଲା
ଏମନ୍ତେ ସେ ବନେ ସୁନ୍ଦରୀ
ଲଭିଲା କର୍ମ୍ମ ଅନୁସରି । ୧୪ ।

ସେ ଗୁଣବତୀ କନ୍ୟା ହାର
ତା ଅନୁରୂପେ ତୁମ୍ଭେ ବର
ଆମ୍ଭର ଭକ୍ତ ତୁମ୍ଭ ପିତା
ସୃଷ୍ଟି ସର୍ଜ୍ଜନେ କରି ଚିନ୍ତା
ଏଣୁ ତୁମ୍ଭଙ୍କୁ ଆଜ୍ଞା ଦେଲେ
ଏ ସୃଷ୍ଟି କରି ତୁମ୍ଭେ ହେଲେ
ଏଣୁ ଯେ ତୁମ୍ଭେ ଦଶଜଣ
ସେ କନ୍ୟା ବିଭା ହୁଅ ଯାଇ ।୧୫
ସମାନ ଧର୍ମ୍ମ ତୁମ୍ଭେମାନେ
ଏ ମୋର ବାକ୍ୟେ ତୋଷମନେ

ସେ କନ୍ୟା ସଙ୍ଗେ ସୃଷ୍ଟି କର
ସେ ଯୋଗ୍ୟ ଅଟଇ ତୁମ୍ଭର ।୧୬।
ଦେବତା ଆୟୁଷ ପ୍ରମାଣେ
ଜୀବନେ ରହି ସୁକଲ୍ୟାଣେ
ପୃଥିବୀ ସୁଖେ ଭୋଗକର
ତ୍ରିବିଧ ତାପତ୍ରୟ ହର । ୧୭ ।
ମୋ ପାଦେ କରିବ ଭକତି
ବୈକୁଣ୍ଠେ ଲଭିବ ବସତି
ଏ କର୍ମ୍ମ ବନ୍ଧ ଛିନ୍ନାଶିବ
ବିଷୟ ଭୋଗ ନ ଲାଗିବ । ୧୮ ।

ଗୃହେଷ୍ୱାବଶତାଞ୍ଚାପି ପୁଂସାଂ କୁଶଳକର୍ମ୍ମଣାମ୍ ।
ମଦ୍‌ବାର୍ତ୍ତାଯାତଯାମାନାଂ ନ ବନ୍ଧାୟ ଗୃହା ମତାଃ । ୧୯ ।
ନବ୍ୟବଦ୍ଧୃଦୟେ ଯଜ୍ଜ୍ଞୋ ବ୍ରହ୍ମୈତଦ୍‌ବ୍ରହ୍ମବାଦଭିଃ ।
ନ ମୁହ୍ୟନ୍ତି ନ ଶୋଚନ୍ତି ନ ହୃଷ୍ୟନ୍ତି ଯତୋ ଗତାଃ । ୨୦ ।

ଶ୍ରୀମୈତ୍ରେୟ ଉବାଚ ।

ଏବଂ ବ୍ରୁବାଣଂ ପୁରୁଷାର୍ଥଭାଜନଂ ଜନାର୍ଦ୍ଦନଂ ପ୍ରାଞ୍ଜଳୟଃ ପ୍ରଚେତସଃ ।
ତଦ୍ଦର୍ଶନଧ୍ୱସ୍ତତମୋରଜୋମଳା ଗିରାଗୃଣନ୍ ଗଦ୍‌ଗଦୟା ସୁହୃତ୍ତମମ୍ ।୨୧।

---

ଗୃହାଶ୍ରମରେ ଅବସ୍ଥାନ କରି ମଧ୍ୟ ଯେଉଁମାନେ କୁଶଳ କର୍ମ ସମ୍ପାଦନ ମୋର ପରିଚର୍ଯ୍ୟାମୂଳକ ବୋଲି ଜାଣନ୍ତି; ମୋର କଥା ପ୍ରସଙ୍ଗରେ ଦିନ ଗତ ଯାପନକରନ୍ତି, ସଂସାର ସେମାନଙ୍କର ବନ୍ଧନର କାରଣ ହୋଇ ନ ପାରେ । ୧୯ ।

ଯେଉଁମାନେ ମୋ କଥା ଶ୍ରବଣ କରନ୍ତି, ସର୍ବଜ୍ଞ ମୁଁ ସ୍ୱୟଂ ସେମାନଙ୍କର ହୃଦୟରେ ନିତ୍ୟ ନଗ୍ନିନ ରୂପରେ ଆବର୍ତ୍ତିତ ହୁଏ । ମୋର ଏହି ସ୍ୱରୂପକୁ ବ୍ରହ୍ମବାଦୀମାନେ ବ୍ରହ୍ମ ବୋଲି କହିଥାନ୍ତି; କାରଣ ମୋତେ ପ୍ରାପ୍ତହେଲେ ପୁରୁଷକୁ ମୋହ, ଶୋକ, ବା ହର୍ଷରେ ଅଭିଭୂତ ହେବାକୁ ପଡ଼େ ନାହିଁ । ୨୦ ।

ଶ୍ରୀ ମୈତ୍ରେୟ କହିଲେ :—

ପୁରୁଷାର୍ଥଦାତା ସୁହୃତ୍ତମ ଭଗବାନ୍ ଜନାର୍ଦ୍ଦନ ଏହିପରି କହନ୍ତେ, ତାଙ୍କ ଦର୍ଶନଲାଭକରି ଯେଉଁ ପ୍ରଚେତାମାନଙ୍କର ରଜଃ ଓ ତମୋଗୁଣ ବିଦୂରିତ ହୋଇଥିଲା, ସେମାନେ ଗଦ୍ଗଦକଣ୍ଠରେ କୃତାଞ୍ଜଳି ପୂର୍ବକରେ ତାହାଙ୍କୁ ସ୍ତବ କଲେ । ୨୧ ।

---

ଭୋଗାନ୍ତେ ମୋକ୍ଷ ଦଶଭାଇ
ହେବ ସଂଶୟ ଏଥି ନାହିଁ
ଏ ଗୃହ-ଧର୍ମ୍ମେ ବସ୍ତୁ ଯେତେ
ମୋତେ ସମର୍ପି ଶୁଦ୍ଧଚିତ୍ତେ
ଉଦାସ ଜନ ପ୍ରାୟ ହୋଇ
ମୋର ଭକତ ହୃଦେ ଧ୍ୟାଇ
ତାଙ୍କୁ ନ ଲଗେ ମାୟା ମୋହ
ଛିଡ଼େ ଭୁକ୍ତିର ବନ୍ଧସ୍ନେହ।୧୯,୨୦
ଶ୍ରୀ ମୈତ୍ରେୟ ଉବାଚ—
ମୈତ୍ରେୟ କହନ୍ତି ବିଦୁର
ଏମନ୍ତେ କହନ୍ତେ ଈଶ୍ୱର
ଅଞ୍ଜଳି କରି ଦଶଭାଇ
ପ୍ରଣାମ କରନ୍ତି ବିନୟି
ଶ୍ରୀମୁଖ ନିରେଖି ସ୍ଥିହିଁଲେ
ଆନନ୍ଦ ସାଗରେ ବୁଡ଼ିଲେ
ଦୂରନ୍ତହେଲା ରଜ ତମ
ଖଣ୍ଡିଲେ ସଂଶୟ ବିଭ୍ରମ
ସମ୍ଭ୍ରମେ ନ ପାରନ୍ତି ସ୍ଥିହି
ଅଶ୍ରୁପୁଲକେ ପ୍ରେମ ଦେହୀ
ଆନନ୍ଦସାଗରେ ବୁଡ଼ଣ
କହନ୍ତି ଗଦ୍‌ଗଦ ବାକ୍ୟେଣ
ସ୍ତୁତି କରଣେ ଶକ୍ୟ ନାହିଁ
ପ୍ରେମ ଆନନ୍ଦେ ପୂର୍ଣ୍ଣ ଦେହୀ
ପଡ଼ିଲେ ଦଣ୍ଡ ପ୍ରାୟେ ପାଦେ,
ଅତି ଆନନ୍ଦେ ପ୍ରେମେ ଖେଦେ,
ସ୍ତୁତି କରନ୍ତି ଏକେ ଏକେ
ବାକ୍ୟ ନ ସ୍ଫୁରେ ଅଶ୍ରୁଦକେ ।୨୧

ଶ୍ରୀପ୍ରଚେତସ ଊଚୁଃ ।

ନମୋ ନମଃ କ୍ଲେଶବିନାଶନାୟ ନିରୂପିତୋଦାରଗୁଣାହ୍ୱୟାୟ ।
ମନୋବଚୋବେଗପୁରୋଜବାୟ ସର୍ବାକ୍ଷମାର୍ଗୈରଗତାଧ୍ୱନେ ନମଃ । ୨୨ ।
ଶୁଦ୍ଧାୟ ଶାନ୍ତାୟ ନମଃ ସ୍ୱନିଷ୍ଠୟା ମନସ୍ୟପାର୍ଥଂ ବିଲସଦ୍ୱୟାୟ ।
ନମୋ ଜଗତ୍‌ସ୍ଥାନଲୟୋଦୟେଷୁ ଗୃହୀତମାୟାଗୁଣବିଗ୍ରହାୟ । ୨୩ ।
ନମୋ ବିଶୁଦ୍ଧସତ୍ତ୍ୱାୟ ହରୟେ ହରିମେଧସେ ।
ବାସୁଦେବାୟ କୃଷ୍ଣାୟ ପ୍ରଭବେ ସର୍ବସାତ୍ୱତାମ୍ । ୨୪ ।
ନମଃ କମଲନାଭାୟ ନମଃ କମଲମାଳିନେ ।
ନମଃ କମଲପାଦାୟ ନମସ୍ତେ କମଲେକ୍ଷଣ । ୨୫ ।

---

ଶ୍ରୀ ପ୍ରଚେତାମାନେ କହିଲେ ଃ—

ହେ ଭଗବନ୍ ! ତୁମ୍ଭେ କ୍ଲେଶହନ୍ତା, ତୁମ୍ଭଙ୍କୁ ଆମ୍ଭେମାନେ ନମସ୍କାର କରୁଅଛୁଁ । ସର୍ବବେଦ ତୁମ୍ଭର ଉଦାରଗୁଣାବଳୀ ଓ ମହତ୍ ନାମମାଳାକୁ ସର୍ବବିଷୟର ସାଧକ ବୋଲି ନିର୍ଦ୍ଦେଶ କରିଅଛି; ତୁମ୍ଭେ ବାକ୍ୟ ଓ ମନର ଅଗୋଚର, ଇନ୍ଦ୍ରିୟମାର୍ଗରେ ତୁମ୍ଭର ପଥାନୁସରଣ କରିବା ସମ୍ଭବ ନୁହେଁ ; ତୁମ୍ଭଙ୍କୁ ଆମ୍ଭେମାନେ ନମସ୍କାର କରୁ । ୨୨ ।

ଯାହାଙ୍କଠାରେ ଏକାନ୍ତ ନିଷ୍ଠା ଜନ୍ମିଲେ ସମସ୍ତ ଦ୍ୱିଧା ଅଳୀକ ବୋଲି ପ୍ରତୀତ ହୁଏ, ତୁମ୍ଭେ ସେହି ବିଶୁଦ୍ଧସତ୍ତ୍ୱ ସ୍ୱରୂପ ଓ ଶାନ୍ତ, ତୁମ୍ଭଙ୍କୁ ଆମ୍ଭେମାନେ ନମସ୍କାର କରୁ; ତୁମ୍ଭେ ଜଗତର ସୃଷ୍ଟି, ସ୍ଥିତି, ଓ ଲୟ ନିମିତ୍ତ ମାୟାଗୁଣଦ୍ୱାରା ବ୍ରହ୍ମାଦିମୂର୍ତ୍ତି ଧାରଣ କରିଥାଅ, ତୁମ୍ଭଙ୍କୁ ନମସ୍କାର । ୨୩ ।

ପ୍ରଭୋ ! ତୁମ୍ଭେ ବିଶୁଦ୍ଧ ସତ୍ତ୍ୱସ୍ୱରୂପ । ତୁମ୍ଭଙ୍କୁ ଅବଗତ ହେଲେ ସଂସାରବନ୍ଧ ଛିନ୍ନ ହୁଏ, ଅତଏବ ହେ ହରି ! ତୁମ୍ଭଙ୍କୁ ଆମ୍ଭେମାନେ ନମସ୍କାର କରୁ ; ତୁମ୍ଭେ ବାସୁଦେବ, ତୁମ୍ଭେ ଶ୍ରୀକୃଷ୍ଣ, ତୁମ୍ଭେହିଁ ଭକ୍ତର ଭଗବାନ୍ , ତୁମ୍ଭଙ୍କୁ ନମସ୍କାର । ୨୪ ।

ହେ ପଦ୍ମନାଭ, ହେ ପଦ୍ମମାଳୀ, ହେ ପଦ୍ମପାଦ, ହେ ପଦ୍ମଲୋଚନ, ତୁମ୍ଭଙ୍କୁ ନମସ୍କାର । ୨୫ ।

---

ଶ୍ରୀ ଦଶପ୍ରଚେତସ ଊଚୁଃ—

ନମସ୍ତେ ପ୍ରଭୁ ନାରାୟଣ
ଅଶେଷ ଦୁଃଖ ନିବାରଣ
ଉଦାର ଗୁଣ ଯେ ତୁମ୍ଭର
ଯେ ନାମ ବେଦେ ଅଗୋଚର
ଏ ତୁମ୍ଭ ବେଗ ବଳବନ୍ତ
ମନ ବଚନେ ନୋହେ ଅନ୍ତ
ଇନ୍ଦ୍ରିୟଗଣ ନ ଜାଣନ୍ତି
କିରୂପେ ଜାଣିବେ ତୋ ଗତି ?
ଏମନ୍ତ ପ୍ରଭୁ ଯେ ଈଶ୍ୱର
ସେପାଦେ ଆମ୍ଭ ନମସ୍କାର ।୨୨।
ତୁମ୍ଭେ ବିଶୁଦ୍ଧ ଶାନ୍ତରୂପେ
ବିସ ନିର୍ମଳ ମନକୂପେ
ନମସ୍ତେ ପ୍ରଭୁ ଭଗବାନ
ଏଣିକି କର ବିମୋଚନ
ଜଗତ ଉଦେ ସ୍ଥିତି ଲୟେ
ହୋଇ ଯେ ଅଛ ଗୁଣମୟେ
ମାୟା ଗୁଣରୁ ରୂପଧରି
ସୃଷ୍ଟି ସର୍ଜ୍ଜନେ ଅଧିକାରୀ । ୨୩।
ନୋହିଲେ ତୁମ୍ଭେ ଶୁଦ୍ଧ ସତ୍ତ୍ୱ
କେହି ନ ପାନ୍ତି ତୁମ୍ଭ ତତ୍ତ୍ୱ
ନମୋ ଶ୍ରୀକୃଷ୍ଣ ବାସୁଦେବ
ସକଳ ସାତ୍ୱତ ପ୍ରଭବ । ୨୪।
କମଳ ନାଭି ଯାହାର
ନମଇଁ ଚରଣେ ତାହାର
ନମଇଁ କମଳମାଳିନେ
କମଳ ଚରଣ ଲୋଚନେ । ୨୫ ।

ନମଃ କମଲକିଞ୍ଜଲ୍କପିଶଙ୍ଗାମଲବାସସେ ।
ସର୍ବଭୂତନିବାସାୟ ନମୋଽୟୁଙ୍କ୍ଷ୍ମହି ସାକ୍ଷିଣେ । ୨୬ ।
ରୂପଂ ଭଗବତା ତ୍ୱେତଦଶେଷକ୍ଲେଶସଂକ୍ଷୟମ୍ ।
ଆବିଷ୍କୃତଂ ନଃ କ୍ଲିଷ୍ଟାନାଂ କିମନ୍ୟଦନୁକମ୍ପିତମ୍ । ୨୭ ।
ଏତାବତ୍ତ୍ୱଂ ହି ବିଭୁଭିର୍ଭାବ୍ୟଂ ଦୀନେଷୁ ବତ୍ସଲୈଃ ।
ଯଦନୁସ୍ମର୍ଯ୍ୟତେ କାଲେ ସ୍ୱବୁଦ୍ଧ୍ୟାଭଦ୍ରରନ୍ଧନ । ୨୮ ।
ଯେନୋପଶାନ୍ତିର୍ଭୂତାନାଂ କ୍ଷୁଲ୍ଲକାନାମପୀହତାମ୍ ।
ଅନ୍ତର୍ହିତୋଽନ୍ତର୍ହୃଦୟେ କସ୍ମାନ୍ନୋ ବେଦ ନାଶିଷଃ । ୨୯ ।
ଅସାବେବ ବରୋଽସ୍ମାକମୀପ୍‌ସିତୋ ଜଗତଃ ପତେ ।
ପ୍ରସନ୍ନୋ ଭଗବାନ୍ ଯେଷାମପବର୍ଗଗୁରୁର୍ଗତିଃ । ୩୦ ।

ତୁମ୍ଭର ପରିହିତବସ୍ତ୍ର ପଦ୍ମକିଞ୍ଜଲ୍କ ତୁଲ୍ୟ ନିର୍ମ୍ମଳ ଓ ପିଙ୍ଗଳବର୍ଣ୍ଣ; ତୁମ୍ଭେ ସର୍ବଭୂତର ନିବାସସ୍ଥଳ ଓ ସର୍ବଭୂତର ସାକ୍ଷୀ, ତୁମ୍ଭଙ୍କୁ ନମସ୍କାର । ୨୬ ।

ହେ ଭଗବନ୍ ! ଅବିଦ୍ୟାଦିକ୍ଲେଶ କ୍ଲିଷ୍ଟ ଆମ୍ଭମାନଙ୍କର କ୍ଲେଶ ବିନାଶନିମିତ୍ତ ତୁମ୍ଭେ ଏହି ଅଶେଷକ୍ଲେଶ ନାଶକ ମୂର୍ତ୍ତି ପ୍ରକାଶ କରିଅଛ, ଏହା ଅପେକ୍ଷା ଆଉ ଅଧିକ କରୁଣାର ନିଦର୍ଶନ କଅଣ ହୋଇପାରେ ।୨୭।

ହେ ଅମଙ୍ଗଳନାଶକ ! ଦୀନଜନଙ୍କ ପ୍ରତି "ଏମାନେ ମୋର ଲୋକ"—ଏହା ମନେକଲେ ଯଥେଷ୍ଟ ଅନୁଗ୍ରହ ପ୍ରକାଶିତ ହେଲା । କାରଣ ଦୀନ ବତ୍ସଳ ପ୍ରଭୁଙ୍କର ଏହାହିଁ ସ୍ୱଭାବ ! ପ୍ରଭୁ ଏହିପରି ଭାବିଲେ, ତଦ୍ଦ୍ୱାରା ପ୍ରାଣିମାନଙ୍କର ସର୍ବ କ୍ଲେଶ ନିବୃତ୍ତି ହୁଏ ; ତୁମ୍ଭେ ଅତଭୁଚ୍ଛ ଜୀବର ମଧ୍ୟ ଅନ୍ତଃକରଣରେ ଅନ୍ତର୍ଯ୍ୟାମିରୂପେ ଅବସ୍ଥିତ ହୋଇ ସେମାନଙ୍କର ପ୍ରାର୍ଥିତ ବିଷୟ ଜାଣିପାରୁଅଛ ; ସୁତରାଂ ଆମ୍ଭମାନଙ୍କର ପ୍ରାର୍ଥିତ ବିଷୟ ନ ଜାଣିବ ବା କାହିଁକି ? । ୨୮-୨୯ ।

ହେ ଜଗତ୍ପତି ! ତୁମ୍ଭେ ବ୍ରହ୍ମ କୈବଲ୍ୟାଦିର ଗୁରୁ ବା ମହତୀପନ୍ଥା, ଏବଂ ତୁମ୍ଭେ ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ; ତଥାପି ତୁମ୍ଭର ପ୍ରସନ୍ନତାହିଁ ଆମ୍ଭମାନଙ୍କର ଏକମାତ୍ର ପ୍ରାର୍ଥନା । ୩୦ ।

କମଳ କିଞ୍ଜଲ୍କ ଯେସନେ
ନିର୍ମଳ ବସନ ତେସନେ
ସେ ପୀତବାସଙ୍କୁ ନମଇଁ
ଚରଣେ ପରମୁଣ୍ଡା ଯାଇ
ସକଳ ଭୂତେ ଯା ନିବାସ
ସେ ସାକ୍ଷୀରୂପେ ସୁପ୍ରକାଶ ।୨୬।
ସେ ରୂପ ଭାବ ପ୍ରଣମିଲୁ
ଯେଣୁଟ ଦର୍ଶନ ଲଭିଲୁ
ହେ ପ୍ରଭୁ ତୁମ୍ଭେ ଭଗବାନ
ଏ ଦୟା କରିବ କେ ଆନ

ହେ ନାଥ ଏ ରୂପ ଦେଖାଇ
ଦୁରିତ ଖଣ୍ଡିଲ ଗୋସାଇଁ
ଏରୂପେ ଯେ କରେ ଦର୍ଶନ
ସେ ଦୁଃଖେ ନୁହନ୍ତି ଭଜନ ।୨୭।
ହେ ନାଥ ! ମହିମା ତୋ ଯେତେ
ଦେଖିଲୁ ପ୍ରଭୁପଣ ତେତେ
ବୁଝିଲୁ ତୁମ୍ଭେ ଦୟାସିନ୍ଧୁ
ଯେ ହୀନ ଦୀନଜନ ବନ୍ଧୁ
ଆମ୍ଭେ ଯେ ଅତି ଦୀନ ହୀନ
ଆମ୍ଭଙ୍କୁ କଲ ସୁମରଣ । ୨୮ ।

ଯେଉଁ ସ୍ମରଣେ ଆହେ ନାଥ
ସୁଶାନ୍ତି ଲଭି ସୁଖ ଜାତ
ବୁଝିଲୁ ତୁମ୍ଭେ ଦୂରେ ନାହିଁ
ହୃଦୟ ପଦ୍ମେ ଗୁପ୍ତେ ଥାଅ
ଏଣୁ ଭକତ ଚିତ୍ତ କଥା
ବୁଝିଣ ପାଅ ତୁମ୍ଭେ ବ୍ୟଥା
ଯେଣୁ ତୋ ସର୍ବଘଟେ ବାସ
ଭକ୍ତ ଡାକିଲେ ଶୀଘ୍ରେ ଆସ ।୨୯।
ହେ ନାଥ ଜଗତ ଗୋସାଇଁ
ଏଥୁଁ ଅପରେ ବର ନାହିଁ

ବରଂ ବୃଣୀମହେଽଥାପି ନାଥ ତ୍ୱତ୍ ପରତଃ ପରାତ୍ ।
ନ ହ୍ୟନ୍ତୋ ଯଦ୍‌ବିଭୂତୀନାଂ ସୋଽନନ୍ତ ଇତି ଗୀୟସେ । ୩୧ ।
ପାରିଜାତେଽଞ୍ଜସା ଲବ୍‌ଧେ ସାରଙ୍ଗୋଽନ୍ୟନ୍ନ ସେବତେ ।
ତ୍ୱଦଙ୍ଘ୍ରିମୂଲମାସାଦ୍ୟ ସାକ୍ଷାତ୍ କିଂ କିଂ ବୃଣୀମହି । ୩୨ ।
ଯାବତ୍ ତେ ମାୟୟା ସ୍ପୃଷ୍ଟା ଭ୍ରମାମ ଇହ କର୍ମଭିଃ ।
ତାବଦ୍‌ଭବତ୍‌ପ୍ରସଙ୍ଗାନାଂ ସଙ୍ଗଃ ସ୍ୟାନ୍ନୋ ଭବେ ଭବେ । ୩୩ ।
ତୁଲୟାମ ଲବେନାପି ନ ସ୍ୱର୍ଗଂ ନାପୁନର୍ଭବମ୍ ।
ଭଗବତ୍‌ସଙ୍ଗିସଙ୍ଗସ୍ୟ ମର୍ତ୍ତ୍ୟାନାଂ କିମୁତାଶିଷଃ । ୩୪ ।

---

ହେ ନାଥ ! ତୁମ୍ଭେ ପରାତ୍ପର ଏବଂ ସର୍ବାଭୀଷ୍ଟଦାତା, ତୁମ୍ଭର ବିଭୂତିର ଅନ୍ତ ନାହିଁ, ତେଣୁ ଲୋକେ ତୁମ୍ଭଙ୍କୁ ଅନନ୍ତ ବୋଲି କହନ୍ତି । ୩୧ ।

ପାରିଜାତ ପାଇଲେ ଯେପରି ମଧୁଲୋଲୁପ ଭ୍ରମର ଅନ୍ୟ ବୃକ୍ଷର ସେବା କରେନାହିଁ, ସେହିପରି ସାକ୍ଷାତ୍ ତୁମ୍ଭର ପାଦମୂଳ ପ୍ରାପ୍ତହେଲେ ଅନ୍ୟ ପଦାର୍ଥ କିଏ ପ୍ରାର୍ଥନା କରିବ । ୩୨ ।

ଆମ୍ଭେମାନେ ତୁମ୍ଭର ମାୟା ମୋହିତ ହୋଇ କର୍ମବଶତଃ ଏ ସଂସାରରେ ଯେତେକାଳ ଭ୍ରମଣକରୁ, ସେତେକାଳ ଯେପରି ଜନ୍ମେ ଜନ୍ମେ ତୁମ୍ଭର ଭକ୍ତଗଣଙ୍କ ସହିତ ଆମ୍ଭମାନଙ୍କର ସମାଗମ ହୁଏ; ଆମ୍ଭେ-ମାନେ ଏହି ବରହିଁ ପ୍ରାର୍ଥନା କରୁଅଛୁ । ୩୩ ।

ଅତ୍ୟଳ୍ପକାଳ ମାତ୍ର ଭଗବତ୍‌ପ୍ରେମୀ ସାଧୁସଙ୍ଗ ଦ୍ୱାରା ଜୀବର ଯେଉଁ ଅସୀମ ମଙ୍ଗଳ ସାଧିତ ହୁଏ, ତାହା ସଙ୍ଗେ ସ୍ୱର୍ଗ ବା ମୋକ୍ଷର ସୁଦ୍ଧା ତୁଳନା କରାଯାଇ ନ ପାରେ, କାରଣ ଧର୍ମଶୀଳ ମାନବପକ୍ଷରେ ଅନ୍ୟାନ୍ୟ ବିଭବର କଥା କଣ କହିବା । ୩୪ ।

---

ତୁ ଯେ ଜଗତ ଗୁରୁପତି
ପ୍ରସନ୍ନ ହୋଇଲୁ ତଡ଼ିତି
ଏ ବର ହୋଇଲା ଆମ୍ଭର
ହେ ନାଥ ତୁମ୍ଭେ କୃପାକର
ତୁମ୍ଭ ବିଭୂତି ଅନ୍ତ ନାହିଁ
ଏଣୁ ଅନନ୍ତ ନାମ କହି ।୩୦,୩୧।
ପାରିଜାତକ ପୁଷ୍ପ ପାଇ
ସାରଙ୍ଗ ଅନ୍ୟ କି ଲୋଡ଼ଇ
ଲଭିଲେ ତୋ ପାଦ କମଳ
ଅନ୍ୟବର କିବା ଫଳ ।୩୨।

ହେ ନାଥ ନିବେଦୁଁ ସମ୍ମୁଖରେ
ଏ ଆଜ୍ଞା ହେବ କି ଆମ୍ଭରେ
ଯାବତ ତୁମ୍ଭ ମାୟା ଘେନି
ଜନ୍ମ ଲଭିବୁ ଯେତେ ଯୋନି
ଏ କର୍ମ ବଶେ ଯେତେ ଦେହୀ
ଭୋଗ ନ କଲେ ନାଶ ନୋହି
ନିଜ ସ୍ୱକର୍ମ ଭୁଞ୍ଜୁ ଥିବୁ
ତୋ ସଙ୍ଗୀ ସଙ୍ଗତ ଲଭିବୁ ।୩୩।
ତୋ ଭକ୍ତ ସଙ୍ଗର ମହିମା
କେ ଜାଣିପାରିବ ଗୁଣସୀମା

ସେ ସଙ୍ଗୁ ଯେବା ସୁଖ ହୋଇ
ସେ ସୁଖ ସ୍ୱର୍ଗେ ଅଛି କାହିଁ
ଯହିଁ ମୁକତି ତୁଲ୍ୟ ନୋହେ
ମନୁଷ୍ୟ ସୁଖ ତୁଚ୍ଛ ରହେ
ଆମ୍ଭେ ବୁଝିଲୁ ଅନୁଭବେ
ସାଧୁ ସଙ୍ଗମେ ସୁଖ ଲଭେ
ତା ତୁଲେ ନୋହେ ସ୍ୱର୍ଗ ମୋକ୍ଷ
ଏ ମର୍ତ୍ତ୍ୟ ଭୋଗ ଅତି ତୁଚ୍ଛ ।୩୪।

ଯତ୍ରେଡ୍ୟନ୍ତେ କଥା ମୃଷ୍ଟାସ୍ତୃଷ୍ଣାୟାଃ ପ୍ରଶମୋ ଯତଃ ।
ନିର୍ବୈରଂ ଯତ୍ର ଭୂତେଷୁ ନୋଦ୍‌ବେଗୋ ଯତ୍ର କଶ୍ଚନ । ୩୫ ।
ଯତ୍ର ନାରାୟଣଃ ସାକ୍ଷାଦ୍‌ଭଗବାନ୍ ନ୍ୟାସିନାଂ ଗତିଃ ।
ପ୍ରସ୍ତୂୟତେ ସତ୍‌କଥାସୁ ମୁକ୍ତସଙ୍ଗୈଃ ପୁନଃ ପୁନଃ । ୩୬ ।
ତେଷାଂ ବିଚରତାଂ ପଦ୍‌ଭ୍ୟାଂ ତୀର୍ଥାନାଂ ପାବନେଚ୍ଛୟା ।
ଭୀତସ୍ୟ କିଂ ନ ରୋଚେତ ତାବକାନାଂ ସମାଗମଃ । ୩୭ ।
ବୟନ୍ତୁ ସାକ୍ଷାଦ୍‌ଭଗବାନ୍ ଭବସ୍ୟ ପ୍ରିୟସ୍ୟ ସଖ୍ୟୁଃ କ୍ଷଣସଙ୍ଗମେନ ।
ସୁଦୁଶ୍ଚିକିତ୍ସସ୍ୟ ଭବସ୍ୟ ମୃତ୍ୟୋର୍ଭିଷକ୍‌ତମଂ ତ୍ୱାଦ୍ୟ ଗତିଂ ଗତାଃ ସ୍ମଃ ।୩୮।

---

ତୁମ୍ଭ ଭକ୍ତଗଣଙ୍କ ନିକଟରେ ପବିତ୍ର କଥା କୀର୍ତ୍ତିତ ହୋଇଥାଏ, ଏହି କଥା ଶ୍ରବଣରେ ତୃଷ୍ଣାର ବେଗେଚ୍ଛାର ପ୍ରଶମନ ହୋଇଥାଏ, ସେଥିରେ ସର୍ବଭୂତରେ ନିର୍ବୈର ହେବାରୁ କୌଣସି ପ୍ରକାର ଭୟର ସମ୍ଭାବନା ନ ଥାଏ । ୩୫ ।

ନିରପେକ୍ଷ ସାଧୁଗଣ ଯେଉଁ ସ୍ଥାନରେ ସତ୍‌କଥା ପ୍ରସଙ୍ଗରେ ସାକ୍ଷାତ୍ ଭଗବାନ୍ ନାରାୟଣଙ୍କୁ ପୁନଃପୁନଃ ସ୍ତବ କରିଥାନ୍ତି, ସେହି ଭଗବାନ୍ ନାରାୟଣହିଁ ସର୍ବସଙ୍ଗ ତ୍ୟାଗୀ ସାଧୁମାନଙ୍କର ଏକମାତ୍ର ଗତି । ୩୬ ।

ହେ ଭଗବନ୍ ! ଆପଣଙ୍କର ସେହି ନିଜ ଲୋକେ ତୀର୍ଥମାନଙ୍କୁ ପବିତ୍ର କରିବାଲାଗି ପଦବ୍ରଜରେ ଭ୍ରମଣ କରିଥାନ୍ତି, ଅତଏବ ସଂସାରଭୀତ କେଉଁ ବ୍ୟକ୍ତି ସେମାନଙ୍କର ସମାଗମରେ ଅଭିରୁଚି ପ୍ରକାଶ ନ କରିବ ? । ୩୭ ।

ଆମ୍ଭେମାନେ ମଧ୍ୟ ତୁମ୍ଭର ପ୍ରିୟ ସୁହୃତ୍ ଭଗବାନ୍ ଭବଙ୍କ ସହିତ କିୟତ୍‌କାଳ ସଙ୍ଗୀ ହୋଇ-ଥିବାରୁ ଦୁଶ୍ଚିକିତ୍ସ୍ୟ ସଂସାରର ଏବଂ ଜନ୍ମ ମୃତ୍ୟୁ ରୋଗର ସୁଚିକିତ୍ସକ ଆପଣଙ୍କୁ ଆଜି ଆମ୍ଭମାନଙ୍କର ପରମ ଆଶ୍ରୟ ରୂପେ ପ୍ରାପ୍ତ ହୋଇଅଛୁଁ । ୩୮ ।

---

ଯେଉଁଠାରେ ସାଧୁଏ ବସନ୍ତି
ସେ ନିତ୍ୟେ ହରି ଯଶ ଗାନ୍ତି
ତୋ ଅବତାର ପୁଣ୍ୟ ଯଶ
ଯେ ଯଶେ କଳ୍ମଷ ବିନାଶ
ଗାବନ୍ତି ତୋ ଗୁଣ ଚରିତ
ତୋ ଯଶ କର୍ମ୍ମ ଅବିରତ
ଯେ ତାହା ପିବେ ଶ୍ରୁତିଦ୍ୱାରେ
ଜ୍ଞାନେ ଅଜ୍ଞାନେ ପାପ ହରେ
ତେବେ ବିଷୟ ଶାନ୍ତି ହୋଏ
ଜୀବେ ଅଇରି ଭାବ ନୋହେ
ଅହିଂସା ଧର୍ମ୍ମ ହେଲେ ଜାତ
ତେଣୁ ଉଦ୍ବେଗ ନୋହେ ଚିତ୍ତ ।୩୫

ଯେ ହରି, ଦାସଙ୍କର ଗତି
ତା ପାଦେ ଭକତେ ସେବନ୍ତି
ସଙ୍ଗ ଉପେକ୍ଷି ସାଧୁଜନେ
ଏକାନ୍ତେ ଥାନ୍ତି ତୁମ୍ଭ ଧ୍ୟାନେ
ସେ ଯେବେ ମହୀ ପର୍ଯ୍ୟଟନ୍ତି
ଭ୍ରମିଣ ଲୋକ ନିସ୍ତାରନ୍ତି
ତୀର୍ଥାଦି କରନ୍ତି ପବିତ୍ର
ଏମନ୍ତ ସାଧୁଙ୍କ ଚରିତ
ତାହାଙ୍କ ଦର୍ଶନ ଯାହାଙ୍କୁ
ନିସ୍ତାର କରନ୍ତି ତାହାଙ୍କୁ ।୩୬,୩୭
ତୁମ୍ଭର ପ୍ରିୟ ସଖା ରୁଦ୍ର
ସେ ପ୍ରଭୁ ଦୟାର ସମୁଦ୍ର

ପାଇଲୁ ତାଙ୍କ ସଙ୍ଗ ଯେଣୁ
ତେଣୁ ତରିଲୁ ଘୋର ବଣୁ
ସେ ସାଧୁସଙ୍ଗ ଭାଗ୍ୟ କରି
ତୋତେ ଦେଖିଲୁ ନରହରି
ଏ ଭବ ବ୍ୟାଧି ମହାଘୋର
ଚିକିତ୍ସା ନାହିଁ ଯେ ଏଥିର
ଏଥିକୁ ବୈଦ୍ୟ ଅଟ ତୁମ୍ଭେ
ଏଣୁ ଆଶ୍ରୟ କଲୁଁ ଆମ୍ଭେ
ଯେଣୁ ତୋ ନାମ ଦୀନବନ୍ଧୁ
କରୁଣା କର କୃପାସିନ୍ଧୁ
ଆମ୍ଭେ ଯେ ଦୀନ ଅଜ୍ଞଜନ
ତୋ ପାଦେ ପଶିଲୁଁ ଶରଣ ।୩୮।

ଯନ୍ନଃ ସ୍ୱଧୀତଂ ଗୁରବଃ ପ୍ରସାଦିତା ବିପ୍ରାଶ୍ଚ ବୃଦ୍ଧାଶ୍ଚ ସଦାନୁବୃତ୍ତ୍ୟା ।
ଆର୍ଯ୍ୟା ନତାଃ ସୁହୃଦୋ ଭ୍ରାତରଶ୍ଚ ସର୍ବାଣି ଭୂତାନ୍ୟନସୂୟୟୈବ । ୩୯ ।
ଯନ୍ନଃ ସୁତପ୍ତଂ ତପ ଏତଦୀଶ ନିରନ୍ଧସାଂ କାଲମଦଭ୍ରମପ୍‌ସୁ ।
ସର୍ବଂ ତଦେତତ୍ ପୁରୁଷସ୍ୟ ଭୂମ୍ନୋ ବୃଣୀମହେ ତେ ପରିତୋଷଣାୟ ।୪୦।
ମନୁଃ ସ୍ୱୟମ୍ଭୂର୍ଭଗବାନ୍ ଭବଶ୍ଚ ଯେଽନ୍ୟେ ତପୋଜ୍ଞାନ ବିଶୁଦ୍ଧସତ୍ତ୍ୱାଃ ।
ଅଦୃଷ୍ଟପାରା ଅପି ଯନ୍ମହିମ୍ନଃ ସ୍ତୁବନ୍ତ୍ୟଥୋ ତ୍ୱାତ୍ମସମଂ ଗୃଣୀମଃ । ୪୧ ।
ନମଃ ସମାୟ ଶୁଦ୍ଧାୟ ପୁରୁଷାୟ ପରାୟ ଚ ।
ବାସୁଦେବାୟ ସତ୍ତ୍ୱାୟ ତୁଭ୍ୟଂ ଭଗବତେ ନମଃ । ୪୨ ।

---

ପ୍ରଭୋ ! ଆମ୍ଭେମାନେ ଯେ ଏକାଗ୍ରମନରେ ବେଦ ପାଠକରିଅଛୁଁ, ଅନୁବୃତ୍ତି ଦ୍ୱାରା ଗୁରୁ, ବିପ୍ର ଓ ବୃଦ୍ଧମାନଙ୍କୁ ପ୍ରସନ୍ନ କରିଅଛୁଁ ମାନ୍ୟଲୋକ, ସୁହୃଜ୍ଜନ ଓ ଭ୍ରାତୃଗଣଙ୍କୁ ଯେ ନମସ୍କାର କରିଅଛୁଁ, ଅସୂୟା ବର୍ଜ୍ଜିତ ହୋଇ ଯେ ସମସ୍ତ ପ୍ରାଣୀଙ୍କୁ ସନ୍ତୁଷ୍ଟ କରିଅଛୁଁ ଏବଂ ଅନାହାରରେ ଯେ ଜଳମଧ୍ୟରେ ଦୀର୍ଘକାଳ ଘୋର ତପସ୍ୟା କରିଅଛୁଁ ସେହି କର୍ମଦ୍ୱାରା ଯେପରି ପରମ ପୁରୁଷ ତୁମ୍ଭର ପରିତୋଷ ହୁଏ, ଏହାହିଁ ଆମ୍ଭମାନଙ୍କର ପ୍ରାର୍ଥନା । ୩୯, ୪୦ ।

ମନୁ, ବ୍ରହ୍ମା ଭଗବାନ୍ ଭବ ବିଶୁଦ୍ଧ ଚେତା ଅନ୍ୟାନ୍ୟ ଯୋଗୀଗଣ ତପସ୍ୟା ଓ ଜ୍ଞାନ ଦ୍ୱାରା ତୁମ୍ଭର ମହିମା କଳନା କରି ପାରିନାହାନ୍ତି, ତେଣୁ ନିଜ ନିଜର ଶକ୍ତି ଅନୁସାରେ ତୁମ୍ଭର ସ୍ତବ କରୁ ଅଛନ୍ତି, ଆମ୍ଭେମାନେ ତୁମ୍ଭଙ୍କୁ ଯଥାଶକ୍ତି ସ୍ତବ କଲୁ । ୪୧ ।

ହେ ପ୍ରଭୋ ! ତୁମ୍ଭେ ସର୍ବତ୍ର ସମାନ, ତୁମ୍ଭେ ପରିଶୁଦ୍ଧ ପରମପୁରୁଷ ତୁମ୍ଭେ ବିଶୁଦ୍ଧ ସତ୍ତ୍ୱରୂପୀ ବାସୁଦେବ, ତୁମ୍ଭଙ୍କୁ ନମସ୍କାର । ୪୨ ।

---

ହେ ନାଥ ଆମ୍ଭେ ଦଶଭାଇ
ବେଦ ପଢିଲୁଁ ଯେତେ ଠାଇଁ
ଗୁରୁଙ୍କ ଚରଣେ ପୂଜିଲୁଁ
ବୃଦ୍ଧ ବ୍ରାହ୍ମଣ ସେବା କଲୁଁ
ଅହିଂସା ଧର୍ମ ବ୍ୟବହାରେ
ବନ୍ଧୁଙ୍କୁ ପୂଜିଲୁଁ ସଂସାରେ
ତଦନ୍ତେ ପଶି ସିନ୍ଧୁ ନୀରେ
ତପସ୍ୟା କଲୁଁ ନିରାହାରେ
ଯେତେକ କଷ୍ଟେ ତପ କଲୁଁ
ଏ ସର୍ବ ତୁମ୍ଭରେ ଅର୍ପିଲୁଁ
ଗୁରୁ ସେବନ ଆଦି ଯେତେ
ତୁମ୍ଭ ପ୍ରତୋଷେ ହେଉ ନିତ୍ୟେ

ଆମ୍ଭର ବର ପ୍ରଭୁ ଏହି
ଆବର ବରେ ଇଚ୍ଛା ନାହିଁ ।୩୯,୪୦
ମନୁ ବିଧାତା ରୁଦ୍ର ଆଦି
ଅପରେ ଯେତେ ଶୁଦ୍ଧ ବୁଦ୍ଧି
ତୁମ୍ଭ ମହିମା ଅନ୍ତ ନାହିଁ
ଏ ଦେଖି ନ ପାରିଲେ ଯହିଁ
ସେ ତୁମ୍ଭ ରୂପ ଧ୍ୟାଇ ଥାନ୍ତି
ହୃଦୟ କମଳେ ସ୍ତବନ୍ତି
ଯେମାନେ ଜ୍ଞାନର ସାଗର
ସ୍ତବନ କରନ୍ତି ତୁମ୍ଭର
ଆମ୍ଭେ ଯେ ଅତି ଜ୍ଞାନହୀନ
ବିଦ୍ୟାରେ ନୋହୁଁ ପ୍ରବୀଣ

ତଥାପି ଜ୍ଞାନ ଅନୁସାରେ
ମନ କଲୁଇ ସ୍ତୁତି ଠାରେ
ସେ ଦୋଷ କ୍ଷମା କର ତୁହି
ତୁମ୍ଭେ କେବଳ ଗୁଣଗ୍ରାହୀ । ୪୧ ।
ନମସ୍ତେ ପ୍ରଭୁ ଶୁଦ୍ଧ ସମ
ପରମ ପୁରୁଷ ସୁଧାମ
ତୁମ୍ଭେ ଯେ ସତ୍ୟ ବାସୁଦେବ
ଆମ୍ଭଙ୍କୁ ଅନୁଗ୍ରହ ଥିବ
ତୁମ୍ଭ ଚରଣେ ପ୍ରଣମିତ
ଆମ୍ଭଙ୍କୁ ରଖିବ ଅନନ୍ତ । ୪୨ ।

ଶ୍ରୀମୈତ୍ରେୟ ଉବାଚ ।

ଇତି ପ୍ରଚେତୋଭିରଭିଷ୍ଟୁତୋ ହରିଃ ପ୍ରୀତସ୍ତଥେତ୍ୟାହ ଶରଣ୍ୟବତ୍ସଳଃ ।
ଅନିଚ୍ଛତାଂ ଯାନମତୃପ୍ତଚକ୍ଷୁଷାଂ ଯଯୌ ସ୍ୱଧାମାନପବର୍ଗବୀର୍ଯ୍ୟଃ । ୪୩ ।
ଅଥ ନିର୍ଯ୍ୟାୟ ସଲିଲାତ୍ ପ୍ରଚେତସ ଉଦନ୍ୱତଃ ।
ବୀକ୍ଷ୍ୟାକୁପ୍ୟନ୍ ଦ୍ରୁମୈଶ୍ଛନ୍ନାଂ ଗାଂ ଗାଂ ରୋଦ୍ଧୁମିବୋଚ୍ଛ୍ରିତୈଃ ।୪୪।
ତତୋଽଗ୍ନି ମାରୁତୌ ରାଜନ୍ନମୁଞ୍ଚନ୍ମୁଖତୋ ରୁଷା ।
ମହୀଂ ନିର୍ବୀରୁଧଂ କର୍ତ୍ତୁଂ ସମ୍ବର୍ତ୍ତକ ଇବାତ୍ୟୟେ । ୪୫ ।

---

ଶ୍ରୀ ମୈତ୍ରେୟ କହିଲେ—

ପ୍ରାଚୀନବର୍ହିଙ୍କ ପୁତ୍ରମାନେ ଏହିପରି ସ୍ତବକରନ୍ତେ ଭକ୍ତବତ୍ସଳ ଭଗବାନ୍ ଅତ୍ୟନ୍ତ ପ୍ରୀତହୋଇ କହିଲେ 'ତଥାସ୍ତୁ'—( ତାହାହିଁ ହେଉ ) । ତଦନନ୍ତର ସେହି ଅକୁଣ୍ଠ ପ୍ରଭାବ ନାରାୟଣଙ୍କୁ ପ୍ରଚେତାମାନେ ଦର୍ଶନ କରି ତୃପ୍ତ ହେଉଁ ନ ହେଉଣୁ ସେମାନଙ୍କ ସମ୍ମୁଖରୁ ଅନ୍ତର୍ହିତ ହୋଇଗଲେ । ୪୩ ।

ଅନନ୍ତର ପ୍ରଚେତାମାନେ ସମୁଦ୍ର ଗର୍ଭରୁ ନିର୍ଗତ ହୋଇ ଦେଖିଲେ ମହୀମଣ୍ଡଳ ବିବିଧ ବୃକ୍ଷାଚ୍ଛନ୍ନ, ବୃକ୍ଷମାନ ଏପରି ଉନ୍ନତ ଯେ ସେମାନେ ସ୍ୱର୍ଗ ରୋଧ କରିବାକୁ ଉଦ୍ୟତ, ଏହା ଦେଖି ବୃକ୍ଷମାନଙ୍କ ପ୍ରତି ସେମାନେ ଅତ୍ୟନ୍ତ କୁପିତ ହେଲେ । ୪୪ ।

ହେ ରାଜନ୍ ! ଅନନ୍ତର ପୃଥିବୀ ପୃଷ୍ଠକୁ ତରୁଲତା ଶୂନ୍ୟ କରିବା ନିମିତ୍ତ ପ୍ରଳୟ କାଳରେ ରୁଦ୍ର ଯେପରି ନିଜ ମୁଖରୁ କାଳାଗ୍ନି ବାହାର କରନ୍ତି ସେହିପରି ସେମାନେ ମଧ୍ୟ ନିଜ ମୁଖରୁ ଅନଳ ଓ ଅନିଳ ତ୍ୟାଗ କରିଥିଲେ । ୪୫ ।

---

ଶ୍ରୀମୈତ୍ରେୟ ଉବାଚ—

ମୈତ୍ରେୟ କହନ୍ତି ବିଦୁରେ
ଏମନ୍ତେ ପ୍ରଭୁଙ୍କ ଛାମୁରେ
ସ୍ତୁତି ପଠନେ ଦଶଭାଇ
ଶୁଣି ସନ୍ତୋଷ ଭବଗ୍ରାହୀ
ସେ ସର୍ବେ ହରି ରୂପ ରହି
ସନ୍ତୋଷ ନ ଭଜିଲେ କେହି
ସେମାନେ ଆନନ୍ଦେ ଭାବନ୍ତି
ଏରୂପେ ହରି ଯେବେ ଥାନ୍ତି
ସମ୍ପୂର୍ଣ୍ଣ ଲୋଚନେ ଦେଖିବା
ନିରତେ ଚରଣେ ସେବିବା
ଏ ରୂପେ ସେ ବାଞ୍ଛନ୍ତେ ମନ
ହରି ହୋଇଲେ ଅନ୍ତର୍ଦ୍ଧାନ ।୪୩।

ସେ ଯେ ପ୍ରଚେତା ଭାଇ ଦଶ
ଆକୁଳେ ରହି ଦଶ ଦଶ
ନ ଦେଖି ପ୍ରଭୁ ଚକ୍ରଧର
ସେ ଦିଗେ କରି ନମସ୍କାର
ବିଷାଦ ଶୋକେ ନିମଜ୍ଜିଲେ
ସେ ଦୁଃଖ ସାଗରେ ବୁଡ଼ିଲେ
ପଡ଼ିଲେ ମୃତତୁଲ୍ୟ ଜାଣି
ସେ ହରି ବିଚ୍ଛେଦେ ଧରଣୀ
ଆମ୍ଭା ବିମ୍ବନେ ଯେମନ୍ତେ ଦେହୀ
ଶୂନ୍ୟେ ପ୍ରକାଶେ ସର୍ବ ଠାଇଁ
ତକ୍ଷଣେ ଦେହ ଭାବ ପାଇ
ଜଳୁଁ ଉଠିଣ ଦଶ ଭାଇ

ଉଠି ରହିଲେ ଦଶ ଦିଗେ
ଦ୍ରୁମ ଆଚ୍ଛାଦେ ଭୂମି ଭାଗେ
ଆକାଶେ ଘୋଟ ବେଢ଼ିଛନ୍ତି
ଦେଖିଣ ପ୍ରକୋପେ ଜଳନ୍ତି ।୪୪।
ସର୍ବେ ବିଚାରି ଏକମନେ
ବୃକ୍ଷ ନ ରଖିବା ଭୁବନେ
ଅଗ୍ନି ପବନ ଶୀଘ୍ରେ ଦୁଇ
ମୁଖୁଁ ଉଦ୍ଗାର କଲେ ସେହି
ସେ ଅଗ୍ନି ପବନେ ପଡ଼ିଲ
ସକଳ ଦ୍ରୁମ ଭସ୍ମ ଗଲ
ଅନଳ ଅନିଳ ପ୍ରତାପେ
ଅତି ଉଦ୍ଭିଲେ ଧୂମ ବ୍ୟାପେ ।୪୫।

ଭସ୍ମସାତ୍ କ୍ରିୟମାଣାଂସ୍ତାନ୍ ଦ୍ରୁମାନ୍ ବୀକ୍ଷ୍ୟ ପିତାମହଃ ।
ଆଗତ୍ୟ ଶମୟାମାସ ପୁତ୍ରାନ୍ ବର୍ହିଷ୍ମତୋ ନୟୈଃ । ୪୬ ।
ତତ୍ରାବଶିଷ୍ଟା ଯେ ବୃକ୍ଷା ଭୀତା ଦୁହିତରଂ ତଦା ।
ଉଜ୍ଜହ୍ରୁସ୍ତେ ପ୍ରଚେତୋଭ୍ୟ ଉପଦିଷ୍ଟାଃ ସ୍ୱୟମ୍ଭୁବା । ୪୭ ।
ତେ ଚ ବ୍ରହ୍ମଣ ଆଦେଶାନ୍ମାରିଷାମୁପୟେମିରେ ।
ଯସ୍ୟାଂ ମହଦବଜ୍ଞାନାଦଜନ୍ୟଜନଯୋନିଜଃ । ୪୮ ।

---

ପୃଥ୍ୱୀସ୍ଥ ତାବତ୍ ବୃକ୍ଷ ଭସ୍ମସାତ୍ ହେବାକୁ ଲାଗିଲ, ଏହା ଦେଖି ପିତାମହ ବ୍ରହ୍ମା ବ୍ୟସ୍ତ ହୋଇ ପ୍ରଚେତାମାନଙ୍କ ନିକଟକୁ ଆଗମନ କରିଥିଲେ ଏବଂ ଯୁକ୍ତି ଯୁକ୍ତ ବାକ୍ୟଦ୍ୱାରା ସେମାନଙ୍କ କ୍ରୋଧ ପ୍ରଶମନ କରିଥିଲେ । ଦଗ୍‌ଧାବଶିଷ୍ଟ ବୃକ୍ଷଗଣ ଭୀତହୋଇ ବ୍ରହ୍ମାଙ୍କ ଉପଦେଶରେ ସେମାନଙ୍କର ସେହି କନ୍ୟାଟିକୁ ପ୍ରଚେତାମାନଙ୍କୁ ସମର୍ପଣ କରିଥିଲେ । ୪୬,୪୭ ।

ବ୍ରହ୍ମାଙ୍କ ଆଦେଶରେ ସେମାନେ ମରିଷା ନାମ୍ନୀ କନ୍ୟାକୁ ପତ୍ନୀରୂପେ ଗ୍ରହଣ କରି ଯଥାବିଧି ବିବାହ କରିଥିଲେ, ବ୍ରହ୍ମାଙ୍କ ପୁତ୍ର ଦକ୍ଷ ମହତ୍ ଅବମାନନା ନିମିତ୍ତ ମରିଷା ଗର୍ଭରେ ଜନ୍ମ ଗ୍ରହଣ କରି ଗର୍ଭ ଯନ୍ତ୍ରଣା ପାଇଥିଲେ । ୪୮ ।

---

ତା ଦେଖି ବେଗେ ପିତାମହ
ଜାଣିଲେ ଗଲା ମହୀରୁହ
ସେ ନିଜ ଲୋକରୁ ଆଇଲେ
ସେ ଦ୍ରୁମ ବିନାଶୁଁ ରଖିଲେ
କ୍ରୋଧ ସାନ୍ତ୍ୱନା କରି ତାଙ୍କ
ପ୍ରବୋଧି କହିଲେ ଅନେକ
ହେ ପ୍ରଚେତସଗଣେ ! ଶୁଣ
ବୃକ୍ଷେ ହୋଇଲେ ଅତି କ୍ଷୀଣ
ତୁମ୍ଭେ ଯେ ଅଟ ସର୍ବେ ଜ୍ଞାନୀ
କହିଁ କରୁଛ ସୃଷ୍ଟି ହାନି
ଏବେ ଯେତେକ ବୃକ୍ଷ ଶେଷ
ରହନ୍ତୁ ଯାଇଁ ବନ ଦେଶ । ୪୬ ।

ବୃକ୍ଷଙ୍କୁ ତାଙ୍କ ପଦ୍ମଯୋନି
ବୋଇଲେ କନ୍ୟା ଆଣ ଘେନି
ଦଶ ସୁରଙ୍କି କନ୍ୟା ଦେଇ
ନିର୍ଭୟେ ବନେ ରହ ଯାଇଁ
ପାଦପେ-ବିଧିବାକ୍ୟ ଶୁଣି
ତାହାଙ୍କୁ କନ୍ୟା ଦେଲେ ଆଣି । ୪୭
ସେ କନ୍ୟା ନାମ ଯେ ମାରିଷା
ପଦ୍ମଲୋଚନା ପିକଭାଷା
ସୁସ୍ୱରୁ ତନୁ ଚନ୍ଦ୍ରାନନା
ଭ୍ରୁରୁ ଅନଙ୍ଗ ଚାପ ଘେନା
ଅପାଙ୍ଗେ ମୁନିମନ ମୋହେ
ରତି ପ୍ରଭୃତ୍ୟେ ସମ ନୋହେ

ସେ ସର୍ବ ଲକ୍ଷଣେ ସୁନ୍ଦର
ତା ତୁଲେ ନାହିଁ ପଟାନ୍ତର
ବିଧି ବୋଇଲେ ପ୍ରଚେତସ
ଏ କନ୍ୟା ବର ତୁମ୍ଭେ ଦଶ
ଏମନ୍ତେ ଧାତାର ବଚନେ
ସନ୍ତୋଷେ ଭଜିଲେ ସେମାନେ
ତକ୍ଷଣେ କନ୍ୟାଙ୍କୁ ବରିଲେ
ସେ ଧାତା ନିଜପୁରେ ଗଲେ । ୪୮

ଚାକ୍ଷୁଷେ ତ୍ୱନ୍ତରେ ପ୍ରାପ୍ତେ ପ୍ରାକ୍‌ସର୍ଗେ କାଲବଦ୍ରୁତେ ।
ଯଃ ସସର୍ଜ ପ୍ରଜା ଇଷ୍ଟା ସ ଦକ୍ଷୋ ଦୈବଚୋଦିତଃ । ୪୯ ।
ଯୋ ଜାୟମାନଃ ସର୍ବେଷାଂ ତେଜସ୍ତେଜସ୍ୱିନାଂ ରୁଚା ।
ସ୍ୱୟୋପାଦତ୍ତ ଦାକ୍ଷ୍ୟାଚ କର୍ମଣାଂ ଦକ୍ଷମବ୍ରୁବନ୍ । ୫୦ ।
ତଂ ପ୍ରଜାସର୍ଗରକ୍ଷାୟାମନାଦିରଭିଷିଚ୍ୟ ଚ ।
ଯୁଯୋଜ ଯୁଯୁଜେଽନ୍ୟାଂଶ୍ଚ ସ ବୈ ସର୍ବ ପ୍ରଜାପତୀନ୍ । ୫୧ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପ୍ରଚେତସାଂ ଚରିତେ ତ୍ରିଂଶୋଽଧ୍ୟାୟଃ । ୩୦ ।

---

ଚାକ୍ଷୁଷ ମନ୍ୱନ୍ତରରେ ପୂର୍ବଦେହ କାଳ କ୍ରମେ ବିନଷ୍ଟ ହୁଅନ୍ତେ ଯେ ଈଶ୍ୱର ପ୍ରେରିତ ହୋଇ ଇଚ୍ଛାନୁସାରେ ପ୍ରଜାସୃଷ୍ଟି କରିଥିଲେ, ସେ ସେହି ଦକ୍ଷ । ସେ ଉତ୍ପନ୍ନ ହୋଇ ନିଜ ପ୍ରଭାବ ଦ୍ୱାରା ତେଜସ୍ୱୀମାନଙ୍କର ତେଜ ଆଚ୍ଛାଦିତ କରିଥିଲେ, ସମସ୍ତ କର୍ମରେ ଏହାଙ୍କର ପ୍ରଭୂତ ଦକ୍ଷତା, ତେଣୁ ସେ ଦକ୍ଷ ନାମରେ ଅଭିହିତ । ୪୯-୫୦ ।

ପିତାମହ ବ୍ରହ୍ମା ସେହି ଦକ୍ଷଙ୍କୁ ଅଭିଷିକ୍ତ କରି ପ୍ରଜାସୃଷ୍ଟି ଓ ପାଳନ କାର୍ଯ୍ୟରେ ନିଯୁକ୍ତ କରିଥିଲେ, ସେହି ଦକ୍ଷ ମରୀଚି ପ୍ରଭୃତି ଅନ୍ୟାନ୍ୟ ପ୍ରଜାପତିମାନଙ୍କୁ ଏହି କାର୍ଯ୍ୟରେ ପ୍ରବୃତ୍ତ କରାଇଥିଲେ । ୫୧ ।

---

ତଦନ୍ତେ ସେ ଯେ ଦଶ ଭାଇ
ବସିଲେ ନୃପାସନେ ଯାଇଁ
ସେ ବିଷ୍ଣୁ ବାକ୍ୟେ ପ୍ରଚେତସ
ସୁଖେ ପାଳିଲେ ରାଜ୍ୟ ଦେଶ
ଅନେକ ଦାନ ଯଜ୍ଞ କଲେ
ହରିଙ୍କି ସ୍ୱଧର୍ମେ ତୋଷିଲେ
ଏମନ୍ତେ ଶୁଣ ହେ ବିଦୁର !
ସେ କନ୍ୟା ଉଦରେ ତାଙ୍କର
ଜନ୍ମିଲେ ଦକ୍ଷ ପ୍ରଜାପତି
ଯେ ପୂର୍ବେ ବ୍ରହ୍ମାର ସନ୍ତତି
ଗିରୀଶ ନିନ୍ଦା ପୂର୍ବେ ଯେଣୁ
ଗର୍ଭ ଯାତନା କଷ୍ଟ ତେଣୁ
ସେ ପାପ ରାଜ କୂଟେ ଥିଲ
କେବେହେଁ ମୋଚନ ନ ଗଲ

ଚାକ୍ଷୁଷ ମନ୍ୱନ୍ତର ଅନ୍ତେ
ପୂର୍ବ ଶରୀର ଲୋପ ଯାନ୍ତେ
ସେ ଦକ୍ଷ ଗର୍ଭେ ଜନ୍ମ ହେଲେ
ଏବେ ଯେ ପ୍ରଜା ସୃଷ୍ଟି କଲେ ।୪୯।
ଜନ୍ମିଲ ମାତ୍ରକେ କୁମର
ତେଜ ତା ହୋଇଲ ଅପାର
ତେଜସ୍ୱୀମାନେ ଯେତେ ଥିଲେ
ତା ତେଜେ ସର୍ବେ ଲୀନ ହେଲେ
ସେ ସର୍ବ କର୍ମେ ଦକ୍ଷ ଯହୁଁ
ତା ନାମ ଦକ୍ଷ ହୋଇଲ ତହୁଁ ।୫୦।
ବିବିଧ ପ୍ରଜା ପ୍ରଜାପତି
ସୃଷ୍ଟି ସେ କଲ ମହାମତି
ତାହାଙ୍କୁ ପ୍ରଜା ରକ୍ଷାପାଇଁ
ନିଯୋଗ କଲେ ବେଦସାଇଁ

ଏମନ୍ତେ ଦକ୍ଷର ବ୍ୟବସ୍ଥା
ଶୁଣ ବିଦୁର ଶୁଦ୍ଧଚେତା ।୫୧।
ଭଣଇ ବିପ୍ର ଜଗନ୍ନାଥ
ଚତୁର୍ଥ ସ୍କନ୍ଧେ ଭଗବତ
ତରିଶ ଅଧ୍ୟା ଏହୁ ବାଣୀ
ମୈତ୍ରେୟ ବିଦୁରେ ବଖାଣି
ଏହା ଶ୍ରବଣେ ପ୍ରାଣୀଙ୍କର
ହୋଇବ ଗୃହ ଦ୍ୱନ୍ଦ ଦୂର
ଏ ଶୁକ ପରୀକ୍ଷ ସମ୍ବାଦ
ହରଇ ଅଶେଷ ଆପଦ ।



## ଏ କ ତ୍ରିଂ ଶ ଅ ଧ୍ୟା ୟ ।

ଏକତ୍ରିଂଶେ ସୁତେ ଦକ୍ଷେ ଧୂରଂ ନ୍ୟସ୍ୟ ବନେ ସତାମ୍ ।
ନାରଦୋକ୍ତେନ ମାର୍ଗେଣ ମୁକ୍ତିରୁକ୍ତା ପ୍ରଚେତସାମ୍ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀମୈତ୍ରେୟ ଉବାଚ ।

ତତ ଉତ୍ପନ୍ନବିଜ୍ଞାନା ଆଶ୍ୱଧୋକ୍ଷଜଭାଷିତମ୍ ।
ସ୍ମରନ୍ତ ଆତ୍ମଜେ ଭାର୍ଯ୍ୟାଂ ବିସୃଜ୍ୟ ପ୍ରାବ୍ରଜନ୍ ଗୃହାତ୍ । ୧ ।
ଦୀକ୍ଷିତା ବ୍ରହ୍ମସତ୍ରେଣ ସର୍ବଭୂତାତ୍ମମେଧସା ।
ପ୍ରତୀଚ୍ୟାଂ ଦିଶି ବେଳାୟାଂ ସିଦ୍ଧୋଽଭୂତ୍ ଯତ୍ର ଜାଜଳିଃ । ୨ ।

---

### ପ୍ରଚେତାମାନଙ୍କ ପ୍ରସଙ୍ଗ ।

ଏକତ୍ରିଂଶ ଅଧ୍ୟାୟରେ ନାରଦଙ୍କ ଉପଦେଶ ଅନୁସାରେ ପ୍ରଚେତାଗଣ ପୁତ୍ରଙ୍କୁ ରାଜ୍ୟଭାର ଦେଇ ମୁକ୍ତିଲାଭ କରିବା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀମୈତ୍ରେୟ କହିଲେ:—

ଅନନ୍ତର ଦିବ୍ୟ ସହସ୍ରବର୍ଷ ପରେ ଡତ୍ତ୍ୱଜ୍ଞାନ ଉଦୟ ହୁଅନ୍ତେ ସେମାନେ ପୁତ୍ର ହସ୍ତରେ ଭାର୍ଯ୍ୟା ପ୍ରତିପାଳନର ଭାର ଅର୍ପଣ କରି ଗୃହରୁ ବହିର୍ଗତ ହୋଇ ସନ୍ନ୍ୟାସୀ ହୋଇଥିଲେ । ୧ ।

ଯେଉଁ ଆତ୍ମବିଦ୍ୟାରେ ସର୍ବଭୂତରେ ଆତ୍ମଜ୍ଞାନ ହୁଏ; ପୂର୍ବଦିଗରେ ସମୁଦ୍ର ତଟରେ ଜାଜଳିଋଷି ଯେଉଁଠାରେ ସିଦ୍ଧିଲାଭ କରିଥିଲେ, ସେହିସ୍ଥାନକୁ ଗମନ କରି ବ୍ରହ୍ମବିଦ୍ୟାର ବା ତପସ୍ୟା ନିମନ୍ତେ ସେମାନେ ଦୀକ୍ଷିତ ହୋଇଥିଲେ । ୨ ।

---

ପୁତ୍ର ବସେଣି ସିଂହାସନେ, ପ୍ରଚେତା ନାରଦ ବଚନେ । ମୁକ୍ତି ଲଭିଲେ ଅବଶେଷେ, ଏହି ଚରିତ ଏକତ୍ରିଂଶେ ।

ଶ୍ରୀ ମୈତ୍ରେୟ ଉବାଚ—
ମୈତ୍ରେୟ କହନ୍ତି ବିଦୁର
ପ୍ରଚେତା ବୈରାଗ୍ୟ ବିସ୍ତର
ସେ ଦଶଲକ୍ଷ ଦିବ୍ୟଜ୍ଞାନୀ
ହରିଙ୍କ ଆଜ୍ଞା ପରମାଣି
ପୁତ୍ରଙ୍କୁ ପତ୍ନୀ ସମର୍ପିଲେ
ରାଜ୍ୟ ପ୍ରତେଜି ବନେ ଗଲେ । ୧ ।
ପଶ୍ଚିମ ଜଳଧି ତଟରେ
ରହିଲେ ସିଦ୍ଧ ଆଶ୍ରମରେ
ଜାଜଳ ନାମେ ଦ୍ୱିଜବର
ଯହିଁ ହୋଇଲେ ସିଦ୍ଧେଶ୍ୱର
ତହିଁ ସେମାନେ ତପ କରି
ପୂଜିଲେ ବ୍ରହ୍ମ-ସତ୍ରେ ହରି । ୨ ।

ତାନ୍ନିଜିତପ୍ରାଣମନୋବଚୋଦୃଶୋ ଜିତା ସନାନ୍ ଶାନ୍ତସମାନବିଗ୍ରହାନ୍ ।
ପରେଽମଳେ ବ୍ରହ୍ମଣି ଯୋଜିତାତ୍ମନଃ ସୁରାସୁରେଡ୍ୟୋ ଦଦୃଶେ ସ୍ମ ନାରଦଃ ।୩।
ତମାଗତଂ ତଉତ୍ଥାୟ ପ୍ରଣିପତ୍ୟାଭିବାଦ୍ୟ ଚ ।
ପୂଜୟିତ୍ୱା ଯଥାଦେଶଂ ସୁଖାସୀନମଥାବ୍ରୁବନ୍ ।୪।
ଶ୍ରୀପ୍ରଚେତସ ଊଚୁଃ ।
ସ୍ୱାଗତଂ ତେ ସୁରର୍ଷେଽଦ୍ୟ ଦିଷ୍ଟ୍ୟା ନୋ ଦର୍ଶନଂ ଗତଃ ।
ତବ ଚଙ୍କ୍ରମଣଂ ବ୍ରହ୍ମନ୍ନଭୟାୟ ଯଥା ରବେଃ ।୫।
ଯଦାଦିଷ୍ଟଂ ଭଗବତା ଶିବେନାଧୋକ୍ଷଜେନ ଚ ।
ତଦ୍ଗୃହେଷୁ ପ୍ରସକ୍ତାନାଂ ପ୍ରାୟଶଃ କ୍ଷପିତଂ ପ୍ରଭୋ ।୬।

---

ପ୍ରଚେତାମାନେ ସମୁଦ୍ରତଟରେ ଉପସ୍ଥିତ ହୋଇ ପ୍ରାଣ, ମନ, ବାକ୍ୟ ଓ ଦୃଷ୍ଟିକୁ ଜୟ କରି ଓ ଆସନ ଜୟ କରି ବିଷୟରୁ ଉପରତ ହୋଇଥିଲେ, ଏବଂ ଋଜୁଭାବରେ ଉପବିଷ୍ଟ ହୋଇ ନିର୍ମଳ ପରମ ବ୍ରହ୍ମରେ ଆତ୍ମାକୁ ନିୟୋଗ କରି ବସିଅଛନ୍ତି, ଏମନ୍ତ ସମୟରେ ସୁରାସୁର ପୂଜିତ ଦେବର୍ଷି ନାରଦ ସେଠାରେ ଆସି ଉପସ୍ଥିତ ହୋଇଥିଲେ ।୩।

ଦେବର୍ଷିଙ୍କ ଆଗମନରେ ସେମାନେ ଆସନରୁ ଉଠି ଯଥାବିଧି ଅଭିବାଦନ ଓ ପୂଜା କରିଥିଲେ, ଏବଂ ସେ ସୁଖରେ ଉପବେଶନ କରିବାରୁ କହିଲେ ।୪।

ଶ୍ରୀ ପ୍ରଚେତାମାନେ କହିଲେ;—

ହେ ବ୍ରହ୍ମନ୍ ! ଆପଣ ସୁଖରେ ଆସି ଅଛନ୍ତି ତ ? ଆମ୍ଭେମାନେ ସୌଭାଗ୍ୟ କ୍ରମେ ଆପଣଙ୍କର ଦର୍ଶନଲାଭ କଲୁ, ଆପଣ ପୃଥିବୀକୁ ଅଭୟଦାନ କରିବାକୁ ସୂର୍ଯ୍ୟତୁଲ୍ୟ ପୃଥିବୀରେ ସତତ ଭ୍ରମଣ କରିଥାନ୍ତି ।୫।

ହେ ପ୍ରଭୋ ! ଭଗବାନ୍ ହରି ଓ ହର ଆମ୍ଭମାନଙ୍କୁ ଯେଉଁ ଆଦେଶ ଦେଇଅଛନ୍ତି, ଆମ୍ଭେମାନେ ଗୃହସ୍ଥାଶ୍ରମରେ ଅତିଶୟ ଆସକ୍ତ ହେବାରୁ ତାହା ପ୍ରାୟ ବିସ୍ମୃତ ହୋଇଅଛୁଁ । ଅତଏବ ଯଦ୍ୱାରା ଆମ୍ଭ-

---

ଏ କର୍ଣ୍ଣ ବଚନ ଲୋଚନ
ସଂଯମ କଲେ ପ୍ରାଣ ମନ
ଆସନ ଆଦି ଦୃଢ଼ କଲେ
ସୁଶାନ୍ତ ବିଗ୍ରହ ହୋଇଲେ
ଏମନ୍ତ ସମୟେ ଚତୁର
ନାରଦ ବ୍ରହ୍ମାଙ୍କ କୁମର
ମିଳିଲେ ତାଙ୍କଠାରେ ଆସି
ସେମାନେ ତପେ ଛନ୍ତି ବସି ।୩।
ଦେଖି ନାରଦ ମୁନିବର
ସେମାନେ ଉଠିଲେ ସତ୍ୱର
ବେଗେ ଆସନ ଆଣି ଦେଲେ
ଚରଣଯୁଗ ପ୍ରକ୍ଷାଳିଲେ

ଆସନେ ବସାଇଲେ ନେଇ
ପୂଜିଲେ ଅର୍ଘ୍ୟ ଆଦି ଦେଇ
ଆନନ୍ଦେ ବସି ମୁନିବର
ସେମାନେ ଅଗ୍ରେ ଯୋଡ଼ିକର ।୪।
ବସିଣ ପୁଚ୍ଛନ୍ତି ବିନୟେ
ହେ ମୁନି ଆଗତ ନିର୍ଣ୍ଣୟେ
କି ଆମ୍ଭେ ଭାଗ୍ୟ କରିଥିଲୁଁ
ଏ ତୁମ୍ଭ ଦର୍ଶନ ଲଭିଲୁଁ
ହେ ମୁନି ! ଏ ତୁମ୍ଭ ଭ୍ରମଣ
ଅଜ୍ଞାନୀ ଜନ ଉଦ୍ଧାରଣ
ନିର୍ଭୟ ହେବୁ ପ୍ରାଣିଙ୍କର
ତୁମ୍ଭ ଦର୍ଶନ ମୁନିବର

ଯେସନେ ସୂର୍ଯ୍ୟର ଉଦୟ
ଅଶେଷ ପ୍ରାଣୀ ସୁଖମୟ
ସେ ରୂପେ ତୁମ୍ଭ ଦରଶନ
ସୌଭାଗ୍ୟ ଆମ୍ଭର ଜୀବନ
ହେ ମୁନି ମନ ଖେଦ ଯେତେ
କହିବୁଁ ତୁମ୍ଭର ଅଗ୍ରତେ ।୫।
ପୂର୍ବେ ଯେ ପ୍ରଭୁ ଭଗବାନ
କହି ଯେ ଥିଲେ ଦିବ୍ୟଜ୍ଞାନ
ଆମ୍ଭେ ଯେ ଗୃହଧର୍ମେ ପଡ଼ି
ସେ ଦିବ୍ୟ ଜ୍ଞାନ ଦେଲୁଁ ଛାଡ଼ି ।୬।

ତନ୍ନଃ ପ୍ରଦ୍ୟୋତୟାଧ୍ୟାତ୍ମଜ୍ଞାନଂ ତତ୍ତ୍ୱାର୍ଥଦର୍ଶନମ୍ ।
ଯେନାଞ୍ଜସା ତରିଷ୍ୟାମୋ ଦୁସ୍ତରଂ ଭବସାଗରମ୍ । ୭ ।
ଶ୍ରୀମୈତ୍ରେୟ ଉବାଚ ।
ଇତି ପ୍ରଚେତସାଂ ପୃଷ୍ଟୋ ଭଗବାନ୍ ନାରଦୋ ମୁନିଃ ।
ଭଗବତ୍ୟୁତ୍ତମଃ ଶ୍ଳୋକ ଆବିଷ୍ଟାତ୍ମାବ୍ରବୀନ୍ନୃପାନ୍ । ୮ ।
ଶ୍ରୀନାରଦ ଉବାଚ । ତଜ୍ଜନ୍ମ ତାନି କର୍ମାଣି ତଦାୟୁସ୍ତନ୍ମନୋ ବଚଃ ।
ନୃଣାଂ ଯେନ ହି ବିଶ୍ୱାତ୍ମା ସେବ୍ୟତେ ହରିରୀଶ୍ୱରଃ । ୯ ।
କିଂ ଜନ୍ମଭିସ୍ତ୍ରିଭିର୍ବେହ ଶୌକ୍ରସାବିତ୍ର ଯାଜ୍ଞିକୈଃ ।
କର୍ମଭିର୍ବା ତ୍ରୟୀପ୍ରୋକ୍ତୈଃ ପୁଂସୋଽପି ବିବୁଧାୟୁଷା । ୧୦ ।

ମାନଙ୍କର ତତ୍ତ୍ୱାର୍ଥ ଦର୍ଶନ ହୁଏ, ଏବଂ ଯେପରି ଆମ୍ଭେମାନେ ଅନାୟାସରେ ଦୁସ୍ତରଭବ ସାଗରରୁ ଉତ୍ତୀର୍ଣ୍ଣ ହୋଇପାରୁ; ଆମ୍ଭମାନଙ୍କଠାରେ ସେହି ଅଧ୍ୟାତ୍ମଜ୍ଞାନ ଉତ୍ପାଦନ କରନ୍ତୁ । ୬-୭ ।

ଶ୍ରୀମୈତ୍ରେୟ କହିଲେ;—ବିଦୁର ! ଭଗବାନ୍ ନାରଦମୁନି ପ୍ରଚେତାମାନଙ୍କ ଦ୍ୱାରା ଏହିପରି ଜିଜ୍ଞାସିତ ହୋଇ ଭଗବାନ୍ ଉତ୍ତମ ଶ୍ଳୋକଙ୍କଠାରେ ମନ ନିବେଶ କରି ସେହି ନୃପତିମାନଙ୍କୁ କହିଲେ । ୮ ।

ଶ୍ରୀନାରଦ କହିଲେ;—

ଯେଉଁ ଜନ୍ମରେ ମନୁଷ୍ୟ ବିଶ୍ୱାତ୍ମା ପରମେଶ୍ୱର ହରିଙ୍କ ସେବା କରିପାରେ ସେହି ଜନ୍ମହିଁ ଜନ୍ମ, ସେହି କର୍ମହିଁ କର୍ମ, ସେହି ପରମାୟୁହିଁ ପରମାୟୁ, ସେହି ମନହିଁ ମନ, ସେହି ବାକ୍ୟହିଁ ବାକ୍ୟ । ୯ ।

* ଶୌକ୍ର, ସାବିତ୍ର ଓ ଯଜ୍ଞଦୀକ୍ଷା ଦ୍ୱାରା ଯେଉଁ ତ୍ରିବିଧ ଜନ୍ମ ହୁଏ, ହରିସେବା ଭିନ୍ନ ସେହି ଜନ୍ମରେ କି ପ୍ରୟୋଜନ ? ହରିସେବା ଭିନ୍ନ ବେଦୋକ୍ତ କର୍ମ ବା ଦେବତାତୁଲ୍ୟ ଦୀର୍ଘ ପରମାୟୁରେ ବା କି ଲାଭ ?

ହେ ମୁନିବର ଅନୁଗ୍ରହ
ସେ ତତ୍ତ୍ୱ ଜ୍ଞାନ ଏବେ କହ
ଏ ଭବ ସାଗର ଦୁସ୍ତର
ସେ ଜ୍ଞାନେ ହୋଇବୁ ନିସ୍ତାର ।୭।
ମୈତ୍ରେୟ କହନ୍ତି ଭାରତ
ଏମନ୍ତ ବାକ୍ୟେ ସେ ପ୍ରଚେତ
ଶୁଣି ନାରଦ ତପୋଧନ
ଉତ୍ତମ ଶ୍ଳୋକେ କଲେ ଧ୍ୟାନ
ଧ୍ୟାନ କରନ୍ତେ ମୁନିବର
ପ୍ରେମ ପୁଲକେ କଳେବର

କୃଷ୍ଣ ବିଷୟେ ନିମଜ୍ଜିଲେ
ଦେହ ଜୀବନ ପାସୋରିଲେ
ତକ୍ଷଣେ ପାଇ ଦିବ୍ୟ ବୁଦ୍ଧି
ତାହାଙ୍କୁ କହନ୍ତି ପ୍ରବୋଧି । ୮ ।

ଶ୍ରୀ ନାରଦ ଉବାଚ—

ଶୁଣ ନୃପତି ପୁଣ୍ୟଶୀଳ
ଯେମନ୍ତେ ହୋଇବ କୁଶଳ
କହିବା ଶୁଣ ସାବଧାନ
ଯହିଁରେ ହେବ ତୁମ୍ଭ ଜ୍ଞାନ

ମନୁଷ୍ୟ ଜନ୍ମ କର୍ମ ସେହି
ହରିଙ୍କ ସେବା ହୋଏ ଯହିଁ
ହରି ଭଜନ ଯେବେ ନାହିଁ
ଏଥୁଁ ଅଭାଗ୍ୟ ପରେ କାହିଁ ?
ଯେ ତିନି ବେଦ କର୍ମ କହେ
ଏ କର୍ମେ ପ୍ରାଣୀ ମୋକ୍ଷ ନୋହେ
ଭରୁଁ ତରିବ ସେ ବା କାହିଁ
ଯାବତ ହରି ନ ଭଜଇ
ଯେ ଦେବ-ଆୟୁଷେ ଜୀବନ୍ତି
ହରି ନ ଭଜି ନ ତରନ୍ତି ।୯,୧୦

* ବେଦୋକ୍ତ ବିଧାନ ଅନୁସାରେ ପିତାମାତାଙ୍କ ଔରସରେ ଯେଉଁ ଜନ୍ମ ତାହା ଶୁକ୍ରଶୌଚ ଜନ୍ମ ବୋଲାଯାଏ । ଉପନୟନ ସମୟରେ ସାବିତ୍ରୀ ଓ ଗାୟତ୍ରୀ ମନ୍ତ୍ର ଲାଭ ଦ୍ୱାରା ଯେଉଁ ଜନ୍ମ ତାହାକୁ ସାବିତ୍ର ବୋଲାଯାଏ, ଯଜ୍ଞ ଦୀକ୍ଷା ଗ୍ରହଣ କରି ଭଗବତ୍ ଧାରଣା କରିବାକୁ ଯାଜ୍ଞିକ ବା ଦୈକ୍ଷ୍ୟ ଜନ୍ମ ବୋଲାଯାଏ ।୧୦ ।

ଶ୍ରୁତେନ ତପସା ବା କିଂ ବଚୋଭିଶ୍ଚିତ୍ତବୃତ୍ତିଭିଃ ।
ବୁଦ୍ଧ୍ୟା ବା କିଂ ନିପୁଣୟା ବଲେନେନ୍ଦ୍ରିୟରାଧସା । ୧୧ ।
କିଂ ବା ଯୋଗେନ ସାଂଖ୍ୟେନ ନ୍ୟାସସ୍ୱାଧ୍ୟାୟୟୋରପି ।
କିଂ ବା ଶ୍ରେୟୋଭିରନ୍ୟୈଶ୍ଚ ନ ଯତ୍ରାତ୍ମପ୍ରଦୋ ହରିଃ । ୧୨ ।
ଶ୍ରେୟସାମପି ସର୍ବେଷାମାତ୍ମା ହ୍ୟବଧିରର୍ଥତଃ ।
ସର୍ବେଷାମପି ଭୂତାନାଂ ହରିରାତ୍ମାତ୍ମଦଃ ପ୍ରିୟଃ । ୧୩ ।
ଯଥା ତରୋର୍ମୂଲନିଷେଚନେନ ତୃପ୍ୟନ୍ତି ତତ୍ସ୍କନ୍ଧଭୁଜୋପଶାଖାଃ ।
ପ୍ରାଣୋପହାରାଚ୍ଚ ଯଥେନ୍ଦ୍ରିୟାଣାଂ ତଥୈବ ସର୍ବାର୍ହଣମଚ୍ୟୁତେଜ୍ୟା । ୧୪ ।

---

ହରିସେବା ବ୍ୟତୀତ ବେଦପାଠରେ, ତପସ୍ୟାରେ, ଶାସ୍ତ୍ରାଦିବ୍ୟାଖ୍ୟା ସହ ବକ୍ତୃତା ସାମର୍ଥ୍ୟରେ, ବା ଶାସ୍ତ୍ରାଦି ଧାରଣା ହେତୁ ପ୍ରଖର ବୁଦ୍ଧିରେ, ବଳରେ ବା ଇନ୍ଦ୍ରିୟ ପଟୁତାରେ ବା କି ପ୍ରୟୋଜନ ? ।୧୦-୧୧

ଯେଉଁଠାରେ ଭକ୍ତିର ଅଭାବ ହେତୁ ଶ୍ରୀହରି ପ୍ରସାଦ ମିଳେ ନାହିଁ, ସେଠାରେ ଯୋଗ, ସାଂଖ୍ୟ ସନ୍ନ୍ୟାସ ବା ବେଦାଧ୍ୟୟନ ବା ଅନ୍ୟାନ୍ୟ କର୍ମରେ କି ଲାଭ ? । ୧୨ ।

ସର୍ବପ୍ରକାର ବସ୍ତୁ ମଧ୍ୟରେ ଆତ୍ମହିଁ ପରମାର୍ଥ ଜ୍ଞାନ ମଧ୍ୟରେ ଶ୍ରେଷ୍ଠ, ଭଗବାନ୍ ଶ୍ରୀହରି ସର୍ବାତ୍ମା; ସେହି ଜୀବ ଜଗତକୁ ଆତ୍ମଦାନ କରି ସମସ୍ତଙ୍କ ପ୍ରିୟ ସାଧନ କରନ୍ତି । ୧୩ ।

ବୃକ୍ଷ ମୂଳରେ ଜଳ ସେଚନ କଲେ ଯେପରି ତାହାର ସ୍କନ୍ଧ, ଶାଖା,ପ୍ରଶାଖା ସମସ୍ତେ ତୃପ୍ତ ହୁଅନ୍ତି, ପ୍ରାଣକୁ ଆହାର ଦେଲେ ଯେପରି ସମସ୍ତ ଇନ୍ଦ୍ରିୟ ତୃପ୍ତ ହୁଅନ୍ତି, ସେହିପରି ଭଗବାନ୍ ଅଚ୍ୟୁତଙ୍କ ଆରାଧନା ଦ୍ୱାରା ସମସ୍ତ ଦେବତାଙ୍କ ତୁଷ୍ଟି ସାଧନା କରାଯାଇ ପାରେ । ୧୪ ।

---

ଯେଣୁ ସେ ବିଷୟେ ମନହି
ନ ଦେଲା କୃଷ୍ଣପାଦେ ରହି
ସୁସାଧୁ କଲେ ବିଦ୍ୟମାନ
ଅପରେ ଯେତେ ତପ ଦାନ
ଏ ସର୍ବ ତାର ଅକାରଣ
ଯେବେ ନ ଭଜେ ନାରାୟଣ
ଯେତେକ କବିତ୍ୱ ବଚନ
ବ୍ୟର୍ଥ କି କାର୍ଯ୍ୟେ ପ୍ରୟୋଜନ
ବିଫଳ ବୁଦ୍ଧି ହେଲା ତାର
ନ ଭଜି ସେ କୃଷ୍ଣ ବିଭୁର
ଇନ୍ଦ୍ରିୟ ବଳ ତେଜ ଯେତେ
ଏଣୁ କି ଭବୁଁ ତରେ ପ୍ରାଣୀ । ୧୧ ।
ଅଷ୍ଟାଙ୍ଗ ଯୋଗ ସାଙ୍ଖ୍ୟ ଆଦି
ସନ୍ନ୍ୟାସ ଧର୍ମ୍ମ ବେଦବାଦୀ
ଏ ସର୍ବେ ଜୀବନ ତାରନ୍ତି
ଭୋଗାଦି ଫଳ ବାଞ୍ଛା ଦ୍ୟନ୍ତି ।୧୨।
ଅପରେ ଯେତେ ଶ୍ରେୟ କର୍ମ୍ମ
ଇହ ସଂସାରେ ଲୋକ ଧର୍ମ୍ମ
ଏ ସର୍ବ କାଳେ ନ ଘଟନ୍ତି
ଯେବେ ହରିଙ୍କି ନ ଭଜନ୍ତି
ଏ ଯେତେ ଜର୍ମ୍ମ ଶ୍ରେୟ ବିଧି
ଯଜ୍ଞାଦି କର୍ମ୍ମ ଅଷ୍ଟ ସିଦ୍ଧି
ଏ ସର୍ବ ଅନ୍ତ ଆତ୍ମା ହରି
ଯେ ଭଲ ମନେ ଅଧିକାରୀ
କର୍ମ୍ମାନୁସାରେ ଦେହେ ରହି
ପ୍ରାଣିଙ୍କି କର୍ମ୍ମ ଭୋଗ ଦେଇ
ତେଣୁ ସେ ଆତ୍ମା ସର୍ବଭୂତେ
ସଭଙ୍କ ପ୍ରିୟ ସେ ଏମନ୍ତେ
ଯେବା ଆତ୍ମାକୁ ସେବା କରି
ତେବେ ସେ ଉଦ୍ଧାରନ୍ତି ହରି ।୧୩
ଯେସନେ ତରୁଙ୍କର ମୂଳେ
ସେଚନ କଲେ ନେଇ ଜଳେ
ତା ଯେତେ ଭୁଜ ସ୍କନ୍ଧ ଶାଖା
ସର୍ବେ ସନ୍ତୋଷ ମୂଳେ ଏକା
ପ୍ରାଣକୁ ଉପହାର ଦେଲେ
ସନ୍ତୋଷ ଇନ୍ଦ୍ରିୟ ସକଳେ
ଏମନ୍ତ ସେ ହରିଙ୍କ ସେବା
କଲେ ସନ୍ତୋଷ ସର୍ବ ଦେବା ।୧୪

ଯଥୈବ ସୂର୍ଯ୍ୟାତ୍ ପ୍ରଭବନ୍ତି ବାରଃ ପୁନଶ୍ଚ ତସ୍ମିନ୍ ପ୍ରବିଶନ୍ତି କାଳେ ।
ଭୂତାନି ଭୂମୌ ସ୍ଥିରଜଙ୍ଗମାନି ତଥା ହରାବେବ ଗୁଣପ୍ରବାହଃ । ୧୫ ।
ଏତତ୍‌ପଦଂ ତଜ୍ଜଗଦାତ୍ମନଃ ପରଂ ସକୃଦ୍‌ବିଭାତଂ ସବିତୁର୍ଯଥା ପ୍ରଭା ।
ଯଥାସବୋ ଜାଗ୍ରତି ସୁପ୍ତଶକ୍ତୟୋ ଦ୍ରବ୍ୟକ୍ରିୟାଜ୍ଞାନଭିଦାଭ୍ରମାତ୍ୟୟଃ । ୧୬ ।
ଯଥା ନଭସ୍ୟଭ୍ରତମଃପ୍ରକାଶା ଭବନ୍ତି ଭୂପା ନ ଭବନ୍ତ୍ୟନୁକ୍ରମାତ୍ ।
ଏବଂ ପରେ ବ୍ରହ୍ମଣି ଶକ୍ତୟସ୍ତ୍ୱମୂରଜସ୍ତମଃସତ୍ତ୍ୱମିତି ପ୍ରବାହଃ । ୧୭ ।

---

ଯେପରି ଜଳ ସୂର୍ଯ୍ୟଙ୍କ ଠାରୁ ଉତ୍ପନ୍ନ ହୋଇ ପୁଣି ଯଥା ସମୟରେ ତାଙ୍କଠାରେ ପ୍ରବେଶ କରେ । ସ୍ଥାବର ଜଙ୍ଗମ ଭୂତ ସମସ୍ତେ ଯେପରି ପୃଥିବୀରୁ ଉତ୍ପନ୍ନ ହୋଇ ଅବଶେଷରେ ସେହି ପୃଥିବୀରେ ଲୀନ ହୁଅନ୍ତି, ସେହିପରି ଗୁଣ ପ୍ରପଞ୍ଚମୟ ପ୍ରବାହ ସେହି ଶ୍ରୀହରିଙ୍କଠାରୁ ଉତ୍ପନ୍ନ ହୋଇ ଅବଶେଷରେ ପ୍ରଳୟକାଳରେ ତାଙ୍କଠାରେ ବିଲୀନ ହୁଏ । ୧୫ ।

ଏହି ବିଶ୍ୱ ମଧ୍ୟ ଜଗଦାତ୍ମା ଶ୍ରୀହରିଙ୍କ ପରମ ପଦରୁ ଉତ୍ପନ୍ନ, ସୂର୍ଯ୍ୟରଶ୍ମି ଯେପରି ସୂର୍ଯ୍ୟଙ୍କଠାରୁ ଅଭିନ୍ନ, ସେହିପରି ଭଗବାନଙ୍କଠାରୁ ଅଭିନ୍ନ ହେଲେ ମଧ୍ୟ ସ୍ଫୁରିତ ଗନ୍ଧର୍ବ ନଗରୀ ତୁଲ୍ୟ ଏ ବିଶ୍ୱ ପ୍ରକାଶିତ, ଇନ୍ଦ୍ରିୟମାନେ ଜାଗ୍ରତାବସ୍ଥାରେ ନାନାପ୍ରକାର କାର୍ଯ୍ୟରେ ବ୍ୟାପୃତ ଥାନ୍ତି, ନିଦ୍ରାବସ୍ଥାରେ ସେହି କାର୍ଯ୍ୟମାନଙ୍କରୁ ନିବୃତ୍ତ ହୁଅନ୍ତି, ସେହିପରି ବିଶ୍ୱ ମଧ୍ୟ ଭଗବାନଙ୍କଠାରୁ ପୃଥକ୍ ବୋଲି ପ୍ରତୀୟମାନ ହେଲେ ମଧ୍ୟ ସେହି ଶ୍ରୀହରିଙ୍କଠାରୁ ଦ୍ରବ୍ୟ, କ୍ରିୟା, ଓ ଜ୍ଞାନଜନିତ ଭେଦଭ୍ରମ ଦୂରୀଭୂତ ହୋଇଥାଏ ।୧୬।

ହେ ନୃପଗଣ ! ଯେପରି ଆକାଶ, ମେଘ, ଅନ୍ଧକାର ଓ ଆଲୋକ ପର୍ଯ୍ୟାୟ କ୍ରମେ ଉଦୟ ଓ ବିଲୟ ପ୍ରାପ୍ତ ହୁଏ, ସେହି ପରମବ୍ରହ୍ମଙ୍କଠାରେ ରଜଃ, ତମଃ ଓ ସତ୍ତ୍ୱ ପ୍ରବାହ ତୁଲ୍ୟ କେତେବେଳେ ଉଦୟ, କେତେବେଳେ ବିଲୟ ପ୍ରାପ୍ତ ହୋଇଥାଏ । ୧୭ ।

---

ହରି ସେ ସର୍ବ ଆତ୍ମା ମୂଳ
ଯେତେ ପ୍ରପଞ୍ଚ ସୂକ୍ଷ୍ମ ସ୍ଥୂଳ
ଯେସନେ ରବିଠାରୁ ଜଳ
ପ୍ରଭବ ପ୍ରକାଶେ ଶୀତଳ
କାଳେ ସେ ରବି ତେଜେ ପୁଣି
ପ୍ରବେଶ ହୋନ୍ତି ସର୍ବ ପାଣି
ସେରୂପେ ଏ ଗୁଣ ପ୍ରବାହ
ଏ ଚରାଚର ଭୂତ ଦେହ
ଏ ସର୍ବେ ହରିରୁ ଝରନ୍ତି
କ୍ରମେ ସେ ତହିଁ ପ୍ରବେଶନ୍ତି ।୧୫।
ଜଗତ ହରିଙ୍କ କିରଣ
ସୂର୍ଯ୍ୟର ପ୍ରଭାଟି ଯେସନ
ତା ତହିଁ ସର୍ବ ଶକ୍ତି ଥାନ୍ତି
ଯେବେ ସେ ଜାଗ୍ରତ ଲଭନ୍ତି
ତେବେ ସେ ଦ୍ରବ୍ୟ କ୍ରିୟା ଜ୍ଞାନ
ହୁଅଇ ଭେଦ ଭ୍ରମମାନ ।୧୬।
ଯେମନ୍ତେ ଆକାଶେ ଘନସନ୍ତି
ତମ ବିଜୁଳି ପ୍ରକାଶନ୍ତି
ତେମନ୍ତ ପରମ ବ୍ରହ୍ମରେ
ସକଳ ଶକ୍ତି ଏ କ୍ରମରେ
ହୁଅନ୍ତି ନୁହନ୍ତି ସେ କାଳେ
ସର୍ବ ସତ୍ତ୍ୱାଦି ଗୁଣଜାଳେ ।୧୭।

ତେନୈକମାତ୍ମାନମଶେଷଦେହିନାଂ କାଲଂ ପ୍ରଧାନଂ ପୁରୁଷଂ ପରେଶମ୍ ।
ସ୍ୱତେଜସା ଧ୍ୱସ୍ତଗୁଣପ୍ରବାହମାତ୍ମୈକଭାବେନ ଭଜଧ୍ୱମଦ୍ଧା । ୧୮ ।
ଦୟୟା ସର୍ବଭୂତେଷୁ ସନ୍ତୁଷ୍ଟ୍ୟା ଯେନ କେନ ବା ।
ସର୍ବେନ୍ଦ୍ରିୟୋପଶାନ୍ତ୍ୟା ଚ ତୁଷ୍ୟତ୍ୟାଶୁ ଜନାର୍ଦ୍ଦନଃ । ୧୯ ।
ଅପହତସକଲୈଷଣାମଲାତ୍ମନ୍ୟବିରତମେଧିତଭାବନୋପହୂତଃ ।
ନିଜଜନବଶଗତ୍ୱମାତ୍ମନୋଽୟନ୍ ନ ସରତି ଛିଦ୍ରବଦକ୍ଷରଃ ସତାଂ ହି । ୨୦ ।
ନ ଭଜତି କୁମନୀଷିଣାଂ ସ ଇଜ୍ୟାଂ ହରିରଧନାତ୍ମଧନପ୍ରିୟୋ ରସଜ୍ଞଃ ।
ଶ୍ରୁତଧନକୁଲକର୍ମ୍ମଣାଂ ମଦୈର୍ଯେ ବିଦଧତି ପାପମକିଞ୍ଚନେଷୁ ସତ୍ସୁ ।୨୧।

---

ନିଖିଳ ଦେହମାନଙ୍କର ଆତ୍ମା ଏକମାତ୍ର ଯେହି ଏ ଜଗତର ଆତ୍ମା ଓ ଉପାଦାନର କାରଣ, ଯେ କାଳର ତେଜଦ୍ୱାରା ସମସ୍ତ ଗୁଣ ପ୍ରବାହ ବିଧ୍ୱସ୍ତ କରିଥାନ୍ତି, ଅତଏବ ତୁମ୍ଭେମାନେ ଅଭିନ୍ନ ଜ୍ଞାନରେ ସର୍ବ-କାରଣର କାରଣ ପରମେଶ୍ୱରଙ୍କୁ ସାକ୍ଷାତ ଭାବରେ ଭଜନା କର, ସର୍ବଭୂତରେ ଦୟା, ଯଦୃଚ୍ଛା ଲାଭରେ ସନ୍ତୋଷ ଏବଂ ସର୍ବ ଇନ୍ଦ୍ରିୟ ଦମନ ଦ୍ୱାରା ଭଗବାନ ଜନାର୍ଦ୍ଦନ ସର୍ବଦା ପ୍ରସନ୍ନ ହୋଇଥାନ୍ତି ।୧୮,୧୯।

ସାଧୁଜନମାନେ ନିରନ୍ତର ତାଙ୍କୁ ନିଷ୍କାମ ଅମଳ ହୃଦୟରେ ଭାବନା କରିବାରୁ ସେ ନିଜ ଭକ୍ତର ଅଧୀନ ହୋଇ ଭକ୍ତ ହୃଦୟାକାଶରେ ଅବସ୍ଥାନ କରନ୍ତି, କଦାପି ସେସ୍ଥାନ ପରିତ୍ୟାଗକରି ଅନ୍ୟତ୍ର ଯାଆନ୍ତି ନାହିଁ ॥

ଯେଉଁ ଧନହୀନ ବ୍ୟକ୍ତିମାନେ ଶ୍ରୀହରିହିଁ ସେମାନଙ୍କର ଏକମାତ୍ର ଧନ ବୋଲି ଭାବନ୍ତି, ଭକ୍ତିରସଜ୍ଞ ଭଗବାନ୍ ସେମାନଙ୍କର ପ୍ରିୟ କିନ୍ତୁ ଯେଉଁ କୁମନୀଷୀମାନେ ବିଦ୍ୟା, ଧନ, କୁଳ, କର୍ମର ଅହଂକାରରେ ମତ୍ତହୋଇ ଅକିଞ୍ଚନ ସାଧୁମାନଙ୍କର ଅବମାନନା କରନ୍ତି, ଭଗବାନ ସେମାନଙ୍କର ପୂଜା ମଧ୍ୟ ଗ୍ରହଣ କରନ୍ତି ନାହିଁ । ୨୧ ।

---

ସେ ଆତ୍ମା ଅଶେଷ ଦେହିଙ୍କ
ପୁରୁଷ ପ୍ରଧାନ ସେ ଏକ
କାଳହିଁ ତାହାଙ୍କୁ କହି
ଗୁଣ ପ୍ରବାହ ହେତୁ ସେହି
ତାହାଙ୍କୁ ଭଜ ଏକ ଭାବେ
ସଂସାରୁ ନିସ୍ତରିବ ଯେବେ ।୧୮।
ସକଳ ଭୂତେ ଦୟା କର
ଯହିଁ ତହିଁରେ ତୋଷ ଧର
ଇନ୍ଦ୍ରିୟବର୍ଗ ବିନାଶିଲେ
ହରିଙ୍କି ପାଇବ ଭଜିଲେ ।୧୯।
ବିଶୁଦ୍ଧ ହୋଇ ଯେବେ ମନ
ବିନାଶ ହୋଏ ଚେଷ୍ଟାମାନ
ଏମନ୍ତ ଭକ୍ତ ଯେବେ ଥିବେ
ବିଶୁଦ୍ଧ ହୃଦ ଅବିରତେ

ତହିଁ ବସନ୍ତି ଭଗବାନ
ନ ଯାନ୍ତି ତହୁଁ ଅନ୍ୟ ସ୍ଥାନ ।୨୦।
ଏ ବିନେ ଯେ ଆନ କୁଯୋଗୀ
ବିଷୟ ସୁଖେ ନିତ୍ୟ ଭୋଗୀ
ତାହାଙ୍କ ପୂଜା ନ ଘେନନ୍ତି
ଯେଣୁ ସେ ରସକୁ ଜାଣନ୍ତି
ବିଦ୍ୟା ବନ୍ଧନେ ଯେଉଁ ଜନେ
ରହନ୍ତି ଅହଙ୍କାର ମନେ
ଯେ ସାଧୁ ଅକିଞ୍ଚନ ଦେଖି
ହତ ଆଦରେ ଦୂରେ ପେଖି
ଧନ ବିନାଶ ହେତୁ କରି
ଯେ ସାଧୁ ସେବା ପରିହରି
ଅତ୍ୟନ୍ତ ସେ ମୂଢ ପାମର
ଧନରେ ଅତି ସ୍ନେହ ତାର

ଏମନ୍ତ ପ୍ରାଣୀ ଯେ ଅଛନ୍ତି
ଅଜ୍ଞାନେ ଧର୍ମ ନ ଜାଣନ୍ତି
ତାଙ୍କ ବିମୁଖ ନରହରି
ସାଧୁ ଦୂଷଣ ହେତୁ କରି
ଏଣୁ ଯେ ସଙ୍ଗ ପ୍ରତେଜନ୍ତି
ସୁସାଧୁ ସଙ୍ଗତେ ବସନ୍ତି
ସେ ପରିପୂର୍ଣ୍ଣ ସର୍ବଭାବେ
ବଶ ନୁହନ୍ତି ଧନ ଲୋଭେ
ନିଜ ଭକତ ବଶ ହରି
ଭକ୍ତ ତାକକୁ ଅନୁସରି
ଏମନ୍ତ ମହିମା ତାହାର
ସେ ପାଦେ ନ ଭଜେ ପାମର
ଦାର ତନୟ ମୋହେ ପଡ଼ି
ଦୁଃଖ ଗହନେ ସୁଖ ଛାଡ଼ି

ଶ୍ରିୟମନୁଚରତୀଂ ତଦର୍ଥିନଶ୍ଚ ଦ୍ୱିପଦପତୀନ୍ ବିବୁଧାଂଶ୍ଚ ଯଃସ୍ୱପୂର୍ଣ୍ଣଃ ।
ନ ଭଜତି ନିଜଭୃତ୍ୟବର୍ଗତନ୍ତ୍ରଃ କଥମମୁମୁଦ୍ୱିସୃଜେତ୍ ପୁମାନ୍ କୃତଜ୍ଞଃ ।୨୨।
ଶ୍ରୀମୈତ୍ରେୟ ଉବାଚ । ଇତି ପ୍ରଚେତସୋ ରାଜନ୍ନନ୍ୟାଶ୍ଚ ଭଗବତ୍‌କଥାଃ ।
ଶ୍ରାବୟିତ୍ୱା ବ୍ରହ୍ମଲୋକଂ ଯଯୌ ସ୍ୱାୟମ୍ଭୁବୋ ମୁନିଃ । ୨୩ ।
ତେଽପି ତନ୍ମୁଖନିର୍ଯାତଂ ଯଶୋ ଲୋକମଲାପହମ୍ ।
ହରେର୍ନିଶମ୍ୟ ତତ୍‌ପାଦଂ ଧ୍ୟାୟନ୍ତସ୍ତଦ୍‌ଗତିଂ ଯଯୁଃ । ୨୪ ।
ଏତତ୍ତେଽଭିହିତଂ କ୍ଷତ୍ତର୍ଯନ୍ମାଂ ତ୍ୱଂ ପରିପୃଷ୍ଟବାନ୍ ।
ପ୍ରଚେତସାଂ ନାରଦସ୍ୟ ସମ୍ବାଦଂ ହରିକୀର୍ତ୍ତନମ୍ । ୨୫ ।

---

ସେ ଆପେ ପରିପୂର୍ଣ୍ଣ, ତଥାପି ଭକ୍ତର ବଶୀଭୂତ, ସେ ସହଚାରିଣୀ ଲକ୍ଷ୍ମୀଙ୍କର ଏବଂ ଲକ୍ଷ୍ମୀକାମୀ ରାଜନ୍ୟମଣ୍ଡଳୀର ବା ଦେବତାମାନଙ୍କର ଅନୁଗମନ କରନ୍ତି ନାହିଁ; ସେପରି ଭକ୍ତବତ୍ସଳ ଭଗବାନଙ୍କୁ କେଉଁ କୃତଜ୍ଞ ପୁରୁଷ ଅଳ୍ପକାଳ ନିମନ୍ତେ ସୁଦ୍ଧା ତ୍ୟାଗ କରିପାରେ ? । ୨୨ ।

ଶ୍ରୀ ମୈତ୍ରେୟ କହିଲେ—ହେ ବିଦୁର ! ବ୍ରହ୍ମାଙ୍କ ପୁତ୍ର ନାରଦ ମୁନି ଏହି ସମସ୍ତ ଓ ଅନ୍ୟାନ୍ୟ ଭଗବତ୍ ପ୍ରସଙ୍ଗ ପ୍ରଚେତାମାନଙ୍କୁ ଶୁଣାଇ ବ୍ରହ୍ମଲୋକକୁ ଗମନ କରିଥିଲେ । ୨୩ ।

ପ୍ରଚେତାମାନେ ଦେବର୍ଷିଙ୍କ ମୁଖ ନିଃସୃତ ଲୋକମଳ ନାଶକ ଶ୍ରୀହରିଙ୍କର ସେହି କୀର୍ତ୍ତି ଗାଥା ଶ୍ରବଣ କରି ତାହାଙ୍କର ପାଦପଦ୍ମ ଧ୍ୟାନ କରୁ କରୁ ତାଙ୍କର ଗତିପ୍ରାପ୍ତ ହେଲେ । ୨୪ ।

ହେ ବିଦୁର ! ତୁମ୍ଭେ ମୋତେ ଯେଉଁ ପ୍ରଶ୍ନ କରିଥିଲ ଏହା ସେହି ପ୍ରଚେତାମାନଙ୍କ ନିକଟରେ ନାରଦଙ୍କ କର୍ତ୍ତୃକ ଶ୍ରୀହରି ପ୍ରସଙ୍ଗ କୀର୍ତ୍ତନରୁ ଜ୍ଞାତବ୍ୟ, ମୁଁ ତାହା ତୁମ୍ଭ ନିକଟରେ ବର୍ଣ୍ଣନା କଲି । ୨୫ ।

---

ଅଜ୍ଞାନ ଭାବେ ଦମ୍ଭେ ଥାନ୍ତି
ଯେ ଅନ୍ୟ ଦେବଙ୍କୁ ସେବନ୍ତି
ସେ ହରି ସେବା ଛାଡ଼ି ଅନ୍ୟ
ଯେ ହରି ଭକତ ଜୀବନ
ସେ ପାଦପଦ୍ମ ଛାଡ଼ି ଯେହି
ଅନ୍ୟ ଭଜନେ ମନ ଦେଇ
ତାହାଙ୍କୁ ବୋଲି ମୂଢ଼ମତି
ସେପ୍ରାଣୀଭକ୍ତି ନ କରନ୍ତି ।୨୧,୨୨

ଶ୍ରୀ ମୈତ୍ରେୟ ଉବାଚ—

ମୈତ୍ରେୟ କହନ୍ତି ବିଦୁର
ଏମନ୍ତେ ଦେବ ମୁନିବର
ସେ ପ୍ରଚେତସ ତପ ଠାବେ
ଏ ଜ୍ଞାନ କହିଲେ ସ୍ୱଭାବେ

ଅପରେ ହରି ଗୁଣମାନ
କହି ତୋଷିଲେ ତାଙ୍କ ମନ
ତତ୍‌କ୍ଷଣେ ବ୍ରହ୍ମଲୋକ ଗଲେ
ସେମାନେ ସନ୍ତୋଷେ ରହିଲେ ।୨୩
ଶୁଣ ବିଦୁର ଜ୍ଞାନବନ୍ତ
ନାରଦ ମୁଖରୁ ସ୍ଖଳିତ
ହରିଙ୍କ ନାମ ଯଶ ଗୁଣ
ଯେବା ଶୁଣନ୍ତି ଅନୁକ୍ଷଣ
ସେ ସର୍ବ କାମାର୍ଥ ଲଭନ୍ତି
ଇତ୍ୟାଦି ପାପ ବିନାଶନ୍ତି
ଶୁଣି ସାନନ୍ଦ ନୃପଗଣେ
ହରି ଭଜିଲେ ଅନୁକ୍ଷଣେ
ସେ ଅନ୍ତେ ହରିଙ୍କି ଲଭିଲେ
ନାରଦ ହେତୁ ନିସ୍ତରିଲେ ।୨୪।

ଏ ଯେମନ୍ତ ସତସଙ୍ଗ ପ୍ରାଣୀ
ଆଦରି ଲଭେ ଚକ୍ରପାଣି
ଏ ବିନେ ନାହିଁ ସଦଗତି
ଶୁଣ ବିଦୁର ଗୁହ୍ୟ ଅତି
ସୁସାଧୁ ସଙ୍ଗେ ଚିତ୍ତଧର
ଏ ମାୟା ସ୍ନେହ ଦୂର କର
ଯେତେ ସଂଶୟ ହୃଦ ଗତ
ସର୍ବ ଥିଲୁ ସେ ବୃତ୍ତାନ୍ତ
ସାର ଉଦ୍ଧରି ଶାସ୍ତ୍ର ମତେ
କହିଲୁ ଶିଶୁ ଭାଗବତେ
ନାରଦ ପ୍ରଚେତାମାନଙ୍କ
ସମ୍ବାଦ ଚରିତ ହରିଙ୍କ
ମୁଁ ଯେଣୁ କହିବଇଁ ତାହା
ସଂଶୟ କରିଥିଲୁ ଯାହା । ୨୫ ।

ଶ୍ରୀଶୁକ ଉବାଚ ।

ଯ ଏଷ ଉତ୍ତାନପଦୋ ମାନବସ୍ୟାନୁବର୍ଣ୍ଣିତଃ ।
ବଂଶଂ ପ୍ରିୟବ୍ରତସ୍ୟାପି ନିବୋଧ ନୃପସତ୍ତମ । ୨୬ ।
ଯୋ ନାରଦାଦାତ୍ମବିଦ୍ୟାମଧିଗମ୍ୟ ପୁନର୍ମହୀମ୍ ।
ଭୁକ୍ତ୍ୱା ବିଭଜ୍ୟ ପୁତ୍ରେଭ୍ୟ ଐଶ୍ୱରଂ ସମଗାତ୍ ପଦମ୍ । ୨୭ ।
ଇମାନ୍ତୁ କୌଶାରବିଣୋପବର୍ଣ୍ଣିତାଂ କ୍ଷତ୍ତା ନିଶମ୍ୟାଜିତପାଦସତ୍କଥାମ୍ ।
ପ୍ରବୃଦ୍ଧଭାବୋଽଶ୍ରୁକଳାକୁଳୋ ମୁନେର୍ଦଧାର ମୂର୍ଦ୍ଧ୍ନା ଚରଣଂ ହୃଦା ହରେଃ ।୨୮।

ଶ୍ରୀବିଦୁର ଉବାଚ ।

ସୋଽୟମଦ୍ୟ ମହାଯୋଗିନ୍ ଭବତା କରୁଣାତ୍ମନା ।
ଦର୍ଶିତସ୍ତମସଃ ପାରେ ଯତ୍ରାକିଞ୍ଚନଗୋ ହରିଃ । ୨୯ ।

---

ଶ୍ରୀ ଶୁକଦେବ କହିଲେ—

ହେ ନୃପଶ୍ରେଷ୍ଠ ! ମନୁ ତନୟ ଉତ୍ତାନପାଦ ବଂଶ ବର୍ଣ୍ଣିତ ହେଲା, ବର୍ତ୍ତମାନ ପ୍ରିୟବ୍ରତଙ୍କ ବଂଶ ବର୍ଣ୍ଣନା କରୁଅଛୁ ଶ୍ରବଣ କର । ୨୬ ।

ସେ ମଧ୍ୟ ନାରଦଙ୍କ ନିକଟରୁ ଆତ୍ମବିଦ୍ୟା ଲାଭକରି ପୁନର୍ବାର ପୃଥିବୀ ଭୋଗ କରିଥିଲେ ଏବଂ ପରେ ତାହା ପୁତ୍ରମାନଙ୍କ ମଧ୍ୟରେ ବିଭାଗ କରି ପରମେଶ୍ୱରଙ୍କ ପରମ ପଦ ପ୍ରାପ୍ତ ହୋଇଥିଲେ । ୨୭ ।

ମୁନିବର ମୈତ୍ରେୟଙ୍କ ବର୍ଣ୍ଣିତ ଏହି ଭଗବତ୍ କଥା ପ୍ରସଙ୍ଗ ଶ୍ରବଣ କରି ବିଦୁରଙ୍କ ଭକ୍ତିଭାବ ଉଦ୍‌ବେଳିତ ହେଲା, ସେ ପ୍ରେମାଶ୍ରୁ ବ୍ୟାକୁଳ ହୋଇ ସେହି ମୁନିଙ୍କର ଚରଣ ମସ୍ତକରେ ଏବଂ ଶ୍ରୀହରିଙ୍କୁ ହୃଦୟରେ ଧାରଣ କରିଥିଲେ । ୨୮ ।

ଶ୍ରୀବିଦୁର କହିଲେ—

ହେ ମହାଯୋଗିନ୍ ! ଆପଣ କରୁଣାମୟ, ତେଣୁ ଆପଣ ସଂସାର ସମୁଦ୍ର ପାରରେ ଯେ ସ୍ଥାନରେ ଶ୍ରୀହରି ତାହାଙ୍କର ଅକିଞ୍ଚନ ଭକ୍ତଗଣଙ୍କର ସହଜଲଭ୍ୟ ସେହି ସ୍ଥାନ ଦର୍ଶନ କରାଇଥିଲେ । ୨୯ ।

---

ଶ୍ରୀ ଶୁକ ଉବାଚ—

କହିଲ୍ଲେ ଶୁକ ମହାମୁନି
ଶୁଣ ପରୀକ୍ଷିତ ନୃପମଣି
ମୈତ୍ରେୟ ଯେତେକ କହିଲେ
ବିଦୁର ବିନୟେ ଶୁଣିଲେ
ଆନନ୍ଦେ ହୋଇ ପୁଲକିତ
ହୃଦ ଗଦ୍‌ଗଦ ଅଶ୍ରୁପାତ

ଆନନ୍ଦସାଗରେ ବୁଡ଼ିଲେ
ଦେହ ଜୀବନ ପାସୋରିଲେ
ଧରିଣ ମୁନିଙ୍କ ଚରଣ
ହେମୁନି କର ଉଦ୍ଧାରଣ
ତୁମ୍ଭ ପ୍ରସାଦେ ନବ୍ରହ୍ମଜ୍ଞାନ
ପାଇ ଛାଡ଼ିଲି ମୋହମାନ
ହେ ମୁନି ତୁମ୍ଭେ ଜ୍ଞାନି ସାର
ଦେଖାଇ ଦେଲ ତମପାର

ଏମନ୍ତ ଜ୍ଞାନ ଯେବେ ହୋଇ
ସେ ପ୍ରାଣୀ ହରିଙ୍କି ଲଭଇ
ମୁଁ ଏବେ ହେଲି ମୋକ୍ଷପାର
ତୁମ୍ଭ ପ୍ରସାଦେ ମୁନିବର
ହେ ମୁନି ଆଜ୍ଞା ଦେବ ଯେବେ
ନିଜ ସଦନେ ଯିବି ତେବେ
ଏମନ୍ତ କହିଣ ଆନନ୍ଦେ
ନମିଲି ମୁନିଙ୍କର ପାଦେ

ଶ୍ରୀଶୁକ ଉବାଚ ।

ଇତ୍ୟାନମ୍ୟ ତମାମନ୍ତ୍ର୍ୟ ବିଦୁରୋ ଗଜସାହ୍ୱୟମ୍ ।
ସ୍ୱାନାଂ ଦିଦୃକ୍ଷୁଃ ପ୍ରଯଯୌ ଜ୍ଞାତୀନାଂ ନିର୍ବୃତାଶୟଃ । ୩୦ ।
ଏତଦ୍‌ଯଃ ଶୃଣୁୟାଦ୍ରାଜନ୍ ରାଜ୍ଞାଂ ହର୍ଯ୍ୟର୍ପିତାତ୍ମନାମ୍ ।
ଆୟୁର୍ଧନଂ ଯଶଃ ସ୍ୱସ୍ତି ଗତିମୈଶ୍ୱର୍ଯ୍ୟମାପ୍ନୁୟାତ୍ । ୩୧ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପ୍ରଚେତସୋପାଖ୍ୟାନଂ ନାମୈକତ୍ରିଂଶୋଽଧ୍ୟାୟଃ । ୩୧ ।

---

ଶ୍ରୀ ଶୁକଦେବ କହିଲେ—

ଏହାପରେ ସେହି ଋଷିଙ୍କୁ ସମ୍ଭାଷଣ ଓ ପ୍ରଣାମ କରି ଆନନ୍ଦ ପୂର୍ଣ୍ଣ ଚିତ୍ତ ବିଦୁର ଜ୍ଞାତି ଦର୍ଶନେଚ୍ଛାରେ ହସ୍ତିନାପୁରକୁ ପ୍ରସ୍ଥାନ କରିଥିଲେ । ୩୦ ।

ହେ ରାଜନ୍ ! ଶ୍ରୀହରିଙ୍କଠାରେ ସମର୍ପିତ ଚିତ୍ତ ପ୍ରଚେତାମାନଙ୍କ ପବିତ୍ର ପ୍ରସଙ୍ଗ ଯେ ଶ୍ରବଣ କରେ, ସେ ଦୀର୍ଘକାଳ ଧନ, କୀର୍ତ୍ତି ଓ ଶ୍ରେୟଯୁକ୍ତ ହୋଇ ଅନ୍ତକାଳରେ ସଦ୍‌ଗତି ଲାଭ କରେ । ୩୧ ।

---

ସେ ତାଙ୍କୁ ତୋଷ ଆଜ୍ଞା ଦେଲେ
ଜଣିନ୍ତି ଆସନେ ରହିଲେ
ହସ୍ତିନା ଗମନ ବିଦୁର
ଦେଖିବା ଅର୍ଥେ ସହୋଦର
ଛାଡ଼ି ସକଳ ମାୟା ମୋହେ
ଗମିଲା ମାତ୍ର ଭ୍ରାତୃସ୍ନେହେ । ୨୬-୩୦
ଶୁଣ ରାଜନ ଦଣ୍ଡଧର
ସେ ଯେ ପ୍ରାଚୀନ ନୃପବର
ତାହାଙ୍କ ପୁଣ୍ୟ ଯଶ କୀର୍ତ୍ତି
ଯେ ନିତ୍ୟେ ଶୁଣେ ଦୃଢ଼ ମତି
ତା ଯଶ ଆୟୁଷ ବଢ଼ଇ
ବିପୁଳ ଭୋଗ ନ ଛାଡ଼ଇ
ଅଷ୍ଟ ଐଶ୍ୱର୍ଯ୍ୟ ଭୋଗ ତୋଷେ
ସୁକୀର୍ତ୍ତି ରହେ ଚତୁର୍ଦ୍ଦିଶେ
ଦେହାନ୍ତେ ଗତି ହୁଏ ତାର
ସେ ପ୍ରଭୁ କରନ୍ତି ନିସ୍ତାର । ୩୧ ।
ଭଣଇ ବିପ୍ର ଜଗନ୍ନାଥ
ଏ କୃଷ୍ଣ ଆଜ୍ଞାରୁ ଉକତ
ରୂପରେ ବହୁ କାଳ ଥିଲା
ହରି ଆଜ୍ଞାରୁ ଉଦେ ହେଲା
ହରି ହରି ସ୍ତବନା କରୁ
ସଂଶୟ ଛାଡ଼ିଲା ମନରୁ
ସେ ବ୍ରହ୍ମ ଅନନ୍ତ ମହିମା
କେ କହିପାରେ ଗୁଣ ସୀମା
ଅମୃତ ଚରିତ ଏ ବାଣୀ
ଶ୍ରବଣେ ନିସ୍ତରିବେ ପ୍ରାଣୀ
ହୋଇବ ଭବବନ୍ଧ ନାଶ
ସୁଜନେ କୃଷ୍ଣପାଦେ ରସ ।






---

କଟକ, ଅରୁଣୋଦୟ ପ୍ରେସରେ ପ୍ରିଣ୍ଟର ଚୌଧୁରୀ ମଧୁସୂଦନ ମହାପାତ୍ରଙ୍କ ଦ୍ୱାରା ମୁଦ୍ରିତ ।

## ଦକ୍ଷିଣ ଓଡ଼ିଶାର ଏକମାତ୍ର ସମ୍ବାଦପତ୍ରିକା 'ନବୀନ' ର ମତ ।

ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟ ଏମ୍, ଏ, ବି, ଏଲ ସଙ୍କଳିତ ଓ ଅରୁଣୋଦୟପ୍ରେସ ପ୍ରକାଶିତ "ଶ୍ରୀମଦ୍ଭାଗବତ" ଆମ୍ଭେମାନେ ପାଇଛୁ । ଏକା ଧାରରେ ଏହା ମୂଳ ସଂସ୍କୃତ ଭାଗବତ, ତାହାର ସରଳ ଓଡ଼ିଆ ଗଦ୍ୟାନୁବାଦ, ସ୍ୱର୍ଗୀୟ ଜଗନ୍ନାଥ ଦାସଙ୍କ ପଦ୍ୟ ଭାଗବତ ଏବଂ ବହୁ ବିଶଦବ୍ୟାଖ୍ୟା ଓ ଟୀକା ଘେନି ଉତ୍କଳ ସାହିତ୍ୟରେ ଏକ ଅଭିନବ ଗ୍ରନ୍ଥ । ଏହି ବୈଶିଷ୍ଟ୍ୟ ଆଜି ଏହାକୁ ଉତ୍କଳର ସର୍ବଜନାଦୃତ କରାଇ ପାରିଛି । ରାୟବାହାଦୁର ଆଚାର୍ଯ୍ୟଙ୍କ ଏହି କଠିନ ତତ୍ତ୍ୱମୂଳକ ଧର୍ମଗ୍ରନ୍ଥ ପ୍ରଣୟନ ପ୍ରଚେଷ୍ଟା ଗ୍ରନ୍ଥଟିର ଛତ୍ରେ ଛତ୍ରେ ଫୁଟି ଉଠୁଛି । ସମସ୍ତ ଭାଗବତ ପ୍ରକାଶିତ ହୋଇ ନଥିଲେ ସୁଦ୍ଧା ବର୍ତ୍ତମାନ ଯେଉଁ ତିନୋଟି ସ୍କନ୍ଧ ସର୍ବ ସମାବେଶରେ ପ୍ରକାଶିତ ହୋଇଛି, ତାହା ଭବିଷ୍ୟତ ସ୍କନ୍ଧ ଗୁଡ଼ିକର ଏକ ବ୍ୟାପକ ବିଭବର ପରିଚୟ ଦେଉଛି । ଗୋଟିଏ ବହିରେ ତିନୋଟି ବହି ଘେନି ଏହା ଗ୍ରନ୍ଥ ପାଠକଙ୍କୁ ବହୁ ଚିନ୍ତା ଓ ଗବେଷଣା କରିବାର ସୁବିଧା ଦେଉଛି । ମୂଳଗ୍ରନ୍ଥ ପରି ତାହାର ଉପକ୍ରମଣିକା ଓ ପ୍ରତ୍ୟେକ ସ୍କନ୍ଧର ପରିଶିଷ୍ଟ ଗୁଡ଼ିକ ଅତି ଉପାଦେୟ । ଭାଗବତ ପାଠର ନିୟମ, ସପ୍ତାହ ପାଠ ନିୟମ ପ୍ରଭୃତି ଓ ଭାଗବତ ସମ୍ବନ୍ଧୀୟ ନାନାତତ୍ତ୍ୱ ଉପକ୍ରମଣିକାରେ ଦିଆ ଯାଇଛି । ଅତି ସଂକ୍ଷିପ୍ତ ହେଲେ ସୁଦ୍ଧା ସଂସ୍କୃତ ଭାଗବତକାର ବ୍ୟାସ ଏବଂ ଓଡ଼ିଆ ଭାଗବତକାର ୰ ଜଗନ୍ନାଥ ଦାସ, ଭାଗବତ ରଚନା ଓ ପ୍ରଚାର ଏବଂ ପୁରାଣ ଯୁଗରେ ରାଜ୍ୟର ଇତିବୃତ୍ତ ପ୍ରଣେତା ମାଗଧ, ବନ୍ଦୀ ବା ସୂତମାନଙ୍କ ବିଷୟରେ ଯେଉଁ ସୁଚିନ୍ତିତ ଐତିହାସିକ ତଥ୍ୟ ଏବଂ ବହୁ ଗବେଷଣା ମୂଳକ ଅଭିନବ ଆବିଷ୍କାର ମାନ ଦେଇଛନ୍ତି ତାହା ବହିଟିକୁ ବହୁଭାବରେ ଆଲୋକିତ କରିଛି ଏବଂ ତାହା ଅବଶ୍ୟ ଅର୍ବାଚୀନ "ଐତିହାସିକ" ମାନଙ୍କର ଆଖି ଖୋଲିଦେବ । ପ୍ରଥମ ସ୍କନ୍ଧର ପରିଶିଷ୍ଟରେ "ନାରଦୀୟ ଭକ୍ତିସୂତ୍ର" ଦ୍ୱିତୀୟଟିରେ ବିଶଦାର୍ଥ, ଅନ୍ୱୟ ଓ ଅର୍ଥସହ "ପୁରୁଷସୂକ୍ତ ଶ୍ଳୋକ", ତୃତୀୟଟିରେ ବିଶଦବ୍ୟାଖ୍ୟା ସକଳ ଗ୍ରନ୍ଥଟିକୁ ଆହୁରି ସରଳ, ସହଜ ଓ ସୁବୋଧ କରି ପାରିଛି । ଯଥା ସ୍ଥାନରେ ବହୁ ଚିତ୍ର ସମ୍ବଳିତ ହୋଇ ବହିଟିର ଉପାଦେୟତା ବଢିଯାଇଛି । ଆମର ବିଶ୍ୱାସ, ଏହି ଗ୍ରନ୍ଥ ପୂତପ୍ରାଣେ ପରିପୂର୍ଣ୍ଣ ପୂଜା ପାଇବ ।

